# ଜୀବନର ଛାପ

## ଅନୁଭୂତି ଓ ଅନ୍ୱେଷଣ



ପ୍ରଫେସର ଡ଼ାକ୍ତର ବିକ୍ରମ ଦାସ

ଉଗ୍ର ସ୍ୱାଧୀନତା ସଂଗ୍ରାମୀ, ବିଶିଷ୍ଟ ଚିକିତ୍ସକ ଏବଂ ବରେଣ୍ୟ ସାହିତ୍ୟିକ ଭାବରେ ତାଙ୍କୁ ବହୁ ଅନୁଷ୍ଠାନ ସମ୍ବର୍ଦ୍ଧିତ କରିଛନ୍ତି । 'କୃତି ଓ କୃତିତ୍ୱ'ର କିମ୍ବଦନ୍ତୀ ବ୍ୟକ୍ତିତ୍ୱ ଭାବରେ 'ବିଜ୍ଞାନ ପ୍ରଚାର ସମିତି' ସୁବର୍ଣ୍ଣ ଜୟନ୍ତୀ ସମ୍ମାନରେ ତାଙ୍କୁ ସମ୍ମାନିତ କରିଛନ୍ତି ।

ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ମାନ (୧୯୮୮), ସାହିତ୍ୟ ସଂସଦ ଔପନ୍ୟାସିକ ସମ୍ମାନ (୧୯୮୬), ସହକାର ଗାଳ୍ପିକ ସମ୍ମାନ (୧୯୯୨), ନୀଳଶୈଳ-ସାହିତ୍ୟ ସମ୍ମାନ (୧୯୫୬), ସ୍ୱାଗତିକା-ସାହିତ୍ୟ ସମ୍ମାନ (୧୯୯୫), ଡକ୍ଟର ଇଣ୍ଟର ନ୍ୟାସନାଲ ସମ୍ମାନ (୧୯୯୬), ସୁବର୍ଣ୍ଣ ଜୟନ୍ତୀ ସମ୍ମାନ(୧୯୯୪) ବ୍ରହ୍ମପୁର ଏମ୍.କେ.ସି.ଜି. ମେଡ଼ିକାଲ କଲେଜ, କଟକ ଏସ.ସି.ବି. ମେଡ଼ିକାଲ କଲେଜ ରୌପ୍ୟ ଜୟନ୍ତୀ ସମ୍ମାନ (୧୯୮୯), ଉତ୍କଳ ଦିବସ ସମ୍ମାନ (୧୯୯୨), ସତ୍ୟବାଦୀର ଜଣେ କୃତି ସନ୍ତାନ ଭାବେ ସତ୍ୟବାଦୀ ଯୁବକ ସଂଘ ତରଫରୁ ମର୍ଯ୍ୟାଦାଜନକ ସତ୍ୟବାଦୀ ସମ୍ମାନ ପ୍ରଭୃତିରେ ସେ ସମ୍ମାନିତ ହୋଇଛନ୍ତି ।

ଏସବୁ ଛଡ଼ା ପାଥୋଲଜି ଶିକ୍ଷାର ଉତ୍କର୍ଷତା ପାଇଁ ସେ 'ଇଣ୍ଡିଆନ କଲେଜ ଅଫ ପାଥୋଲଜିଷ୍ଟ' ତରଫରୁ ଫାଉଣ୍ଡର ଫେଲୋ ଏଫ.ଆଇ.ସି.ପି. ଉପାଧିରେ ଭୂଷିତ ହେଇଛନ୍ତି ।

ଜୀବନର ଛାପ
- ଅନୁଭୂତି ଓ ଅନ୍ୱେଷଣ
ପ୍ରଫେସର ଡାକ୍ତର ବିକ୍ରମ ଦାସ

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ
୨୦୦୫

ଟାଇପ ସେଟିଂ
ସ୍ପେକ୍ଟ୍ରମ୍ ପ୍ରିଣ୍ଟର୍ସ
୭୧ ଏ, ଫରେଷ୍ଟ ପାର୍କ
ଭୁବନେଶ୍ୱର - ୭୫୧୦୦୯

ମୁଦ୍ରଣ
ଦୁଦୁଲି ପ୍ରସେସ ଆଣ୍ଡ ଅଫ୍‌ସେଟ୍
ବାପୁଜି ନଗର, ଭୁବନେଶ୍ୱର

ଦୁଇଶହ ପଚିଶ ଟଙ୍କା ମାତ୍ର

**Jibanara Chhapa**
**- anubhuti o anweshana**
Written by
**Professor Dr. Bikram Das**

Published by
**LARK BOOKS**
Subarnarekha Chambers
Bhauma Nagar
Bhubaneswar -751 001

First Edition
2005

Type Setting
**Spectrum Printers**
71A, Forest Park
Bhubaneswar-751009

Printed at
**Duduli Process & Offset**
Bapuji Nagar, Bhubaneswar

Rupees Two Hundred Twentyfive only

ISBN - 81-7375-131-5

# ମୁଖବନ୍ଧ

'ସହକାର' ମାସିକ ପତ୍ରିକାରେ 'ଜୀବନର ଛାପ' ନାମ ଦେଇ ଡାକ୍ତର ଦାସ ବତିଶଟି ଲେଖାରେ ନିଜର ସତୁରୀ ବର୍ଷର ସ୍ମୃତି ମନ୍ଥନ କରିଛନ୍ତି । ସେଥିରେ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱ ସାମାଜିକ ଇତିହାସର ଅବତାରଣା କରାଯାଇଛି ।

ଐତିହାସିକ ଓ ସମାଲୋଚକଙ୍କ ମତ ଯେ, ଗୋଟିଏ ଜୀବନ ଚରିତରେ ସମସାମୟିକ, ସାମାଜିକ, ରାଜନୈତିକ ଓ ଜାତୀୟ ଚରିତ୍ରମାନ ପ୍ରତିଫଳିତ ହୋଇଥାଏ । ପ୍ରସିଦ୍ଧ କବି ଗେଟେଙ୍କ ମତରେ, ଆତ୍ମଚରିତ ମାନବ ସଭ୍ୟତାର ଚିନ୍ତା ଓ ଚେତନାକୁ ଉନ୍ନତ କରିବାରେ ସହାୟକ ହୁଏ ।

ଆତ୍ମଜୀବନୀ, ଲେଖକଙ୍କ ଜୀବନର ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାବଳୀର କଳାତ୍ମକ ପରିପ୍ରକାଶ । ସେ ସମୟର ଅର୍ଥାତ୍ ଦୀର୍ଘ ସତୁରୀ ବର୍ଷର ସାମାଜିକ, ଐତିହାସିକ, ରାଜନୈତିକ ଓ ସାଂସ୍କୃତିକ ଘଟଣାବଳୀ ଏଥିରେ ବିକ୍ଷିପ୍ତ ରୂପାନ୍ତରିତ ହୋଇଛି । ହିଟଲରଙ୍କ 'Main Kampf',ଚର୍ଚ୍ଚିଲଙ୍କର 'War Memoirs', ମହାତ୍ମା ଗାନ୍ଧିଙ୍କର 'My Experiments with Truth', ପଣ୍ଡିତ ଜହରଲାଲ ନେହେରୁଙ୍କ 'Autobiography' ଗୋଟିଏ ଗୋଟିଏ ଯୁଗର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦୀର୍ଘ ସତୁରୀ ବର୍ଷର ଅଭିଜ୍ଞତା ବିକ୍ରମବାବୁ ଏଥିରେ ଉପସ୍ଥାପନା କରିଛନ୍ତି । ପିଲାଦିନର ଗାଁରେ ପାଠପଢ଼ା, ମାଇନର ସ୍କୁଲ ଘଟଣାବଳୀ, କଲେଜ ପାଠ ପଢ଼ା, କଲିକତାରେ କିଛି ଦିନର ଛାତ୍ରଜୀବନ, ମେଡିକାଲ କଲେଜର ଛାତ୍ର ଜୀବନ ଓ ସୁଦୂର ଆମେରିକାର ଛାତ୍ର ଜୀବନ ଆଦି ବିଷୟରେ ବର୍ଣ୍ଣନା କରିଛନ୍ତି । ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସଙ୍କର ପୁତ୍ର ଓ ସ୍ୱର୍ଗତ ବିପ୍ଳବୀ ଅଶୋକ ଦାସଙ୍କ ଭାଇ ହୋଇଥିବାରୁ ସେ ବହୁ ଅଭିଜ୍ଞତା ଅର୍ଜନ କରିଛନ୍ତି । ବହୁ ଦେଶପ୍ରେମୀ ବିପ୍ଳବୀଙ୍କ ସଂସ୍ପର୍ଶରେ ଆସିଛନ୍ତି ।

ସେତେବେଳର ଛାତ୍ର ଅଶାନ୍ତିରେ ସେ ଭାଗ ନେଇଛନ୍ତି । ୧୯୩୯ ମସିହାରେ ପ୍ରଥମ ଛାତ୍ର ସତ୍ୟାଗ୍ରହ ବେଳେ ସେ ସତ୍ୟାଗ୍ରହୀ ଭାବରେ କାରାବରଣ କରିଛନ୍ତି । ଏଥିପାଇଁ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟିଛି, ତଥାପି ସେ ଦବି ଯାଇନାହାନ୍ତି ।

ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛନ୍ତି ସେ । ତାଙ୍କ ଓଡିଶା ଯାତ୍ରାରେ ଭାଗ ନେଇଛନ୍ତି । ସେହି ସମୟରେ ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଶିବାର ସୁଯୋଗ ମଧ ପାଇଛନ୍ତି । ଗ୍ରାମସବୁ ବୁଲି ଲୋକଙ୍କ ଭିତରେ ସୁଭାଷଙ୍କ ମତ ପ୍ରଚାର କଲାବେଳେ, ଚିଲିକା ନିକଟସ୍ଥ ଗ୍ରାମବାସୀଙ୍କର ଦୁଃଖଦୁର୍ଦ୍ଦଶାରେ ସେ ବ୍ୟଥିତ ହୋଇଛନ୍ତି । ଗ୍ରାମ୍ୟ ଜୀବନର ଏକ ନିଖୁଣ ଚିତ୍ର ଏଥିରେ ଦେଇଛନ୍ତି । ଏହିସବୁ କାର୍ଯ୍ୟରେ ବ୍ୟସ୍ତ ରହି ସେ ବାଧ ହୋଇ କିଛି ଦିନ ପାଠ ପଢ଼ା ବନ୍ଦ କରିଛନ୍ତି ।

ପାଠପଢ଼ାରୁ କିଛି ଦିନ ବିରତି ପରେ ସେ ପୁନଶ୍ଚ ପାଠ ପଢ଼ା ଆରମ୍ଭ କରିଛନ୍ତି । ସତ୍ୟବାଦୀ ଆଦର୍ଶ ବନବିଦ୍ୟାଳୟରେ ପାଠ ପଢ଼ିବାର ସୁଯୋଗ ପାଇଛନ୍ତି । ସେତେବେଳେ ସେଠାରେ ପୂର୍ବତନ ବନ ବିଦ୍ୟାଳୟର ନିଃସ୍ୱାର୍ଥପର ଛାତ୍ରମାନଙ୍କୁ ଶିକ୍ଷକ ଭାବରେ ପାଇ ସେମାନଙ୍କ ସମ୍ପର୍କରେ ଆସିବାର ସୁବିଧା ପାଇଛନ୍ତି । ସେହି ବନ ବିଦ୍ୟାଳୟରେ ଚରିତ୍ର ଗଠନ, 'Simple Living' ଓ High Thinking ଉପରେ ବିଶେଷ ଦୃଷ୍ଟି ଦିଆଯାଉଥିଲା ।

ସେ ମଝିରେ ମଝିରେ ପିତା ନୀଳକଣ୍ଠଙ୍କ ସଙ୍ଗେ ଦିଲ୍ଲୀ, ବମ୍ବେ ପ୍ରଭୃତି ସ୍ଥାନକୁ ଯାଇ ଭାରତର ଅନେକ ନେତାମାନଙ୍କର ସମ୍ପର୍କରେ ଆସିଥିଲେ ଓ ସେହି ଦେଶପ୍ରେମୀ ନେତାଙ୍କ ସଙ୍ଗେ ସମ୍ପର୍କ ରଖିବାର ସୁଯୋଗ ପାଇଥିଲେ । ଏ ସୁଯୋଗ କେତେଜଣଙ୍କୁ ମିଳେ ?

କଟକ ରେଭେନ୍ସା କଲେଜରେ I.Sc ; ଦ୍ୱିତୀୟ ଶ୍ରେଣୀରେ ପଢୁଥିଲାବେଳେ ୧୯୪୨ ମସିହାର ଭାରତ ଛାଡ ଆନ୍ଦୋଳନରେ ସେ ଭାଗ ନେଇଛନ୍ତି । ରେଭେନ୍ସା କଲେଜରୁ ଏକ ଛାତ୍ର ଶୋଭାଯାତ୍ରା ବାହାରି କଟକ ମେଡିକାଲ ସ୍କୁଲ ହତାରେ ପହଞ୍ଚିବା ସମୟରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଛାତ୍ରମାନଙ୍କ ଉପରେ ହୋଇଥିବା ଦମନଲୀଳାର ଏକ ଜୀବନ୍ତ ବିବରଣୀ ସେ ତାଙ୍କ ଲେଖାରେ ଦେଇଛନ୍ତି । ସେଠାରେ ଛାତ୍ରମାନଙ୍କୁ ଭୀଷଣ ମାଡ ହେବା କଥା ସେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ମୁଖବନ୍ଧ ଲେଖକ ଜଣେ ସହପାଠୀ ଭାବେ ବିକ୍ରମବାବୁଙ୍କ ସହିତ ସେହି ଶୋଭାଯାତ୍ରାରେ ଯୋଗ

ଦେଇଥିଲା । ଏବେ ମଧ୍ୟ ଲେଖକଙ୍କର ଗୋଡରେ ସେ ମାଡର ଚିହ୍ନ ରହିଛି । ସେହି ସମୟର ରେଭେନ୍ସା କଲେଜର ଅବସ୍ଥା ଓ ଆତଙ୍କବାଦ ବିଷୟରେ ବିକ୍ରମବାବୁ ପ୍ରାଞ୍ଜଳ ଭାବରେ ଲେଖିଛନ୍ତି । ସେତେବେଳେ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡିଛି । ତାଙ୍କ ପାଠ ପଢାରେ ବାଧା ପଡିଛି ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ କିପରି ବ୍ରିଟିଶ ଓ ତାଙ୍କ ସହଯୋଗୀ ରାଷ୍ଟ୍ରମାନଙ୍କର ପରାଜୟର ସମ୍ଭାବନା ଦେଖାଯାଇଥିଲା, ସେ କଥା ବର୍ଣ୍ଣନା କରିବାକୁ ସେ ଭୁଲି ନାହାନ୍ତି ।

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାରୁ ଓ ବିପ୍ଳବୀ ସୁଭାଷପନ୍ଥୀ ଥିବାରୁ ବ୍ରିଟିଶ ପୋଲିସ ତାଙ୍କ ଉପରେ କଡା ନଜର ରଖିଥିଲେ ମଧ୍ୟ ତାଙ୍କୁ ବନ୍ଦୀ କରିପାରି ନଥିଲେ । ଦୁଇ ବର୍ଷ ପାଠରେ ବ୍ୟାଘାତ ଘଟିଲେ ମଧ୍ୟ ସେ ଦବିଯାଇ ନ ଥିଲେ । ୧୯୪୪ରେ ଗୁପ୍ତରେ କଟକରୁ (ଉତ୍କଳ ବିଶ୍ୱବିଦ୍ୟାଳୟରୁ) ମାଇଗ୍ରେସନ ସାର୍ଟିଫିକେଟ ନେଇ କଲିକତାର ଜାତୀୟବାଦୀ ଅନୁଷ୍ଠାନ ବଙ୍ଗବାସୀ କଲେଜରେ ନାମ ଲେଖାଇ ସେଠାରୁ କୃତିତ୍ୱର ସହିତ I.Sc. ପାଶ୍ କରିଛନ୍ତି ।

୧୯୪୫ ବେଳକୁ ପାଶ୍ଚାତ୍ୟ ରାଜନୀତିରେ ବହୁ ପରିବର୍ତ୍ତନ ଘଟିଲା । ଭାରତରେ ମଧ୍ୟ ବ୍ରିଟିଶ୍ ଶାସକମାନେ କୋହଳନୀତି ଧରିଲେ । ସେହି ସମୟରେ ସେ କଟକ ମେଡିକାଲ କଲେଜରେ ନାମ ଲେଖାଇ ପାରିଲେ । ସୁଭାଷଙ୍କ ଜାତୀୟ ବାହିନୀର ପରାଜୟ ଓ ଦିଲ୍ଲୀରେ ବିଚାର ବେଳେ ସେ 'ଜାତୀୟ ବାହିନୀ'ର ଇତିହାସ ଲେଖି ସେହି ବନ୍ଦୀମାନଙ୍କ ସାହାଯ୍ୟ ପାଇଁ ଦାନ କରିବାକୁ ଆହ୍ୱାନ ଦେଇଥିଲେ । କଟକ ମେଡିକାଲ କଲେଜରେ ପଢୁଥିଲାବେଳେ ସେ ''ଶେଷ ରାଶି ଫଳ'' ନାମକ ଦାର୍ଶନିକ କବିତାଟି ଲେଖିଛନ୍ତି । ଗୋଟିଏ କଙ୍କାଳକୁ ଚାହିଁ ଲେଖିଥିବା ସେହି କବିତାରୁ ତାଙ୍କ ଦରଦୀ କବି ହୃଦୟର ଆଭାସ ମିଳେ ।

୧୯୪୭ ଜୁନ୍ ୨୮ରେ ସେ ବିବାହ କରିଥିଲେ । ୧୯୪୭ ଅଗଷ୍ଟ ପନ୍ଦରରେ ଭାରତ ସ୍ୱାଧୀନ ହେଲା । ଦେଶ ସ୍ୱାଧୀନ ହେବାର ପୂର୍ବରୁ ନେତାମାନେ ବଦଳିବାକୁ ଲାଗିଲେ । ଇଜ୍ଜତ ଆ ରାଜନୀତି, କ୍ଷମତା ରାଜନୀତିରେ ପରିଣତ ହେଲା । ଅଧିକାଂଶ ନେତାଙ୍କର କ୍ଷମତା ଲିପ୍ସା ବଢିଲା । ଖଦଡ ପୋଷାକ ପିନ୍ଧି ସୁବିଧାବାଦୀ ନେତାମାନେ ଦେଶ ସେବା ନାଁରେ ଦେଶକୁ ଶୋଷଣ କରିବାକୁ ତତ୍ପର ହେଲେ । ଏଥିପାଇଁ ସେ ଦୁଃଖିତ ହୋଇ, ଶୈଶବରୁ ପିନ୍ଧି ଆସୁଥିବା ଖଦଡ ଲୁଗା, ଯାହାକୁ ସେ ରାଜନୈତିକ

ସୈନିକର ପୋଷାକ ଭାବରେ ପରିଧାନ କରି ଆସୁଥିଲେ, ତାକୁ ତ୍ୟାଗ କଲେ ଓ କ୍ଷମତା ରାଜନୀତିରୁ ଦୂରେଇ ରହିଲେ ।

ସେହି ସମୟରେ 'ନବ ଭାରତ' ମାସିକ ପତ୍ରିକାର ସ୍ୱାଧୀନତା ସଂଖ୍ୟାରେ ଭବିଷ୍ୟତ ବଂଶଧରଙ୍କ ପାଇଁ 'ସମାପ୍ତ ନୁହେଁ ତବ କାହାଣୀ' ନାମକ ଏକ ମର୍ମସ୍ପର୍ଶୀ କବିତା ସେ ଲେଖିଥିଲେ ।

ତା'ପରେ ସେ ପୂର୍ଣ୍ଣ ପ୍ରାଣରେ ଚିକିତ୍ସା ଶାସ୍ତ୍ର ଓ ରୋଗୀ ସେବାରେ ମନୋନିବେଶ କଲେ । ସେ ମେଡିକାଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ କଲେରା ୱାର୍ଡ (ଆଠ ଦଶଟି ବେଡ)ର ତତ୍ତ୍ୱାବଧାରକ (House Physician) ଥିବା ବେଳେ 'ରନ୍ତଲେଇ' ବିଭ୍ରାଟ ଘଟିଥିଲା । ଲୋକଙ୍କ ମତାନ୍ଧତା ଓ ସରକାରଙ୍କ ଉଦାସୀନତା ଯୋଗୁଁ ଅନୁଗୁଳ ନିକଟସ୍ଥ ରନ୍ତଲେଇରୁ ସହସ୍ରାଧିକ ଲୋକ ହଇଜା ରୋଗରେ ଆକ୍ରାନ୍ତ ହୋଇ କିପରି ତାଙ୍କ କଲେରା ୱାର୍ଡକୁ ବୁହାହୋଇ ଆସିଲେ, ସେସବୁର ହୃଦୟସ୍ପର୍ଶୀ କାହାଣୀ ସେ ବର୍ଣ୍ଣନା କରିଛନ୍ତି ।

ମେଡିକାଲ କଲେଜରୁ ତାଲିମ ନେବା ପରେ ସେ ଉଚ୍ଚତର ଶିକ୍ଷା ପାଇଁ ମନୋନୀତ ହୋଇ ଆମେରିକା ଯାତ୍ରା କରିଥିଲେ । ବିକ୍ରମ ବାବୁ ଆମେରିକା ଯାଇ ତତ୍କାଳୀନ ଲୋକ ଚରିତ୍ର ବିଷୟ ବର୍ଣ୍ଣନା କରିଛନ୍ତି । ସେଠାର ସାଧାରଣ ଲୋକ ସ୍ୱାର୍ଥପର ହେଲେ ମଧ କେବେ ଅସାଧୁ ନ ଥିଲେ । ସେମାନଙ୍କ ଭିତରୁ ବହୁ ବଡ ବୈଜ୍ଞାନିକ ଓ ମାନବବାଦୀଙ୍କ ସମ୍ପର୍କରେ ଆସିବାର ମଧ ସେ ସୁଯୋଗ ପାଇଥିଲେ ।

ଉଚ୍ଚ ଶିକ୍ଷା ପାଇ ସାରି ଆମେରିକାରୁ ସ୍ନାତକୋତ୍ତର ଡିଗ୍ରୀ ସହିତ ଫେରି ଆସିବା ବେଳକୁ ତାଙ୍କ ପିତା ନୀଳକଣ୍ଠ ଅସୁସ୍ଥ ଥିଲେ । ସେ ତାଙ୍କର ସେବା କରିବା ସଙ୍ଗେ ସଙ୍ଗେ କଟକ ବିନୋଦ ବିହାରୀରେ ଥିବା ତାଙ୍କ ପୁରାତନ କ୍ଲିନିକରେ କିଛିଦିନ ରୋଗୀ ଚିକିତ୍ସା ଆରମ୍ଭ କରିଥିଲେ । ସେତେବେଳେ କ୍ଷମତା ରାଜନୀତିରେ ଯୋଗ ଦେବା ପାଇଁ ତାଙ୍କୁ ଆହ୍ୱାନ ଆସିଥିଲା, କିନ୍ତୁ ସେ ତାହା ପ୍ରତ୍ୟାଖ୍ୟାନ କରି ଡାକ୍ତରୀ ଶିକ୍ଷାରେ ଛାତ୍ରମାନଙ୍କୁ ତାଲିମ କରିବା ପାଇଁ କଟକ ମେଡିକାଲ କଲେଜରେ ଶିକ୍ଷକ ଭାବରେ ଯୋଗ ଦେଇଥିଲେ । ଡାକ୍ତରୀ ଶିକ୍ଷାଦାନ ସଙ୍ଗେ ସଙ୍ଗେ ସେ ନାନା ପ୍ରକାର ରୋଗୀଙ୍କ ଚିକିତ୍ସା କରି ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି । ସେ ଜଣେ ସଚ୍ଚୋଟ ଚିକିତ୍ସକ ଭାବେ ପରିଚିତ ଓ ପ୍ରଶଂସିତ ହେଲେ ।

କିଛି ବର୍ଷ ପରେ ୧୯୬୭ରେ ପିତାଙ୍କ ତିରୋଧାନ ଘଟିବାରୁ ସେ କଟକ ଛାଡିଲେ । ପରେ ପରେ ନୂତନ ବ୍ରହ୍ମପୁର ମେଡିକାଲ କଲେଜର ପାଥୋଲଜି ବିଭାଗର ପ୍ରଥମ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ଭାବେ ଯୋଗ ଦେଇ ସେ ବିଭାଗର ଉନ୍ନତି ସାଧନ କରି ସୁନାମ ଅର୍ଜନ କରିଥିଲେ ।

ସେ ଛାତ୍ର ଜୀବନରୁ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ । କବିତା, ଭ୍ରମଣ କାହାଣୀ, ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ରମ୍ୟରଚନା, ଜୀବନୀ, ଐତିହାସିକ ନିବନ୍ଧ ଓ ବିଜ୍ଞାନ ସମ୍ପର୍କିତ ବହୁ ପୁସ୍ତକ ସେ ରଚନା କରିଅଛନ୍ତି । ତାଙ୍କ ପରି ଜଣେ ସୁଚିକିତ୍ସକ ଓ ଡାକ୍ତରୀ ବିଦ୍ୟାର ଶିକ୍ଷକ କର୍ମମୟ ଜୀବନ ଓ ଅବସର ଗ୍ରହଣ ପରେ ଯେ ଏପରି ସୁଲେଖକ ହେବେ ତାହା କଳ୍ପନାର ବାହାରେ । ଖୁବ୍ କମ୍ ଚିକିତ୍ସକ ଏପରି ସୁନାମ ଅର୍ଜନ କରିଛନ୍ତି ।

ତାଙ୍କ ସାହିତ୍ୟିକ ଜୀବନ କୌତୁହଳପୂର୍ଣ୍ଣ । ସେ ପୂର୍ବରୁ ସାମୟିକ ଭାବରେ ଆଲୋଚନା, ଗଳ୍ପ ଓ କବିତା ରଚନା କରୁଥିଲେ । ପ୍ରଥମେ ତାଙ୍କର ରସାତ୍ମକ ଗଳ୍ପ ପୁସ୍ତକ ‘‘ସାତ ତିରିକ୍ ସତର’’ ଆତ୍ମ ପ୍ରକାଶ କଲା । ତା’ ପରେ ପରେ ସେ ବହୁ ପୁସ୍ତକର ରଚୟିତା ହୋଇ ଉତ୍କଳର ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ଏ ପର୍ଯ୍ୟନ୍ତ ତାଙ୍କ ରଚନା ବନ୍ଦ ହୋଇନାହିଁ । ଉପାଦେୟ ପୁସ୍ତକ ଲେଖିବା ତାଙ୍କର ଏକ ନିଶାରେ ପରିଣତ ହୋଇଛି । ତାଙ୍କର ବହୁ ଅପ୍ରକାଶିତ ପାଣ୍ଡୁଲିପି ମଧ୍ୟ ଏ ପର୍ଯ୍ୟନ୍ତ ପଡିରହିଛି ।

ସେ ଲେଖିଛନ୍ତି ଯେ ଲେଖକର ଆତ୍ମସନ୍ତୋଷ ହେଲା, ଯଦି କେହି ତା’ର ଲେଖା ପଢି ସେ ବିଷୟରେ ଦୁଇପଦ କହେ ବା ଲେଖେ । ତାହାହିଁ ଯଥେଷ୍ଟ । ସେଥିପାଇଁ ସେ ପଣ୍ଡିତ ନୀଳକଣ୍ଠଙ୍କ ‘କୋଣାର୍କେ’ କାବ୍ୟରେ ଲେଖାଥିବା ଉକ୍ତିର ଉଲ୍ଲେଖ କରିଛନ୍ତି ।

‘‘ଗ୍ରାହକତା ସିନା କବି ସ୍ୱର୍ଗ ସୁଖ
ଆନ ମୂଲେ କବି ତୋଷଇ କେହି ।

ଡାକ୍ତର ବିକ୍ରମ ଦାସ ତାଙ୍କର ଐତିହାସିକ ତଥ୍ୟମାନଙ୍କ ସହିତ ସେ କାଳର ଗତି ଓ ରୀତି ବିଷୟରେ ବହୁ ସ୍ମୃତି ଚାରଣ କରିଛନ୍ତି । ବଳଦ ଗାଡିରୁ କ୍ରମେ ଆମେ କିପରି ମଟର ଗାଡି ଚଢିଲୁ, ସେହି କ୍ରମ ବିବର୍ତ୍ତନର ବିଷୟ ମଧ୍ୟ ସେ ଲେଖିଛନ୍ତି । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଆମ ରାଜ୍ୟରେ ସାଇକେଲ, ମୋଟର ଗାଡି,

ବସ୍, ଟ୍ରକ ପ୍ରଭୃତି ଯାନମାନଙ୍କର ଯେପରି ପ୍ରଭୂତ ପ୍ରଚଳନ ହୋଇଛି, ପ୍ରଥମାର୍ଦ୍ଧରେ ତାହା ନ ଥିଲା ।

ଭାରତ ଓ ଭାରତ ବାହାରେ ବହୁ ସ୍ଥାନ ପରିଭ୍ରମଣ କରି ସେ ବହୁ ଅଭିଜ୍ଞତା ଅର୍ଜନ କରିଛନ୍ତି ଓ ଲେଖା ମାଧ୍ୟମରେ ତାହା ପ୍ରକାଶ କରିଅଛନ୍ତି ।

ମୋଟ ଉପରେ ଏହି ଆତ୍ମଜୀବନୀର ଘଟଣାବଳୀକୁ ସତୁରୀ ବର୍ଷର ଏକ ସୂଚନାତ୍ମକ ଇତିହାସ କୁହାଯାଇପାରେ । ବହୁ କଥା ଏଥିରୁ ଜାଣି ହୁଏ । ଏହା ଏକ ଭିନ୍ନ ସ୍ୱାଦର ଆତ୍ମଜୀବନୀ । ଏହାକୁ ଥରେ ପଢ଼ିବା ଆରମ୍ଭ କଲେ ସବୁ ନ ପଢ଼ି ରହି ହୁଏ ନାହିଁ । ଏହି ଜ୍ଞାନଦୀପ୍ତ ବିବରଣୀ ପାଠ କରି ମୁଁ ଆନନ୍ଦରେ ବିଭୋର ହୋଇ ପଡ଼ିଥିଲି । ପାଠକ ପାଠିକାଙ୍କ ଜାଣିବା ପାଇଁ ତାହାର ସଂକ୍ଷିପ୍ତ ସୂଚନା ମାତ୍ର ପ୍ରଦାନ କଲି । ତାଙ୍କ ଲେଖନୀରେ ପୁଷ୍ପ ବୃଷ୍ଟି ହେଉ, ଏହାହିଁ କାମନା କରୁଛି ।

ବଙ୍ଗାଳି ସାହି
କଟକ

ଡକ୍ଟର ହରିହର ପଟ୍ଟନାୟକ
ପୂର୍ବତନ କୁଳପତି
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

# ସୂଚୀ

# ବାଲ୍ୟ ସ୍ମୃତି

**ବାଲ୍ୟଶିକ୍ଷା :**

ମୋର ଜନ୍ମ ୧୯୨୧ରେ ଜାତୀୟ ଆନ୍ଦୋଳନର ଘନଘଟା ଭିତରେ । ମୋର ପିତା ପଣ୍ଡିତ ନୀଳକଣ୍ଠ ଥିଲେ ସେହି ଆନ୍ଦୋଳନର ଓଡ଼ିଶାରେ ଜଣେ କର୍ଣ୍ଣଧାର । ସେ କଲିକତା ବିଶ୍ୱବିଦ୍ୟାଳୟର ସମ୍ମାନିତ ଅଧ୍ୟାପକ ପଦକୁ ଜଳାଞ୍ଜଳି ଦେଇ ପଶ୍ଚିମ ଓଡ଼ିଶାର କଂଗ୍ରେସ ଆନ୍ଦୋଳନର ଦାୟିତ୍ୱ ନେଇ ସମ୍ବଲପୁରରେ ରହୁଥିଲେ । ତା'ପରେ ସେ ଆନ୍ଦୋଳନ ଯୋଗୁଁ ତାଙ୍କୁ ବହୁବାର କାରାବରଣ କରିବାକୁ ପଡ଼ିଥିଲା । ଆମର ବା ଆମ ପଢ଼ାପଢ଼ିର ତତ୍ତ୍ୱ ନେବାକୁ ତାଙ୍କୁ ସମୟ ନ ଥିଲା ।

ମୋତେ ସାତ ବର୍ଷ ହେବା ପର୍ଯ୍ୟନ୍ତ ମୋ ଜେଜେ ବାପା ଆନନ୍ଦ ଦାସ ମୋର ତତ୍ତ୍ୱ ନେଉଥିଲେ । ସେ ୧୯୨୮ରେ ୮୯ ବର୍ଷ ବୟସରେ ଇହଧାମ ତ୍ୟାଗ କରିବା ପର୍ଯ୍ୟନ୍ତ ମୋ ଶିକ୍ଷାର ତତ୍ତ୍ୱ ନେଇ ଗାଁ ଚାଟଶାଳୀରେ ମୋର ନାମ ଲେଖାଇ ଦେଇଥିଲେ । ଆମ ଗ୍ରାମ ମଝିରେ ଥିବା ପୁରାଣ ମଣ୍ଡପରେ ମାଟିବଂଶ ଅବଧାନେ ବୃଦ୍ଧ ଶ୍ରୀ ଭିକାରୀ ମହାନ୍ତି ଚାଟଶାଳୀଟିଏ ବସାଇ ଥିଲେ । ସେ ଗ୍ରାମ କୋଠରେ ବେବର୍ତ୍ତା ବା ତତ୍ତ୍ୱାବଧାରକ କାମ ମଧ୍ୟ କରୁଥିବାରୁ ଆମେ ତାଙ୍କୁ ବେବର୍ତ୍ତେ ବୋଲି ସମ୍ବୋଧନ କରୁଥିଲୁ ।

ସେହି ବୃଦ୍ଧ ଅବଧାନେ ସାବନା ବର୍ଣ୍ଣର ଦୀର୍ଘକାୟ ପୁରୁଷ ଥିଲେ । ସେ ହାର୍ଣ୍ଣିଆ ବା ଅନ୍ତକୋଷ ବେମାରୀ ଭୋଗ କରୁଥିବାରୁ ଟିକିଏ ଚିଡ଼ା ଓ ବଦ୍‌ରାଗୀ ହୋଇଯାଇଥିଲେ । କଥା କଥାକେ ଚାଟମାନଙ୍କ ଉପରେ ତାଙ୍କ ହାତ ବା ବେତ ଉଠି ଯାଉଥିଲା । ତାଙ୍କର ମାସିକ ସ୍କୁଲ ଦରମା ବୋଲି କିଛି ନ ଥିଲା । ସେ ଚାଟ ମାନଙ୍କ ଘରେ ପାଳି କରି ଦିନକେ ବକ୍ତେ ମାତ୍ର ଖାଉଥିଲେ । ସେ ଆମ ଗାଁ ହାଟ ସାହିରେ ଘର କରି ରହିଥିଲେ ।

ଯେଉଁ ଚାଟର ଯେଉଁଦିନ ପାଳି ପଡ଼େ ଚାଟଶାଳୀ ବନ୍ଦ ହେବା ପରେ ସେ ତା ଘରୁ ତେଲ ନେଇ ଦେହରେ ଲଗାଇ ରତ୍ନଚିରା ନଦୀକୁ ଗାଧୋଇ ଯାଆନ୍ତି । ଗାଧୋଇ ସାରି ଭୋଜନ ପାଇଁ ପତ୍ର ପକାଇ ଚାଟର ଦାଣ୍ଡଘରେ ବସିଯାଆନ୍ତି । ସେ ପତରରେ କଟକୀ ତଉଲେ ବା ପ୍ରାୟ ଦେଢ଼କିଲୋ ଚାଉଳର ଭାତ ବଢ଼ାଯାଇ ତାହା ହିମାଳୟର ଧବଳ ବରଫାବୃତ ଶୃଙ୍ଗ ପରି ଦିଶୁଥାଏ । ସେ ଭାତ ସଙ୍ଗେ ଡ଼ାଲି ତରକାରୀ ଥାଉ ନ ଥାଉ, ମାଛ ବା ଶୁଖୁଆ ଟିକିଏ ଓ କଞ୍ଚାଲଙ୍କା ଲୁଣ ଥିଲେ ତାହା ତୃପ୍ତିରେ ଭୋଜନ କରି ପାରନ୍ତି । ଦିନକେ ଥରେ ମାତ୍ର ଭୋଜନ କରନ୍ତି ।

ଥରେ ମୋର ପିତା ଆସି ଦାଣ୍ଡପିଣ୍ଡାରେ ବସିଥିବାବେଳେ ଅବଧାନଙ୍କ ପାଇଁ ଦାଣ୍ଡଘରେ ଆମ ପୂଜାରୀ ଲୋକ ଭାଇନା ଭାତ ବାଢ଼ିଦେଇ 'ଓଃ ଏ ପତରରେ ବିରାଡ଼ି ଡେଇଁ ପାରିବ ନାହିଁ' ବୋଲି ଧୀରେ କହି ଭିତରକୁ ପଳାଇଗଲା । ମୁଁ ତାହା ଶୁଣି ପିଣ୍ଡାକୁ ଯାଇ ବଡ଼ପାଟିରେ ସେ କଥା ଖୁସିରେ ପିତାଙ୍କୁ କହିଲି । ପିତା ସେ କଥା ଶୁଣିବା ମାତ୍ରେ ଅବଧାନେ ଖରାପ ବିଚାରି ପାରନ୍ତି ଭାବି ମୋତେ କହିଲେ- 'ବାପା ଏପରି କହନ୍ତି ନାହିଁ । ତୁ କିଛି ଖାଉନାହୁଁ ବୋଲି ଏପରି ଧଡ଼ିଆ ହୋଇଛୁ । ଯେ ଯେତେ ଖାଏ, ତାର ବଳ ଓ ବୁଦ୍ଧି ସେତିକି ବେଶି ହୁଏ ।'

ଆମେ ପିଲାଏ ଖଡ଼ି ଧରି ସ୍କୁଲକୁ ଯାଉ । ପୁରୁଣା ପଦ୍ଧତିରେ ଆମେ ଧାଡ଼ି ହୋଇ ଠିଆ ହୋଇ ହାତ ଦେଖାଉ । ଅବଧାନଙ୍କ ବେତ ବାଡ଼ି ସାହାଯ୍ୟରେ ଉପସ୍ଥାନ ନିଆଯାଏ । ଆମେ ଦୁଧ ଖଡ଼ି ଧରି ମାଟି ପିଣ୍ଡାଟାରେ ଗୋଲ ଗୋଲ ତିନୋଟି ମୁଣ୍ଡଳା ଉପରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବୋଲି ବଡ଼ ପାଟିରେ ଘୋଷି ପାଠ ଆରମ୍ଭ କରୁ । ଗଣେଶ ପୂଜା ଓ ସରସ୍ୱତୀ ପୂଜା ପ୍ରଭୃତି ଦିନରେ ଆମେ ଚାଟମାନେ ଗୋଟାଏ ଥାଳିରେ ନଡ଼ିଆ ଧରି 'ବନ୍ଦଇ ହରି ଦେବ ମୁରାରୀ ଲକ୍ଷ୍ମୀ ଦେବୀଙ୍କର କାନ୍ତ' ଗୀତଟି ଗାଇ ଗାଇ ଅବଧାନଙ୍କ ପଛରେ ଶୋଭାଯାତ୍ରା କରି ଆମ ଘରମାନଙ୍କୁ ଯାଉ । ସେ ଥାଳିରେ ଯେଉଁ ପଇସା ପଡ଼େ ଅବଧାନେ ତାକୁ ନେଇ ତାଙ୍କ ଲୁଗା ଗାମୁଛା କିଣନ୍ତି ।

ମୁଁ ସେ ଚାଟଶାଳୀରେ କିଛି କାଳ ପଢ଼ିବା ପରେ ପୁରୀ ଜିଲ୍ଲା ବୋର୍ଡ଼ ପକ୍ଷରୁ ଆମ ଗ୍ରାମରେ ବିଧିବଦ୍ଧ ଭାବରେ ଲୋଅର ପ୍ରାଇମେରୀ ସ୍କୁଲଟିଏ ବଡ଼ପୋଖରୀ ହୁଡ଼ା ଉପରେ ନୂଆ ଟିଣ ଘରଟିରେ ଆରମ୍ଭ ହେଲା । ସେ ସ୍କୁଲ ପ୍ରତିଷ୍ଠା ଦିନ ଡ଼ିଷ୍ଟ୍ରିକ୍ଟ ବୋର୍ଡ଼ ସଭାପତି ବନମାଳୀ ଦାସ ଆସିବେ ବୋଲି ତୋରଣ ମାନ ତିଆରି ହୋଇଥିଲା । ସଭାପତି ଆସିଲେ, ସଭାଟିଏ ହେଲା । ଆମେ ଚାଟଶାଳୀ ପିଲାମାନେ ଅବଧାନଙ୍କ ଗହଣରେ ସେ ସଭାକୁ ନିଆ ହୋଇଥିଲୁ । ସଭାପତି ଆମକୁ ଜଣ ଜଣ କରି ଡାକି ଟେଳାଏ ଲେଖା ମହନ ଭୋଗ ଦେଇ ଆମ ଚାଟଶାଳୀ ଲୋଅର ପ୍ରାଇମେରୀ ସ୍କୁଲରେ ମିଶିଗଲା ଓ ଆମେ ସେଠାରେ ନାମ ଲେଖାଇ ପଢ଼ିବୁ ବୋଲି ଆମକୁ ଜଣାଇଦେଲେ । ଆମେ ଅବଧାନଙ୍କ ଦୌରାତ୍ମ୍ୟରୁ ରକ୍ଷାପାଇବୁ ବୋଲି ମନେ ମନେ ଖୁସି ହେଲୁ । କିନ୍ତୁ ବେତନ ପାଉନଥିବା ଅବଧାନେ ମାସିକ ଚାରିଟଙ୍କା ବେତନ ପାଇ ପିଲାଙ୍କ ତତ୍ତ୍ୱାବଧାରକ ରୂପେ ମଧ ସେ ସ୍କୁଲରେ ନିଯୁକ୍ତି ପାଇସାରିଥିଲେ । ସବୁଦିନ ସକାଳୁ ଘର ଘର ବୁଲି ଛାତ୍ରମାନଙ୍କୁ ଘରୁ ସ୍କୁଲକୁ ଡ଼ାକିନେବା ତାଙ୍କ କାର୍ଯ୍ୟ ହେଲା । ତାଙ୍କର ପାଳି ଖାଇବା ମଧ କେତେକାଂଶରେ ସୀମିତ ହୋଇଗଲା ।

ଜଣେ ସ୍ୱାଧୀନ ସ୍ୱେଚ୍ଛାଚାରୀ ଗୁରୁ ପକ୍ଷରେ ସେପରି ଜଗୁଆଳୀ କାର୍ଯ୍ୟ କରିବା ସହଜ ସାଧ ନ ଥିଲେ ମଧ ମାସିକ ଚାରିଟଙ୍କା ବେତନ ପାଇବା ତାଙ୍କ ପକ୍ଷରେ କମ

ସୌଭାଗ୍ୟଜନକ ନ ଥିଲା । ଗ୍ରାମ ବେବର୍ତ୍ତା ପଦରୁ ମିଳୁଥିବା ଭତ୍ତା ଓ ଅନ୍ୟ ପ୍ରାପ୍ୟ ସାଙ୍ଗକୁ ସ୍କୁଲ ବେତନ, ଘର ଚଳାଇବାରେ ତାଙ୍କୁ ପ୍ରଭୂତ ସାହାଯ୍ୟ କଲା । ସେ ସବୁଦିନ ସକାଳେ ଆସି ମୋତେ ବିକରମ ବିକରମ ବୋଲି ଡାକ ପକାନ୍ତି । ଦିନେ ମୋର ଡେ଼ରି ହୋଇଯିବାରୁ ମୋତେ ବିକରମ ବାବୁ, ବିକରମ ବାବୁ ବୋଲି ଡ଼ାକ ପକାଇଲେ । ମୁଁ ଆସି ତାଙ୍କ ପଛେ ପଛେ ସ୍କୁଲକୁ ଚାଲିଲି । ଗୋଟିଏ ନିଛାଟିଆ ବଉଳ ଗଛ ମୂଳେ ମୋତେ ଠିଆ କରାଇ ମୋ ଆଡ଼କୁ କଟମଟ  କରି ଚାହିଁ 'ହଇରେ ବୁଢ଼ାମୁଣ୍ଡା ତୁ ଏପରି ବାବୁ ହୋଇଗଲୁ ଯେ ମୋ ଡ଼ାକ ତତେ ଶୁଭୁନି' - ଏହା କହି ମୋ ମୁହଁକୁ ଚାପୁଡ଼ାଏ ପକାଇଲେ । ମୋ ନାକରୁ ଭସ୍ ଭସ୍ ରକ୍ତ ବୋହିଲା । ମୁଁ ସଙ୍ଗେ ସଙ୍ଗେ ଦଉଡ଼ି ସେଠାରୁ ଘରକୁ ଫେରି ଆସିଲି । ସେ ଗଛମୂଳେ ଥକ୍କା ହୋଇ କିଛି ସମୟ ଠିଆ ହେବା ପରେ ସ୍କୁଲକୁ ଯାଇ ହେଡ଼ପଣ୍ଡିତ ମଧୁସୂଦନ ହୋତାଙ୍କୁ ସବୁ କଥା ଜଣାଇଲେ । ସେ ଦିନ ମୋର ପିତା ଆସି ଗାଁରେ ପହଁଚିବା କଥା ହେଡ଼ପଣ୍ଡିତ ଜାଣିଥିଲେ । ପିଲା ପୁଅକୁ ମାଡ଼ ହୋଇ ନାକରୁ ରକ୍ତ ବୋହୁଥିବା କଥା ଜାଣିଲେ ତାଙ୍କ ପରି ଜଣେ ବିଖ୍ୟାତ ନେତା କଅଣ କରିବେ ଭାବି ସେ ପ୍ରଥମେ ବ୍ୟସ୍ତ ହୋଇପଡ଼ିଲେ । ପରେ ପରେ କ୍ଷମା ମାଗିବା ପାଇଁ ଅବଧାନଙ୍କୁ ସଙ୍ଗରେ ଧରି ଆମ ଘରକୁ ଆସିଲେ । ପିତା ସବୁ କଥା ଶୁଣି ଓ ଅବଧାନଙ୍କୁ ବରଡ଼ା ପତ୍ର ପରି ଥରୁଥିବାର ଦେଖି କହିଲେ 'ମୋ ପୁଅର ସର୍ଦ୍ଦିରୁ ନାକରୁ ରକ୍ତ ପଡ଼େ, ତୁମର ବ୍ୟସ୍ତ ହେବାର କିଛି କାରଣ ନାହିଁ । ତୁମର ମାଡ଼ ଦେଇ ଶାସନ କରି ପୁରୁଣା ରୀତିରେ ପାଠ ପଢ଼ାଇବା ଅଭ୍ୟାସରେ ପଡ଼ି ଯାଇଛି । ଏବେ ପିଲାଙ୍କୁ ଆଦର କରି ମନସ୍ତତ୍ତ୍ୱ ଅନୁସାରେ ପଢ଼ାଇବାର ନୂତନ ପ୍ରଥା ଆରମ୍ଭ ହୋଇଛି । ସ୍କୁଲରୁ ବେତ୍ରାଘାତ ଓ ମାଡ଼ ଉଠିଯାଇଛି । ତୁମକୁ ନୂଆ ପ୍ରଥା ସହିତ ତାଳ ଦେଇ ଚଳିବାକୁ ହୁଏତ କିଛି ସମୟ ଲାଗିବ, ସେଥିପାଇଁ ପ୍ରସ୍ତୁତ ହୁଅ ।' ପିତାଙ୍କ କଥା ଶୁଣି ଅବଧାନେ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି ସ୍କୁଲକୁ ଫେରିଲେ ଓ ସେହିଦିନଠାରୁ ଆମ୍ଭମାନଙ୍କୁ ଆଦର କରିବାକୁ ଲାଗିଲେ ।

ଆମ ନୂଆ ସ୍କୁଲରେ ହେଡ଼ ପଣ୍ଡିତ ବା ପ୍ରଧାନ ଶିକ୍ଷକ ଥିଲେ ମାଇନର ପାଶ୍‌କରା ଟ୍ରେନିଂପ୍ରାପ୍ତ ଶିକ୍ଷକ ଶ୍ରୀ ମଧୁସୂଦନ ହୋତା, ତାଙ୍କର ମାସିକ ଦରମା ଥିଲା ବାରଟଙ୍କା । ଦ୍ୱିତୀୟ ଶିକ୍ଷକ ଥିଲେ ଶ୍ରୀ ଦୟାନିଧି ମହାପାତ୍ର । ସେ ହେଡ଼ପଣ୍ଡିତଙ୍କ ଠାରୁ ବୟସ ଓ ଗ୍ରାମ୍ୟ ମାନ୍ୟ ଅନୁସାରେ ବଡ଼ ଥିବାରୁ ଆମେ ତାଙ୍କୁ ବଡ଼ ଆପଣେ ବୋଲି ଡାକୁଥିଲୁ । ତାଙ୍କ ମାସିକ ଦରମା ଛଅ କିମ୍ବା ଆଠ ଟଙ୍କା ଥିଲା । ସେ ମାଇନର ପାଶ କରି ନ ଥିଲେ ମଧ ଜଣେ ପ୍ରବୀଣ ଶିକ୍ଷକ ଥିଲେ ।

ସେତେବେଳେ ସରକାରୀ ନିର୍ଦ୍ଦେଶ ଅନୁସାରେ ସ୍କୁଲରୁ ମାଡ଼ ଓ ବେତ୍ରାଘାତ ପ୍ରଭୃତି କଠୋର ଦଣ୍ଡ ଉଠିଯିବାର ଆଦେଶ ଥିଲେ ମଧ ସ୍କୁଲରେ ବେତ ଧରି ମାଷ୍ଟ୍ରେ ପାଠ

ପଢ଼ାଉଥିଲେ । ସ୍କୁଲ ନିର୍ଦ୍ଦେଶକ ପ୍ରଭୃତିଙ୍କ ସ୍କୁଲ ପରିଦର୍ଶନ ଦିନ ଶିକ୍ଷକମାନେ ବେତକୁ ଲୁଚାଇ ଦେଉଥିଲେ । ଦ୍ୱିତୀୟ ଶିକ୍ଷକ ବଡ଼ କର୍ତ୍ତବ୍ୟନିଷ୍ଠ ଓ ଛାତ୍ରବତ୍ସଳ ମାନ୍ୟଗଣ୍ୟ ବ୍ୟକ୍ତି ଥିଲେ ମଧ୍ୟ ବେତ ନ ଧରିଲେ ପାଠ ପଢ଼ାଇ ପାରୁନଥିଲେ । ସେ ବେତର ବ୍ୟବହାର ଖୁବ କମ୍ ହୁଏ, କିନ୍ତୁ ତାହା କେବଳ ହଲା ହେବାରେ ପିଲାଏ ଭୟତ୍ରସ୍ତ ହୋଇଯାଆନ୍ତି । ବେତ ହଲାଇବା ସଙ୍ଗେ ତାଙ୍କର ଏକମାତ୍ର ଗାଳି ଥିଲା 'ପୁତୁଖାଇ ପୁଅ' (ତାର ଅର୍ଥ ହେଲା ତୁ ପୁଅ ଖାଇ ମାଆର ପୁଅ ଅର୍ଥାତ୍ ମୂର୍ଖାରଟାଏ) ।

ସ୍କୁଲକୁ ଇନସପେକ୍ଟର ବାବୁ ପରିଦର୍ଶନରେ ଆସିବାଦିନ ବେତ ଲୁଚାଯାଏ । ସେ ଗସ୍ତ ଖବର ଅବଶ୍ୟ ବେସରକାରୀ ଭାବରେ ଆସି ଶିକ୍ଷକଙ୍କ ପାଖରେ ପହଁଚି ଯାଇଥାଏ । ଆମ ସ୍କୁଲର ମୁହଁଟା ବଡ଼ ପୋଖରୀ ଆଡ଼କୁ, ପଛଟା ରାସ୍ତା ଆଡ଼କୁ ଥାଏ । ତେଣୁ ସେପରି ପରିଦର୍ଶନ ଦିନ ଗୋଟିଏ ଛାତ୍ରକୁ ସ୍କୁଲ ପଛରେ ଠିଆ କରାଇ ସେ ସମ୍ବାଦ ଗ୍ରହଣ କରାଯାଏ । ଦିନକର କଥା,ବାବୁ ଆସୁଥିବାର ଖବର ମିଳିଲା । ଦ୍ୱିତୀୟ ଶିକ୍ଷକ, ଆମ ସ୍କୁଲରେ ବର୍ଷ ବର୍ଷ ଧରି ଗୋଟାଏ ଶ୍ରେଣୀରେ ପଢୁଥିବା ଲୋକା ନାହାକ ନାମରେ ବଡ଼ ପିଲାଟିକୁ ସ୍କୁଲ ପଛପଟେ ଝରକା ତଳେ ଜଗିରହିବା ପାଇଁ ପଠାଇ ଦେଇ ବେତ ହଲାଇ ପାଠ ପଢ଼ାଇବାରେ ଲାଗିଥିଲେ । ଲୋକା ହଠାତ୍ ସ୍କୁଲ ପଛରୁ ଦଉଡ଼ି ଆସି କହିଲା 'ଆପଣେ କିଏ, ବାବୁ ଆସୁଛନ୍ତି ।' ବଡ଼ ଆପଣେ ତରତରରେ ବେତଟି ନେଇ ଆଲମାରୀ ପଛରେ ଲୁଚାଇ ଦେଇ ବାବୁଙ୍କୁ ପାଛୋଟି ଆଣିବା ପାଇଁ ସ୍କୁଲ ପଛକୁ ଚାଲିଆସିଲେ । ସେ ବାବୁଙ୍କୁ ନ ଦେଖି କାହାନ୍ତି ବୋଲି ପଚାରିବାରେ ଲୋକା କହିଲା ବୋଧେ ସିଆଡ଼େ ହେଇ ଚାଲି ଯାଉଛନ୍ତି । ଶିକ୍ଷକ ନିରୀକ୍ଷଣ କରି ଦେଖିଲେ କିଛି ଦୂରରେ ଗୋଟିଏ କଲିକତି ଚାକର ବାକ୍ସଟାଏ ମୁଣ୍ଡାଇଛି । ତା' ଦେହରୁ ତେଲ ଶିଶି ଦୁଇଟା ଓହଳିଛି, ସେ ମଇଳା ପେଣ୍ଟ ସାର୍ଟ ପିନ୍ଧିଛି । ସେ ଚିଡ଼ିଯାଇ ଲୋକାକୁ କହିଲେ ପୁତୁଖାଇ ପୁଅ, ଏଇଟା କ'ଣ ବାବୁ ? ଲୋକା କହିଲା, ଆପଣ କହିଥିଲେ ବାବୁ ପେଣ୍ଟେ ସାର୍ଟ ପିନ୍ଧିଥିବେ, ପେଣ୍ଟେ ସାର୍ଟ ପିନ୍ଧିଥିବା ବାବୁତ ମୁଁ ଦେଖିଥିଲି ? ବଡ଼ ଆପଣେ ଆଉରି ଚିଡ଼ିଯାଇ, 'ତୋ ମୁଣ୍ଡରେ ତାମ୍ପଣ ଗଳିବ ନାହିଁ' କହି ତାକୁ ଟାଣି ଟାଣି ସ୍କୁଲ ଭିତରକୁ ନେଇ ବେତ୍ରାଘାତ କଲା ବେଳକୁ ମଜା ଦେଖିବାକୁ ଗଛମୂଳେ ଲୁଚି ଯାଉଥିବା ଇନସପେକ୍ଟର ବାବୁ ହଠାତ୍ ଆସି ବଡ଼ ଆପଣଙ୍କ ସାମ୍ନାରେ ଠିଆ ହୋଇଗଲେ । ଆମେ ସବୁ ଅବାକ୍ ହୋଇ ସେ ଦୃଶ୍ୟ ଦେଖିଲୁ । ସେତେବେଳେ ବଡ଼ ବଡ଼ ବିଦ୍ୱାନ୍ ଓ ଶିକ୍ଷାବିତ୍‌ମାନେ ସ୍କୁଲ ଇନସ୍‌ପେକ୍ଟର ହେଉଥିଲେ । ସେମାନଙ୍କ ପ୍ରତି ଶିକ୍ଷକମାନଙ୍କର ଭୟ ଓ ଭକ୍ତି ଥିଲା । ଭୀମ ରାଉତଙ୍କ ଭଳି ଇନସ୍‌ପେକ୍ଟରଙ୍କ ସମୟରେ ଶିକ୍ଷା କ୍ଷେତ୍ରରେ ଅତ୍ୟନ୍ତ ଶୃଙ୍ଖଳା ବିରାଜମାନ କରୁଥିଲା । ଅଳ୍ପ ବେତନ ପାଇଲେ ମଧ୍ୟ ଶିକ୍ଷକମାନେ ସେଥିରେ ସନ୍ତୁଷ୍ଟ ଥିଲେ । ଶିକ୍ଷକମାନେ ଟିଉସନ କରିବା କିମ୍ୱା ଗ୍ରାମ୍ୟ

ଦଳାଦଳିରୁ ଲାଭ ଉଠାଇବା ଅଜଣା ଥିଲା । ସେଥିଯୋଗୁଁ ଶିକ୍ଷକମାନେ ଛାତ୍ରମାନଙ୍କ ଶିକ୍ଷାର ସଂପୂର୍ଣ୍ଣ ଭାର ନେଇ ତାଙ୍କ ସ୍କୁଲର ପିଲା କିପରି ଅନ୍ୟ ସ୍କୁଲ ପିଲାଙ୍କ ସଙ୍ଗେ ପ୍ରତିଯୋଗୀତା କରି ବୃତ୍ତି ପାଇବେ, ତାହା ସେମାନଙ୍କର ପ୍ରଧାନ ଚିନ୍ତା ଥିଲା ।

ଆମ ହେଡ୍ ପଣ୍ଡିତ ଶ୍ରୀ ମଧୁସୂଦନ ହୋତା ବଡ଼ ଶୃଙ୍ଖଳାପ୍ରିୟ ଓ ବାହାରକୁ କଠୋର ସ୍ୱଭାବର ଲୋକ ବୋଲି ଜଣାପଡୁଥିଲେ; କିନ୍ତୁ ସେ ଅତ୍ୟନ୍ତ ଛାତ୍ରବତ୍ସଳ, ସାଧୁ ଓ କୋମଳ ହୃଦୟର ଶିକ୍ଷକ ଥିଲେ । ସେ ଛାତ୍ରଙ୍କୁ କିପରି ଭଲ ମଣିଷ କରି ଗଢ଼ିବେ ତାହା ତାଙ୍କର ସ୍ୱଭାବଗତ ପ୍ରକୃତିରେ ପରିଣତ ହୋଇଯାଇଥିଲା ।

ସେ ମେଧାବୀ ଛାତ୍ରମାନଙ୍କୁ ବୃତ୍ତି ପରୀକ୍ଷା ପାଇଁ ତାଲିମ ଦେବାକୁ ସ୍କୁଲ ଛୁଟି ସମୟରେ ମଧ ସେମାନଙ୍କ ଘରକୁ ଯାଇ ସେମାନଙ୍କ ପାଠପଢ଼ା ତଦ୍ଵିରୀ କରି ଆସୁଥିଲେ । ତାଙ୍କ ଉଦ୍ୟମ ଯୋଗୁଁ ଧାରାବାହିକ ଭାବେ ପ୍ରତିବର୍ଷ ତାଙ୍କ ଛାତ୍ରମାନଙ୍କ ଭିତରୁ ଜିଲ୍ଲାସ୍ତରୀୟ ବୃତ୍ତି ପରୀକ୍ଷାରେ ଜଣେ ଦୁଇଜଣ ବୃତ୍ତି ଅର୍ଜନ କରୁଥିଲେ ।

ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଯୋଗୁଁ ମୋର ଲଗାମଛଡ଼ା ବାଲ୍ୟଜୀବନ ବହୁ ଅଂଶରେ ସଂଯତ ହୋଇ ମୁଁ ପାଠପଢ଼ାରେ ମନ ନିଯୋଗ କରିବାକୁ ବାଧ ହୋଇଥିଲି । ତାଙ୍କ ପ୍ରତି ଆମର ଭକ୍ତି ସଙ୍ଗେ ସଙ୍ଗେ ଭୟ ମଧ ରହିଥିଲା । ସାଧାରଣ କ୍ରୋଧଠାରୁ ତାଙ୍କ କ୍ରୋଧ ଭିନ୍ନ ଥିଲା । ରାଗ ବା କ୍ରୋଧ ମଧ ମନୁଷ୍ୟ ସ୍ୱଭାବର ଏକ ଗୁଣ । ବହୁଲୋକ ନିଜର କ୍ରୋଧ ପ୍ରକାଶ କରିବାକୁ ସକ୍ଷମ ହୁଅନ୍ତି ନାହିଁ । ତେଣୁ ରାମ୍ଫୁଡ଼ି କାମ୍ଫୁଡ଼ି ହୋଇ ଚିଡ଼ାଚିଡ଼ି କରି ଗାଳି ଓ ଦୁର୍ଭାଷାର ଆଶ୍ରୟ ନେଇ ନିଜକୁ ତତାଇ ଅନ୍ୟପ୍ରତି କ୍ରୋଧ ପ୍ରକାଶ କରିବାକୁ ଚେଷ୍ଟା କରନ୍ତି । ଯେଉଁମାନେ କ୍ରୋଧକୁ ଆୟତ କରି ଥାଆନ୍ତି ସେମାନଙ୍କୁ ଦୁର୍ଭାଷା ପ୍ରଭୃତିର ଆଶ୍ରୟ ନେବାକୁ ପଡ଼େନାହିଁ । ଅନ୍ୟକୁ ଶାସ୍ତି ଦେବାପାଇଁ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଓ ଅଙ୍ଗଭଙ୍ଗୀ ଯଥେଷ୍ଟ ହୁଏ । ତେଣୁ ମଧୁ ମାଷ୍ଟ୍ରେ ମୁହଁକୁ ତମ୍ ତମ୍ କରି କେବଳ ତରାଟି କରି ଚାହିଁଦେଲେ ଦୋଷୀ ପିଲାର ପିଳେହି ଯେପରିକି ପାଣି ହୋଇଯାଏ । ତାଙ୍କୁ ବୃଥାରେ ବେତ ଧରି ଶାସ୍ତି ଦେବାକୁ ପଡ଼େନାହିଁ ।

ଆମ ତୃତୀୟ ଶ୍ରେଣୀ ପିଲାଙ୍କ ଭିତରୁ ବିଦ୍ୟାରେ ଆମେ ୩/୪ ଜଣ ପ୍ରତିଯୋଗୀତା କରୁଥିଲୁ । ମୁଁ ସେମାନଙ୍କ ଭିତରେ ଶ୍ରେଷ୍ଠ ବିବେଚିତ ହୋଇ ବୃତ୍ତି ପରୀକ୍ଷାକୁ ଯିବାର ଠିକ୍ ହେଲା । ଜିଲ୍ଲାସ୍ତରୀୟ ପରୀକ୍ଷା ଦୁଇ ସ୍ତରରେ ହେଉଥିଲା । ପ୍ରଥମ ବଛାବଛି ପରୀକ୍ଷାରେ ବଛା ହୋଇ ଅଳ୍ପ କେତେକ ଛାତ୍ର କେନ୍ଦ୍ର ପରୀକ୍ଷା ଦେବାକୁ ଉପଯୁକ୍ତ ହେଉଥିଲେ । ମୋର ଆମ ଗ୍ରାମଠାରୁ ୪/୫ ମାଇଲ ଦୂର ଚନ୍ଦନପୁର ବଛାବଛି କେନ୍ଦ୍ରକୁ ଯିବାର କଥା । କିନ୍ତୁ ଅଳ୍ପ କେତେ ଦିନ ପୂର୍ବରୁ ମୁଁ ଭୀଷଣ ମେଲେରିଆ ଜ୍ୱରରେ ପୀଡ଼ିତ

ହୋଇପଡ଼ିଲି । ସେତେବେଳେ ଆମ ଗ୍ରାମ ଓ ଆଖପାଖରେ ମେଲେରିଆ ଜ୍ୱର ବ୍ୟାପକ ଭାବରେ ଦେଖାଯାଇଥାଏ । ମୋ ଭଳି ଅଧିକାଂଶ ପିଲାଙ୍କର ମେଲେରିଆ ଯୋଗୁଁ ପ୍ଲିହା ବଢ଼ିଥାଏ ଓ ଶରୀର ଶେତା ଓ ଜୀର୍ଣ୍ଣଶୀର୍ଣ୍ଣ ହୋଇଥାଏ । ଦିନ ଦିନ ଧରି ସେଥର ମୋ ଦେହରେ ଜ୍ୱର ଲାଗି ରହିଲା । ମୋ ଅବସ୍ଥା ଦେଖ ମଧୁମାଷ୍ଟ୍ରଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା । ସେ ନିଜର ଅନ୍ୟ କାର୍ଯ୍ୟ ସବୁ ଛାଡ଼ି ମୋତେ ଆରୋଗ୍ୟ କରିବା ପାଇଁ ଲାଗିପଡ଼ିଲେ । କାଚ ଶିଶି ଧରି ମୋ ପାଇଁ ଔଷଧ ସଂଗ୍ରହ କରିବାକୁ ଦୁଇ ମାଇଲ ଦୂର ସତ୍ୟବାଦୀ ଡିଷ୍ଟ୍ରିକ୍ଟ ବୋର୍ଡ଼ ଡାକ୍ତରଖାନାକୁ ଦଉଡ଼ିବାଠାରୁ ମୋ ପାଖରେ ବସି ପଥ୍ୟ ବ୍ୟବସ୍ଥା କରିବା, ସେ ଦେହ ହାତ ଟିପିଦେବା ତାଙ୍କର ଦୈନନ୍ଦିନ କାର୍ଯ୍ୟ ହୋଇପଡ଼ିଲା । ତାଙ୍କ ସେବା ଶୁଶ୍ରୁଷାରୁ ପରୀକ୍ଷାର ଠିକ୍ ପୂର୍ବରୁ ମୋ ରୋଗର ଉପଶମ ଘଟିଲା । ସେ ମୋତେ ଶଗଡ଼ରେ ବସାଇ ସେ ପରୀକ୍ଷା କେନ୍ଦ୍ରକୁ ଘେନିଗଲେ । ତାଙ୍କ ଆଶୀର୍ବାଦରୁ ମୁଁ ସେ ପରୀକ୍ଷାରେ କୃତକାର୍ଯ୍ୟ ହେଲି ।

ତା'ପରେ ପୁରୀ ଗୁରୁ ଟ୍ରେନିଂ ସ୍କୁଲ ଏବର ପୁରୀ ଜିଲ୍ଲା ସ୍କୁଲ କେନ୍ଦ୍ରକୁ ଯାଇ ପରୀକ୍ଷା ଦେବାପାଇଁ ଡାକରା ଆସିଲା । ମଧୁ ମାଷ୍ଟ୍ରେ ମୋତେ ସଙ୍ଗରେ ନେଇ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ମାର୍କଣ୍ଡେଶ୍ୱର ସାହି ଚାଳ ଘରେ ରଖାଇଲେ । ପରିକ୍ଷାରେ ପ୍ରଥମ ଦିନ ମଧ୍ୟାହ୍ନ ଛୁଟିରେ ଖଲିପତ୍ର ଠୁଙ୍ଗାରେ ଦୁଇଟି ସିଙ୍ଗଡା ଓ ଗୋଟିଏ ମିଠା ମୋ ହାତକୁ ବଢ଼ାଇଦେଲେ । ମୁଁ ସେ ଠୁଙ୍ଗାଟି ଧରୁ ଧରୁ ଚିଲଟାଏ ଝାମ୍ପମାରି ମୋ ହାତରୁ ତାହା ଘେନି ପଳାଇଲା । ମାଷ୍ଟ୍ରେ ବସାରେ ପଇସା ରଖିଦେଇ ଆସିଥିଲେ । ଆଉ ଜଳଖିଆ କିଣି ମୋତେ ଦେବାକୁ ତାଙ୍କ ଅଣ୍ଟାରେ ପଇସା ନ ଥିଲା । ମୁଁ ଖାଲି ପେଟରେ ପୁଣି ପରୀକ୍ଷା ଦେବାକୁ କିପରି ଯିବି ଭାବି ସେ ବିକଳ ହୋଇ ପଡ଼ିଲେ । ସେ ସାଧାସିଧା ଲୋକ; ଆଉ କାହାଠାରୁ ଉଧାର ଆଣିବା କଥା ତାଙ୍କୁ ଦିଶିଲା ନାହିଁ । ସେତେବେଳେ ଆମ ଗାଁ ପାଖ ସ୍ୱମେଶ୍ୱରପୁରର ଶିକ୍ଷକ ତାଙ୍କୁ ଯାଚିକରି କିଛି ପଇସା ଦେବାରୁ ସେ ଧାଇଁଯାଇ ଆଉ ଜଳଖିଆ ଘେନି ଆସିଲେ ।

ମୁଁ ବୃତ୍ତି ପାଇ ସତ୍ୟବାଦୀ ନୂଆ ମାଇନର ସ୍କୁଲରେ ନାମ ଲେଖାଇଲି । ପରବର୍ତ୍ତୀକାଳରେ ମୁଁ କିପରି ପଢୁଚି କଅଣ କରୁଛି ଜାଣିବା ପାଇଁ ମୁଁ ଗ୍ରାମକୁ ଆସିଲେ ମଧୁମାଷ୍ଟ୍ରେ ଆମ ଘରକୁ ଚାଲି ଆସୁଥିଲେ । ତାଙ୍କ ଛାତ୍ରମାନଙ୍କ କୃତିତ୍ୱ ବିଷୟ ଶୁଣି ସେ ସନ୍ତୋଷ ଲାଭ କରୁଥିଲେ ।

ସେକାଳରେ ଉଚ୍ଚ ଶିକ୍ଷା ପାଇବା ମଧ ସହଜ ସାଧ ନ ଥିଲା । ଅସହଯୋଗ ଆନ୍ଦୋଳନ ପରେ ପରେ ଆମ ଗ୍ରାମର ଆର୍ଥିକ ଅବସ୍ଥା ସଙ୍ଗେ ସଙ୍ଗେ ଶିକ୍ଷାର ଅବସ୍ଥା

ମଧ ଅତି ଶୋଚନୀୟ ହୋଇ ପଡ଼ିଥିଲା । ଆମ ଗ୍ରାମର ଆଦିଜ୍ୟୋତି ହରିହରଙ୍କ ପ୍ରତିଷ୍ଠିତ ଭର୍ଣ୍ଣାକୁଲର ସ୍କୁଲଟି ସତ୍ୟବାଦୀକୁ ଉଠିଯାଇ ବନବିଦ୍ୟାଳୟରେ ପରିଣତ ହୋଇଥିଲା । ୧୯୨୧ରେ ତାହା ଜାତୀୟ ବିଦ୍ୟାଳୟରେ ପରିଣତ ହୋଇ ପୂରା ଭାଙ୍ଗି ଯାଇଥିଲା । ଗୋପବନ୍ଧୁଙ୍କ ତିରୋଧାନ ୧୯୨୮ ବେଳକୁ ସତ୍ୟବାଦୀରେ ପୁଣି ନୂଆ ମାଇନର ସ୍କୁଲଟିଏ ମୁଣ୍ଡ ଟେକିଥିଲା ଓ ଆମ ଗ୍ରାମରେ ଡିଷ୍ଟ୍ରିକ୍ଟ ବୋର୍ଡ ଲୋଅର ପ୍ରାଇମେରୀ ସ୍କୁଲଟି ସ୍ଥାପନ କରାଯାଇଥିଲା ।

ଆମ ନିମ୍ନ ପ୍ରାଥମିକ ସ୍କୁଲ ରେକର୍ଡ଼ରୁ ଜଣାଯାଏ ଆମେ ୨୧ ଜଣ ଛାତ୍ରଛାତ୍ରୀ (ହରିଜନ ଛାତ୍ରଙ୍କ ସମେତ) ସେ ସ୍କୁଲର ତଳଶ୍ରେଣୀ ବା ପ୍ରଥମ ଶ୍ରେଣୀରେ ନାମ ଲେଖାଇଥିଲୁ । ମୁଁ ପ୍ରାୟ ସାତ ବର୍ଷ ବୟସରେ ୪/୧/୧୯୨୮ରେ ନାମ ଲେଖାଇ ୩୧/୧୨/୧୯୩୦ରେ ବୃତ୍ତି ପାଇ ସ୍କୁଲ ଛାଡ଼ିଥିଲି । ଆମ ୨୨ ଜଣଙ୍କ ଭିତରୁ ଆମେ ୭ଜଣ ପାଶ କରିଥିଲୁ । ଚାରି ଜଣଙ୍କର ଶିଶୁ ଅବସ୍ଥାରେ ମୃତ୍ୟୁ ହୋଇଥିଲା । ପାଞ୍ଚଜଣ ଅର୍ଥାଭାବରୁ ମଝିରେ ପାଠ ଛାଡ଼ିଥିଲେ ଓ ଅନ୍ୟମାନେ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ ।

ବାଳକମାନଙ୍କଠାରୁ ବାଳିକାମାନଙ୍କ ଶିକ୍ଷା ବ୍ୟବସ୍ଥା ଆହୁରି ଶୋଚନୀୟ ଥିଲା । ଆମ ସଙ୍ଗେ ସାତ ଜଣ ବାଳିକା ନାମ ଲେଖାଇଥିଲେ । ସେଥିରୁ ତିନି ଜଣ ମୋ ସଙ୍ଗେ ଉତ୍ତୀର୍ଣ୍ଣ ହୋଇଥିଲେ । ସେମାନେ ବିବାହ ପାଇଁ ପ୍ରସ୍ତୁତ ହୋଇ ପାଠପଢ଼ା ଛାଡ଼ିବାକୁ ବାଧ ହୋଇଥିଲେ ।

ଶିକ୍ଷାର ଏପରି ଦୟନୀୟ ଅବସ୍ଥା ପାଇଁ ବାଲ୍ୟବିବାହ ଲୋକଙ୍କ ଆର୍ଥିକ ଦୂରବସ୍ଥା, ଚାକିରି ଓ ପାଠ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେବାର ଆବହାଓ୍ୱା ପ୍ରଭୃତି ଦାୟୀ ଥିଲା । ମୋ ସାଥୀମାନଙ୍କ ଭିତରୁ ମୋ ଛଡ଼ା ପୁଅ କି ଝିଅ ଜଣେହେଲେ ମାଟ୍ରିକ ଡେଇଁ ପାରିନଥିଲେ । ଏପରିକି ଭାରତ ସ୍ୱାଧୀନ ହେବା ବା ୧୯୪୭ ପର୍ଯ୍ୟନ୍ତ ଆମର ଏଡେବଡ଼ ଗ୍ରାମର ଝିଅ କି ବୋହୂ କେହି ମାଟ୍ରିକ ପାଶ କରିବାର ସୁଯୋଗ ପାଇନଥିଲେ । ସ୍ତ୍ରୀ ଶିକ୍ଷା ନିମ୍ନପ୍ରାଇମେରୀ ସ୍ତରରେ ଶେଷ ହେଉଥିଲା । ବାଳିକାମାନେ ଅପ୍ରାପ୍ତ ବୟସରେ ବିବାହ କରି ବୟସ ହୋଇ ଶ୍ୱଶୁରାଳୟକୁ ଯିବା ପର୍ଯ୍ୟନ୍ତ ଘରକାମ କରି ଘର କଣରେ ଜୀବନ ଅତିବାହିତ କରୁଥିଲେ । ଆମ ଗ୍ରାମ ଦାଣ୍ଡରେ ଗୋଟିଏ ହେଲେ ପ୍ରାପ୍ତବୟସ୍କା ବାଳିକା ଯାତାୟାତ କରିବା ବା ସ୍ୱାଧୀନ ଭାବରେ ବୁଲିବା ଦେଖାଯାଉ ନ ଥିଲା । ସ୍ତ୍ରୀ ଲୋକମାନେ ସାଧାରଣତଃ ଗ୍ରାମରେ ବାଡ଼ିପଟ ରାସ୍ତାରେ ଯିବା ଆସିବା କରୁଥିଲେ । ୧୨/୧୪ ବର୍ଷ ବେଳକୁ କୌଣସି ଉଚ୍ଚଜାତିର ବାଳିକା ଅବିବାହିତ ହୋଇ ରହୁନଥିଲେ । ଶାରଦା ଆଇନ ପାଶ ହୋଇ ବଳବତର ହେବା ପରେ କେତେକ ଚଉଦ ବର୍ଷ ପର୍ଯ୍ୟନ୍ତ ଅବିବାହିତ ରହିବାକୁ ବାଧ ହେଲେ ।

ମୋର ତିନି ଭଉଣୀଯାକ ନିମ୍ନ ପ୍ରାଥମିକ ସ୍କୁଲରୁ ପାଶ କରି ବର୍ଷେ ଦୁଇବର୍ଷ ସତ୍ୟବାଦୀ ମାଇନର ସ୍କୁଲରେ ପଢ଼ି ୧୪ ବର୍ଷ ହେବାପରେ ବିବାହ କରିଥିଲେ ଓ ଘରେ ପ୍ରାପ୍ତ ବୟସ୍କ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ଶ୍ୱଶୁରାଳୟକୁ ଗମନ କରିଥିଲେ ।

ଭାରତ ସ୍ୱାଧୀନ ହେବାପରେ ମୋର ମାତା ସଂଗ୍ରାମୀ ରାଧାମଣୀ ଦେବୀ ଓ ତାଙ୍କର ଅନ୍ୟ ସାଥୀ ସଂଗ୍ରାମୀଙ୍କ ଉଦ୍ୟମରେ ସତ୍ୟବାଦୀରେ ବାଳିକା ବିଦ୍ୟାଳୟଟିଏ ସ୍ଥାପିତ ହୋଇଥିଲା । ସତ୍ୟବାଦୀ ଆଖପାଖର ରକ୍ଷଣଶୀଳ ସମାଜର ଯେଉଁ ବାଳିକାମାନେ ପୁଅପିଲାଙ୍କ ସଙ୍ଗେ ପାଠ ପଢ଼ିବାକୁ ଅନିଚ୍ଛୁକ ଥିଲେ, ସେମାନେ ସେ ସ୍କୁଲରେ ପଢ଼ିବାକୁ ସୁଯୋଗ ପାଇଲେ । ବର୍ତ୍ତମାନ ସତ୍ୟବାଦୀ ଅଞ୍ଚଳରେ ସ୍ତ୍ରୀ ଶିକ୍ଷାର ଖୁବ୍ ଉନ୍ନତି ଘଟିଛି ଓ ବିବାହ ବ୍ୟବସ୍ଥାରେ ଅବନତି ଘଟିଛି । ଅଳ୍ପ ବୟସରେ ବିବାହ କରାଯାଉଥିବା ବେଳେ ଯୌତୁକ ଓ କନ୍ୟା ବଛାବଛିର ଚାହିଦା ବେଶୀ ନ ଥିଲା । ଏବେ ଝିଅଙ୍କ ଶିକ୍ଷା ଯୋଗ୍ୟତା ସଙ୍ଗେ ସଙ୍ଗେ ଉପଯୁକ୍ତ ପାତ୍ର ପାଇଁ ଯୌତୁକର ବୋଝ ବଢ଼ି ଚାଲିଥିବାରୁ ବହୁ ବୟସ୍କା ଝିଅ ଅବିବାହିତା ହୋଇ ରହି ଯାଉଛନ୍ତି । କର୍ମଜୀବୀ ମହିଳାଙ୍କ ସଂଖ୍ୟା ଦ୍ରୁତଗତିରେ ବଢ଼ି ଚାଲିଛି ଓ ସେମାନେ ବହୁ କ୍ଷେତ୍ରରେ ପୁରୁଷଙ୍କ ସଙ୍ଗେ ତାଳଦେଇ ଚାଲିବାକୁ ବାଧ ହେଉଛନ୍ତି ।

## ବାଲ୍ୟ ଅନୁଭୂତି

ଜନ୍ମରୁ ଆରମ୍ଭ କରି ବିଦ୍ୟାର୍ଜନ ପାଇଁ ଆମେରିକା ଯାତ୍ରା ପର୍ଯ୍ୟନ୍ତ ୧୯୨୧-୧୯୫୧ ତିନି ଦଶନ୍ଧି କାଳ ଆମ ଗ୍ରାମ ଥିଲା ମୋର ପ୍ରଧାନ ଆଶ୍ରୟ କେନ୍ଦ୍ର । ସ୍କୁଲ କଲେଜର ଛାତ୍ର ଥିବା ସମୟରେ ବାହାରେ ଛାତ୍ରାବାସରେ ରହିବାବେଳେ ମଧ ମୋର ମନ ରହୁଥିଲା ଗାଁରେ । ତେଣୁ ଗ୍ରାମ ସହିତ ମୋର ନିବିଡ଼ ସମ୍ପର୍କ ରହିଥିଲା । ଆମ ଗ୍ରାମର ପାଣି ପବନ, ସାଙ୍ଗ ସୁଖ ଓ ଗ୍ରାମବାସୀଙ୍କ ପ୍ରତି ମୋର ଅତ୍ୟଧିକ ଆକର୍ଷଣ ଥିଲା । ଆମର ପ୍ରାୟ ଏକ ମାଇଲ ବ୍ୟାପୀ ଶାସନ ଗ୍ରାମର ଦୁଇଧାଡ଼ିର ବାସଗୃହରେ ରହୁଥିବା ସମସ୍ତଙ୍କ ନାମ ଓ ଇତିହାସ ମୋ ଜିଭ ଅଗରେ ରହିଥିଲା । ଏବେବି ମୁଁ ଗ୍ରାମରୁ ଅଲଗା ବା ଗାଉଁଲି ଲୋକ ନୁହେଁ ବୋଲି କିଏ ମୋତେ କହିଦେଲେ ମୋତେ ବାଧେ ।

ଆମେରିକାରୁ ଫେରି ୧୯୫୪ ଶେଷରେ ପିଲାପିଲି ଧରି କଟକ ଆସି ୧୯୫୫ ପ୍ରାରମ୍ଭରେ କଟକ ମେଡ଼ିକାଲ କଲେଜରେ ଅଧାପକ ଭାବେ ଯୋଗଦେଲି । କଟକର ବାସିନ୍ଦା ହୋଇ ରହିଲେ ମଧ ମୋର ମନ ବନ୍ଧା ପଡ଼ିଥିଲା ଗ୍ରାମର ସେହି ଆକର୍ଷଣୀୟ ପରିବେଶ ଭିତରେ । କାଳ ଗଡ଼ି ଚାଲିଲା, ତଥାପି ଯେତେ ଜବରଦସ୍ତି କଲେ ମଧ ମୁଁ ମୋର ସେହି ଗ୍ରାମୀୟ ଅନୁଭୂତିକୁ ମନରୁ ପୋଛିଦେଇ ପାରିଲି ନାହିଁ । ବର୍ତ୍ତମାନର ଦୁନିଆ ଏତେ ଦ୍ରୁତ ଗତିରେ ଆଗେଇ ଚାଲିଛି ଯେ ପଛର କଥାଗୁଡ଼ିକ ଅନୁଭବକୁ

ଏବେ ଘଟିଲା ପରି ଲାଗିଲେ ମଧ୍ୟ ଐତିହାସିକ କିମ୍ବା ପରି - ଗଳ୍ପରେ ପରିଣତ ହୋଇଯାଉଛି । ତେଣୁ ଏବର ପିଲାଏ ଆମ ପିଲାବେଳର ଅଙ୍ଗେ ଲିଭାଇଥିବା ଘଟଣା ଗୁଡ଼ିକ ବିଶ୍ୱାସ କରି ନ ପାରି ଗପ ଭାବରେ ଶୁଣି ଆନନ୍ଦ ଉପଭୋଗ କରୁଛନ୍ତି ।

ଏବେ ମଣିଷ ଆକାଶରେ ଭ୍ରମଣ କରି ଚନ୍ଦ୍ରଲୋକରୁ ବୁଲି ଫେରିଲାଣି । ଚନ୍ଦ୍ର ଆଉ ଜହ୍ନମାମୁ ହୋଇ କୁନି ହାତରେ ଖସି ପଡ଼ିବା କଥା ବିଚାର ସମ୍ଭବ ନୁହେଁ । ମଣିଷ ଉଦ୍ଭାବିତ ସ୍ପୁଟନିକ ବା କୃତ୍ରିମ ତାରକା ସାହାଯ୍ୟରେ ବିଜ୍ଞାନର ଦୂରଦର୍ଶନ ଯନ୍ତ୍ର ପ୍ରତି ମୁହୂର୍ତ୍ତରେ ଦୂରଦୂରାନ୍ତର ଏପରିକି ଦୁନିଆ ଆରପଟର ସମ୍ବାଦ ଓ ଚିତ୍ର ଘେନିଆସି ନାନା ଭାବରେ ଆମ ଆଗରେ ପରିବେଷଣ କରି ଚାଲିଛି । ଅଧୁନା ସାଧାରଣ ଭାବରେ ଯାହା ସବୁ ଘଟି ଯାଉଛି ତାହା ଶହେ ବର୍ଷ ତଳର ଲୋକଙ୍କ କଳ୍ପନାରେ ନ ଥିଲା । ବିଜ୍ଞାନର ନୂଆ ନୂଆ ଉଦ୍ଭାବନ ସବୁ ଅଦ୍ଭୁତ ପରି-ରାଇଜ ଗପ ପରି ଥିଲା । ପଚାଶ ଷାଠିଏ ବର୍ଷ ତଳେ (ଏବର ଭାଷାରେ) ଲୋକେ କିପରି କୂପମଣ୍ଡୁକ ପରି ରହିଥିଲେ ତାହା ନିମ୍ନଲିଖିତ ଘଟଣାଟିରୁ ଜଣାପଡ଼ିବ ।

ମୁଁ କଟକ କଲେଜିଏଟ ସ୍କୁଲରେ ପଢ଼ିବା ସମୟରେ ଆମ ବଡହରଚଣ୍ଡୀ ଠାକୁରାଣୀଙ୍କ ସେବକ ସାହିର ବଡପଣ୍ଡା ଦେଉଳ ଜମିଜମା ସଂକ୍ରାନ୍ତରେ ଏଣ୍ଡାଉମେଣ୍ଟରେ ଅଭିଯୋଗ କରିବା ପାଇଁ ପ୍ରଥମ ଥର କଟକ ଆସିଥିଲେ । ମୋର ପିତା ପଣ୍ଡିତ ନୀଳକଣ୍ଠଙ୍କର ସାହାଯ୍ୟ ନେବା ପାଇଁ ସେ ନବଭାରତ ପୁରୁଣା କୋଠାରେ ରହିଥିଲେ । ସେଠାରେ ଉପର ଘର ଚଟାଣ ଉପରେ ପଣ୍ଡିତଜୀ ମଶିଣାରେ ଶୋଇ ତାଙ୍କ ଚାରିପଟରେ ଗଦା ହୋଇଥିବା ବହିସବୁ ପଢ଼ନ୍ତି । ସେହିଠାରେ ମଧ୍ୟ ଅନ୍ୟମାନଙ୍କ ସଙ୍ଗେ କଥାବାର୍ତ୍ତା ଓ ଆଲୋଚନା କରନ୍ତି ।

ସେହି ଘରେ ପୁରୁଣା ଡ଼ି.ସି. ପଙ୍ଖାଟିଏ ଲାଗିଥାଏ । କାନ୍ଥରେ ବାରଲାଇଟ୍‌ଟିଏ ଲାଗିଥାଏ ଓ ପଣ୍ଡିତଙ୍କ ହାତ ପାଖରେ କାଳିଆ ଫୋନଟିଏ ଥାଏ । ବଡ଼ପଣ୍ଡା ତାଙ୍କ ଜୀବନରେ ବିଜୁଳି ପଙ୍ଖା, ଆଲୁଅ ଓ ଟେଲିଫୋନ ପ୍ରଥମ ଥର ପାଇଁ ଦେଖି ଅଭିଭୂତ ହୋଇଗଲେ ।

ପଣ୍ଡାଏ କାମ ସାରି ଗ୍ରାମକୁ ଫେରିବା ପରେ ତାଙ୍କ ଅନୁଭୂତି କହିବୁଲିଲେ । କଟକକୁ ଇନ୍ଦ୍ରଭୁବନ ବୋଲି ଆଖ୍ୟା ଦେଇ ସେ କହିଲେ,ବାପରେ ବାପ କି ଅଦ୍ଭୁତ କଥା ସବୁ ଆଖି ଦେଖିଲା । ଅନ୍ଧାର ହେଲାକ୍ଷଣି କାନ୍ଥରେ ହାତମାରି ଦେଲେ କାଚ ଠେଙ୍ଗାଟା ଦେହରୁ ଲକ୍ଷେ ଚନ୍ଦ୍ର ଉଦିଆର ଆଲୁଅ ବାହାରି ଚନ୍ଦ୍ର ପକ୍ଷ ପରି ସବୁଆଡ଼ ଆଲୋକମୟ କରିଦେଲା । ସେ ପ୍ରଖର ଆଲୁଅରେ ପ୍ରଥମେ ଆଖି ଝିମ୍ ଝିମ୍ ହୋଇଗଲା । ସେହିପରି କାନ୍ଥରେ ହାତ ମାରିଦେବାକ୍ଷଣି ଛାତରୁ ଓହଳିଥିବା ବ୍ରହ୍ମରାକ୍ଷସ ଭଳି ତିନି ହାତିଆ ଲୁହା ମୁଣ୍ଡିଆଟା ହାତ ମେଲାଇ ଶୂନ୍ୟରେ ଏପରି ପହଁରିବାକୁ ଲାଗିଲା ଯେ ଥଣ୍ଡା ପବନରେ

ଦେହ ଶୀତେଇ ଉଠିଲା । ଆମ ବଡ଼ପୋଖରୀ କୂଳ ଦକ୍ଷିଣା ପବନ ତା'ର ପାସଙ୍ଗରେ ମଧ ପଡ଼ିବ ନାହିଁ ।

ପଣ୍ଡିତଙ୍କ ପାଖରେ କଳା ବିରାଡ଼ି ପରି ଯେଉଁ ଯନ୍ତ୍ରଟା ଅଛି, ସେଇଟା କଥା କହେ । ପଣ୍ଡିତେ ତାଙ୍କରି ସ୍ଥାନରେ ବସି ସେ କଥା କୁହା ଯନ୍ତ୍ରରେ ମନ୍ତ୍ରୀଙ୍କ ଠାରୁ ବଡ଼ ବଡ଼ ଅଫିସର ଯାଏ ଯାହାକୁ ଡ଼ାକିଲେ ସେମାନେ ସଙ୍ଗେ ସଙ୍ଗେ ଜବାବ ଦେଇ ପଣ୍ଡିତଙ୍କ ସଙ୍ଗେ କଥାବାର୍ତ୍ତା କଲେ । ମୋ କାମରେ ମୋତେ ଆଉ କୁଆଡ଼େ ଯିବାକୁ ପଡ଼ିଲା ନାହିଁ; ପଣ୍ଡିତେ ସେଇଠି ଶୋଇରହି ସେପରି କଥାବାର୍ତ୍ତାରେ ସବୁ କରିଦେଲେ ।

ଏସବୁ ଶୁଣିଲେ ବଡ଼ପଣ୍ଡା ଏକ ବୋକା ଲୋକ ବୋଲି ଏବର ଲୋକେ ତାଚ୍ଛଲ୍ୟ କରିପାରନ୍ତି । କିନ୍ତୁ ସେ ଆମ୍ଭ ଗ୍ରାମର ଜଣେ ସମ୍ଭ୍ରାନ୍ତ, ବିଚାରବନ୍ତ, ସାଧୁ ଓ ସରଳ ଲୋକ ଭାବରେ ସମ୍ମାନିତ ହେଉଥିଲେ । ସେତେବେଳେ ମଫସଲକୁ ବିଜୁଳି ଯାଇ ନ ଥିଲା । କଟକ ସହରରେ ମଧ ବିଜୁଳିର ଖୁବ୍ ଅଳ୍ପ ସୁବିଧା ଥିଲା । ରାସ୍ତାରେ ମ୍ୟୁନିସିପାଲିଟି ଖୁଣ୍ଟମାନଙ୍କରେ କିରାସିନି ଆଲୁଅ ଜଳୁଥିଲା । ସନ୍ଧ୍ୟାରେ ମ୍ୟୁନିସପାଲିଟି ଲୋକ ଗୋଟିଏ ସିଡ଼ି ଓ କିରାସିନି ଧରି ଖୁଣ୍ଟକୁ ଖୁଣ୍ଟ ଚଢ଼ି ରାତି ପାଇଁ କିରାସିନି ଭର୍ତ୍ତି କରୁଥିଲା । ଆମ କଲେଜିଏଟ ସ୍କୁଲ ବୋର୍ଡ଼ିଂରେ ମଧ ଇଲେକ୍ଟ୍ରିସିଟି ନ ଥିଲା । ଆମେ ଚପରାଶି ନଟିଆଠାରୁ ସନ୍ଧ୍ୟାରେ ପଳାଏ ଦି'ପଳା କିରାସିନି କିଣି ଲଣ୍ଠନରେ ପକାଇ ରାତି ପଢ଼ା କରୁଥିଲୁ ।

ରେଡ଼ିଓ, ଟେଲିଭିଜନ ତ ଏବର କଥା । ସେତେବେଳେ ଖବର କାଗଜ ମଧ ଖୁବ୍ କମ୍ ଥିଲା ଓ ତାହା କମ୍ ଛପା ହେଉଥିଲା । ଅଧିକାଂଶ ଲୋକ ସମ୍ବାଦପତ୍ର ସହିତ ପରିଚିତ ନଥିବାରୁ ପୁରୁଣା ସମ୍ବାଦ ଓ ଗୁଜବମାନ ଶୁଣିବାକୁ ପାଉଥିଲେ । ଏସବୁ କାରଣରୁ ବିଜ୍ଞାନରେ ସେମାନେ ଅଜ୍ଞ ଥିଲେ ।

ମୁଁ କଟକରୁ ଫେରି ବଡ଼ପଣ୍ଡାଙ୍କ କଟକ ବର୍ଣ୍ଣନା ସାଥୀମାନଙ୍କଠାରୁ ଶୁଣି ହସୁଥିଲା ବେଳେ ଆମ ଗ୍ରାମର ଜଣେ ଥଟଲି ଲୋକ ସେଠାକୁ ଆସିଲେ । ସେ ହସର କାରଣ ଜାଣି କହିଲେ 'ଆଃ, ବଡ଼ପଣ୍ଡା ସ୍ୱର୍ଗରୁ ମାତ୍ର ଏତିକି ଦେଖି ଆସିଲେ ? ହଁ ସେ ତ ରେଳଗାଡ଼ିରେ ଚଢ଼ି ଯାଇଥିଲେ ଆଉ ଅଧିକା କଅଣ ଦେଖନ୍ତେ । ଆମ ପିଲାଦିନେ ଯେବେ ରେଳ ନ ଥିଲା, ସେତେବେଳେ ବଣ ଜଙ୍ଗଲ ଦେଇ ଆମ ଗ୍ରାମର ସନା ଚଉଧୁରୀ ଚାଲିଚାଲି କଟକ ଯାଇଥିଲେ । କୌଣସିମତେ କଟକରୁ ଫେରି ସ୍ୱର୍ଗ ପୁରୀକୁ ଯେପରି ବର୍ଣ୍ଣନା କରୁଥିଲେ ବଡ଼ପଣ୍ଡାଙ୍କ ସ୍ୱର୍ଗପୁରୀ ତା' ପାସଙ୍ଗରେ ପଡ଼ିବନି ।'

ତାଙ୍କ ବର୍ଣ୍ଣନାରେ ମାରୁଆଡ଼ିପଟିଟା-କୁବେର ପୁରୀ, ବକ୍ସି ବଜାରଟା ଇନ୍ଦ୍ରପୁରୀ, କ୍ୟାଣ୍ଟନମେଣ୍ଟ ରୋଡ଼ଟା ଶାସକ ବା ବିଷ୍ଣୁପୁରୀ, ତେଲିଙ୍ଗାବଜାରଟା ଅପସରାପୁରୀ,

କଚେରୀ ପାଖଟା ଯମପୁରୀ ଥିଲା । ସେଠାରେ ସେ ଗ୍ରାମର ବିଭିନ୍ନ ମୃତ ଲୋକଙ୍କୁ ଭିନ୍ନ ଭିନ୍ନ ସ୍ଥାନରେ ଦେଖିଥିଲେ ।

ଲୋକମାନେ ସେମାନଙ୍କ ମୃତ ମାତା, ପିତା ଓ ପ୍ରପିତାମାନେ ସେହି ସ୍ୱର୍ଗରେ କେଉଁ ପୁରୀରେ ଅଛନ୍ତି ବୋଲି ପଚାରିଲେ । ସେ ଠିକେ ଠିକେ ଉତ୍ତର ଦେଇ ଯାଉଥିଲେ- କାହା ବାପ ମାରୁଆଡ଼ି ଦୋକାନରେ ଦୁଇଟା ଗୋଲ ତକିଆ କୁଣ୍ଢାଇ ଗଡୁଛି ତ ଆଉ କାହା ବାପ ନିମଚଉଡ଼ିରେ ରସଗୋଲା ଛାଣିବାରେ ଲାଗିଛି । କାହା ଉପରେ ଆଲଟ ପଡୁଛି (ହାତଟଣା ମସିଣା ପଙ୍ଖା ଅଫିସରେ ଗୋଟିଏ ଲୋକ ବସି ଟାଣିବା ପ୍ରଚଳିତ ଥିଲା) ତ କିଏ ବଡ଼ ପିଣ୍ଡା ଉପରେ ବସି ଘୁଡ଼୍ ଘୁଡ୍ ପିକା ଧରି ନଳୀରେ ଟାଣୁଛି ।

ଏପରି ବର୍ଣ୍ଣନା ବେଳେ ଚଉଧୁରୀଙ୍କର ଜଣେ ଅପ୍ରିୟ ବିରୋଧି ଲୋକ, ତାର ବାପାଙ୍କୁ ସେ ଦେଖିଛନ୍ତି କି ନାହିଁ ବୋଲି ବଡ଼ ସମ୍ଭ୍ରମରେ ପଚାରିଲେ । ଚଉଧୁରୀ ତାଙ୍କୁ କଟମଟ କରି ଚାହିଁ ଜୋରରେ କହିଲେ 'ତୋ ବୋପା ଚଉଧୁରୀ ବଜାର ରାସ୍ତାକଡ଼ରେ ବସି ଜୋତା ସିଲାଇ କରୁଛି ।'

ଏପରି ସବୁ କଥା ଓ ଗପ ସେତେବେଳେ ସମ୍ଭବ ଥିଲା । ଏବେ ଜ୍ଞାନର ପରିସର ବହୁତ ବଢ଼ି ଯାଇଛି । ତେଣୁ ଗ୍ରାମମାନଙ୍କରେ ବଡ଼ପଣ୍ଡାଙ୍କ ପରି ସରଳ ବିଶ୍ୱାସୀ ନିଷପଟ ବକ୍ତା ଆଉ କେହି ମିଳିବେ ନାହିଁ କିମ୍ବା ସେପରି ଲୋକଙ୍କ ସେସବୁ କଥା ଧୈର୍ଯ୍ୟଧରି ଶୁଣିବାକୁ ଶ୍ରୋତା ମଧ ମିଳିବେ ନାହିଁ ।

ଏସବୁ ପରାଧୀନ ଯୁଗର ଘଟଣା । ଆମେ ସେହି ଯୁଗର ପର ପଦାନତ ଅସହାୟ କୁଗ୍ଣ ସମାଜରୁ ବଢ଼ି ବଢ଼ି ଆଜିର ଏ ନୂତନ ଇଲେକ୍‌ଟ୍ରୋନିକ ସ୍ୱାଧୀନ ଯୁଗରେ ପାଦ ଦେଇଛୁ । ସେତେବେଳେ ରାସ୍ତାଘାଟ ନ ଥିଲା । ଲୋକେ ପାଖ ପାଖ ସ୍ଥାନରେ ପ୍ରକୃତ ଅବସ୍ଥା ଜାଣି ପାରୁନଥିଲେ । ବର୍ତ୍ତମାନ ଆମେ ସ୍ୱାଧୀନ ହୋଇଥିଲେ ମଧ କ୍ଷମତା ଅପବ୍ୟବହାର ଓ ଅବିମୃଶ୍ୟକାରୀତା ଯୋଗୁ ଧ୍ୱଂସ ମୁଖକୁ ଯାଉଛୁ । ହୁଏତ ଆମ ଦେଶ ତିନି ଖଣ୍ଡରୁ ପୁଣି ବହୁଖଣ୍ଡ ହୋଇ ଆମେ ପାଖ ରାଜ୍ୟମାନଙ୍କୁ ଯିବା ମଧ ସମ୍ଭବ ହେବନାହିଁ, ସେଥିପାଇଁ ପାସପୋର୍ଟ ଓ ଭିସାର ପ୍ରୟୋଜନ ପଡିବ । ସବୁ ରାସ୍ତା ଓ ଯାନବାହନ ଥାଇ ମଧ୍ୟ ଆମେ ପଙ୍ଗୁ ହୋଇ ପଡ଼ିବା । ଏବେ ଆମେ ଢ଼ାକା ଓ ଲାହୋରକୁ ଯାଇ ନ ପାରି ସେ ଲୋକଙ୍କ ପ୍ରକୃତ ଅବସ୍ଥା ନ ଜାଣି ପାରିଲା ଭଳି କଲିକତା ପାଟଣା ମଧ୍ୟ ଦେଖି ନ ପାରି ପୂର୍ବେ ଲୋକେ କଟକକୁ କଳ୍ପନାର ଅଜ୍ଞାନ ନେତ୍ରରେ ସ୍ୱର୍ଗପୁରୀ କରି ଦେଖିଲା ଭଳି ସେ ସ୍ଥାନ ଓ ଲୋକଙ୍କୁ ସେହିପରି ଚକ୍ଷୁରେ ଦେଖିବାକୁ ବାଧ୍ୟ ହେବେ ।

**ଆମ ଗ୍ରାମ ପରିବେଶ :**

ମାନବର ଅଭ୍ୟୁଦୟ ଓ ସଭ୍ୟତା ପାରିପାର୍ଶ୍ୱିକ ଅବସ୍ଥା ଓ ପ୍ରାକୃତିକ ପରିବେଶ ଉପରେ ନିର୍ଭର କରେ । ପୁରାତନ ମିଶର ସଭ୍ୟତା ନୀଳନଦୀ,ମେସୋପଟାମିଆ ସଭ୍ୟତା ଟାଇଗ୍ରୀସ୍ ଓ ଇଉଫ୍ରେଟିସ ଦୁଇ ନଦୀ, ହିନ୍ଦୁ ସଭ୍ୟତା ସିନ୍ଧୁ ଓ ଗଙ୍ଗା ନଦୀର ଉପତ୍ୟକାମାନଙ୍କରେ ପ୍ରକାଶ ପାଇଥିଲା । ବର୍ତ୍ତମାନ ସେସବୁ ବଦଳିବାକୁ ଲାଗିଛି । ମନୁଷ୍ୟ ପ୍ରକୃତିକୁ ପୂରା ବେଖାତିର କରି କୃତ୍ରିମତାର ଅଧିକ ପ୍ରୟୋଗ କରିବାକୁ ଲାଗିଛି । ଆରବ, ଇରାକ, ଇରାନ୍ ପ୍ରଭୃତି ମରୁଭୂମି ଅଞ୍ଚଳ ପାଣି ସ୍ଥାନରେ ଭୂମିତଳୁ ପେଟ୍ରୋଲ ସମ୍ପଦ ପାଇ ସମୁଦ୍ର ପାଣିକୁ ଲବଣମୁକ୍ତ କରି ପାଇପରେ ଆଣି ମରୁଭୂମିମାନଙ୍କୁ ଭୂସ୍ୱର୍ଗରେ ପରିଣତ କରି ପାରିଛନ୍ତି ।

ବହୁ ବର୍ଷ ତଳେ ରତ୍ନଚିରା ନଦୀ କୂଳରେ ଯଶିପୁର ଗ୍ରାମଟି ଗଢ଼ିଉଠିଥିଲା । ପ୍ରାୟ ଚାରିଶହ ବର୍ଷ ତଳେ ଖୋର୍ଦ୍ଧାର ଭୋଇବଂଶର ପ୍ରଥମ ସ୍ୱାଧୀନ ନରପତି ରାମଚନ୍ଦ୍ର ଦେବ ଜଗନ୍ନାଥ ଧର୍ମର ପୁନଃପ୍ରତିଷ୍ଠା ପାଇଁ ଯଶିପୁର ସ୍ଥାନରେ ଆମ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ଶାସନଟି ବସାଇଥିଲେ । ସେ ଗ୍ରାମଟି ମାଳ ଓ ବୁଦୁବୁଦିଆ ଜଙ୍ଗଲ ଦ୍ୱାରା ଆବୃତ ଥିଲା । ଅତି ଘଞ୍ଚ ଜଙ୍ଗଲ ନ ଥିଲେ ମଧ ଗହଳିଆ ଗଛର ତୋଟାମାଳ ଅନେକ ସ୍ଥାନରେ ରହିଥିଲା । ଆମ ଗ୍ରାମର ଦକ୍ଷିଣ ପଟେ ୧୦ ଏକରରୁ ଉର୍ଦ୍ଧ୍ୱ ବଡ଼ ପୋଖରୀଟିଏ ରହିଛି । ସେ ପୋଖରୀଟି ନାଳ ଦ୍ୱାରା ଦୁଇପଟେ ରତ୍ନଚିରା ନଦୀ ଦ୍ୱାରା ସଂଯୁକ୍ତ ଥିଲା । ରତ୍ନଚିରା ନଦୀର ପଶ୍ଚିମ ପଟେ ମଧୁବନ ନାମକ ଏକ ଛୋଟ ଜଙ୍ଗଲ ଥିଲା ।

ମୋ ଶୁଣାରେ ବଡ଼ପୋଖରୀ ହୁଡ଼ା ଓ ମଧୁବନରେ ବାଘ, ବାରହା, ଭାଲୁ ପ୍ରଭୃତି ହିଂସ୍ରଜନ୍ତୁ ରହୁଥିଲେ । ପୋଖରୀଟି ମଧ କୁମ୍ଭୀରରେ ପୂର୍ଣ୍ଣ ଥିଲା । ମୋ ଜେଜେ ବାପାଙ୍କ ବୟସର କପିଳ ଦାସ ନାମକ ଜଣେ ବ୍ୟକ୍ତି ଥରେ ସନ୍ଧ୍ୟାରେ ବଡ଼ ପୋଖରୀ କୂଳରେ ନିତ୍ୟକର୍ମ ସାରି ଘରକୁ ଫେରିବାକୁ ଉଦ୍ୟତ ହେବା ସମୟରେ ବାଘର ହେଣ୍ଟାଳ ଶୁଣି ଅତି ଉଚ୍ଚ ନାଗାର୍ଜୁନ ଗଛଟି ଉପରକୁ ଉଠିଯାଇ ସେହି ଗଛ ଉପରେ ରହି ରାତ୍ରୀଯାପନ କରିଥିଲେ । ସେପରି ଜଙ୍ଗଲ ବା ବାଘ ଭାଲୁ ନ ଥିଲେ ମଧ ସେ ନାଗାର୍ଜୁନ ଗଛଟି ରହିଛି । ମୋର ପିଲାଦିନେ ରଥଯାତ୍ରା ସମୟରେ ବାଉରୀମାନେ ସେ ଗଛ ଅଗକୁ ଚଢ଼ି ୧୦ ମାଇଲ ଦୂରର ପୁରୀ ବଡ଼ଦାଣ୍ଡର ରଥଯାତ୍ରା ଦେଖି ପାରୁଥିଲେ । ବର୍ତ୍ତମାନ ସେ ଗଛଟି ଅର୍ଦ୍ଧଭଗ୍ନ ଓ ତା'ର ବିରାଟ ମୂଳଟି ଫମ୍ପା ହୋଇ ସେ କୋରଡ଼ରେ ବଡ଼ ବଡ଼ ବିଷଧର ସର୍ପସବୁ ରହୁଛନ୍ତି ।

ମୁଁ ଲୋଅର ପ୍ରାଇମେରୀ ସ୍କୁଲରେ ପଢ଼ିବା ପର୍ଯ୍ୟନ୍ତ ବଡ଼ ପୋଖରୀରେ କୁମ୍ଭୀର ଥିଲେ । ସେମାନେ କୂଳରେ ଶୋଇ ଖରା ପୋଉଁଥିଲେ । ଥରେ ଆମ ଗ୍ରାମର ପାଗଳା

ବାଞ୍ଛା ତେଲି ପୋଖରୀ କୂଳର ଗଛଡାଳଟିଏ ଧରି ଝୁଲିଯାଇ 'ଆରେ କୁମ୍ଭୀର ଆ, କିପରି ଖାଇବୁ ଖା' କହି କୁମ୍ଭୀର ମୁହଁକୁ ଗୋଇଠା ମାରିବାକୁ ଚେଷ୍ଟା କଲା । କୁମ୍ଭୀରଟା ଉଚୁଙ୍କି ଯାଇ ତା' ଗୋଡଟାକୁ କାମୁଡ଼ି ଧରିଲା । ବାଞ୍ଛା ଗଛରୁ ଓହଳିଛି, କୁମ୍ଭୀରଟା ତା ଗୋଡରୁ ଓହଳିଛି । ଏ ଦୃଶ୍ୟ ଦେଖି ଲୋକମାନେ ଜମିଯାଇ ଠେଙ୍ଗାରେ କେଞ୍ଚି କୁମ୍ଭୀରଟାକୁ ମାରିଦେଲେ । ବାଞ୍ଛା ବହୁଦିନ ଡାକ୍ତରଖାନାରେ ପଡ଼ି ଆରୋଗ୍ୟ ଲାଭ କଲା ।

କେବଳ କୁମ୍ଭୀର ନୁହେଁ, ସେତେବେଳେ ବେଳେବେଳେ ହିଂସ୍ର ଜନ୍ତୁଙ୍କ ଉପଦ୍ରବ ମଧ୍ୟ ଦେଖାଯାଉଥିଲା । ବୀରରାମଚନ୍ଦ୍ରପୁର ମାଳ ଓ ସାତଶଙ୍ଖ ନିକଟ ପଟ୍ଟନାହାକିଆ ଜଙ୍ଗଲରୁ ବେଳେବେଳେ ଗୋଟାଏ ଗୋଟାଏ କଲରାପତ୍ରିଆ ବାଘ ଆମ ଗାଁରେ ପଶି ଛେଳି ମେଣ୍ଢା ଓ ଗୋରୁ ମାରି ଅଧାଖାଇ ଚାଲି ଯାଉଥିଲେ । ସେ ଘଟଣାରେ ଗାଁରେ ଚହଳ ପଡ଼ି ଆମେ ସ୍କୁଲକୁ ଯିବା ପୂର୍ବରୁ ମୃତ୍ୟୁର ପଡ଼ିଥିବା ସ୍ଥାନରେ ଯାଇ ରୁଣ୍ଡ ହେଉଥିଲୁ । ଖବର ପାଇ ପୁରୀ ରାଜା ଓ ପୁରୀ ଏସ୍.ପି. ଆସି ମଞ୍ଚା ବାନ୍ଧି ବାଘକୁ ଅପେକ୍ଷା କରୁଥିଲେ । ଗ୍ରାମବାସୀ ମଧ୍ୟ ଏକ ବିରାଟ ବାଘ ଯନ୍ତା ତିଆରି କରି ସେଥିରେ ଛେଳିଟାଏ ବାନ୍ଧି ମେ ମେ କରିଥିଲେ । ଆମେ ପିଲାଏ ସେସବୁ ଦେଖିବାକୁ ଦଉଡ଼ୁଥିଲୁ ।

ଗାଁ ଚାରିପଟ ମାଳ ଓ ପୋଖରୀହୁଡ଼ାର ବୁଦୁବୁଦିଆ ଜଙ୍ଗଲରୁ ଖାରିକୋଳି, ଜାମୁକୋଳି, ଲୁଣିକୋଳି, ମେହେଙ୍ଗାକୋଳି, ବେତକୋଳି, ମିରିଗାକୋଳି, ଭଇଁଚି କୋଳି, କଣ୍ଟେଇକୋଳି ଏବଂ ପାଚିଲା ତାଳ, କଇଥ, ବେଲ ଓ କେନ୍ଦୁ ପ୍ରଭୃତି ଖରାବେଳେ ସଂଗ୍ରହ କରି ଖାଇବା ଆମ ଅଭ୍ୟାସରେ ପଡ଼ିଯାଇଥିଲା । କଞ୍ଚା ହରିଡ଼ା ଚୋବାଇ ପାଟିକୁ କଷାକରି ବଡ଼ ପୋଖରୀ କୂଳକୁ ଯାଇ ଆଞ୍ଜୁଳାଏ ପାଣି ପିଇକରି ପାଟିକୁ ମିଠା କରିବାର ଅନୁଭୂତି ମଧ୍ୟ ଭୁଲିବାର ନୁହେଁ ।

ସକାଳୁ ଉଠି ବାଲୁରା (ବାଦୁଡ଼ି) କଟା ପୋଲାଙ୍ଗ ଗୋଟାଇ ତାକୁ ଗୁଡ଼ିଆ ଘରେ ଦେଇ ଗୁଡ଼ିଆଠାରୁ ତା' ବିନିମୟରେ ଅଣ୍ଡିଏ ଲେଖାଁଏ ମୁଢ଼ି ଉଖୁଡ଼ା ବା ଖଇ ଆଣି ଖାଇବା ଆମ ପିଲାଙ୍କ ପାଇଁ ଏକ ମଉଜ ଥିଲା । ତା' ସହିତ ବେଳେବେଳେ ଅଣ୍ଡାଭଜା ଖିଆ ମଉଜ ମଧ୍ୟ ହେଉଥିଲା । ନଡ଼ିଆ ବଗିଚା ମଝିରେ ରହୁଥିବା ଜଗିଆ ବାଉରୀଘର ମାନେ କୁକୁଡ଼ା ପୋଷୁଥିଲେ । ସେତେବେଳେ ଉଚ୍ଚ ଜାତିମାନେ କୁକୁଡ଼ା ମାଂସ ବା ଅଣ୍ଡା ଖାଉନଥିଲେ । ଖାଇଲେ ଜାତି ଯିବ ବୋଲି ଧାରଣା ଥିବାରୁ ତାହା ଘରେ ପଶୁ ନ ଥିଲା । ଆମ ଘରଟି ସଂସ୍କାରକଙ୍କ ଘର ଥିଲେ ମଧ୍ୟ ପିତାମାତାଙ୍କର ଅସହଯୋଗ ଆନ୍ଦୋଳନ ବେଳେ ଆମର ତତ୍ତ୍ୱ ନେବାକୁ ଆମ ରକ୍ଷଣଶୀଳ ଅଜା ଆଈ ଘରେ ରହୁଥିବାରୁ ଆମ ଘରେ ମଧ୍ୟ ତାହା ପଶୁନଥିଲା । ଡାକ୍ତର ସ୍ୱାସ୍ଥ୍ୟ ପାଇଁ ଅଣ୍ଡା ଖାଇବାର ବ୍ୟବସ୍ଥା କଲେ ଆଈ ଗାମୁଛା ପିନ୍ଧି ବାଡ଼ିପଟ ଉଷୁନାଧାନ-ଚୁଲି ପାଖେ ଇଟାରେ ଚୁଲିକରି

ଖପରାରେ ଘିଅ ପକାଇ ଅଣ୍ଡା ଭାଜି ଦେଉଥିଲା । ଆମେ ତାହା ଖାଇବା ପରେ ଆମକୁ ଦାନ୍ତଘଷି ଗାଧୋଇବାକୁ ପଡୁଥିଲା । ଆଈ ମଧ ପୁଣି ସ୍ନାନ କରିସାରି ଲୁଗା ପାଲଟୁଥିଲା । ସେତେବେଳେ କୁକୁଡ଼ା ଚାଷ ନ ଥିଲା । ବାଉରୀସାହିର କୁକୁଡ଼ାମାନେ ଗୁହପଡ଼ିଆ ଓ ଅଳିଆଗଦାମାନଙ୍କରୁ ଆବର୍ଜନାସବୁ ଖାଇ ବଢୁଥିଲେ, ବୋଧହୁଏ ତେଣୁ ଉଚ୍ଚଜାତିର ଶିକ୍ଷିତ ଲୋକେ କୁକୁଡ଼ା ଅଣ୍ଡା ଖାଇବାକୁ ଘୃଣା କରୁଥିଲେ ।

ସେହିଯୋଗୁଁ ଶାସ୍ତ୍ର ଅନୁସାରେ ବନ୍ୟ କୁକ୍କୁଟ, ଶୂକର ଖାଇବା ବାରଣ ନ ଥିଲେ ମଧ ଗ୍ରାମ୍ୟ କୁକୁଡ଼ା ଓ ଘୁଷୁରୀ ଖାଇବା ମନା ଥିଲା । ଆମର ସ୍କୁଲ ସାଥୀ ହୃଷ୍ଟପୁଷ୍ଟ ବାଉରୀ ପିଲାଙ୍କଠାରୁ ଅଣ୍ଡାର ପ୍ରଶସ୍ତି ଶୁଣି ଆମେ କେତେକ ଛୋଟ ଛୋଟ ପିଲା ଅଣ୍ଡା ମଉଜ ପାଇଁ ବାଉରୀ ଘରୁ ପଇସାକୁ ଦୁଇଟା ହିସାବରେ ଅଣ୍ଡା ସଂଗ୍ରହ କରି, ଗୁଆବାଡ଼ି ମାଳ ଭିତରେ ଖପରା ତେଲ କିମ୍ବା ଘିଅରେ ଭାଜି ବଡ଼ମାନଙ୍କଠାରୁ ଲୁଚିକରି ଭୋଜିକରି ଖାଉ । ଧରାପଡ଼ିଲେ ଆମକୁ ଦାନ୍ତ ଘଷି ଗାଧୋଇବାକୁ ପଡ଼େ ।

ଅଜା ଆଈଙ୍କ କୋହଳ ଶାସନ ଯୋଗୁଁ ମୋର ବାଲ୍ୟକାଳଟା ଆମୋଦପୂର୍ଣ୍ଣ ଓ ବେପରୁଆ ଥିଲା । ଗ୍ରାମର ବନ, ମାଳ ମାନଙ୍କରେ କେଉଁଠି କେଉଁ ପଶୁପକ୍ଷୀ ଛୁଆ ଦେଇଛି ସେ ସବୁ ବିଷୟରେ ଆମର ସଙ୍ଗୀଙ୍କ ଭିତରେ ଖବର ସଂଗ୍ରହର ପ୍ରତିଯୋଗୀତାରେ ମୁଁ ପଛେଇ ନ ଥିଲି । କେଉଁଗଛରେ ରାଜବଣି ବା ଘୁକାଳିକା ଛୁଆ ଦେଇଛି, ସାହାଡ଼ା ମୂଳେ, ଗଡ଼ିଆ କୂଳେ, ଡାହୁକ ବସାରେ କେତେଟା ଛୁଆ ଅଛନ୍ତି, କେଉଁ କିଆବାଡ଼ ମୂଳରେ ନେଉଳ ଛୁଆ ଅଛି, କେଉଁ ହିଡ଼ ଗାତରେ ଠେକୁଆ ଛୁଆ ଅଛି ପ୍ରଭୃତି ମୋ ଜିଭ ଅଗରେ ଥାଏ । ସେ ସମୟରେ ମୁଁ କେତେ ଯେ ଛୁଆ ଆଣି ପୋଷି ନ ଜାଣି ହତ୍ୟା କରିଛି ତା' ଗଣି ହେବନାହିଁ । ଝିଣ୍ଟିକାମାରି ବଣି ପୋଷିବା କଥାକୁ ଅକ୍ଷରେ ଅକ୍ଷରେ ପାଳନ କରି ବଣିଛୁଆକୁ ଝିଣ୍ଟିକା ଆଣି ଜବରଦସ୍ତି ଗିଳାଇ ମାରିବା ଏବେ ମନେପଡୁଛି ।

ଆମ ଜୀବହତ୍ୟା ହିସାବ ଫର୍ଦ୍ଦରେ ଗୃହପାଳିତ ବିରାଡ଼ି, କୁକୁର ଛୁଆଙ୍କ ସଂଖ୍ୟା ମଧ କିଛି କମ୍ ନ ଥିଲା । ବୁଲା କୁକୁରଗୁଡ଼ାକ ରୋଗଣା ଦିଶିଲେ ମଧ ତାଙ୍କ ଛୁଆଗୁଡ଼ିକ ତଉଲତାଉଲ ହୋଇ ସୁନ୍ଦର ଦିଶନ୍ତି । ସେମାନଙ୍କୁ ଆଣି ଘରେ ପୋଷିବାକୁ ଭାରି ଇଚ୍ଛା ହୁଏ; କିନ୍ତୁ ଅଭିଭାବକଙ୍କ ତାଡ଼ନାରେ ତାହା କରି ହୁଏନାହିଁ । ଥରେ ସେପରି କୁକୁର ଶାବକ ଗୁଡ଼ିଏ ସଂଗ୍ରହ କରି ମୁଁ ବାଡ଼ିପଟ ପରିତ୍ୟକ୍ତ ଧାନ ଉସୁଆଁ ଚୁଲି ଭିତରେ ରଖିଥିଲି । ଶୀତ ଦିନ ଯୋଗୁଁ ଚୁଲି ଭିତରେ ପାଳକୁଟାର ଆସନ ବିଛାଇଥିଲି । ରାତ୍ରିର ହିଂସ୍ରଜନ୍ତୁ ହାବୁଡ଼ରୁ ରକ୍ଷା ପାଇଁ ଚୁଲି ଉପରେ ପାତଲା ପୋପାଡା ବିଛାଇ ମାଟି ଘୋଡ଼ାଇ ଦେଇଥିଲି । ଚୁଲି ମୁହଁରେ ନିଶ୍ୱାସ ଯିବାକୁ ବାଟ ରଖି ତାହା ବନ୍ଦକରି ଦିଆଯାଇଥିଲା ।

ରାତିରେ ଆମେ ଭାଇ ଭଉଣୀ ନିଦରେ ଶୋଇଥିବାବେଳେ କୁକୁର ପିଲାଙ୍କ ବିକଳ କ୍ରନ୍ଦନ ଆମର ନିଦ୍ରାଭଙ୍ଗ କରିପାରିନଥିଲା । ସକାଳୁ ଉଠି ଦେଖିଲା ବେଳକୁ ଚୁଲି ଉପର ନଡ଼ିଆ କତା ଇତସ୍ତତ ହୋଇ ପଡ଼ିଥିଲା ଓ କୁକୁର ପିଲାଙ୍କ ସଂଖ୍ୟା ବିଲୁଆଙ୍କ ଦୟାରୁ ଶୂନ ହୋଇଯାଇଥିଲା । ଆମେ ଦୁଃଖରେ ଅଭିଭୂତ ହୋଇ ବିଲୁଆପ୍ରତି ବହୁ କଟୁବାକ୍ୟ ପ୍ରୟୋଗ କଲୁ; କିନ୍ତୁ ବିଲୁଆ ଆମ କୁକୁର ପିଲାଙ୍କୁ ଫେରାଇ ଦେଲାନାହିଁ ।

ବର୍ଷାଦିନେ ଖଳାବାଡ଼ିର ପାଳଗଦା ଉପରେ ଫୁଟିଥିବା ଛତୁ, ପୁରୁଣା ଉଇହୁଙ୍କା ଉପରେ ଫୁଟିଥିବା ଅତି କ୍ଷୁଦ୍ର ବାଲିଛତୁ ଓ ମହୁଫେଣାରୁ ମହୁ ସଂଗ୍ରହ କରିବାରେ ବାଉରୀ ପିଲାମାନେ ଆମକୁ ଅକୁଣ୍ଠ ସାହାଯ୍ୟ କରୁଥିଲେ । ହୁଙ୍କା ପ୍ରଭୃତିର ବିଷଧର ସର୍ପ ଓ ମହୁଫେଣାର ମଧୁମକ୍ଷିକାମାନଙ୍କ ଦଂଶ ନରୁ ରକ୍ଷା ପାଇବା ପାଇଁ ଆମ ହଟିଆ ବାଉରୀକୁ ଆମେ ସାଥୀ କରିଥିଲୁ ।

କାଠହଣା ଚଢ଼େଇ ଖୁମି ଖୁମି ଏକ ଡେଙ୍ଗା ନଡ଼ିଆ ଗଛ ମଝିରେ ଏକ କୋରଡ଼ କରିଥିଲା । ସେ କୋରଡ଼ରେ ବଣି ଚଢ଼େଇଟିଏ ବସାକରି ଛୁଆ ଦେଇଥିଲା । ସେ ଛୁଆ ଆଣିବାକୁ ଆମେ ହଟିଆ ବାଉରୀକୁ ଗଛ ଉପରକୁ ଚଢ଼ାଇଲୁ । ସେ କୋରଡ଼ ପାଖରେ ପହଞ୍ଚିବାକ୍ଷଣି 'ଆଲୋ ବୋଉଲୋ' କହି ଦ୍ରୁତ ଗତିରେ ତଳକୁ ଓହ୍ଲାଇ ଆସିଲା । ସେ କହିଲା କୋରଡ଼ଟାରେ ସାପଟାଏ ପଶିଛି । ସେତେବେଳେ ମାଆ ଚଢ଼େଇଟା ମଧ ଚିତ୍କାର କରି ସେ ଗଛ ଚାରିପଟେ ଉଡ଼ି ବୁଲୁଥିଲା । ମୂଲିଆମାନେ କାମସାରି ଘରକୁ ଫେରୁଥିଲେ । ମୋ ଅନୁରୋଧରେ କେଞ୍ଚାକେଞ୍ଚି କରି ସେମାନେ ସାପଟାକୁ ତଳେ ପକାଇ ବାଡ଼େଇ ମାରିଦେଲେ । ସାପଟାର ପେଟ ଫୁଲିକରିଥିଲା । ଆମେ ପେଟଟା ଚିରି ଛଅଟା ବଣିଛୁଆ ବାହାର କଲୁ । ପୋଛାପୋଛି, ଛିଞ୍ଚା ବିଞ୍ଚା କଲୁ; କିନ୍ତୁ ଜୀବନ ଫେରିଲା ନାହିଁ । ଆମେ ମନଦୁଃଖରେ ଶବସତ୍କାର ପାଇଁ ଗବ ଫଳ ଓ ଖଡ଼ିକାରେ ବିମାନ ତିଆରି କରି ତା' ଉପରେ ଶବମାନଙ୍କୁ ବସାଇ ଶୋଭାଯାତ୍ରା କରିବା ପରେ କବର ଦେଲୁ । ନିଜ ଭିତରେ ଅଧଲେ ପଇସେ ଚାନ୍ଦାକରି ଚୁଡ଼ାଘଷା ଭୋଜି କରି ଶ୍ରାଦ୍ଧ ସମାପନ କଲୁ ।



# ମୋ ମାଇନର ପଢ଼ା

ସେ କାଳର ଗ୍ରାମ୍ୟ ଜୀବନ ବଡ଼ ସରଳ ଓ ଅମାୟୀକ ଥିଲା । ଆର୍ଥିକ ହୀନମନ୍ୟତା ଲୋକଙ୍କୁ ଘାରୁ ନ ଥିଲା । ସ୍ୱାଧୀନତାର ଦୁଇ ଦଶନ୍ଧି ପୂର୍ବରୁ ଦେଶରେ ଦାରିଦ୍ର୍ୟତାର ଉତ୍କଟତା ଥିଲେ ମଧ୍ୟ ଲୋକଙ୍କ ମନରେ ଦାରିଦ୍ର୍ୟ ମନୋଭାବ ବା ହୀନମନ୍ୟତା ପ୍ରବେଶ କରି ନ ଥିଲା । ନୂତନ ଇଂରେଜୀ ଶିକ୍ଷା ପଦ୍ଧତି ପଢ଼ି ନ ଥିବା ଟାଣୁଆ ଟାଣୁଆ ଲୋକ ଗ୍ରାମର ସମ୍ପତ୍ତି ବୁଝିବା ସଙ୍ଗେ ସଙ୍ଗେ ବହୁ ସମସ୍ୟାର ସମାଧାନ ଅଳ୍ପକେ କରିଦେଇ ପାରୁଥିଲେ । ସରକାରୀ ଚାକିରି ପ୍ରତି ଲୋକେ ଆକୃଷ୍ଟ ନଥିବାରୁ ଚାକିରି ବା ଧନର ବିଭିନ୍ନ ଶ୍ରେଣୀ ଭିତରେ ବଢୁଥିବା ଭିନ୍ନ ମନୋଭାବ ଲୋକଙ୍କ ଭିତରେ ପ୍ରବେଶ କରି ନ ଥିଲା । ମହାତ୍ମା ଗାନ୍ଧିଙ୍କ ଗଣ ଆନ୍ଦୋଳନ ଲୋକଙ୍କ ମନକୁ ଆନ୍ଦୋଳିତ କରି ପାରିଥିଲା । 'ଚାକିରି ଝକମାରୀ ଏ ଜୀବନେ ନାହିଁ କରି'କୁ ଲୋକେ ଜୀବନାଦର୍ଶ ବୋଲି ଧରି ନେଇଥିଲେ ।

ଗ୍ରାମରେ ଲୋକଙ୍କ ଜୀବନ କୃଷିଭିତ୍ତିକ ଥିଲା । ଆମ ଗ୍ରାମରେ ଧାନ ଓ ନଡ଼ିଆ ଚାଷ ଲୋକଙ୍କ ପ୍ରଧାନ ବ୍ୟବସାୟ ଥିଲା । କୃଷିଜାତ ଦ୍ରବ୍ୟର ବଜାର ଦର କମିଗଲେ ଲୋକଙ୍କୁ ବାଧୁଥିଲା । ତଥାପି ଲୋକେ ''ଯେତିକି ଚୁନାକୁ ସେତିକି ପିଠା'' ଆଦର୍ଶ ଗ୍ରହଣ କରି ଅଳ୍ପକେ ସନ୍ତୁଷ୍ଟ ରହୁଥିଲେ । ଗରିବ ବୟସ୍କ ଗ୍ରାମବାସୀମାନେ ଧନୀ ଓ ଦରିଦ୍ର ସବୁ ପିଲାଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଗ୍ରାମର ପର୍ବପର୍ବାଣି ମାନଙ୍କରେ ଧନୀ ଗରିବର ଭେଦ ନ ଥିଲା । କୁମାର ପୂର୍ଣ୍ଣମୀ ପରି ଉତ୍ସବ ଦିନ ପିଲାମାନେ ନୂଆ ଲୁଗା ପିନ୍ଧି ଯେ କୌଣସି ଗ୍ରାମବାସୀଙ୍କୁ ମୁଣ୍ଡିଆ ମାରିଲେ ସେମାନେ ନିଜର ସାମର୍ଥ୍ୟ ଅନୁସାରେ ଅଧଲେ ପଇସେ ଦେଇ ପିଲାଙ୍କୁ ଖୁସି କରଉଥିଲେ । ମୋ ପିଲା ତୋ ପିଲାର ପ୍ରଭେଦ ନ ଥିଲା ।

ଅତି ଅଳ୍ପରେ ସନ୍ତୁଷ୍ଟ ରହି ମୁଣ୍ଡ ଟେକି ଚାଲିବା ଲୋକଙ୍କ ଭିତରେ ଆମ ଗ୍ରାମର ବନମାଳୀ ଦାସ ଥିଲେ ଅନ୍ୟତମ । ତାଙ୍କର ଧାନଧନ ପ୍ରାୟ ନ ଥିଲା । ଛୋଟ ଘରଟିର ବାଡ଼ି ଓ ଦାଣ୍ଡପଟେ କେତୋଟି ମାତ୍ର ନଡ଼ିଆ ଗଛ ଥିଲା । ସେ ଗ୍ରାମରୁ ୧୨, ୧୪ ମାଇଲ ବାଟ ପୁରୀ ସହରକୁ ଚାଲି ଚାଲି ଯାଇ ପାରଳାଖେମୁଣ୍ଡି ମହାରାଜାଙ୍କ ନାମରେ ପ୍ରତି ସଂକ୍ରାନ୍ତି ଦିନ ଲୋକନାଥଙ୍କ ଉପରେ ପାଣି ଲାଗି କରୁଥିଲେ । ସେଥିପାଇଁ ରାଜାଙ୍କଠାରୁ ମାସିକ ତିନୋଟି ମାତ୍ର ଟଙ୍କା ସେ ପାଉଥିଲେ । ସେତିକିରେ ଅତି

କଷ୍ଟେମଷ୍ଟେ ସେ ତାଙ୍କ ଘରର ଗୁଜୁରାଣ ମେଣ୍ଟାଉଥିଲେ । ସେଥିରେ ଯଥା ତଥା ପର୍ବପର୍ବାଣି କରି ଗ୍ରାମର ଜ୍ଞାତି ଭାଇ ପ୍ରଭୃତିଙ୍କୁ ନିମନ୍ତ୍ରଣ କରି ଖୁଆଉଥିଲେ । କିଏ ନ ଅଇଲେ ଅଭିମାନ କରୁଥିଲେ । ସେ ସମସ୍ତଙ୍କ ସଙ୍ଗେ ନିଜକୁ ଜଣେ ଗ୍ରାମବାସୀ ବୋଲି ମନେ କରି ମୁଣ୍ଡ ଟେକି ରହିଥିଲେ । ସେ ନିଜକୁ ଅନ୍ୟଠାରୁ କଦାପି ନ୍ୟୂନ ମନେ କରୁ ନଥିଲେ ।

ନଡ଼ିଆ ପଇସାକୁ ୨ଟା ୪ଟା ଓ ଚାଉଳ କଟକୀ ସେର ଦାମ୍ ଚାରି ପଇସା ଥିଲା । ସାଧାରଣ ଲୋକଙ୍କ ପାଖରେ ଜମା ହୋଇ ପଇସା ରହୁ ନ ଥିଲା । ଟଙ୍କାଟାଏ ପଇସା ଏକାଠି କରି ଦେଖିବା ଲୋକଙ୍କ ପକ୍ଷରେ କଷ୍ଟ ଥିଲା । ଗୋଟିଏ ବାଉରାଣୀ ପଇସାଟିଏ ମାତ୍ର ଧରି ଦୋକାନକୁ ଆସି ବୋଡ଼ିକର ମାଟିତେଲ (କିରାସିନି) ବୋଡ଼ିକର ଧୂଆଁପତ୍ର ବୋଡ଼ିକର ନରଦି (ହଳଦି) ଓ ବୋଡ଼ିକର ମଥାଦେଲ (ମୁଣ୍ଡଲଗା ରାଶିତେଲ) ଏପରି ଚାରୋଟି ପଦାର୍ଥ କିଣି ନେଇ ଯାଉଥିଲା । ବେଳେବେଳେ କୌଣସି ଲୋକ ପାଖରେ ବହୁତ ପଇସା ହୋଇଗଲାଣି ବୋଲି ଗୁଜବ ଉଠୁଥିଲା । ସେପରି ଜଣେ ଲୋକର ମୃତ୍ୟୁ ପରେ ତା'ର ତକିଆ ଭିତରୁ ସମସ୍ତ ଗଚ୍ଛିତ ଧନ ବାହାର ହେବାରେ ସେଥିରେ ଚଉଦଅଣା (ଷୋଳଅଣା=ଏକଟଙ୍କା) ତିନି ପଇସା ଏକ ଅଧଲା ଓ ଦୁଇ ପାହୁଲ ବାହାରିଥିଲା । ଆମର ଏତେ ବଡ଼ ଗାଁଟାରେ ପାଞ୍ଚ ଦଶ ଏକରରୁ ବେଶି ଜମି ଥିବା ଲୋକ ଆଙ୍ଗୁଠି ଅଗରେ ଗଣି ହୋଇ ଯାଉଥିଲେ । ଟଙ୍କେ ଦୁଇଟଙ୍କିଆ ନୋଟ ପ୍ରଭୃତିର ଚାଲୁ ନଥିଲା । ଲୋକେ ତମ୍ବା କିମ୍ବା ରୂପା କରାଟରେ ଟଙ୍କା ପଇସା ରଖି ଅଣ୍ଟାରେ ମାରୁଥିଲେ । ଘରେ ରଖିବା ଭଳି ପଇସା ଥିଲେ ତାହା ଘର ଭିତରେ ବେତ ପେଟରା (ବାକ୍ସ)ରେ ରହୁଥିଲା କିମ୍ବା ଖଟ ମୁଣ୍ଡ ଉପର ଲମ୍ବା ଗୁପ୍ତି ଭିତରେ ଚାବି ପଡ଼ି ରହୁଥିଲା ।

ଆମ ଗ୍ରାମଟି ରାଜାଙ୍କ ଦ୍ୱାରା ଦାନ ମିଳିଥିବା ନିଷର ଶାସନ ଗ୍ରାମ ଥିଲା । ଇଂରେଜ ଅମଳରେ ପ୍ରଥମେ ଜମି ଉପରେ ଟିକସ ବସିଲା । ଲୋକେ ଖଜଣା ଦେବାକୁ ଅଭ୍ୟସ୍ତ ନ ଥିଲେ । ମୋର ପ୍ରପିତାମହ ଯୁବ ନେତା ବନମାଳୀ ଦାସ ଖଜଣା ଆଦାୟ ପାଇଁ ତହସିଲଦାରୀ ନେଇ, ନିଜର ଜମିବାଡ଼ି ବନ୍ଧକ ପକାଇ ଲୋକଙ୍କ ପାଇଁ ଠିକ୍ ସମୟରେ ଖଜଣା ଦାଖଲ କରି ଜମି ନିଲାମ ହେବାରୁ ରକ୍ଷା କରୁଥିଲେ । ମାତ୍ର ଅଠେଇଶ ବର୍ଷ ବୟସରେ ହଠାତ୍ ହଇଜା ହୋଇ ସେ ଇହଧାମ ଛାଡ଼ି ଚାଲିଗଲେ । ତାଙ୍କର କିଶୋରୀ ସ୍ତ୍ରୀ ୨ ଓ ୪ ବର୍ଷର ଦୁଇଟି ପୁଅକୁ ପେଜ ପାଣି ଖୁଆଇ ବଞ୍ଚାଇବା ପାଇଁ ପର ଘରେ ରୋଷେଇ କରି ଧାନକୁଟି ଗୁଜୁରାଣ ମେଣ୍ଟାଉଥିଲେ । ପିତାମହ ଆନନ୍ଦ ଦାସ ବଡ଼ ହୋଇ ଅନ୍ୟର ଭାଗଜମି ଧରି ଚାଷବାସ କରି ଚଳିଲେ । ସେ ସେହି ଗ୍ରାମର ଜଣେ ଖ୍ୟାତିସମ୍ପନ୍ନ ବାହାନପତି ବଂଶର ବ୍ୟକ୍ତିଙ୍କ କନ୍ୟାଙ୍କ ପାଣି ଗ୍ରହଣ କଲେ । ସେ ଆମ ଘରଠାରୁ ବ୍ରାହ୍ମଣରେ ଟିକିଏ ଊଣା ଥିବାରୁ ଆମ ଜ୍ଞାତି ଭାଇମାନେ ଆନନ୍ଦଙ୍କ ଉପରେ

ଆକ୍ରମଣ କରିଥିଲେ କିନ୍ତୁ ସେ ସଂସ୍କାରଧର୍ମୀ ପୁରୁଷ ଥିବାରୁ ସେଥିକୁ ଖାତିର କରି ନଥିଲେ । ମୋର ପିତାମହଙ୍କର ସାଂସାରିକ ଜ୍ଞାନ ଥିବାରୁ ସେ ଦୁଇଜଣ ନାନା ଭାବରେ ପରିଶ୍ରମ କରି ୧୮ ଏକର ପର୍ଯ୍ୟନ୍ତ ଜମି କରିପାରିଥିଲେ । କନ୍ୟାମାନଙ୍କୁ ବିବାହ ଦେଇ ପୁତ୍ର ପଣ୍ଡିତ ନୀଳକଣ୍ଠଙ୍କୁ ଶିକ୍ଷାଦେଇ ଉପଯୁକ୍ତ ମଣିଷ କରି ପାରିଥିଲେ ।

ମୋର ପିତା ଗୋପବନ୍ଧୁଙ୍କ ସଙ୍ଗେ ପିଲାଦିନୁ ଦେଶସେବା ପାଇଁ ଶପଥ ନେଇଥିଲେ । ତେଣୁ ବିଦ୍ୟାଧ୍ୟୟନ ଶେଷ ହେବାପରେ ଚାକିରୀ ବା ବ୍ୟବସାୟରେ ମନନିଯୋଗ ନ କରି ସମାଜ ସେବା ଓ ବିଦ୍ୟାଦାନ କାର୍ଯ୍ୟରେ ଲାଗିଥିଲେ । ପିତାମହ ଚାଷବାସ ଦେଖି ଘର ଚଳାଉଥିଲେ । ସେ ଅତି ବୃଦ୍ଧ ହୋଇଯିବାରୁ ଚାଷବାସ ଦେଖାଶୁଣା କରି ପାରିଲେ ନାହିଁ । ଆମର ମଧ ବଂଶ ବଢ଼ିଥିଲା । ତେଣୁ ଆମ ଘରର ଆଦାୟ ଆମ ପରିବାରର ଖର୍ଚ୍ଚକୁ ନିଅଣ୍ଟ ହେଲା ଓ ମୋର ପିତାଙ୍କୁ ତାଙ୍କ ଆସେମ୍ବ୍ଲି ଭତ୍ତା ପ୍ରଭୃତିରୁ କାଟି ଘର ଖର୍ଚ୍ଚ ପାଇଁ କିଛି ଦେବାକୁ ପଡୁଥିଲା । ସେ ପୂର୍ଣ୍ଣ ପ୍ରାଣରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାର ସ୍ଥିର କରିବାରୁ ଘର କିଏ ଚଳାଇବ ତାହା କିପରି ଚଳିବ ଚିନ୍ତା ପଡ଼ିଲା । ସେ ଗୁରୁ ଗୋପବନ୍ଧୁଙ୍କ ସହ ପରାମର୍ଶ କରି ପୁରୀ ମହାଜନଙ୍କ ଠାରୁ ଟଙ୍କା ଧାର କରି ଆମ ଗ୍ରାମର ନିଲାମ ହୋଇଥିବା ଏକ ଗୋଳମାଳିଆ ସମ୍ପତ୍ତି ଶସ୍ତାରେ କିଣି ପକାଇଲେ । ତାଙ୍କର କେତେକ ଗ୍ରାମୀୟ ମାମଲତକାର ବନ୍ଧୁ ସେ ସମ୍ପତ୍ତି ବୁଝିବା ପାଇଁ ପ୍ରତିଶ୍ରୁତି ଦେଲେ । ସେହି ଜମିରୁ କରଜ ଶୁଝା ଓ ମାଲିମକଦ୍ଦମା ଖର୍ଚ୍ଚ ସବୁ ଯାକ କୌଣସିମତେ ଘରର ଗୁଜରାଣ ମେଣ୍ଟିଲା ଓ ସେ ନିରାଇମ୍ୟ ଭାବରେ ସ୍ୱାଧୀନତା ସଂଗ୍ରାମରେ ଲାଗିପଡ଼ିଲେ ।

ମୁଁ ୧୯୩୧ ରେ ସତ୍ୟବାଦୀ ମାଇନର ସ୍କୁଲରେ ନାମ ଲେଖାଇଲି । ସେତେବେଳକୁ ଅସହଯୋଗ ଆନ୍ଦୋଳନ ଜୋର୍‌ସୋର୍‌ରେ ଚାଲିଥାଏ । ଗୋପବନ୍ଧୁଙ୍କ ତିରୋଧାନ ପରେ ମୋର ପିତା ଓଡ଼ିଶା କଂଗ୍ରେସର କର୍ଣ୍ଣଧାର ହୋଇ ଥରକୁ ଥର କାରାଦଣ୍ଡ ଭୋଗ କରୁଥାଆନ୍ତି । କାରାଦଣ୍ଡ ସହିତ ତାଙ୍କ ଉପରେ ଯେଉଁ ଜୋରିମାନା ହୁଏ ସେଥିରେ ଆମ ଘର ଖାନତଲାସ ହୋଇ ପୋଲିସ ଜିନିଷପତ୍ର ଓ ଗାଈଗୋରୁ ନେଇ ନିଲାମ କରନ୍ତି । ଆମେ ନିର୍ବାକ୍ ହୋଇ ତାହା ଦେଖୁ । କିନ୍ତୁ ଗାନ୍ଧି ନୀତିର ଆଶ୍ରୟ ନେଇ ସେଥିପାଇଁ ବ୍ୟସ୍ତ ବା ବିବ୍ରତ ହେଉନାହୁଁ ।

ଗ୍ରାମରେ ସେତେବେଳେ ସତ୍ୟାଗ୍ରହର ଗୋଳ ଜୋରରେ ଲାଗିଥାଏ । କଂଗ୍ରେସ ନେତା ପ୍ରଚାରକ ଅନନ୍ତ ମିଶ୍ର ଗ୍ରାମରେ ଗୋଟିଏ ସତ୍ୟାଗ୍ରହୀ ଶିବିର ଖୋଲି ଥାଆନ୍ତି । ସେମାନେ ଜାତୀୟ ସଂଗୀତ ସବୁ ଗାଇ ଗାଇ ଗାଁ ଗଣ୍ଡା ବୁଲୁଥାଆନ୍ତି । ଅଫିମ ଦୋକାନରେ ପିକେଟିଂ କରୁଥାଆନ୍ତି । ଲୁଣମରା ପାଇଁ ଅସ୍ତରଙ୍ଗ ଯାଉଥାଆନ୍ତି ।

ପୋଲିସଠାରୁ ମାଡ଼ ଖାଉଥାଆନ୍ତି ଓ ବନ୍ଦୀ ହୋଇ କାରାବରଣ କରୁଥାଆନ୍ତି । ଦଳେ ଗଲେ ଆଉ ଦଳେ ଆସି ଶିବିରରେ ଯୋଗ ଦେଉଥାଆନ୍ତି । ସେତେବେଳେ ମୁଁ ଗୋଟିଏ ଖାତା ଦେଇ ସେମାନଙ୍କ ହାତରେ ଯେଉଁ ଜାତୀୟ ସଙ୍ଗୀତ ସବୁ ଲେଖାଇ ରଖିଥିଲି ଏବେ ବି ମୋ ପାଖରେ ତାହା ସ୍ମୃତି ହୋଇ ରହିଛି । ମଝିରେ ମଝିରେ ମୁଁ ସେମାନଙ୍କ ସଙ୍ଗେ ଯାଇ ସଭା ସମିତିରେ ଯୋଗ ଦେଇ ସତ୍ୟାଗ୍ରହୀ ମାରିଥିବା ଲୁଣର ପୁଡ଼ିଆ ସବୁ ବିକ୍ରୀ କରି ସତ୍ୟାଗ୍ରହୀଙ୍କ ପଣ୍ଡକୁ ଦେଇଛି ।

ସେତେବେଳେ ଭାଇନା ଅଶୋକ ଦାସ କଲେଜିଏଟ୍ ସ୍କୁଲ ଏକାଦଶ ଶ୍ରେଣୀର ଛାତ୍ର ଥାଇ ବିହାର ଓଡ଼ିଶା ଗୋରା ସ୍କୁଲ ଇନିସପେକ୍ଟରଙ୍କ ସାମନାରେ ବ୍ରିଟିଶ୍ ପତାକାକୁ ପଦାଘାତ କରି ସ୍କୁଲ ଛାଡ଼ି ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । ବୋଉ ସବା ସାନଭଉଣୀ ରମାକୁ ନେଇ ଗୋପବନ୍ଧୁ ସେବାସଦନ ବା ଗାନ୍ଧି ଆଶ୍ରମରେ ରହି ନାରୀ ସତ୍ୟାଗ୍ରହୀ ବାହିନୀର ନେତୃତ୍ୱ ନେଉଥିଲେ । ଅଜା ଆଉ ଆସି ମୁଁ ଓ ମୋର ତଳ ଦୁଇ ଭଉଣୀଙ୍କ ତତ୍ତ୍ୱ ନେଉଥିଲେ । ବଡ଼ ଅର୍ଥ ଅନାଟନ ଭିତରେ ଆମେ ଚଳୁଥିଲୁ । ନନା ବୋଉ କାରାଗାରରେ ଥିବାବେଳେ ମୁଁ ଓ ମୋର ତଳ ଭଉଣୀ ଭାତ ଖାଇ ବସି ଗୋଟିଏ ଆଳୁ ସିଝା ଛଡ଼ାଛଡ଼ି ହେଉଥିବା ବେଳେ ପାତି ମାଙ୍କଡ଼ଟିଏ ଓହ୍ଲାଇ ଆସି ଆମ ହାତରୁ ସେ ଆଳୁଟି ନେଇ ଚାଲି ଯାଇଥିଲା । ଲୁଗାପଟା ଅଭାବରୁ ପିତାଙ୍କ ଅଣ୍ଡରଓଆର ପିନ୍ଧି ମୋତେ ଦେଢ଼ ମାଇଲ ଦୂର ସତ୍ୟବାଦୀ ସ୍କୁଲକୁ ଚାଲି କରି ଯିବା ଆସିବା କରିବାକୁ ପଡୁଥିଲା ।

କିଛି କାଳ ପରେ ବୋଉ ଜେଲରୁ ଖଲାସ ହୋଇ ସତ୍ୟବାଦୀ ଆଶ୍ରମରେ ରହିବାରେ ମୋ ସଙ୍ଗେ ଥିବା ଦୁଇ ଭଉଣୀ ଆଶ୍ରମକୁ ଚାଲିଗଲେ । ମୋତେ ନେଇ ସତ୍ୟବାଦୀ ସ୍କୁଲ ଛାତ୍ରାବାସରେ ରଖାଗଲା । ମୁଁ ମାଇନର ସ୍କୁଲ ହେଡ୍‌ମାଷ୍ଟର ବନ ବିଦ୍ୟାଳୟର ପୂର୍ବତନ ଛାତ୍ର ଶ୍ରୀ ଗଙ୍ଗାଧର ରଥଙ୍କ ତତ୍ତ୍ୱାବଧାନରେ ତାଙ୍କ କୋଠରୀ ପାଖ ଛୋଟ କୋଠରୀଟିରେ ଆଉ ଦୁଇଜଣ ଛାତ୍ରଙ୍କ ସଙ୍ଗେ ରହିଲି ।

ବୃତ୍ତି ପାଉଥିବା ପିଲାଙ୍କୁ ସ୍କୁଲ ଦରମା ଛାଡ଼ ଥିଲା ଓ ଛାତ୍ରାବାସର ସିଟଭଡ଼ା ମାସିକ ଦୁଇଅଣା (ଦଶପଇସା) ମଧ ଦେବାକୁ ପଡୁ ନ ଥିଲା, ଆମ ମେସ୍ ଖର୍ଚ୍ଚ ତିନି ଟଙ୍କା ବାବଦରେ ଅଜା ଘରୁ ଚାଉଳ ଆସୁଥିଲା । ମୋର ବୃତ୍ତି ପାଉଥିବା ମାସିକ ତିନି ଟଙ୍କାରେ ବହିପତ୍ର କିଣା ଓ ଜଳଖିଆ (ମୁଢ଼ି ଉଖୁଡ଼ା) ଚଳି ଯାଉଥିଲା । ଲିଙ୍ଗା ଗୁଡ଼ିଆ ସବୁଦିନ ସକାଳେ ଓ ସନ୍ଧ୍ୟାରେ ମୁଢ଼ି ବେତା ମୁଣ୍ଡାଇ ଗୋଲ ଲୁହା ରିଙ୍ଗ୍ ଭିତରେ ଛୋଟ ମୁଦିଆ ରିଙ୍ଗ ଗୁଡ଼ିଏ ପୂରାଇ ଝମ୍ ଝମ୍ କରି ଆସୁଥିଲା । ତା' ଶବ୍ଦ ଶୁଣିବାକ୍ଷଣି ଆମେ ପାଠ ଛାଡ଼ି ତା' ପାଖକୁ ଧାଇଁ ଆସି ଅଧଲେ, ପଇସେ ଦେଇ ଅଣ୍ଟି ଦେଖାଇ ଦେଉଥିଲୁ । ମୁଁ

ଶୁଣିଛି ଗୋପବନ୍ଧୁ ମଧ ତାଠାରୁ ମୁଢ଼ି ନେଇ ଅଣ୍ଟିରେ ଧରି ଚୋବାଉଥିଲେ । ସେ ମୁଢ଼ି ସଙ୍ଗେ ଉଖୁଡ଼ା, ଖଇ ବୁଟପୁଆ, ବୁଟସିଝା ଓ ଗରମ ଚୁଡ଼ାଘଷାବିଣ୍ଡା ବା ଚୁଡ଼ାକଦମ୍ବା ଆଣୁଥିଲା । ତା'ର ଚୁଡ଼ାକଦମ୍ବା ବିଷୟରେ ମଧ କଥନାଟିଏ ରହିଛି । ବନବିଦ୍ୟାଳୟ ଭାଙ୍ଗି ନାସନାଲ ବିଶ୍ୱ ବିଦ୍ୟାଳୟ ଓ କର୍ମୀ ତାଲିମ କେନ୍ଦ୍ର ପ୍ରଭୃତି ହେଲାବେଳେ ସତ୍ୟାଗ୍ରହୀଙ୍କ ଛୋଟ ଛୋଟ ପିଲାମାନେ ସେଠାରେ ରହି ତାଲିମ ପାଉଥିଲେ । ପ୍ରଚାରକ ଅନନ୍ତ ମିଶ୍ରଙ୍କର ୧୧, ୧୨ ବର୍ଷର ପୁତ୍ର ମୋର ଶଶି ଭାଇନା, ସେଠାରେ ରହି ପଢୁଥିଲେ । ସେ ଖାଦ୍ୟ ଲୋଭୀ, ତାଙ୍କର ଲିଙ୍ଗୀ ଗୁଡ଼ିଆ ଚୁଡ଼ା କଦମ୍ବା ଉପରେ ଆଖିଥାଏ କିନ୍ତୁ ପଇସା ନଥିବାରୁ ସେ ତା'ର ପାଖ ପଶି ପାରୁନଥା'ନ୍ତି ।

ସେଠାକୁ ମଝିରେ ମଝିରେ ଭାରତର ବହୁ ତୁଙ୍ଗ ନେତା ଆସୁଥିଲେ । ଥରେ ମହାତ୍ମା ଗାନ୍ଧି ଆସି ସେଠାରେ ଗୋଟିଏ ଛୋଟ ଚାଳ କୋଠରୀରେ ରହିଥିଲେ । ସେ ସେହି ସମୟରେ ତାଙ୍କ କଥା କାର୍ଯ୍ୟରେ ପରିଣତ କଲେ, ଏକ ନିର୍ଦ୍ଦିଷ୍ଟ ଦିନ ଭିତରେ ସ୍ୱରାଜ ମିଳିଯିବ ବୋଲି ଘୋଷଣା କରୁଥିଲେ । ଭାରତ ସ୍ୱାଧୀନ ହେଲେ ସବୁ ଜିନିଷ ଅତି ଶସ୍ତା ହୋଇଯିବ ବୋଲି ଲୋକଙ୍କ ଭିତରେ ପ୍ରଚାର ଚାଲିଥାଏ । ଗାନ୍ଧି, ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତିଙ୍କ ଗହଣରେ ବସି ସୂତାକାଟୁଥିବା ଅବସ୍ଥାରେ ଶଶିଭାଇନା ଦଉଡ଼ିଯାଇ ଗାନ୍ଧିଙ୍କ ନିକଟରେ ପହଞ୍ଚି ବଡ଼ ପାଟିରେ ପଚାରିଲେ "ହେ ଗାନ୍ଧି କେଉଁଦିନ ସ୍ୱରାଜ ହେବ ମୋତେ ଠିକ କରି କହ ? ଗାନ୍ଧିଙ୍କୁ ଗୋପବନ୍ଧୁ ଶଶିକଥା ବୁଝାଇ ଦେବାପରେ ଗାନ୍ଧି ହସି ହସି ଶଶିକୁ କହିଲେ ତୁମର କଅଣ ସୁବିଧା ହେବ ? ଶଶି ଉତ୍ତର ଦେଲେ "ଚୁଡ଼ା କଦମ୍ବା ସେର ଏକ ପଇସା ହୋଇଯିବ ।" ଗୋପବନ୍ଧୁଙ୍କ ଠାରୁ ତା'ର ଅର୍ଥ ବୁଝିବାପରେ ଗାନ୍ଧି ଶଶିକୁ ଟଙ୍କାଟିଏ ଦେଇ କହିଲେ, "ଯାଅ ତୁମର ସ୍ୱରାଜ ହୋଇଗଲା, ତୁମେ ପେଟପୂରାଇ ଚୁଡ଼ାକଦମ୍ବା ଖାଇନିଅ ।"

ସତ୍ୟବାଦୀ ବନବିଦ୍ୟାଳୟ ପୂର୍ବତନ ଛାତ୍ର ବୀର ରାମଚନ୍ଦ୍ରପୁରର ଶ୍ରୀ ଗଣେଶ ରଥ ଆମ ଛାତ୍ରାବାସ ମେସ୍‌ର ତତ୍ତ୍ୱାବଧାରକ ଥିଲେ । ସେ ଛାତ୍ରମାନଙ୍କଠାରୁ ମେସ୍ ଖର୍ଚ୍ଚ ବାବଦରେ ଜିନିଷ ଆକାରରେ ମଧ ଚାଉଳ, ମୁଗ, କଖାରୁ, ବାଇଗଣ ପ୍ରଭୃତି ଗ୍ରହଣ କରୁଥିଲେ । ସେ ସେସବୁ ରଖି ଦରକାର ଅନୁସାରେ ଖର୍ଚ୍ଚ କରାଉଥିଲେ । ସେ ବଡ଼ ମିତବ୍ୟୟୀ ଥିଲେ । ଅତି ଗରିବ ପିଲା ମଧ ସେ ଖାଦ୍ୟଖାଇ କିପରି ପାଠପଢ଼ି ପାରିବେ ତାଙ୍କର ଚିନ୍ତାଥିଲା । ଆମେ ସମସ୍ତେ ଅତି ଗରିବ ପିଲାପରି ଛାତ୍ରାବାସରେ ଚଳୁଥିଲୁ । ନିଜ ହାତରେ ଘର ଲିପି, ଓଳାଇ, ପରିଷ୍କାର କରି ରଖୁଥିଲୁ । ଦୁଇପଟ ଇଟାର ମଝିରେ କାଠପଟା ଦେଇ ଥାକକରି ସେଥିରେ ବହିପତ୍ର ରଖୁଥିଲୁ । ମୁଣ୍ଡରେ ତକିଆ ନଦେଇ ଖଜୁରୀ ପଟିରେ ଶୋଉଥିଲୁ । ପ୍ରତ୍ୟେକ୍ ରୁମ୍‌ରେ ଥିବା ମନିଟର ପିଲାମାନେ ଆମକୁ ଶାସନ କରୁଥିଲେ ।

ସ୍କୁଲ ଓ ଛାତ୍ରାବାସର ପିଅନ (ଗୋପବନ୍ଧୁଙ୍କ ପୂର୍ବତନ ପରିଚାରକ) ରାମ ବାରିକଙ୍କର ଘଣ୍ଟା ବଜାରେ ଆମର ଦୈନନ୍ଦିନ କାର୍ଯ୍ୟ ଶୃଙ୍ଖଳାର ସହିତ ସମାପନ ହେଉଥିଲା । ଭୋର ୪ଟାରେ ଘଣ୍ଟାବାଜିବା ସଙ୍ଗେ ସଙ୍ଗେ ଆମେ ନିଦରୁ ଉଠି ମୁହଁହାତ ଧୋଇ ପ୍ରାର୍ଥନା ହଲରେ ଆସି ରୁଣ୍ଡ ହେଉଥିଲୁ । 'ଓଁ ନମସ୍ତେ ସତେତେ ଜଗତ କାରଣାୟ' ପ୍ରଭୃତି ସମବେତ କଣ୍ଠରେ ବେଦ ଗାନରେ ସେ ସ୍ଥାନ ଉଚ୍ଛୁଳି ଉଠୁଥିଲା । ଶିକ୍ଷକମାନେ ପ୍ରାୟ ସମସ୍ତେ ଛାତ୍ରାବାସରେ ରହି ଆମ ସଙ୍ଗେ ପ୍ରାର୍ଥନା ପ୍ରଭୃତିରେ ଯୋଗ ଦେଉଥିଲେ । ପ୍ରାର୍ଥନା ପରେ ଆମେ ଦାନ୍ତ ଘଷି ଝାଡ଼ାଯାଇ ସାରି ଗୋଡ଼ ହାତ ଧୋଇ ବ୍ୟାୟାମ ପଡ଼ିଆକୁ ଆସି ଉତ୍କଳ ମଲ୍ଲ ରାଧାଶ୍ୟାମ ଦାସ (ସତ୍ୟବାଦୀର ପୂର୍ବତନ ଛାତ୍ର)ଙ୍କ ଠାରୁ ବ୍ୟାୟାମ ଶିକ୍ଷା କରୁଥିଲୁ ।

ବ୍ୟାୟାମ ପରେ ଝାଳ ମାରିସାରି ତେଲ ଲଗାଇ ଥାଳିଧୂଆ ପୋଖରୀ (ଶ୍ୟାମକୁଣ୍ଡ)କୁ ଗାଧୋଇ ଯାଉ । ଆମେ ଭଲକରି ଗାଧୋଉଛୁ କି ନାହିଁ ସେଥିପ୍ରତି ମଧ ଶିକ୍ଷକଙ୍କ ଦୃଷ୍ଟିଥାଏ । ମୋର କାନ ପଛପଟ ମଇଳା ମୁଁ ଗାଧୋଇବା ବେଳେ ପ୍ରଧାନ ଶିକ୍ଷକ ଗଙ୍ଗାଧର ବାବୁ ଗାମୁଛା ଘଷି ପରିଷାର କରିଦେବା ମୋର ମନେ ଅଛି । ଆମେ ଗାଧୋଇ ସାରି ଆସିଲା ବେଳକୁ ଲିଙ୍ଗାଗୁଡ଼ିଆ ଆସିଯାଇଥାଏ । ବେଳେ ବେଳେ ଆମ ଗ୍ରାମର ଆମଘର ପୂଜାରୀ ଆମ ଅଜାଙ୍କ ନିର୍ଦ୍ଦେଶରେ ରାତିରୁ ଚୁଲି ଉପରେ ବସାଇ ଚାଉଳ ମୁଗ ପରିବା ମିଶିଥିବା ବଡ଼ାଭାତ କରି ଦେଇଥାଏ । ମୁଁ ତାକୁ ଖାଇଦେଇ ପଢ଼ା ଘଣ୍ଟି ବାଜିବା ସଙ୍ଗେ ସଙ୍ଗେ ତରତରରେ ଦଉଡ଼ି ଆସି ପଢ଼ାରେ ଲାଗିଯାଏ । ଦିନେ ସକାଳେ ମୁଁ ରୋଷେଇ ଘରକୁ ଯାଇଥିବା ବେଳେ ସେ ଚାଳ ଘରେ ନିଆଁ ଲାଗିଗଲା । ରୋଷେଇ ଘରକୁ ଲାଗିଥିବା ଅନ୍ୟ ଚାଳ ଘରଟିରେ ବନବିଦ୍ୟାଳୟର ବହୁ ତଥ୍ୟମୂଳକ କାଗଜପତ୍ର ରହିଥିଲା । ସମସ୍ତେ ଦଉଡ଼ି ଆସି ନିଆଁ ଲିଭାଇଲେ । କାଗଜପତ୍ର ସବୁ ପୋଡ଼ା ଅଧପୋଡ଼ା ଅବସ୍ଥାରେ ଚାରିଆଡ଼େ ବିଞ୍ଚି ହୋଇଗଲା । ମୁଁ ସେଥିରୁ କେତେଖଣ୍ଡ ଉଦ୍ଧାର କରିଥିଲି । ସେ ତଥ୍ୟମୂଳକ କାଗଜ ଏବେ ବି ମୋ ପାଖରେ ରହିଛି ।

ରୋଗୀ ସେବା, ନିଆଁ ଲିଭେଇବା, ଅବହେଳିତ ମୁର୍ଦ୍ଦାରକୁ ଆଣି ଦାହ କରିବା ପ୍ରଭୃତି ମଧ ଆମକୁ ତାଲିମ ଦିଆଯାଉଥିଲା । ପାଖ ଅଣଓସାରିଆ ସେବକ ସାହିରେ ପ୍ରାୟ ନିଆଁ ଲାଗେ । ଆମେ ସତ୍ୟବାଦୀ ସ୍କୁଲ ଛାତ୍ର ଓ ଶିକ୍ଷକମାନେ ଯାଇ ନିଆଁ ଲିଭାଉ । ସତ୍ୟବାଦୀ ଡାକ୍ତରଖାନାରୁ ନିରାଶ୍ରୟ ରୋଗୀର ଶବ ବୋହିଆଣି ପାଖ ମଶାଣିରେ ପୋଡୁ ।

ଜଳଖିଆ ପରେ ନ'ଟା ପର୍ଯ୍ୟନ୍ତ ପାଠ ପଢ଼ିବା ପରେ ଖାଇବା ଘଣ୍ଟି ବାଜେ । ଆମେ ଆମର ଥାଳି, ତାଟିଆ ଧରି ଡାଇନିଙ୍ଗ ହଲକୁ ଦଉଡୁ । ଭାତ ଉପରେ ଡାଲି ପାଣି

ଢ଼ାଳି ଦିଆଯାଏ । ତା' ସାଙ୍ଗକୁ ଖଡ଼ା, କଖାରୁ, ସାରୁ ପ୍ରଭୃତିର ଗୋଟିଏ ଘାଣ୍ଟ ଥାଏ । ଦୁଇ ଓଳି ପ୍ରାୟ ସେପରି ଖାଇବାକୁ ହୁଏ । ସପ୍ତାହରେ ଥରେ ଅଧେ ମାଛର ଘାଣ୍ଟ ମିଳେ । ଜମାଥିବା ଚାଉଳ ଗମୁରା ହୋଇ ଯାଇଥିଲେ ଶନିବାର ସନ୍ଧ୍ୟାରେ କିଛି ଲୁଣି ଚିଙ୍ଗୁଡ଼ି କିଣା ହୋଇ ଆସି ଝୋଳ ହୁଏ । ମେସରୁ ପ୍ରତିଦିନ ଯେଉଁ ପଳାକ କିରାସିନି ଆମ ଲଣ୍ଠନରେ ପକାଯାଉଥାଏ ସେ ସରି ଆସିବା ବେଳକୁ ଗାଡି ଖାଇବା ଘଣ୍ଟା ବାଜେ । ଡାଇନିଙ୍ଗ ହଲରେ ମାତ୍ର ଗୋଟିଏ କି ଦୁଇଟି ଲଣ୍ଠନ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ଡେରି ହେବାରୁ ଆମକୁ ଭୋକ ହେଉଥାଏ । ପିଲାଏ ଚିଙ୍ଗୁଡ଼ି ପାଣି ଗୋଳାଇ ପୋକ ଯୋକ ନ ମାନି ଖାଇବାତକ ଖାଇ ଶେଷ କରିଦିଅନ୍ତି । ବାଦ୍‌ଶାହ ଆକବରଙ୍କର ବୈରାମ ଖାଁ ତତ୍ତ୍ୱାବଧାରକ ଥିଲେ, ପରେ ଆକବର ତାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ମନେ ମନେ ଆମେ ଗଣେଶ ବାବୁଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଉଥିଲେ ମଧ ସାମନାରେ କିଛି କହିପାରୁ ନାହିଁ । ତେଣୁ ତାଙ୍କୁ ପଛରେ ବୈରାମ ଖାଁ ବୋଲି ନାମ ଦେଇଥାଉ । ମାଛ ହେବା ଦିନ ମୁଁ ମାଛ ଖାଉ ନ ଥିବାରୁ ପ୍ରାୟ ଉପାସ ରହେ ।

ମୁଁ ମାଛ ଖାଉ ନଥିବାରୁ ଆମ ହାଟସାହିର କଳିହୁଡ଼ି ଗଉଡୁଣୀ ହାତରେ ଅଟା ମୋ ପାଇଁ ପାଏ ଗାଇ ଦୁଧ ଖଞ୍ଜି ଦେଇଥିଲେ । ସେ କ୍ଷୀରରେ ଦୁଧ ଅପେକ୍ଷା ପାଣି ବେଶୀ ଥିଲା । ଖାଲି ପାଣି ଦଉଛି ବୋଲି ମୁଁ କହିବାରୁ ଉପର କ୍ଲାସର ଗୋଟିଏ ବଡ଼ ପିଲା ମୋତେ କହିଲା ତୁ ଗଉଡୁଣୀକି କହ ତତେ ପାଏ ଦୁଧ ନଦେଇ ଗୋଟେ ଦୁଧ ଦେଉ । ମୁଁ କିଛି ବୁଝି ନ ପାରି ଗଉଡୁଣୀକୁ ତାହା କହିବାରୁ ସେ ଅଗ୍ନିଶର୍ମା ହୋଇ ଅକଥ୍ୟ ଭାଷାରେ ଗାଳିଦେଇ ମୋ କ୍ଷୀର ବନ୍ଦ କରିଦେଲା । ଆଉ ଆମ ସ୍କୁଲକୁ ଆସିଲା ନାହିଁ । ମୋ ଦୁଧଖିଆ ପୂରା ବନ୍ଦ ହୋଇଗଲା ।

ଆମ ସ୍କୁଲ ବର୍ଷାଦିନ ଛଡ଼ା ଅନ୍ୟ ଦିନ ସତ୍ୟବାଦୀ ବକୁଳ ବନ ଭିତରେ ବସେ । ଆମେ ବଉଳ ଗଛମୂଳ ଓଳାଇ ସଫାକରି ରଖିଥାଉ । ସେଠାରେ ସିମେଣ୍ଟର ଏକ ଟେବୁଲ ଚଉକି ମାଷ୍ଟ୍ରଙ୍କ ପାଇଁ ତିଆରି ହୋଇଥାଏ । ମାଷ୍ଟ୍ରେ ଗଛରେ କଣ୍ଟାମାରି ବ୍ଲାକ୍‌ବୋର୍ଡଟା ଓହଳାଇ ଦିଅନ୍ତି । ଆମେ ଜଣିକିଆ ଡେସ୍‌କ ଓ ତାଳ ପଟି ସହିତ ବହିପତ୍ର ଧରି କ୍ଲାସକୁ ଯାଉ । ଡେସ୍‌କଟି ରଖି ତା'ପଛରେ ପଟି ପକାଇ ଡେସ୍‌କଉପରେ ବହି ରଖି ମାଷ୍ଟ୍ରଙ୍କ ଟେବୁଲ ଆଡ଼କୁ ଚାହିଁ ବସୁ । ମାଷ୍ଟ୍ରେ ପ୍ରାୟ ଠିଆ ହୋଇ ବ୍ଲାକ୍‌ବୋର୍ଡ଼ରେ ଲେଖି ପାଠ ପଢ଼ାନ୍ତି ।

ଆମ କ୍ଲାସ ହେଉଥିବା ସ୍ଥାନର ଚାରିପଟେ ଡେଙ୍ଗା ଡେଙ୍ଗା ସରୁ ନ୍ଧୁରୀଅନା ବା ସରୁ ପୁନ୍ନାଙ୍ଗ ଗଛ ସବୁ ରହିଥାଏ । ତାର ମୂଳ ପରିଷ୍କାର ଥାଏ ଓ ଗଛରେ ୫, ୬ ହାତ ଉଚ୍ଚ ପର୍ଯ୍ୟନ୍ତ ଡାଳ ନ ଥାଏ । ଉପର ଡାଳଗୁଡ଼ିକ କ୍ଲାସକୁ କେତେକାଂଶରେ ଘୋଡ଼ାଇ

ରଖିଥାଏ । ସେଥିଯୋଗୁଁ ଗୋଟିଏ କ୍ଲାସରୁ ଅନ୍ୟ କ୍ଲାସକୁ ଦେଖି ହୁଏନାହିଁ । ମଧ୍ୟାହ୍ନ ଖେଳଛୁଟି ବେଳେ ଆମେ ଛାତ୍ରମାନେ ଗଛ ଉପରକୁ ଉଠିଯାଇ ସେ ଗଛମାନଙ୍କୁ ବଙ୍କାଇ ଏ ଗଛରୁ ସେ ଗଛକୁ ଡେଇଁ ଡାଳ ମାଙ୍କୁଡ଼ି ଖେଳ ଖେଳୁ ଓ ବେଳେବେଳେ ପାଚିଲା ବଉଳ କୋଳି ତୋଳି ଖାଉ । କେଉଁ ପିରିୟଡ଼ରେ ଶିକ୍ଷକ ଅନୁପସ୍ଥିତ ଥିଲେ, ସ୍କୁଲର ନିୟମ ନ ମାନି ଆମେ ମଧ୍ୟ ସେ ଖେଳ ଖେଳୁ । ସେଥିରେ ଦୁର୍ଘଟଣାମାନ ମଧ୍ୟ ଘଟେ ।

ସତ୍ୟବାଦୀ ଡାକ୍ତରଖାନା ନିକଟ ନିମ୍ନ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ଏକମାତ୍ର ପୁତ୍ର ଗୋପାଳ ଆଚାର୍ଯ୍ୟ ଏକ ପିରିୟଡ଼ରେ ଶିକ୍ଷକଙ୍କ ଅନୁପସ୍ଥିତି ଯୋଗୁଁ ଗଛ ଉପରେ ଚଢ଼ି ଯାଇଥିଲା । ଜଣେ ପିଲା ଶିକ୍ଷକ ଆସିଲେ ବୋଲି ମିଛରେ ପାଟିଟାଏ କରିଦେବାରୁ ଅତର୍କିତ ଭାବରେ ଗଛରୁ ତା'ର ହାତ ଛାଡ଼ିଗଲା । ସେ ଦୁମ୍ କରି ତଳକୁ ଖସିପଡ଼ିଲା । ସେହି ଆଘାତରେ ତା'ର ଅଳ୍ପ କାଳ ପରେ ମୃତ୍ୟୁ ଘଟିଲା ।

ଆଉ ଦିନେ ଗୋଟିଏ କ୍ଲାସର ପିଲାମାନେ ଶିକ୍ଷକ ନଆସିବାରୁ ପାଟିତୁଣ୍ଡ କରି ଡାଳମାଙ୍କୁଡ଼ି ଖେଳୁଥିଲେ । ପ୍ରଧାନ ଶିକ୍ଷକ ସେ କ୍ଲାସକୁ ଚାଲି ଆସୁଥିବାର ଦେଖି ଅଧିକାଂଶ ପିଲା ଗଛରୁ ଓହ୍ଲାଇ ଆସି ସୁନା ପିଲା ପରି ଯେଝା ଆସନରେ ବସିଗଲେ । ସମସରପୁରର ଗୋପ ଗଛ ଅଗରେ ରହିଯାଇଥିଲା । ସେ ତଳକୁ ଚାହିଁଲା ବେଳକୁ ଉପରକୁ ଚାହିଁଥିବା ଶିକ୍ଷକଙ୍କ ଆଖିରେ ପଡ଼ିଗଲା । ସେହିଠାରେ ତା'ର ଏକ ହୋଇ ଶିକ୍ଷକଙ୍କ ଲୁଗାପଟା ମାରା ହୋଇଗଲା । ଶିକ୍ଷକମାନେ ସକାଳେ ଓ ରାତିରେ ଛାତ୍ରାବାସରେ ବୁଲି ବୁଲି କିଏ ପଢ଼ିଲା ନପଢ଼ିଲା ଦେଖୁଥିଲେ । ମୋତେ ଜ୍ୱର ହୋଇଥିବାରୁ ମୁଁ ଘୋଡ଼ି ହୋଇ ଶୋଉଥିଲି । ମୋତେ ଆଉଁସୁ ଆଉଁସୁ ମୋର ସଙ୍ଗୀ ଅପର୍ଣ୍ଣା ଶଙ୍କର ରାଏ ମଧ୍ୟ ଶୋଇ ପଡ଼ିଥିଲା । ଫକୀର ମାଷ୍ଟ୍ରେ ରୋଗୀ ଶୋଇଛି ଭୋଗୀ ଶୋଇଛି ବୋଲି କହି ଅପର୍ଣ୍ଣାକୁ ଝୁଙ୍କାଇ ଉଠାଇ ଦେଇଥିଲେ ।

ଉପଯୁକ୍ତ ଖାଦ୍ୟପେୟର ଅଭାବ ଯୋଗୁଁ ମୁଁ ନାନା ରୋଗ ଭୋଗୁଥିଲି । ମଝିରେ ମଝିରେ ଛାତ୍ରାବାସ ଛାଡ଼ି ବୋଉ ରହିଥିବା କାଦୁଆ ଆଶ୍ରମ ଚାଲି ଯାଉଥିଲି । ସେଠାରେ ମଧ୍ୟ ସବୁ କର୍ମୀମାନେ ଗୋଟିଏ ମେସରେ ଭାତ ଡାଲି, ଚାକୁଣ୍ଡା ଶାଗ ପ୍ରଭୃତି ଖାଇ ରହୁଥିଲେ । ଆଶ୍ରମରେ ସୂତାକଟା, ଲୁଗାବୁଣା ସହିତ ସତ୍ୟାଗ୍ରହୀମାନଙ୍କୁ ତାଲିମ୍ ଦିଆଯାଉଥିଲା । ସେଠାରେ ଲାଲବିହାରୀ ଦାସଙ୍କ ସାନଭାଇ ଗୋଲକ ବାନରସେନାରେ ଯୋଗ ଦେଇ ପାଟନା କ୍ୟାମ୍ପ ଜେଲରେ ଥିଲା । ସେ ଜେଲଟି ଗୋଟିଏ ବିଲ ଚାରିପଟେ ତା'ର ଘେରାହୋଇ ତିଆରି ହୋଇଥିଲା । ତାର ଘେର ଭିତରେ ଅସ୍ଥାୟୀ ଘରମାନଙ୍କ ଭିତରେ ହଜାର ହଜାର ବନ୍ଦୀଙ୍କୁ ବଡ଼ ଅସ୍ୱାସ୍ଥ୍ୟକର ପରିସ୍ଥିତି ଭିତରେ ରଖାଯାଉଥିଲା । ସେଠାରେ ବହୁ କର୍ମୀ ରୋଗରେ ପ୍ରାଣ ହରାଉଥିଲେ । ଅନ୍ୟ ବନ୍ଦୀମାନେ ତା'ର ପ୍ରତିବାଦ

କରିବାକୁ ଗୋରା କର୍ତ୍ତୃପକ୍ଷ ଜେଲ ଭିତରେ ଗୁଳି ଚାଳନାର ଆଦେଶ ଦେଇଥିଲେ । ସେହି ପରିସ୍ଥିତିରେ ଗୋଲକର ମୃତ୍ୟୁ ଘଟିବାରୁ ଆଶ୍ରମରେ ଦୁଃଖର ଛାୟା ଖେଳି ଯାଇଥିଲା ।

ମୋର ଷଷ୍ଠ ଶ୍ରେଣୀ ଶେଷ ବେଳକୁ ମୋର ପିତା ହଜାରୀବାଗ୍ ଜେଲରେ ଦୀର୍ଘ ଦିନ ରହିଲା ପରେ ଖଲାସ୍ ହୋଇ ଆସିଲେ । ବୋଉ ପ୍ରଭୃତି ମଧ ଆଶ୍ରମରୁ ଫେରିଥିଲେ । ନନାଙ୍କର ଅତି ପ୍ରିୟ ଖାଦ୍ୟ ମାଛ । ମୁଁ ତୃତୀୟ ଶ୍ରେଣୀରୁ ବୁଦ୍ଧଦେବଙ୍କ ବିଷୟ ପଢ଼ି 'ଜୀବହତ୍ୟା ମହାପାପ'ରେ ବିଶ୍ୱାସ କରି ମାଛ ଖାଇବା ଛାଡ଼ି ଦେଇଥିଲି । ମୋର ଶୀର୍ଣ୍ଣ ଶରୀର ଓ ଭଗ୍ନ ସ୍ୱାସ୍ଥ୍ୟ ଦେଖି, ମୁଁ ମାଛ ଖାଉ ନ ଥିବାରୁ ସେପରି ଘଟିଛି ବୋଲି ସେ ଧରିନେଲେ । ଦିନେ ସତ୍ୟବାଦୀ ଡାକ୍ତରଖାନାର ଏଲ୍.ଏମ.ପି. ଡାକ୍ତର ଡାଭୁଲ ଭେଙ୍କଟରାମାୟା ପଟ୍ଟନାୟକ ମୋର ସ୍ୱାସ୍ଥ୍ୟ ପରୀକ୍ଷା କରିବା ପାଇଁ ତାଙ୍କ ଫଡ଼ିଫଡ଼ିଆ ମୋଟର ସାଇକେଲ ଗାଡ଼ିରେ ଆସି ପହଞ୍ଚିଲେ । ସେ ଜଣେ ପାଞ୍ଚହାତିଆ ଉଗ୍ର ସ୍ୱଭାବର ମଣିଷ । ତାଙ୍କୁ ଦେଖିବା କ୍ଷଣି ମୁଁ ଡରିଗଲି । ସେ ମୋତେ ଶୁଆଇ ଟିପାଟିପି କରି ତାଙ୍କ ପରୀକ୍ଷା ଆରମ୍ଭ କରିଦେଲେ । ମୋ ଦେହ ହାତ ଦରଚ ହୋଇଗଲା । ମୁଁ ମନେ ମନେ ତ୍ରାହି ତ୍ରାହି ଡାକିଲି । ସେ ମୋତେ କହିଲେ, "ଆରେ ମାଛ କାହିଁକି ଖାଉନୁରେ । ମରିଯିବୁରେ ମାଛ ଖାଇବୁ କି ନାହିଁରେ ?" ମୋର ନାହିଁ କରିବାର ଆଉ ଉପାୟ ନ ଥିଲା । ମନକୁ ମନ ମୋ ପାଟିରୁ ହଁ ବାହାରି ପଡ଼ିଲା ।

ସଙ୍ଗେ ସଙ୍ଗେ ମୋର ପିତା ପୁରୀ ଲୋକ ପଠାଇ ଖଙ୍ଗା ମାଛ ଅଣାଇଲେ । ଖଙ୍ଗା ମଞ୍ଜି ବାସିତୋରାଣିରେ ସିଝାଆଳୁ ସଙ୍ଗେ ଚକଟା ହୋଇ ବଡା ହେଲା । ତାହାକୁ ଭାତ ସଙ୍ଗେ ମୋର ପତ୍ରରେ ଦିଆଗଲା । ମୋର ପୁଣି ମାଛ ଖିଆ ଆରମ୍ଭ ହେଲା । ମାଛ ଖାଇବା ସତ୍ତ୍ୱେ ମୋ ଶରୀର ଓ ପଢ଼ାପଢ଼ିର ବିଶେଷ ଉନ୍ନତି ହେଲାନାହିଁ । ମୋର ୭ମ ଶ୍ରେଣୀ ପାଠ ପଛେଇ ଗଲା । ମୁଁ ୧୯୩୪ ଶେଷରେ ମାଇନର ପରୀକ୍ଷା ଦେଇ ନ ପାରି ୧୯୩୫ ଶେଷକୁ ରହିଲି ।

ନନା ୧୯୩୩ରେ ଯେ କାରାମୁକ୍ତ ହୋଇଥିଲେ ମଧ କାର୍ଯ୍ୟମୁକ୍ତ ହୋଇ ନ ଥିଲେ । ଗୋପବନ୍ଧୁଙ୍କ ପରେ ସେ ହୋଇପଡ଼ିଥିଲେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା । ଓଡ଼ିଶା କଂଗ୍ରେସର କର୍ଣ୍ଣଧାର, କେନ୍ଦ୍ର ଆସେମ୍ବ୍ଲି ବିରୋଧି ଦଳର ସାଧାରଣ ସଂପାଦକ, ବଡ଼ଲାଟଙ୍କ ଦିଲ୍ଲୀ ଇଉନିଭର୍ସିଟି କୋର୍ଟର ନିର୍ବାଚିତ ସଦସ୍ୟ ଓ ଦେଶମିଶ୍ରଣ ସର୍ବଦଳୀୟ କମିଟିର ସଭାପତି । ନବଭାରତ ମାସିକ ପତ୍ରିକାର ସମ୍ପାଦକ, ବଢ଼ି ଦୁର୍ଭିକ୍ଷ କମିଟି ପ୍ରଭୃତିର ଉପଦେଷ୍ଟା ଓ ସର୍ବୋପରି ଓଡ଼ିଶାର ତତ୍କାଳୀନ ଶ୍ରେଷ୍ଠ ସାହିତ୍ୟ ଗବେଷକ ଭାବରେ ତାଙ୍କର ଘରକୁ ଆସି ଆମର ତତ୍ତ୍ୱାବଧାନ ନେବାକୁ ତର ନଥାଏ ।

ବୋଉ ଭଉଣୀମାନଙ୍କୁ ଧରି ଘରକୁ ଲେଉଟି ଥାଏ । ମୁଁ ମଧ ସତ୍ୟବାଦୀ ଛାତ୍ରାବାସରୁ ଆସି ଘରେ ରହିଲି । ଲୋଅର୍ ପ୍ରାଇମେରୀ ପାଠ ବେଳକୁ ମଧ୍ଯ ଆପଣେଙ୍କ ଦୃଷ୍ଟି କିମ୍ବା ଛାତ୍ରାବାସର ଶିକ୍ଷକଙ୍କ ସମ୍ୟକ ଦୃଷ୍ଟି ଅଭାବରୁ ପାଠଟା ମୋର ଗୌଣ ହୋଇ ଯାଇଥିଲା । ଗ୍ରାମର ବେକାର ପିଲାଙ୍କ ସଙ୍ଗେ ଖେଳରେ ମାତିବା ମୋର ପ୍ରଧାନ କାର୍ଯ୍ୟ ଥିଲା ।

ଦିନେ ନନା ଗ୍ରାମକୁ ଆସିଥିଲେ । ନନା ଗ୍ରାମକୁ ଆସିଲେ ତାଙ୍କ ସଙ୍ଗେ ଦଳେ ଲୋକ ଆସିଥାଆନ୍ତି । ମାଛ ଆଣି ଘରେ ଭଲ ଭୋଜିଟିଏ ହୁଏ । ଖାଇପିଇ ସାରି ଅଳ୍ପ ସମୟ ରହି ନନା କର୍ମୀମାନଙ୍କ ଗହଣରେ ସଭାସମିତିରେ ଯୋଗଦେବା ପାଇଁ ଚାଲିଯାଆନ୍ତି । ସେଥର ଖାଇପିଇ କର୍ମୀମାନେ କୌଣସି ସଭାର ଆୟୋଜନ ପାଇଁ ଆଗରୁ ଚାଲିଗଲେ । ସେ ଦାଣ୍ଡଦୁଆରେ ଚକା ପକାଇ ସିଧା ହୋଇକରି କଅଣ ଭାବୁଥିଲେ, ମୁଁ ପାଟି ତୁଣ୍ଡକରି ସେବାଟେ କେତେଥର ଦଉଡ଼ା ଦଉଡ଼ି କରିବାରେ ତାଙ୍କ ଧ୍ୟାନ ଭାଙ୍ଗିଗଲା । ସେ ମୋତେ ଡାକି କଅଣ ପଢୁଛି ବୋଲି ପଚାରି ବହିପତ୍ର ସବୁ ତାଙ୍କ ପାଖକୁ ଆଣିବାକୁ କହିଲେ ।

ମୁଁ ଅନିଚ୍ଛା ସତ୍ତ୍ୱେ ବହିଧରି ଆସିଲି । ମୋତେ ଜ୍ୟାମିତି ପଚାରିଲେ । ମୋତେ ନ ଆସିବାରୁ ବୁଝାଇବାକୁ ଚେଷ୍ଟା କଲେ, ମୋର ମନ ପାଠରେ ନଥାଇ ଲୁଚିକରି ଖେଳ ପାଇଁ ଡାକୁଥିବା ପିଲାଙ୍କ ପାଖରେ ଥାଏ, ତେଣୁ ସେ ଯେତେ ବୁଝାଇଲେ ମୋ ମୁଣ୍ଡରେ କିଛି ପଶିଲା ନାହିଁ । ସେଠାରୁ ସେ ବିରକ୍ତ ହୋଇ ମୋତେ ଚାପୁଡ଼ାଟାଏ ପକାଇଲେ ।

ସେ ମୋ ତତ୍ତ୍ୱ ନେଇ ପାରୁନଥିବାରୁ ମୁଁ ମେଧାବୀ ବୃତ୍ତି ପ୍ରାପ୍ତ ଛାତ୍ର ହୋଇ ମଧ ପାଠରେ ଅମନଯୋଗୀ ହୋଇଯାଉଛି ଭାବି, ସତ୍ୟବାଦୀ ପ୍ରପୋଜ୍‌ଡ଼ ବା ପ୍ରସ୍ତାବିତ ହାଇସ୍କୁଲର ତାଙ୍କ ପୂର୍ବତନ ଛାତ୍ର ଆମ ଗ୍ରାମର କବି ଦାମୋଦର ମିଶ୍ରଙ୍କୁ ଡକାଇ ମୋ ପଢ଼ାଭାର ନ୍ୟସ୍ତ କଲେ ।

ଦାମ ବାବୁ ଅମାୟୀକ ଲୋକ ଥିଲେ । ମୁଁ ତାଙ୍କ ପାଖକୁ ଯାଇ ପଢ଼ିବା ପରିବର୍ତ୍ତେ ନାନା ଛଳନା ଦେଖାଇ ଦୂରେଇ ରହିଲି । ତା'ପରେ ତାଙ୍କ ଅନୁମୋଦନ କ୍ରମେ ମାଟ୍ରିକ ପରୀକ୍ଷା ଦେଇଥିବା ଅନନ୍ତ ତ୍ରିପାଠୀ ଆମ ଘରକୁ ଆସି ମୋତେ ପଢ଼ାଇବାରେ ଲାଗିଲେ । ସେ ପରୀକ୍ଷାରେ ଫେଲ ହୋଇ ଏଗ୍ରିକଲଚର ଫୋରମାନ କାର୍ଯ୍ୟ କରିବାକୁ ଗ୍ରାମ ଛାଡ଼ି ଚାଲିଯିବାରେ ମୁଁ ପୁଣି ସ୍ୱାଧୀନ ହୋଇଗଲି ।

ବଛାବଛି ପରୀକ୍ଷା ଆସିଲା । ବକୁଳ ବନ ଭିତରେ ପରୀକ୍ଷା ଚାଲିଥାଏ । ଅଙ୍କ ଜ୍ୟାମିତି ପ୍ରଭୃତି କିଛି ନ ଆସିବାରୁ ପରୀକ୍ଷା ପରେ ପରେ ଖାତାଟି ଲୁଚାଇ କରି ନେଇ ଚିରିକରି ଗୋଟିଏ ଉଇ ହୁଙ୍କା ଭିତରେ ପୂରାଇ ଦେଲି । ଗଙ୍ଗାଧରବାବୁଙ୍କ ଆଖି ସବୁବେଳେ

ମୋ ଉପରେ ଥାଏ । ତେଣୁ ସେ କ୍ଲାସର ସବୁ ଖାତା ଗଣି ମୋତେ ଧରାଇ ଦେଲେ । ପ୍ରସ୍ତାବିତ ସ୍କୁଲର ହେଡ୍‌ମାଷ୍ଟର ହରିହର ମହାପାତ୍ର ମୋତେ ଡକାଇବାରୁ ମୁଁ ମାନିଗଲି ।

ଅଙ୍କ ଖାତା ନ ଥିଲେ ବି ଅନ୍ୟ ସବୁଥିରେ ଭଲ କରିଥିବାରୁ ମୁଁ ବଛାବଛି ପରୀକ୍ଷାରେ ବଛା ହୋଇ ପୁରୀ ଯାଇ ମାଇନର ପରୀକ୍ଷା ପାଇଁ ଅନୁମତି ପାଇଲି ।

ମୋର ଭାଇନା ଅଶୋକ ଦାସ ବି.ଏସ୍‌ସି. ପରୀକ୍ଷା ଦେଇ ଘରକୁ ଆସି ମୋ ପାଠ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଲେ । ମୋତେ ପଢ଼ିବାକୁ ବସାଇ ଦେଇ ସେ ସାଇକେଲ ନେଇ ଗାଁ ପାର ହୁଅନ୍ତି । ମୁଁ ସାଥୀଙ୍କଠାରୁ ଖବର ପାଇ କିତ୍‌କିତ୍ ଖେଳରେ ମାତିଗଲା ବେଳକୁ ସେ ସାଇକେଲ ବୁଲାଇ ଫେରିଆସି ମୋ କାନଧରି ନେଇ ପାଠପାଖରେ ବସାଇ ଦିଅନ୍ତି ।

ପୁରୀ ଯାଇ ପରୀକ୍ଷା ଦେବାର ସମୟ ଆସିଗଲା; କିନ୍ତୁ ସେତେବେଳକୁ ମୋତେ ପୁଣି ମେଲେରିଆ ଜ୍ୱର । ତା' ସହିତ ଥଣ୍ଡା ଧରି ନାକର ରକ୍ତନଳୀ ଫାଟି ଗିନା ଗିନା ରକ୍ତ ନାକରୁ ପଡୁଥାଏ ।

ପୁରୀ ଯାଇ ପରୀକ୍ଷା ଦେବାର କଥା । ଆମ ସ୍କୁଲର ପରୀକ୍ଷାର୍ଥୀମାନେ ପୁରୀ ମହାବୀର ଧର୍ମଶାଳାରେ ରହି ପରୀକ୍ଷା ଦେବାକୁ ଗଲେ । ମୁଁ ମଧ ସେମାନଙ୍କ ସଙ୍ଗେ ଯାଇ ସେଠାରେ ରହିଲି । ଅନ୍ୟ କେତେକ ମାଇନର ସ୍କୁଲ ପିଲା ମଧ ପରୀକ୍ଷା ଦେବାପାଇଁ ସେଠାରେ ରହିଲେ ।

ଭାଇନା ପୁରୀ ଯାଇ ତାଙ୍କର ଜଣେ ବନ୍ଧୁଙ୍କ ଘରେ ରହି ମୋ ରୋଗ ଓ ପଢ଼ା ଖବର ବୁଝୁଥିଲେ । ସେ ନିଜେ ମଧ ଅଙ୍କ ପ୍ରଭୃତି ମୋର ଦୁର୍ବଳ ବିଷୟଗୁଡ଼ିକ ମୋତେ ପଢ଼ାଉଥିଲେ । ମୋତେ ବାହାରେ ବୁଲିବା ଓ ବାହାର ଜିନିଷ କିଣି ଖାଇବା ପୂରାପୂରି ବାରଣ ଥିଲା । ମୋର ଅନ୍ୟ ସଙ୍ଗୀମାନଙ୍କୁ ସେମାନଙ୍କ ଶିକ୍ଷକ ଓ ଅଭିଭାବକମାନେ ମଧ ସେପରି ବାରଣ କରି ରଖିଥିଲେ ।

ବେଶୀ ଦେହ ଖରାପ ହୋଇ ପରୀକ୍ଷା ଦେଇ ନ ପାରିଲେ ବର୍ଷବର୍ଷର ସମସ୍ତ ପରିଶ୍ରମ ପଣ୍ଡ ହୋଇଯିବ ବୋଲି ବୁଝାଇ ଦେଇଥିଲେ ।

ପୁରୀ ଗୋଟିଏ ବଡ଼ ମଉଜି ଓ ବେପରୁଆ ଲୋକଙ୍କ ସ୍ଥାନ । ମୁଁ ଥରେ ଜଣଙ୍କ ସଙ୍ଗେ ପୁରୀ ଯାଇଥିଲା ବେଳେ ପୁରୀର ଭାଙ୍ଗଖିଆ ଲୋକଟାଏ ଚନ୍ଦନ ପୋଖରୀରୁ ଗାଧୋଇ ସାରି ପାଚିଲା ଗାମୁଛା କାନ୍ଧରେ ପକାଇ ତା'ର ବାହାକୁ ହଲାଇ ହଲାଇ ସାତହଜାରୀ ପାଣିରେ ଚାଲିଥିବା ବେଳେ ତା' ହାତଟା ଆଉ ଜଣେ ତରତରରେ ଯାଉଥିବା ଲୋକ ଦେହରେ ବାଡ଼େଇ ହୋଇ ସେ ଲୋକଟା ଦାଣ୍ଡରେ ଗଛକାଟିଲା ପରି ଲେଉଟି

ପଡ଼ିଲା । ସେ ଦୃଶ୍ୟ ମନେପଡ଼ି ମୁଁ ଧର୍ମଶାଳାରୁ ଏକୁଟିଆ ବଡ଼ ଦାଣ୍ଡକୁ ଯିବାର ମୋର ସାହସ ନ ଥିଲା ।

ପୁରୀରେ ବହୁ ପ୍ରକାରର ମିଠା ମିଳେ । ଗୋଟାଏ ଲୋକ ଶିକାରେ ଆକାର ଅନୁସାରେ ବଡ଼ ଉପରେ ସାନ ରସଗୋଲା ପୂର୍ଣ୍ଣ ଡେକେଚିଗୁଡ଼ିଏ ରଖି ଆମ ଧର୍ମଶାଳା ପାଖରେ ପରସ୍ପରକୁ ଆସ୍ତେ ଆସ୍ତେ ବଡ଼ କରି 'ବଡ଼ ବଡ଼ ରସଗୋଲା ଡାକି ଡାକି ପ୍ରାଣଗଲା' କହି କହି ଯେତେବେଳେ ଖୁବ ବଡ଼ ପାଟିଟାଏ କରିଦିଏ ଆମ ପାଠ ପଢ଼ାରେ ପୂର୍ଣ୍ଣଚ୍ଛେଦ ପଡ଼ିଯାଏ । ଆମେ ଚାରିଆଡ଼କୁ ଚାହିଁ ଚାହିଁ ବାହାରକୁ ଆସି ତା' ହାତରେ ପଇସା ଗୁଞ୍ଜିଦେଇ ରସଗୋଲାଟିଏ ନେଇ ପାଟିରେ ପୂରାଇ ଦେଇ ସୁନାପିଲା ପରି ବସି ପାଠରେ ଲାଗିଯାଉ । ବେଳେବେଳେ ମାଷ୍ଟ୍ରେମାନେ ପିଲାଙ୍କ ଗାଲ ଟିପି ରସଗୋଲା ବାହାର କରନ୍ତି କିମ୍ବା କୌଣସି ପିଲା ବିକଳରେ ତାହା ଗିଳିଦେବାକୁ ଯାଇ କାଶି କାଶି ବେଦମ ହୁଅନ୍ତି ।

ସମାଜରେ ମାଇନର ପରୀକ୍ଷା ଫଳରେ ମୋ ନାଁ ବାହାରିଲା ।

ଭାଇନା ଓ ନନା ଆସି ମୁଁ କେଉଁ ହାଇସ୍କୁଲରେ ପଢ଼ିବି ତା'ର ବିଚାର ପଡ଼ିଲା । ମୋ ଅସୁସ୍ଥତା ଯୋଗୁଁ ମୁଁ ଗାଁ ପାଖରେ ପୁରୀରେ ରହି ପଢ଼ିଲେ ଭଲ ହେବ ବୋଲି ସେମାନେ କହିଲେ । ମୋର ପୁରୀ ଗୁଣ୍ଡାକଥା ମନେପଡ଼ି ମୁଁ ନାହିଁ ନାହିଁ କହି ଚିତ୍କାର ଛାଡ଼ିଲି । ମୁଁ କାନ୍ଦି କରି କହିଲି ମୋତେ ଯଦି ତୁମେ ଛୋଟା କେମା କରିବା କଥା ତେବେ ମୁଁ କୋଠା ଉପରକୁ ଯାଉଛି ଡେଇଁପଡ଼ିବି । ପରେ ପୁରୀ ଗୁଣ୍ଡା କଥା ଶୁଣି ସେମାନେ ହସିଲେ ।

ମୁଁ ଗୁମ୍ ହୋଇ ବସିବା ପରେ କହିଲି ଭାଇନା କଟକରେ ଯେଉଁ ସ୍କୁଲରେ ପଢୁଥିଲେ ମୁଁ ସେହି ସ୍କୁଲରେ ପଢ଼ାଇଲେ ପଢ଼ିବି ନ ହେଲେ ଆଉ ପଢ଼ିବି ନାହିଁ ।

ତା' ଫଳରେ ୧୯୩୬ ଜାନୁଆରୀରେ କଟକ କଲେଜିଏଟ ସ୍କୁଲରେ ମୋ ନାଁ ଲେଖା ହୋଇ ମୁଁ ସେହି ସ୍କୁଲ ବୋର୍ଡ଼ିଂରେ ରହିଲି ।



# କଟକ ସ୍କୁଲ ପାଠପଢ଼ା

ସତ୍ୟବାଦୀ ମାଇନର ସ୍କୁଲରୁ ପାଶ କଲାପରେ ମୁଁ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ପାଇଁ ପ୍ରସ୍ତାବ ହେଲା । କିନ୍ତୁ କଟକ କଲେଜିଏଟ ସ୍କୁଲ ପ୍ରତି ମୋର ଆକର୍ଷଣ ଥିଲା । ସେ ଗୋଟିଏ ନାମଜାଦା ସ୍କୁଲ ବୋଲି ମୋର ଧାରଣା ଥିଲା ।

ମୋର ଭାଇନା ଶ୍ରୀ ଅଶୋକ ଦାସ (ପରେ ଆଡଭୋକେଟ) ସେହି ସ୍କୁଲରେ ପଢୁଥିବା ସମୟରେ ୧୯୨୮-୨୯ରେ ମୁଁ ଥରେ ପିତାଙ୍କ ସଙ୍ଗେ କଲେଜିଏଟ ଛାତ୍ରାବାସକୁ ଯାଇଥିଲି । ଭାଇନାଙ୍କ ସଙ୍ଗେ ଗୋଟିଏ କୋଠରୀରେ ପଟାମୁଣ୍ଡାଇର ପଦ୍ମନାଭ ତ୍ରୀପାଠୀ (ପରେ ଡାକ୍ତର) ଓ ଶ୍ରୀ ମାଧବ ଚନ୍ଦ୍ର ଜେନା (ପରେ ଆସିଷ୍ଟାଣ୍ଟ ଇଞ୍ଜିନିୟର) ରହୁଥିଲେ । ମାଧବ ବାବୁ ପାହାଡ଼ିଆ ଶୁଆଟିଏ ଆଣି ଗୋଟିଏ ପଞ୍ଜୁରୀରେ ସେହି କୋଠରୀରେ ରଖିଥିଲେ । ମୁଁ ଆଠ ନଅ ବର୍ଷର ପିଲା, ସେ ଶୁଆଟିକି ନେବାକୁ ମୁଁ ଜିଦ୍ ଧରିବାରୁ ସେ ମୋତେ ସେ ଶୁଆଟିକୁ ଗ୍ରାମକୁ ନେବାକୁ ଦେଇଥିଲେ; ଅବଶ୍ୟ ତାକୁ ମୁଁ ଗ୍ରାମକୁ ଆଣିବା ପରେ ଅଳ୍ପଦିନ ପରେ ତାହା ବିଡ଼ାଳ-ଭୁକ୍ତ ହୋଇଯାଇଥିଲା ।

ପରେ ଅସହଯୋଗ ଆନ୍ଦୋଳନବେଳେ ଭାଇନା ଏକାଦଶ ଶ୍ରେଣୀରେ ପଢୁଥିବା ସମୟରେ ସ୍କାଉଟ ହୋଇ ଡ଼ିରେକ୍ଟର ଡ଼ିପି ସାହେବଙ୍କ ସାମନାରେ ଗୋଟିଏ ଧାଡ଼ିରେ ଠିଆ ହୋଇଥିବା ବେଳେ ସ୍କାଉଟ ଶିକ୍ଷକ ଇଉନିଅନଜାକ ଉଠାଇ ତାକୁ ସମ୍ମାନ ପ୍ରଦର୍ଶନ ପାଇଁ ନିର୍ଦ୍ଦେଶ ଦେବାବେଳେ ଭାଇନା (ଅଶୋକ ଦାସ) ଡ଼ାଉନ ଡ଼ାଉନ ଇଉନିଅନଜାକ (ବ୍ରିଟିଶ୍ ପତାକା) ଅପ ଅପ ନାସନାଲ ଫ୍ଲାଗ (ଜାତୀୟ ପତାକା) କହି ନିଜ ପକେଟରୁ ତ୍ରିରଙ୍ଗା ହାତରେ ଧରି ଉଡ଼ାଇ ଦେଇଥିଲେ । ସେଥିରେ ତାକୁ ଅବଶ୍ୟ ସେ ସ୍କୁଲ ଛାଡ଼ିବାକୁ ପଡ଼ିଥିଲା । କିନ୍ତୁ ତାହା ତାଙ୍କର ଓ ସ୍କୁଲର ନାମକୁ ବିଖ୍ୟାତ କରି ଦେଇଥିଲା ।

ସେ ସମ୍ବନ୍ଧରେ ବାଲେଶ୍ୱରର ଜାତୀୟ କବି ଶ୍ରୀ ବାଞ୍ଛାନିଧି ମହାନ୍ତି ଲେଖିଥିବା ଗୀତକୁ ବାନରସେନାମାନେ ସେମାନଙ୍କ ଶୋଭାଯାତ୍ରାରେ ବୋଲି ବୋଲି ଯାଉଥିଲେ-

ନୀଳକଣ୍ଠ କବି କୁମର
ଅଶୋକ ସାହସୀ ସୁନ୍ଦର
ନ ମାନିଲା ସିଏ ବ୍ରିଟିଶ୍ ପତାକା
ସ୍କୁଲକୁ ଆପେ ଛାଡ଼ିଲା
ଜାଗିଲାରେ ଦେଶ ଜାଗିଲା ।

ବାନରସେନାଙ୍କଠାରୁ ସେ ଗୀତଟି ଶୁଣି ମୁଁ ଉଦବୁଦ୍ଧ ହୋଇଥିଲି । ସେ ସ୍କୁଲରେ ଛାତ୍ରମାନଙ୍କ ଭିତରେ ଜାତୀୟ ଭାବ ଜାଗ୍ରତ ହେଉଥିବା ମୋର ଧାରଣା ହୋଇଥିଲା । ମୁଁ ସେଠାରେ ପଢ଼ିଲେ ସେପରି କିଛି କାର୍ଯ୍ୟ କରିପାରିବି ବୋଲି ଭାବୁଥିଲି ।

ମୋର ମାଇନର ପରୀକ୍ଷା ଫଳ ବାହାରିବାପରେ ମୋର ପିତା ଆସିଥିଲେ, ମୋତେ ସାଙ୍ଗରେ ନେଇ କଟକ କଲେଜିଏଟ ସ୍କୁଲରେ ନାମ ଲେଖାଇ ଦେବାପାଇଁ । ତାଙ୍କର ପୂର୍ବତନ ସହପାଠୀ ଶ୍ରୀ ବିଶ୍ୱମ୍ଭର ମିଶ୍ର ସେତେବେଳେ କଲେଜିଏଟ ସ୍କୁଲ ହେଡ଼ମାଷ୍ଟର ଥିଲେ । ପିତା ମୋତେ ନେଇ ତାଙ୍କ ନିକଟରେ ଛାଡ଼ିଦେଲେ । ମୁଁ କଲେଜିଏଟ ସ୍କୁଲର ଅଷ୍ଟମ ଶ୍ରେଣୀରେ ନାମ ଲେଖାଇବା ସଙ୍ଗେ ସଙ୍ଗେ, କଲେଜିଏଟ ଛାତ୍ରାବାସରେ ମଧ ମୋତେ ସ୍ଥାନ ମିଳି ମୋର ନାମ ଲେଖାଗଲା । ପିତାଙ୍କ ପ୍ରତିଷ୍ଠିତ 'ନବଭାରତ ପ୍ରେସ'ର ମ୍ୟାନେଜର ଶ୍ରୀ ଚିନ୍ତାମଣି ମିଶ୍ର ମୋର ତତ୍ତ୍ୱାବଧାରକ ରହିଲେ । ମୋର ଦରକାର ଅନୁଯାୟୀ ପଇସାପତ୍ର ଯୋଗାଇ ଦେବାପାଇଁ ମୋର ପିତା ଚିନ୍ତାମଣି ବାବୁଙ୍କ ଉପରେ ଭାର ଦେଇ ଯାଇଥିଲେ ।

ସେ ସମୟରେ ମୋର ପିତା ପଣ୍ଡିତ ନୀଳକଣ୍ଠ ଓଡ଼ିଶା କଂଗ୍ରେସର କର୍ଣ୍ଣଧାର, କେନ୍ଦ୍ର ଆସେମ୍ବ୍ଲିରେ ସ୍ୱରାଜ ଦଳର ନେତା ଓ ଜଣେ ଋଷିପ୍ରତିମ ବିଦ୍ୱାନ ବ୍ୟକ୍ତି ଭାବରେ ପ୍ରତିଷ୍ଠା ଲାଭ କରିଥିଲେ । ତେଣୁ ତାଙ୍କ ପୁତ୍ର ଭାବରେ ଶିକ୍ଷକ ଓ ଉଚ୍ଚଶ୍ରେଣୀର ଛାତ୍ରମାନଙ୍କ ଦୃଷ୍ଟି ମୋ ଉପରେ ରହିଥିଲା । ତାହା ଅନୁଭବ କରି ମୁଁ ଜଣେ ଧୀରସ୍ଥିର, ଜାତୀୟତାବାଦୀ ଶୃଙ୍ଖଳାପ୍ରିୟ ଛାତ୍ର ଭାବରେ ଚଳାଚଳ ହେଲି ।

ସେକାଳରେ ଉପରକ୍ଲାସ ପିଲା ମୋତେ କିପରି ଚକ୍ଷୁରେ ଦେଖୁଥିଲେ, ପରବର୍ତ୍ତିକାଳରେ ବା ବହୁବର୍ଷ ପରେ ଗୋଟିଏ ଦୁଇଟି ଘଟଣାରେ ତାହା ପରିସ୍ଫୁଟ ହୋଇଥିଲା ।

ମୋ କଟକ ପାଠ ଆରମ୍ଭରେ ପ୍ରାୟ ୪୫/୪୬ ବର୍ଷପରେ, ମୁଁ ମୋ କାର୍ଯ୍ୟରୁ ଅବ୍ୟାହତି ନେଇ କଟକରେ ମୁଁ ମୋ କ୍ଲିନିକ୍‌ରେ ବସିଥିବା ସମୟରେ ଜଣେ ବୟୋବୃଦ୍ଧ ଲୋକ ଆସି ମୋତେ ସାକ୍ଷାତ କଲେ ।

ସେ କହିଲେ 'ଆପଣ ମୋତେ ଚିହ୍ନି ପାରିବେ ନାହିଁ ମୋର ନାମ ଦୈତାରୀ ବେହୁରା, ଘର ବାଙ୍କୀ, ମୁଁ ସରକାରୀ ପୂର୍ତ୍ତବିଭାଗରେ କାର୍ଯ୍ୟକରି ବହୁଦିନରୁ ଅବ୍ୟାହତି ନେଲିଣି । ପିଲାଦିନେ ଆପଣ କଲେଜିଏଟ ବୋର୍ଡ଼ିଂରେ ଥିଲାବେଳେ ମୁଁ ଜଣେ ଉପର ଶ୍ରେଣୀର ଛାତ୍ର ଭାବରେ ସେହି ଛାତ୍ରାବାସରେ ଥିଲି । ଏବେ ମୁଁ ଆପଣଙ୍କୁ ଚିହ୍ନି ପାରି ନଥା'ନ୍ତି । ଆପଣଙ୍କ ସାଇନବୋର୍ଡ ଦେଖି, ଭିତରେ ପଶି ଆପଣଙ୍କୁ ଚିହ୍ନଟ କଲି, ଆପଣ ମଧ

ମୋତେ ଚିହ୍ନି ପାରିବା ସମ୍ଭବ ନୁହେଁ । ସମୟ ଚାପରେ ସବୁ ବଦଳିଛି, କିନ୍ତୁ ସ୍ମୃତି ରହିଛି ।

ସେ ଜଣେ ଟାଙ୍ଗରା ମୁଣ୍ଡିଆ ସତୁରୀ ବର୍ଷରୁ ଅଧିକ ବୟସର ବୁଢ଼ା, ନାଆଁଟା ନ କହିଥିଲେ ହୁଏତ ମୁଁ ତାଙ୍କୁ ଚିହ୍ନିପାରିନଥା'ନ୍ତି, ବହୁତ ପୁରାତନ ସ୍କୁଲ ବନ୍ଧୁଙ୍କୁ ଦେଖିଲେ ହଠାତ୍ ସେମାନଙ୍କୁ ବୃଦ୍ଧାବସ୍ଥାରେ ଚିହ୍ନି ନ ପାରିବା ଓ ମନେ ପକାଇ ନପାରିବା ସ୍ୱାଭାବିକ, କିନ୍ତୁ ତାଙ୍କ ନାମ ଶୁଣୁ ଶୁଣୁ ମୋର ସ୍ମୃତି ଜାଗ୍ରତ ହୋଇଗଲା ଗୋଟିଏ କୌତୁକିଆ କଥା ମନେ ପଡ଼ି । ମୋର ତାଙ୍କୁ ଚିହ୍ନି ନ ପାରିବାର ଆଉ କୌଣସି କାରଣ ରହିଲା ନାହିଁ ।

ସେ ଜଣେ ଅଧ୍ୟବସାୟୀ ଛାତ୍ର ଥିଲେ । ପାଠକୁ ମନେ ମନେ ଘୋଷି ଦିନରାତି ଲାଗି ମନେ ରଖିବାକୁ ଚେଷ୍ଟା କରୁଥିଲେ । ତାଙ୍କ ରୁମ୍‌ରେ ତାଙ୍କ ଡଚ୍ଚ ଶ୍ରେଣୀରେ ପଢୁଥିବା ଶ୍ରୀ ବଳରାମ ମିଶ୍ର (ପରେ ଚିଫ୍ ଇଞ୍ଜିନିୟର) ନାମକ ଜଣେ ମେଧାବୀ ଛାତ୍ର ଥିଲେ । ଖୁବ୍ ଅଳ୍ପ ସମୟ ପଢ଼ି ତାଙ୍କର ପାଠ ସବୁ ମନେ ରହି ଯାଉଥିବାରୁ ପାଠପଢ଼ା ସାରି ସେ ଅନ୍ୟମାନଙ୍କୁ ସେ ରୁମକୁ ଆଣି ଆଡ୍‌ଡା ଜମାଇ ବଡ଼ ପାଟିରେ ଅନ୍ୟାନ୍ୟ ବାଜେ ଗପ କରୁଥିଲେ ।

ଏକାଡ଼େମୀ ସ୍କୁଲର ଜଣେ ଫୁଟ୍‌ବଲ ଖେଳାଳୀ (ବୟସ୍କ ଛାତ୍ର) ଶ୍ରୀ ବାମନ ମିଶ୍ର ବଳରାମଙ୍କ ବନ୍ଧୁମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ପଢ଼ା ସମୟରେ ମଧ୍ୟ ସେ ସେହି ରୁମ୍‌କୁ ଆସି ଖେଳକୁଦ ବିଷୟରେ ସେଠାରେ ବଡ଼ ପାଟିରେ ଆଲୋଚନା କରୁଥିଲେ । ସେଥିରେ ପରୀକ୍ଷାର୍ଥୀ ଦୈତାରୀବାବୁଙ୍କର ପାଠପଢ଼ାରେ ଅତ୍ୟନ୍ତ ବାଧା ସୃଷ୍ଟି ହେଉଥିଲା । ସେ ଜଣେ ନିରୀହ ଛାତ୍ର ଥିବାରୁ କଡ଼ାକଡ଼ି ବ୍ୟବହାର ନ କରି ବଡ଼ ଭାଇ ଭାବରେ ଉପଦେଶ ଛଳରେ ବଳରାମଙ୍କୁ କହିଲେ 'ତୁମେ ଏଠାକୁ ପାଠ ପଢ଼ିବାକୁ ଆସିଛ । ପାଠ ଚର୍ଚ୍ଚା ନ କରି ବୃଥାରେ କାହିଁକି ବାଜେ ଗପରେ ସମୟ ନଷ୍ଟ କରୁଛ ?'

ବଳରାମ ସେକଥା ବନ୍ଧୁ ବାମନଙ୍କୁ ଜଣାଇବା ପରେ ବାମନ ସେ ରୁମ୍‌କୁ ଆସି କଥା ଛଳରେ ବଳରାମକୁ କହିଲେ- 'ବଳରାମ ତୁମେ ସବୁବେଳେ ଗୁଡ଼ାଏ ବାଜେ କଥା ପକାଉଛ । ଆଉ ସେପରି ନକରି ଆସ ଆଜି ଇତିହାସକୁ ଆଧୁନିକ ଓ ନୂତନ ଦୃଷ୍ଟିକୋଣରୁ ଆଲୋଚନା କରିବା ।'

ମନେକର ଐତିହାସିକ ବ୍ୟକ୍ତିମାନେ କାର୍ଯ୍ୟ ଚାପରେ ବୁଡ଼ିରହି କିଛି ସମୟ ଚିତ୍ତବିନୋଦନ ଓ ମାଂସପେଶୀ ଚାଳନା ପାଇଁ ଗୋଟିଏ ପେଣ୍ଡୁ (ଫୁଟବଲ) ମ୍ୟାଚ୍‌ର ଆୟୋଜନ କଲେ । ୧୧ ଜଣ ରାଜନୀତିଜ୍ଞ ଗୋଟେ ପଟେ ଓ ୧୧ ଜଣ ଧାର୍ମିକ ସିଦ୍ଧ ପୁରୁଷ ଅନ୍ୟ ପଟେ ଖେଳିଲେ । ରାଜନୀତିଜ୍ଞମାନେ ହେଲେ-ଅଶୋକ, ଖାରବେଳ,

ଚନ୍ଦ୍ରଗୁପ୍ତ, ଅନଙ୍ଗଭୀମଦେବ, ଆକବର, ଆଉରଙ୍ଗଜେବ, ସାହାଜାହାନ, ଶିବାଜୀ, ମହାତ୍ମାଗାନ୍ଧୀ, ସର୍ଦ୍ଦାର ପଟେଲ, ଜବାହରଲାଲ ନେହେରୁ । ଧାର୍ମିକମାନେ ହେଲେ- ବୁଦ୍ଧ, ମହାବୀର, ଶଙ୍କର, ରାମାନୁଜ, ନାନକ, ଚୈତନ୍ୟ, କବୀର, ତୁଳସୀ ଦାସ, ରାମକୃଷ୍ଣ, ବିବେକାନନ୍ଦ ଓ ଦୟାନନ୍ଦ ।

ରାଜନୀତିଜ୍ଞଙ୍କ ଭିତରୁ ସର୍ଦ୍ଦାର ପଟେଲ ଓ ଧାର୍ମିକଙ୍କ ଭିତରୁ ଶ୍ରୀଚୈତନ୍ୟ ଗୋଲକିପର ହେଲେ । ଧମାଧମ ଖେଳ ଚାଲିଲା । ତା'ପରେ ତାଙ୍କ ଭିତରୁ କିଏ କେଉଁ ପୋଜିସନରେ ରହିଲେ ତାହା ବର୍ଣ୍ଣନା କରିସାରି କିଏ କିପରି ଖେଳିବାର ବର୍ଣ୍ଣନା କଲାବେଳେ ପଟେଲ ଓ ଚୈତନ୍ୟ ତାଙ୍କ ଲଣ୍ଡା ମୁଣ୍ଡରେ କିପରି ବଲକୁ ଅଟକାଉଥିଲେ ଆଉ କିଏ କିପରି ହେଡ଼ିଙ୍ଗ୍ କରୁଥିଲେ, ଚିତ୍‌ପଟାଙ୍ଗ ହୋଇ କିଏ ପଡ଼ି ଯାଉଥିଲେ ପ୍ରଭୃତିର ବର୍ଣ୍ଣନାରେ ସେ'ଠି ଆସି ଜୁଟିଥିବା ପିଲାଙ୍କ ଭିତରେ ଏତେ ହସଗୋଳ ଲାଗିଲା ଯେ ସେଥିରେ ଦୈତାରୀ ଆଉ ସ୍ଥିର ହୋଇ ବସି ରହିବା ସମ୍ଭବ ହେଲାନାହିଁ । ସେ ଆଉ ସେଠାରେ ନ ରହି ଅନ୍ୟଠାରେ ତାଙ୍କର କୌଣସି ସହପାଠୀଙ୍କ ସଙ୍ଗେ ରହି ପଢ଼ିବା ପାଇଁ ଉଠି ଚାଲି ଯାଇଥିଲେ । ଅନେକ ଦିନ ଧରି ସେ ବିଷୟରେ ସେ ଛାତ୍ରାବାସରେ ଆଲୋଚନା ଚାଲିଥିଲା ।

ବୃଦ୍ଧ ଦୈତାରୀ ବାବୁଙ୍କ ସଙ୍ଗେ ସାକ୍ଷାତ ହେବାରୁ ସେହି ବାଲ୍ୟ ସ୍ମୃତି ସବୁ ମନେପଡ଼ିଲା । ଆମର ବହୁ ବନ୍ଧୁ ଆରପୁରକୁ ଚାଲିଯାଇଥିବା ବିଷୟରେ ତାଙ୍କ ସଙ୍ଗେ ଆଲୋଚନା ହେଲା । କଥାବାର୍ତ୍ତା ହେଉ ହେଉ ମୁଁ ଭାବପ୍ରବଣ ହୋଇ କବିତାଟିଏ ଲେଖି ତାଙ୍କ ହାତକୁ ବଢ଼ାଇ ଦେଲି । ସେଥିରେ ଥିଲା-

''ଜୀବନ ଯାଉଛି ଚାଲି ଶୁଭିଲାଣି ସେ ପ୍ରପାତ ଧ୍ୱନୀ
ଅଜଣା ପ୍ରପାତେ ଲୀନ କେତେ ବନ୍ଧୁ ଜଣାଶୁଣା ଗୁଣୀ ।''

ସେ'ଦିନ ମୋଠାରୁ ବିଦାୟ ନେଇ ସେ ଗ୍ରାମକୁ ଫେରିବା ପରେ ଗ୍ରାମରୁ ମୋତେ ଏ ଚିଠିଟି ଲେଖିଥିଲେ -

ସାହାଡ଼ାପଡ଼ା, ବାଙ୍କୀ
୧୪.୧୨.୧୯୮୨

ଡ଼ିଅର ଡକ୍ଟର,

ତମ ମୋ ସମ୍ପର୍କ ନେଇ ଅନେକ କଥା ମନେ ପଡୁଛି । ମୋର ଯାହା ମନେ ପଡୁଛି ଏ ସମ୍ପର୍କଟା ୧୯୨୫ ମସିହାରୁ, ସେତେବେଳେ ମୁଁ କେତୁଟିଏ ହୋଇଥିବି ଏବଂ କି ପାଠ ପଢୁଥିବି ? ମୋର ସେତେବେଳର ଦୁନିଆରେ ଆମ ଘରେ ପଣ୍ଡିତ (ତୁମ ପିତା ପଣ୍ଡିତ ନୀଳକଣ୍ଠ)ଙ୍କ ନାମ ବାରମ୍ବାର ଉଚ୍ଚାରଣ ହୁଏ । ତା'ପରେ ବହୁତ ବହୁତ କଥା ।

ତା' ପରେ ମୁଁ କଟକ ଆସେ । ୧୯୩୫ରେ ଛୁରୀଅନା ବକୁଳ ବନରେ ଯାଇ ବୁଲି ଆସେ, ସେଠାରୁ ଫେରେ ।

ତା'ପରେ ପୁରୁଷୋତ୍ତମ ରଥ (ମୋର କ୍ଲାସମେଟ୍) ମତେ ଦିଏ 'କୋଣାର୍କେ' । ସେ ବୋଧହୁଏ ପଢୁଥିଲା ମୁଁ ଶୁଣୁଥିଲି । ପଣ୍ଡିତଙ୍କୁ ମୁଁ ଋଷି ବୋଲି ଧରିନେଇଥିଲି ।

ତା'ପରେ (ପରବର୍ଷ) ଛାତ୍ରାବାସରେ ତମକୁ ଦେଖିଲି । ଧରିନେଇଥିଲି ତୁମେ ଋଷି ପୁତ୍ର ବୋଲି, ତୁମେ ବି ଠିକ୍ ଋଷି ପୁତ୍ର ଭଳି ବ୍ୟବହାର କରୁଥିଲ । ଏବେ ବି ତୁମେ ମୋ ଆଖିରେ ସେଇପରି ଶୁଦ୍ଧପୂତ ଋଷି ବାଳକ ପରି ଦିଶୁଛ । ତା ମୋ ହୃଦୟ ପଟରେ ଲାଗି ରହିଛି ।

ତା'ପରେ ତୁମେ ଅନେକ ବଡ଼ ହୋଇଛ । ମୁଁ ଭାବିଥିଲି ଆମେରିକାରେ ରହିଗଲ ବୋଲି, ତା'ପରେ ଜାଣିଲି ବ୍ରହ୍ମପୁର ମେଡ଼ିକାଲ କଲେଜରେ ।

ତା'ପରେ ନେମ୍‌ପ୍ଲେଟ ଦେଖିଲି ଜେଲ ରୋଡ଼ରେ । ମନ ଅସମ୍ଭାଳ ହେଲା । ମନ ଆପେ ଆପେ ଟାଣିନେଲା ଦେଖି ଆସିବାକୁ, ମୋର ସେହି ଋଷିପୁତ୍ରଙ୍କୁ । ଭିତରେ ଯାଇ ଦେଖେ ପରିବର୍ତ୍ତନ କିଛି ନାହିଁ । କେବଳ ବୟସରେ ଯାହା । ମନଟା ଖୁସିରେ ଭରପୂର ହୋଇଗଲା ।

ତା'ପରେ ଏଇ ବାଲ୍ୟସ୍ମୃତି କବିତା କି ଚମତ୍କାର ଭାବେ ପ୍ରକାଶ । ଅନବଦ୍ୟ * * * ଏ ଏକ ଉଚ୍ଚକୋଟିର ଲେଖା ଏଥିରେ ସନ୍ଦେହ ନାହିଁ (ତୁମେ କହିଥିଲ ପଢ଼ିସାରି ଚିରି ଫିଙ୍ଗିଦେବାକୁ) ଏ ଚିରା ହୋଇ ଫୋପଡ଼ା ହେବା କଥା ଉଠୁନି ।

* * *

ପାରିବ ଯଦି ବାମଦେବ ବାବୁଙ୍କୁ କେଉଁଠି ଦେଖା କରିବ । ତୁମେ ତ ନିଶ୍ଚୟ କଟକ-ଭୁବନେଶ୍ୱର ମଧ୍ୟରେ ବୁଲାବୁଲି କରୁଥିବ । ଆମ ଜୀବନ ମଧ୍ୟରେ ସେ ହେଉଛନ୍ତି ପ୍ରଧାନ ନାୟକ । ତୁମେ ମୋ ସଙ୍ଗେ କାଠଯୋଡ଼ି ନଦୀକୁ ସ୍ନାନ କରିବାକୁ ଯାଇ ଗୋଡ଼ ଖସି ବୁଡ଼ି ଯାଉଥିଲ । ମୁଁ ପହଁରା ଜାଣି ନ ଥିବାରୁ ତୁମକୁ ଧରି ନ ପାରି ନିଜେ ନଦୀ ମଧ୍ୟକୁ ଝାସ ଦେବାକୁ ଯାଉଥିବାବେଳେ ଆମ ସ୍କୁଲର ବଡ଼ ଡେଙ୍ଗା ଓ ପହଁରା ଜାଣିଥିବା ପିଲା ବାମଦେବ ପାଣିଗ୍ରାହୀ ସେଠାରେ ପହଁଚିଯାଇ ତୁମକୁ ଜଳରୁ ଉଦ୍ଧାର କରି ଦୁଇଟି ପ୍ରାଣ ରକ୍ଷା କରିଥିଲା ।

କ୍ଷମା କରିବ, ମୋର ଓଡ଼ିଆରେ ଦଖଲ ଖୁବ କମ, ଲେଖାରେ ଭୁଲଥିବ ରହିଲି ।

ତୁମର

ଦୈତାରୀ ବାବୁ

ସେତେବେଳର ସ୍ମୃତି ସହିତ ଜଡ଼ିତ ଅଳ୍ପ କେତେ ବର୍ଷ ତଳେ ଘଟିଥିବା ଆଉ ଗୋଟିଏ ଘଟଣା-

କଲେଜିଏଟ ଛାତ୍ରାବାସରେ ମୋର ଉପର ଶ୍ରେଣୀର ପୂର୍ବତନ ଛାତ୍ର ବୃଦ୍ଧ ଶ୍ରୀ ସୁରେନ୍ଦ୍ର ନାଥ ପଣ୍ଡାଙ୍କ ସଙ୍ଗେ ବହୁକାଳ ପରେ ହଠାତ୍ କଟକ ରାସ୍ତାରେ ଦେଖା ହୋଇଗଲା । ପିଲାଦିନୁ ସୁରେନ୍ଦ୍ର ବାବୁଙ୍କର ବିଡ଼ି ସିଗାରେଟ୍ ଅଭ୍ୟାସ । ସେ ସିଗାରେଟ ଖଣ୍ଡିଏ ପାଟିରେ ରଖି ଧୂଆଁ ଖାଇ ଖାଇ ଚାଲିଥିଲେ । ମୋ ସଙ୍ଗେ ମୁହାଁମୁହିଁ ହୋଇଯିବାକ୍ଷଣି ହଠାତ୍ ସିଗାରେଟ୍‌ଟି ମୁହଁରୁ କାଢ଼ିନେଇ ହାତଟାକୁ ପଛରେ ଲୁଚାଇ ଦେଲେ ।

ମୁଁ ହସିକରି କହିଲି ଏ କ'ଣ ? ସିଗାରେଟ କାହିଁକି ଲୁଚାଇଲେ ? ତାଙ୍କ ପାଟିରୁ ବାହାରି ପଡ଼ିଲା 'ଏହା ଗୋଟିଏ ମର୍ଯ୍ୟାଦା କଥା । ତୁମମାନଙ୍କ ପରି ଚରିତ୍ରବାନ ଦେଶପ୍ରେମୀଙ୍କୁ ଦେଖିଲେ ସିଗାରେଟ ଲୁଚାଇଦେବା କଲେଜିଏଟ ଛାତ୍ରାବାସରୁ ଅଭ୍ୟାସରେ ପଡ଼ିଯାଇଛି ।' ମୁଁ କଲେଜିଏଟ ସ୍କୁଲରେ ପଢ଼ିବା ପୂର୍ବରୁ କଟକ ସ୍କୁଲମାନଙ୍କ ବିଷୟରେ କଥନୀ ଥିଲା-

କଲେଜିଏଟ-ପାନବିଡ଼ି ସିଗାରେଟ୍,<br>
ଭିକ୍ଟୋରିଆ (ଭକ୍ତମଧୁ ବିଦ୍ୟାପୀଠ)-ପିଲାଯାକ ବଢ଼ାରିଆ<br>
ଏକାଡେମୀ-ପାଠ ପଢ଼ାପଢ଼ି ଘୋଡ଼ାଡ଼ିମ୍ ।<br>
ମିସନ-ଫୁଲ ଅପ୍ ଫେସନ ।<br>
ମୁସଲିମ ସେମିନାରୀ-ଭଙ୍ଗା ଦଦରା ଆଲମାରୀ,<br>
ନାକ ଖଣ୍ଡିଆ ଦପ୍ତରୀ ।

କିନ୍ତୁ ମୁଁ ପଢ଼ିଲା ବେଳକୁ ସେସବୁର ଅବସ୍ଥାରେ କିଛି କିଛି ପରିବର୍ତ୍ତନ ଘଟିଥିଲା । କଲେଜିଏଟ ସ୍କୁଲରେ ଦେଶପ୍ରେମୀ ଚରିତ୍ରବାନ ପିଲାଙ୍କ ସଂଖ୍ୟା ବଢ଼ିଥିଲା । ଗାନ୍ଧିବାଦର ପ୍ରଚାର ଯୋଗୁଁ ମେଧାବୀ ପିଲାମାନେ 'ସିମ୍ପଲ ଲିଭିଙ୍ଗ, ହାଇଥିଙ୍କିଙ୍ଗ' ଅବହାଓ୍ୱା ଦ୍ୱାରା ପ୍ରଭାବିତ ହୋଇଥିଲେ । ପ୍ୟାରୀମୋହନ ଏକାଡେମୀର ହେଡ୍‌ମାଷ୍ଟର ବସନ୍ତ କୁମାର ଦାସ ସେ ସ୍କୁଲର ପାଠପଢ଼ା ଓ ଶୃଙ୍ଖଳାକୁ ନିୟନ୍ତ୍ରିତ କରି ସେ ସ୍କୁଲର ପିଲାମାନେ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବା ଆରମ୍ଭ କରିଥିଲେ ।

କଲେଜିଏଟ ସ୍କୁଲରେ ଓଡ଼ିଶାର ବଛା ବଛା ଶିକ୍ଷକଙ୍କୁ ଆଣି ରଖାଯାଉଥିଲା । ଉଚ୍ଚକୋଟିର ଶିକ୍ଷାବିତ୍‌ମାନଙ୍କୁ ପ୍ରଧାନ ଶିକ୍ଷକ କରାଯାଉଥିଲା । ମୁଁ ନାମ ଲେଖାଇବା ପରେ ପରେ ଆମ ସ୍କୁଲର ସୁନାମଧନ୍ୟ ପ୍ରଧାନ ଶିକ୍ଷକ ବିଶ୍ୱମ୍ଭର ମିଶ୍ର ବିହାର ଓଡ଼ିଶା ଡାଇରେକ୍ଟରଙ୍କ ଅଫିସ୍‌କୁ ପାଟନା ବଦଳି ହୋଇ ଯାଇଥିଲେ । ଏପ୍ରିଲରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ସେ ଓଡ଼ିଶାର ଶିକ୍ଷା ଡିରେକ୍ଟରଙ୍କ ପି.ଏ. ହୋଇଥିଲେ । ତାଙ୍କ

ସ୍ଥାନରେ ଶୃଙ୍ଖଳାପ୍ରିୟ ଶରତ ଘୋଷାଲ ଓ ଅଳ୍ପଦିନପରେ ତାଙ୍କର ଡାଇରେକ୍ଟରଙ୍କ ପି.ଏ. ଭାବେ ବଦଳି ହେବାରୁ ତାଙ୍କ ସ୍ଥାନରେ ଛାତ୍ର ବତ୍ସଳ ସୁକାନ୍ତ ରାଓ ପ୍ରଧାନ ଶିକ୍ଷକ ହୋଇ ଆସିଥିଲେ ।

ଅଙ୍କ ଶିକ୍ଷକ ଗୋପାଳ ଚନ୍ଦ୍ର ସିହ୍ନା ଆମ ଛାତ୍ରାବାସର ସୁପରିଟେଣ୍ଡେଣ୍ଟ ଓ ସୁନାମଧନ୍ୟ ପଣ୍ଡିତ ନାରାୟଣ ତ୍ରିପାଠୀ (ପରେ ରେଭେନସା କଲେଜ ଅଧାପକ) ଆମର ଆସିଷ୍ଟାଣ୍ଟ ସୁପରିଟେଣ୍ଡେଣ୍ଟ ଥିଲେ । ଅନ୍ୟ କୃତି ଶିକ୍ଷକଙ୍କ ଭିତରେ ସବୁଜ ଯୁଗର କବି ଶ୍ରୀ ବୈକୁଣ୍ଠ ନାଥ ପଟ୍ଟନାୟକ, ହରିହର ମିଶ୍ର, ଛାତ୍ର ବତ୍ସଳ ହମିଦ ଖାଁ ଓ ଇଳିତ ମୋହନ ଘୋଷ (ଭୂଗୋଳ ପୁସ୍ତକ ଲେଖକ) ଶ୍ରୀନାଥ ଦାସ (ଗଣିତଜ୍ଞ), ଫନୀନ୍ଦ୍ର ନାଥ ଦାସ ଓ ବିଶିଷ୍ଟ ସାହିତ୍ୟିକ ପଣ୍ଡିତ କୁଳମଣି ଦାଶ ପ୍ରଭୃତି ରହିଥିଲେ । ଆମକୁ ଉପର କ୍ଲାସରେ ଅଳ୍ପ ଦିନ ପଢ଼ାଇବା ପରେ ପଣ୍ଡିତ ଦାଶ ଅବ୍ୟାହତି ନେଇଥିଲେ । କିନ୍ତୁ ସେହି ଅଳ୍ପ ସମୟ ଭିତରେ ମଧ ଆମ ମନ ଉପରେ ତାଙ୍କର ପାଣ୍ଡିତ୍ୟ, ରେଖାପାତ କରିଥିଲା । ସେ ସଂସ୍କୃତ ପାଠକୁ ସରସ କରିବା ପାଇଁ ଦୃଷ୍ଟାନ୍ତ ଦେଇ ପାଠ ପଢ଼ାନ୍ତି । କାଳିଦାସଙ୍କ ବିଷୟରେ ପଢ଼ାଇବାକୁ ଯାଇ ସେ 'ନଷ୍ଟସ୍ୟ କାନ୍ୟାଗତି' ଦୃଷ୍ଟାନ୍ତଟି ଦେଇଥିଲେ । ସେ କହିଲେ ରାଜା ବିକ୍ରମାଦିତ୍ୟଙ୍କ ସଭାରେ କାଳିଦାସ ଥିବା ଯୋଗୁ ଅନ୍ୟ ପଣ୍ଡିତମାନେ ସେ ରାଜସଭାକୁ ବିତର୍କ ପାଇଁ ଆସିବାକୁ ସାହସ କରୁନଥିଲେ । ଥରେ ରାଜାଙ୍କ କଥାରେ ରଷିକରି କାଳିଦାସ ସଭାକୁ ନଆସି ସେ ସେହି ରାଜ୍ୟ ଛାଡ଼ି ଚାଲି ଯାଇଛନ୍ତି ବୋଲି ପ୍ରଘଟ କରାଇ ଦେଇଥିଲେ । ସେଥିରେ ସାହସ ବାନ୍ଧି ଅନ୍ୟ ରାଜ୍ୟର ପଣ୍ଡିତ ଆସି ସେ ରାଜସଭାର ପଣ୍ଡିତମାନଙ୍କୁ ତାଙ୍କ ଶ୍ଳୋକ 'ନଷ୍ଟସ୍ୟ କାନ୍ୟାଗତି' ପଦର ପଦ ପୂରଣ କରିବା ପାଇଁ ନିର୍ଦ୍ଦେଶ ଦେଇ ଅପଦସ୍ତ କରିବା ପାଇଁ ଚେଷ୍ଟା କଲେ । ସଭାର ପଣ୍ଡିତମାନେ ନାନା ଭାବରେ ସେ ପଦ ପୂରଣ କରିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ । ରାଜସଭାର ପଣ୍ଡିତମାନେ ହାରିଯାଇଥିବାରୁ କାଳିଦାସଙ୍କୁ ମନେ ପକାଇ ରାଜା ବଡ଼ ଦୁଃଖିତ ହେଲେ ।

ସେତିକିବେଳକୁ ଗୋଟାଏ ମଦୁଆ ଭିକାରୀ ଜଗୁଆଳିମାନଙ୍କୁ ବେଖାତିର କରି ସଭାଭିତରେ ପଶି ରାଜାଙ୍କ ସିଂହାସନ ଆଡ଼କୁ ଧପସି ଆସିଲା । ଚପରାଶିମାନେ ତାକୁ ଅଟକାଇବାକୁ ଚେଷ୍ଟାକଲାବେଳେ ରାଜାଙ୍କର ସେ ଭିକାରୀ ଉପରେ ଦୃଷ୍ଟି ପଡ଼ିଲା । ସେ ଚିରା ଜାମା ଓ ଚିରା ଲୁଗା ପିନ୍ଧି ହାତରେ ଗୋଟାଏ ଦନାରେ ମାଂସ ପୁଳାଏ ଧରି ଖାଉଥିଲା । ସେ ରାଜ୍ୟର ସାଧାରଣ ଲୋକେ ନିରାମିଶାଷୀ ଥିଲେ, ତେଣୁ ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ 'ଭିକ୍ଷୋ ! ମାଂସ ନିସେବଣ ପ୍ରକୁରୁସେ (ଭିକାରୀଟା ତୁ ମାଂସ ଖାଉଚୁ !)' ଭିକାରୀ ଉତ୍ତର ଦେଲା-'କିଂତେନ ମଦ୍ୟ ବିନା ?' (ମଦ ନହେଲେ କ'ଣ ଇଏ ଚଳେ ?)

ରାଜା ପଚାରିଲେ- 'ମଦ୍ୟଂ ତବ ରୁଚି' (ତୁ କ'ଣ ମଦ ଖାଉ)

ସେ କହିଲା-'ମଦୋଭିରୁଚି ବାରାଙ୍ଗନା ସହ' (ମଦ କ'ଣ ,ମୁଁ ମଧ ବେଶ୍ୟାସକ୍ତ ।)

ରାଜା କହିଲେ- 'ତାସ୍ୟାଂ ଅର୍ଥ ରୁଚି କୁତଃ ସ୍ତବ ଧନଂ' (ବେଶ୍ୟାଙ୍କର ଟଙ୍କା ଦରକାର । ତୁ ଟଙ୍କା କେଉଁଠୁ ପାଉଁ ?)

ସେ ଉତ୍ତର ଦେଲା - 'ଚୌର୍ଯ୍ୟେଣ ଦ୍ୟୁତେନ ବା' (ଚୋରୀ କିମ୍ବା ଜୁଆ ଖେଳ ଦ୍ୱାରା) । 'ନଷ୍ଟସ୍ୟ କାନ୍ୟା ଗତି' (ନଷ୍ଟ ଲୋକର ଆଉ ଗତି କଅଣ) ?

ସେପରି ପଦ ପୂରଣରେ ପ୍ରଶ୍ନକାରୀ ପଣ୍ଡିତଙ୍କ ମୁଖ କଳା ପଡ଼ିଗଲା । ରାଜସଭା ହସି ଉଠିଲା । ରାଜା ଆସନରୁ ଉଠିଆସି 'ହେ କାଳିଦାସ' କହି ତାଙ୍କୁ କୁଣ୍ଢାଇ ପକାଇଲେ ।

କଲେଜିଏଟ ସ୍କୁଲର ସେପରି ଯୋଗ୍ୟ ଶିକ୍ଷକମାନଙ୍କ ଯୋଗୁଁ ପାଟନା ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କଲେଜିଏଟ ସ୍କୁଲ ଛାତ୍ରମାନେ ସର୍ବୋଚ୍ଚ ସ୍ଥାନ ରଖି ପାରୁଥିଲେ । ୧୯୩୬ ମସିହା ମୋ ନାମଲେଖା ବର୍ଷ ଆମେ ପରୀକ୍ଷାର୍ଥୀମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ ସଭା କରିଥିଲୁ । ସେମାନେ ପରୀକ୍ଷା ଦେଲେ, ଫଳ ବାହାରିଲା । ସେମାନଙ୍କ ଭିତରୁ ଶ୍ରୀରାମଚନ୍ଦ୍ର ଦାଶ କେବଳ ସେ ବର୍ଷ ସର୍ବୋଚ୍ଚ ନମ୍ବର ରଖି ନଥିଲେ, ସେ ସବୁ ବର୍ଷର ଉଚ୍ଚ ନମ୍ବରଠାରୁ ଅଧିକ ନମ୍ବର ରଖି ରେକର୍ଡ ବ୍ରେକ୍ କରିଥିଲେ ।

ସେହି ସ୍ୱର୍ଗତ ଶ୍ରୀରାମ ଦାଶ ହେଉଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ସୁନାମଧନ୍ୟ ପ୍ରଫେସର ଓ ପରେ ଓଡ଼ିଶା ହାଇକୋର୍ଟର ବିଶିଷ୍ଟ ଆଡ଼ଭୋକେଟ । ଆମେ ସେତେବେଳେ ସେହି ଦରିଦ୍ର ରୋଗୀ ବାଳକଙ୍କ ସମ୍ବନ୍ଧରେ ବହୁ କଥା ଶୁଣିବାକୁ ପାଇଥିଲୁ । ଖାଦ୍ୟାଭାବ ଓ କୃମି ଦୋଷରୁ ତାଙ୍କ ଦେହରେ ଛଉ ଦେଖା ଯାଇଥିଲା । ତାକୁ ସ୍କୁଲ ହେଲଥ ଅଫିସର କୁଷ୍ଠ ଛଉ ବୋଲି କହିବାରୁ ପିଲାଏ ତାଙ୍କୁ ଶ୍ରେଣୀ ଭିତରେ ପାଖରେ ନ ବସାଇ ଦୂର୍ ଦୂର୍ ମାର୍ ମାର୍ କରୁଥିଲେ । ସେ ଝରକାର ବାହାରପଟେ ବସି ଶିକ୍ଷକମାନଙ୍କ ପଢ଼ା ଶୁଣୁଥିଲେ । ସେ ସବୁ, ତାଙ୍କର ପାଠପଢ଼ା, ସ୍ମରଣ ଶକ୍ତି ଓ ତୀକ୍ଷ୍ଣ ବୁଦ୍ଧିକୁ କମାଇ ପାରିନଥିଲା । ସେ ଜିଦ୍‌ଖୋର୍ ପିଲା, ଶେଷରେ ମାଟ୍ରିକ ପରୀକ୍ଷାରେ ସେପରି କୃତିତ୍ୱ ଅର୍ଜ୍ଜନ କରି ସମସ୍ତଙ୍କୁ ଚକିତ କରିଦେଇ ପାରିଥିଲେ ।

ମୁଁ ପୂର୍ବରୁ ରୋଗା ଥିଲି, ମୋ ନାକରୁ ବହୁତ ରକ୍ତ ପଡୁଥିଲା । ଡାକ୍ତରୀ କବିରାଜି ଓ ହୋମିଓପ୍ୟାଥି କୌଣସି ଔଷଧ କିଛି କାମ ଦେଉନଥିଲା । ତେଣୁ ପାଠରେ ମନ ଲାଗୁ ନଥିଲା, କିନ୍ତୁ ସେତିକିବେଳେ ଶ୍ରୀରାମ ବାବୁଙ୍କ କୃତିତ୍ୱ ମୋ ମନରେ ସାହସ

ସଞ୍ଚାର କରିଥିଲା । ଗ୍ରୀଷ୍ମ ଛୁଟିରେ ଗ୍ରାମକୁ ଯାଇ ଫେରିବା ପରେ ଦେହ ବେଶୀ ଖରାପ ହେବାରୁ ଆମ ଛାତ୍ରାବାସର ସରକାରୀ ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ମୋର ଆରୋଗ୍ୟ ପାଇଁ ଜଳବାୟୁ ପରିବର୍ତ୍ତନର ପରାମର୍ଶ ଦେଲେ ।

ମୋର ପିତା ପଣ୍ଡିତ ନୀଳକଣ୍ଠ ସେଣ୍ଟ୍ରାଲ ଆସେମ୍ବ୍ଲିର ସଦସ୍ୟ ଥିଲେ । ସେ ସମୟରେ ତାଙ୍କର ଗ୍ରୀଷ୍ମକାଳୀନ ଅଧିବେଶନ 'ସିମଳା'ରେ ବସୁଥିଲା । ସେ ସିମଳା ଯିବାପାଇଁ ବାହାରିଥିବା ବେଳେ ମୁଁ ତାଙ୍କୁ ଡାକ୍ତରଙ୍କ ପରାମର୍ଶ କଥା ଜଣାଇବାରୁ ସେ ରାଜି ହେଲେ । ମୁଁ ଯିବା କଥା ହେବାରୁ ଆଜ୍ମାରୋଗୀ ମୋର ସାନ ମାମୁ ବାସୁଦେବ ମିଶ୍ରଙ୍କୁ ମୋ ସଙ୍ଗେ ନେବାର ମଧ କଥା ହେଲା ।

ସେହି ବଡ଼ଲାଟ ସଭା ସ୍ୱାଧୀନ ଭାରତରେ ପାର୍ଲିଆମେଣ୍ଟରେ ପରିଣତ ହୋଇଥିଲା, ତା'ର ସଦସ୍ୟମାନଙ୍କର ମାସିକ ଦରମା ନ ଥିଲା, ସେ ସଭା ବସିଲାବେଳେ ସେଠାରେ ଉପସ୍ଥିତ ଥିଲେ ଦିନକୁ ମାତ୍ର ପନ୍ଦରଟି ଟଙ୍କା ଭତ୍ତା ମିଳୁଥିଲା । ମୋର ପିତାଙ୍କୁ ସେହି ଭତ୍ତାରୁ ବଳିବା ଟଙ୍କା ଓ ନିଜ ଲେଖାବହିରୁ ପ୍ରାପ୍ୟ ରଏଲିଟରେ ରାଜନୀତିକ କର୍ମୀ ଖର୍ଚ୍ଚ, ନବଭାରତ ପତ୍ରିକା ପରିଚାଳନା ପ୍ରଭୃତି କାର୍ଯ୍ୟ ମଧ ଚଳାଇବାକୁ ପଡୁଥିଲା । ତେଣୁ ନିଜ କାର୍ଯ୍ୟରେ ଆମକୁ ନେଇ ଖର୍ଚ୍ଚ ବଢ଼ାଇବା ପାଇଁ ସେ ପ୍ରଥମରୁ ରାଜିନଥିଲେ । ତେଣୁ ମୋତେ ଓ ମାମୁଙ୍କୁ ତାଙ୍କ ଫାଷ୍ଟକ୍ଲାସ ଡ଼ବା ସଂଲଗ୍ନ ଥାର୍ଡ଼କ୍ଲାସ (ସରଭାଣ୍ଟ ଡ଼ବା)ରେ ଯିବାକୁ ପଡ଼ିଥିଲା ।

ହାବଡ଼ା ଷ୍ଟେସନରେ ଆମେ କାଲକା ମେଲରେ ଯାଇ ହିମାଳୟର ପାଦଦେଶରେ ପହଞ୍ଚିଲୁ, କାଲକାରୁ ଅଣଓସାରିଆ ରାସ୍ତାରେ ଛୋଟ ରେଳ ଗାଡ଼ିରେ ପାହାଡ଼ର ବଙ୍କା ଟଙ୍କା ରାସ୍ତା ଓ ଟନେଲ ଦେଇ ଆମ ଗାଡ଼ି ଉପରୁ ଉପରକୁ ଚାଲିଲା ।

ପାହାଡ଼ ସବୁ ଦେଇ ଗାଡ଼ି ଉପରକୁ ଉଠିଲାବେଳେ ସୂର୍ଯ୍ୟ ଓ ମେଘମାନଙ୍କର ଲୁଚକାଳି ବଡ଼ ଉପଭୋଗ୍ୟ ଥିଲା । ଝରକାବାଟେ ତଳକୁ ଚାହିଁଲେ କିମ୍ୱା ଡାଷ୍ଟି ଦେଲାପରି ପାହାଡ଼ କାଛର ନିମ୍ନ ଦେଶର ଗହ୍ୱରକୁ ଚାହିଁଲେ ଦେହ ଶୀତେଇ ଉଠୁଥିଲା, ବାନ୍ତି ଲାଗି ମୁଣ୍ଡ ବୁଲେଇ ହୋଇ ଯାଉଥିଲା, ସିମଳା ରେଲ ଷ୍ଟେସନରେ ପହଞ୍ଚିଲା ପରେ ଚାରିଜଣ ରିକ୍‌ସାବାଲା, ଆଗରେ ଦୁଇ ପଛରେ ଦୁଇ ଥାଇ ଟାଣୁଥିବା ରିକ୍‌ସାରେ ଆମେ ବସିଲୁ । ଆମ ପଛରେ ପିଠିରେ ଲଦି କୁଲିମାନେ ଆମ ଜିନିଷ ବୋହି ଚାଲିଲେ । ଆମକୁ ସରକାରୀ ଘର ମିଳିବା ଡ଼େରି ଥିବାରୁ ଆମେ ସିମିଳାର କାଳିବାଡ଼ିରେ ଆସି ରହିଲୁ । ସେଠାରେ ବଙ୍ଗାଳି ରନ୍ଧା ନିରାମିଶ ଆହାର ମିଳୁଥିଲେ ମଧ ବିରି ଡ଼ାଲି ଗୋଟିଏ ପ୍ରଧାନ ଖାଦ୍ୟଥିଲା । ଜୀବନରେ ପ୍ରଥମଥର ପାଇଁ ସେ ନାଳୁଆ ନାଳୁଆ ବିରିଡାଲି ପାଟିକୁ ନେଉ ନେଉ ମୁଁ ଭକ୍ କରି ବାନ୍ତି କରିଦେଲି ।

ଅଳ୍ପ କେତେଦିନ ପରେ ଦଶ ନମ୍ବର କାର୍ଟ ରୋଡ଼ରେ ଆମକୁ ସରକାରୀ କ୍ୱାର୍ଟର ମିଳିଲା । ପ୍ରତାପ ଚାନ୍ଦ ନାମକ ରାଜସ୍ଥାନୀ ପୂଜାରୀଟିଏ ମଧ ଆସି ଜୁଟିଯାଇ ମାମୁଙ୍କ ନିର୍ଦ୍ଦେଶରେ ଆମ ଖାଇବା ରନ୍ଧାରନ୍ଧି ଆରମ୍ଭ କରିଦେଲା ।

ଆମ କ୍ୱାର୍ଟର ସଙ୍ଗେ ମିଶି ଆଉ ଗୋଟିଏ କ୍ୱାର୍ଟର ଥିଲା । ଆମ କ୍ୱାର୍ଟରରେ ଆମେ ଓ ଆସାମର ଜଣେ ସଦସ୍ୟ ଶ୍ରୀ ବସନ୍ତ କୁମାର ଦାସ ରହିଲୁ । (ପରେ ପାର୍ଟିସନରେ ବସନ୍ତବାବୁଙ୍କ ନିର୍ବାଚନ ମଣ୍ଡଳୀ ପାକିସ୍ଥାନକୁ ଚାଲିଆସିଥିବାରୁ ସେ ଫଜଲଇହକଙ୍କ ମନ୍ତ୍ରୀମଣ୍ଡଳରେ ଇଷ୍ଟ ପାକିସ୍ଥାନର ବୈଦେଶିକ ମନ୍ତ୍ରୀ ହୋଇଥିଲେ । ସେ ବିଦେଶରେ ଥିବାବେଳେ ଯାୟୁବ ଖାଁ ସେ ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରିବାରୁ ବସନ୍ତବାବୁ ବିଦେଶରେ (ଭାରତରେ) ରହି ଶେଷ ଜୀବନ କଟାଇ ସ୍ୱର୍ଗଗାମୀ ହୋଇଥିଲେ ।

ଆମ ପାଖ କ୍ୱାର୍ଟରଟିରେ ମହାବିପ୍ଳବୀ ବଙ୍ଗଳାର ସଦସ୍ୟ ଅମରନାଥ ଚାଟାର୍ଜୀ ତାଙ୍କ ସ୍ତ୍ରୀ ଓ ପୁତ୍ର ଯୋଗବ୍ରତକୁ ଧରି ରହୁଥିଲେ ।

ସୌନ୍ଦର୍ଯ୍ୟପୁରୀ ସିମଳାରେ ପ୍ରଧାନ ରାସ୍ତା 'ମଲ୍'ର ତଳକୁ ତଳକୁ ଆମ କ୍ୱାଟରଗୁଡ଼ିକ ବୁଦୁବୁଦିଆ ହୋଇ ରହିଥାଏ । ତଳ କ୍ୱାଟରରୁ ଅନ୍ୟ କ୍ୱାଟରମାନଙ୍କୁ ସଂଯୋଗ କରି ବାଡ଼ଦିଆ ରାସ୍ତାଟିଏ ଅଙ୍କାବଙ୍କା ହୋଇ ଉପରକୁ ଉଠି 'ମଲ୍'କୁ ସଂଯୋଗ କରୁଥାଏ ।

ଆମ ଘର ସାମନାରେ ତଳେଇ ହୋଇ ଗୋଟିଏ ଛୋଟ ସମତଳ ସ୍ଥାନରେ ଗୋଲାପ, ଡାଲିଆ, ପିଟୁନିଆ ପ୍ରଭୃତି ଫୁଲ ଗଛ ଲାଗି ଉଦ୍ୟାନଟିଏ ତିଆରି ହୋଇଥାଏ । ସେଥିରେ ମୋଠାରୁ ବର୍ଷେ ଦୁଇବର୍ଷ ସାନ ଯୋଗବ୍ରତ (ଅମରବାବୁଙ୍କ ପୁଅ) ଓ ମୁଁ ସେ ଉଦ୍ୟାନକୁ 'ନନ୍ଦନକାନନ' ନାମ ଦେଇ ସେଥିରେ ଯାଇ ଖେଳୁ । ତାହାର ଦୃଶ୍ୟ ଅତି ମନୋରମ, କେତେବେଳେ ତାହା ସୂର୍ଯ୍ୟକିରଣରେ ସୁନା, ହୀରା ପରି ଝଟକୁଥିଲାବେଳେ କେତେବେଳେ ସେଠାକୁ ମେଘ ଖଣ୍ଡେ ମାଡ଼ିଆସି ଅନ୍ଧକାରମୟ କରିଦିଏ । ବର୍ଷା ନକଲେ ମଧ ସେ ମେଘର ଜଳକଣାଗୁଡ଼ିକ ପଶମ ବସ୍ତ୍ର ବା ଦାଢ଼ି ଓ ମୁଣ୍ଡର ଲୁଖୁରା ବାଳରେ ଲାଗିଗଲେ ଜମାଟ ବାନ୍ଧି ଛୋଟ ଛୋଟ ମୋତି ବିନ୍ଦୁ ପରି ଚକ୍‌ଚକ୍ ଦିଶେ ।

ମୁଁ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଆସିଥିବାରୁ ମୋ ସମ୍ବନ୍ଧରେ ତାହା କଡ଼ାକଡ଼ି ପାଳନ କରାଯାଉଥିଲା । ସକାଳୁ ଘଣ୍ଟାକୁ ଛଅଣାରେ ଭଡ଼ା ନିଆଯାଇଥିବା ପାହାଡ଼ି ତାଲିମପ୍ରାପ୍ତ ଘୋଡ଼ା ଉପରେ ବସି ମୋତେ ବୁଲି ଆସିବାକୁ ହୁଏ । ଖାଦ୍ୟରେ ମଧ ଏକ ଅଣାରେ କିଣା ପାହାଡ଼ିଆ ଛେଳିର ଗୋଟିଏ ପ୍ରାୟ କିଲେକିଆ କଲିଜା ଖାଇବାର ବ୍ୟବସ୍ଥା ହୋଇଥାଏ । ପ୍ରତାପ ଚାନ୍ଦ ତାକୁ ନାନା ଭାବରେ ରାନ୍ଧି ଦିନ ଯାକ ଲାଗି ମୋତେ ଖୁଆଇବାରେ ଲାଗିଥାଏ । ମୋର ପିତା ପ୍ରାୟ ଆସେମ୍ବ୍ଲି କାର୍ଯ୍ୟରେ ବ୍ୟସ୍ତ ରହନ୍ତି ।

ସମୟ ପାଇଲେ ଆସି ଲେଖା ପଢ଼ାରେ ଲାଗିଯାଆନ୍ତି । ସେ ଜେଲରେ ଲେଖିଥିବା 'ଶ୍ରୀମଦ୍‌ଭଗବତ ଗୀତା' ସେତେବେଳେ କଟକରେ ନବ ଭାରତ ପ୍ରେସରେ ଛପା ଚାଲିଥାଏ । ପ୍ରତିଦିନ ଡାକରେ ବିଡ଼ାଏ ଲେଖାଏଁ ପ୍ରୁଫ ସହିତ ନୂଆ ଛପା ହେବା ପାଇଁ ଲେଖା ସବୁଦିନ କଟକ ପଠାଉଥାଆନ୍ତି, ସେ ରାତି ୩ଟା ପର୍ଯ୍ୟନ୍ତ ଅନିଦ୍ରା ରହି ଲେଖାପଢ଼ା କରନ୍ତି କାରଣ ସେ କେନ୍ଦ୍ର ଆସେମ୍ବ୍ଲି ବିପକ୍ଷ ଦଳର ଜେନେରାଲ ସେକ୍ରେଟେରୀ ଥିବାରୁ ତାଙ୍କ ଦଳର ଅନ୍ୟ ସଦସ୍ୟମାନେ ସନ୍ଧ୍ୟାବେଳେ ଆମ ଘରକୁ ଆସନ୍ତି । ସେହି ସମୟରେ ଭାରତର ବହୁ ବଡ଼ ବଡ଼ ନେତୃବର୍ଗଙ୍କର ସାନ୍ନିଧରେ ଆସିବା ଓ ସେମାନଙ୍କର ସାଧାରଣ କଥାବାର୍ତ୍ତା ଶୁଣିବାର ସୁଯୋଗ ମୋତେ ମିଳିଥିଲା । ଅନନ୍ତ ଶୟନ ଆୟଙ୍ଗାର (ପରେ ଗଭର୍ଣ୍ଣର), ଏମ୍, ଏସ ଆଣେ (ପରେ ଗଭର୍ଣ୍ଣର) ଶ୍ରୀକୃଷ୍ଣ ସିହ୍ନା (ପରେ ବିହାରର ପ୍ରଥମ ପ୍ରଧାନମନ୍ତ୍ରୀ) ସତ୍ୟନାରାୟଣ ସିହ୍ନା (ପରେ କେନ୍ଦ୍ର ମନ୍ତ୍ରୀ ଓ ଗଭର୍ଣ୍ଣର) କୁଳଧର ଚାଲିହା (ପରେ ଆସାମ ଆସେମ୍ବ୍ଲି ସ୍ପିକର) ବସନ୍ତ କୁମାର ଦାସ, ଅମରେନ୍ଦ୍ର ନାଥ ଚାଟାର୍ଜୀ ପ୍ରଭୃତିଙ୍କୁ ଅତି ନିକଟରୁ ଜାଣିବାର ସୁବିଧା ପାଇଥିଲି ।

ବିପ୍ଳବୀ ଅମରେନ୍ଦ୍ର ଚାଟାର୍ଜୀଙ୍କ ପୁତ୍ରର ସାଙ୍ଗ ଭାବରେ ଅନେକ ସମୟ ମୁଁ ତାଙ୍କ ଘରେ କଟାଉଥିବାରୁ ମୋତେ ସେ ଦମ୍ପତି ନିଜ ପୁତ୍ର ଭଳି ଆଦର ଯତ୍ନ କରୁଥିଲେ । ଅମରବାବୁ ଜଣେ ବିଶିଷ୍ଟ ବିପ୍ଳବୀ ଭାବରେ ନିର୍ବାସନ ଦଣ୍ଡ ପାଇ ଆଣ୍ଡାମାନ (କଳାପାଣି) ଜେଲ୍‌ରେ ବାର ବର୍ଷ କଟାଇ ଆସିବା ପରେ ଭୋଟରେ ନିର୍ବାଚିତ ହୋଇ ବଡ଼ଲାଟ ସଭାର ସଦସ୍ୟ ହୋଇଥିଲେ । ତାଙ୍କ ଠାରୁ ତାଙ୍କ ବିପ୍ଳବୀ ସମୟର ଲୋମହର୍ଷଣକାରୀ ଘଟଣାସବୁ ଶୁଣି ମୋର ଲୋମ ଟାଙ୍କୁରି ଉଠୁଥିଲା । ସେ ସେକାଳର ଏକ ଜମିଦାର ପିଲା ଥିଲେ । ଏମ୍.ଏ. ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ବଙ୍ଗ ଭଙ୍ଗ, ବନ୍ଦେ ମାତରଂ ବିପ୍ଳବୀ ଆନ୍ଦୋଳନରେ ଯୋଗଦେଇ ବ୍ରିଟିଶ ସରକାରଙ୍କ ଚକ୍ଷୁଶୂଳ ହୋଇଥିଲେ । ଇଂରେଜ ସରକାରଙ୍କ ପୋଲିସ ତାଙ୍କୁ ଧରିବା ପାଇଁ ଚେଷ୍ଟା କଲାବେଳେ ସେ ଥରେ ସୁନ୍ଦରଗଡ଼ ଜଙ୍ଗଲ ନିକଟରେ ଗୋଟିଏ ଗ୍ରାମରେ ଆତ୍ମଗୋପନ କରି ରହିଥିଲେ । ପୋଲିସ ଖବର ପାଇ ତାଙ୍କୁ ଧରିବାକୁ ଆସିବାବେଳେ ପୋଲିସ ଘେର ଡେଇଁ ସେ ଘୋର ଜଙ୍ଗଲ ଭିତରେ ପଶିଗଲେ । ପୋଲିସ ତାଙ୍କୁ ଗୋଡ଼ାଇ ଗୋଡ଼ାଇ ନ ପାଇ ସନ୍ଧ୍ୟା ହୋଇ ଆସୁଥିବାରୁ ଫେରିଗଲେ । ଅମରବାବୁ ଦଉଡ଼ି ଦଉଡ଼ି ଯାଇ ଅଣନିଶ୍ୱାସୀ ହୋଇ ଗୋଟିଏ ବରଗଛକୁ ଆଉଜି ଆଖି ମୁଦି ଠିଆ ହୋଇଗଲେ । ସେ ଦେଶ କଥା, ତାଙ୍କ ବୃଦ୍ଧ ପିତାମାତା, ପତ୍ନୀ ଓ ପିଲା କଥା ଭାବୁଥିଲାବେଳେ ସାମନାରେ ଟିକିଏ ଖଡ଼ ଖଡ଼ ଶବ୍ଦ ଶୁଭିଲା । ସେ ଆଖି ମେଲାକରି ଚାହିଁଲା ବେଳକୁ ତାଙ୍କ ସାମନାରେ ଅଳ୍ପ ଦୂରରେ ଏକ ବିରାଟ ମହାବଳ ବସି ରହି ହାଇ ମାରୁଥିବା ଦେଖିବାକୁ ପାଇ ପୁଣି ଆଖି ମୁଦି ଦେଲେ । ସେ ମନେ ମନେ ଭାବିଲେ ଦେଶ କାମ ପାଇଁ ମୁଁ ଘର ସଂସାର ସବୁ ଛାଡ଼ିଛି । କ'ଣ ଶେଷରେ ଏ ବାଘ ପେଟରେ ପଡ଼ି ମୋର ସବୁ ଦେଶ କାର୍ଯ୍ୟ ବନ୍ଦ ହୋଇଯିବ ? ହେଉ, ବିଧାତାର

ଓ ଭାରତମାତାର ଯଦି ଏହାହିଁ ଇଚ୍ଛା ତା' ହେଉ । କିଛି ସମୟ ପରେ ଖଡ୍ ଖଡ୍ ଶବ୍ଦ ଶୁଣି ପୁଣି ଆଖି ମେଲାଇଲେ । ସେ ଦେଖିଲେ ମହାବଳ ବାଘଟା ସେଠାରୁ ଉଠି ଧୀରେ ଧୀରେ ଜଙ୍ଗଲ ଭିତରକୁ ଚାଲିଯାଉଛି ।

ସେ ସେହି ଜଙ୍ଗଲ ଭିତରେ ଗୋଟିଏ ଗୁପ୍ତ ସ୍ଥାନରେ ରହୁଥିଲେ । ସେ ମୁସଲମାନ ଅଣ୍ଡାବିକାଳି ବେଶରେ ପାଖ ଗାଁଟିକୁ ଆସି ତାଙ୍କ ଦଳ ସଙ୍ଗେ ଯୋଗାଯୋଗ ରଖି ଅନ୍ୟ କର୍ମୀମାନଙ୍କୁ ନିର୍ଦ୍ଦେଶ ପଠାଉଥିଲେ । ସେ ଶସ୍ତାରେ ଅଣ୍ଡା ବିକ୍ରୀ କରି ଦେଉଥିବାରୁ ଅନ୍ୟ ଜଣେ ପ୍ରକୃତ ଅଣ୍ଡା ବିକାଳି ତାଙ୍କୁ ସନ୍ଦେହ କରି ପୋଲିସ ହାତରେ ଧରାଇ ଦେଇଥିଲା । ତାଙ୍କ ଉପରେ ପୋଲିସର ବହୁ ଗୁରୁତର ଅଭିଯୋଗ ରହିଥିଲା । ବିଚାରରେ ସେ ଦଳର ନେତା ଭାବରେ ତାଙ୍କୁ ଆଜୀବନ କାରାଦଣ୍ଡ ଦିଆଯାଇ ଆଣ୍ଡାମାନ ଦ୍ୱୀପକୁ ନିର୍ବାସିତ କରା ଯାଇଥିଲା ।

କଂଗ୍ରେସ ଓ ନାସନାଲ ପାର୍ଟିର ସଦସ୍ୟଙ୍କ ବ୍ୟତୀତ ଅନ୍ୟାନ୍ୟ ସଦସ୍ୟଙ୍କ ସଙ୍ଗେ ଅନ୍ୟଠାରେ ଦେଖା ହୋଇଥିଲା । ସେତେବେଳେ ବିହାର ଓଡ଼ିଶାରୁ ଓଡ଼ିଶା ପାଇଁ ଦୁଇ ଜଣ ମାତ୍ର ସଦସ୍ୟ ରହିଥିଲେ । ପିତାଙ୍କ ଛଡ଼ା ଅନ୍ୟ ଜଣକ ଥିଲେ ବିଲାତ ଫେରନ୍ତା ଇଞ୍ଜିନିୟର ଭୁବନାନନ୍ଦ ଦାସ । ତାଙ୍କର ବମ୍ବେରେ ଇଲେକ୍‌ଟ୍ରିକ୍ ବ୍ୟବସାୟ ଥିଲା । ସେ ସାହେବ ପରି ଚଳୁଥିଲେ, ବିଲାତ ଓ ବମ୍ବେରେ ରହିବା ସମୟରୁ ପାକିସ୍ଥାନ ପ୍ରତିଷ୍ଠାତା ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଥିଲା । ସିମଲାରେ ସାହେବୀ ବେଶରେ ଜିନ୍ନାଙ୍କୁ ମୁଁ ବି. ଦାସଙ୍କ ଘରେ ଦେଖିବାର ସୁଯୋଗ ପାଇଥିଲି । ବି. ଦାସ ପିତାଙ୍କର ସହପାଠୀ ଥିଲେ । ସେ ଦମ୍ପତ୍ତି ମୋତେ ବଡ଼ ଆଦର କରୁଥିଲେ । ମୁଁ ଘୋଡ଼ା ଚଢ଼ୁଥିବା ଲକ୍ଷ୍ୟକରି ବି. ଦାସ ମୋତେ ଥଟ୍ଟାକରି କହୁଥିଲେ-'ବିକ୍ରମ, ଗାଁକୁ ଗଲେ ନନାଙ୍କୁ କହିବ ସେ ଗୋଟେ ଗାଡ଼ିବାଲା ଘୋଡ଼ା କିଣିଦେବେ । ସେ ଅଠର ନଳାରେ ଦଳ ଚରିବ ।'

ଦେଓ୍ୱାଲି ପୂର୍ବରୁ ବଡ଼ଲାଟ ସଭା ବନ୍ଦ ହୋଇଗଲା । ଆମେ ସିମଳା ଛାଡ଼ି କଲିକତା ଆସିଲୁ । ପୂଜା ଛୁଟିରେ ମୁଁ କଲିକତାରେ ରହି ମୋର ଦାନ୍ତ ନାକ ପ୍ରଭୃତିର ଚିକିତ୍ସା ପାଇଁ ଡାକ୍ତର ପରାମର୍ଶ କରିବାରେ ମାସଟିରୁ ଅଧିକା ସମୟ କଟିଗଲା । ସେତେବେଳେ କଲିକତାରେ ମୋ ପାଖରେ ମୋ ଭାଇନା ଅଶୋକ ଦାସ ରହିଥିଲେ ।

କଟକରେ ପହଞ୍ଚିଲାବେଳକୁ ବାର୍ଷିକ ପରୀକ୍ଷା ସମୟ ହୋଇ ଯାଇଥିଲା । ମୋର କ୍ଲାସ ବହିସବୁ କିଣାହେବା ପରେ ବାକ୍‌ସ ଭିତରେ ବହୁ ଦିନ ବନ୍ଦୀ ହୋଇ ରହିଥିଲେ । ମୁଁ ସେ ବର୍ଷ ପରୀକ୍ଷା ଦେବି କି ନାହିଁ ତାହା ଏକ ଚିନ୍ତାର ବିଷୟ ହୋଇପଡ଼ିଲା । ଅଷ୍ଟମ ଶ୍ରେଣୀରେ ଆଲଜେବ୍ରା, ସଂସ୍କୃତ, ପ୍ରଭୃତି ନୂଆ ପାଠ, ଇତିହାସ, ଭୂଗୋଳ ପ୍ରଭୃତି ମଧ୍ୟ ଇଂରେଜୀ ବହିରୁ ପଢ଼ିବାକୁ ପଡ଼େ । ସେସବୁ ସହିତ ବର୍ଷକଯାକ ସମ୍ପର୍କ ନଥିବାରୁ ମୁଁ ଅଡୁଆରେ ପଡ଼ିଲି । ଗୋଟିଏ ବର୍ଷ ଶ୍ରେଣୀ ସାଥୀଙ୍କ ପଛରେ ପଡ଼ିଯାଇ ନୂଆ ପିଲାଙ୍କ

ସଙ୍ଗେ ପୁଣି ପାଠ ଆରମ୍ଭ କରିବା କଥା ଭାବି ମୋ ମନ ଖରାପ ଲାଗିଲା । ନବ ଭାରତ ପ୍ରେସରେ ଜିନିଷପତ୍ର ରଖି ମୁଁ ସ୍କୁଲକୁ ଗଲି । ଡାକ୍ତର ରାଜକିଶୋର ନନ୍ଦଙ୍କ ସାର୍ଟିଫିକେଟ ଓ ଚିନ୍ତାମଣି ବାବୁଙ୍କ ଦ୍ୱାରା ନିୟମିତ ଦରମା ଦିଆଯାଉଥିବାରୁ ଖାତାରୁ ମୋ ନାମ କଟିନଥିଲା । ତଥାପି ମୋର କେତେକ ସହପାଠୀ ଓ ଶିକ୍ଷକ ମୋତେ ଚିହ୍ନି ନ ଥିବା ପରି ବ୍ୟବହାର ଦେଖାଇଲେ ।

ଶିକ୍ଷକଙ୍କ ଭିତରୁ ସ୍ଥିତଧୀ ଛାତ୍ରବତ୍ସଳ ହମିଦ ଖାଁ (ଆମର କ୍ଲାସ ଶିକ୍ଷକ) ମୋତେ ଡାକି କହିଲେ 'ତୁମେ ପାଠୁଆ ଘରର ପିଲା, ଏ କ୍ଲାସ ଉଠା ପାଠ ତୁମକୁ ବଳେଇବନି । ପରୀକ୍ଷା ଅଳ୍ପ କେତେ ଦିନ ଥିଲେ ମଧ ତୁମେ ଯଦି ପାଠରେ ଜୋରସୋରରେ ଲାଗିଯିବ ତେବେ ନିଶ୍ଚୟ ପାଶ୍ କରିଯିବ । ବର୍ଷଟାଏ ମିଛରେ କାହିଁକି ହରାଇବ । ଉପର କ୍ଲାସରେ, ଅଭାବ ଥିବା ପାଠକୁ ଅକ୍ଳେଶରେ ତୁମେ ହାସଲ କରିପାରିବ ।' ବିଭିନ୍ନ ଶିକ୍ଷକ ବିଭିନ୍ନ ମତ ଦେଲେ । ଛାତ୍ରାବାସର ଆସିଷ୍ଟାଣ୍ଟ ସୁପରିଟେଣ୍ଡେଣ୍ଟ ସଂସ୍କୃତର ସେକେଣ୍ଡ ପଣ୍ଡିତ ବଡ଼ ସାଧାସିଧା ଲୋକ, ସେ କହିଲେ 'ପାଠ କଣ ଏତେ ଶସ୍ତା, ବର୍ଷକଯାକ କୁଆଡେ ଗଲ ଏବେ ବାହାଘର ବେଳେ ବାଇଗଣ ରୋଇବାକୁ ଆସିଲ । ସଂସ୍କୃତ ତ କିଛି ପଢ଼ିନାହିଁ, ଆଉ ବର୍ଷେ ପଢ଼ି ପରୀକ୍ଷା ଦିଅ ।'

ସେ ଯାହାହେଉ ମୁଁ ଦିନରାତି ବହିଧରି ବସିଗଲି ସବୁ ବିଷୟରେ ଅନ୍ତତଃ କିପରି ପାଶ ନମ୍ବରଟା ରହିବ ସେଥିପାଇଁ ଚେଷ୍ଟାକଲି । ସଂସ୍କୃତରେ ମଧ ଶବ୍ଦ ରୂପ ଓ ବ୍ୟାକରଣ ପ୍ରଭୃତି ମୁଖସ୍ଥ କରିବାର ସମୟ ନ ଥିବାରୁ ପାଠ୍ୟ ପୁସ୍ତକଟି କେବଳ ଭଲକରି ପଢ଼ି ପକାଇଲି ।

ପରୀକ୍ଷାରେ ସଂସ୍କୃତ ସମେତ ସବୁ ବିଷୟରେ ପାଶ ନମ୍ବର ରହିଲା କିନ୍ତୁ ପଣ୍ଡିତଙ୍କଠାରୁ ଗାଳି ମିଳିଲା । ମୁଁ ସଂସ୍କୃତ ପରୀକ୍ଷା ଖାତାରେ ବହି ବିଷୟତକ ଲେଖିସାରି, ଟ୍ରାନସଲେସନ କଲାବେଳକୁ ବ୍ୟାକରଣ ଜାଣି ନଥିବାରୁ ପଣ୍ଡିତଙ୍କୁ ଚିଡ଼ାଇବାର ବ୍ୟବସ୍ଥା କରିଥିଲି । 'ରାମବାବୁଙ୍କର ଦୁଇ ପୁତ୍ର ଥିଲେ' ପ୍ରଭୃତି ଗୋଟିଏ ବିଷୟ ସଂସ୍କୃତରେ ଟ୍ରାନସଲେସନ କରିବାକୁ ପଡ଼ିଥିଲା । ମୁଁ ତାହା ଉତ୍ତରରେ ଉପରେ 'ରାମବାବୁସ୍ୟ ଦ୍ୱ ପୁତ୍ର ସ୍ଥା' ଲେଖି ତା'ତଳେ ଗୁଡ଼ିଏ ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ ଲେଖି, ପଣ୍ଡିତେ ଯାହା ଦରକାର ଏଥିରୁ ନେଇ ମୋ ଟ୍ରାନସଲେସନରେ ଲଗାଇ ପଢ଼ିବାକୁ ଅନୁରୋଧ ବୋଲି ଲେଖିଥିଲି । ପଣ୍ଡିତେ ପ୍ରଥମେ ମୋ ଖାତା ଦେଖି ଭାରି ଚିଡ଼ିଲେ ଓ ମନମୋଟ ହୋଇଯାଉଛି ବୋଲି ଗାଳିଦେଲେ । କିନ୍ତୁ ପରଦିନ ଡକାଇ କହିଲେ 'ତୁମେ ପାଶ ନମ୍ବର ରଖିଛ, ମନଦେଇ ପାଠପଢ଼ ଭଲ କରିବ, ମୁଁ ଆଶୀର୍ବାଦ କରୁଛି ।'



# ଜାତୀୟ ଚେତନା

ସେପରି ଆସି ପରୀକ୍ଷାରେ ପାଶ କରିଥିବା ଯୋଗୁଁ ସହପାଠୀମାନଙ୍କ ଭିତରେ ମୋ ମନ ଟିକିଏ ବଢ଼ି ଯାଇଥିଲା, କେତେକ ଜାତୀୟତାବାଦ ମନୋବୃତ୍ତିର ଭଲଭଲ ପିଲା ମୋ ସହିତ ବନ୍ଧୁତ୍ୱ କରିବା ପାଇଁ ଆଗେଇ ଆସିଥିଲେ ।

ଭାଇନା କଟକ ସ୍କୁଲ ଛାଡ଼ି କଲିକତାରେ ପଢ଼ିବା ସମୟରେ ତାଙ୍କର ଏକ ବିପ୍ଲବୀ ଦଳ ସହିତ ସଂପର୍କ ସୃଷ୍ଟି ହୋଇଥିଲା । ସେ ଦଳର 'କାଳି ଦାଦା' ନାମକ ଜଣେ ବିପ୍ଲବୀ ଯୁବନେତା ଆମ ଗ୍ରାମକୁ ଆସି ଆତ୍ମଗୋପନ କରି ରହିଥିବା ବେଳେ ମୁଁ ତାଙ୍କ ଭାବଭଙ୍ଗୀରେ ଉଦ୍‌ବୁଦ୍ଧ ହୋଇଥିଲି; ଅବଶ୍ୟ ସେ ବେଶି କିଛି କଥାବାର୍ତ୍ତା ବା କାହା ସଙ୍ଗେ ମିଳାମିଶା କରୁନଥିଲେ । ସେ ତାଙ୍କ ଦଳର କାହାସଙ୍ଗେ ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ପୁରୀ ଯାଇଥିଲା ବେଳେ କେତେକ ଗୁପ୍ତ ବଙ୍ଗୀୟ ପୋଲିସଙ୍କ ଦ୍ୱାରା ବନ୍ଦୀ ହୋଇ ବଙ୍ଗଳାର ଦମ୍‌ଦମ୍ ଜେଲକୁ ନିଆଯାଇଥିଲେ, ବୋଧହୁଏ କଲିକତାରେ ବିଚାର ହୋଇ ସେ କଳାପାଣି ଦଣ୍ଡ ପାଇଥିଲେ । ମୁଁ ତାଙ୍କୁ ଆଉ ଦେଖିବାର ସୁଯୋଗ ପାଇନଥିଲେ ମଧ୍ୟ ପୁରୀରେ ଆତ୍ମଗୋପନ କରି ରହିଥିବା ଆଉ ଜଣେ ବିପ୍ଲବୀଙ୍କ ସହିତ ମୋର ସମ୍ପର୍କ ହୋଇଥିଲା । ମୁଁ ମାଇନର ପଢ଼ିଲାବେଳୁ ଜଣେ ବିପ୍ଲବୀ ନେତା ପୁରୀ ଜିଲ୍ଲା ସ୍କୁଲ ଛାତ୍ରମାନଙ୍କୁ ଡାକି ସେମାନଙ୍କ ସଙ୍ଗେ ଦେଶ ବିଷୟରେ ଆଲାପ କରି ସେମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲେ । ସେତେବେଳେ ଅସହଯୋଗ ଆନ୍ଦୋଳନ ପରେ ଗାନ୍ଧି ପନ୍ଥା ନିଷ୍କ୍ରିୟତା ସୃଷ୍ଟି କରିଥିବାରୁ ଜାତୀୟତାବାଦୀ ଯୁବକମାନେ କିଛି ଗୋଟାଏ ବୈପ୍ଲବିକ ପନ୍ଥା ଖୋଜୁଥିଲେ ।

ଅମରବାବୁଙ୍କ ବୈପ୍ଲବିକ ଜୀବନର କାହାଣୀ ସବୁ ଶୁଣି ମୋ ମନରେ ଦେଶପ୍ରୀତି ଦୃଢ଼ ହୋଇଥିଲା । ଦେଶ ପାଇଁ ଆତ୍ମବଳୀର ଆଦର୍ଶ ଦେଖାଇଥିବା ବଙ୍ଗର କେତେକ ବିପ୍ଲବୀଙ୍କ ସମ୍ବନ୍ଧରେ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତି ପୁସ୍ତକ କଲିକତାରୁ ଗୁପ୍ତରେ ସଂଗ୍ରହ କରି ଭାଇନା ଆଣି ଗ୍ରାମରେ ଭାଡ଼ି ଉପରେ ଲୁଚାଇ ରଖିଥିଲେ । ମୁଁ ସେଥିରୁ କେତେଖଣ୍ଡି ଆଣି କଟକରେ ଲୁଚାଇ ରଖିଥିଲି ।

ମୁଁ ଓ ମୋର କେତେକ କଲେଜିଏଟ ଛାତ୍ରାବାସର ସହପାଠୀ ସେସବୁ ନେଇ ଗୁପ୍ତସ୍ଥାନରେ ଲୁଚାଇ କରି ପଢୁଥିଲୁ । 'ଫାସିର ସତ୍ୟନ' 'ଆମି ରାଜା ହଏଛି' ପ୍ରଭୃତି ପୁସ୍ତକ ପାଠ କଲାବେଳେ ଆମ ଲୋମ ଟାଙ୍କୁରି ଉଠୁଥିଲା । ଫାସିଖୁଣ୍ଟରେ ଚଢ଼ିଲା

ବେଳେ ମାଜିଷ୍ଟ୍ରେଟ ଜଣେ ବିପ୍ଳବୀଙ୍କୁ ତାଙ୍କର ଶେଷ ଇଚ୍ଛା କଅଣ ବୋଲି ପଚାରିବାରୁ ସେ କହିଲେ 'ମୁଁ ମୋ ମାଆ ପାଖକୁ ଚିଠିଟିଏ ଡାକି ଦେଉଛି ଲେଖିନିଅ, ତାକୁ ମୋ ମା' ପାଖକୁ ପଠାଇଦେବ । ସେ ଡାକିଲେ- ମା' ତୁ ପିଲାଦିନୁ ମୋତେ କହୁଥିଲୁ ମୋ ଜାତକରେ ରାଜଯୋଗ ଅଛି, ମୁଁ ରାଜା ହେବି । ଆଜି ତାହା ସତ ହୋଇଛି; ମୁଁ ରାଜାପରି ଉଚ୍ଚ ଆସନ ଫାସିଖୁଣ୍ଟ ଉପରେ ଠିଆ ହୋଇଛି, ତଳେ ମାଜିଷ୍ଟ୍ରେଟ, ପୋଲିସ ସାହେବ, ଜେଲରଙ୍କ ପରି କର୍ମଚାରୀସବୁ ଠିଆ ହୋଇ ମୋ ଆଦେଶ ପାଳନ କରି ମୁଁ କହିବା ଅନୁସାରେ ଲେଖି ଚାଲିଛନ୍ତି । ମୁଁ ଏ ଦେଶ ମାତୃକା ପାଇଁ ଜୟର ରକ୍ତ ଟୀକା ପିନ୍ଧିବାକୁ ଯାଉଛି । ବନ୍ଦେ ମାତରଂ, ତୋର ପୁତ୍ର-' ଲାଲା ଲଜପତ ରାଏ ସହିଦ୍ ହେବା ସମ୍ବନ୍ଧରେ ଜ୍ୱାଳାମୟୀ ବାଣୀର ପୁସ୍ତକ, ଅନ୍ୟାନ୍ୟ ଦେଶର ବିପ୍ଳବୀମାନଙ୍କ ସମ୍ବନ୍ଧରେ ଦେଶ ଭକ୍ତିର ଚରମ ନିଦର୍ଶନର ପୁସ୍ତକ ସବୁ ପାଠକରି ଆମେ ନିଜକୁ ଦେଶର ସ୍ୱାଧୀନତା ଯୁଦ୍ଧ ବେଦୀରେ ବଳି ଦେବାକୁ ପ୍ରସ୍ତୁତ କରୁଥିଲୁ ।

ଦେଶ କାର୍ଯ୍ୟ ପାଇଁ ଚରିତ୍ର ଗଠନ ପ୍ରଥମ କାର୍ଯ୍ୟ ବୋଲି ଆମେ ବୁଝୁଥିଲୁ । 'ଥିଲେ ଥାଉ ପଛେ ଗୁଣ ହଜାର, ଚରିତ୍ର ନ ଥିଲେ ସବୁ ଅସାର' ବାଣୀକୁ ଆଗରେ ରଖି ଚରିତ୍ର ପରମ ବଳ ବୋଲି ଧରିନେଇ, ରାମକୃଷ୍ଣ, ବିବେକାନନ୍ଦ ପ୍ରଭୃତି ମହାପୁରୁଷଙ୍କ ସମ୍ବନ୍ଧରେ ପୁସ୍ତକ ସବୁ ପାଠ କରୁଥିଲୁ, ନିଜକୁ ସତପଥରେ ଗଢ଼ିବା ପାଇଁ ପ୍ରାକ୍ଟିସିଂ ଏମ.ଇ.ସ୍କୁଲର ପ୍ରଧାନ ଶିକ୍ଷକ ରାମକୃଷ୍ଣ ପଣ୍ଡା ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ ବ୍ରହ୍ମଚର୍ଯ୍ୟ ପୁସ୍ତକ ଅନୁସାରେ ଦୈନିକ ଡାଏରୀ ଲେଖି ଦିନ ଭିତରେ କି କି ଭୁଲ କରିଛୁ ତା' ଲେଖି ସେଥିପାଇଁ ନିଜକୁ ଦୋଷୀ ସାବ୍ୟସ୍ତ କରି ଆଉ ସେପରି ନ କରିବା ପାଇଁ ଚେଷ୍ଟା କରୁଥିଲୁ ।

ଆମ ଭିତରେ ଅଧିକାଂଶ ସମୟରେ ଦେଶ ସମ୍ବନ୍ଧରେ କଥାବାର୍ତ୍ତା ହେଉଥିଲା । ୧୯୩୬ରେ ନୂଆ ଓଡ଼ିଶା ପ୍ରଦେଶ ଗଠିତ ହେଲା, ପ୍ରଥମ ନିର୍ବାଚନ ହୋଇ ବିଧାନସଭା ଗଢ଼ାଗଲା, ପ୍ରଥମେ ଅଣକଂଗ୍ରେସ ଓ ପରେ କଂଗ୍ରେସ ସରକାର ଗଢ଼ାଗଲା । ଜାତୀୟ କଂଗ୍ରେସ ପକ୍ଷରୁ ଆସାମରେ ବର୍ଦ୍ଦୋଲାଇ, ଓଡ଼ିଶାରେ ଶ୍ରୀ ବିଶ୍ୱନାଥ ଦାସ, ବିହାରରେ ଶ୍ରୀକୃଷ୍ଣ ସିହ୍ନା, ଉତ୍ତର ପ୍ରଦେଶରେ ଗୋବିନ୍ଦ ବଲ୍ଲଭ ପନ୍ଥ, ମଧ୍ୟପ୍ରଦେଶରେ ଡକ୍ଟର ଏନ.ବି.ଖାରେ, ବମ୍ବେ ପ୍ରେସିଡେନ୍ସରେ ବି.ଜି.ଖେର, ମାନ୍ଦ୍ରାଜ ପ୍ରେସିଡେନ୍ସରେ ଶ୍ରୀ ରାଜଗୋପାଳଚାରୀ, ନର୍ଥୱେଷ୍ଟ ପ୍ରଭିନ୍ସରେ ସୀମାନ୍ତ ଗାନ୍ଧିଙ୍କ ଭାଇ ଡକ୍ଟର ଖାଁ ସାହେବ ପ୍ରଭୃତିଙ୍କ ଦ୍ୱାରା ମନ୍ତ୍ରୀମଣ୍ଡଳ ଗଢ଼ାଗଲା । ଅବିଭକ୍ତ ବଙ୍ଗ, ଅବିଭକ୍ତ ପଞ୍ଜାବ ଓ ସିନ୍ଧରେ ମୁସଲିମ ଲିଗ୍ ସରକାର ଗଢ଼ିଲେ । ସେ ସବୁର ଫଜଲୁଲ ହକ, ଇସ୍କନ୍ଦର ମିର୍ଜା ଓ ଖସୁର ପ୍ରଧାନମନ୍ତ୍ରୀ ହେଲେ ।

କଂଗ୍ରେସ ରାଜ୍ୟମାନଙ୍କରେ ଜେଲ୍ ଫେରନ୍ତା ବାନରସେନା ଛାତ୍ରମାନେ ସେ ସରକାରମାନଙ୍କଠାରୁ ବହୁତ କିଛି ଆଶା କରିଥିଲେ । କିନ୍ତୁ ସେ ସରକାରମାନଙ୍କର କ୍ଷମତା ସବୁ ବ୍ରିଟିଶ ଲାଟ ସାହେବମାନଙ୍କ ହାତରେ ଠୁଳ ହୋଇଥିବାରୁ ସେ ମନ୍ତ୍ରୀମଣ୍ଡଳ ବିଶେଷ କିଛି ଲୋକ- ଉପକାର କାର୍ଯ୍ୟ କରି ନ ପାରି ନିଜର ଗାଦି ବଜାୟ ରଖିବା ପାଇଁ ବ୍ରିଟିଶ ସରକାରଙ୍କୁ ଲାଇ ଫିତା ଦ୍ୱାରା ଚାଳିତ ହେବାକୁ ଲାଗିଲେ । ତାହା ଯୋଗୁଁ ଛାତ୍ର ସମାଜରେ ଓ ଯୁବକମାନଙ୍କ ମନରେ ଅସନ୍ତୋଷ ବ୍ୟାପିବାକୁ ଲାଗିଲା । ବିପ୍ଳବୀ ମତବାଦୀ ଛାତ୍ରମାନଙ୍କ ଭିତରୁ ଅନେକେ ସରକାରଙ୍କ ଦ୍ୱାରା ନିଷିଦ୍ଧ ଥିବା କମ୍ୟୁନିଷ୍ଟ ଦଳ ପ୍ରତି ଆକୃଷ୍ଟ ହେଲେ ।

ସିମଳାରୁ ଫେରି ମୋ ଶରୀରରେ ଯାହା ଉନ୍ନତି ଦେଖାଯାଇଥିଲା, କଲେଜିଏଟ୍ ଛାତ୍ରାବାସର ଖାଦ୍ୟପେୟରେ ତାହା ପୁଣି ଭୁଷୁଡ଼ିଗଲା । ଛାତ୍ରାବାସରେ ୩/୪ଟି ମେସ ସ୍ୱତନ୍ତ୍ର ଭାବରେ ପିଲାମାନଙ୍କ ଦ୍ୱାରା ଚଳୁଥିଲା । ମେସ ପରିଚାଳନାରେ ଛାତ୍ରାବାସର ସୁପରିଟେଣ୍ଡେଣ୍ଟ ଆଦୌ ଭାଗ ନେଉ ନ ଥିଲେ । ଯେଉଁ ପିଲା ଯେଉଁ ମାସରେ, ଯେଉଁ ମେସ୍‌ର ପରିଚାଳନା ଭାର ନେଉଥିଲା, ପିଲାଙ୍କ ଠାରୁ ଦେୟ ଆଦାୟ କରିବାଠାରୁ ବଜାର ସଉଦା କରିବା ଦାୟିତ୍ୱ ପର୍ଯ୍ୟନ୍ତ ସବୁ ତା' ଉପରେ ପଡୁଥିଲା । ମେସ୍ ପରିଚାଳନାର ପ୍ରଧାନ ଅନ୍ତରାୟ ଥିଲା ପ୍ରତିଦିନର ପୂଜାରୀ ମୁତୟନ ।

ସ୍କୁଲ ଛୁଟି ପରେ ମେସ ପରିଚାଳକ-ବାଳକଙ୍କୁ ତା'ସଙ୍ଗରେ ଚାକର ଓ ସଉଦା ବେତାକୁ ଧରି ଚଉଧୁରୀ ବଜାରକୁ ଯିବାକୁ ପଡ଼େ । ଚଉଧୁରୀ ବଜାରରୁ ବାହାରିଥିବା ପିଠାପୁର ରାସ୍ତା ଛକରେ ଛୋଟ ହୋଟେଲ ଓ ଦୋକାନ ନିକଟରେ ପୂଜାରୀମାନେ ଅପେକ୍ଷା କରି ରହିଥା'ନ୍ତି । ସେମାନଙ୍କୁ ଦେଖିବା ମାତ୍ରେ ପୂଜାରୀଟିଏ ପିଣ୍ଡାରୁ ଓହ୍ଲାଇ ସେମାନଙ୍କ ନିକଟକୁ ଆଗେଇ ଆସେ । ସେ କିପରି ଗୋଟିଏ ଭଲ ପୂଜାରୀ ଓ ସେ କେତେ ପ୍ରକାର ରାନ୍ଧିପାରେ ତାହା ବୟାନ କଲା ପରେ ପରେ ସେ ମେସ ପୂଜାରୀ ଭାବରେ ନିଯୁକ୍ତି ପାଇଯାଏ । ପୂଜାରୀଟି ପରିଚାଳକ ଓ ମେସ ଚାକରର ପଛେ ପଛେ ଯାଇ ଗୋଟିଏ ଦିନର ରୋଷାଇ ପାଇଁ ଯାହା ସରଞ୍ଜାମ ଦରକାର ତାହା କିଣାଇ ଦିଏ । ତା' ପରେ ସେମାନେ ଛାତ୍ରାବାସକୁ ଫେରନ୍ତି । ରାତ୍ରି ରୋଷାଇ ହୁଏ । ସକାଳ ରୋଷେଇ ସରେ, ପିଲାମାନେ ଖାଇ ପିଇ ସ୍କୁଲକୁ ଯାଆନ୍ତି । ଏପରି ଦିନେ ଦୁଇଦିନ ପରେ ପିଲାଏ ସ୍କୁଲରେ ଥିବା ସମୟରେ ସେ ପୂଜାରୀଟି ଭୋଜନ ସାରି ମେସର ବଳକା ମସଲା ମସଲି ତେଲ ଓ ପରିବାପତ୍ର ପ୍ରଭୃତି ସଂଗ୍ରହ କରି ସଙ୍ଗରେ ଧରି ଉଭାନ ହୋଇଯାଏ । ପୁଣି ନୂଆ ପୂଜାରୀ ଆସେ । ପୁରୁଣା ପୂଜାରୀଟି ସେଠାରେ ଥିଲେ ମେସଚାଳକ ଓ ଚାକରଙ୍କୁ ଦେଖିବା ମାତ୍ରେ ଲୁଚିଯାଇ ଅନ୍ୟ କେଉଁ ଛାତ୍ରାବାସର ମେସ ପରିଚାଳକଙ୍କୁ ଅପେକ୍ଷା କରିଥାଏ ।

ସେ ମେସ ପରିଚାଳନାରେ ବିଭ୍ରାଟର ଅନ୍ୟ କାରଣ ଥିଲା, ପିଲାଙ୍କର ମେସ ଦେୟ ଦେବାରେ ଅନିୟମିତତା ଓ ଅପାରଗତା । ତା'ଦ୍ୱାରା ପଇସା ଅଭାବରୁ ଖାଦ୍ୟ ଦ୍ରବ୍ୟ କ୍ରୟବେଳେ ଉପଯୁକ୍ତ ଚାଉଳ, ପରିବା, ଡାଲି, ତେଲ ପ୍ରଭୃତି ସ୍ଥାନରେ ନିକୃଷ୍ଟ ଦ୍ରବ୍ୟ କ୍ରୟ ହୋଇ ଆସେ । ତେଣୁ ମାସର ପ୍ରଥମ ସପ୍ତାହ ପରେ ଖାଦ୍ୟର ଅବସ୍ଥା ନିମ୍ନରୁ ନିମ୍ନତର ଅବସ୍ଥାକୁ ଆସିଯାଏ । ମେସରେ ଜଳଖିଆର ବ୍ୟବସ୍ଥା ନ ଥିବାରୁ ହଷ୍ଟେଲ ନିକଟ ଲଣ୍ଡା ଦେଉଳ ପାଖରେ ତିଆରି ହେଉଥିବା ବରା, ପିଆଜି ପ୍ରଭୃତି କିଣି ଖାଇବାକୁ ପଡ଼େ । ପଇସାକୁ ବଡ଼ ବଡ଼ ବରା ଦୁଇଟା, ପିଆଜି ଦୁଇଟା, ଗୁଲୁଗୁଲା ଚାରିଟା ଓ ବାଇଗଣି ଚାରିଟା ମିଳେ । ଅଳ୍ପ ପଇସାରେ ପେଟପୂରେ କିନ୍ତୁ ତା'ର ଶସ୍ତାତେଲ ସମସ୍ତଙ୍କ ଦେହରେ ଯାଏନାହିଁ । ତାକୁ ଖାଇ ମୋ ପେଟ ଖରାପ ହେବାରେ ମୁଁ ରସିଦ ମିଆଁ ଟୋକାଇରେ ଘୋଡ଼ାଇ କରି ଆଣିଥିବା ବିସ୍କୁଟ, ନାନ, ଖଟେଇ, ପାଉଁରୁଟି ପ୍ରଭୃତି (ପାଖରେ ପଇସା ଥିଲେ) କିଣି ଖାଏ ।

ପିତାଙ୍କ ଆଦେଶରେ ମୋତେ ନବଭାରତ ପ୍ରେସକୁ ଯାଇ ମ୍ୟାନେଜର ଚିନ୍ତାମଣି ବାବୁଙ୍କ ଠାରୁ ପଇସା ଆଣିବାକୁ ପଡ଼େ । ପ୍ରେସର ସବୁବେଳେ ନିଅଣ୍ଟିଆ ବଜେଟ, ତେଣୁ ମୋତେ ଅନେକ ସମୟରେ ନିରାଶରେ ଫେରିବାକୁ ପଡ଼େ ।

ମୋର ସ୍ୱାସ୍ଥ୍ୟର ଅବସ୍ଥା ବେଶି ଖରାପ ଆଡ଼କୁ ଯିବାରୁ ଡାକ୍ତର ରାଜକିଶୋର ନନ୍ଦ ମୋର ଟନ୍‌ସିଲ ଅପରେସନ ପାଇଁ ସୁପାରିଶ କଲେ । ମୁଁ ମୋର ପିତାଙ୍କୁ ଜଣାଇବା ପରେ ସେ ମୋତେ ଲେଖିଲେ 'ଡାକ୍ତର ଯାହା କହିଛନ୍ତି ତାହା କର ।' ମୁଁ ଟନ୍‌ସିଲ ଅପରେସନ ପାଇଁ ମୋ ନବମ ଶ୍ରେଣୀ ସାଥୀଙ୍କ ସଙ୍ଗେ ଯାଇ କଟକ ମେଡ଼ିକାଲ ସ୍କୁଲ ହସ୍‌ପିଟାଲରେ ଆଡ଼ମିଶନ ନେଲି । ମୋର ତତ୍ତ୍ୱ ନେବାପାଇଁ ବେଳେବେଳେ ଜଣେ ଅଧେ ସାଥୀ ଆସିବା ଛଡ଼ା ନିଜ ଲୋକ ଆଉ କେହି ନ ଥିଲେ ।

ଅପରେସନ ଦିନ ଆମେ ଚାରୋଟି ପିଲାଙ୍କର ଜଣକ ପରେ ଜଣକର ଅପରେସନ ହେବାର ସ୍ଥିର ହେଲା । ସେତେବେଳେ ନିଶ୍ଚେତକ ବିଦ୍ୟା ଏତେ ଉନ୍ନତ ନ ଥିଲା କିମ୍ବା ନିଶ୍ଚେତକ ବିଦ୍ୟାରେ ତାଲିମପ୍ରାପ୍ତ ଡାକ୍ତର କେହି ନ ଥିଲେ । ଅପରେସନ କରିବା ପୂର୍ବରୁ ଜଣେ ଡ଼ିପ୍ଲୋମାଧାରୀ ଡାକ୍ତର କନା ମୁଖାଟିଏ ମୁହଁରେ ମାଡ଼ି ଧରି ତା' ଦେହରେ କ୍ଲୋରଫର୍ମ ବା ଇଥର ଢାଳି ରୋଗୀକୁ ଅଚେତ କରାନ୍ତି । ଅଚେତ ହେଲାବେଳେ ଏପରି ରୁନ୍ଧ ଲାଗେ ଯେ ମୁଁ ଥରେ ଦୁଇ ଥର ମୁଖାଟା ମୁହଁରୁ କାଢ଼ି ଫିଙ୍ଗି ଦେବାରେ ସେମାନେ ମୋ ହାତ ଦୁଇଟା ମାଡ଼ିବସି ମୋତେ ଅଚେତ କରାଇଥିଲେ । ସେପରି ନିଶା ଦେବା ବ୍ୟବସ୍ଥାରେ ନିଶାର ଆଧିକ୍ୟରୁ ଅପରେସନ ଟେବୁଲ ଉପରେ ରୋଗୀର ମୃତ୍ୟୁ ହେବାର ସମ୍ଭାବନା ଥାଏ । ତେଣୁ କଥନୀ ଥିଲା 'ଅପରେସନ ସକ୍‌ସେସଫୁଲ, ବଟ୍ ପେସେଣ୍ଟ ଏକ୍ସପାୟାର୍ଡ଼ ଅନ୍ ଦି ଟେବୁଲ ।'

ସେ'ଦିନ ଆମ ଚାରିଜଣଙ୍କ ଭିତରୁ ଦୁଇଜଣଙ୍କର ନିଶାଜନିତ ମୃତ୍ୟୁ ଘଟିଥିଲା । ସେ ଦୁଇଜଣଙ୍କ ମଧ୍ୟରେ ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ବୋଧରାମଙ୍କ ପୁତ୍ରରା ମଧ୍ୟ ଅନ୍ତର୍ଭୁକ୍ତ । ମୁଁ ଓ ମୋଠାରୁ ସାନ (କବି) ଜୟନ୍ତ ମହାପାତ୍ର ସେପରି ମୃତ୍ୟୁରୁ ଭାଗ୍ୟବଳରେ ରକ୍ଷା ପାଇଯାଇଥିଲୁ ।

ସନ୍ଧ୍ୟାରେ ଖଟ ଉପରେ ପଡ଼ିରହି ମୁଁ ପାଟିରୁ ମୁଣ୍ଡା ମୁଣ୍ଡା ରକ୍ତଛେଲା ଟାଣି ବିକଳରେ ବାହାର କଲାବେଳେ ଜଣେ ଜଣାଶୁଣା ନର୍ସିଂ ଛାତ୍ରୀ ବ୍ୟତୀତ ଆଉ ମୋ ପାଖରେ କେହି ନ ଥିଲେ । ସେହି ସ୍ୱାଧୀନତା ସଂଗ୍ରାମୀ ମଣିନାନୀ ମୋତେ ଆଉଁସି ଆଶ୍ୱାସନା ଦେଉଥିବା ଘଟଣା ଏବେବି ମୋର ମନେ ପଡୁଛି ।

ଟନ୍‌ସିଲ ଅପରେସନ ପରେ ଛାତ୍ରାବାସକୁ ଫେରିଲି । କିନ୍ତୁ ଶରୀରରେ ବିଶେଷ କିଛି ପରିବର୍ତ୍ତନ ଦେଖାଗଲା ନାହିଁ । ସେତେବେଳର ସିଭିଲ ସର୍ଜନ ମେଜର ଓ ନିଜ ମୋର ତଣ୍ଟି ପରୀକ୍ଷା କରି କହିଲେ - ଟନସିଲ ଟିକିଏ ରହିଯାଇଛି ଓ ତାକୁ ଉପରେ ଥିବା ଆଡ୍ରନଏଡ୍ ଗ୍ରନ୍ଥି ମଧ୍ୟ ଅପରେସନ ହେବା ପ୍ରୟୋଜନ । ତାହା ସେ ନିଜେ ଅପରେସନ କରିବେ ।

ମୁଁ ସେକଥା ପିତାଙ୍କୁ ଲେଖିବାରୁ ସେ ପୂର୍ବର ଟେବୁଲ ଉପରେ ମୃତ୍ୟୁ ଘଟିଥିବା ଘଟଣା ଜାଣିଥିଲେ ମଧ୍ୟ ସେ 'ଯାହା ହେବାର ଥିବ ହେବ' ବିଚାରି ପୂର୍ବପରି ସେହି ଏକା ଉତ୍ତର ଦେଲେ ଡାକ୍ତର ଯାହା କହୁଛନ୍ତି ତାହା କର । ମୁଁ ପୂର୍ବପରି ଯାଇ ଆଡ୍ରନଏଡ ପ୍ରଭୃତି ଅପରେସନ କରାଇ ଆସିଲି ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲା, ବହୁ ଅଞ୍ଚଳ ସେ ପ୍ରଦେଶ ବାହାରେ ଅନ୍ୟ ପ୍ରଦେଶ ମାନଙ୍କରେ ରହିଗଲା । ସେ ଅଞ୍ଚଳର ଓଡ଼ିଆ ସ୍କୁଲ ମାନଙ୍କରେ ଓଡ଼ିଆ ଭାଷା ସ୍ଥାନରେ ସେ ପ୍ରଦେଶର ଭାଷା ଶିକ୍ଷା ଦିଆଯିବାର ଉଦ୍ୟମ ହେଲା । ସେ ସମ୍ବାଦରେ ଛାତ୍ର ସମାଜ ଭିତରେ ଚହଳ ପଡ଼ିଯାଇଥିଲା । ତା'ର ପ୍ରତିବାଦ ପାଇଁ ଗୋଟିଏ ବିରାଟ ଶୋଭାଯାତ୍ରା ହୋଇ ସେଥିରେ ଆମେ ଜାତୀୟ କବି ବୀରକିଶୋର ଦାସଙ୍କ ଲିଖିତ - 'ଆମେ କୋଟି ଉତ୍କଳି ଗୋଟିଏ ସନ୍ତାନ ଶୁଣାଇବୁ ନର କର୍ଣ୍ଣକୁହରେ' କବିତାଟି ବୋଲି ବୋଲି ରେଭେନ୍‌ସା କଲେଜ ହଲରେ ବସୁଥିବା ନୂତନ ଓଡ଼ିଆ ବିଧାନସଭା ସମ୍ମୁଖକୁ ଯାଇ ମନ୍ତ୍ରୀମାନଙ୍କୁ ସ୍ମାରକପତ୍ର ଦେଇଦେଲୁ ।

ସେହି ସମୟରେ କଟକରେ ଥିବା ଦୁଇଟି ଯାକ ସିନେମା ହଲ, ହଲମୁକ୍ ଓ (ତମୁରେ ଥିବା) କ୍ୟାପିଟାଲ ସିନେମା ଦୁଇଟି ଯାକରେ 'ଜନକ ନନ୍ଦିନୀ' ନାମକ ବଙ୍ଗଳା ଚିତ୍ର ପ୍ରଦର୍ଶନ କରାଯାଉଥିଲା । ସେଥିରେ ଗୋଟିଏ ଦୃଶ୍ୟରେ ଓଡ଼ିଆଙ୍କୁ ତାଚ୍ଛଲ୍ୟ କରାଯାଇଥିଲା-'କଲିକତା ରାସ୍ତା ଉପରେ ଗୋଟିଏ ଥୁକୁଲଥାକୁଲ୍ ଓଡ଼ିଆ ପୂଜାରୀକୁ

ତା'ର ଘର ମାଲିକ ବାଡ଼ିଟାଏ ଧରି ଗୋଡ଼ାଉଛି ସେ ବଙ୍ଗଳା ମିଶା ଓଡ଼ିଆ ଭାଷାରେ କହୁଛି, 'ଆମି ଆଉ କରିବନି ମେର ଘର କଟକ ସହର, ଆମିକେ ରକ୍ଷାକର ।' ମାଲିକ ଗୋଡ଼ାଇବା ଅବସ୍ଥାରେ କହୁଛି, 'ଶାଲା ଉଡ଼େ ଯାବ କୋଥାଏ ।'

ଆମେ ଛାତ୍ରମାନେ ସିନେମା ହଲର ମାଲିକମାନଙ୍କୁ ସେପରି ଚିତ୍ର ପରିବେଷଣ ନ କରିବା ପାଇଁ ଅନୁରୋଧ କଲୁ । ତନ୍ମଧ୍ୟ ପୋଡ଼ି ଯିବା ଭୟରେ କ୍ୟାପିଟାଲ ତାହା ବନ୍ଦ କରିଦେଲେ । କିନ୍ତୁ ଏବର ତିନିକୋଣିଆ ବଗିଚା ପାଣିଟାଙ୍କି ସାମ୍ନାରେ ଥିବା ହଲମୁକ ସିନେମା ତାହା ବନ୍ଦ ନ କରି ଛାତ୍ର ଗଣ୍ଡଗୋଳ ହେଲେ ଛାତ୍ରମାନଙ୍କୁ ଘଉଡ଼େଇବା ପାଇଁ ଗୁଡ଼ିଏ ଗୁଣ୍ଡା ମୁତୟନ କଲେ ।

ସେତେବେଳେ କଟକର ଏକମାତ୍ର କଲେଜ ରେଭେନ୍‌ସା କଲେଜର କେତେକ ଛାତ୍ର ଓ ଆମେ କେତେକ ସ୍କୁଲ ଛାତ୍ର ଏକାଠି ହୋଇ ତା'ର ପ୍ରତିବାଦ ପାଇଁ ଏକ ଯୋଜନା କଲୁ । ଆମ୍ଭେମାନେ ସିନେମା ଟିକେଟ କରି ପକେଟରେ ଯଥେଷ୍ଟ ଇଟା ଗୋଡ଼ି ପୂରାଇ କିଛି ନ ଜାଣିଲା ପରି ସିନେମାହଲ୍‌ରେ ପଶି ସେ ଚିତ୍ର ଦେଖିବାକୁ ଲାଗିଲୁ । ସେ ଦୃଶ୍ୟ ଆସିଲା ବେଳକୁ ପରଦା ଉପରକୁ ଟେକାପିଙ୍ଗା ଚାଲିଲା, ଲୋକେ ଇତସ୍ତତଃ ହେଲା ବେଳକୁ ଆମ ଭିତରୁ ଜଣେ ଯାଇ ଇଲେକ୍‌ଟ୍ରିକ୍ ଲାଇନଟା କାଟିଦେଲା । ସ୍କ୍ରୀନ ଚିରିଲା, ମେସିନ ଭାଙ୍ଗିଲା, ଆମେ କ'ଣ ହେଲା କ'ଣହେଲା କହି ଅନ୍ୟମାନଙ୍କ ସଙ୍ଗେ ମିଶି ସୁନାପିଲା ପରି ବାହାରକୁ ବାହାରି ଆସିଲୁ । ଗୁଣ୍ଡାମାନେ ହଲ ଭିତରେ ପଶି ଟର୍ଚ୍ଚ ପକାଇ ଧର ଧର, ମାର ମାର ଶବ୍ଦ କରି ଜଣେ ଦୁଇଜଣ କିଛି ନ ଜାଣି ଥିବା ପିଲାଙ୍କୁ ଧରିପକାଇଲେ ଓ ମାରଧର କଲେ ।

ତା'ପରେ ଓଡ଼ିଆ ଭାଷା ଓ ସଂସ୍କୃତିର ପ୍ରଚାର ପାଇଁ ଛାତ୍ରମାନଙ୍କର ଗୋଟିଏ ସଂଗଠନ ଗଢ଼ାଗଲା । ସ୍କୁଲର ଲମ୍ବାଛୁଟି ମାନଙ୍କରେ ଗ୍ରାମକୁ ଓ ଅନ୍ୟ ସ୍ଥାନକୁ ଯାଇ ଲୋକମାନଙ୍କୁ ଓଡ଼ିଆ ଭାଷା ଓ ସଂସ୍କୃତି ବିଷୟରେ ସଚେତନ କରିବାର ସ୍ଥିର ହେଲା । ସେ ଅନୁଷ୍ଠାନଟିର ନାମ ରହିଲା 'ଉତ୍କଳ ଅବକାଶ ବାହିନୀ' । ରେଭେନ୍‌ସା କଲେଜ ଛାତ୍ର ବୃନ୍ଦାବନ ସାହୁ, ବଳରାମ ମହାନ୍ତି, ଫକୀର ମିଶ୍ର ଓ ସ୍କୁଲ ଛାତ୍ର ବଳରାମ ନନ୍ଦ, ଲେଖକ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ନିଶାମଣି ଖୁଣ୍ଟିଆ, ସତ୍ୟବାଦୀ ମିଶ୍ର, ଜଗତକୃଷ୍ଣ ଦାସ ଓ ଅନ୍ୟ ବହୁ ଜାତୀୟତାବାଦୀ ଛାତ୍ର ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେହି ଅନୁଷ୍ଠାନ ତରଫରୁ ବିଚ୍ଛିନ୍ନ ଅଞ୍ଚଳରେ ଶିକ୍ଷାପ୍ରସାର ଓ ଓଡ଼ିଆ ଜାଗରଣ ପାଇଁ କର୍ମୀ ପଠାଯିବାର ସ୍ଥିର ହୋଇଥିଲା । (ସେହି ବ୍ୟବସ୍ଥା ଅନୁସାରେ ପରବର୍ତ୍ତି କାଳରେ ଶ୍ରୀ ଜଗତକୃଷ୍ଣ ଦାସ ସିଂହଭୂମିରେ ଓଡ଼ିଆ ଭାଷାର ପ୍ରସାର ପାଇଁ ସେଠାକୁ ଯାଇ ଶିକ୍ଷକତା କରି ରୋଗା ହୋଇ ଫେରିଆସିଲେ ।) ଅନ୍ୟ ଯୋଜନା ଅନୁସାରେ ସେ

ଅନୁଷ୍ଠାନ ତରଫରୁ ପରେ 'ବାହିନୀ' ନାମକ ଓଡ଼ିଆ ଜାତୀୟ ପତ୍ରିକା ପ୍ରକାଶ କରାଯାଇଥିଲା ।

ସେହି ୧୯୩୮ରେ 'ଗାନ୍ଧୀ ସେବା ସଂଘ' ସଂସ୍ଥାର ଏକ ବୈଠକ ଗାନ୍ଧିବାଦୀ କୃପାସିନ୍ଧୁ ହୋତାଙ୍କ ବେରବୋଇ (ଡେଲାଙ୍ଗ) ଆଶ୍ରମରେ ବସିଲା । ସେତେବେଳେ ଓଡ଼ିଶାରେ କଂଗ୍ରେସର ପ୍ରଥମ ମନ୍ତ୍ରୀମଣ୍ଡଳ କାର୍ଯ୍ୟ କରୁଥିବାରୁ ସେଠାରେ ଏକ ବିରାଟ ଆୟୋଜନ କରାଯାଇଥିଲା । ମହାତ୍ମାଗାନ୍ଧିଙ୍କ ସମେତ ଭାରତର ଅଧିକାଂଶ ତୁଙ୍ଗ ନେତା ସେ ସମ୍ମିଳନୀରେ ଯୋଗ ଦେବାପାଇଁ ଆସିଥିଲେ ।

ମୁଁ ସେଠାକୁ ଯାଇ ମହାତ୍ମା ଗାନ୍ଧି, ସୀମାନ୍ତ ଗାନ୍ଧି ଅବଦୁଲ ଗଫର ଖାଁ, ଜହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଅବଦୁଲ କଲାମ ଆଜାଦ, କସ୍ତୁରବା, ସରୋଜିନୀ ନାଇଡୁ, ରାଜେନ୍ଦ୍ର ପ୍ରସାଦ ପ୍ରଭୃତି ସଭାରେ ବସି ଆଲୋଚନା କରୁଥିବାବେଳେ ସେମାନଙ୍କ ଦର୍ଶନ ପାଇବାର ସୁଯୋଗ ପାଇଥିଲି । ସେଠାକୁ ଆସିଥିବା ଅଗଣିତ ଲୋକ ମହାତ୍ମା ଗାନ୍ଧିଙ୍କ ଦର୍ଶନର ଅପେକ୍ଷାରେ ରହିଥିଲେ । ବିଲ ଭିତରେ ଏକ ଉଚ୍ଚ ମଞ୍ଚା ଉପରକୁ ଉଠି ଗାନ୍ଧି ହାତ ଯୋଡ଼ି ଠିଆହେଲେ । ସେଠାରେ ରୁଣ୍ଡ ହୋଇଥିବା ଲକ୍ଷ ଲକ୍ଷ ଲୋକ, ରଥଯାତ୍ରା ସମୟରେ ରଥ ଉପରର ଜଗନ୍ନାଥଙ୍କୁ ଦର୍ଶନ କରି ଯାତ୍ରୀମାନେ ବିହ୍ୱଳ ହେଲା ପରି ମଞ୍ଚ ଉପରର ଗାନ୍ଧିଙ୍କୁ ଦେଖି ବିହ୍ୱଳ ହୋଇପଡ଼ିଲେ । ସମଗ୍ର ଜନତାର ଚକ୍ଷୁ ଆନନ୍ଦାଶ୍ରୁରେ ପୂର୍ଣ୍ଣ ହୋଇଗଲା ।

ମହାତ୍ମା ଗାନ୍ଧିଙ୍କୁ ପଦଟିଏ ବି କହିବାକୁ ପଡ଼ିଲାନି, ସେ ସମସ୍ତଙ୍କୁ ଆଶୀର୍ବଚନ ଶୁଣାଇଲା ଭଳି ହାତଟେକି ଅଳ୍ପ ସମୟ ପରେ ମଞ୍ଚା ଉପରୁ ଓହ୍ଲାଇ ଚାଲିଗଲେ । ଲୋକେ ଗାନ୍ଧିଙ୍କୁ ଜଣେ ସାଧାରଣ ନେତା ଭାବରେ ନ ଦେଖି ଓଡ଼ିଆ ଜାତିର ନେତା ଜଗନ୍ନାଥଙ୍କୁ ଦର୍ଶନ କଲାଭଳି ଗାନ୍ଧିଙ୍କର ଦେବତ୍ୱକୁ ଦର୍ଶନ କରି ଆତ୍ମସନ୍ତୋଷ ଲାଭ କରିଥିଲେ ।

ସେହି ଅଧିବେଶନ ସମୟରେ ପୁରୀ ଜିଲ୍ଲା ସ୍କୁଲ ଛାତ୍ର ମୋର ବନ୍ଧୁ ଶ୍ରୀ ନରସିଂହ ତ୍ରିପାଠୀ ଏକ କାଣ୍ଡ ସୃଷ୍ଟି କରିଥିଲେ । ବେରବୋଇକୁ ଭାରତର ଏତେ ଗୁଡ଼ାଏ ନେତା ଆସିଥିବାରୁ ସେମାନଙ୍କ ମଧ୍ୟରେ ଜଣକୁ ହେଲେ ପୁରୀ ଆଣି ସ୍କୁଲ ପିଲାଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ, ହେଡ଼ମାଷ୍ଟର ହରିହର ମିଶ୍ରଙ୍କ ନିର୍ଦ୍ଦେଶରେ ନରସିଂହ ତାଙ୍କର କେତେଜଣ ସାଥୀଙ୍କ ସହିତ ଗାଡ଼ିଟିଏ ଧରି ବେରବୋଇ ଆସିଥିଲେ । ସେଠାରେ ପ୍ରାୟ ସବୁ ବଡ଼ ବଡ଼ ନେତାମାନେ ଭିନ୍ନ ଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେଉଥିବା ଜାଣି ପୁରୀ ଯିବା ପାଇଁ କାହାକୁ କହିବେ ନରସିଂହଙ୍କର ଭାବେଣି ପଡ଼ିଲା ।

ମହାତ୍ମା ଗାନ୍ଧିଙ୍କ ସହଧର୍ମିଣୀ ମା' କସ୍ତୁରବା ଜଣେ ହିନ୍ଦୁ ରମଣୀ ଏବଂ ତାଙ୍କର ସେଠାରେ ବିଶେଷ କିଛି କାର୍ଯ୍ୟ ନ ଥିଲା । ତାଙ୍କୁ ଜଗନ୍ନାଥ ଦର୍ଶନର ଲୋଭ ଦେଖାଇଲେ

ସେ ପୁରୀ ଯିବା ପାଇଁ ଇଚ୍ଛା ପ୍ରକାଶ କରିବାର ସମ୍ଭାବନା ଥିବା ପୁରୀରୁ ଆସିଥିବା ଛାତ୍ରମାନେ ଉପଲବ୍‌ଧି କଲେ ।

କସ୍ତୁରବାଙ୍କୁ ଅନୁରୋଧ କରିବାରେ ପୁରୀ ସେଠାରୁ ଅଳ୍ପ ସମୟର ବାଟ ବୋଲି ଶୁଣି ସେ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ । ଗାନ୍ଧି କାର୍ଯ୍ୟବ୍ୟସ୍ତ ଥିବାରୁ ତାଙ୍କ କାର୍ଯ୍ୟରେ ବାଧା ନ ଦେଇ ତାଙ୍କ ଅନୁମତି ନ ନେଇ କସ୍ତୁରବା ପୁରୀପିଲାଙ୍କ ସଙ୍ଗେ ଗାଡ଼ିରେ ପୁରୀ ଚାଲିଗଲେ ।

ପୁରୀ ଜିଲ୍ଲାସ୍କୁଲ ସଭାରେ କସ୍ତୁରବା ପିଲାଙ୍କୁ ପଦେ ଦୁଇପଦ ମାତ୍ର କହି ଜଗନ୍ନାଥ ଦର୍ଶନ କରିବାକୁ ଗଲେ । ଜଗନ୍ନାଥ ଦର୍ଶନ ପରେ ପରେ ଗାଡ଼ି ଆଣି ତାଙ୍କୁ ବେରବୋଇ ଆଶ୍ରମରେ ଛାଡ଼ିଦେଇଗଲା ।

୧୯୩୧ରେ ମହାତ୍ମାଗାନ୍ଧି ହରିଜନ ପଦଯାତ୍ରାରେ ଆସିଥିଲାବେଳେ ପୁରୀମନ୍ଦିରରେ ସ୍ଥାନୀୟ ହରିଜନଙ୍କ ଅବାଧ ପ୍ରବେଶକୁ ମନ୍ଦିର କର୍ତ୍ତୃପକ୍ଷ ଅନୁମତି ନ ଦେବାରୁ ସେ ତା'ର ପ୍ରତିବାଦ କରି ମନ୍ଦିରକୁ ଯାଇନଥିଲେ । କସ୍ତୁରବା ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଯାଇଥିବାର ଶୁଣି ସେ ଅଗ୍ନିଶର୍ମା ହୋଇ ତାଙ୍କୁ ଅପେକ୍ଷା କରୁଥିଲେ । କସ୍ତୁରବା ଫେରିବା ସଙ୍ଗେ ସଙ୍ଗେ ଗାନ୍ଧିଙ୍କଦ୍ୱାରା କେବଳ ଭର୍ତ୍ସିତ ହୋଇନଥିଲେ, ପରେ ମହାତ୍ମାଗାନ୍ଧି ତାହା ନିଜ ହରିଜନ ପତ୍ରିକାରେ ପ୍ରକାଶ କରି କସ୍ତୁରବାଙ୍କୁ ନାନା ଭାବରେ ଅପମାନିତ କରିଥିଲେ ।

ମହାତ୍ମାଗାନ୍ଧିଙ୍କର ବ୍ୟକ୍ତି ସ୍ୱାଧୀନତା ଓ ସ୍ତ୍ରୀ ସ୍ୱାଧୀନତା ଉପରେ ସେପରି ଆଘାତକୁ ଆମେ ଛାତ୍ରମାନେ ପସନ୍ଦ ନ କରି ସେ ସମ୍ବନ୍ଧରେ ନାନା ପ୍ରକାରର ଆଲୋଚନା କରିଥିଲୁ । କିନ୍ତୁ ଜଣେ ସର୍ବଂହରା ହିନ୍ଦୁ ସହଧର୍ମିଣୀ ଭାବରେ କସ୍ତୁରବା ଅମ୍ଳାନ ବଦନରେ ସେ ଅପମାନ ସବୁକୁ ସହ୍ୟ କରି ନେଇଥିଲେ ।

ଆମ ଭିତରେ ଦିନକୁ ଦିନ ରାଜନୈତିକ ଚେତନା ବୃଦ୍ଧି ପାଇବାକୁ ଲାଗିଲା । ସ୍କୁଲ ଛୁଟି ସମୟରେ କିମ୍ବା ସମୟ ମିଳିଲେ ଆମେ ଏକାଠି ହୋଇ ଦେଶ ବିଷୟରେ ଆଲୋଚନା କରିବା ପାଇଁ ସଭାର ଆୟୋଜନ କରୁ । ଆମ ସ୍କୁଲଟି ସରକାରୀ ସ୍କୁଲ ହୋଇଥିବାରୁ ତା'ର ପରିସର ଭିତରେ ସେପରି ସଭା କରିବା ସମ୍ଭବ ନ ଥିବାରୁ ବାହାରେ ସଭା କରିବାର ବ୍ୟବସ୍ଥା କରିଥିଲୁ । ସ୍କୁଲ ପାଖ ଭାଷାକୋଷ ଲେନ୍‌ରେ ଭାଷାକୋଷ ପ୍ରଣେତା ରାୟ ବାହାଦୂର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘର । ସେ ପିଲାଙ୍କୁ ବଡ଼ ଭଲ ପାଆନ୍ତି । ତାଙ୍କ ଗ୍ୟାରେଜ ଘରେ ଭାଷାକୋଷ କାଗଜଗୁଡ଼ାକ ଗୋଟାଏ କଣରେ ଗଦା ହୋଇ ରହିଥାଏ । ତାହା ଭିତରେ ଗୁଞ୍ଜିକରି ସରକାରୀ-ବାଜ୍ୟାପ୍ତି ବିପ୍ଳବୀ ପୁସ୍ତକ ସବୁ ରଖିବା ସୁବିଧା ହୁଏ । ଆମର ସଂଗଠନ ସେତେବେଳେ ଏକ କିଶୋର ସାହିତ୍ୟ

ସଂଘ ଗଢ଼ି କେତେକ ବୈପ୍ଳବିକ ପୁସ୍ତକ ପ୍ରକାଶ କରିବା ସ୍ଥିର କରିଥିଲୁ । 'ବିଶ୍ୱ ବିପ୍ଳବୀ' ନାମକ ପ୍ରଥମ ପୁସ୍ତକଟି ଆମ ସାଥୀ ବଳରାମ ମହାନ୍ତିଙ୍କ ନାମରେ ପ୍ରକାଶିତ ହୋଇଥିଲା ।

କଲେଜିଏଟ ସ୍କୁଲ ଓ ଛାତ୍ରାବାସର କଟକଣାସବୁ ବଡ଼ ଟାଣ ଥିଲା । ସ୍କୁଲ ଛୁଟି ପରେ ସ୍କୁଲଠାରୁ ଦୂରରେ ଥିବା ସନସାଇନ ପଡ଼ିଆକୁ ଯାଇ ବାଧତାମୂଳକ ଭାବେ ଫୁଟବଲ ପ୍ରଭୃତି ଖେଳିବାକୁ ପଡ଼େ । ସେଥିପାଇଁ ବଛା ହୋଇଥିବା ଛାତ୍ର ଲିଡରମାନେ ପିଲାଙ୍କର ଉପସ୍ଥାନ ପକାଇ ନ ଆସିଥିଲେ ଶିକ୍ଷକଙ୍କୁ ଜଣାନ୍ତି । ଆମେ ଛୁଟି ପରେ ଖେଳପଡ଼ିଆକୁ ନ ଯାଇ ସଭାସମିତି ଆଲୋଚନାରେ ବ୍ୟସ୍ତ ରହୁଥିଲୁ । ଆମ ସ୍କୁଲର ଶ୍ରୀ ଶୈଳେନ ରାୟ ଭଲ ଖେଳାଳୀ ଓ ସ୍କାଉଟ, ସେ ସ୍କାଉଟ ଭାବେ ୱାର୍ଲଡ଼ ଜାମ୍ବୋରୀରେ ଯୋଗଦେବା ପାଇଁ ସୁଇଜରଲ୍ୟାଣ୍ଡ ଯାଇ ଫେରିଥିଲେ । ସେ ଆମ କ୍ଲାସର ଖେଳ ଲିଡ଼ର ଥିଲେ । ସେ ଆମ ବିଷୟରେ ପ୍ରଧାନଶିକ୍ଷକଙ୍କ ନିକଟରେ ଅଭିଯୋଗ କରିଥିଲେ । ପ୍ରଧାନ ଶିକ୍ଷକଙ୍କ ତାଗିଦ୍ ଯୋଗୁଁ ମୁଁ ଖେଳ ପଡ଼ିଆକୁ ଆସିଲି । ସେଦିନ ଗୋଟିଏ ଫୁଟବଲ ମ୍ୟାଚ ଥାଏ । ଶୈଳେନ ବାବୁ ଜଣେ ଭଲ ଫୁଟବଲ ଖେଳାଳୀ । ସେ ଗୋଟିଏ ଦଳର ଦଳପତି ହୋଇ ଖେଳିବାର ଥାଏ । ମୁଁ ତାଙ୍କୁ କହିଲି ମୁଁ ତୁମ ଦଳରେ ଗୋଲକିପର ହୋଇ ଖେଳିବି; ସେ କୁନ୍ଥକୁନ୍ଥ ହେଲେ ଓ ନାହିଁକଲେ । ସେ ମୋତେ ଖେଳାଉ ନାହାନ୍ତି ବୋଲି ମୁଁ ପ୍ରଧାନ ଶିକ୍ଷକଙ୍କ ଆଗରେ ଅଭିଯୋଗ କରିବି ବୋଲି କହିବାରୁ ସେ ମୋ ପ୍ରସ୍ତାବରେ ରାଜି ହୋଇଗଲେ ।

ଖେଳ ଆରମ୍ଭରୁ ମୁଁ ଧରୁ ଧରୁ ଗୋଟାଏ ଗୋଲ, ଚାହୁଁ ଚାହୁଁ ଗୋଟାକ ପରେ ଗୋଟେ ଗୋଲ ହେବାକୁ ଲାଗିଲା । ହାଫ୍ ଟାଇମ ବେଳକୁ ସେ ମୋ ଗୋଡ଼ ହାତଧରି ଖେଳରୁ ମୋତେ ନିବର୍ତ୍ତାଇଲେ ଏବଂ ଆଉ କେବେ ପ୍ରଧାନ ଶିକ୍ଷକଙ୍କୁ ଆମ ନାମରେ ରିପୋର୍ଟ ନ କରିବାକୁ ପ୍ରତିଶ୍ରୁତି ଦେଲେ । ସେଦିନଠାରୁ ଆମକୁ ଖେଳରୁ ଛୁଟି ମିଳିଗଲା ଓ ଶେଷ ପର୍ଯ୍ୟନ୍ତ ଓଡ଼ିଶାର ଜଣେ ପ୍ରଧାନ କ୍ରୀଡ଼ାବିତ୍ ସେହି ଶୈଳେନ ବାବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ହୋଇ ରହିଥିଲେ ।

ଛାତ୍ରାବାସରେ ଦିନକୁ ଦିନ ଆମ ରାଜନୈତିକ କାର୍ଯ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଆମ ଛାତ୍ରାବାସକୁ ବିନା ଅନୁମତିରେ ବାହାର ଲୋକ ଆସିବା ମନା ଥିଲେ ମଧ ଜୟକୃଷ୍ଣ ମହାପାତ୍ରଙ୍କ ପରି ବିପ୍ଳବୀ କଲେଜ ଛାତ୍ର ଆସି ଆମ ସଙ୍ଗେ ଆଲୋଚନା କରୁଥିଲେ । ଜୟୀବାବୁ ବିଶେଷରେ ଘଣ୍ଟା ଘଣ୍ଟା ଧରି ଆମ ଉପର କ୍ଲାସ ପିଲା ପ୍ରଦୀପ୍ତ କିଶୋର ଦାସ (ପରେ ମନ୍ତ୍ରୀ)ଙ୍କ ସଙ୍ଗେ ଆଲୋଚନାରେ ବ୍ୟସ୍ତ ରହୁଥିଲେ । ପ୍ରଦୀପ୍ତ ମେଧାବୀ ଛାତ୍ର ଥିଲେ, ସେ ପଢ଼ା ସମୟରେ ନ ପଢ଼ି ସେପରି ଗପରେ ମାତୁଥିବାରୁ

ସୁପରିନ୍‌ଟେଣ୍ଡେଣ୍ଟ ବାହାର ପିଲା ନ ଆସିବା ପାଇଁ ନୋଟିସ୍ ଦେଲେ । ପାଠ ପଢ଼ାଇବା ପାଇଁ ବାହାରୁ ଟିଉସନ ମାଷ୍ଟ୍ର ଆସିବା ବାରଣ ନ ଥିଲା, ସେଥିପାଇଁ କେବଳ ଅଭିଭାବକଙ୍କ ଅନୁମତି ଲୋଡ଼ା ଥିଲା । ଜୟୀବାବୁ ମୋତେ ଅଙ୍କ ଟିଉସନ କରିବା ପାଇଁ ସେ ଛାତ୍ରାବାସକୁ ଆସିବେ ବୋଲି ମୁଁ ମୋର ଅଭିଭାବକ ଚିନ୍ତାମଣି ମିଶ୍ରଙ୍କଠାରୁ ଲେଖାଇ ଆଣି ଛାତ୍ରାବାସ ଅଫିସରେ ଦେବାରେ ଜୟୀ ଭାଇନା ଅବାଧରେ ଆମ ଛାତ୍ରାବାସକୁ ଆସି ପ୍ରଦୀପ୍ତ ବାବୁଙ୍କ ସଙ୍ଗେ ପୂର୍ବପରି ଆଲୋଚନା କରି ପାରିଲେ ।

ଅନ୍ୟ ବାହାର ଲୋକଙ୍କ ଭିତରେ ରାମ ନାରାୟଣ ବ୍ରହ୍ମଚାରୀ (ଜିନ୍ଦା) ନାମକ କୃଷ୍ଣକାୟ ଅକ୍ଷୋଜ ଜୀର୍ଣ୍ଣ ଶରୀର ଓ ଅଳ୍ପ ଶ୍ମଶ୍ରୁ (ଛେଳି ଦାଢ଼ି) ଧାରୀ, ଖଦଡ଼ ପରିହିତ ଜଣେ ଯୁବକ ଥିଲେ ଅନ୍ୟତମ । ସେ ଯୋବ୍ରା ଠାକୁର ଘରର ଏକ ଖୋଲା ଘରେ ରହୁଥିଲେ । ସେ ଘରେ ଝରକା ନ ଥିଲା । ସାମନା ଖୀଲଣରୁ ଦ୍ୱାର ଭାବରେ ଖଣ୍ଡେ ଅଖା ଝୁଲୁଥିଲା । ସେ ସନ୍ନ୍ୟାସୀ ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ ଛାତ୍ରାବାସମାନଙ୍କୁ ଯାଇ ଛାତ୍ରମାନଙ୍କୁ ନାନା ଭାବରେ ସାହାଯ୍ୟ କରୁଥିଲେ ।

ଆମ ଛାତ୍ରାବାସରେ ମୋର ସହପାଠୀ ଚିନ୍ତାମଣି ପାଣିଗ୍ରାହୀ (ପୂର୍ବତନ ମଣିପୁର ରାଜ୍ୟପାଳ) ଟାଇଫଏଡ଼ ଜ୍ୱରରେ ପଡ଼ି ସିକ୍ ରୁମରେ ଏକାକୀ ଥିବା ସମୟରେ ରାମନାରାୟଣ ବାବୁ ଦିନରାତି ତାଙ୍କ ପାଖରେ ରହି ଅତନ୍ଦ୍ରିତ ସେବା କରିଥିଲେ । ସେ ବରାବର ଆମ ନିକଟକୁ ଆସି ଅତି ସରଳ ବ୍ୟବହାର ଦେଖାଇ ଆମକୁ ଆଧ୍ୟାତ୍ମିକ ଭାବଧାରାରେ ଅନୁପ୍ରାଣିତ କରୁଥିଲେ । ସେ ମେଦିନୀପୁର ନିବାସୀ ଥିଲେ । ଲବଣ ସତ୍ୟାଗ୍ରହ ପରେ କାରାଗାରରୁ ଫେରି ସନ୍ନ୍ୟାସ ବ୍ରତ ନେଇଥିଲେ ।

ସେ ଆମକୁ ନିଜ ବିଷୟରେ ବେଶି କିଛି କହୁ ନ ଥିଲେ ମଧ୍ୟ ସେ ଜଣେ ପୂର୍ବତନ ବିପ୍ଳବୀ ଥାଇ ଆତ୍ମଗୋପନ ପାଇଁ ଲୁଣ ଆନ୍ଦୋଳନରେ ଯୋଗ ଦେଇଥିବାର ଆମେ ସନ୍ଦେହ କରୁଥିଲୁ । ସେ କାରାଗାରରୁ ଫେରି ଲାଲ ବିହାରୀ ପଟ୍ଟନାୟକଙ୍କ ଗାନ୍ଧି ଆଶ୍ରମରେ କିଛିଦିନ ରହିବା ପରେ ଯୋବ୍ରାରେ ଆସି ରହୁଥିଲେ । ଆମର ମନ ଖରାପ ହେଲେ ବା ଆମେ କୌଣସି ଅସୁବିଧାର ସମ୍ମୁଖୀନ ହେଲେ ତାଙ୍କ ନିକଟକୁ ଚାଲି ଯାଉଥିଲୁ । ତାଙ୍କ ଖୋଲା ଘରର ପଖାଳ ହାଣ୍ଡିରୁ ପଖାଳ ଖାଇ ଫେରୁଥିଲୁ । ସେ ନିଜେ ଟିଉସନ କରି ସେଥିରେ ନିଜର ଭରଣ ପୋଷଣ କରିବା ସଙ୍ଗେ ସଙ୍ଗେ ସେ ଅର୍ଥରେ ଗରିବ ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କଠାରୁ ଆମେ କେତେଜଣ ଯୋଗାସନ ପ୍ରଭୃତି ଶିଖିବାକୁ ଚେଷ୍ଟା କରିଥିଲୁ । ପରେ ସେ ନିଜ ରୋଜଗାରରୁ ଓ ଛାତ୍ରମାନଙ୍କ ଦାନରୁ ଯୋବ୍ରାରେ ଆଶ୍ରମଟିଏ ନିର୍ମାଣ କରି ସେଥିରେ ଗରିବ ଛାତ୍ରମାନଙ୍କୁ ରଖି ଓ ନାନା ଭାବରେ ସାହାଯ୍ୟ କରି ବିଭିନ୍ନ ଅନୁଷ୍ଠାନରେ ପାଠ ପଢ଼ାଇବାର ବ୍ୟବସ୍ଥା କରିଥିଲେ ।

ପାଠ ଅପେକ୍ଷା ଶାଠରେ ବ୍ୟସ୍ତ ରହି ଆମେ ପାଠରେ ଟିକିଏ ପଛେଇଗଲେ, ପରୀକ୍ଷା ସମୟରେ ଅକ୍ଲାନ୍ତ ପରିଶ୍ରମ କରି ପରୀକ୍ଷାରେ ଉଚ୍ଚ ସ୍ଥାନ ଅଧିକାର କରିବାକୁ ଚେଷ୍ଟା କରୁଥିଲୁ । ପାଠରେ ତଳକୁ ପଡ଼ିଗଲେ ସହପାଠୀ ଓ ଅନ୍ୟମାନଙ୍କ ଚକ୍ଷୁରେ ଆମେ ତଳକୁ ପଡ଼ିଯିବାର ଭୟରେ ଆମେ ସେପରି କରୁଥିଲୁ ।

ଥରେ ମୋର ପିତା ମୋର ପରୀକ୍ଷା ସମୟରେ ଦିଲ୍ଲୀରୁ ଗୁଡ଼ିଏ କାର୍ଯ୍ୟର ବରାଦ ଦେଇ ମୋତେ ଖଣ୍ଡିଏ ଚିଠି ଲେଖିଥିଲେ । ମୁଁ ପରୀକ୍ଷା ପାଇଁ ବ୍ୟସ୍ତଥିବାରୁ ବାହାରକୁ ଯାଇ ସମୟ ନଷ୍ଟ କରି ସେ ସବୁ କରିବା ସମ୍ଭବ ନୁହେଁ ବୋଲି ତାଙ୍କ ଚିଠିର ଉତ୍ତର ଦେଇଥିଲି । ସେ ମୋ ଚିଠି ପାଇ ଲେଖିଥିଲେ-

ଜଗନ୍ନାଥେ ଭଲ କରନ୍ତୁ ।

ଦିଲ୍ଲୀ
୨୭.୧୧.୧୯୩୮

ବାପା ବିକ୍ରମ,

ପରୀକ୍ଷା କେବେ ହେବ ଲେଖିବୁ । ପରୀକ୍ଷାରେ କିପରି କଲୁ ବୋଲି ତୋର ଧାରଣା ! କିନ୍ତୁ ହେଲା ନ ହେଲାରେ ବେଶି ଚିନ୍ତିତ ହେବୁ ନାହିଁ । ମନୁଷ୍ୟ କର୍ମ କରିବ, ମାତ୍ର କର୍ମର ଫଳ ମନୁଷ୍ୟ ହାତେ ନାଇଁ, ଏଇ ଭାବରେ ସବୁ କାର୍ଯ୍ୟରେ ଲାଗିବାହିଁ ମନୁଷ୍ୟତା । ତା' ନ ହେଲେ ଚିତ୍ତ ଚଞ୍ଚଳ ହୋଇ ମନୁଷ୍ୟତା ଭ୍ରଷ୍ଟ ହୁଏ । ପୂର୍ବେ ଯୋଗୀମାନେ ସର୍ବଦା ଏଇ ସାଧନା କରୁଥିଲେ । ପ୍ରତ୍ୟେକ ମନୁଷ୍ୟ ସଂସାର ଜଞ୍ଜାଳ ଭିତରେ ସର୍ବଦା କର୍ମତତ୍ପର ହୋଇ ଏହିପରି ଯୋଗୀ ହେବା ଉଚିତ । ଦେହ ପା ଜଗି ଚଳୁଥିବୁ ।

ଶୁଭକାଂକ୍ଷୀ
ନୀଳକଣ୍ଠ ଦାସ

ସେ କୌଣସି ପିତାମାତା ବା ଅଭିଭାବକଙ୍କ ଉପଦେଶ ଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ଧରଣର । ସାଧାରଣତଃ ପିତାମାତା ପିଲାଙ୍କ ପାଠକୁ ଜଗିଜଗି ନ ପଢ଼ିଲେ ମାଡ଼ଗାଳିଦେଇ ବିବ୍ରତ କରିପକାନ୍ତି । କିନ୍ତୁ ଏ ଚିଠିଟି ଜଣେ ଗୁରୁକୁଳର ଗୁରୁଙ୍କର ତାଙ୍କର ଶିଷ୍ୟକୁ ଉପଦେଶ ଦେଲାଭଳି ଥିଲା ।

. ତା'ପରେ ପରୀକ୍ଷା ଉପରେ ବିଶେଷ ଗୁରୁତ୍ୱ ଦେବା ପ୍ରୟୋଜନ ବୋଲି ମୁଁ ମନେକଲି ନାହିଁ । ଜ୍ଞାନ ଅର୍ଜନ ପାଇଁ ଅନ୍ୟ ପୁସ୍ତକ ସବୁ ପାଠ କରିବା ଓ ଆଲୋଚନା କରିବାକୁ ଶ୍ରେୟ ମନେ କଲି । ଦିନକୁ ଦିନ ଆମର ସାମାଜିକ ସେବା ଓ ରାଜନୈତିକ କାର୍ଯ୍ୟ ବଢ଼ିବାକୁ ଲାଗିଲା । ବଢ଼ି, ମରୁଡ଼ି, ଘରପୋଡ଼ି, ଦୁସ୍ଥ ରୋଗୀ ସେବା ସହିତ ରାଜନୀତି ଆଲୋଚନା ବଢ଼ି ଚାଲିଲା ।



# ଛାତ୍ର ଅଶାନ୍ତି

ମୁଁ ଅଙ୍କକୁ ଆଡ଼ିସନାଲ ବିଷୟ ଭାବେ ନେଇଥିଲି । ଅଙ୍କ ଗୋଟିଏ କଷ୍ଟ ବିଷୟ, ତା' ଅଧିକା ସମୟ ଦରକାର କରେ । ଆମେ ଅଙ୍କ ଛାଡ଼ି ଅନ୍ୟ ଏକ ସହଜ ବିଷୟ ନେବାକୁ ଚିନ୍ତା କରୁଥିଲୁ । ସେହି ସମୟରେ ଶ୍ରୀ ଗୋପାଳ ଚନ୍ଦ୍ର କାନୁନ୍‌ଗୋ ଆମ ସ୍କୁଲରେ ଡ୍ରଇଁ ଶିକ୍ଷକ ଭାବେ ଯୋଗଦେଲେ । ସେ ଜଣେ ସୁନାମଧନ୍ୟ ଚିତ୍ରକର ଓ ସ୍ୱାଧୀନତାବାଦୀ ବ୍ୟକ୍ତି । ସେ ସଂଗ୍ରାମୀ ଛାତ୍ରଙ୍କ ସଙ୍ଗେ ରାଜନୀତି ଆଲୋଚନା କରିବାକୁ ସୁଖ ପାଉଥିଲେ । ଆମେ ମଝିରେ ମଝିରେ ତାଙ୍କ ନିକଟକୁ ଯାଇ ଆଲୋଚନା କରୁ କରୁ ତାଙ୍କ ସଙ୍ଗେ ବେଶି ସମୟ କଟାଇବାକୁ ଅଙ୍କ ଛାଡ଼ି ଡ୍ରଇଁ ଆଡ଼ିସନାଲ ନେବାପାଇଁ ସ୍ଥିର କଲୁ । ଆମକୁ ଡ୍ରଇଁ ଜଣା ନ ଥିଲେ ମଧ ଡ୍ରଇଁରେ ପାଶ ନମ୍ବର ରଖିବା କଷ୍ଟକର ହେବନାହିଁ ବୋଲି ଗୋପାଳବାବୁ କହିବାରୁ, ମୁଁ, ସତ୍ୟବାଦୀ, ଚିନ୍ତାମଣି ପ୍ରଭୃତି କେତେକ ସଙ୍ଗୀ ଡ୍ରଇଁ ନେଲୁ ।

ଦିନକୁ ଦିନ ଛାତ୍ର ଆନ୍ଦୋଳନ ବିଧିବଦ୍ଧ ଭାବରେ ମୁଣ୍ଡ ଟେକିବାକୁ ଲାଗିଲା । ୧୯୩୮ ବେଳକୁ ପୃଥିବୀ ରାଜନୀତି ଓ ଭାରତ ରାଜନୀତିରେ ବିରାଟ ଆଲୋଡନ ଦେଖାଗଲା । ଜର୍ମାନ ଡ଼ିକ୍ଟେଟର ହିଟଲରଙ୍କ ନାଜିବାଦ ପୃଥିବୀକୁ ଥରହର କରିବାକୁ ଲାଗିଲା । କେନ୍ଦ୍ର ଆସେମ୍ବ୍ଲିର ପୂର୍ବତନ ବାଚସ୍ପତି ଭିଠଲଭାଇ ପଟେଲ ଓ ନେତାଜୀ ସୁଭାଷଚନ୍ଦ୍ର ବୋଷ ୟୁରୋପର ଭିଏନା ସହରରେ ରହି ଚିକିତ୍ସିତ ହେଉଥିଲେ । ସେମାନେ, ପୃଥିବୀ ଯୁଦ୍ଧ ମାଡ଼ିଆସୁଥିବା ଉପଲବ୍ଧି କରି ସେଥିରୁ ଫାଇଦା ଉଠାଇ ଭାରତକୁ କିପରି ସ୍ୱାଧୀନ କରି ହେବ ସେ ଚିନ୍ତା କରୁଥିଲେ । ଭିଠଲ ଭାଇଙ୍କର ସେଠାରେ ତିରୋଧାନ ହୋଇଯିବା ପରେ ସୁଭାଷ ଜାତୀୟ ନେତାଙ୍କ ଆହ୍ୱାନରେ ଭାରତକୁ ଫେରିଆସି ଜାତୀୟ କଂଗ୍ରେସର (ସଭାପତି) ରାଷ୍ଟ୍ରପତି ହେଲେ । କିନ୍ତୁ ତାଙ୍କ ବୈପ୍ଳବିକ ମତ ଓ ଯୋଜନାକୁ କଂଗ୍ରେସର ତୁଙ୍ଗ ନେତାମାନେ ବିରୋଧ କଲେ । ତା' ସଙ୍ଗେ ସଙ୍ଗେ ଜିନ୍ନାଙ୍କ ଦୁଇଜାତି ଖସଡା ଓ ପାକିସ୍ଥାନ ଗଠନର ଆନ୍ଦୋଳନ ଦିନକୁଦିନ ତୀବ୍ରତର ହେବାକୁ ଲାଗିଲା । କମ୍ୟୁନିଷ୍ଟ ଭାବଧାରା ଅଶାନ୍ତ ଛାତ୍ର ମନକୁ ଆକୃଷ୍ଟ କରିବାକୁ ଲାଗିଲା । ପୃଥିବୀ ଛାତ୍ରସଂଘ ଗଢ଼ାଯାଇ ତା'ର ପ୍ରଭାବ ନିଖିଳ ଭାରତ ଛାତ୍ରସଂଘ ଓ ପ୍ରାଦେଶିକ ଛାତ୍ରସଂଘମାନଙ୍କ ଉପରେ ପଡ଼ିଲା ।

୧୯୩୯ ପ୍ରାରମ୍ଭରେ ମୁଁ ଏକାଦଶ ଶ୍ରେଣୀକୁ ଉଠୁ ଉଠୁ ଓଡ଼ିଶାର ସର୍ବକ୍ଷମତା ଅଧିକାରୀ ଗୋରା ଲାଟଙ୍କ ଅଧିନରେ ଖେଳ କଣ୍ଢେଇ କଂଗ୍ରେସ ସରକାରଙ୍କ ନିଷ୍କ୍ରିୟତା

ଫଳରେ କାଳପିତା ସରକାରୀ ସଂସ୍ଥା ଛାତ୍ର ଜାଗରଣକୁ ଦାବିଦେବା ପାଇଁ ପଦକ୍ଷେପ ଗ୍ରହଣ କଲେ । ସେଥିରେ ସଂଗ୍ରାମୀ ଯୁବ ଛାତ୍ରମାନେ ବିଦ୍ରୋହ ରାସ୍ତା ଧରିବାକୁ ସ୍ଥିର କଲେ । କଂଗ୍ରେସର ଅସହଯୋଗ ଆନ୍ଦୋଳନରେ ସ୍କୁଲ କଲେଜ ଛାଡ଼ି ଯେଉଁମାନେ ବାନରସେନା ଭାବରେ କାରାବରଣ କରିଥିଲେ, କଂଗ୍ରେସ ପ୍ରାଦେଶିକ ସରକାରରେ ମନ୍ତ୍ରିତ୍ୱ ଗ୍ରହଣ କରିବାରେ ସେମାନେ ସେହି ମନ୍ତ୍ରୀ ମଣ୍ଡଳଠାରୁ ବହୁତ କିଛି ଆଶା କରୁଥିଲେ । ସେମାନେ ଛାତ୍ରମାନଙ୍କୁ ଜାତୀୟତା ଭାବରେ ଉଦ୍‌ବୁଦ୍ଧ କରି ନିର୍ଭୀକ ଭାବରେ ଗଢ଼ିବାର ବ୍ୟବସ୍ଥା କରିବେ ବୋଲି ଛାତ୍ରମାନେ ଭାବିଥିଲେ । କିନ୍ତୁ ଫଳ ଠିକ୍ ଓଲଟା ହେଲା । ସେମାନେ ବ୍ରିଟିଶ ସରକାରଙ୍କ ପୁରୁଣାକାଳିଆ ଛାତ୍ର ଦମନ ନୀତିକୁ ସମର୍ଥନ କଲେ । ଛାତ୍ରମାନଙ୍କ ଉପରେ କଟକଣା ଜାରି କରିବା ପାଇଁ ଓଡ଼ିଶା କଂଗ୍ରେସ ସରକାର ଗୋଟିଏ ବିଜ୍ଞପ୍ତି ପ୍ରକାଶ କଲେ । ୧୨.୬.୧୯୩୮ରେ 'ଅମୃତ ବଜାର' ପ୍ରଭୃତିରେ ପ୍ରକାଶିତ ବିଜ୍ଞପ୍ତି ଛାତ୍ରମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା ।

ସେ ବିଜ୍ଞପ୍ତିରେ ଥିଲା - ଛାତ୍ରମାନେ କେଉଁ ଖବର କାଗଜ ପଢ଼ିପାରିବେ ତା'ର ଗୋଟିଏ ତାଲିକା ଶିକ୍ଷା ବିଭାଗର ଡ଼ାଇରେକ୍ଟର ସମସ୍ତ ଶିକ୍ଷା ଅନୁଷ୍ଠାନମାନଙ୍କୁ ଜଣାଇଦେବେ । ଛାତ୍ରମାନେ କେବଳ ସରକାରଙ୍କ ଅନୁମତି- ପ୍ରାପ୍ତ ଖବରକାଗଜ ପଢ଼ିବାର ସୁଯୋଗ ପାଇବେ । ଅନ୍ୟ ଖବର କାଗଜ ପଢ଼ିଲେ ଦଣ୍ଡିତ ହେବେ ।

ଛାତ୍ରାବାସର ଛାତ୍ରମାନେ କର୍ତ୍ତୃପକ୍ଷଙ୍କ ବିନା ଅନୁମତିରେ କୌଣସି ରାଜନୀତିକ ସଭାସମିତିରେ ଯୋଗଦେଇ ପାରିବେ ନାହିଁ । ଅନୁମତି ପାଇଲେ ମଧ୍ୟ ଛାତ୍ରାବାସ ବା ବାହାର କୌଣସି ଛାତ୍ର ସେ ସଭାମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରିବେ ନାହିଁ କିମ୍ବା ଅହେତୁକ ପ୍ରାଧାନ୍ୟ ଦେଖାଇବେ ନାହିଁ । (ପଚିଶ ବର୍ଷ ତଳେ ମଧ୍ୟ ମଧୁସୂଦନ ଓ ଗୋପବନ୍ଧୁ ପ୍ରଭୃତି ଉତ୍କଳ ସମ୍ମିଳନୀ ସଭା ପ୍ରଭୃତିରେ ଛାତ୍ରମାନଙ୍କୁ ଭାଗନେଇ ବକ୍ତୃତା ଦେବାକୁ ଉତ୍ସାହିତ କରୁଥିଲେ ।)

ଶାନ୍ତି ଭଙ୍ଗର ଆଶଙ୍କା ଥିଲେ କିମ୍ବା ସାଂପ୍ରଦାୟିକ ଭାବ ଉଦ୍ରେକ ହେବାର ସମ୍ଭାବନା ଥିଲେ କଲେଜର ଅଧକ୍ଷ ମଧ୍ୟ ସମସ୍ତ ଛାତ୍ରଙ୍କୁ ସେପରି ସଭାରେ ଯୋଗ ଦେବାରୁ ନିବୃତ କରିବା ପାଇଁ ପଦକ୍ଷେପ ନେଇ ପାରିବେ । କୌଣସି ରାଜନୈତିକ ସମାରୋହରେ ସାମାଜିକ କାର୍ଯ୍ୟ ପାଇଁ ସ୍ୱେଚ୍ଛାସେବକ କାର୍ଯ୍ୟ କରିବାକୁ ବଛା ହେବା ଅର୍ଥ, ତା'ର କୌଣସି କାର୍ଯ୍ୟକ୍ରମରେ ଯୋଗଦେବା ବୁଝାଯିବ ନାହିଁ । (ଅର୍ଥାତ ମନ୍ତ୍ରୀଙ୍କ ସଭାସମିତି ଓ ସମ୍ବର୍ଦ୍ଧନା ସଭାରେ ଛାତ୍ରମାନଙ୍କୁ ବ୍ୟବହାର କରାଯାଇପାରିବ ।) କୌଣସି ରାଜନୈତିକ ଉଦ୍ଦେଶ୍ୟ ପାଇଁ ଛାତ୍ର ସ୍ୱେଚ୍ଛାସେବକମାନଙ୍କୁ ବ୍ୟବହାର କରାଯାଇ ପାରିବ ନାହିଁ ।

ବାହାରର କୌଣସି କ୍ଲବରେ ଯୋଗ ଦେବା ପାଇଁ ଛାତ୍ରକୁ ଅଧକ୍ଷଙ୍କ ଅନୁମତି ନେବାକୁ ପଡ଼ିବ । ଏ ନିୟମ ଲଂଘନ କଲେ ତାହା ଗୁରୁତର ଅପରାଧ ରୂପେ ଗଣିତ ହେବ । ବିଧିବଦ୍ଧ ଲିଖିତ ଦରଖାସ୍ତ ଦେଇ ଅଧକ୍ଷଙ୍କଠାରୁ ଛାତ୍ରର ପିତା ବା ଅଭିଭାବକ ଅନୁମତି ନେଇପାରିବେ । (ସେତେବେଳେ କ୍ଲବ ବୋଇଲେ ଛାତ୍ରମାନେ ବ୍ୟାୟାମ କ୍ଲବମାନଙ୍କୁ ବୁଝୁଥିଲେ । ପିଲାମାନେ ଉତ୍କଳଭୀମ ପଦ୍ମଚରଣ ରାଏଙ୍କ କ୍ଲବକୁ ଯାଇ ସକାଳେ ବା ସନ୍ଧ୍ୟାରେ ବ୍ୟାୟାମ ଶିକ୍ଷା କରୁଥିଲେ । ସେଥିପାଇଁ ଅନୁମତି ଦରକାର ହେଲା ।)

କୌଣସି କ୍ଲବ ବା ସମିତି ଅଧକ୍ଷଙ୍କ ବିନା ଅନୁମତିରେ କଲେଜ ଭିତରେ ଆରମ୍ଭ କରାଯାଇ ପାରିବ ନାହିଁ । ଚାଲୁ ରାଜନୈତିକ ସମସ୍ୟା ସମ୍ବନ୍ଧରେ ଶିକ୍ଷଣୀୟ ଆଲୋଚନା କଲେଜ କର୍ତ୍ତୃପକ୍ଷଙ୍କ ଉପସ୍ଥିତିରେ ହୋଇପାରିବ । କଲେଜରେ ଛାତ୍ର ନଥିବା କୌଣସି ବ୍ୟକ୍ତି ସେପରି ଅନୁଷ୍ଠାନର ସଦସ୍ୟ ହୋଇ ପାରିବେ ନାହିଁ କିମ୍ବା ସେ ସମିତିର କୌଣସି ସଭାରେ ଭାଷଣ ଦେଇ ପାରିବେ ନାହିଁ । ସେପରି ବ୍ୟକ୍ତି ଅଧକ୍ଷଙ୍କ କ୍ଷମତାପ୍ରାପ୍ତ ଅଧ୍ୟାପକଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଆସିଲେ ସେଥିରେ ବକ୍ତୃତା ଦାନ କରିପାରିବେ । [ସେତେବେଳେ ଓଡ଼ିଶାରେ ଗୋଟିଏ ମାତ୍ର ଡ଼ିଗ୍ରୀ କଲେଜ (ରାଭେନ୍ସା କଲେଜ) ରହିଥିଲା । ସବୁ କଟକଣା ପ୍ରାୟ ସେହି କଲେଜ ପିଲାଙ୍କୁ ଜବତ କରିବା ପାଇଁ କରାଯାଇଥିଲା ।]

ଦଣ୍ଡବିଧାନ: ରାଜନୈତିକ ସଭାରେ ଛାତ୍ରମାନେ ଯୋଗଦେବା କାହିଁକି ଉଚିତ ନୁହେଁ ତାହା ସ୍କୁଲର ପ୍ରଧାନ ଶିକ୍ଷକମାନେ ଛାତ୍ରମାନଙ୍କୁ ବୁଝାଇଦେବେ । ଦଶମ ଶ୍ରେଣୀ ତଳର ପିଲାମାନେ ସେପରି ସଭାରେ ଆଦୌ ଯୋଗ ଦେଇ ପାରିବେ ନାହିଁ । ଉଚ୍ଚ ସରକାରୀ କର୍ମକର୍ତ୍ତା (ମନ୍ତ୍ରୀ, ଡ଼ିରେକ୍ଟର)ଙ୍କ ଆବାହନ ଶୋଭାଯାତ୍ରାରେ ଯୋଗ ଦେବାକୁ ବାରଣ କରିବା ଏ ନିୟମର ଉଦ୍ଦେଶ୍ୟ ନୁହେଁ । ସ୍କୁଲ ସମୟ ବାହାରେ ଛାତ୍ରମାନେ ଜଣେ ଉଚ୍ଚ ରାଜନୀତିଜ୍ଞଙ୍କ ଆବାହନ ଶୋଭାଯାତ୍ରାରେ ଶୃଙ୍ଖଳିତ ଓ ସାଧାରଣ ଭାବରେ ଯଦି ଯୋଗ ଦିଅନ୍ତି, ତେବେ ତାଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟବିଧାନ ନ କରାଯାଇପାରେ ।

ଛାତ୍ରାବାସର ବର୍ତ୍ତମାନ ଚାଲୁଥିବା କୌଣସି ନିୟମକୁ ବଦଳାଇବା ପାଇଁ କମିଟି ସୁପାରିଶ କରୁନାହାନ୍ତି । ଶାସ୍ତି ସ୍ୱରୂପ ଅଧିକା ଡ୍ରିଲ ଓ ଅଟକକୁ ଗ୍ରହଣ କରିବା କମିଟି ବିଚାରକୁ ନେବା ଉଚିତ ମନେ କରୁନାହାନ୍ତି । ପ୍ରଧାନ ଶିକ୍ଷକ, କୌଣସି ଛାତ୍ରର ଅପରାଧର ଅନ୍ୟୁନ ଏକ ଘଣ୍ଟା ପରେ ସ୍ଥିର ଚିତ୍ତରେ ଯାଞ୍ଚ କରି ସାରି ଛାତ୍ରକୁ ଶାରୀରିକ ଦଣ୍ଡ ଦେବା ପାଇଁ କମିଟି ସୁପାରିଶ କରୁଛନ୍ତି । ଶାସ୍ତି ସ୍ୱରୂପ ଅଧଘଣ୍ଟାରୁ ଅଧିକ ଅଟକ ରଖିବା ଉଚିତ ନୁହେଁ ବୋଲି କମିଟି ମନେ କରନ୍ତି ।

* * * * *

ସେହି କମିଟିଟି, କଂଗ୍ରେସ ସରକାର ବ୍ରିଟିଶ ସରକାରଙ୍କ ହାତବାରେସୀ ରାୟ ସାହେବ, ରାୟ ବାହାଦୂର ପ୍ରଭୃତି ଉପାଧିଧାରୀ ଓ ଶିକ୍ଷା ବିଭାଗ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ନେଇ ଗଢ଼ାଇଥିଲେ ।

ସରକାରଙ୍କ ସେପରି ଆଦେଶନାମାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ପ୍ରତି ଛାତ୍ରମାନଙ୍କର ସଂପର୍କ ତିକ୍ତ ହୋଇ ଉଠୁଥିଲା । ଯେଉଁ ଛାତ୍ର ସମାଜ ଉପରେ ନିର୍ଭର କରି କଂଗ୍ରେସ ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ କରୁଥିଲା, ଯେଉଁମାନେ ଦେଶର ଭବିଷ୍ୟତ, ସେମାନଙ୍କ ଉପରେ ଏକ ସରକାରୀ ପ୍ରତିକ୍ରିୟାଶୀଳ କମିଟିର ସୁପାରିଶରେ ଛାତ୍ରମାନଙ୍କ ଉପରେ ଦମନ ଲୀଳା ଚଳାଇବା କଂଗ୍ରେସ ସରକାର ପକ୍ଷରେ କେତେଦୂର ସମିଚୀନ ତାହା ଆମ ଭିତରେ ଆଲୋଚନାର ପ୍ରଧାନ ବିଷୟ ହୋଇଥିଲା ।

ସେତେବେଳେ ଛାତ୍ରସଂଘ ଆନୁକୂଲ୍ୟରେ ବହୁ ସଭା ସମିତି ହେଲା । ଆମେ କଲେଜିଏଟ ସ୍କୁଲ ପିଲାମାନେ ସରକାରୀ କଟକଣା ନ ମାନି ସେପରି ସଭା ମାନଙ୍କରେ ଯୋଗ ଦେଲୁ । ୧୯୩୮ ଜୁଲାଇରେ ବଙ୍ଗ ରାଜବନ୍ଦୀମାନଙ୍କ ଅନସନକୁ ସମର୍ଥନ କରି ନେତାମାନଙ୍କ ଡାକରାରେ 'ରାଜବନ୍ଦୀ ଦିବସ' ପାଳନ କଲୁ । ୩୦.୭.୩୮ ଦିନ ଆମ ସ୍କୁଲ ପାଖ ସ୍ୱରାଜ ଆଶ୍ରମରୁ ଏକ ଶୋଭାଯାତ୍ରା ବାହାରି ସହର ପରିକ୍ରମା କରିବା ପରେ କଟକ ଟାଉନହଲରେ ଏକ ସାଧାରଣ ସଭା ହୋଇ ରାଜବନ୍ଦୀଙ୍କ ପ୍ରତି ହେଉଥିବା ଅମାନୁଷିକ ବ୍ୟବହାରର ତୀବ୍ର ପ୍ରତିବାଦ କରାଗଲା ।

ଭାରତର ପ୍ରଥମ ବିପ୍ଳବୀଣୀ ନାରୀ ନେତ୍ରୀ ଶ୍ରୀମତୀ ସରୋଜିନୀ ନାଇଡୁଙ୍କୁ ଛାତ୍ରସଂଘ ତରଫରୁ ନିମନ୍ତ୍ରଣ କରି ଆଣି ମ୍ୟୁନିସିପାଲିଟି ପଡ଼ିଆରେ ଏକ ବିରାଟ ସଭାର ଆୟୋଜନ କରାଯାଇଥିଲା । ସେଥିରେ ଛାତ୍ରସଂଘର ଜାତୀୟ ନୀତି ପ୍ରକାଶ କରାଯାଇ ଏକ ଅଭିନନ୍ଦନ ପତ୍ର ସରୋଜିନୀଙ୍କୁ ଅର୍ପଣ କରାଯାଇଥିଲା ।

ସେଥିରେ ଲେଖାଥିଲା-* * ହେ ମୁକ୍ତିପଥର ପୁରୋଧାୟି ! ଦଳିତ ଜାତିର ସନ୍ତାନ ରୂପେ ଏ ଛାତ୍ରସମାଜ ଶତ ବାଧା-ବନ୍ଧନ ଭିତରେ * * ରାଜ୍ୟବାସୀଙ୍କର ଆନ୍ଦୋଳନରେ ସହଯୋଗୀତା ଦେଇ ଆସିଛି । ଅଦୂର ଭବିଷ୍ୟତରେ ପ୍ରତ୍ୟକ୍ଷ ସମରର ଦୁନ୍ଦୁଭି ବାଜିଉଠିଲେ, ପୁନରାୟ ଯୁଦ୍ଧ କ୍ଷେତ୍ରରେ ଏହା ଛିଡ଼ା ହେବ । ଏଣୁ ସେହି ଭବିଷ୍ୟତ ସମର ଲାଗି, ଶିବିରରେ ଶିକ୍ଷା ପାଉଥିବା ସୈନିକ ଆମେ । ଆଜି ହେ ସେନାପତି ! ଶେଷଥର ପାଇଁ ଆପଣଙ୍କୁ ଅଭିବାଦନ ଜଣାଉଛୁ ।

କଟକ
୨୭.୦୧.୩୮

ଭାରତର ସ୍ୱାଧୀନତା ସଂଗ୍ରାମରେ
ଆପଣଙ୍କ ସହଯାତ୍ରୀ
ନିଖିଳ ଉତ୍କଳ ଛାତ୍ରସଂଘର ସଭ୍ୟବୃନ୍ଦ

ଆମ କଲେଜିଏଟ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଗୋପାଳ ସିହ୍ନାଙ୍କ ସ୍ଥାନରେ ଶ୍ରୀ ଫନୀନ୍ଦ୍ର ଭୂଷଣ ଦାସ ନିଯୁକ୍ତ ହୋଇଥିଲେ । ସେ ଜଣେ ଶୃଙ୍ଖଳାପ୍ରିୟ, ବିଦ୍ୱାନ ଓ

କଡ଼ା ମିଜାଜର ବ୍ୟକ୍ତି ଥିଲେ । ଶ୍ରେଣୀରେ ପଢ଼ିଲାବେଳେ 'ଆଟ ଦି ବ୍ୟାକ୍ ଅଫ୍ ଦି ବେଞ୍ଚ' ତାଙ୍କ ପାଟିରେ ବସା କରିଥାଏ । ଟିକିଏ ଟିକିଏ କଥାରେ ପିଲାଙ୍କୁ ପଛ ବେଞ୍ଚରେ ଠିଆ କରାଇ ଶାସ୍ତି ଦେବା ତାଙ୍କ ଅଭ୍ୟାସରେ ପଡ଼ି ଯାଇଥିଲା । ସରକାରୀ ନିୟମ ଅକ୍ଷରେ ଅକ୍ଷରେ ପାଳନ କରି କଲେଜିଏଟ ଛାତ୍ରାବାସରେ ଶୃଙ୍ଖଳା ସ୍ଥାପନ ପାଇଁ ତାଙ୍କୁ ନିଯୁକ୍ତ କରାଯାଇଥିଲା ।

ସରୋଜିନୀଙ୍କ ସଭା ସରୁ ସରୁ ଡ଼େରି ହୋଇଗଲା । ସରୋଜିନୀଙ୍କର କୋକିଳ କଣ୍ଠର ଓଜସ୍ୱିନୀ ଭାଷଣ, ବାହୁଷ୍ଫୋଟ ମାଧ୍ୟମରେ ଛାତ୍ର ଜନତାକୁ ସଂଗ୍ରାମ ପାଇଁ ଆହ୍ୱାନ ଦେବା ରୀତି ପ୍ରଭୃତିର ଆଲୋଚନା କରି କରି ଆମେ ଛାତ୍ରାବାସକୁ ଫେରିଲାବେଳକୁ ଫନୀବାବୁ ରାଗରେ ତମ୍ ତମ୍ ହୋଇ ଆମକୁ ଅପେକ୍ଷା କରି ବସି ରହିଥିଲେ ।

ସେ ଆମମାନଙ୍କୁ ବାରଣ୍ଡାରେ ଅଟକାଇ ଦେଇ ଆମ ସଙ୍ଗେ ଯାଇଥିବା ଗୋଟିଏ ନିରୀହ ବାଳକକୁ ଚାହିଁ କହିଲେ- 'ତୁ ନେତା ହେଉଛୁ ? ତୁ ଖରାପ କାର୍ଯ୍ୟ କରି ଯାହା ଲେଖି ଦେଇଥିଲୁ ତାହା ଅଫିସ ରେକର୍ଡ଼ରେ ରହିଛି । ମୁଁ ତାକୁ ପ୍ରକାଶ କରାଇ ତୋ ନେତା ପଣ ଛଡ଼ାଇ ଦେବି ।'

ମୁଁ ସେଥିରେ ଧୈର୍ଯ୍ୟ ହରାଇ କହିଲି 'ସାର୍ ଆପଣ ଆମର ଅଭିଭାବକ ନା ଗୋଇନ୍ଦା ପୋଲିସ୍ ? ଆପଣ ସୁପରିନ୍‌ଟେଣ୍ଡେଣ୍ଟ ହୋଇ ଆସୁ ଆସୁ ପୁରୁଣା କାଗଜପତ୍ର ଘାଣ୍ଟି କିଏ କଅଣ ଭୁଲ୍ କରି ପକାଇଥିଲା ସେ ଦୋଷକୁ ଗଣ୍ଡିକରି ପିଲାଙ୍କୁ ଜବତ କରିବାକୁ ଚେଷ୍ଟା କରୁଛନ୍ତି । ଏହାର ଫଳ ଭଲ ହେବ ନାହିଁ ।'

ଫନୀ ବାବୁ କୌଣସି ଛାତ୍ରଠାରୁ ଏପରି ରୋକ ଠୋକ୍ କଡ଼ା କଥା ଶୁଣିବାରେ ଅଭ୍ୟସ୍ତ ନ ଥିଲେ । ସେ ଇତସ୍ତତଃ ହୋଇଯାଇ କହି ପକାଇଲେ 'ତୁମ ହାତରେ ପାଠ ହେବ ନାହିଁ । ମୁଁ ଉତ୍ତର ଦେଲି, ପାଠ ଅପେକ୍ଷା ମନୁଷ୍ୟତାର ମୂଲ୍ୟ ବେଶୀ । ମୁଁ ଜଣେ ଭଲ ମଣିଷ ହେବାକୁ ଚାହେଁ ।' ସେଥିରେ ସେ ଆଉ କିଛି ନ କହି ଗମ୍ଭୀର ହୋଇ ସେଠା ଛାଡ଼ି ଚାଲିଗଲେ ।

ସାଧାରଣ ଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ର ଅସନ୍ତୋଷ ବଢ଼ିବା ବେଳକୁ ଓଡ଼ିଶାର ତତ୍କାଳୀନ ଏକମାତ୍ର ଡାକ୍ତର ଶିକ୍ଷା ଅନୁଷ୍ଠାନ ମେଡ଼ିକାଲ ସ୍କୁଲରେ ଛାତ୍ରମାନଙ୍କ ମଧ୍ୟରେ ଚାରିବର୍ଷ ବ୍ୟାପି ଅସନ୍ତୋଷ ଲାଗି ରହିଥିଲା । ସେ ସ୍କୁଲରେ ସ୍ଥାୟୀ ବା ତାଲିମପ୍ରାପ୍ତ ଶିକ୍ଷକ କେହି ନଥିଲେ । ଏକା ଶିକ୍ଷକ (ଆସିଷ୍ଟାଣ୍ଟ ସର୍ଜନ ବା ସବ୍‌ଆସିଷ୍ଟାଣ୍ଟ ସର୍ଜନ) ସାମୟିକ ବଦଳି ହୋଇ ଆସି ଯେଉଁ ବିଭାଗରେ ସ୍ଥାନ ଖାଲିଥାଏ ସେଥିରେ ବିଭିନ୍ନ ସମୟରେ ଶିକ୍ଷକତା କରନ୍ତି । ସେମାନଙ୍କ ଭିତରୁ ଅଧିକାଂଶଙ୍କର ଶିକ୍ଷାଦେବା ଯୋଗ୍ୟତା, ଇଚ୍ଛା ବା ସମୟ ନ ଥିଲା । ଏକା ଲୋକ କେବେ ଆନାଟମି ତ କେବେ ମେଡ଼ିସିନ୍, କେବେ ପାଥୋଲୋଜି ପ୍ରଭୃତି ଶିକ୍ଷା ଦେବାକୁ ବାଧ ହେଉଥିବାରୁ ଶିକ୍ଷା

ପ୍ରତି ସେମାନଙ୍କର ଆଗ୍ରହ ନ ଥିଲା । କେହି କେହି ଅଣଓଡ଼ିଆ ଶିକ୍ଷକ ଓଡ଼ିଆ ଛାତ୍ରକୁ ଘୃଣ୍ୟ ଚକ୍ଷୁରେ ଦେଖି ଦୁର୍ବ୍ୟବହାର କରୁଥିଲେ । କଟକର ଗୋରା ସିଭିଲ ସର୍ଜନ ନିଜ କାର୍ଯ୍ୟଭାର ସହିତ ସେ ଅନୁଷ୍ଠାନର ମଧ ଅଧକ୍ଷ ହେଉଥିଲେ । ୟୁରୋପୀୟ ମିସ୍‌ନାରୀ ମହିଳା 'ମଦର ଓ ସିଷ୍ଟର'ମାନେ ସେ ଅନୁଷ୍ଠାନରେ ନର୍ସ କାର୍ଯ୍ୟ କରୁଥିଲେ । ସେମାନେ ବେଶୀ ଛାତ୍ରମାନଙ୍କୁ ଘୃଣ୍ୟ ଚକ୍ଷୁରେ ଦେଖି ବେଳେବେଳେ ହତାଦର କରୁଥିଲେ । ସେହି ଛାତ୍ରମାନଙ୍କ ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ଦେବା ଦୂରର କଥା, ଛାତ୍ରାବାସରେ କେହି ଛାତ୍ର ବେମାର ପଡ଼ିଲେ, ଛାତ୍ରାବାସ ଦାୟିତ୍ୱରେ ଥିବା ଶିକ୍ଷକ-ଡାକ୍ତର ରୋଗୀକୁ ଥରେ ମାତ୍ର ଦେଖିବାକୁ ଆସୁନଥିଲେ । ପିଲାମାନେ ସେ ରୋଗୀକୁ ନେଇ ଡ଼ାକ୍ତରଖାନାରେ ଭର୍ତ୍ତି କରୁଥିଲେ ।

ପାଠ ସରିଥାଉ, ନ ଥାଉ ବେନିୟମ ଭାବରେ ପରୀକ୍ଷା ଘୋଷଣା କରାଯାଇ ନୋଟିସ ଦିଆଯାଉଥିଲା । ସେହି ଛାତ୍ର ଅସନ୍ତୋଷର ନିରାକରଣ ପାଇଁ ଚେଷ୍ଟାକରି ପୂର୍ବତନ ସ୍ୱାଧୀନତା ସଂଗ୍ରାମୀ ଛାତ୍ରମାନେ ଥରକୁ ଥର ସ୍କୁଲରୁ ବହିଷ୍କୃତ ହେଉଥିଲେ ।

ସେହି ବିଷୟରେ ବିଭିନ୍ନ ସ୍କୁଲରେ ପଢୁଥିବା ଆମ ସଂଗ୍ରାମୀ ବନ୍ଧୁମାନଙ୍କ ଭିତରେ ଆଲୋଡନ ସୃଷ୍ଟି ହୋଇଥିଲା । ସେ ସମୟରେ ପୁରୀ ଜିଲ୍ଲା ସ୍କୁଲର ବନ୍ଧୁ ନରସିଂହ ତ୍ରିପାଠୀ ମୋତେ ଚିଠି ଲେଖି ପଠାଇଥିଲେ-

ବିକ୍ରମ ବାବୁ, ପୁରୀ, ୩.୭.୧୯୩୮

* * * କଟକ ଛାତ୍ର ଆନ୍ଦୋଳନ ଓ ଅନ୍ୟାନ୍ୟ ଅବସ୍ଥା କ'ଣ ? ତୁମେ ଛାତ୍ର ଆନ୍ଦୋଳନରେ ଯୋଗଦେଇଛ କି ନାହିଁ । ଯଦି ଯୋଗ ଦେଇଥାଅ ତା'ହେଲେ କିପରି ଆନନ୍ଦ ଅନୁଭବ କରୁଛ ?

Puri Zilla School — ତୁମର ଅନ୍ତରଙ୍ଗ ବନ୍ଧୁ
Student Class XI A — ନରସିଂହ ତ୍ରିପାଠୀ
P.O. Puri

ସେହି ଆନ୍ଦୋଳନ ବଢ଼ିଚାଲିଲା । ଶେଷରେ ୨୬ ମାର୍ଚ୍ଚ ୧୯୩୯ରେ ମେଡ଼ିକାଲ ଛାତ୍ରମାନେ ଧର୍ମଘଟ ଆରମ୍ଭ କରି ୨୮.୩.୩୯ରୁ ମେଡ଼ିକାଲ ଛାତ୍ର ସୁଧୀର କବି ଆମରଣ ଅନସନ ଆରମ୍ଭ କରିଦେଲେ ।

୩.୪.୧୯୩୯ରେ ସେହି ଛାତ୍ର ଧର୍ମଘଟକୁ ସମର୍ଥନ କରି ନିଖିଳ ଉତ୍କଳ ଛାତ୍ରସଂଘର ଯୁଗ୍ମ ସମ୍ପାଦକ ଶ୍ରୀ ଗଙ୍ଗାଧର ମହାପାତ୍ର (ପରେ ମନ୍ତ୍ରୀ) ଏକ ଇସ୍ତାହାରରେ ସାରା

ଓଡ଼ିଶାର ଛାତ୍ରମାନେ ଧର୍ମଘଟ ପାଇଁ ପ୍ରସ୍ତୁତ ରହିବାକୁ ନିବେଦନ କଲେ । ନିଖିଳ ଉତ୍କଳ ଛାତ୍ରସଂଘର ମୁଖପତ୍ର ରୂପେ କବି ସଚିରାଉତରାଙ୍କ ସମ୍ପାଦନାରେ 'ଛାତ୍ର' ପତ୍ରିକା ପ୍ରକାଶ ପାଇଲା । ଆମେ ସବୁ ସେ କାଗଜକୁ ପ୍ରଚାର କରିବା ପାଇଁ ହକିଙ୍ଗ କରିବାକୁ ଲାଗିଲୁ । ସେ କାଗଜ ବା ବୁଲେଟିନରେ ପ୍ରତ୍ୟେକ ଦିନର ଘଟଣା ସମୂହର ବିବରଣୀ ଓ ଭବିଷ୍ୟତ କର୍ତ୍ତବ୍ୟର ରୂପରେଖ ପ୍ରକାଶ ପାଉଥିଲା । ସେହି ଛପା ବୁଲେଟିନ ସହିତ ଆମ ସ୍କୁଲ ପ୍ରଭୃତି ପକ୍ଷରୁ ସ୍ୱତନ୍ତ୍ର ଷ୍ଟେଥୋବୁଲେଟିନ ମଧ୍ୟ ପ୍ରକାଶ ପାଇଲା । କର୍ତ୍ତୃପକ୍ଷଙ୍କ ସବୁ ତାଗିଦା ସତ୍ତ୍ୱେ ଓ କର୍ତ୍ତୃପକ୍ଷ ସବୁ ଅଭିଭାବକମାନଙ୍କୁ ଲେଖିବା ପରେ ମଧ୍ୟ ଆମେ ଜୋରସୋରରେ ଆନ୍ଦୋଳନରେ ଲାଗିପଡ଼ିଲୁ ।

ଏପ୍ରିଲ ୨୦, ୧୯୩୯ରେ ଓଡ଼ିଶାରେ ଭାରତର ପ୍ରଥମ ଛାତ୍ର ସତ୍ୟାଗ୍ରହ ଆରମ୍ଭ ହେଲା । ଛାତ୍ରସଂଘ ନେତା ବିଶ୍ୱନାଥ ପଶାୟତଙ୍କ ଡ଼ିକ୍ଟେଟରସିପ୍‌ରେ ଆଗ ୧୧ଜଣ ମେଡ଼ିକାଲ ଛାତ୍ର (କଟକ) ସେକ୍ରେଟାରୀଏଟ ସାମନାରେ ସତ୍ୟାଗ୍ରହ କରି ବନ୍ଦୀ ହେଲେ ।

ପ୍ରଥମ ଦଳ ସତ୍ୟାଗ୍ରହୀ କାରାବରଣ କରିବା ପରେ ପରଦିନ ଆମ ସ୍କୁଲ ପିଲା ସତ୍ୟାଗ୍ରହରେ ଯୋଗ ଦେବା ଠିକ୍ ହେଲା । ଆମ ଛାତ୍ରାବାସରୁ ମୁଁ ଆସି ମୋର ସହପାଠୀ ଶୈଳେନ ମହାପାତ୍ରଙ୍କୁ ସଙ୍କେତରେ ତାଙ୍କ ଘରୁ ଅଣାଇଲି । ଆମେ ଦୁହେଁ ମେଡ଼ିକାଲ ହଷ୍ଟେଲରେ ପହଞ୍ଚିଲା ବେଳକୁ ଆଗରୁ କୁହାଯାଇଥିବା ଆଉ ଜଣେ ଦୁଇଜଣ ସ୍କୁଲ ପିଲା ମଧ୍ୟ ଆସିଥିଲେ । ଆମେ ଟେନିସ୍ କୋର୍ଟରେ ବିଶ୍ରାମ ନେଲୁ, ଭୋରରୁ ଉଠି ନିତ୍ୟକର୍ମ ସାରି ଆଉ କେତେଜଣ ମେଡ଼ିକାଲ ଛାତ୍ରଙ୍କ ସଙ୍ଗେ ମେଡ଼ିକାଲ ଛାତ୍ର ହରିଚରଣ ଦାସଙ୍କ ଡ଼ିକ୍ଟେଟରସିପ୍‌ରେ ବେକରେ ଫୁଲମାଳ ପକାଇ ପୋଲିସ୍‌କୁ ଲୁଚି ଗଳି ବାଟେ ଆସି ମର୍ଣ୍ଣିଂ ଅଫିସ ବସିବା ପୂର୍ବରୁ ଜେଲ ନିକଟ ପୁରୁଣା ସେକ୍ରେଟାରୀଏଟ ସାମନାରେ ସତ୍ୟାଗ୍ରହ ଆରମ୍ଭ କରି ଭିତରେ ପ୍ରବେଶ କରିବା ପାଇଁ ସମସ୍ତଙ୍କୁ ବାରଣ କଲୁ, ଜଣେ ଜଣେ ଯିବାକୁ ଚେଷ୍ଟା କରିବାରୁ ସେଠାରେ ଲମ୍ବ ଲମ୍ବ ଶୋଇ ଫାଟକ ରାସ୍ତା ବନ୍ଦ କରିଦେଲୁ । ପୋଲିସ୍ ଆମ ସତ୍ୟାଗ୍ରହୀ ଦଳକୁ ନେଇ ଜେଲର ହାଜତରେ ୨୧.୪.୩୯ ଦିନ ବିଚାରାଧୀନ ବନ୍ଦୀ କରି ରଖିଲେ ।

ମୁଁ ବନ୍ଦୀ ହେବା ପରଦିନ କଲେଜିଏଟ ସ୍କୁଲରୁ ବାହାରିଥିବା ବୁଲେଟିନରେ ଥିଲା-

ଭାଇମାନେ ! ଧର୍ମଘଟ ପାଳନ କରି ଏକତ୍ରିତ ହୁଅ । ଶୋଇବାରେ ସମୟ ଯାଇଛି, ଆଲୋଚନା ସମୟ ମଧ୍ୟ ଯାଇଛି । କର୍ତ୍ତବ୍ୟର ଆହ୍ୱାନ ଆସି ପହଞ୍ଚିଛି । ଦାୟିତ୍ୱର ଗୁରୁଭାର ମୁଣ୍ଡରେ ଲଦା ହୋଇଛି । ଭାଇମାନେ ! ବୁଝିବାର ସମୟ ଆଉ ନାହିଁ । ଆଜି ଏକ ସ୍ୱରରେ 'ଛାତ୍ରର ଜୟ' ବୋଲି ବିଚାର କରିବାର ସମୟ ।

ଭାଇମାନେ ! ଆପଣମାନେ ଜାଣନ୍ତି ଯେ ଗତ ଦୁଇଦିନ ହେଲା ଆମର ଛାତ୍ର ଭାଉମାନଙ୍କ ମଧ୍ୟରୁ ୨୬ ଜଣ ଛାତ୍ର ହସି ହସି କାରାଗାର ବରଣ କରିଛନ୍ତି । ଆପଣଙ୍କ ସ୍କୁଲର ଶ୍ରୀମାନ୍ ବିକ୍ରମ ଦାସ, ଶ୍ରୀମାନ୍ ଶୈଳେନ୍ଦ୍ର ମହାପାତ୍ର ଓ ଶ୍ରୀମାନ୍ କ୍ଷେତ୍ରମୋହନ କାନୁନ୍‌ଗୋ ଆପଣଙ୍କ ଭରସାରେ ସ୍କୁଲ ଛାଡ଼ି ଜେଲ୍ ଗୃହରେ ବନ୍ଦୀ....

କାଲି ଯେଉଁମାନେ ଆପଣଙ୍କ ସାଥିରେ ପଢୁଥିଲେ ଏକାଠି ବସି, ଆଜି ସେମାନେ କର୍ତ୍ତବ୍ୟର ଆହ୍ୱାନ ଏଡ଼ି ନ ପାରି ସତ୍ୟାଗ୍ରହ କରି ବନ୍ଦୀ ହୋଇଛନ୍ତି । ସେମାନଙ୍କ ପ୍ରତି ଆପଣମାନଙ୍କର କ'ଣ ସ୍ନେହ ଓ ସହାନୁଭୂତି ନାହିଁ ? ସେମାନେ କ'ଣ ସ୍ୱାର୍ଥ ପାଇଁ ନିଜର ଜୀବନ ନଷ୍ଟ କରିବାକୁ ଯାଇଛନ୍ତି ? ଆପଣମାନେ କ'ଣ ସେମାନଙ୍କୁ ଉଦ୍ଧାର କରିବେ ନାହିଁ ? ଯଦି ଆପଣ ନିଜକୁ ଛାତ୍ର ବୋଲି ପରିଚୟ ଦେଉଥା'ନ୍ତି, ତେବେ ଆପଣଙ୍କର କର୍ତ୍ତବ୍ୟ ହେଉଛି ସେମାନଙ୍କ ଦୁଃଖରେ ସମଦୁଃଖୀ ହେବା । ସେମାନେ ଯେଉଁପଥ ଅବଲମ୍ବନ କରିଛନ୍ତି, ସେହିପଥ ଅନୁସରଣ କରିବା । ଆପଣମାନଙ୍କର କର୍ତ୍ତବ୍ୟ ହେଉଛି ଏକମାତ୍ର ।

ଆଜି ଖାମ୍‌ଖିଆଲିଆ ସରକାର ଦେଖୁ ଯେ ଛାତ୍ରଶକ୍ତି ଏକତାବଦ୍ଧ ଓ ସେହି ଏକତା ଭାଙ୍ଗିବାର ଶକ୍ତି କାହାରି ନାହିଁ । ତେଣୁ ଭାଇମାନେ-ବିନୀତ ଅନୁରୋଧ ଯେ, ଆଜି ଆପଣଙ୍କ ସ୍କୁଲର ପ୍ରତ୍ୟେକ ଛାତ୍ର ସମାଜର ସମ୍ମାନ ବଜାୟ ରଖିବା ସଙ୍ଗେ ସଙ୍ଗେ ଦେଶରୁ ଅତ୍ୟାଚାର ଧ୍ୱଂସ କରିବେ ।

ବିପ୍ଳବର ଜୟ ହେଉ ।

ଆପଣମାନଙ୍କର

୨୨.୪.୩୯ ଛାତ୍ରଭାଇ

ଆମର କାରାବରଣ ପରେ ପରେ ସେ ଆନ୍ଦୋଳନ ଓଡ଼ିଶା ସାରା ବ୍ୟାପିଯାଇଥିଲା । ପୁରୀ, ଖୋର୍ଦ୍ଧା, ଗଞ୍ଜାମ, ବାଲେଶ୍ୱର, ସମ୍ବଲପୁର ପ୍ରଭୃତି ସବୁ ସ୍ଥାନର ଶହ ଶହ ଛାତ୍ର ଦଳ ଦଳ ହୋଇ ସତ୍ୟାଗ୍ରହରେ ଯୋଗଦେବା ପାଇଁ କଟକରେ ଆସି ପହଞ୍ଚିବାକୁ ଲାଗିଲେ । ପ୍ରଥମ ଦୁଇ ଦଫାରେ ଆମେ ୧୨ ଓ ୧୪ ଏପରି ୨୬ ଜଣ ସତ୍ୟାଗ୍ରହ କରିଥିଲୁ କିନ୍ତୁ ଦିନକୁ ଦିନ ସତ୍ୟାଗ୍ରହୀ ସଂଖ୍ୟା ଜୋରରେ ବଢ଼ିବାକୁ ଲାଗିଲା ।

ସେପରି ସଂଖ୍ୟା ବୃଦ୍ଧି ଯୋଗୁ ଆମ ପ୍ରଥମ ଦୁଇଦଳକୁ ତରତର କରି କଚେରୀକୁ ନ ନେଇ ସେହି କାରାଗାର ଭିତରେ ବିଚାର କରାଯାଇ ବନ୍ଦୀ ଭାବରେ ଅନ୍ୟ କାରାଗାରକୁ ପଠାଇ ଦିଆଯିବାର ବ୍ୟବସ୍ଥା ହେଲା । ବିଚାରକର୍ତ୍ତା ମାଜିଷ୍ଟ୍ରେଟ ଶ୍ରୀ ଭଗବାନ ମହାପାତ୍ର ଆମ ବିରୁଦ୍ଧରେ ପୋଲିସ କରିଥିବା ପିଙ୍ଗଳକୋର୍ଡ ୧୪୩, ୩୪୧ ଦଫା (ରାସ୍ତା

ଅବରୋଧ ଓ ଜମାଏତ ବସ୍ତି) ଅନୁଯାୟୀ ଆମ ବିରୁଦ୍ଧରେ ହୋଇଥିବା ଅଭିଯୋଗ ଆମକୁ ବୁଝାଇ ଦେଇଥିଲେ । ସରକାରଙ୍କ ତରଫରୁ ପୋଲିସ ଇନ୍‌ସପେକ୍ଟର ଶ୍ରୀପତି ନନ୍ଦ, ସେକ୍ରେଟାରୀଏଟ ହେଡ୍ ଆସିଷ୍ଟାଣ୍ଟ ଇ.ବି.ସାମୁଏଲ, ରାଏ ସାହେବ ଗଣେଶ ଚନ୍ଦ୍ର, ବାବୁ ଜଗତ ନାରାୟଣ ପ୍ରହରାଜ ଓ ବାବୁ ପଦ୍ମଚରଣ ମହାପାତ୍ର ଜମାନବନ୍ଦୀ କରିଥିଲେ ।

ଆମ ପକ୍ଷରୁ ଓକିଲ ଦିଆଯାଇନଥିବାରୁ କେହି ଅପରପକ୍ଷକୁ ଜେରା କରିନଥିଲେ । ସରକାରୀ ମିଥ୍ୟା ସାକ୍ଷୀମାନଙ୍କୁ ମଧ ଜେରା କରାଯାଇ ନ ଥିଲା । ଆମେ ସତ୍ୟାଗ୍ରହୀମାନେ କେବଳ ସ୍ଲୋଗାନ ଦେଲୁଁ ଆମେ ନିର୍ଦ୍ଦୋଷ, ଆମେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରି ସରକାରଙ୍କ ଉପରେ ଚାପ ପକାଇବା ହିଁ ଆମର ପ୍ରଧାନ ଉଦ୍ଦେଶ୍ୟ ।

ବିଚାରରେ ଆମ ୨୬ ଜଣକୁ ଦେଢ଼ମାସ ଲେଖାଁଏ କାରାଦଣ୍ଡ ଆଦେଶ ହେଲା । ଆମ୍ଭମାନଙ୍କୁ ପ୍ରଥମେ କଟକ ଜେଲର ଦକ୍ଷିଣ ପଟରେ ଥିବା ବିଚାରାଧୀନ ଦୋଷୀମାନଙ୍କ ଖୁଆଡ଼ରେ ରଖାଯାଇଥିଲା । ସେଥିରେ ଶୋଇବା ପାଇଁ ଥିବା ସିମେଣ୍ଟ ଖଟ ବା ପିଣ୍ଡି ଗୁଡ଼ିକରେ ବନ୍ଦୀମାନେ ପରସ୍ପରକୁ ବିପରୀତ ଦିଗରେ ମୁଣ୍ଡକରି ଶୋଇବା ପାଇଁ ସିମେଣ୍ଟ ତକିଆ ତିଆରି ହୋଇଥିଲା । ଖୁଆଡ ସାମନା ଲୁହାଗେଟ ସାମନାରେ ଜଣେ ୱାର୍ଡ଼ର ଜଗି ରହୁଥିଲେ । ତୃତୀୟ ଶ୍ରେଣୀ ବନ୍ଦୀଙ୍କ ଶସ୍ତା ଖାଦ୍ୟ ଆମକୁ ଖାଇବାକୁ ଦିଆଯାଉଥିଲା । ବିଚାର ସରିବା ସଙ୍ଗେ ସଙ୍ଗେ ଜେଲ ଭିତରେ ଥିବା ଆଉ ଗୋଟିଏ କୋଠରୀକୁ ଆମକୁ ନିଆଯାଇଥିଲା । ସତ୍ୟାଗ୍ରହୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିବାରେ ପୂର୍ବ ହାଜତ ଘରେ ସ୍ଥାନ ନ ହେବାରୁ ଆମ ବଡ଼ ୱାର୍ଡଟିରେ କେତୋଟି ଦଳକୁ ଆଣି ଆମ ସଙ୍ଗେ ରଖାଗଲା । ଗରମ ଦିନ ଗୋଟାଏ ବଡ଼ ଘର ଭିତରେ ଏତେ ଲୋକଙ୍କୁ ଖୁନ୍ଦାଖୁନ୍ଦି ହୋଇ ରହିବା ଅସୁବିଧା ହେବାରୁ ଆମ ଖୁଆଡ ସାମନାରେ ଥିବା ପଣସ ଗଛ ମୂଳେ ଆମେସବୁ ଆସି ଶୋଇଲୁ, ସେ ୱାର୍ଡ଼ର ଲୁହା ଦ୍ୱାର ବନ୍ଦ କରି ନପାରି ୱାର୍ଡ଼ର ଜେଲରଙ୍କ ନିକଟରେ ଅଭିଯୋଗ କଲେ । ଜେଲର ଆମକୁ ଘର ଭିତରେ ଭର୍ତ୍ତିକରି ନ ପାରି ଗୋରା ସିଭିଲସର୍ଜନ ଓନିଲ ସାହେବ (ଜେଲ ସୁପରିନ୍‌ଟେଣ୍ଡେଣ୍ଟ)ଙ୍କୁ ଡକାଇଲେ । ସୁପରିନ୍‌ଟେଣ୍ଡେଣ୍ଟ ସାହେବ ଆସି ଆମକୁ ବୁଝାଇବାରେ ଅକୃତକାର୍ଯ୍ୟ ହୋଇ ଆମ୍ଭମାନଙ୍କୁ ଜବରଦସ୍ତି ଘରେ ପୂରାଇବାକୁ ଆଦେଶ ଦେଲେ । ସେଥିରେ ଧସ୍ତାଧସ୍ତି ଚାଲିଲା । ଆମେ ସମସ୍ତେ ତା'ର ପ୍ରତିବାଦ କରି ଅନସନ ଘୋଷଣା କଲୁ । ଆମ ପ୍ରଥମ ଦୁଇଦଳ ଗଣ୍ଡଗୋଳର ମୂଳ ବୋଲି ଧରିନେଇ, ବିଚାର ହୋଇ ସାରିଥିବା ଆମ ଦୁଇ ଦଳକୁ ତା' ପରଦିନ ସକାଳେ ଅନୁଗୋଳଜେଲକୁ ସ୍ଥାନାନ୍ତରିତ କରାଯିବାପାଇଁ ଓନିଲ ସାହେବ ଆଦେଶ ଦେଲେ ।

ଆମକୁ ଅନୁଗୋଳ ଜେଲକୁ ଘେନିଯିବାକୁ ସକାଳୁ ୱାର୍ଡ଼ରମାନେ ଆସି ପହଞ୍ଚିଲେ । ଆମେ ଅନସନ କରି ଉପାସରେ ଥିଲୁ, ୱାର୍ଡ଼ରଙ୍କୁ ଦେଖି ଲମ୍ବ ଲମ୍ବ ହୋଇ ଶୋଇରହିଲୁ । ଆମ ପ୍ରତ୍ୟେକଙ୍କୁ ପାଣି ବୁହା କଳାଭଳି ଦୁଇଜଣ ୱାର୍ଡ଼ର ମୁଣ୍ଡ ଓ ଗୋଡ଼ ଟେକି, ଜେଲ ସାମନାରେ ଠିଆ ହୋଇଥିବା ଚାଲି ଝରକା ଦିଆଯାଇଥିବା କଳା ଭ୍ୟାନ ଭିତରକୁ ଘେନିଗଲେ ।

ରେଳ ଷ୍ଟେସନରେ ପୁଣି ସେପରି କଳା ଭ୍ୟାନରୁ ଟେକିନେଇ ରେଲିଙ୍ଗ ଓ ଚାଲିଥିବା ଜେଲ ଡ଼ିବା ଭିତରକୁ ନେଲେ । ଗାଡ଼ି ଚାଲିଲା । ଆମ ସଙ୍ଗେ ଯାଉଥିବା ପୋଲିସ ଅଫିସର ଟ୍ରେନ ଭିତରେ ଆମକୁ ଖୁଆଇବାକୁ ବହୁ ଚେଷ୍ଟା କରି ବିଫଳ ହେଲେ ।

ଆମେ ଅନୁଗୋଳ ଜେଲରେ ପହଞ୍ଚିବା ପରେ, ଆମ ଆନ୍ଦୋଳନର ସମାଧାନ କରିବା ପାଇଁ ଚେଷ୍ଟା କରୁଥିବା ମଧ୍ୟସ୍ଥମାନଙ୍କ କଥାରେ କଟକ ଜେଲରେ ଅନସନ କରିଥିବା ଆମ ସାଥୀମାନେ ଅନସନ ଭାଙ୍ଗିଥିବା ସମ୍ବାଦ ପାଇ ଆମେ ମଧ୍ୟ ଅନସନ ସମାପନ କଲୁ ।

ଅନୁଗୋଳ କାରାଗାରର ବୃଦ୍ଧ ଜେଲର ମହାଶୟ ଆମକୁ ନାତି ପରି ବ୍ୟବହାର କରି ଜେଲ ୱାର୍ଡ଼ ଭିତରେ ଆମକୁ ଅଟକ ନ ରଖି ଜେଲ ଭିତରେ ଘୂରି ବୁଲିବାକୁ ଛାଡ଼ି ଦେଇଥିଲେ । ଅନୁଗୋଳ ଜେଲ ଭିତରେ ଅତ୍ୟଧିକ ଗରମ ହେଉଥିବାରୁ ଆମେ ଜେଲ ବଗିଚାରୁ କଞ୍ଚି ଲେମ୍ବୁ ଛିଡ଼ାଇ ପାଣିରେ ଚିପୁଡ଼ି ଲୁଣ ସରବତ କରି ପିଇବା ଆରମ୍ଭ କରିଦେଲୁ, ଗରମ ଯୋଗୁଁ ପୂର୍ବପରି ମୋର ନାକରୁ ପୁଣି ରକ୍ତ ପଡ଼ିଲା । ଥରେ ବଗିଚାରେ ବୁଲୁ ବୁଲୁ ମୋର ମୁଣ୍ଡ ବୁଲାଇହୋଇ ମୁଁ ଅଚେତା ହୋଇ ପଡ଼ିଗଲି । ଡାକ୍ତର ସନ୍‌ଷ୍ଟ୍ରୋକ କହି ମୋର ଚିକିତ୍ସା କରିବାକୁ ଲାଗିଲେ ।

ଧର୍ମଘଟ ଓ ସତ୍ୟାଗ୍ରହ ଆନ୍ଦୋଳନର ସମାଧାନ ପାଇଁ ଓଡ଼ିଶାର କଂଗ୍ରେସ ମନ୍ତ୍ରୀମଣ୍ଡଳ ଉପରେ ଚାରିଆଡ଼ୁ ଚାପ ପଡ଼ିଲା । ଦରଭଙ୍ଗା ମେଡ଼ିକାଲ ସ୍କୁଲର ଛାତ୍ରନେତା ନିଖିଳ ଭାରତ ଛାତ୍ରସଂଘର ସମ୍ପାଦକ ବିଶ୍ୱନାଥ ମୁଖାର୍ଜୀ ଓ ଅନ୍ୟାନ୍ୟ କେତେକ ଭାରତୀୟ ଛାତ୍ରନେତା କଟକ ଆସିଲେ ।

ଜନମତ ଛାତ୍ରମାନଙ୍କ ସପକ୍ଷରେ ଯିବାରୁ ଓଡ଼ିଶାର କଂଗ୍ରେସ ସରକାର ବିପଦ ମଣିଲେ । ତାଙ୍କର ବଦନାମ ହେବାଦ୍ୱାରା ସର୍ବ ଭାରତୀୟ କ୍ଷେତ୍ରରେ କଂଗ୍ରେସ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ ପାଇବ ବୋଲି ତୁଙ୍ଗ ନେତାମାନେ ମଧ୍ୟ ବିଚଳିତ ହୋଇ ପଡ଼ିଲେ । କେନ୍ଦ୍ର ଆସେମ୍ବ୍ଲି ସଦସ୍ୟ ଓ ଓଡ଼ିଶା କଂଗ୍ରେସର ସଭାପତି ପଣ୍ଡିତ ନୀଳକଣ୍ଠ ଦିଲ୍ଲୀରୁ ଡ଼କରା ପାଇ କଟକ ଆସି ଛାତ୍ର ଓ ସରକାରଙ୍କ ଭିତରେ ମଧ୍ୟସ୍ଥତା କଲେ । ତାଙ୍କ

ଉଦ୍ୟମରେ ସରକାରୀ ମୁଖ୍ୟ ବିଶ୍ୱନାଥ ଦାସ ଓ ଛାତ୍ରମାନଙ୍କ ମଧ୍ୟରେ ଚୁକ୍ତି ସ୍ୱାକ୍ଷରିତ ହୋଇ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇଲା ।

କଟକ ଜେଲରେ ଅଟକଥିବା ଛାତ୍ର ବନ୍ଦୀମାନେ ୨୪.୪.୩୯ରେ ମୁକ୍ତ ହୋଇ 'ବିଜୟ ଦିବସ' ପାଳନ କଲେ । ଏକ ବିରାଟ ଛାତ୍ର ସଭାରେ ବଙ୍ଗ ଛାତ୍ରନେତା ଶ୍ରୀ ବିଶ୍ୱନାଥ ମୁଖାର୍ଜୀ, ସେହି ଛାତ୍ର ସତ୍ୟାଗ୍ରହକୁ ଭାରତର ପ୍ରଥମ ସତ୍ୟାଗ୍ରହ ବୋଲି ଅଭିହିତ କଲେ । ଆମେ ଅନୁଗୋଳରେ କାରାଦଣ୍ଡ ଭୋଗୁଥିବା ଛାତ୍ରମାନେ ସେ କାରାଗାରରୁ ମୁକ୍ତି ପାଇ କିଛିଦିନ ପରେ କଟକରେ ଆସି ପହଞ୍ଚିଲୁ । କଟକ କଲେଜିଏଟ ସ୍କୁଲର ଛାତ୍ରମାନେ 'ମୋତେ ସମର ବିଜୟୀ' ସେନାପତି ବୋଲି ଅଭିନନ୍ଦନ କରିଥିଲେ । ଜଣେ ଅଭିନନ୍ଦନ ପତ୍ରଟିଏ ମୋ ହାତକୁ ବଢ଼ାଇ ଦେଇଥିଲେ-

ବନ୍ଦେ ମାତରଂ

ହେ ସମର ବିଜୟୀ ସୈନିକ, Congratulation

ଆଜି କି ଭାଷାରେ ତୋତେ ମୁଁ ଅଭିନନ୍ଦନ କରିବି ତାହା ମୁଁ ନିଜେ ଭାବି ପାରୁନାହିଁ, ଯେଉଁ ସୈନିକ କୌଣସି ପ୍ରତିବନ୍ଧ ଖାତିର ନ କରି ହସି ହସି ଭାରତର ଭବିଷ୍ୟତ ପାଇଁ ଅନ୍ଧକାର କାରାଗାର ବରଣ କରିଥିଲା, ସେହି ସୈନିକ ତୁମେ ! ତୁମକୁ ମୁଁ କେଉଁ ଭାଷାରେ ଅଭିବାଦନ କରିବି । ଭାଇ ! ଆଜି ଭାଷା ତୁମ ନିକଟରେ ପରାହତ । 'ଆଜି ଭାଷାକୋଷ- ପାଳକୋଷରେ ପରିଣତ ନୁହେଁକି ?'

କିନ୍ତୁ ମନେ ରଖିବାକୁ ହେବ ଯେ ଏହା ଆମର ପ୍ରଥମ ଯୁଦ୍ଧ । ଏହାର ଶେଷ ସେହିଦିନ, ଯେଉଁଦିନ ଏହି ସାମ୍ରାଜ୍ୟବାଦୀ ସରକାରଙ୍କର ସମାଧି ଉପରେ ଭାରତର ସାମ୍ୟର ସୁବର୍ଣ୍ଣ ଅଟ୍ଟାଳିକା ତିଆରି ହେବ ।

ସ୍ନେହର ଜଣେ ସାମାନ୍ୟ ସୈନିକ ।

ସେତେବେଳେ ଛାତ୍ରମାନଙ୍କ ଧମନୀରେ ସ୍ୱାଧୀନତା ସଂଗ୍ରାମ ପାଇଁ ଉଷ୍ମରକ୍ତ କିପରି ପ୍ରବାହିତ ହେଉଥିଲା ତାହା ଅନୁମେୟ । ସେହି ଆନ୍ଦୋଳନରୁ ବହୁ ଭବିଷ୍ୟତ ସଂଗ୍ରାମୀ ନେତା ବାହାରିଥିଲେ । ତେଣୁ ତାହା ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଅଙ୍ଗ ରୂପେ ଇତିହାସରେ ଲିପିବଦ୍ଧ ହେଲା ।

ଭବିଷ୍ୟତ ସଂଗ୍ରାମ ଓ ରାଜନୀତିର ନେତୃତ୍ୱ ନେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଯେଉଁମାନେ ସେହି ଆନ୍ଦୋଳନରେ ଯୋଗ ଦେଇଥିଲେ, ସେମାନଙ୍କ ଭିତରେ, କମ୍ୟୁନିଷ୍ଟ ନେତା -- ବିଶ୍ୱନାଥ ପଣ୍ଡାଏତ, ମନମୋହନ ମିଶ୍ର, ନରସିଂହ ତ୍ରିପାଠୀ, ଗୋବିନ୍ଦ ମହାନ୍ତି, ରାମଚନ୍ଦ୍ର ରାମ, ଜଗତକୃଷ୍ଣ ଦାସ, ଗଙ୍ଗାଧର ରଥ, ସତ୍ୟବାଦୀ ମିଶ୍ର ଏବଂ ଅନ୍ୟ ଜାତୀୟତାବାଦୀ ନେତା-ଅଶୋକ ଦାସ, ସୁରଜମଲ୍ଲ ଶାହା, ଗଙ୍ଗାଧର

ମହାପାତ୍ର, ବିଭୁଧେନ୍ଦ୍ର ମିଶ୍ର, ବୀରେନ ମିତ୍ର, ବଳରାମ ମହାନ୍ତି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

କାରାଗାରରେ ମୋର ସ୍ୱାସ୍ଥ୍ୟ ଭଗ୍ନ ହୋଇଥିବାରୁ ମୁଁ ଆଉ କଟକ ଗରମ ସହିନପାରି ଗ୍ରାମକୁ ଚାଲିଗଲି । ପରେ ପରେ ମୋର ଅନେକ ବନ୍ଧୁ କମ୍ୟୁନିଷ୍ଟ ବା ସାମ୍ୟବାଦୀ ଦଳକୁ ଆଉଜିଲେ । ହିନ୍ଦୁ ସମାଜରେ ଗଢିଆରୁ ଆସିଥିବା ଶିଳ୍ପ ମଜୁରୀଆଙ୍କ ପାଇଁ ଅଭିପ୍ରେତ କମ୍ୟୁନିଜିମ୍ ତିଷ୍ଠିପାରିବ ବୋଲି ମୋର ଆଶା ନ ଥିଲା । ତେଣୁ ମୁଁ ମୋର କମ୍ୟୁନିଷ୍ଟ ବନ୍ଧୁମାନଙ୍କଠାରୁ ଦୂରେଇ ରହିଲି । ମୋର ସେପରି ମନୋଭାବର ସୂରାକ ପାଇ ମୋର ସଂଗ୍ରାମୀ ବନ୍ଧୁ ନରସିଂହ ତ୍ରିପାଠୀ ଲେଖିଥିଲେ-

ପୁରୀ
୧୨.୧୨.୩୯

ସମ୍ମାନାସ୍ପଦ ବିକ୍ରମ ବାବୁ,

ଦିନ ଯାଏ ଦିନ ଆସେ, ଅବାଧ ଗତି ତା'ର । ମଣିଷ ଅନ୍ତସ୍ପର୍ଶୀ ଆଶାର ସୌଧ ଗଢ଼ିବସେ କିନ୍ତୁ କେଉଁ ଅଜଣା ମୁହୂର୍ତ୍ତରେ ସେହି ଆଶାର ସୌଧ କେଉଁ ଅଦୃଶ୍ୟ ଦେବତାର ଅଙ୍ଗୁଳି ପରିଚାଳନାରେ ଧୂଳିସାତ୍ ହୋଇଯାଏ । ତାହା ମୋ ପରି ନଗଣ୍ୟ ବ୍ୟକ୍ତି ପକ୍ଷରେ ବୋଧଗମ୍ୟ ହୋଇ ପାରିବ ନାହିଁ । ଯୁଗ ଯୁଗ ଧରି କାଳରୂପୀ ସମୁଦ୍ର ବକ୍ଷରେ କଳ୍ପନାର ତରଙ୍ଗ ତା'ର ସମସ୍ତ ଉଲ୍ଲାସ ଓ ମାଦକତା ନେଇ ଖେଳି ବୁଲୁଥାଏ । ସେହି କଳ୍ପନାର ତରଙ୍ଗ ଭେଦ କରି ମନୁଷ୍ୟର ଆଶା ନାବ କେଉଁ ଅଜଣା ପ୍ରଦେଶକୁ ଭାସିଯାଏ । କିନ୍ତୁ ଉତ୍କଟ ରାଜନୀତିର ବିଷ ଜ୍ୱାଳାରେ ଦଗ୍ଧ ହୋଇ ଚୀର ହା, ହା, କାର ମଧ୍ୟରେ ଉଦ୍‌ଭ୍ରାନ୍ତ ଭାବରେ ବୁଲୁଥିବା ସମୟରେ ଭାବିଥିଲି ସହାନୁଭୂତି ଓ ସାନ୍ତ୍ୱନାର ଶୁଭ ନିର୍ଝର ତୁମଭଳି ଦୂର ବନ୍ଧୁଠାରୁ ଭାସିଆସି ମୋର ଶ୍ରାନ୍ତ ହୃଦୟକୁ ଶୀତଳ କରିବ । କିନ୍ତୁ ସେ ଆଶା ଯେ କାହିଁକି ଆଶଙ୍କାରେ ପରିଣତ ହେଉଛି ତାହା ବୁଝି ପାରୁନାହିଁ । ଯେଉଁ ସ୍ନିଗ୍ଧ ବନ୍ଧୁତାର ସୃଷ୍ଟି ସତ୍ୟବାଦୀର ଚିର ଶ୍ୟାମଳ ବକୁଳ ବନରେ, ସେହି ବନ୍ଧୁତା, ସେହି ସ୍ନେହର ଆଦାନ ପ୍ରଦାନ ଯେ ଐତିହାସିକ ବାରବାଟୀ ନିକଟରେ ସମାଧିଲାଭ କରିବ ତାହା ମୋର କଳ୍ପନାର ଅତୀତ ଥିଲା । କିନ୍ତୁ ବାସ୍ତବତା ସମ୍ମୁଖରେ ସେହି କଳ୍ପନା ଲିଭିଯାଉଛି ।

ବିସ୍ମୃତିଗର୍ଭରେ ସେ ସମସ୍ତ ଲୀନ ହେଉ । ଜୀବନତରୀ ଭାସି ଭାସି ଚାଲିଛି, ଲକ୍ଷହୀନ ପଥହୀନ ଭାବରେ । କେଉଁ ଦିଗ୍‌ବଳୟ ନିକଟରେ ଜଳଧାଘିତ ଲୁକ୍କାୟିତ ପ୍ରସ୍ତରର ସଂଘର୍ଷରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ କିଏ ଜାଣେ । ବିଦାୟ ।

॥ ଇତି ॥
ହତଭାଗା ନରସିଂହ

ମୁଁ ଗ୍ରାମରେ ଥିବା ସମୟରେ କଂଗ୍ରେସ ସଭାପତି ସୁଭାଷ ବୋଷ ଦ୍ୱିତୀୟ ଥର ପାଇଁ ଭୋଟରେ ଜିତି କଂଗ୍ରେସ ସଭାପତି ହେବାବେଳେ ପ୍ରଗତିବାଦୀ ଦଳ ଭାବରେ ସାମ୍ୟବାଦୀମାନେ ସୁଭାଷଙ୍କ ମତକୁ ସମର୍ଥନ କରିବା କଥା, କିନ୍ତୁ ସେମାନେ ତାହା ନକରି ନିରବ ରହିବା ଦ୍ୱାରା, ନରମପନ୍ଥୀ ଗାନ୍ଧିବାଦୀଙ୍କ ଷଡ଼ଯନ୍ତ୍ର ଯୋଗୁଁ ସୁଭାଷ କଂଗ୍ରେସ ଛାଡ଼ି ଫରୱାର୍ଡ଼ ବ୍ଲକ ଗଢ଼ି ଭାରତ ସାରା ବିପ୍ଳବ ବାର୍ତ୍ତା ପ୍ରଚାର କରିବାକୁ ସ୍ଥିର କରିଥିଲେ । ବିଶ୍ୱଯୁଦ୍ଧ ସମୟରେ ସ୍ୱାଧୀନତା ପାଇଁ ସଂଗ୍ରାମ କରିବା ଉପଯୁକ୍ତ ସମୟ ବୋଲି ସୁଭାଷ ଭାବୁଥିବା ବେଳେ, ଇଂରେଜ ଯୁଦ୍ଧ ବିପଦରେ ପଡ଼ିଥିବା ବେଳେ ଆନ୍ଦୋଳନ କରି ବ୍ରିଟିଶ ସରକାରକୁ ହଇରାଣ କରିବା ଉଚିତ ନୁହେଁ ବୋଲି ଗାନ୍ଧିଙ୍କର ମତ ଥିଲା ।

ଫରୱାର୍ଡ଼ ବ୍ଲକରେ ଯୋଗଦେବା ପାଇଁ ବିପ୍ଳବୀ ଛାତ୍ରମାନଙ୍କୁ ସୁଭାଷ ଯେଉଁ ଆହ୍ୱାନ ଦେଇଥିଲେ, ମୁଁ ସେଥିରେ ଅନୁପ୍ରାଣିତ ହୋଇଥିଲି ।



# ଗ୍ରାମର ଆକର୍ଷଣ

ମାଇନର ପାଶ୍ ପରେ ୧୯୩୬ରୁ ମୁଁ କଟକରେ ରହି ପାଠପଢ଼ିଲେ ସୁଦ୍ଧା ମୋର ମନ ସବୁବେଳେ ଗ୍ରାମ ପରିସର ଭିତରେ ହିଁ ବୁଲୁଥିଲା । ଛୁଟି ଘୋଷଣା ହେବା ସଙ୍ଗେ ସଙ୍ଗେ ମୁଁ ମନରେ ବହୁ ଯୋଜନା ଧରି ଗ୍ରାମକୁ ଚାଲିଆସୁଥିଲି ।

ଦୋଳଛୁଟି - ଦୋଳଯାତ୍ରା ପ୍ରତି ଆମ ଗ୍ରାମର ସମସ୍ତଙ୍କର ଏକ ଆକର୍ଷଣ ରହିଥିଲା । ଅନ୍ୟଠାରେ ପଢୁଥିବା ଛାତ୍ର, ଦୂରରେ ଚାକିରି କରୁଥିବା ବ୍ୟକ୍ତି ଓ ବ୍ୟବସାୟୀମାନେ ସେ ସମୟରେ ଆସି ଗ୍ରାମରେ ଜୁଣ୍ଡ ହେଉଥିଲେ ।

ଦୋଳ ସମୟର ଜ୍ୟୋତ୍ସ୍ନା ପ୍ଲାବିତ ଧରଣୀରେ ଶୀତଳ ସନ୍ଧ୍ୟା ଆମ ପିଲାମାନଙ୍କ କୋଳାହଳ ଓ କୁହାଟ ଧ୍ୱନୀରେ ମୁଖରିତ ହୋଇ ଉଠୁଥିଲା । ପିଲାଏ କିତି, କିତି (ହା, ଡୁ ଡୁ) ବୋହୁଚୋରି ଓ କୁହାଟ ମଲି ପ୍ରଭୃତି ଖେଳର ଉଦ୍ଦୀପନାରେ ମାତି ଉଠନ୍ତି । ଡୁ ଡୁ ଓ ବୋହୁଚୋରିର ସ୍ଥାନ ସୀମିତ ଥିବାବେଳେ ସେହିପରି ଖେଳ ଚୋରକୁ ଖୋଜିବା କୁହାଟ ମଲି ଖେଳର ସ୍ଥାନ ବ୍ୟାପକ ଥାଏ । ଦାଣ୍ଡ, ବାଡ଼ି ଖଳା, ଗଛ, ଚାଳ ପ୍ରଭୃତି ବହୁ ସ୍ଥାନରୁ କୁହାଟ ଧ୍ୱନି ଶୁଭେ ଘଣ୍ଟା ଘଣ୍ଟା ଧରି ଲୁଚିଥିବା ପିଲାଙ୍କୁ ଧରିବା ପାଇଁ ଗୋଟିଏ ପିଲାକୁ ଏପଟ ସେପଟ ଚାରିଆଡ଼ ଖୋଜିବାକୁ ପଡ଼େ । ବହୁ ସମୟ ପରେ ଖେଳ ସାରି ପିଲାଏ ଘରକୁ ଫେରି ଧୁଆଧୋଇ ହୁଅନ୍ତି । ସେତେବେଳକୁ ଘରେ ରୋଷେଇ ସରିଥାଏ । ସେମାନେ ଖିଆପିଆ ସାରନ୍ତି । ସେତେବେଳକୁ ନାଗା ବାଇଦ (ବାଜା) ବାଜିଉଠେ, ସାହିଯାତ୍ରା ଓ ନାଗା ବନ୍ଧାର ଯୋଗାଡ଼ ଚାଲେ ।

ଆମ ଗ୍ରାମଟି ମଝିରୁ ବା ଦଣ୍ଡା ମୁଣ୍ଡରୁ ଦୁଇଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗ ବା ଖଣ୍ଡିରେ ଗୋଟିଏ ନାଗା ଘର ଓ କେତେକ ସାହି ଯାତ୍ରା ଘର ଥାଏ । ନାଗାଘରେ ଦୋଳ ଚାରିଦିନର ପ୍ରତି ରାତ୍ରିରେ ବଳ୍ଲା ବଳ୍ଲା ସ୍ୱାସ୍ଥ୍ୟବାନ କେତେଜଣ ପୁରୁଷ ନାଗାବେଶ ପିନ୍ଧି ନାଗା ହୁଅନ୍ତି । ନାଗା ବେଶରେ ନାଗା ମୁଣ୍ଡରେ ଶାଢ଼ୀର ଏକ ବିରାଟ ପଗଡ଼ି ବନ୍ଧାଯାଏ । ପଗଡ଼ି ଦେହରେ ଓଜନିଆ ରୁପାହାର ଓ ପଗଡ଼ି ଉପରେ ହାତେ ଦେଢ଼ ହାତ ଲମ୍ବର ବେଣ୍ଟ ଥାଇ ଫୁଟେ ଦେଢ଼ ଫୁଟ ଗୋଲାର୍ଦ୍ଧର ସୋଲ ଓ ଅଭ୍ରରେ ତିଆରି ଏକ ଫୁଲ ଆଗକୁ ଝୁଙ୍କି ରହିଥାଏ । ନାଗା ମୁହଁରେ ସୋଲ ଓ କଳା କନାର ଏକ ମୋଟା ଦାଢ଼ି ମୁଖମଣ୍ଡଳକୁ ଆବୃତ କରି ରଖିଥାଏ । ବଡ଼ କଳା ନିଶଟାଏ ମଧ୍ୟ ନାକ ତଳେ ଝୁଲୁଥାଏ । ନାକଠାରୁ କପାଳ ପର୍ଯ୍ୟନ୍ତ ଏକ ସିନ୍ଦୁର କଳି ଦିଆଯାଇଥାଏ । ସେ ସବୁ ଏକ ନୂଆ

ପରି କାମ କରୁଥିବାରୁ ସେ ବ୍ୟକ୍ତିକୁ ଚିହ୍ନି ହୁଏ ନାହିଁ । ପେଟ ଉପରେ ବାଘ ଚମଡ଼ାର ସାଞ୍ଜୁ ପିଠିରେ ୫, ୬ ଫୁଟିଆ ଏକ ବିରାଟ ଧନୁ ଓ ସେ ଧନୁରେ ଅସଂଖ୍ୟ ପତଳା ଲଗା ଶର ଗୁନ୍ଥା ଯାଇଥାଏ ଓ ଧନୁ ମଝିରେ ଏକ ବଡ଼ ଲୁହାର ଥାଳିପରି ଢାଲଟାଏ ବନ୍ଧାଯାଇଥାଏ । ଦୁଇ ବାହୁ ହାତ ଓ ଅଣ୍ଟାରୁ ଛିଟ କନାର ବଡ଼ ବଡ଼ ରୁମାଲ ସବୁ ଓହଳି ଥାଏ । ଅଣ୍ଟାରୁ ଗୋଟିଏ ବଙ୍କା ଛୁରୀ ବା ଖଣ୍ଡା ଓହଳିଥାଏ । ଦେହଯାକ ରାମରଜ ପାଉଡ଼ର ବୋଳାଯାଇଥାଏ । ଏପରି ଏକ ଯୋଦ୍ଧା ବେଶର ଓଜନ ଓ ବନ୍ଧନ ସାଧାରଣ ଲୋକ ସହ୍ୟ କରିବା କଷ୍ଟ । ସେ ବେଶ ପିନ୍ଧି ହାତରେ ବନ୍ଧୁକ ଓ ଠେଙ୍ଗା ଧରି ନାଗରା ବାଡ଼ା ବାଜିବା ସହିତ ପାଦ ବା ପାହୁଲ ପକାଇ ନାନା ପ୍ରକାର ଖେଳ ଦେଖାଇ ଘଣ୍ଟା ଘଣ୍ଟା ଧରି ନାଚିବାକୁ ହୁଏ । ନାଗାମାନେ ପ୍ରତ୍ୟେକ ଖଣ୍ଡିରୁ ବୀର ଦର୍ପରେ ପାହୁଣ୍ଡ ପକାଇ ପକାଇ ଗ୍ରାମର ମଧ୍ୟସ୍ଥଳ ଦଣ୍ଡାମୁଣ୍ଡକୁ ଆସି ଖେଳ ପ୍ରଦର୍ଶନର ପ୍ରତିଯୋଗୀତା କରନ୍ତି । ସେ ସ୍ଥାନ ଦର୍ଶକରେ ଭରପୂର ହୋଇଯାଏ । ସେପରି ବେଶ ପିନ୍ଧି ଜୀବନରେ ଅନ୍ତତଃ ଥରଟିଏ ନାଗା ନ ହେଲେ କୌଣସି ଲୋକ ଗ୍ରାମ୍ୟ ଲୋକ ଭାବରେ ଗଣାଯାଏ ନାହିଁ ବୋଲି ଆମ ଧାରଣା ଥିବାରୁ ଆମ ବୟସ୍କ ପିଲାଙ୍କ ମନ ନାଗା ହେବାକୁ ଛଟପଟ ହେଉଥାଏ । ପ୍ରଥମ ଥର ନାଗାବନ୍ଧାଇବାକୁ ନିଜ ମୁଣ୍ଡରେ ପଗଡ଼ି ପାଇଁ ନୂଆ ଶାଢ଼ୀଟିଏ ଦେବାକୁ ପଡ଼େ ଓ ନାଗା ଯାତ୍ରା ସଂସ୍ଥାକୁ କିଛି ଅର୍ଥ ମଧ୍ୟ ଦେବାକୁ ପଡ଼େ, ଅବଶ୍ୟ ଆମ ଗ୍ରାମର ସ୍ଥାୟୀ ବାସିନ୍ଦା ବ୍ୟତୀତ ଅନ୍ୟ କାହାକୁ ନାଗା ବନ୍ଧାଇବାର ସୁଯୋଗ ଦିଆଯାଏ ନାହିଁ ।

ମୁଁ ମଧ୍ୟ ଗ୍ରାମବାସୀ ଭାବରେ ପରିଚିତ ହେବାକୁ (ନାବାଳକତ୍ୱ କଟାଇବାକୁ) ମୋ ବନ୍ଧୁମାନଙ୍କ ପ୍ରରୋଚନାରେ ନାଗା ବେଶ ପିନ୍ଧିବା ପାଇଁ ସ୍ଥିର କଲି । ନାଗା ବନ୍ଧା ଘରକୁ ଯାଇ ନାଗାବେଶ କରୁଥିବା ବିଶିଷ୍ଟ ବ୍ୟକ୍ତି ମାନଙ୍କୁ ବହୁ ଖୋସାମତ କରିବା ପରେ ସେମାନେ ରାଜି ହୋଇଥିଲେ । ମୁଁ ଗୋଟିଏ ଭଲ ନୂଆ ଶାଢ଼ୀ ଓ କିଛି ଟଙ୍କା ଦେଇ ନାଗା ବେଶ ପିନ୍ଧାଇବା ପାଇଁ ବସିଲି । ନାଗା ବେଶ ବନ୍ଧାଇବା ପରେ ମୁଁ ଠିଆ ହେବା କଷ୍ଟକର ହେଲା ମୋ ମୁଣ୍ଡ ଆଗକୁ ଝୁଙ୍କିଲା, ମୁଣ୍ଡ ବୁଲାଇ ବାନ୍ତି ହେବା ଆରମ୍ଭ ହୋଇଗଲା । ମୁଁ ବହୁ କଷ୍ଟରେ ଅନ୍ୟମାନଙ୍କ ଆଶ୍ରୟ ନେଇ ଅନ୍ୟ ନାଗାଙ୍କ ପଛେ ପଛେ ନାଗାଘର ପାହାଚ ଓହ୍ଲାଇ ଦାଣ୍ଡ ପର୍ଯ୍ୟନ୍ତ ଯାଇ ସାଥୀ ଓ ଅନ୍ୟମାନଙ୍କୁ ଦର୍ଶନ ଦେବା ପରେ ବନ୍ଧୁଙ୍କ ସାହାଯ୍ୟରେ ନାଗାଘରକୁ ଫେରି ଆସି, ଲେଉଟିଲା ପରି ପଡ଼ିଗଲି । ମୋର ବେଶ ଫିଟାଯାଇ ମୋତେ ଛିଞ୍ଚା ବିଞ୍ଚା କରିବାପରେ ମୋର ଚେତା ଫେରିଲା । ମୁଁ ଘରକୁ ଫେରିଲି । ଏପରି ମୋର ନାବାଳକତ୍ୱ କଟିଲା କିନ୍ତୁ ମୁଁ ଆଉ କେବେ ନାଗା ବନ୍ଧାଇବାକୁ ଇଚ୍ଛା ପ୍ରକାଶ କରିନାହିଁ ।

ସେହିଦିନ ଠାରୁ ମୁଁ ପୂରାପୂରି ସାହି-ଯାତମାନଙ୍କରେ ଆଶ୍ରୟ ନେଲି । ଦୋଳ ସମୟରେ ପିଲା ଓ ବୟସ୍କମାନେ ମଧ୍ୟ ସାହି-ଯାତ, ଘରକୁ ଯାଇ ନାନା ପ୍ରକାର ବେଶ

ହୁଅନ୍ତି । ତାଳ ଭୂତ, ପାଳଭୂତ, ମୁଣ୍ଡପୋତା କେଳା, ଧୂଳିଆ ବାବାଜୀ, ଋଷି, ନନ୍ଦରାଜା, ନାନା ଦେବଦେବୀ, ହନୁମାନ, କେଳା-କେଳୁଣୀ, ଶବର-ଶବରଣୀ, ଚଡୁଆ-ଚଡଉଣୀ, ପାଲାବାଲା, ଦାସକାଠିଆ ପ୍ରଭୃତି ନାନାବେଶ ପକାଇ ମନକୁ ଯାହା ଆସିଲା ତା' ଗାଇ ଗାଇ ନାଗାମାନଙ୍କ ଆଗରେ ଓ ପଛରେ ପଂଝା ପଂଝା ହୋଇ ଖେଳ ଖେଳି ଯାଉଥାଆନ୍ତି । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଉତ୍ସାହରେ ଗ୍ରାମ ଦାଣ୍ଡରେ ଯେପରି ମନ ଖୋଲା ଉତ୍ସବ ପାଳନ କରି ଆନନ୍ଦରେ ନାଚି ନାଚି ଯିବାର ଦୃଶ୍ୟ ଏବେ ବିରଳ ହୋଇ ଆସିଲାଣି ।

ସେତେବେଳେ ପାଲା ଆସୁ ନଆସୁ, ଭୀମ ବାରିକ, ଗୋପୀ ସାହୁ, ଦିନା ମହାରଣା, ଦାମ ଦାସ ପ୍ରଭୃତି ପାଲାବାଲା ବେଶ ପକାଇ ଚାମର ହଲାଇ ନାନା ଭଙ୍ଗୀରେ ଗୀତ ଗାଇ ଗାଇ ଯିବା ପାଠ ପଢୁଆ ବୟସ୍କମାନେ ସୁଆଙ୍ଗଠାରୁ ଯାତ୍ରା ଗୀତ ପର୍ଯ୍ୟନ୍ତ ଯାହା ପାଟିକୁ ଆସିଲା ସେସବୁ ନିଜ ରୁକ୍ଷ ସ୍ୱରରେ ବୋଲି ଗାଁ ଦାଣ୍ଡରେ ନାଚି ନାଚି ଯିବାରେ ହାସ୍ୟରସ ସୃଷ୍ଟି କରିବା ମନ ମୁଗ୍ଧ କରୁଥିଲା ।

କିଏ କିଏ ଗେରୁଆ ବସ୍ତ୍ର ପିନ୍ଧା ବାବାଜୀ ସାଜି ହାତରେ କୋଥଳୀଟାଏ ଧରି କହଥାଆନ୍ତି- 'ଆମେ ଅଇଲୁ, ଆମେ ଅଇଲୁ ବାବାଜୀ ଟୁପୁସି (ତପସ୍ୱୀ) ଏ ହାତେ କେରାଣ୍ଡି (ମାଛ) ସେ ହାତେ ଦରାଣ୍ଡି ମୁଖେ ହରିନାମ ଜପୁଛି ।' ଗୃହି -ସନ୍ୟାସୀ ଭାବରେ ସ୍ୱାମୀ ବାବାଜୀ ହୋଇ ଯିବା ଇଚ୍ଛା ପ୍ରକାଶ କରି ଥଟାରେ ସ୍ତ୍ରୀକୁ କହୁଥିବା ଓ ସ୍ତ୍ରୀ ଉତ୍ତର ଦେଉଥିବା ବଡ଼ ଚିତ୍ତାକର୍ଷକ ହୁଏ । ସ୍ୱାମୀ କହେ- ବେନୁଆ ମାଆଲୋ ବେନୁଆ ମାଆ, ମୁଁ ଯାଉଛି ବାଆଜୀ ହୋଇ । ସ୍ତ୍ରୀ ଉତ୍ତର ଦିଏ-ବେନୁଆ ବାପାରେ ବେନୁଆ ବାପା ତୋ ଆଶା-ବାଡ଼ିଟି କାହିଁ ? ସ୍ୱାମୀ, ସ୍ତ୍ରୀର ହାତଟାକୁ ଧରି ପକାଇ କହେ ତୋ ହାତଟି ମୋ ଆଶା ବାଡ଼ି ଆଉ ଆଶା ବାଡ଼ି କାହିଁ ? ସ୍ତ୍ରୀ କହେ ବେନୁଆ ବାପାରେ ବେନୁଆ ବାପା ତୋ ହାତ ଚିମୁଟା କାହିଁ ? ସ୍ୱାମୀ ସ୍ତ୍ରୀର ମୁଣ୍ଡରେ ହାତ ରଖି କହେ ତୋ ମୁଣ୍ଡ କଣ୍ଟା ମୋହାତ ଚିମୁଟା ଆଉ ଚିମୁଟା କାହିଁ ? ସ୍ତ୍ରୀ-ତୁ ତ ଯିବୁ ବାଆଜୀ ହୋଇ ତୋ କୋଥଳୀ ମୁଣି କାହିଁ ? ସ୍ୱାମୀ ସ୍ତ୍ରୀର ପେଟକୁ ଆଙ୍ଗୁଠି ଦେଖାଇ କହେ- 'ତୋ ପେଟଟି ମୋ କୋଥଳୀ ମୁଣି ଆଉ କୋଥଳୀ କାହିଁ ?' ଏହା କହି ସ୍ତ୍ରୀ ବେଶ ହୋଇଥିବା (ପୁରୁଷ) ଲୋକ ପେଟକୁ ଆଙ୍ଗୁଠିରେ କେଞ୍ଚିଦେବାରେ ହସବୃଷ୍ଟିରେ ଗ୍ରାମ ଦାଣ୍ଡ ଉଚ୍ଛୁଳି ପଡ଼େ । ପୁରୁଷ ଓ ସ୍ତ୍ରୀ ବେଶ ପିନ୍ଧିଥିବା ଲୋକ ଦୁଇଟା ମଧ୍ୟ ହସି ହସି ଗଡ଼ିଯାଆନ୍ତି । ସମସ୍ତେ ବିନା ସଂକୋଚରେ ବିନା ତାଳରେ ବା ଲୟରେ ଯାତ୍ରା ଗୀତ, ସିନେମା ଗୀତ ଯାହା ମନକୁ ଆସିଲା ଆବୃତ୍ତି କରିବାକୁ ପଛାନ୍ତି ନାହିଁ । ସେପରି ଅନାବିଳ ହସ ଖୁସି ଯୋଗୁଁ ସେ ଯାତ୍ରାରେ ଆଭିଜାତ୍ୟର ଗର୍ବ, ବଡ଼ ସାନ ଭେଦ କିଛି ନ ଥାଏ । ସମସ୍ତେ ଯେପରିକି ଏକ ପ୍ରାଣ ହୋଇ ସେ ଉତ୍ସବ ଉପଭୋଗ କରନ୍ତି ।

**ଗୁଇନ୍ଦାଙ୍କ ହଟହଟା :**

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେହି ହସ ଖୁସିର ଯାତ୍ରାବେଶକୁ ବ୍ୟବହାର କରି ଆମେ ଇଂରେଜଙ୍କ ଗୋଇନ୍ଦା ପୋଲିସକୁ ଅପଦସ୍ତ କରି ଆମ ଗ୍ରାମରୁ ତଡ଼ି ଦେଇ ପାରିଥିଲୁ ତାହାର ବର୍ଣ୍ଣନା ନିମ୍ନରେ ଦିଆଗଲା ।

ସୁଭାଷ ବୋଷ ଭାରତ ଛାଡ଼ି ଚାଲିଯିବା ପୂର୍ବରୁ ଫରୱାଡ୍ ବ୍ଲକ ନାମରେ ଯେଉଁ ବୈପ୍ଳବିକ ଅନୁଷ୍ଠାନ ଗଢ଼ିଥିଲେ ତାହା ସହିତ ମୋର ପିତା ନୀଳକଣ୍ଠ ଓ ଭ୍ରାତା ଅଶୋକ ଦାସ ଓ ମୁଁ ଓତୋପ୍ରୋତ ଭାବରେ ଜଡ଼ିତ ଥିଲୁ । ୧୯୪୧ ଜାନୁଆରୀ ୧୬ ତାରିଖରେ ସୁଭାଷ କୌଶଳରେ ବ୍ରିଟିଶ ସରକାରଙ୍କ ଆଖିରେ ଧୂଳି ପକାଇ ଚାଲିଯାଇଥିଲେ, ଭାରତ ସରକାର ଫରୱାଡ଼ ବ୍ଲକକୁ ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ, ସେଥି ସହିତ ସଂପୃକ୍ତ ଥିବା, ଆମ୍ଭମାନଙ୍କ ଉପରେ ସରକାରଙ୍କ ଗୋଇନ୍ଦା ବିଭାଗ ପୋଲିସ ଆମ ପଛରେ ଲଗାଇଥିଲେ ।

ମୋ ଭାଇନା ଅଶୋକ ବାବୁ ପୂର୍ବରୁ ଫରୱାଡ୍ ବ୍ଲକ କେନ୍ଦ୍ର ପରିଚାଳନା ସମିତି ସଦସ୍ୟ ଥିବାରୁ ଆମ ପ୍ରେସ ଘର (କଟକ) ଖାନତଲାସ ହୋଇଥିଲା । ଶେଷରେ ଅଶୋକ ବାବୁଙ୍କୁ ବନ୍ଦୀ କରାଯାଇ ଯୁଦ୍ଧ ବନ୍ଦୀ ଭାବରେ ତାଙ୍କର ବିଚାର କରାଯିବା ପାଇଁ କଟକ ଜେଲରେ ଫାସି ଆସାମୀ ରହୁଥିବା ଜଣିକିଆ କୋଠରୀ ବା ସେଲରେ କଡ଼ା ପହରା ଭିତରେ ରଖା ଯାଇଥିଲା ।

ଭାଇନା ବନ୍ଦୀ ହେବା ପୂର୍ବରୁ ଦୋଳ ସମୟରେ ପିତାଙ୍କ ସଙ୍ଗେ ଗ୍ରାମକୁ ଆସିଥିଲେ । ସେତେବେଳେ ମୁଁ ଦୋଳଯାତ୍ରାରେ ଲାଗିଥାଏ । ମୁହଁ ସନ୍ଧ୍ୟାବେଳକୁ ମୁଁ ଘରୁ ସାହି-ଯାତ ଘର ଆଡ଼କୁ ବାହାରିଥିବା ସମୟରେ ଜଣେ ଗେରୁ ବସ୍ତ୍ର ପରିହିତ କଳା ଦାଢ଼ିଯୁକ୍ତ ସନ୍ନ୍ୟାସୀ ବେଶଧାରୀ ବ୍ୟକ୍ତି ଆମ ଦାଣ୍ଡ ରାସ୍ତାରେ ଜଣଙ୍କୁ ପଚାରି ଆମ ଘର ଆଡ଼କୁ ଅଗ୍ରସର ହେଲେ । ମୁଁ ତାଙ୍କୁ ଭେଟି, ପଚାରିବାରେ ସେ କହିଲେ 'ଗୀତାର କେତେକ ତତ୍ତ୍ୱ ମୁଁ ବୁଝି ନପାରିବାରୁ ବିଖ୍ୟାତ ବିଦ୍ୱାନ 'ଗୀତା'ର ଟୀକାକାର ପଣ୍ଡିତ ନୀଳକଣ୍ଠଙ୍କଠାରୁ ତାହା ବୁଝିବା ପାଇଁ ଆସିଛି ।'

ମୁଁ ସନ୍ନ୍ୟାସୀଙ୍କ ପରିଚୟ ପଚାରିବାରୁ ସନ୍ନ୍ୟାସୀର ପରିଚୟ ନଥାଏ ବୋଲି ସେ ଜଣାଇସାରି ହସିକର କହିଲେ ମୁଁ ଏହି ଓଡ଼ିଶାର ଭଦ୍ରକଠାରେ ଜନ୍ମ ହୋଇ କିଶୋର ଅବସ୍ଥାରୁ ସନ୍ନ୍ୟାସୀ ହୋଇ ଅନ୍ୟଠାରେ ବଢ଼ିଛି । ସେ ମୋ ସହିତ ଯେତେ ସାବଧାନତା ସହିତ କଥାବାର୍ତ୍ତା ହେଲେ ମଧ୍ୟ ତାଙ୍କ ଉଚାରଣରୁ ସେ ଗଞ୍ଜାମ ବାସୀ ବୋଲି ମୁଁ ଜାଣିପାରିଲି । ଗଞ୍ଜାମରେ ବହୁତ ଫରୱାଡ଼ ବ୍ଲକ ମତାବଲମ୍ବୀ ଥିବାରୁ ସେ ବୋଧହୁଏ ଗଞ୍ଜାମ ନକହି ଭଦ୍ରକ କହିଲେ । ତାଙ୍କ ଚାଲିଚଳନରୁ ସେ ଜଣେ ଉଚ୍ଚପଦସ୍ଥ ପୋଲିସ

ଗୋଇନ୍ଦା ବୋଲି ମୋର ସନ୍ଦେହ ହେଲା । ତାଙ୍କ ଆସିବା ଖବର ମୁଁ ପିତାଙ୍କୁ ଜଣାଇବା ପାଇଁ କହି ତାଙ୍କୁ ପିଣ୍ଡାରେ ବସାଇ ଘରଭିତରକୁ ଯାଇ ଅନ୍ୟବାଟ ଦେଇ ମୋ ବନ୍ଧୁମାନଙ୍କ ନିକଟକୁ ଚାଲିଗଲି । ସେମାନଙ୍କ ସଙ୍ଗେ ଆଲୋଚନା କଲାପରେ ଏକ ସୁଚିନ୍ତିତ ଯୋଜନା ଠିକ ହେଲା । ସନ୍ୟାସୀ ଗୁଇନ୍ଦା ହୋଇଥିଲେ ଆମ ସଙ୍ଗେ ଭଲଭାବରେ ମିଶିବାକୁ ଆଗ୍ରହ ପ୍ରକାଶ କରିବେ ବୋଲି ମୋର ଧାରଣା ହୋଇଥିଲା । ଆମ ଯୋଜନାରେ ଭାଗ ନେବାପାଇଁ ସତ୍ୟବାଦୀ ସ୍କୁଲର ଦୈତାରୀ ପାଣ୍ଡବ ନାମକ ଏକ ଦୀର୍ଘକାୟ ମଜାଦାର ସାଥୀଙ୍କୁ ଆସିବା ପାଇଁ ଖବର ଦେଲି ।

ମୁଁ ଆସିଲା ବେଳକୁ ସନ୍ୟାସୀ ପିତାଙ୍କ ସଙ୍ଗେ ଗୀତା ଚର୍ଚ୍ଚା ଆରମ୍ଭ କରିଦେଇଥିଲେ । ପିତା ତାଙ୍କୁ ଗୀତା ବୁଝାଇବାରେ ଲାଗିଥିଲା ବେଳେ ଘରଭିତରୁ ଭାଇନା ବାହାରକୁ ଆସୁଥିବା ଦେଖି ସେ ଅମନଯୋଗୀ ହୋଇ ତାଙ୍କର ଆଖି ଦୁଇଟା ଭାଇନାଙ୍କ ଉପରେ ଲାଖି ରହିଥିବା ମୁଁ ଖସ୍ ଆଡ଼ଆଳରୁ ଦେଖି ପାରିଲି ।

ଭାଇନା ଦାଣ୍ଡକୁ ଚାଲିଯିବା ପରେ ମୁଁ ଆଲୋଚକ ଦୁହିଁଙ୍କ ପାଖକୁ ଯାଇ ଗୋଟାଏ ବାହାନା ଦେଖାଇ ପିତାଙ୍କୁ ଘର ଭିତରକୁ ପଠାଇ ଦେଲି । ତା'ପରେ ସନ୍ୟାସୀଙ୍କ ସଙ୍ଗେ ଆଳାପ ଆରମ୍ଭ କଲି । ମୁଁ ସନ୍ୟାସୀଙ୍କୁ ଯଥା ସମ୍ମାନ ଦେଖାଇ ଜଣେ ବଡ଼ ଭକ୍ତ ଭଳି ଭକ୍ତିରେ ଗଦ୍ ଗଦ୍ ହୋଇ କହିଲି-ମହାରାଜ ! ଆଜି ଏ ଗ୍ରାମର ବଡ଼ ଭାଗ୍ୟ, ଆଜି ଭଗବାନ ଆପଣଙ୍କୁ ଆମ ଗ୍ରାମକୁ ପଠାଇଛନ୍ତି । ଆଜି ଏପରି ଦିନରେ ଆପଣଙ୍କ ପାଦ ଏଠାରେ ପଡ଼ିଛି । ଆମର ଏହି ଦୋଳ ଉତ୍ସବରେ ଆମେ ଠାକୁର ଠାକୁରାଣୀଙ୍କ ଆନନ୍ଦବର୍ଦ୍ଧନ ପାଇଁ ମହାପ୍ରଭୁ ଚୈତନ୍ୟଙ୍କ ଢଙ୍ଗରେ ନାନା ବେଶ ପକାଇ ନାଚି ନାଚି ସ୍ତୁତି ଗାନକରୁ, ଆପଣ ଜାଣନ୍ତି ଚୈତନ୍ୟଦେବ ଭଗବାନଙ୍କୁ ରାମ ରୂପେ ସ୍ତୁତି କଲାବେଳେ ସେ ହନୁମାନ ରୂପ ଧରିବାରୁ ତାଙ୍କର ଲାଙ୍ଗୁଡ଼ଟିଏ ବାହାରି ପଡ଼ିଥିଲା । ଭଗବାନଙ୍କୁ କୃଷ୍ଣ ରୂପେ ସ୍ତୁତି କଲାବେଳେ ସେ ରାଧା ରୂପ ଧରି ସ୍ତ୍ରୀ ହୋଇଯାଇଥିଲେ ବୋଲି ଚୈତନ୍ୟାମୃତ ପ୍ରଭୃତିରେ ବର୍ଣ୍ଣିତ ହୋଇଛି ।

ଆପଣ ନିଜେ ଜଣେ ମହାତ୍ମା ପୁରୁଷ । ଆପଣଙ୍କର ଯଦି ଆପତ୍ତି ନ ଥାଏ ତେବେ ଆପଣ ଆମ୍ଭମାନଙ୍କ ସଙ୍ଗେ ଏ ଉତ୍ସବରେ ଯୋଗ ଦେବା ପାଇଁ ସମ୍ମତି ଜଣାଇଲେ ଏ ଗ୍ରାମର ମୋର ସଙ୍ଗୀ ପିଲାମାନେ ଓ ମୁଁ ନିଜକୁ ଧନ୍ୟ ମନେ କରିବୁ ।

ବେଶ ବଦଳାଇ ଗ୍ରାମର ଜନତା ସଙ୍ଗେ ମିଶି ସେହି ବିପ୍ଳବୀ ଗ୍ରାମର ଯୁବକମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାର ତାହା ଏକ ସୁଯୋଗ ମନେକରି ସେ ସନ୍ୟାସୀ ସେହି ସୁବର୍ଣ୍ଣ ସୁଯୋଗକୁ ନ ଛାଡ଼ିବା ପାଇଁ, ମନେ ମନେ ପୁଲକିତ ହୋଇ ସଙ୍ଗେ ସଙ୍ଗେ ମୋ ପ୍ରସ୍ତାବରେ ରାଜି ହୋଇଗଲେ । ସନ୍ୟାସୀ ମୋର ଆତିଥ୍ୟ ଗ୍ରହଣ

କରି ଆମ ଘରେ ସାନ୍ଧ୍ୟ ଭୋଜନ ସାରିବାକ୍ଷଣି ମୁଁ ତାଙ୍କୁ ଆମ ସାହି-ଯାତ୍ରା ଘରକୁ ନେଇ ମୋର ବନ୍ଧୁ ରଘୁନାଥ ମିଶ୍ର ପ୍ରଭୃତିଙ୍କ ଜିମା କରିଦେଲି । ସେତେବେଳକୁ ମୋର ବିପ୍ଳବୀ ବନ୍ଧୁ ଦୈତାରୀ ପାଣ୍ଡବ ଆସି ସେଠାରେ ପହଞ୍ଚି ଆମ ଯୋଜନା ବିଷୟ ଜାଣି ସାରିଥିଲେ । ମୁଁ ଅନ୍ୟ କାମର ବାହାନା ଦେଖାଇ ସେଠାରୁ ଚାଲିଆସିବା କ୍ଷଣି ରଘୁ ପ୍ରଭୃତି ତାଙ୍କ କାର୍ଯ୍ୟରେ ଲାଗି ଯାଇଥିଲେ ।

ସାହି-ଯାତ ଆରମ୍ଭ ବେଳକୁ ମୁଁ ସେଠାକୁ ଯାଇ ଦେଖିଲି ସନ୍ନ୍ୟାସୀଙ୍କ ମୁଖମଣ୍ଡଳରେ କୃଷ୍ଣ ଶ୍ମଶ୍ରୁ ପୂର୍ବପରି ବିରାଜମାନ କରୁଥିଲେ ମଧ ତାଙ୍କୁ ଶାଢ଼ି, ବ୍ଲାଉଜ ଷଢ଼େଇ ଦିଆ ବଢ଼ିଛ କାଚ ଖଡୁ ସିନ୍ଦୁର ଟୋପା ପ୍ରଭୃତିରେ ସଜା ଯାଇ ତାଙ୍କ ମସ୍ତିଷ୍କରେ ଏକ କାଗଜପଟା ଦେବୀ ମୁକୁଟ ଲଗାଇ ଦିଆଯାଇଛି । ସେ ବଡ଼ ଅପ୍ରତିଭ ଦିଶୁଥିଲେ । ସେ ମୋତେ ଦେଖି କଅଣ କହିବାକୁ ଯାଉଥିବାବେଳେ ପାଣ୍ଡବ ଭିତରୁ ବାହାରି ଦେବ ବେଶରେ ସେଠାରେ ଠିଆ ହୋଇଗଲେ । ରଘୁ ସଙ୍ଗେ ସଙ୍ଗେ ବନଦେବ ଲେଖା ହୋଇଥିବା କାଗଜ ପଟାଟି ଦୈତାରୀଙ୍କ ଅଣ୍ଟାରେ ବାନ୍ଧିଦେଇ ମୋତେ ଚାହିଁ କହିଲେ ଦେଖ, ଦେବ ଦେବୀ ଦୁହେଁ କିପରି ସୁନ୍ଦର ଦିଶୁଛନ୍ତି । ବନଦେବୀଙ୍କ ମୁଖ ମଣ୍ଡଳରେ ଗଛଲତାର ସଙ୍କେତ ଦାଢ଼ି ନିଶ ଦେଖି ତାଙ୍କୁ ବନଦେବୀ ବୋଲି ଚିହ୍ନିବା କାହାପକ୍ଷେ କଷ୍ଟକର ହେବନାହିଁ ।' ସେ କଥା ଶୁଣି ସନ୍ୟାସୀଙ୍କ ମୁହଁ ଲାଲ ପଡ଼ି ସେ ନିର୍ବାକ ହୋଇଗଲେ । ମୁଁ କୌଣସି ମତେ ମୋ ହସକୁ ଚାପି ରଖିଲି ।

ଯାତ୍ରା ଆରମ୍ଭ ହୋଇଥିବା ଖବର ଆସି ପହଞ୍ଚିବାରୁ ବନଦେବ, ବନଦେବୀଙ୍କ ହାତ ଧରି ସେ ଘରୁ ଟାଣି ଟାଣି ଗ୍ରାମ ଦାଣ୍ଡର ମଧ୍ୟସ୍ଥଳୀକୁ ଘେନିଗଲେ । ବନ ଦେବୀଙ୍କର ସେପରି ବେଶ ଦେଖି ଦେଖଣାହାରୀମାନଙ୍କ ଭିତରେ କୌତୁହଳ ସୃଷ୍ଟି ହୋଇ, ସେମାନେ ହସ ବୃଷ୍ଟିକରି ସନ୍ୟାସୀଙ୍କ ଚାରିପଟେ ବେଢ଼ିଯିବାକୁ ଲାଗିଲେ । ସେଥିରେ ସନ୍ୟାସୀ ବିବ୍ରତ ଓ ଲଜ୍ଜିତ ହୋଇ ସେଠାରୁ କୌଣସି ଗଛର ଉହାଡ଼କୁ ଚାଲିଯିବା ପାଇଁ ଚେଷ୍ଟା କରିଲାବେଳକୁ ହୁଣ୍ଡା ପାଣ୍ଡବ ବାବୁ ତାଙ୍କ ହାତକୁ ଜନତା ଭିତରକୁ ଟାଣି ଆଣି 'ହଇକିଲୋ ମାଣିକତରା, ଆଲୋ ମୋର ଦୁଃଖ ପାଶୋରା, ରେଙ୍ଗୁନ ଦେଶକୁ ଯିବୁକି ପରା' ପ୍ରଭୃତି ଭଣ୍ଡାମୀ ଗୀତମାନ ଗାଇ ବନ ଦେବୀଙ୍କୁ ଗେଲ କଲାଭଳି ତାଙ୍କ ମୁହଁରେ ହାତ ମାରି ଦାଢ଼ି ଭିଡ଼ାଭିଡ଼ି କରି ନାଚିବାକୁ ଲାଗିଲେ ।

ମୁଁ ଗୋପନରେ ରହି ସେ ଦୃଶ୍ୟସବୁ ଦେଖୁଥିଲି । ସନ୍ୟାସୀଙ୍କର ସେପରି ଦୟନୀୟ ଅବସ୍ଥା ଦେଖି କଥାଟାକୁ ଆଉ ବେଶୀଦୂର ନ ନେବା ପାଇଁ ମୁଁ ସନ୍ୟାସୀଙ୍କ ସାମ୍ନାରେ ଯାଇ ଠିଆ ହୋଇଗଲି । ସେ 'ରକ୍ଷାକର' ବୋଲି କହି ମୋତେ ଧରି ପକାଇବାକୁ ଯାଉଥିଲେ, କିନ୍ତୁ କଥାଟାକୁ ଢୋକିଦେଇ ପ୍ରକୃତିସ୍ଥ ହେଲାପରି ମୋ ଆଡ଼କୁ ଚାହିଁ

କହିଲେ, 'ଭାରି ଜୋରରେ ମୋତେ ଦୁଃଖ ଲାଗୁଛି ମୋତେ ବର୍ତ୍ତମାନ ଏଠାରୁ ଘେନିଯାଅ ।' ମୁଁ ତାଙ୍କୁ ଧରି ସାହି-ଯାତଘରକୁ ଆସିଲି । ସେ ତରତରରେ ତାଙ୍କ ଗେରୁବସ୍ତ୍ର ପାଲଟି ପକାଇ ନିଜର ବ୍ୟାଗଟି ଧରି ନଈକୂଳକୁ ଯାଉଛି କହି ଏକମୁହାଁ ହୋଇ ଧାଇଁ ଚାଲିଗଲେ । ସେହିଦିନଠାରୁ ସେ ସନ୍ନ୍ୟାସୀଙ୍କୁ ଆମେ କେହି ଆଉ ଦେଖିନାହୁଁ ।

ବେଳେ ବେଳେ ଦୋଳଯାତ୍ରା ଭିତରେ ଏପରି ହାସ୍ୟାସ୍ପଦ ଘଟଣା ଘଟୁଥିଲେ ମଧ୍ୟ ସାଧାରଣତଃ ବେପରୁଆ ହସଖୁସି ଭିତରେ ଦୋଳଯାତ୍ରାର ଚାରିଦିନ ଯାକ କଟି ଯାଉଥିଲା । ଦୋଳଯାତ୍ରା ପରେ ପାଖ ଗ୍ରାମମାନଙ୍କରେ ପଞ୍ଚଦୋଳ ମେଳଣ ହେଉଥିଲା । ସେ ସବୁକୁ ସାଙ୍ଗସାଥୀ ଗହଣରେ ବିଲ ହିଡ଼ ଦେଇ ଯାଉ ଯାଉ ମୁଗ ବିଲମାନଙ୍କରୁ ମୁଗଛୁଇଁ ଛିଣ୍ଡାଇ ଚୋବାଇ ଚୋବାଇ ମେଳଣ ଯାତ୍ରାକୁ ଯାଉଥିଲୁ । ସେଠାରେ ଘୋଡ଼ାନାଚ ଓ ନାନା ଯାତ୍ରା ଦେଖି ସନ୍ଧ୍ୟାରେ ଘରକୁ ଫେରୁଥିଲୁ ।

ଗ୍ରୀଷ୍ମଋତୁଟିତା ପିଲାମାନଙ୍କ ପାଇଁ ଏକ ଲମ୍ବା ଛୁଟି । ଆମ ଗ୍ରାମର ନଡ଼ିଆଗଛର ଛାଇ ଓ ନଡ଼ିଆ ବରଡ଼ା ବିଞ୍ଚୁଥିବା ଦକ୍ଷିଣା ସମୁଦ୍ର ପବନ ଯୋଗୁଁ ଦିନବେଳେ ଆମ ଗ୍ରାମବାସୀଙ୍କୁ ଅନ୍ୟ ଗ୍ରାମବାସୀଙ୍କ ଭଳି ଗରମ ବେଶୀ ବାଧେନାହିଁ । ଆମେ ପିଲାମାନେ ଦିନଯାକ ବାହାରେ ଖେଳା ଖେଳି ବୁଲାବୁଲି ଓ ଗପସପ କରି ସମୟ କଟାଇ ଦେଉ । ସେତେବେଳେ ଇଲେକ୍‌ଟ୍ରିକର ନାମଗନ୍ଧ ନ ଥାଏ, ତେଣୁ ଘରେ ଇଲେକ୍‌ଟ୍ରିକ ପଙ୍ଖା ବା ଆସିବ କେଉଁଠୁ ? ତେଣୁ ରାତିରେ ଘର ଭିତରେ ଶୋଇବା ଅସମ୍ଭବ ହୋଇଉଠେ । ଆମ ଗ୍ରାମର ଦକ୍ଷିଣ ପଟେ ୧୦ ଏକରରୁ ଊର୍ଦ୍ଧ୍ୱ ଏକ ବଡ଼ ପୋଖରୀ ରହିଛି । ତା'ର ଦକ୍ଷିଣ ହୁଡ଼ା ଆରପଟେ ପୁରା ଆଡ଼କୁ କେବଳ ବିଲ ସବୁ ରହିଥିବାରୁ ଦକ୍ଷିଣରୁ ଥଣ୍ଡା ପବନ ବହେ । ତେଣୁ ସେହି ବଡ଼ ପୋଖରୀ ପୂର୍ବ ତୁଠରେ ଥିବା ଉଚ୍ଚା ମଣ୍ଡପକୁ ରାତିରେ ବେଳେ ବେଳେ ଭଲ ପବନ ବହେ ।

ଆମେ ଗ୍ରାମରେ ଏ'ଠି ସେ'ଠି ଶୋଇବାକୁ ଚେଷ୍ଟା କରୁ । ମଶା ଖାଇଲେ ଗ୍ରାମମୁଣ୍ଡ ଦୋଳବେଦୀ ଉପରକୁ ଯାଉ । ସେଠାରେ ପବନ ନ ଥିଲେ, ମଶିଣା ଓ ତକିଆ ଜାକି ଅନ୍ଧାରରେ ଗାଁ ଠାରୁ ପ୍ରାୟ ଦୁଇ ଫର୍ଲଙ୍ଗଦୂରରେ ଥିବା ବଡ଼ ପୋଖରୀ ମଣ୍ଡପକୁ ଯାଉ । ସେଠାରେ ମଧ୍ୟ ସବୁବେଳେ ପବନ ନମିଳିବାରୁ ଛଟପଟ ଲାଗେ । ବେଳେବେଳେ ଭୂତପ୍ରେତ ମନେ ପଡ଼ି ଡ଼ର ଲାଗେ ।

ବାଲିଭୂତ- ପିଲାମାନଙ୍କୁ ବହୁତ ଭୂତ ଗୁଜବ ଜଣାଥାଏ । କେଉଁଠି କେଉଁ ଗଛ ଡାଳରେ ବ୍ରହ୍ମରାକ୍ଷସ ଗୋଡ଼ ଓହଳାଇ ବସିଥାଏ । କେଉଁଠି ବାବନା ଭୂତ ମୁଣ୍ଡବାଳ ଫର ଫର କରି ଗଛ ଅଗରେ ବସି ପିଲାଙ୍କୁ ଧରି ଖାଇବ ବୋଲି ତଳକୁ ଅନାଇ ଅପେକ୍ଷା

କରି ବସିଥାଏ । କେଉଁଠି ଡାଆଣୀ ମଣିଷମାନେ ମୁଣ୍ଡ ତଳକୁ ଓ ଗୋଡ଼ ଉପରକୁ କରି ଗୁହ ପଡ଼ିଆରେ ଗୁହ ଚରୁଥାଆନ୍ତି । ଚଣ୍ଡୀ ଚାମଣ୍ଡା ପ୍ରେତ ଚିରଗୁଣି କିଏ କେଉଁଠି ଥାଆନ୍ତି, ତାହା ଆମ ଭିତରେ ବିଶଦ ଭାବରେ ଆଲୋଚିତ ହୁଏ । ଆମେ ଜହ୍ନ ରାତିରେ ଯିବାଆସିବା ଜଲାବେଳେ ମଧ ଗଛ ଡାଳରେ ଛାଇଟା ଏପଟ ସେପଟ ହେଲେ ବା କୌଣସି ବୁଦାରୁ ଖସ୍ ଖସ୍ ଶବ୍ଦଟାଏ ହେଲେ ଭୁତ ବୋଲି ଭାବି 'ଡର କାହାକୁ ଭୟ କାହାକୁ ଈଶ୍ୱର ଅଛନ୍ତି ଚଉବାହାକୁ' ବୋଲି ପାଟିକରି ଗୀତ ଗାଇବା ସଙ୍ଗେ ସଙ୍ଗେ ପରସ୍ପରକୁ ଜାକି ପକାଉ ।

ଥରେ ଅନ୍ଧାରୁଆ ଖରାଦିନ ରାତିରେ ପବନ ପାଇବା ପାଇଁ ଆମେ କେତେଜଣ ପିଲା ବଡ଼ପୋଖରୀ ମଣ୍ଡପ ଉପରେ ଶୋଇଥିବା ସମୟରେ କେତେକ ଶବ୍ଦ ଓ ସଂକେତରୁ ଆମେ ଭୟଭୀତ ହୋଇ ପଡ଼ିଥିଲୁ । ହଠାତ୍ ପୋଖରୀର ଦକ୍ଷିଣରେ ଥିବା ଶ୍ମଶାନର ପୋଖରୀ ତୁଠରେ ପାଣି ଗବ୍ ଗବ୍ ଶୁଭିଲା । ତା'ପରେ ଗୋଟାଏ ଘୋଷରା ଶବ୍ଦ ଓ ତା' ସଙ୍ଗେ ଟେକା ଫିଙ୍ଗାଫିଙ୍ଗି ଶବ୍ଦ ଶୁଣାଗଲା । ଆମେ ସେ ସବୁ କାନ ପାରି ଶୁଣିଲା ପରେ ଆମ ଭିତରୁ ଜଣେ କହିଲା ସେହି ଶବ୍ଦ ସବୁ ଚାମଣ୍ଡା ଭୁତର କାର୍ଯ୍ୟ । ଆମେ ନିରେଖି କରି ଦେଖିବାରେ ଆମ ଭିତରୁ ଜଣକୁ କଳା ଘୁଷୁରୀ ପରି କଅଣ ଗୋଟାଏ ଦେଖାଗଲା । ସେଥିରେ ଆମେ ସେଇଟା ଚାମଣ୍ଡା ବୋଲି ସ୍ଥିର କରି, ଶ୍ମଶାନରୁ ଘୁଷୁରୀ ରୂପରେ ଚାମଣ୍ଡା ଆସି ପୋଖରୀ ତୁଠରେ ଗେଣ୍ଡା ଶାମୁକା ଅଣ୍ଡାଳି ସେସବୁ ଖାଇ ଖୋଳ ସବୁ ଫିଙ୍ଗାଫିଙ୍ଗି କରୁଛି ବୋଲି ଧରିନେଲୁ ।

ଟିକିଏ ପରେ ସେହି ପଟେ ଆଲୁଅଟାଏ ଜଳି ଲିଭି ଦଉଡ଼ା ଦଉଡ଼ି କରିବା ଆରମ୍ଭ କରିଦେଲା । ପୋଖରୀ ହୁଡ଼ା ଉପର ଗଛ ଉପରୁ ଠପ୍ ଠପ୍ କରି ଡେଉଁଥିବାର ଶବ୍ଦ ହେଲା । ତା'ପରେ ଠକ୍ ଠକ୍ ଶବ୍ଦରେ ଦଉଡ଼ା ଦଉଡ଼ି ହେଉଥିବାର ମଧ ଜଣା ପଡ଼ିଲା । ଆମେ ସେ ସବୁର ତର୍ଜମା କରି ପୋଖରୀ ହୁଡ଼ା ଉପର ଭୁତମାନେ ସମବେତ ହୋଇ ନାଟ କରୁଛନ୍ତି ବୋଲି ଠିକ୍ କଲୁ । ଚାମୁଣ୍ଡା ସଙ୍ଗେ ଆଲୁଅ ଜାଳି ଚିରଗୁଣି, ଭୁତ ଗଛ ଉପରୁ ଲମ୍ଫ ପ୍ରଦାନ କରୁଥିବା ବ୍ରହ୍ମରାକ୍ଷସକୁ ସଙ୍ଗରେ ଧରି ବାବନା ଭୁତକୁ ନେଇ ସେ ନାଟର ଆୟୋଜନ କରିଛି । ସେଥିର ଆମର କିଛି ଗୋଟାଏ ଅଘଟନ ଘଟିବାର ଆଶଙ୍କା କରି ଆମେ ବିବ୍ରତ ହୋଇପଡ଼ିଲୁ ।

କିଛି ସମୟ ପରେ ସେହି ଠକ୍ ଠକ୍ ଶବ୍ଦ ସହିତ ଚିରଗୁଣୀ ଆଲୁଅଟା ଜଳି ଲିଭି ଆମ ମଣ୍ଡପର ପୂର୍ବ ଦିଗରେ ଥିବା ପୋଖରୀ ହୁଡ଼ା ଉପରୁ ଆମ ମଣ୍ଡପ ଆଡ଼କୁ ଓହ୍ଲାଇ ଆସୁଥିବା ପରି ଜଣାଗଲା । ଡରରେ ଆମ ପାଟିରୁ ଆଉ କଥା ବାହାରିଲା ନାହିଁ । ଆମେ ଜାକି ଜୁକି ହୋଇ ଶୋଇ ପଡ଼ିଲୁ । ବ୍ରାହ୍ମଣର ବିଶୁଦ୍ଧ ପଇତା ନିକଟକୁ ଭୁତ

ଆସେ ନାହିଁ ବିଚାରି ଆମ ଭିତରେ ସେହି ଦିନ ବାପ ଶ୍ରାଦ୍ଧ ପାଇଁ ବିଶୁଦ୍ଧ ନୂଆ ପଇତା ପିନ୍ଧିଥିବା ପିଲାର ପଇତାକୁ ଭିଡ଼ିଧରିଲୁ । କିନ୍ତୁ କିଛି ନମାନି ଭୂତମାନଙ୍କର ସେ ଶବ୍ଦ ଓ ଆଲୋକ ଆସି ମଣ୍ଡପ ନିକଟରେ ପହଞ୍ଚିଗଲା । ଆମେ ସମସ୍ତେ ମୁହଁ ଘୋଡ଼ାଇ ପକାଇଲୁ । ଡ଼ରରେ ଆମ ଭିତରୁ ଜଣେ ଦୁଇଜଣଙ୍କର ଏକ ଦୁଇ ହୋଇଯାଇ ସେ ସ୍ଥାନ ଅପବିତ୍ର ହୋଇଯିବାରୁ ଆମ ଭୟ ଆହୁରି ବଢ଼ିଗଲା ।

ସେହି ସମୟରେ ଡ଼ାକ ଶୁଭିଲା 'ପିଲାଏ ଶୋଇପଡ଼ିଲ କି ? ପାଚିଲା କଇଥ ନିଅ । ତା'ପରେ ଆମ ଉପରେ ଟର୍ଚ୍ଚ ପଡୁଥିବାର ଜାଣି ଆମ ମୁହଁରୁ ଲୁଗା କାଢ଼ିଲୁ । ଆମ ଦେହକୁ ଗମ୍ ଗମ୍ ଝାଳ ବୋହୁଥିଲା । ଆମେ ଅତ୍ୟନ୍ତ ଭୟଭୀତ ହୋଇଥିବାର ଜାଣି ଟର୍ଚ୍ଚଧାରୀ ଆମକୁ କହିଲେ 'ହଇବେ ପାଠ ପଢୁଆ ପିଲାଗୁଡ଼ାକ ତୁମେ ମୂର୍ଖଙ୍କ ପରି ଏପରି କାହିଁକି ହେଉଛ ? ତାଙ୍କ ଚିହ୍ନା ପାଟି ଶୁଣି ଆମ ପିଣ୍ଡରେ ପ୍ରାଣ ପଶିଲା । ଆମେ ମୁଣ୍ଡ ଟେକିଲୁ । ଜଣେ କହିପକାଇଲା 'ଭୂତ ନୁହଁ, ବାଲିଆ ଭାଇନା ।'

ବାଲିଆ ଭାଇନା ବା ବାଲୁକେଶ୍ୱର ମିଶ୍ର ସତ୍ୟବାଦୀ ଗୁରୁକୁଳ ଛାତ୍ର ଥାଇ ପିଲାଦିନରୁ ନିର୍ଭୀକ ଓ ସାହସୀ ହେବାକୁ ଶିଖିଥିଲେ । ବନ ବିଦ୍ୟାଳୟ ଗୁରୁମାନେ ଅନ୍ଧାର ରାତିରେ ମଧ ଛାତ୍ରମାନଙ୍କୁ ସଙ୍ଗରେ ଶ୍ମଶାନକୁ ନେଇ ଶବ ଦାହ କରାଇ ନିର୍ଭୟ ହେବାକୁ ତାଲିମ ଦେଇଥିଲେ । ଭୂତ ଓ ଠାକୁରାଣୀ ଲାଗିବା, କାଳେସୀ ବିଜେ ହେବା ପ୍ରଭୃତି ମିଥ୍ୟା ପ୍ରତିପାଦିତ କରିବାକୁ ଶିକ୍ଷକମାନେ ପିଲାଙ୍କ ସମକ୍ଷରେ ହଇଜା, ବସନ୍ତ ସମୟରେ ଜନତାକୁ ଭୟଭୀତ କରାଉଥିବା କାଳେସୀମାନଙ୍କୁ ବେତ୍ରାଘାତ କରୁଥିଲେ ।

ପରିଣତ ବୟସରେ ବାଲିଆ ଭାଇନାଙ୍କ ଅଣ୍ଟାଟି ନଇଁ ଯାଇଥିଲା । ସେ ଆଗକୁ ଢ଼ଳି ବାଡ଼ି ଧରି ଚାଲୁଥିଲେ । ତାଙ୍କୁ ରାତିରେ ଭଲ ନିଦ ହେଉନଥିବାରୁ ଓ ରାତ୍ରିରେ ଝାଡ଼ା ଯିବାର ଅଭ୍ୟାସ ଥିବାରୁ ସେ ଖଡ଼ମ ମାଡ଼ି ଟର୍ଚ୍ଚଟିଏ ଧରି ବଡ଼ପୋଖରୀ ହୁଡ଼ାରେ ରାତ୍ରିସାରା ବୁଲୁଥିଲେ । ସେ ଦିନ ସେ ପୋଖରୀ ହୁଡ଼ା ପଛପଟେ ଝାଡ଼ା ବସିସାରି ସେହି ପୋଖରୀ ତୁଠରେ ଶୌଚ କରିବା ପାଇଁ ତୁଠ ପରିଷ୍କାର କରିବାକୁ ସେଠାରେ ପଡ଼ିଥିବା ଗେଣ୍ଡା ଶାମୁକା ଖୋଳ ଓ ଟେକା ଫୋପଡ଼ା ଫୋପଡ଼ି କରି ନିଜ କାର୍ଯ୍ୟ ସାରି ଟର୍ଚ୍ଚ ଆଲୁଅ ପକାଇ ପୋଖରୀ ହୁଡ଼ା ଉପରକୁ ଉଠିଥିଲେ । ସେଠାରେ ଗଛରୁ ପଡୁଥିବା ପାଚିଲା କଇଥ ଗୋଟାଇବା ପାଇଁ ତାଙ୍କ ଖଡ଼ମ ପିନ୍ଧିଥିବା ଅବସ୍ଥାରେ ଏପଟ ସେପଟ ଦଉଡ଼ି କଇଥ ସହିତ ମଣ୍ଡପକୁ ଆସିଥିଲେ ।

## ଗ୍ରାମ୍ୟ ପର୍ବ ଓ ଥିଏଟର :

ଗ୍ରୀଷ୍ମ କାଳରେ ଗରମର ପ୍ରଭାବରୁ ନିଦ ନ ହେବାରୁ ଲୋକେ କୌଣସିମତେ ଉଜାଗର ରହି ରାତି କଟାଇବା ପାଇଁ ଶୀତଳଷଷ୍ଠୀ ପାଇଁ ବାଣ ପ୍ରସ୍ତୁତ କରିବାକୁ ଦଳ

ଦଳ ହୋଇ ବାହାରେ ଏକାଠି ବସି ବାଣ ବାଢ଼େଇ (ବାଣର ପ୍ରସ୍ତୁତି ନିମନ୍ତେ) ରାତି କଟାଇ ଦିଅନ୍ତି ।

ସେ ସମୟରେ ଗ୍ରାମମାନଙ୍କରେ ଥିଏଟରମାନ ମଧ୍ୟ କରାଯାଏ । ଥିଏଟର ରିହରସଲରେ ମଧ୍ୟ ଅନିଦ୍ରା ରହି ତାଳପତ୍ର ବିଞ୍ଚଣାରେ ବିଞ୍ଚି ହୋଇ ହୋଇ ରାତି କଟିଯାଏ । ଆମ ଗ୍ରାମରେ ଅନେକ ଦିନ ଧରି ବୟସ୍କ ଲୋକମାନଙ୍କ ଭିତରେ ମତଭେଦ ଯୋଗୁଁ ଥିଏଟର ବନ୍ଦ ହୋଇଯାଇଥିଲା । ମୁଁ ମୋର ବନ୍ଧୁ ରଘୁନାଥ ମିଶ୍ର ଓ ଅନ୍ୟ ସାଥୀପିଲାଙ୍କୁ ଧରି ଅଳ୍ପ ଖର୍ଚ୍ଚରେ ଓ ବୟସ୍କମାନଙ୍କ ବିନା ସାହାଯ୍ୟରେ ଏକ ଥିଏଟର କରାଇବାର ଯୋଜନା କଲୁ । 'ବୀରବାଳା' ନାମକ ଏକ ନାଟକର ରିହରସଲ ଆରମ୍ଭ ହେଲା । ଆମେ ବୀର ରାମଚନ୍ଦ୍ରପୁର (ଆମ ଗ୍ରାମଠାରୁ ଦୁଇ/ତିନି ମାଇଲ ଦୂର) ଯାଇ ସେମାନଙ୍କର ପୁରୁଣା ଛିଣ୍ଡା ସିନ କେତେଟା ମାଗି ସାଇକେଲ ପଛରେ ଲଦି ଘେନି ଆସିଲୁ । ଆମ ଗ୍ରାମ ନିକଟ ନହଳା ଗ୍ରାମରେ ଗୋଟିଏ ଯାତ୍ରାପାର୍ଟି ଭାଙ୍ଗି ଯାଇଥିଲା । ତାଙ୍କର କେତେକ ପୁରୁଣା ରାଜା ରାଣୀ ଡ୍ରେସ ଥିଲା, ଆମେ ସେଗୁଡ଼ିକ ମଧ୍ୟ ସଂଗ୍ରହ କଲୁ । ଆମ ପିଲାଙ୍କ ଭିତରୁ ଜଣକେ ପଇସେ ଦୁଇ ପଇସା ଚାନ୍ଦା ଆଦାୟ କରାଗଲା । ସେଥିରେ ଅଭିନେତାମାନଙ୍କ ସାଜସଜ୍ଜା ପାଇଁ ଆବଶ୍ୟକ ସାମଗ୍ରୀ କିଣାଯିବାର ବ୍ୟବସ୍ଥା ହେଲା ।

ଆମ ଗ୍ରାମର ଜଣେ ବିଶିଷ୍ଟ ବ୍ୟକ୍ତି ଆମପ୍ରତି ସହାନୁଭୂତି ଦେଖାଇ ଆମକୁ ଟଙ୍କାଟାଏ ଚାନ୍ଦା ଦେଇଥିବାରୁ ଆମେ ତାଙ୍କ ପ୍ରତି କୃତଜ୍ଞ ଥିଲୁ । ସେ ଆମର ପରାମର୍ଶଦାତା ଭାବରେ ଆମ ଥିଏଟର ଆରମ୍ଭରେ ସୂତ୍ରଧର ଭାବରେ କିଛି କହିବା ପାଇଁ ମଧ୍ୟ ଇଚ୍ଛା ପ୍ରକାଶ କରିଥିଲେ । ଦୋଳ ଯାତ୍ରାବେଳେ ଦୋଳବେଦୀ ନିକଟରେ ଗୋଟିଏ ଘରଡ଼ିହ ଉପରେ ଥିଏଟରଟି କରିବାର ବ୍ୟବସ୍ଥା ହେଲା । ଆମେ ପେଣ୍ଡାଲ ତିଆରିରେ ଲାଗି ପଡ଼ିଲୁ । ମଗାଯଚା କରି ବାଉଁଶ ଚାଞ୍ଚ ପ୍ରଭୃତି ଆଣି କେତେକ ଉତ୍ସାହୀ ଗ୍ରାମବାସୀଙ୍କ ସାହାଯ୍ୟରେ ପେଣ୍ଡାଲଟିଏ ଠିଆ କରିଦେଲୁ । ପୁରୁଣାସିନ୍ ସବୁ ଆଗରେ ବାନ୍ଧିଲୁ, କଡ଼ ସିନମାନଙ୍କ ପାଇଁ ଶାଢ଼ୀ ମଗାଇ ଆଣି କାମ ଚଳାଇଲୁ ।

ପିଲାଙ୍କ ଥିଏଟରରେ ବେଶୀ ଦର୍ଶକ ହୋଇ ନପାରନ୍ତି ବୋଲି ଦୋଳବେଦୀ ନିକଟରେ ଆମେ ଥିଏଟର କରିବାର ବ୍ୟବସ୍ଥା କରିଥିଲୁ । ଦେଖଣାହାରୀ ମଧ୍ୟ କିଛି ଜୁଟି ସାମନା ଚାଞ୍ଚ ଉପରେ ବସିଲେ । ଥିଏଟର ଆରମ୍ଭ ପୂର୍ବରୁ ସୂତ୍ରଧର ତାଙ୍କ ବକ୍ତବ୍ୟ ଆରମ୍ଭ କଲେ । ଆମ ଗ୍ରାମ ଆଚାର୍ଯ୍ୟ ହରିହର ଓ ନୀଳକଣ୍ଠଙ୍କ ଗ୍ରାମ ହୋଇଥିବାରୁ ନିଶାଦ୍ରବ୍ୟ ବ୍ୟବହାର କରିବା ମନାଥିଲା, କିନ୍ତୁ କେହି କେହି ଲୁଚାଇ କରି ଭାଙ୍ଗ ଓ ଅନ୍ୟ ନିଶା ଖାଉଥିଲେ । 'ସୂତ୍ରଧର' ସେମାନଙ୍କ ମଧ୍ୟରୁ ଜଣେ । ଆମ ଅଭିନେତାଙ୍କ

ଭିତରେ ଥିବା ଜଣେ ବୟସ୍କ ଲୋକ ମଧ୍ୟ ଅନ୍ୟତମ । ସୂତ୍ରଧର ସେ'ଦିନ ତାଙ୍କ ନିଶାର ପରିମାଣ ଟିକିଏ ବଢ଼ାଇ ଦେଇଥିଲେ । ଅଭିନେତା ମଧ୍ୟ ନିଜେ ନିଶାପାନ କରିବା ସଙ୍ଗେ ସଙ୍ଗେ ଆମ ଉଦ୍ୟୋକ୍ତାଙ୍କୁ ନ ଜଣାଇ କେତେକ ବାଳକ ଅଭିନେତାଙ୍କୁ ମଧ୍ୟ ଭାଙ୍ଗ ପିଆଇ ଦେଇଥିଲେ ।

ସୂତ୍ରଧର ଭକ୍ତକବି ମଧୁସୂଦନଙ୍କ 'ହେ ଅନନ୍ତ ମହାପ୍ରଭୁ ଅପାର ମହିମା ତବ କେ ପାରିବ ଜାଣି' ପଦକ କେବେ କାନ୍ଦିଲା ଭଳି କେବେ ହସିଲା ଭଳି କେବେ ରାଗିଲା ଭଳି ପ୍ରଭୃତି ନାନା ସ୍ୱରରେ ଓ ନାନା ଭଙ୍ଗୀରେ ଆବୃତ୍ତି କରୁ କରୁ ଘଣ୍ଟାଏ ବିତିଗଲା । ସାମନାରୁ ଦର୍ଶକମାନେ ବିରକ୍ତିରେ ଉଠି ଚାଲିଗଲେ । ଶେଷରେ ଜଣେ ଉଦ୍ୟୋକ୍ତା ସୂତ୍ରଧରଙ୍କ କଛାରେ ଛତା ବେଣ୍ଟ ପୂରାଇ ତାଙ୍କୁ ଷ୍ଟେଜ ଭିତରକୁ ଘେନି ଆସିଲେ । ଥିଏଟର ଆରମ୍ଭରେ ନିଶାଗ୍ରସ୍ତ ଅଭିନେତାମାନଙ୍କୁ ଭିଡ଼ି ଭିଡ଼ି ସାମନାକୁ ଆଣିଲା ବେଳକୁ ଜଣେ କିଏ ହଠାତ୍ ସିନ୍‌ଟା ଟାଣି ଦେବାରୁ ଭିଡ଼ା ହୋଇ ଆସିଥିବା ଅଭିନେତାଙ୍କ ମୁଣ୍ଡରେ ପଡ଼ି ସେ ଚିତ୍କାର କଲେ । ଥିଏଟରର ସମାପ୍ତି ଘଟିଥିଲା ।

ଥିଏଟରରୁ ନିବୃତ୍ତ ହୋଇ ଆମେ ଅନ୍ୟ ଗ୍ରାମ - ହିତକର କାର୍ଯ୍ୟରେ ହାତ ଦେଇଥିବାରୁ ଜଣକର ଖାଲି ପଡ଼ିଥିବା ଦୋକାନ ଘରେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ନାମରେ ଆମେ ଗୋଟିଏ ଅନନ୍ତ ପାଠାଗାର ପ୍ରତିଷ୍ଠା କରିଥିଲୁ । (ଏବେ ସେ ପାଠାଗାରର ଅବଶେଷ ଗାଁ ମଝି ପୁରାଣ ମଣ୍ଡପରେ ପଡ଼ି ରହିଥିବାରୁ ସେଥିପାଇଁ ସ୍ୱତନ୍ତ୍ର ଘର ନିର୍ମାଣ ପାଇଁ ସେ ମଣ୍ଡପ ପଛରେ ଥିବା ଖଣ୍ଡିଏ ଜମି ମୁଁ ସେ ଉଦ୍ଦେଶ୍ୟରେ ଦାନ କରିଛି ।)

ଏହିପରି ଯୋଜନାରେ ମୋର ପ୍ରଧାନ ସାଥୀ ଥିଲେ ସଂଗ୍ରାମୀ ରଘୁନାଥ ମିଶ୍ର । ତାଙ୍କରି ସାହଚର୍ଯ୍ୟରେ ଗ୍ରାମ ଆଖପାଖ ଅଞ୍ଚଳରୁ ଦସ୍ତଖତ ସଂଗ୍ରହ କରାଇ ଆମ ଗ୍ରାମରେ ଗୋଟିଏ ପୋଷ୍ଟ ଅଫିସ ବସାଇବା ପାଇଁ ଆମେ ପୋଷ୍ଟ ମାଷ୍ଟର ଜେନେରାଲଙ୍କ ନିକଟକୁ ଦରଖାସ୍ତ ଦିଆଇଥିଲୁ । କେତେକ ଲୋକଙ୍କ ଆପତ୍ତି ସତ୍ତ୍ୱେ ଆମ ଗ୍ରାମରେ ପୋଷ୍ଟ ଅଫିସଟିଏ ଖୋଲାଯାଇଥିଲା । ମୋର ପ୍ରଧାନ ସହାୟକ ତା୨୨.୮.୮୮ରେ ସ୍ୱର୍ଗାରୋହଣ କରିବା ପରେ ସେ କାର୍ଯ୍ୟ ସବୁ ମୋ ପାଇଁ ସ୍ମୃତି ପାଲଟିଯାଇଛି ।



# ପାଠ ବନ୍ଦ ଓ ପରେ ପାଠପଢ଼ା

ଜେଲରୁ ଫେରି ଗ୍ରାମରେ ରହିବା ପରେ ମୁଁ ପାଠ ପଢ଼ିବାକୁ ଆଉ କଟକ ଫେରିଲି ନାହିଁ । ସ୍ୱାଧୀନତା ସଂଗ୍ରାମ ନିକଟେଇ ଆସୁଥିବା ମୋର ଦୃଢ଼ ଧାରଣା ହୋଇଥିଲା; ତେଣୁ ସଂଗ୍ରାମରେ ଯୋଗଦେବା ପାଇଁ ମୁଁ ନିଜକୁ ପ୍ରସ୍ତୁତ କରିବାକୁ ଆମ ଘରଠାରୁ ଟିକିଏ ଦୂରରେ ଆଉ ଗୋଟିଏ ଚାଳଘରେ ରହି ସେଠାକୁ ବହୁ ଖବର କାଗଜ ଓ ବହି ମଗାଇ ପଢ଼ିବାରେ ଲାଗିଲି ।

ସେ ସମୟରେ ଗୋଟିଏ ଛାତ୍ର ସମ୍ମିଳନୀରେ ଉଦ୍‌ବୋଧନ ଦେବା ପାଇଁ ନେତାଜୀ ସୁଭାଷ ଓଡ଼ିଶା ଗସ୍ତରେ ଆସିଲେ । ଓଡ଼ିଶା କଂଗ୍ରେସର ତତ୍କାଳୀନ ସଭାପତି ପଣ୍ଡିତ ନୀଳକଣ୍ଠ କେନ୍ଦ୍ର କଂଗ୍ରେସ କମିଟିକୁ ବେଖାତିର କରି ସୁଭାଷଙ୍କ ବିପ୍ଳବ ବାର୍ତ୍ତା ଓଡ଼ିଶାବାସୀଙ୍କୁ ଶୁଣାଇବା ପାଇଁ ସୁଭାଷଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ଓଡ଼ିଶାର ନାନା ସ୍ଥାନରେ ସଭାସମିତିର ବ୍ୟବସ୍ଥା କଲେ ।

ସୁଭାଷଙ୍କର ସେହି ଯାତ୍ରାରେ ତାଙ୍କ ସଙ୍ଗେ କିଛି ବାଟ ଯାତ୍ରା କରିବାର ସୁଯୋଗ ମୋତେ ମିଳିଥିଲା । ସୁଭାଷଙ୍କୁ ଚାଷୀ, ଜମିଦାର, ଛାତ୍ର, ଶିକ୍ଷକ ନିର୍ବିଶେଷରେ ସମସ୍ତେ ସ୍ୱାଗତ କରି ତାଙ୍କ ବୈପ୍ଳବିକ ଭାଷଣ ଶୁଣିବାକୁ ବ୍ୟଗ୍ର ଥିଲେ । ସୁଭାଷ କଂଗ୍ରେସ ଛାଡ଼ି ଥିବାରୁ କେତେକ କଂଗ୍ରେସ କର୍ତ୍ତା ତାଙ୍କର ବଦନାମ କରି ସେ ଓ ନୀଳକଣ୍ଠ ଦୁହେଁ ପ୍ରତିକ୍ରୀୟାଶୀଳ ବ୍ୟକ୍ତିମାନଙ୍କ ସଙ୍ଗେ ହାତ ମିଳାଇଛନ୍ତି ବୋଲି ପ୍ରଚାର କରି ସୁଭାଷଙ୍କ ସଭା ସବୁ ଭଣ୍ଡୁର କରିବାକୁ ଚେଷ୍ଟା କଲେ ।

ପୁରୀର ବଡ଼ ଦାଣ୍ଡରେ ଏକ ବିରାଟ ସାଧାରଣ ସଭାରେ ସୁଭାଷ ଭାଷଣ ଦେବାକୁ ଉଠିବା ପୂର୍ବରୁ, ଓଡ଼ିଶାର ତତ୍କାଳୀନ ଜଣେ କେନ୍ଦ୍ର କମିଟିର କଂଗ୍ରେସୀନେତାଙ୍କ ପ୍ରେରଣାରେ ପୁରୀର କେତେକ କଂଗ୍ରେସୀ ଯୁବକର୍ମୀ ଘାସବିଡ଼ା ଦେଖାଇ ବୁଲା ଷଣ୍ଢମାନଙ୍କୁ ସଭା ନିକଟକୁ ଡାକିଆଣି ଘାସବିଡ଼ାସବୁ ସଭା ଭିତରକୁ ପକାଇଦେଲେ । ଷଣ୍ଢମାନେ ଲୋକଙ୍କୁ ଦଳିଚକଟି ସଭାଭିତରେ ପଶିବାକୁ ଚେଷ୍ଟା କରିବାରୁ ଲୋକେ ଇତଃସ୍ତତ ହୋଇ ପଡ଼ିଲେ ।

ସେତିକିବେଳେ ସଭାପତି ସୁଭାଷଙ୍କୁ ଚିହ୍ନାଇ ଭାଷଣ ପାଇଁ ଡାକିବା ପୂର୍ବରୁ ସୁଭାଷ ଠିଆ ହୋଇଯାଇ ତାଙ୍କ ଭାଷଣ ଆରମ୍ଭ କରି ଦେଇ କହିଲେ 'ଭାଇଓ ଏ ସଂଗ୍ରାମ ନେହିଁହେଁ, ଐସି ସଂଗ୍ରାମ ସୁରୁ କରେଙ୍ଗେ ଜିସମେ କଲ ସେ କଲ ସ୍ୱରାଜ ମିଲ ଯାଏଗା ।'

ସେହି ବଜ୍ର ନିର୍ଘୋଷ ଭାଷଣରେ ଜନତା ସ୍ଥିର ହୋଇଗଲେ । ଷଣ୍ଢମାନେ ପଳାଇଲେ । ସୁଭାଷ ପ୍ରାୟ ୧ ଘଣ୍ଟା କାଳ ସରଳ ହିନ୍ଦୀରେ ଭାଷଣ ଦେଇ ଲୋକଙ୍କ ଧମନୀରେ ରକ୍ତ ଗରମ କରି ଦେଇଥିଲେ ।

ସୁଭାଷଙ୍କ ସାନିଧରେ ଦିନେ ଦୁଇଦିନ ରହିବା ପରେ ମୁଁ ଗ୍ରାମକୁ ଫେରି ସୁଭାଷଙ୍କ ବାଣୀ ପ୍ରଚାର କରି ଲୋକଙ୍କୁ ଭବିଷ୍ୟତ ସଂଗ୍ରାମ ପାଇଁ ପ୍ରସ୍ତୁତ କରିବାକୁ କର୍ମୀ ସଂଗ୍ରହ କରିବା ପାଇଁ ମୋ ରହିବା ଘର ବା ଅଫିସକୁ ଯୁବକମାନଙ୍କୁ ଡ଼କାଇ ସେମାନଙ୍କ ସଙ୍ଗେ ଆଲୋଚନା କରିବା ଆରମ୍ଭ କଲି ।

ସେହି ସମୟରେ ସଂଗ୍ରାମ ପାଇଁ ଦେଶକୁ ପ୍ରସ୍ତୁତ କରିବା ପାଇଁ ହିନ୍ଦୁ ମୁସଲମାନ ଏକତା ଆଣିବା ସୁଭାଷଙ୍କର ଏକମାତ୍ର ଚିନ୍ତା ଥିଲା । ମୁଁ କଲିକତା ଯାଇ ତାଙ୍କୁ ଭେଟିଲା ବେଳକୁ ସେ ଇଂରେଜଙ୍କ ଅନ୍ଧକୂପ ହତ୍ୟା ସ୍ମୃତି ସ୍ତମ୍ଭ ବା କଲିକତା ହାଇକୋର୍ଟ ସାମ୍ନାରେ ଥିବା ହଲୱେଲ ମନୋମେଣ୍ଟ ଭଙ୍ଗାଇବାର ଉଦ୍ୟମ କରୁଥିଲେ । ଏହା ଭାରତୀୟ ଶାସକଙ୍କ ମସ୍ତକରେ କଳଙ୍କ ବୋଳିବା ପାଇଁ ଗଢ଼ା ଯାଇଥିଲା । ନବାବ ସିରାଜଉଦ୍ଦୌଲ୍ଲା ଗୋଟିଏ କ୍ଷୁଦ୍ର କୋଠରୀରେ ୧୨୨ ଜଣ ଇଂରେଜ ବନ୍ଦୀଙ୍କୁ ରଖାଇ ଶ୍ୱାସରୁଦ୍ଧ କରି ମାରିଥିବାର ଅଭିଯୋଗ କରି ତା'ର ସ୍ମାରକୀ ସ୍ୱରୂପ କଲିକତାର ମଧ୍ୟସ୍ଥଳୀରେ ଭାରତୀୟ ସୁଲତାନଙ୍କ ଅମାନୁଷିକ ନିଷ୍ଠୁରତା ପ୍ରତିପାଦନ କରିବା ପାଇଁ ଇଂରେଜ ସରକାର ସେହି ସ୍ତମ୍ଭ ଗଢ଼ାଇଥିଲେ । ସେପରି ରଖାଇବା ଆଦୌ ସମ୍ଭବପର ନୁହେଁ ଓ ତାହା ଇଂରେଜଙ୍କର ଭାରତୀୟଙ୍କୁ ବଦନାମ କରିବାର ଏକ କାରସାଦି ବୋଲି ପ୍ରମାଣ କରିବାକୁ ହିନ୍ଦୁ ଓ ମୁସଲମାନମାନଙ୍କୁ ଏକତ୍ର କରି ସେ ସ୍ତମ୍ଭଟି ଭାଙ୍ଗିବା ପାଇଁ ସୁଭାଷ ଯୋଜନା କରିଥିଲେ ।

କଂଗ୍ରେସ ସଂଗ୍ରାମ ଘୋଷଣା ନ କରି ରୁଷିଲା ଭଳି ପ୍ରାଦେଶିକ କ୍ଷମତା ମଧ ଛାଡ଼ିଦେଇ ଇଂରେଜ ସରକାରଙ୍କ ହାତକୁ ଯୁଦ୍ଧ ସମୟରେ ସମସ୍ତ କ୍ଷମତା ବଢ଼ାଇଦେବା ସୁଭାଷଙ୍କର ସହ୍ୟ ହେଉ ନ ଥିଲା । ପ୍ରଦେଶରେ ଇଂରେଜଙ୍କ ଶତ୍ରୁପକ୍ଷ ସୈନ୍ୟ ମାଡ଼ିଆସିଲା ବେଳକୁ ଦେଶୀ ମନ୍ତ୍ରୀମଣ୍ଡଳଟିଏ ଥିଲେ ସେମାନେ ଲୋକଙ୍କୁ ରକ୍ଷା କରିବା ସଙ୍ଗେ ସଙ୍ଗେ ନିଜ ସରକାରକୁ ସ୍ୱାଧୀନ ଘୋଷଣା କରି ସେମାନଙ୍କ ସଙ୍ଗେ ସନ୍ଧି କରିବେ ବୋଲି ସେ ଚାହୁଁଥିଲେ । ତେଣୁ ମୁସଲିମ୍ ଲିଗକୁ ନେଇ ବିପଦ ମାଡ଼ିଆସୁଥିବା ଭାରତର ପୂର୍ବ ଖଣ୍ଡ ବା ଆସାମ, ବଙ୍ଗଳା, ଓଡ଼ିଶାରେ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ାଇବା ପାଇଁ ସେ ପରାମର୍ଶ ଦେଇଥିଲେ । ହଲୱେଲ ମନୋମେଣ୍ଟ ନେଇ ଇଂରେଜ ସରକାର ସୁଭାଷଙ୍କୁ କାରାରୁଦ୍ଧ କଲେ ।

ଜେଲରେ ସ୍ୱାସ୍ଥ୍ୟ ଖରାପ ହେବାରୁ, ଚାରିଆଡୁ ଚାପ ପଡ଼ି ବାଧ ହୋଇ ସରକାର ସୁଭାଷଙ୍କୁ ଆଣି ତାଙ୍କ ଘରେ ନଜରବନ୍ଦୀ କରି ପୋଲିସ ଘେରରେ ରଖିଲେ । ଭାରତ

ଭିତରେ ରହି ଇଂରେଜଙ୍କ ବିରୁଦ୍ଧରେ ବିଦ୍ରୋହ ପାଇଁ କଂଗ୍ରେସକୁ ପ୍ରଭାବିତ କରିବାରେ ଅକୃତକାର୍ଯ୍ୟ ହୋଇ ସୁଭାଷ ଦେଶ ବାହାରୁ ଇଂରେଜଙ୍କ ଉପରେ ଆକ୍ରମଣର ଯୋଜନା କଲେ । ୧୯୪୦ ଜାନୁଆରୀ ମାସ ଶେଷ ସପ୍ତାହରେ, ଇଂରେଜ ପୋଲିସଙ୍କ ଆଖିରେ ଧୂଳି ଦେଇ ବିଦେଶରେ ସ୍ୱାଧୀନ ଭାରତ ସରକାର ଗଠନ ପାଇଁ ସୁବାଷ ଗୁପ୍ତରେ ଦେଶ ଛାଡ଼ି ଚାଲିଯାଇଥିଲେ । ସୁଭାଷପନ୍ଥୀ କର୍ମୀମାନେ ତା'ର ଆଭାଷ ପାଇ ସୁଭାଷଙ୍କ ନିର୍ଦ୍ଦେଶକୁ ଚାହିଁ ରହିବା ସଙ୍ଗେ ସଙ୍ଗେ ଗାଁ ଗାଁ ବୁଲି ସୁଭାଷଙ୍କ ବାଣୀ ଶୁଣାଇ ଗୁପ୍ତରେ ଦେଶକୁ ସଂଗ୍ରାମ ପାଇଁ ପ୍ରସ୍ତୁତ କରିବାକୁ ଚିନ୍ତା କରୁଥିଲୁ ।

ମୁଁ ଗ୍ରାମକୁ ବାହାରି ପଦଯାତ୍ରା କରି Mass Contact ବା ଲୋକ ସଂପର୍କ ପାଇଁ ବିଭିନ୍ନ ଗ୍ରାମ ବୁଲିବାର ସ୍ଥିର କଲି । ସେଥିପାଇଁ ମୋର ପୂର୍ବତନ ସହପାଠୀ କବି ବାଞ୍ଛାନିଧି ରାଉତରାଙ୍କୁ ସାଥୀ ବାଛିଲି । ଆମକୁ ବାଟ ଦେଖାଇବା ଓ ଆମ ଜିନିଷପତ୍ର ସଙ୍ଗରେ ଧରି ଯିବା ପାଇଁ ସେ ତାଙ୍କ ଗ୍ରାମ ମଠସାହିର ଜଣେ ଲୋକଙ୍କୁ ଠିକ୍ କଲେ । ଆମେ ଦିନେ ସକାଳୁ ବାହାରି ପଡ଼ିଲୁ । ଆମ ଆଗେ ଆଗେ ଆମ ପଥ ପ୍ରଦର୍ଶକ ଚାଲିଲେ । ବାଟରେ ଯେଉଁ ଗ୍ରାମ ପଡ଼େ ଆମେ ସେଠାରେ କିଛି ସମୟ ରହି, ଗ୍ରାମବାସୀଙ୍କ ସଙ୍ଗେ କିଛି ସମୟ କଥାବାର୍ତ୍ତା ହୋଇ ପୁଣି ଆଗକୁ ଚାଲୁ । ଯେ କୌଣସି ଗ୍ରାମରେ ପହଞ୍ଚିଲେ ମୋ ପରିଚୟ ପାଇବାକ୍ଷଣି କେତେଜଣ ଲୋକ ଆସି ଆମ ପାଖରେ ପହଞ୍ଚନ୍ତି । ଆଦର କରି ପାଣି ପଣା ଯାଚନ୍ତି ଓ ଆଗ୍ରହରେ ମୋ କଥା ଶୁଣନ୍ତି । ଆମେ ଲୁଣାନଦୀ ବନ୍ଧେ ବନ୍ଧେ ଯାଇ ଖଜୁରୀଆ ନିକଟରେ ପହଞ୍ଚିଲାବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଆସିଥିଲା । ସେଠାରେ ଲୁଣାନଦୀ ଭାର୍ଗବୀ ନଦୀ ସଙ୍ଗେ ମିଶି ଚିଲିକା ହ୍ରଦ ଆଡ଼କୁ ବହିଯାଇଛି ।

ଖଜୁରୀଆ ନିକଟ ରାମଚନ୍ଦ୍ରପୁର ଗ୍ରାମରୁ ସଉଦାପତ୍ର ମଗାଇ ଖଜୁରୀଆ ଲୋଅରପ୍ରାଇମେରୀ ସ୍କୁଲରେ ରୋଷେଇବାସ କରି ଖାଇଲୁ । ଅଭ୍ୟାସ ନ ଥାଇ ଏକାଦିନକେ ଏତେ ବାଟ ଚାଲି ଆସିବା ଦ୍ୱାରା ମୋର ଗୋଡ଼ ପୂରା ଦରଜ ହୋଇ ଯାଇଥିଲା । ଆମର ପଥପ୍ରଦର୍ଶକ ସେବକ ମୋର ପାଦରେ ଉଷୁମ ସୋରିଷ ତେଲ ଲଗାଇ ମାଲିସ୍ କଲାପରେ ମୋତେ ଆରାମ ଲାଗିଲା । ଆମେ ସେ ସ୍କୁଲରେ ଡ଼େରା ପକାଇ ଦୁଇ ତିନି ଦିନ ଆଖ ପାଖ ଗାଁ ସବୁ ବୁଲି ଲୋକଙ୍କ ସଙ୍ଗେ ଆଲୋଚନା କଲୁ ।

ଚିଲିକା କୂଳ ଗ୍ରାମମାନଙ୍କ ଅବସ୍ଥା ଦେଖି ଯିବା ପାଇଁ ଆମେ ଖଜୁରୀଆଠାରୁ ଚିଲିକା ଅଭିମୁଖେ ନୌକା ଯାତ୍ରା କଲୁ । ଅନ୍ଧାର ହୋଇଗଲେ ଡଙ୍ଗା ଭିତରେ ଜଳୁଥିବା ଲଣ୍ଠନ ଆଲୋକକୁ ଦେଖି ନଈରୁ ମାଛମାନେ ଡ଼ଙ୍ଗା ଭିତରକୁ ଡ଼େଇଁବାର ଦୃଶ୍ୟ ଅତି ମନୋମୁଗ୍ଧକର ଥିଲା । ରୂପା ପାତିଆ ପରି ଚକ୍‌ଚକ୍ ଦିଶୁଥିବା ଛୋଟ ମାଛଗୁଡ଼ିକ ଡ଼ଙ୍ଗା ଉପରେ ବିଜୁଳି ଝଲକ ସୃଷ୍ଟି କରି ଡଙ୍ଗା ଭିତରେ ପଡ଼ିଥାଆନ୍ତି ।

ସେ ନଦୀର ଦୁଇପଟ ଅଞ୍ଚଳ ପ୍ରାୟ ଧୋଉ ଅଞ୍ଚଳ, ଲୋକଙ୍କ ଅବସ୍ଥା ସେତେ ସ୍ୱଚ୍ଛଳ ନ ଥିଲା । ଅଧିକାଂଶ ଗ୍ରାମବାସୀ ଗ୍ରାମ ଛାଡ଼ି ଅନ୍ୟାନ୍ୟ ସ୍ଥାନରେ ପେଟ ପୋଷିବା ପାଇଁ ଚାକିରି କରନ୍ତି । ଆମେ କେତେଦିନ ଏପରି ବୁଲାବୁଲି କରି ପୁରୀ ଜିଲ୍ଲାର ଭିତର ଅଞ୍ଚଳମାନ ଦେଖି ଗ୍ରାମକୁ ଫେରିଲୁ । ମଝିରେ ମଝିରେ ସତ୍ୟବାଦୀର ଆଖ ପାଖ ଗ୍ରାମମାନଙ୍କରେ ବୁଲି ମୁଁ ସବୁ ଶ୍ରେଣୀର ଯୁବକ ଓ ଛାତ୍ରମାନଙ୍କ ସଙ୍ଗେ ବିଭିନ୍ନ ବିଷୟରେ ଆଲୋଚନା କରି ଫେରୁଥିଲି । ବୈପ୍ଳବିକ ଆନ୍ଦୋଳନର ଅନିଶ୍ଚିତତା ଦୃଷ୍ଟିରୁ ସେ ବିଷୟରେ ଖୋଲାଖୋଲି ଆଲୋଚନା କରିବା ସମ୍ଭବ ନ ଥିବାରୁ ଉତ୍କଳ ଅବକାଶ ବାହିନୀର ଦେଶ ମିଶ୍ରଣ ଓ ଓଡ଼ିଆ ଭାଷା ଆନ୍ଦୋଳନର ଦୁହାଇଦେଇ ସେସବୁ ଆଲୋଚନା ସଙ୍ଗେ ସଙ୍ଗେ ଦେଶର ସ୍ୱାଧୀନତା ଆନ୍ଦୋଳନର ଭବିଷ୍ୟତ ବିଷୟରେ ମଧ କିଛିଟା ଆଲୋଚନା କରି ମନେ ମନେ କର୍ମୀ ଠିକ୍ କରୁଥିଲି । କିନ୍ତୁ ବେଳେବେଳେ ମୋତେ ବଡ଼ ନିରାଶ ଲାଗୁଥିଲା । ବିନା ପାଠରେ ବର୍ଷଟିଏ ଚାଲିଯାଇଥିଲା, କପ୍ତାନ ବିହୀନ ଜାହାଜରେ ଅତଳ ସମୁଦ୍ର ଉପରେ ଭାସି ଚାଲିଥିଲା ପରି ମୋତେ ବୋଧ ହେଉଥିଲା ।

ମୋ ସହପାଠୀମାନେ ପରୀକ୍ଷା ଦେଲେ; କିନ୍ତୁ ମୁଁ ପଛରେ ପଡ଼ିଗଲି । ମୁଁ କଟକ ବୁଲିଯାଇ ଦେଖିଲି, ମୋର ସବୁ ସଂଗ୍ରାମୀ ବନ୍ଧୁମାନେ ପରୀକ୍ଷାରେ ପାଶ କରି କଲେଜରେ ନାମ ଲେଖାଉଛନ୍ତି । ମୋ ମନରେ ଟିକିଏ ନ୍ୟୂନଭାବ ଜାତ ହେଲା । କଟକରେ ତଳ କ୍ଲାସରେ ଥିବା ପିଲାମାନେ ବର୍ତ୍ତମାନ ମୋ କ୍ଲାସରେ, ସେମାନଙ୍କ ସଙ୍ଗେ ଏକାଠି ବସି ପଢ଼ିବାକୁ ମନ ଡାକିଲା ନାହିଁ । ତା'ଛଡ଼ା ଶିକ୍ଷକମାନଙ୍କ ତିକ୍ତ ମନ୍ତବ୍ୟର ଶରବ୍ୟ ହେବାର ମଧ ସମ୍ଭାବନା ଥିଲା । ସେତେବେଳକୁ ସତ୍ୟବାଦୀରେ ଆରମ୍ଭ ହୋଇଥିବା ହାଇସ୍କୁଲ ସ୍ୱୀକୃତି ପାଇ ସାରିଥିଲା । ତେଣୁ ସେଠାରେ ସେ ବର୍ଷ ପଢ଼ି ପରୀକ୍ଷା ଦେବା ପାଇଁ ମୁଁ ମନସ୍ଥ କରି କଟକରୁ ଫେରିଲି ।

ସତ୍ୟବାଦୀର ପରିସ୍ଥିତି ଅନ୍ୟ ପ୍ରକାର ଥିଲା । ମୁଁ ଗ୍ରାମରେ ଥିବା ସମୟରେ ସେଠାର ହେଡ୍‌ମାଷ୍ଟର ବୃଦ୍ଧ ବନମାଳୀ ମିଶ୍ରଙ୍କ ଅପାରଗତା ବିରୁଦ୍ଧରେ ସେଠାର ପିଲାମାନେ ଧର୍ମଘଟ କରିଥିଲେ । ସେ ଧର୍ମଘଟ ସମାଧାନ କରାଇବାରେ ମୋ ହାତ ଥିଲା । ସେତେବେଳେ ମୋ ପିତା ସେ ସ୍କୁଲ କାର୍ଯ୍ୟକାରୀ କମିଟିର ସଭାପତି ଥିଲେ । ସେ ପିଲାଙ୍କ ପାଠପଢ଼ାର ଅସୁବିଧା ବୁଝି ବନମାଳୀବାବୁଙ୍କ ସ୍ଥାନରେ ଶ୍ରୀ ଲକ୍ଷ୍ମୀଶଙ୍କର ଭଟ୍ଟନଗର ନାମକ ଜଣେ ବିଦ୍ୱାନ ନିଷ୍ଠାପର ଯୁବ ଶିକ୍ଷକଙ୍କୁ ଆଣି ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ କରିଥିଲେ । ସେହି ନୂତନ ପ୍ରଧାନ ଶିକ୍ଷକ ଖୋଲାମନର ଲୋକ ଥିଲେ । ପଞ୍ଜାବ-ୟୁ.ପି. ସୀମାରାଜ୍ୟର ନିବାସୀ ଥିବାରୁ ସେ ଜଣେ ଜାତୀୟତାବାଦୀ ଥିଲେ ଓ ସ୍ୱାଧୀନଚେତା ଛାତ୍ରମାନଙ୍କୁ ଆଦର କରୁଥିଲେ ।

ମୁଁ ସତ୍ୟବାଦୀ ସ୍କୁଲରେ ନାମ ଲେଖାଇ ଆମ ଘର ସ୍କୁଲଠାରୁ ଦୂରରେ ନ ଥିଲେ ମଧ ଛାତ୍ରାବାସରେ ରହିଲି । ଆମ ଛାତ୍ରାବାସରେ ପରିଚାଳକ ସୁପରିଟେଣ୍ଡେଣ୍ଟ ଶ୍ରୀ ହରିହର ମହାପାତ୍ର ବିଏସ୍‌ସି ସତ୍ୟବାଦୀ ଗୁରୁକୁଳର ପୂର୍ବତନ ଛାତ୍ର ଥିଲେ । ସେ ସରକାରୀ ଚାକିରି କରି ନଥିଲେ । ତାଙ୍କ ବଡ଼ କୋଠରୀଟିକୁ ଲାଗି ଗୋଟିଏ କ୍ଷୁଦ୍ର କୋଠରୀରେ ଏକାକି ରହିବା ପାଇଁ ମୋତେ ସ୍ଥାନ ଦେଇଥିଲେ । ମାଇନର ପଢ଼ିବା ବେଳର ଛାତ୍ରାବାସର ଅବସ୍ଥା ଟିକିଏ ବଦଳି ଥିଲା । ତଳେ ଶୋଇବା ପରିବର୍ତ୍ତେ ଖଟରେ ଶୋଇବା ବ୍ୟବସ୍ଥା ହୋଇଥିଲା ।

ସେ ସ୍କୁଲରେ ଡ୍ରଇଁ ଆଡ଼ିସନାଲ ନ ଥିଲା । ଅଙ୍କ ପରି କଷ୍ଟ ପାଠକୁ ଥରେ ଛାଡ଼ି ପୁଣି ନେବା ସମ୍ଭବ ନ ଥିଲା । ସେଠାରେ ହେଡ୍‌ପଣ୍ଡିତ, ପଣ୍ଡିତ ଚନ୍ଦ୍ରଶେଖର ରଥ ସଂସ୍କୃତ ଆଡ଼ିସନାଲ ନେବା ପାଇଁ ମୋତେ ଉତ୍ସାହିତ କଲେ । ସେ କହିଲେ 'ବାନ ବଚ୍ଚୌ ବନ୍ତଃ' ସଂସ୍କୃତ ମାଟ୍ରିକ ପରୀକ୍ଷାରେ ପୁଣି କେତେ ବା ଦରକାର ତୁମେ ସଂସ୍କୃତ ନିଅ ନିଶ୍ଚୟ ଭଲ କରିବ ।

ମୋର କଲେଜିଏଟ ସ୍କୁଲ ସଂସ୍କୃତ ପରୀକ୍ଷା କଥା ମନେ ପଡ଼ିଲା । ସେଥିରେ କୃତକାର୍ଯ୍ୟ ହୋଇଥିବାରୁ ମାଟ୍ରିକ ପରୀକ୍ଷାରେ ନିଶ୍ଚୟ କୃତକାର୍ଯ୍ୟ ହେବି ଭାବି ମୁଁ ସଂସ୍କୃତ ଆଡ଼ିସନାଲ ନେଲି ।

ମୁଁ କଟକରେ ପଢୁଥିବା ବେଳେ ଷ୍ଟୁଡ଼େଣ୍ଟ ଇଉନିଅନର କାର୍ଯ୍ୟକାରୀ କମିଟି ସଦସ୍ୟ, କଲେଜିଏଟ ସ୍କୁଲ ଛାତ୍ରସଂସଦର ସେକ୍ରେଟାରୀ, କିଶୋର ସାହିତ୍ୟ ସଂସଦର ସଭାପତି, ଅବକାଶ ବାହିନୀର ସକ୍ରୀୟ ସଦସ୍ୟ ପ୍ରଭୃତି ପଦରେ ଥାଇ ସର୍ବଦା କାର୍ଯ୍ୟବ୍ୟସ୍ତ ଥିଲି; କିନ୍ତୁ ସତ୍ୟବାଦୀରେ ମୋ ଉପରେ ସେସବୁ ଦାୟିତ୍ୱ କିଛି ନ ଥିଲା ।

ସତ୍ୟବାଦୀ ସ୍କୁଲର ପ୍ରଧାନ ଶିକ୍ଷକ ଭଞ୍ଜନଗର ଜଣେ ତେଜୀଆନ ଯୁବକ ଥିଲେ । ସେ ସ୍ୱେଚ୍ଛାସେବୀ କାର୍ଯ୍ୟ କରିବାପାଇଁ ଛାତ୍ରମାନଙ୍କୁ ପ୍ରବର୍ତ୍ତାଉଥଲେ । ସେ ପିଲାମାନଙ୍କୁ ସାଙ୍ଗରେ ନେଇ ବିଭିନ୍ନ ସ୍ଥାନକୁ ଯାଉଥିଲେ । ସାଗରସ୍ନାନ ମେଳାରେ ସ୍ୱେଚ୍ଛାସେବକ ରୂପେ କାର୍ଯ୍ୟ କରିବାପାଇଁ ସେ ଆମ ଛାତ୍ରମାନଙ୍କୁ ଚଲାଇ ଚଲାଇ ସଙ୍ଗରେ ଘେନି ଯାଉଥିଲେ । ଭାର୍ଗବୀନଦୀ କୂଳରେ ସତ୍ୟବାଦ ୀଠାରୁ ୪/୬ ମାଇଲ ଦୂରରେ ସେ ମେଳା ବସେ । ହଜାର ହଜାର ଲୋକ ଭାର୍ଗବୀନଦୀର ସେହି ପୂଣ୍ୟ ସ୍ଥାନରେ ସ୍ନାନ କରିବାକୁ ଆସନ୍ତି । ସେହି ଭାର୍ଗବୀ ନଦୀର ଆରପଟେ ଉତ୍କଳମଣି ଗୋପବନ୍ଧୁଙ୍କ ଜନ୍ମସ୍ଥାନ ସୁଆଣ୍ଡୋ ଗ୍ରାମ ଅବସ୍ଥିତ ।

ଆମେ କିଛି ସମୟ ସ୍ୱେଚ୍ଛାସେବୀ କାର୍ଯ୍ୟ କରିବା ପରେ ନଦୀରେ ଯାଇ ସ୍ନାନକଲୁ । ସ୍ନାନ ପରେ ପ୍ରଧାନ ଶିକ୍ଷକଙ୍କ ସଙ୍ଗେ ଯାଇ ଗୋପବନ୍ଧୁଙ୍କ ଜନ୍ମସ୍ଥାନ ଓ

ଗୋପବନ୍ଧୁ ତାଙ୍କ ସାଥିମାନଙ୍କ ସହିତ ୧୯୦୨ରେ ଶପଥ ନେଇଥିବା ସ୍ଥାନଟି ଦେଖି ଫେରିଲୁ ।

ଆମେ ଜଳଯୋଗ ପ୍ରଭୃତି ସାରି ସତ୍ୟବାଦୀ ଫେରିବାକୁ ବାହାରିବା ବେଳକୁ ରାତି ହୋଇ ଯାଇଥିଲା । ବାଟରେ ଆମ ସଙ୍ଗେ ଥିବା ପେଟ୍ରୋମାକ୍ସ ଲଣ୍ଠନଟା ମଧ୍ୟ ଲିଭିଗଲା । ଏପ୍ରିଲ୍ ମାସ ଗରମ । ଦିନଯାକର ଚଲା ଓ ପରିଶ୍ରମ, ସାଙ୍ଗକୁ ଅନ୍ଧାର ରାତିରେ ଝୁଣ୍ଟି, ପଡ଼ି ଚାଲିବା କଷ୍ଟକର ହେଲେ ମଧ୍ୟ ଆମେ ମନ ଫୁଲାଣିଆ ଗୀତ ଗାଇ ଗାଇ ଛାତ୍ରାବାସରେ ଆସି ପହଞ୍ଚିଲୁ ।

ମେଳା ପ୍ରଭୃତିର ସ୍ୱେଚ୍ଛାସେବୀ କାର୍ଯ୍ୟ ସାଙ୍ଗକୁ ଅନ୍ୟ କାର୍ଯ୍ୟ ମଧ୍ୟ ଚାଲିଥାଏ । ଆମ ସ୍କୁଲ ନିକଟ ସେବକ ସାହିରେ ଅନ୍ୟ କେଉଁଠାରୁ ଆସି କାର୍ଯ୍ୟ କରୁଥିବା ଗୋଟିଏ ସ୍ତ୍ରୀ ଲୋକର ଅସହାୟ ଭାବରେ ମୃତ୍ୟୁ ହୋଇଗଲା । ତା'ର ଶବସଂସ୍କାର ନ ହୋଇ ପଡି ରହିଥିବା ଶୁଣି ପ୍ରଧାନ ଶିକ୍ଷକଙ୍କ ଆଦେଶରେ ଆମେ ସ୍ୱେଚ୍ଛାସେବୀ ଛାତ୍ରମାନେ ଯାଇ ତାକୁ ଶ୍ମଶାନକୁ ନେଇ ଗଭୀର ଗାତଟିଏ ଖୋଳି ପୋତି ଦେଇ ଆସିଲୁ ।

ଆଉ ଦିନେ ପୁରୀ ଜିଲ୍ଲା ସ୍କୁଲର ଲକ୍ଷ୍ମଣ ନାମକ ଛାତ୍ରର ଭାଇ ସତ୍ୟବାଦୀ ଡାକ୍ତରଖାନାରେ ମୃତ୍ୟୁ ବରଣ କରିବାରୁ ରାତିରେ ଆସି ଲକ୍ଷ୍ମଣ ଶବ ସଂସ୍କାର ପାଇଁ ଆମକୁ ଅନୁରୋଧକଲା । ଆମେ ପ୍ରଧାନ ଶିକ୍ଷକଙ୍କ ଅନୁମତି ନେଇ ସେହି ରାତିରେ ଡାକ୍ତରଖାନାରୁ ସେ ଶବକୁ କାନ୍ଧେଇ କରି ଆଣି ବକୁଳ ବନ ଶ୍ମଶାନରେ ଦାହ କରିବାରେ ଲାଗିଲୁ । ପ୍ରତ୍ୟେକ କାର୍ଯ୍ୟ ପାଇଁ କିଛି ତାଲିମ ବା ଅଭିଜ୍ଞତା ପ୍ରୟୋଜନ । ଶବ ଦାହରେ ଅଭିଜ୍ଞତା ନ ଥିଲେ ବେଳେ ବେଳେ ଅସୁବିଧାରେ ପଡ଼ିବାକୁ ହୁଏ । ସେହି ସମୟରେ ଆମ ଭିତରୁ ଆମ ସାଥୀ ଅନଭିଜ୍ଞ ବାଇଧର ମିଶ୍ର ଶବଟିକୁ ଚୁଲି ଉପରେ କଡେଇ କରି ପୋଡିବା ପାଇଁ ଚେଷ୍ଟା କରି ବାଉଁଶରେ କେଞ୍ଚିଦେଲା ବେଳକୁ ଜଳବୁନ୍ଦ୍ର (Ascitis) ରୋଗୀର ପେଟ ଫାଟି ପିଚକାରୀ ପରି ଗରମ ପାଣିଗୁଡାକ ତା' ଦେହରେ ପଡି ତା'ର ଦେହରେ ଫୋଟକା କରିଦେଲା । ଶବଦାହ ପରେ ଆମେ ବାଇଧରକୁ ଛାତ୍ରାବାସକୁ ଆଣି ଚିକିତ୍ସା କଲୁ ।

ପାଖ ଆଖ ଗାଁ'ରେ ଅଗ୍ନ୍ୟୁତ୍ପାତ ହେଲେ ଆମେ ଯାଇ ନିଆଁ ଲିଭାଇବାରେ ସାହାଯ୍ୟ କରୁ । ଆମ ସ୍କୁଲଠାରୁ ଛଅ/ସାତ ମାଇଲ ଦୂର ଭିଁପୁର ନାମକ ଗ୍ରାମରେ ପଣାସଂକ୍ରାନ୍ତି ଉତ୍ସବରେ ପାଟଫୋଡା ହେଉଥିବା ଶୁଣି ପ୍ରଧାନ ଶିକ୍ଷକ ଆମ ସ୍ୱେଚ୍ଛାସେବୀ ସ୍କାଉଟ ଦଳକୁ ସଙ୍ଗରେ ଧରି ଚାଲି ଚାଲି ତାହା ଦେଖିବା ପାଇଁ ଯିବାକୁ ସ୍ଥିର କଲେ ।

ମୋର ଯିବାକୁ ଇଚ୍ଛା ନ ଥିଲା, ଦେହ ମଧ୍ୟ ଭଲ ଲାଗୁ ନଥିଲା । ଏପ୍ରିଲ ଖରାରେ ଏତେବାଟ ଚାଲି ଚାଲି ଯିବାକୁ ମୁଁ ମନା କରି ଦେଲି । କିନ୍ତୁ ପ୍ରଧାନ ଶିକ୍ଷକ ମୋର ହାତ ଧରିକରି ଭିଡି ଆଣି କିଛି ହେବନି କହି ସ୍କାଉଟ ଦଳରେ ସାମିଲ କରିଦେଲେ ।

ଆମେ ସକାଳୁ ବାହାରି ଟାଣ ଖରା ସହି ସେ ଗ୍ରାମରେ ପହଞ୍ଚିଲା ବେଳକୁ ଆମ ହଂସା ଉଡିଯିବାକୁ ବସିଥିଲା । ଆମ ସଙ୍ଗେ ଥିବା ସେହି ଗ୍ରାମର ଗଙ୍ଗାଧର ଦାସ ଘରେ ପଖାଳ ଶାଗ ଓ ଆମ୍ବକସି ଆନନ୍ଦରେ ଖାଇ କିଛି ସମୟ ବିଶ୍ରାମ ନେଲୁ । ପରେ ଠାକୁରଙ୍କ ନିକଟକୁ ମେଳା ଦେଖିବାକୁ ଗଲୁ ।

ସେଠାରେ ବହୁତ ଭକ୍ତ ଜମା ହୋଇ ସେ ହୃଦୟ ବିଦାରକ ଦୃଶ୍ୟ ଉପଭୋଗ କରୁଥିଲେ । ସେହି ପର୍ବରେ ଆଗରୁ ମାନସିକ କରିଥିବା ବାଉରୀ ମାନେ କାଳେସୀଙ୍କ ନିର୍ଦ୍ଦେଶରେ ପିଠି ମଝିରେ କାଣିଆଙ୍କୁଠି ଓ ମୋଟର ବଂଶୀ କଣ୍ଟା ପରି ଦୁଇ ଚାରିଟା କଣ୍ଟା ପୋତାଇ ଥାଆନ୍ତି । ସେ କଣ୍ଟା ମୂଳରେ ବନ୍ଧାଥିବା ଦଉଡି ସବୁକୁ ଖୁଣ୍ଟି ଉପରେ କଣ୍ଟାରେ ପୋତା ଯାଇଥିବା ବାଉଁଶଟିଏର ଗୋଟିଏ ମୁଣ୍ଡରୁ ଓହଳି ଥିବା ମୋଟା ଦଉଡିରେ ବାନ୍ଧି ଦିଆଯାଏ । ବାଉଁଶଟିର ଆର ମୁଣ୍ଡରେ ଲାଗିଥିବା ଦଉଡିକୁ ତଳକୁ ଟାଣି ସେ ଲମ୍ବା ବାଉଁଶଟାକୁ ସମାନ୍ତରାଳ ରେଖାରେ ରଖିଲା ବେଳକୁ ବାଉଁଶ ଆରମୁଣ୍ଡରୁ ଓହଳି ଥିବା ମଣିଷଟା ଉପରକୁ ଉଠିଯାଏ । ସେ ମଣିଷଟି ପ୍ରାୟ ୧୦ ଫୁଟ ଉପରେ ପିଠି କଣ୍ଟାରେ ଝୁଲି ରହେ । ବାଉଁଶଟାର ମଝିଟା ଖୁଣ୍ଟ ଉପରେ କଣ୍ଟାରେ ପୋତା ଯାଇଥିବାରୁ ଆର ମୁଣ୍ଡର ଦଉଡିକୁ ଟାଣି ବୁଲାଇଲେ ମଣିଷଟା ପବନରେ ପହଁରିଲା ପରି ବୁଲେ । ବେଳେ ବେଳେ ସେ ଦୁଇ କାଖରେ ମାନସିକ ଥିବା ଦୁଇଟା ଛୋଟ ରୋଗା ପିଲାଙ୍କୁ ଜାକି କେତେ ଘେରା ବୁଲାଯାଏ । ସେପରି ପାଟପୋତା ବାଉରୀର ପିଠିରୁ ବୋହୁଥିବା ରକ୍ତ ଉପରେ ଠାକୁର ଠାକୁରାଣୀଙ୍କ ବିଭୂତି ବା ପାଉଁଶ ଆଣି ରକ୍ତସ୍ରାବ ବନ୍ଦ କରାଯିବା ପାଇଁ ବୋଳି ଦିଆଯାଏ । ସେହି ବ୍ୟକ୍ତିମାନେ ଉପରେ ବୁଲି ସାରିବା ପରେ ପିଠିରେ ସେପରି କଣ୍ଟା ଥାଇ ଗାଁ ଭିତରେ ବୁଲି ଲୋକଙ୍କଠାରୁ ଲୁଗା ଗାମୁଛା (ପାଟ ରୂପେ) ପାଆନ୍ତି ।

ଆମେ ସେ ସବୁ ଦୃଶ୍ୟରେ ଭୟଭୀତ ହୋଇଗଲୁ କିନ୍ତୁ ସେ ବାଉରୀ ମାନଙ୍କ ମନରେ ଟିକିଏ ହେଲେ ଗ୍ଲାନି ଥିବା ଦେଖିଲୁ ନାହିଁ । ଅନ୍ଧବିଶ୍ୱାସରେ ସେମାନେ ଓ ସେଠା ଲୋକେ ଉତ୍‌ଫୁଲ୍ଲିତ ଥିଲେ । ଆମେ ସେହି ଗ୍ରାମବାସୀଙ୍କ ଦ୍ୱାରା ପଣା ପଉଡରେ ଅଭ୍ୟର୍ଥିତ ହୋଇ ସତ୍ୟବାଦୀ ଫେରିଲା ବେଳେ, ଉପରଓଳି ବାଟରେ ବିଲମାନଙ୍କରେ ଚିଲିକାକୁ ଆସିଥିବା ଗେଣ୍ଡାଳିଆ, ଏରା, ରାଜହଂସ ପ୍ରଭୃତି ପକ୍ଷୀ ଧାନ, ମୁଗ ଓ ପୋକ ଜୋକ ଖୁଣ୍ଟୁଥିବାର ଦେଖିବାକୁ ପାଇଲୁ ।

ଆମେ ଫେରିଲା ପରେ ପ୍ରଧାନ ଶିକ୍ଷକ ଆମ ସ୍କୁଲରୁ ମରାଳ ନାମକ ଏକ ପତ୍ରିକା ପ୍ରକାଶ କରାଇବାର ସ୍ଥିର କରିଥିଲେ । ତାହା ପ୍ରକାଶିତ ହେବାରେ ସେଥିରେ ମୋର ପ୍ରଥମ ଲେଖା ''ପ୍ରତିଭା ପୂଜା'' ପ୍ରବନ୍ଧ ବାହାରିଥିଲା ।

ପ୍ରଧାନ ଶିକ୍ଷକ ଭଟନଗର ସତ୍ୟବାଦୀ ସ୍କୁଲ କମିଟି ସଭାପତି ପଣ୍ଡିତ ନୀଳକଣ୍ଠଙ୍କ ପ୍ରତିଭାରେ ଆକୃଷ୍ଟ ହୋଇ ତାଙ୍କ ନିର୍ଦ୍ଦେଶରେ ବନ ବିଦ୍ୟାଳୟକୁ ପୁଣି ଆଦର୍ଶ କରି ଗଢ଼ିବା ପାଇଁ ଚେଷ୍ଟା କରୁଥିଲେ । ସତ୍ୟବାଦୀରେ ସେ ତାଙ୍କର ଦୁଇଟି ଛୋଟ ଝିଅ ଓ ସହଧର୍ମିଣୀଙ୍କୁ ଧରି ମନ୍ଦିରର ଯାତ୍ରୀଙ୍କ ପାଇଁ ଥିବା ଲଜିଙ୍ଗ ହାଉସ୍‌ରେ ଏକ-ସାହାଲିଆ ଚାଳଘରେ ରହୁଥିଲେ । ସେ ଦୁଇ ତିନି ବର୍ଷ ରହିବା ପରେ ସେଠାରେ ତାଙ୍କର ପୁଅଟିଏ ଜନ୍ମ ହୋଇଥିଲା; କିନ୍ତୁ ଜନ୍ମରୁ ସେ ଶିଶୁର ହୃଦ୍‌ପିଣ୍ଡ ଗଠନରେ ତ୍ରୁଟି ରହିଥିବାରୁ ସେ ତା'ର ଚିକିତ୍ସା ପାଇଁ ଅନ୍ୟତ୍ର ଚାଲିଯାଇଥିଲେ । ପୁତ୍ରର ମୃତ୍ୟୁ ପରେ ସେ ଆଉ ସତ୍ୟବାଦୀ ଫେରି ନ ଥିଲେ ।

ତାଙ୍କ ଜୀବନ ବହୁ ଉତ୍‌ଥାନ ପତନ ଦେଇ ଗତିକରି ଚାଲିଥିଲା । ପଞ୍ଜାବ ଦୁଇ ଭାଗ ହୋଇ ଭାରତ ସ୍ୱାଧୀନ ହେବା ପରେ ସେ ଆଣ୍ଡାମାନରେ ରିଫ୍ୟୁଜିମାନଙ୍କ ପିଲାଙ୍କ ପାଇଁ ସ୍ଥାପିତ ହାଇସ୍କୁଲରେ ଶିକ୍ଷକତା କରି ଅବ୍ୟାହତି ନେଇ ସାହାରନ୍‌ପୁରରେ ରହୁଥିଲେ । ସେ ସତ୍ୟବାଦୀ ବା ତା'ର ଛାତ୍ରମାନଙ୍କୁ ଭୁଲି ନ ଥିଲେ । ସତ୍ୟବାଦୀ ଛାଡ଼ିବାର ପ୍ରାୟ ପଞ୍ଚଚାଳିଶ ବର୍ଷ ପରେ ସେ ମୋର ଠିକଣା ଠାବ କରି କଟକରେ ମୋ ନିକଟରେ ଆସି ପହଞ୍ଚିଲେ । ମୁଁ ତାଙ୍କୁ ନେଇ ସତ୍ୟବାଦୀ ଗଲି । ସେଠାରେ ତାଙ୍କର ସମ୍ବର୍ଦ୍ଧନା ସଭାରେ ସେ ତାଙ୍କର ସ୍ମୃତିଚାରଣ କରି ସ୍ୱର୍ଗତ ନୀଳକଣ୍ଠ, ବନବିଦ୍ୟାଳୟ ନିର୍ମାଣ ବିଷୟରେ କି କି ନିର୍ଦ୍ଦେଶ ଦେଉଥିଲେ, ସେ କିପରି ତାଙ୍କ ସଙ୍ଗେ ବକୁଳ ବନ ଭିତରକୁ ଯାଇ ଦଉଡ଼ି ଧରି ବିଭିନ୍ନ ସ୍ଥାନସବୁ ମାପଚୁପ କରି କେଉଁଠାରେ କେଉଁ କ୍ଲାସ କରି ପାରିବ ସ୍ଥିର କରାଉଥିଲେ ସେ ସବୁ ବର୍ଣ୍ଣନା କଲାବେଳେ ତାଙ୍କ ଆଖି ଛଳ ଛଳ ହୋଇ ଯାଇଥିଲା ।

ଜଣେ ଛାତ୍ର ତାଙ୍କ ସମୟର ସ୍କୁଲର ଶୃଙ୍ଖଳା ବିଷୟରେ କିଛି କହିବାକୁ ଅନୁରୋଧ କଲା । ଭଟନଗର ବାଷ୍ପ ଗଦ୍‌ଗଦ୍ କଣ୍ଠରେ କହିଲେ "ସ୍କୁଲର ଶୃଙ୍ଖଳା ବିଷୟରେ ମୋର ଗୋଟିଏ କଥା ମନେପଡୁଛି - ଥରେ ବକୁଳ ବନ ଭିତରେ ପିଲାମାନେ ତାଙ୍କ କ୍ଲାସମାନଙ୍କରେ ବସି ପରୀକ୍ଷା ଖାତାରେ ଲେଖୁଥିବା ବେଳେ ବର୍ଷା ଆସିଲା । ମୋ ନିର୍ଦ୍ଦେଶ ପାଇ ପିଲାମାନେ ଧାଡ଼ି ବାନ୍ଧି ପରୀକ୍ଷାଖାତା ହାତରେ ଧରି ସ୍କୁଲ ଟିଣ ଘରକୁ ଯାଇ ସେଠାରେ ବସି ଖାତାରେ ଉତ୍ତର ଲେଖିବାକୁ ଲାଗିଲେ । ସେମାନଙ୍କୁ ଜଗିବାକୁ କେହି ଶିକ୍ଷକ ଯିବା ଦରକାର ପଡ଼ି ନ ଥିଲା; ସେମାନେ ଚୁପଚାପ ବସି କୌଣସି ଅସତ୍ ଉପାୟ ଅବଲମ୍ବନ ନ କରି ପରୀକ୍ଷା ଦେଇଥିଲେ ।

ମୁଁ ପୁଣି ସତ୍ୟବାଦୀରେ ପଢ଼ିବା ବେଳକୁ ଛାତ୍ରନେତାର ସ୍ଥାନ ପାଇ ସାରିଥିଲି । ତେଣୁ ସେଠାରେ ଶିକ୍ଷକମାନଙ୍କ ଭିତରୁ କେତେକ ମୋ ସଙ୍ଗେ ସଙ୍ଗୀ ଭଳି କଥାବାର୍ତ୍ତା

କରୁଥିଲେ । ସେଠାରେ ଶିକ୍ଷକ ଅଭାବରୁ ହରିହର ମହାପାତ୍ରଙ୍କ ପରି ପୁରୁଣା ଶିକ୍ଷକମାନେ ପୁରୀ କଟକ ଯାଇ ବି.ଏ ପରୀକ୍ଷା ଦେଇ ଫଳକୁ ଅପେକ୍ଷା କରୁଥିବା ମେଧାବୀ ଛାତ୍ରଙ୍କୁ ଆଣି ସ୍କୁଲର ପରୀକ୍ଷା ସମୟରେ ଅସ୍ଥାୟୀ ନିଯୁକ୍ତି ଦିଆଉଥିଲେ । ସେମାନଙ୍କ ମଧ୍ୟରୁ ଶ୍ରୀ ଦାମୋଦର ଛୋଟରାଏ କୃତିତ୍ୱର ସହିତ ପାଶ୍ କରି, ପରେ ପୋଲିସ ବିଭାଗରେ ଯୋଗଦେଇ ସେ ବିଭାଗରେ ସର୍ବୋଚ୍ଚ ସ୍ଥାନ ପାଇ ପାରିଥିଲେ । ତାଙ୍କ ସଙ୍ଗେ ସେପରି ଆସିଥିବା ଲକ୍ଷ୍ମୀଧର ସାହୁ ସେ ସ୍କୁଲରେ କିଛିକାଳ କାର୍ଯ୍ୟ କରି ଚାଲି ଯାଇଥିଲେ । ସେମାନେ ମୋର ବନ୍ଧୁ ଥିଲେ ।

କିନ୍ତୁ ମାଇନର ସ୍କୁଲର ପୁରାତନ ଶିକ୍ଷକମାନେ ମୋତେ ପୂର୍ବ ପରି ପିଲା ଦୃଷ୍ଟିରେ ଦେଖୁଥିଲେ । ମାଇନର ସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହି ମୁଁ ମାଇନର ପଢୁଥିଲି । ସେ ମୋର ପୂରା ତତ୍ତ୍ୱ ନେଉଥିଲେ, ଏପରିକି ସେତେବେଳେ ମୁଁ ପୋଖରୀକୁ ଗାଧୋଇଗଲେ ସେ ତାଙ୍କ ଗାମୁଛାରେ ମୋ କାନ ପଛ ରଗଡ଼ି ସଫା କରି ଦେଉଥିଲେ । ହାଇସ୍କୁଲରେ ସେ ସେକେଣ୍ଡ ପଣ୍ଡିତ କାର୍ଯ୍ୟ କରି ଆମ କ୍ଲାସରେ ଓଡ଼ିଆ ସାହିତ୍ୟ ପଢ଼ାଉଥିଲେ । ଦିନେ ସେ ଆମ କ୍ଲାସରେ ପଢ଼ାଉଥିଲାବେଳେ ପରଦିନ ଓଡ଼ିଆ ପ୍ରବନ୍ଧଟି ଲେଖି ଆଣିବା ପାଇଁ ଘରକୁ ପାଠ ଦେଇଥିଲେ । ପରଦିନ ସେ ପିରିଅଡ଼ରେ କୌଣସି କାରଣରୁ ମୁଁ ଅନୁପସ୍ଥିତ ଥିଲି । ଛାତ୍ରାବାସରେ ପାଇଖାନା ବ୍ୟବସ୍ଥା ନ ଥିବାରୁ ଶିକ୍ଷକ ଓ ଛାତ୍ର ସମସ୍ତେ ରାଧାକୁଣ୍ଡ ପୋଖରୀ ନିକଟ ଜଙ୍ଗଲକୁ ଝାଡ଼ା ଯାଇ ସେ ପୋଖରୀରୁ ଡାଳରେ ପାଣି ନେଇ ଶୌଚ କରନ୍ତି । ସେହିଦିନ ସନ୍ଧ୍ୟାରେ ମୁଁ ଝାଡ଼ା ଫେରିବା ପାଇଁ ସେହି ଆଡ଼କୁ ଯିବା ସମୟରେ ଶୌଚ କାର୍ଯ୍ୟ ସାରି ଖାଲି ଡାଳଟି ଧରି ଗଙ୍ଗାଧର ବାବୁ ଫେରୁଥିଲେ । ମୋତେ ଦେଖିଲା କ୍ଷଣି ଅଟକାଇ ନେଇ ସେ କହିଲେ 'କିରେ ଆଜି କାହିଁକି ବାବୁଙ୍କର କ୍ଲାସ ଯିବା ହେଲାନାହିଁ ? ପ୍ରବନ୍ଧଟା ଲେଖି ଆସିଲାନି, ନୁହେଁ ?' ସେ ସେ'କଥା କହୁ କହୁ ମୋ ପାଟିରୁ ବାହାରି ପଡ଼ିଲା 'ସାର୍ ଆପଣଙ୍କର କ'ଣ ସ୍ଥାନ କାଳ ପାତ୍ରର ଜ୍ଞାନ ନାହିଁ ? ଏପରି ସ୍ଥାନରେ ଏପରି ଅଟକାଇ ଏତିକିବେଳେ କ'ଣ ଏପରି କୁହାଯାଏ ?'

ସେତିକିରେ ସରଳ ପ୍ରକୃତିର ଗଙ୍ଗାଧର ବାବୁ ସ୍ତମ୍ଭୀଭୂତ ହୋଇ ହଷ୍ଟେଲକୁ ଫେରିଲେ । ସେ ମୋ କଥା ଘୋଷି ହେବାକୁ ଲାଗିଲେ । ସବୁ ଶିକ୍ଷକଙ୍କ ଆଗରେ କହିଲେ 'କାଳ କଅଣ ହେଲା ? ବିକ୍ରମ ପରି ସୁଧାର ପିଲାଟାଏ ପୁଣି ମୁହେଁ ମୁହେଁ ଜବାବ୍ ଦେଇ ମୋତେ କହିଲା ମୋର ଦେଶ କାଳ ପାତ୍ର ଜ୍ଞାନ ନାହିଁ ? ଏପରି ଅପମାନ ସହି ମୋର ଆଉ ବଞ୍ଚିବା ଉଚିତ ନୁହେଁ, ଆଜିଠାରୁ ଅନଶନ କରି ମୁଁ ମରିବି ।'

ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ହରିବାବୁ ମୋତେ ଡ଼କାଇ କହିଲେ, 'ତୁମେ ଛାତ୍ରବତ୍ସଳତା କଅଣ ତାହା ଜାଣିନାହଁ । ଗଙ୍ଗାଧର ବାବୁ ତୁମକୁ କେତେ ସୁଖ ପାଆନ୍ତି,

ତୁମଠାରୁ କଅଣ ଆଶା କରନ୍ତି ତୁମେ ବୁଝି ନ ପାରି ତାଙ୍କ ମନରେ ଆଘାତ ଦେଇ । ତୁମେ ତାଙ୍କ ନିକଟକୁ ଯାଇ ତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରି ତାଙ୍କ ଅନଶନ ଭାଙ୍ଗ ।' ମୁଁ ଯାଇ ତାଙ୍କ ଗୋଡ଼ତଳେ ପଡ଼ି କ୍ଷମା ମାଗିବାରୁ ସେ ମୋତେ କୋଳକୁ ଉଠାଇ ନେଇ, ଯା' ବୋଲି କହି ଛାଡ଼ିଦେଲେ । ତା'ପରେ ଖୁସିରେ ନାଚି ଉଠି ଅନ୍ୟମାନଙ୍କୁ କହିଲେ ମୁଁ ଜାଣିଥିଲି ସେ ଆସି କ୍ଷମା ମାଗିବ । ସେ ଖରାପ ହୋଇ ପାରିବ ନାହିଁ ।

ମୁଁ ସେତେବେଳେ ସତ୍ୟବାଦୀ ଗୁରୁକୁଳର ପୁରାତନ ଛାତ୍ର ହରିବାବୁଙ୍କ ଠାରୁ ତାଙ୍କ ପୁରୁଣା ଶିକ୍ଷକମାନଙ୍କ ସମ୍ବନ୍ଧରେ ଅନେକ କଥା ଶୁଣିବାକୁ ପାଇଥିଲି ।

ପଣ୍ଡିତ ଗୋଦାବରୀଶ ଅତି କଉତୁକିଆ ପ୍ରକୃତିର ଥିଲେ । ପୂର୍ବ ଯୋଜନା ଅନୁସାରେ ଏମ.ଏ ପାଶ କଲାପରେ ନୀଳକଣ୍ଠ ବାବୁ ଆସିବାର ଦୁଇବର୍ଷ ପରେ ସେ ସତ୍ୟବାଦୀ ସ୍କୁଲରେ ଯୋଗ ଦେବାକୁ ଆସିଥିଲେ । ତାଙ୍କ ଚେହେରା ପିଲାଳିଆ ଥିଲା । ଭର୍ଣ୍ଣାକୁଲର ସ୍କୁଲରୁ ପାଶ୍ କରି ଆସି ତଳ କ୍ଲାସରେ ପଢୁଥିବା କେତେକ ଛାତ୍ର ଗୋଦାବରୀଶଙ୍କଠାରୁ ବୟସ୍କ ଜଣାଯାଉଥିଲେ । ସେମାନଙ୍କ ପାଇଁ ସେଠାରେ ସ୍ୱତନ୍ତ୍ର ଇଂରାଜୀ କ୍ଲାସ ନିଆଯାଉଥିଲା । ସେହି କ୍ଲାସର ପଢ଼ା ଦେଖିବାପାଇଁ ଗୋଦାବରୀଶ ବାବୁ ଛ'/ସାତ ଦିନ ପର୍ଯ୍ୟନ୍ତ ସେ କ୍ଲାସକୁ ଯାଇ ପଛରେ ବସୁଥିଲେ । ସେ ସେହି କ୍ଲାସକୁ ପଢ଼ିବାକୁ ଆସିଛନ୍ତି ଭାବି କ୍ଷେତ୍ରବାସୀ ନାମକ ଗୋଟିଏ ଛାତ୍ର ତାଙ୍କ ସଙ୍ଗେ ବନ୍ଧୁତ୍ୱ କରିବାକୁ ଯାଇ ସେ କେତେ ଇଂରାଜୀ ପଢ଼ିଛନ୍ତି ବୋଲି ପଚାରିବାରୁ ସେ 'ଫାଷ୍ଟବୁକ୍‌ର ଘୋଡ଼ା ଲେସନ' ପର୍ଯ୍ୟନ୍ତ ପଢ଼ିଛନ୍ତି ବୋଲି କହିଲେ ।

କ୍ଷେତ୍ରବାସୀ ତାଙ୍କ ସଙ୍ଗେ ବନ୍ଧୁତ୍ୱ କରିବା ପରେ ଦୁହିଁଙ୍କ ଭିତରେ ଆମ୍ବଖିଆ, ମଉଜ-ମଜଲିସ୍, ଖେଳ, ମାଡ଼ ଗୋଳ ପ୍ରଭୃତି ସବୁ ଚାଲିଲା । ସ୍କୁଲର ରୁଟିନ ବାହାରିଲା ପରେ ଗୋଦାବରୀଶ ଆସି ଶିକ୍ଷକ ଆସନରେ ବସି ଇଂରାଜୀ ପଢ଼ାଇବା ଆରମ୍ଭ କରିଦେଲେ । ସେତେବେଳେ ସେ ଶ୍ରେଣୀର ସବୁ ପିଲା ଶିକ୍ଷକ ଓ କ୍ଷେତ୍ରବାସୀଙ୍କ ମୁହଁକୁ ଚାହିଁ ଚାହିଁ ମୁରୁକି ମୁରୁକି ହସିବାକୁ ଲାଗିଲେ । ବିଚରା କ୍ଷେତ୍ରବାସୀ ଲାଜରା ହୋଇ ସେ'ଦିନ ମୁଣ୍ଡପାତି ବସି ରହିଲା । କ୍ଲାସ ପରେ ଆଉ ଛାତ୍ରାବାସକୁ ନ ଫେରି ପାଠ ଛାଡ଼ି ଗ୍ରାମକୁ ପଳାଇଲା ।

ଗୋଦାବରୀଶ ବାବୁଙ୍କର ଥଟ୍ଟାରେ ଅନ୍ୟମାନଙ୍କୁ ବୋକା ବନାଇବା ଏକ ଅଭ୍ୟାସ ଥିଲା । କଲିକତାରେ ପଢୁଥିବା ବେଳେ କେତେକ ବଙ୍ଗୀୟ ବନ୍ଧୁ କଲିକତାର ଉତ୍କୃଷ୍ଟ ନାଚ ଗୀତ ନେଇ ଗର୍ବ ପ୍ରକାଶ କରି ଆଲୋଚନା କରୁଥିଲେ । ଗୋଦାବରୀଶ ତାଙ୍କ ମେସ୍ ସାମ୍ନାର ଗୋଟିଏ ଘରକୁ ଗୁଡ଼ିଏ ଓଡ଼ିଆ କୁଲି ଡ଼କାଇ ଦୁଇଜଣଙ୍କୁ କେବଳ 'ନାରେ ନାରେ କହି ଗୀତ ଗାଇବା ଓ ଅନ୍ୟମାନଙ୍କୁ ପଖଜ ବଜାଇ ତାଳି ବାଡ଼େଇ ଓ ଖଞ୍ଜଣୀ ମାଡ଼ କରିବାକୁ କହିଲେ । ରାତିଯାକ ସେହିପରି ଚାଲିବା ପରେ ସକାଳୁ ତାଙ୍କ

ବଙ୍ଗୀୟ ବନ୍ଧୁମାନେ ସେଠାରେ କ'ଣ ହେଉଥିଲା ବୋଲି ପଚାରିବାରେ ସେଠାରେ ସଙ୍ଗୀତ ଆସର ବସିଥିଲା ଓ ଓଡ଼ିଶାରେ ଏହାଠାରୁ ବଡ଼ ଧରଣର ସଙ୍ଗୀତୋତ୍ସବ ହୁଏ ବୋଲି କହିଲେ ।'

ଆଗେ ହିନ୍ଦୁ ଯାତ୍ରାମାନଙ୍କରେ ଗୋରା ପାଦ୍ରୀମାନେ ଆସି ତାଙ୍କ ଧର୍ମ ପ୍ରଚାର କରନ୍ତି । ସତ୍ୟବାଦୀ ଅଁଳାନବମୀ ଯାତ୍ରା ସମୟରେ ବହୁ ଲୋକ ଜମନ୍ତି । ଗୋଦାବରୀଶ ପାଦ୍ରୀବେଶ ପିନ୍ଧି ଟୁଲ୍ ଉପରେ ସେ ଯାତ୍ରାର ଏକ ଭିଡ଼ ସ୍ଥାନରେ ଠିଆହୋଇ ପାଦ୍ରୀଙ୍କ ଭଳି ବକ୍ତୃତା ଦେଇଥିଲେ - 'ଆମ୍ଭେ ତେଡ଼ ନଈ ସାଟ ସମୁଦଡ଼ ପାଡ଼ ହୋଇ ଯୀଶୁଙ୍କ ଆଡେଶତେ ଟମମାଣଙ୍କୁ ଉଦ୍ଧାଡ କରିବାକୁ ଆଠିଅଛୁ । ଯୀଶୁ ଟୁମକୁ ଟାଡ଼ିବେ, ମାଡ଼ିବେ ପୁଣ୍ୟ ନେଇ ଫାପଡ଼େଇ ସେ ଉଦ୍ଧାଡ଼ିବେ ।' ଏପରି ବକ୍ତୃତା ଦେବା ପରେ ପରେ ସେଠାରୁ ଖସି ଚାଲିଯାଇ ନିଜର ପୋଷାକ ପିନ୍ଧି ସେଠାକୁ ଆସି ଲୋକଙ୍କ ପ୍ରତିକ୍ରିୟା ଶୁଣି ଖୁସି ହୁଅନ୍ତି । ଲୋକମାନେ ସେ ପାଦ୍ରୀଙ୍କ କଥା ଯୀଶୁ ମାରିବେ ପୁଣ୍ୟ ନେଇ ପାପ ଦେବେ କଥା ଆଲୋଚନା କଲାବେଳକୁ ସେଠାରେ ଅସଲ ପାଦ୍ରୀ ପହଞ୍ଚି ଯାଇ ଅପଦସ୍ତ ହୁଅନ୍ତି ।

ତାଙ୍କ କୌତୁକରୁ କେତେକ ନଡ଼ିଆ ନ ଦେଖିଥିବା ଛତିଶଗଡ଼ ଯାତ୍ରୀ ନଡ଼ିଆ କିଣି ଚୋପା ଛଡ଼ାଇ ଆଳୁ ପରି ଡ଼ାଲିରେ ପକାଇ ଘଣ୍ଟା ଘଣ୍ଟା ଧରି ନଡ଼ିଆକୁ କାଢ଼ି ଚିପି ଚିପି ତାହା ନରମ ନ ହେବାରୁ ହଟହଟା ହେଲାବେଳେ, ଗୋଦାବରୀଶଙ୍କଠାରୁ ସଙ୍କେତ ପାଇ ପିଲାମାନେ ଗଛମାନଙ୍କ ଉପରେ ବସି ତାହା ଉପଭୋଗ କରୁଥିବା ଜାଣି ପ୍ରଧାନ ଶିକ୍ଷକ ପିଲାମାନଙ୍କୁ ଭର୍ତ୍ସନା କରିବା ସଙ୍ଗେ ସଙ୍ଗେ ଭୋକିଲା ଯାତ୍ରୀମାନଙ୍କୁ ସାହାଯ୍ୟ କରିଥିଲେ ।

ଗୋଦାବରୀଶ କ୍ଲାସ ବାହାରେ କଉତୁକିଆ ବ୍ୟବହାର, ମାସମେରିଜିମ କରି ପିଲାଙ୍କ ସଙ୍ଗେ ପିଲାଙ୍କ ପରି ମିଶୁଥିଲେ ମଧ କ୍ଲାସରେ ପଢ଼ାଇଲାବେଳେ ଗମ୍ଭୀର ସ୍ୱଭାବ ଧାରଣ କରୁଥିଲେ ।

ହେଡ଼ମାଷ୍ଟର ନୀଳକଣ୍ଠ ସବୁବେଳେ ଚିନ୍ତାଶୀଳ ଥିବାରୁ ଗମ୍ଭୀର ରହୁଥିଲେ । ଆଚାର୍ଯ୍ୟ ହରିହର ଶାନ୍ତ ସ୍ୱଭାବର ଥିଲେ ମଧ ଓ ହସି ହସି କଥାବାର୍ତ୍ତା କରୁଥିଲେ ମଧ ତାଙ୍କ ଭିତରେ ଗାମ୍ଭୀର୍ଯ୍ୟ ରହିଥିଲା ।

ପଣ୍ଡିତ କୃପାସିନ୍ଧୁଙ୍କ ଭିତରେ ଗବେଷକର ଗାମ୍ଭୀର୍ଯ୍ୟ ରହିଥିଲା ।

ମୋଟ ଉପରେ ଗୁରୁକୁଳର ଶିକ୍ଷକମାନେ ବିଦ୍ୱାନ ଓ ଗାମ୍ଭୀର୍ଯ୍ୟ ପ୍ରକୃତିର ଥିବା ଆମେ ଆମ ଶିକ୍ଷକମାନଙ୍କଠାରୁ ଶୁଣିବାକୁ ପାଇଥିଲୁ ।



# ବିରାମ ଓ ପର୍ଯ୍ୟଟନ

କାର୍ଯ୍ୟର ମଝିରେ ବା କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ ସରିବା ପରେ ପରେ ବାହାରୁ ଟିକିଏ ବୁଲି ଆସିଲେ ମନଟା ଟିକିଏ ହାଲୁକା ହୋଇଯାଏ । ପୁରୁଣା କଥା ସବୁ ମନେପଡ଼ି ମନରେ ସାହସ ଆସେ । ସେ ସବୁ କାହା ସଙ୍ଗେ ଆଲୋଚନା କଲେ ନିଜର ଶ୍ରମ ଲାଘବ ହେଲାପରି ଲାଗେ ।

ମୋର ମାଟ୍ରିକ ପରୀକ୍ଷା ନିକଟ ହୋଇ ଆସିବାରୁ ମୁଁ ପଢ଼ାପଢ଼ିରେ ଜୋରସୋରରେ ଲାଗି ଯାଇଥିଲି । ବେଳେବେଳେ ମୁଣ୍ଡଟା ବେଶୀ ଭାରି ବୋଧହେଲେ ମୁଁ କୋଠରୀରୁ ବାହାରକୁ ଯାଇ ଖୋଲା ପବନରେ ବୁଲି ଆସୁଥିଲି । କୌଣସି ବନ୍ଧୁ ବା ଶୁଭାକାଂକ୍ଷୀ ବ୍ୟକ୍ତିଙ୍କୁ ଦେଖିଲେ କିଛି ସମୟ ପାଇଁ ଆଳାପ ଜମାଇ ଦେଉଥିଲି ।

ଦିନେ ସେପରି ବୁଲିଲା ବେଳେ ମୋର ରୋଗା ଗରିବ ମେଧାବୀ ଛାତ୍ର ଶ୍ରୀରାମ ଦାସଙ୍କର ପରୀକ୍ଷାରେ କୃତିତ୍ୱ କଥା ମନେ ପଡ଼ିଲା । ମୁଁ ସେ କଥା ଭାବୁଥିବା ସମୟରେ ବାହାରେ ଜଣେ ଶିକ୍ଷକଙ୍କ ନିକଟରେ ଜଣେ ଦୁଇଜଣ ଛାତ୍ର ବସି ଗଳ୍ପ କରୁଥିବାର ଦେଖି ସେଠାକୁ ଗଲି । ମୁଁ ସେମାନଙ୍କ ଆଲୋଚନାରେ ଯୋଗଦେଇ ମେଧାବୀ ଗରିବ ଛାତ୍ରଙ୍କ କଥା ଉଠାଇଲି; ସେମାନେ ସାମାଜିକ ସାହାଯ୍ୟ ପାଇଲେ ବହୁତ କିଛି କରିପାରନ୍ତେ ବୋଲି ମନ୍ତବ୍ୟ ଦେଲି । ମୋ କଥା ଶୁଣି ସେଠାରେ ଥିବା ଶିକ୍ଷକ କହିଲେ, 'ଅତି ଗରିବ ଓ ମେଧାବୀ ଛାତ୍ରଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ମଣିଷ କରି ଗଢ଼ିବା ପାଇଁ ଏହି ସତ୍ୟବାଦୀ ଗୁରୁକୁଳ ଗଢ଼ି ଉଠିଥିଲା । ଗରିବ ହେଉ ବା ଧନୀ ହେଉ କେବଳ ଆର୍ଥିକ ସାହାଯ୍ୟ ସ୍ୱଚ୍ଛଳତା କାହାକୁ ମଣିଷ କରିପାରିବ ନାହିଁ । ଯେ କୌଣସି ଛାତ୍ର ପିଲାଦିନୁ ଉପଯୁକ୍ତ ଆଦର୍ଶରେ ପରିଚାଳିତ ନ ହେଲେ ଅବାଟରେ ଚାଲିଯିବା ସମ୍ଭବ ।'

ଦୃଷ୍ଟାନ୍ତ ସ୍ୱରୂପ - ଏ ଦେଶ ଗଠନ ପାଇଁ ଉତ୍କଳ ଗୌରବ ମଧୁସୂଦନ ଖୋଜି ଖୋଜି ଅଭାବଗ୍ରସ୍ତ ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ କରୁଥିଲେ । ଶ୍ରୀ ପଟ୍ଟନାୟକ ନାମକ ଗରିବ ଛାତ୍ରଟିଏ ଖୁବ ଭଲ ପଢୁଥିବାର ଶୁଣି ମଧୁବାବୁ ତାକୁ ଆଣି ନିଜର ଗୃହରେ ଆଶ୍ରୟ ଦେଇ ତା' ପଢ଼ାପଢ଼ିର ବ୍ୟବସ୍ଥା କଲେ ।

ମଧୁବାବୁ ବଡ଼ ଓକିଲ ଥିଲେ । ତାଙ୍କ ଘରକୁ ରାଜା, ମହାରାଜାଙ୍କ ଭଳି ବହୁ ବିଳାସୀ ମହକିଲଙ୍କର ସୁଅ ଛୁଟୁଥିଲା । ସେମାନଙ୍କ ଚାକଚକ୍ୟ ଦେଖି ସେ ବାଳକ ନିଜର ପରିସ୍ଥିତିକୁ ଭୁଲି ଯାଇ ସେମାନଙ୍କ ସାନ୍ନିଧ ଲାଭ ପାଇଁ ଉଦ୍‌ଗ୍ରୀବ ହୋଇଉଠିଲେ ।

ସେମାନଙ୍କ ଭିତରୁ କେତେକ ମଦ୍ୟପ ମହକିଲ ସଙ୍ଗରେ ଲୁଚାଇ କରି ବିଲାତି ମଦ ଆଣି ଆସୁଥିଲେ ଓ ସୁବିଧା ଦେଖି ମଦ୍ୟ ପାନ କରୁଥିଲେ । ସେ ବାଳକ ସେମାନଙ୍କ ଗ୍ଲାସ ଓ ସୋଡ଼ା ପ୍ରଭୃତି ଯୋଗାଉ ଯୋଗାଉ ସେମାନଙ୍କ ଠାରୁ ମଦ୍ୟ ନେଇ ଚାଖିଲା ।

ସେପରି କରୁ କରୁ ସେମାନଙ୍କ ସଙ୍ଗେ ଗୋପନରେ ମିଶି ସେ ମଦ୍ୟପ ଓ ବେଶ୍ୟାସକ୍ତ ବ୍ୟକ୍ତିରେ ପରିଣତ ହୋଇଗଲା । ସେଥିପାଇଁ ଅର୍ଥର ପ୍ରୟୋଜନ ହେବାରୁ ସେ ପ୍ରଥମେ ନାନା ବାହାନା ଦେଖାଇ ପଇସା ମାଗି ତା'ର ଖର୍ଚ୍ଚ ଚଳାଇଲା । ଶେଷରେ ମଧୁବାବୁଙ୍କ ଘରୁ ଚୋରି କରି ଧରାପଡ଼ି ବହିଷ୍କୃତ ହେଲା ।

ଗୋପବନ୍ଧୁ ମଧ ଜଣେ ମେଧାବୀ ଛାତ୍ରକୁ ସୁପାରିଶ୍ କରି ସାର୍ଟିଫିକେଟଟିଏ ଦେଇ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ପାଇଁ ପଠାଇଥିଲେ । ସେ ବାଳକ ସେହି ସାର୍ଟିଫିକେଟର ଅପବ୍ୟବହାର କରି ଖରାପ ବାଟ ଧରି ନଷ୍ଟ ହୋଇଯାଇଥିଲା ।

ଏହା ଉପଲବ୍ଧି କରି ବନ ବିଦ୍ୟାଳୟର ଗୁରୁମାନେ ଛାତ୍ରାବାସର ପିଲାମାନଙ୍କର ଚରିତ୍ର ଉଚ୍ଚ ଆଦର୍ଶରେ ଗଠନ କରିବା ପାଇଁ ଛାତ୍ରାବାସରେ ରହୁଥିଲେ । ସେମାନେ ଛାତ୍ରମାନଙ୍କ ଚାଲିଚଳଣ ନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଉଚ୍ଚ ଆଦର୍ଶରେ ଉଦ୍‌ବୁଦ୍ଧ କରୁଥିଲେ । ବହୁ ମେଧାବୀ ଗରିବ ଛାତ୍ର ସେ ଅନୁଷ୍ଠାନରେ ପାଠ ପଢ଼ି ବଡ଼ ମଣିଷ ଓ ଆଦର୍ଶ ବ୍ୟକ୍ତି ଭାବରେ ସୁନାମ ଅର୍ଜନ କରି ପାରିଥିଲେ ଓ ସେମାନଙ୍କ ଜୀବନରୁ ମଧ ବହୁକିଛି ଶିକ୍ଷା କରିବାର ଥିଲା ।

ମୁଁ ପଢୁଥିବା ବେଳର ଛାତ୍ରାବାସର ପରିଚାଳକ ଶ୍ରୀ ହରିହର ମହାପାତ୍ର (ପରେ ହେଡ଼ମାଷ୍ଟର) ସେହି ଗୁରୁକୁଳର ସେପରି ଜଣେ କୃତି ଛାତ୍ର ଥିଲେ । ଆଉ ଦିନେ ମୁଁ ତାଙ୍କ ସଙ୍ଗେ ଆଳାପ କରୁ କରୁ, ସ୍କୁଲର ଯେଉଁ କୋଠରୀଟିରେ ପୁଣ୍ୟାତ୍ମା ଗୋପବନ୍ଧୁ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ, ତାହା ଏକ ପବିତ୍ର ସ୍ଥଳ ହୋଇଥିବାରୁ ତାକୁ ସ୍ମାରକୀ କରି ରଖାଯିବା ଉଚିତ ବୋଲି ମୁଁ ମତ ପ୍ରକାଶ କରିଥିଲି । ତାହା ଶୁଣି ସେ ଗମ୍ଭୀର ହୋଇଯାଇ କହିଲେ 'ହଁ ମୋର ବି ସ୍ମାରକୀ କରି ରଖିବା ଭଳି ବଖରାଏ ଘର ଥିଲା, ଆଜି ଆଉ ତାହା ନାହିଁ ।'

ସେ କି ଘର ବୋଲି ମୁଁ ପଚାରିବାରୁ ସେ ସେହିଘର ଓ ତାଙ୍କ ସହିତ ତାଙ୍କ ଜୀବନର ସମ୍ପର୍କ ବର୍ଣ୍ଣନା କରିବାକୁ ଲାଗିଲେ ।

ହରିବାବୁଙ୍କ ପିତା ଜଣେ ନିସ୍ୱ ପୂଜକ ବ୍ରାହ୍ମଣ ଥିଲେ । ସେ ପୂଜାପୂଜିରେ ଜୀବିକା ନିର୍ବାହ କରିବା ପାଇଁ ତାଙ୍କ ନିଜ ଗ୍ରାମ ଛାଡ଼ି ଶ୍ରୀପୁରୁଷୋତ୍ତମପୁର ଗ୍ରାମକୁ ଉଠି ଆସିଥିଲେ । ସେ ସେଠାରେ ବହୁ କଷ୍ଟରେ ଦେଢ଼ ବଖରା ଘର ପାଇଁ ଜମି କିଣି ତା'

ଉପରେ ମାଟି କାନ୍ଥର ଚାଳିଆ ଘରଟିଏ କରି ରହୁଥିଲେ । ତା'ଛଡ଼ା ତାଙ୍କର ଅନ୍ୟ କୌଣସି ସମ୍ପତ୍ତି ନ ଥିଲା । ହରିବାବୁଙ୍କ ପିତା ଏ'ଠି ସେ'ଠି ଡ଼ାକରା ପାଇ ପୂଜାପୂଜି କରି କୌଣସି ମତେ ସଂସାର ଚଳାଉଥିଲେ । ତାଙ୍କର ଚାରିଟି ପୁତ୍ର ସନ୍ତାନ ଜାତ ହେବାପରେ ହରିବାବୁ (ଜ୍ୟେଷ୍ଠପୁତ୍ର)ଙ୍କୁ ୧୧ ବର୍ଷ ହୋଇଥିବା ସମୟରେ ହଠାତ୍ ତାଙ୍କର ତିରୋଧାନ ଘଟିଲା ।

ସେହି ଘରେ ପ୍ରତି ଶନିବାର ଦିନ ଗୋଟିକ ପରେ ଗୋଟିଏ ତିନୋଟି ପିଲାଙ୍କର ଲାଗ ଲାଗ ମୃତ୍ୟୁ ଘଟିଥିବାରୁ ସେଠାରେ ରହିଲେ ଆସନ୍ତା ଶନିବାର ଦିନ ହରିହରଙ୍କର ମଧ ମୃତ୍ୟୁ ଘଟିବାର ଆଶଙ୍କା କରି ତାଙ୍କ ସ୍କୁଲର ଜଣେ (କୁଷ୍ଠରୋଗୀ) ଶିକ୍ଷକ ତାଙ୍କୁ ଘରୁ ଘେନି ଯାଇ ଭାଗବତ୍ ଘରେ ଲୁଚାଇ ରଖିଲେ ।

ମାଆଙ୍କ ବିଷୟ ଭାବି ଭାବି ହରିବାବୁ ଭାଗବତ ଘରେ ଅଟକି ରହି ଅସ୍ଥିର ହେଉଥିଲେ । ସେତିକିବେଳେ କୌଣସି ଦୁର୍ବୃତ୍ତ ହିଂସୁକ ଲୋକ ସେହି ଭାଗବତ ଘର ଚାଳରେ ନିଆଁ ଲଗାଇ ଦେଲା । ସେ ଘର ଦୁଲ ଦୁଲ ହୋଇ ଜଳିଉଠିଲା ବେଳକୁ ଲୋକେ ସେଠାରେ ଆସି ରୁଣ୍ଡ ହୋଇ ନିଆଁ ଲିଭାଇବାରେ ଲାଗିଗଲେ ସମସ୍ତେ ନିଆଁ ଲିଭାରେ ବ୍ୟସ୍ତ ଥିବାର ସୁଯୋଗ ପାଇ, ହରିବାବୁ ସେ ଶିକ୍ଷକଙ୍କୁ ଲୁଚି ନିଜ ମାତାଙ୍କ ନିକଟକୁ ପଳାଇ ଆସିଲେ ।

ଧନ ନାହିଁ, ଧାନ ନାହିଁ, ସାହାଯ୍ୟକାରୀ ବନ୍ଧୁବାନ୍ଧବ କୁଟୁମ୍ବ କେହିନାହିଁ, ଘର ଭାଙ୍ଗିକରି ପଡ଼ିଛି, ମାତା ମ୍ରୀୟମାଣ ହୋଇ ମୃତବତ୍ ପଡ଼ିରହିଛନ୍ତି । ସେତେବେଳକୁ ତାଙ୍କର ବିଚାର ବୁଦ୍ଧି ଆସିବା ଭଳି ବୟସ ହୋଇଥିଲେ ସେପରି ଅବସ୍ଥା ହୃଦୟଙ୍ଗମ କରି ନିରାଶାରେ ସେ ହୁଏତ ପାଗଳ ହୋଇଯାଇଥାଆନ୍ତେ । କିନ୍ତୁ ସେ ସେହି ଘଟଣାବଳୀର ଆଦିଅନ୍ତ ଠିକ୍ କରି ନ ପାରି ସ୍ତମ୍ଭୀଭୂତ ହୋଇଗଲେ ।

ସେତିକିବେଳେ ଦରିଦ୍ରକୁ ଦଇବ ସାହା ଭଳି ତାଙ୍କ ସ୍କୁଲସାଥି ମାନେ ତାଙ୍କ ନିକଟକୁ ଧାଇଁ ଆସିଲେ । ସେମାନେ ତାଙ୍କ ଦୁଃଖରେ ବ୍ୟଥିତ ହୋଇ ତାଙ୍କୁ ସାହାଯ୍ୟ କରିବା ପାଇଁ ଲାଗିପଡ଼ିଲେ । ସେମାନେ ସେମାନଙ୍କ ଅଭିଭାବକମାନଙ୍କୁ ଲଗାଇ ଦୁଇଖଣ୍ଡି ବାଉଁଶ ଓ କିଛି ଛଣ ଅଣାଇ ସମସ୍ତେ ଲାଗିପଡ଼ି ଚାଳିଆ ଘର ଖଣ୍ଡିଏ ତୋଳି ସେଠାରେ ଠିଆ କରିଦେଲେ । ତାଙ୍କର ମାତା ଏକମାତ୍ର ଜୀବିତ ପୁତ୍ରର ମୁଖକୁ ଚାହିଁ ଧୈର୍ଯ୍ୟଧରି ପୁଣି ନିଜ ଧନ୍ଦା କରି ପୁଅକୁ ଖାଇବାକୁ ଦେଇ ବଞ୍ଚାଇ ରଖି ପାଠ ପଢ଼ାଇବାକୁ ଚେଷ୍ଟା କଲେ । ହରିବାବୁ ତାଙ୍କ ବିବାହ ପର୍ଯ୍ୟନ୍ତ ସେହି ଘରେ ରହିଥିଲେ । ତେଣୁ ତାଙ୍କ ପ୍ରତି ସେହି ଚାଳିଆ ଘରଟି ସ୍ମରଣୀୟ ହୋଇ ରହିଥିଲା । ସେ ସେପରି ଅବସ୍ଥାରୁ ଉଠି ନିଜ ଗୋଡ଼ରେ ଠିଆହୋଇ ନିଜର ମେଧା ଶକ୍ତି ଯୋଗୁ ବି.ଏସ.ସି ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ପାଠ

ପରେ କୌଣସି ସରକାରୀ ଚାକିରି ନ କରି ଶିକ୍ଷକତାରେ ମନୋନିବେଶ କରିଥିଲେ । ସେ 'ନୂତନ' ସତ୍ୟବାଦୀ ସ୍କୁଲ ଗଠନରେ ଯୋଗଦେଇ ସେ ସ୍କୁଲରେ ଶିକ୍ଷକତା କରି ବାର୍ଦ୍ଧକ୍ୟ ଅବସ୍ଥାରେ ପ୍ରଧାନ ଶିକ୍ଷକପଦରୁ ଅବ୍ୟାହତି ନେଇଥିଲେ ।

ମଝିରେ ମଝିରେ ସେପରି ସବୁ ଆଲୋଚନା, ମନଦେଇ ପଢ଼ିବା ପାଇଁ ମୋତେ ଉତ୍ସାହିତ କରୁଥିଲା । ଏହିପରି ଘଟଣା ସବୁର ପ୍ରବାହ ଦେଇ ଚାହୁଁ ଚାହୁଁ ସେ ବର୍ଷଟି ଚାଲିଗଲା । ପରୀକ୍ଷା ସରିଲା । ପରୀକ୍ଷା ଫଳକୁ ଚାହିଁ ଘରେ ବସି ରହିବା ଅପେକ୍ଷା ପର୍ଯ୍ୟଟନରେ ଯାଇ ବିଭିନ୍ନ ସ୍ଥାନ ଦେଖିବା ଓ ବିଭିନ୍ନ ଲୋକଙ୍କ ସାନ୍ନିଧ ଲାଭ କରିବା ପାଇଁ ମୋର ମନ ବଳିଲା ।

ମୁଁ ସତ୍ୟବାଦୀରେ ରହିବା ସମୟରେ ମୋର କଟକୀ ସଂଗ୍ରାମୀ ବନ୍ଧୁମାନେ ମୋ ସଙ୍ଗେ ସମ୍ପର୍କ ରଖିବା ଚେଷ୍ଟାରୁ ବିରତ ନ ଥିଲେ । ସେ ସମୟରେ ଦେଶର ରାଜନୈତିକ ଅବସ୍ଥା ପଙ୍କିଳ ଧରିଥିଲା । ସେଥିରୁ ଭଲମନ୍ଦ ବାଛିବା ମଧ ଦୁରୁହ ଥିଲା । ତେଣୁ ସଙ୍ଗେ ସଙ୍ଗେ କଟକ ଯିବାକୁ ମୋର ମନ ନ ଥିଲା ।

ଅବଶ୍ୟ ସୁଭାଷଙ୍କ ଫରୱାଡ଼ ବ୍ଲକକୁ ସରକାର ନିଷିଦ୍ଧ ଘୋଷଣା କରିବା ପରେ ତାର ଗୋପନ କାର୍ଯ୍ୟର ପରିସର ବଢ଼ି ଯାଇଥିଲା । ବିଭିନ୍ନ ପ୍ରଦେଶର ଓ ଦେଶବାହାରର ସୁଭାଷପନ୍ଥୀ କର୍ମୀମାନଙ୍କ ଭିତରେ ସଂଯୋଗ ସ୍ଥାପନ ପାଇଁ ଆମପରି କର୍ମୀମାନଙ୍କର ସକ୍ରିୟ ହେବାର ପ୍ରୟୋଜନ ଦେଖାଯାଇଥିଲା । ସେତେବେଳେ ଆମ କମ୍ୟୁନିଷ୍ଟ ବନ୍ଧୁମାନେ ଋଷିଆ, ଋଷିଆ ହୋଇ ଭାରତର ସ୍ୱାର୍ଥକୁ ଭୁଲି ଯାଉଥିବା ପରି ମନେ ହେଉଥିଲା ।

ସେହି ସମୟରେ ଆମ ସୁଭାଷପନ୍ଥୀ କର୍ମୀମାନଙ୍କ ଭିତରୁ ସାଥୀ ସଂଗ୍ରାମୀ ବଳରାମ ମହାନ୍ତି ମୋ ନିକଟକୁ ଏ ପତ୍ରଟି ଲେଖିଲେ-

ସ୍ନେହର ବିକ୍ରମ, କଟକ ୧.୮.୪୧

ତୁମେ ଘରେ ବସି କ'ଣ କରୁଛ ? ଏ ମଧରେ କ'ଣ ଆମମାନଙ୍କୁ ଭୁଲିଗଲଣି ? ଆମ କମ୍ୟୁନିଷ୍ଟ ବନ୍ଧୁମାନଙ୍କର ବଡ଼ କାମ ସବୁ ତୁମେ ଜାଣିବଣି । ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ସମସ୍ତ ଓଡ଼ିଶାରେ ସେମାନଙ୍କ ଦୌରାତ୍ମ୍ୟ ଜଣାପଡ଼ିଗଲାଣି ।

ଛାତ୍ରମାନଙ୍କ ଭିତରେ କାର୍ଯ୍ୟ କରିବା ଆମ୍ଭମାନଙ୍କ ପାଇଁ ଏହା ପ୍ରକୃଷ୍ଟ ସମୟ । ଏହି କେତେ ଦିନ ଭିତରେ (ଆମ ପନ୍ଥୀ) ଛାତ୍ରମାନେ ଅତି ନିରୁତ୍ସାହିତ ହୋଇ ପଡ଼ିଲେଣି । ଆମର 'ଛାତ୍ର ଶକ୍ତି' ଖବର କାଗଜ ନିଶ୍ଚୟ ବାହାରିବ । ଗୋଟିଏ ଫର୍ମ

ମଧ କମୋଜ ହୋଇ ସାରିଲାଣି । ଏ ସମୟରେ ତୁମେ ସକ୍ରିୟ ହେବା ନିତାନ୍ତ ପ୍ରୟୋଜନ । ଆଉ ସାକ୍ଷାତରେ ।

ତୁମର

ସ୍ନେହର ବଳରାମ

୧୯୪୧ ମସିହାଟି ଏ ଭାରତ ପାଇଁ ଏକ ଯୁଗାନ୍ତକାରୀ ସମୟ ଥିଲା । ଜାନୁଆରୀରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଅନ୍ତର୍ଦ୍ଧାନ ହେଲେ । ତା' ପୂର୍ବରୁ ପ୍ରାଦେଶିକ ମନ୍ତ୍ରୀ ମଣ୍ଡଳରୁ ଓହରି ଆସିଥିବା କଂଗ୍ରେସ ଦଳ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶରେ ବ୍ୟକ୍ତିଗତ ସତ୍ୟାଗ୍ରହ କରିଥିଲେ । ବିନୋବା ଭାବେଙ୍କ ଭଳି ସଂଗଠନ କର୍ମୀ ଭାରତରେ ପ୍ରଥମ ବ୍ୟକ୍ତି ଭାବରେ ସତ୍ୟାଗ୍ରହ ଆରମ୍ଭ କରିଥିଲେ ।

ସେହି ବ୍ୟକ୍ତିଗତ ସତ୍ୟାଗ୍ରହରେ ବିପ୍ଳବ ବାର୍ତ୍ତା ନ ଥିଲା, ତାହା ଏକ ଫାର୍ସ ପରି ଅନୁଷ୍ଠିତ ହେଉଥିଲା । ସେହି ଜାନୁଆରୀ ଶେଷ ଦିନ ସମାଜ ସଂପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର କଂଗ୍ରେସ ପକ୍ଷରୁ ବଛା ହୋଇ ସତ୍ୟବାଦୀରେ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଏକ ସଭା କଲେ । କୌତୂହଳବଶତଃ ମୁଁ ସେହି ସଭା ଦେଖିବାକୁ ଗଲି । ଲିଙ୍ଗରାଜ ବାବୁ ଆସନ୍ନ ବିପ୍ଳବ ବା ଯୁଦ୍ଧର ନାଁ ପର୍ଯ୍ୟନ୍ତ ଧରିଲେ ନାହିଁ । ସରକାରଙ୍କ ଉପରେ ଅଭିମାନ କଲାପରି ନମ୍ର ଭାବରେ ସରକାରଙ୍କ ବିରୁଦ୍ଧରେ ଫମ୍ପା ଧ୍ୱନୀ ଦେଇ ଆଗରୁ ସଲାସୂତୁରା ହେଲା ପରି ବନ୍ଦୀ ହୋଇ ପୋଲିସଙ୍କ ପଛେ ପଛେ ଚାଲିଲେ । ସେ ସଭାରେ ବହୁତ କମ୍ ଲୋକ ଯୋଗ ଦେଇଥିଲେ । ଲୋକଙ୍କ ମଧ୍ୟରେ କୌଣସି ଉନ୍ମାଦନା ବା ଉତ୍ତେଜନା ନ ଥିଲା ।

ସୁଭାଷ ବାବୁଙ୍କ ଆତ୍ମଗୋପନରେ ଆମେ ସୁଭାଷପନ୍ଥୀମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଥିଲୁ ।

୧୯୪୧ ମାର୍ଚ୍ଚ କୋଡ଼ିଏ ତାରିଖରେ ମୋର ପିତା ପଣ୍ଡିତ ନୀଳକଣ୍ଠଙ୍କର କେନ୍ଦ୍ର ଆସେମ୍ବ୍ଲିର ଏକ ଅଧିବେଶନ ପାଇଁ ଦିଲ୍ଲୀ ଯିବାର ଥିଲା । ତାଙ୍କ ସଙ୍ଗେ ଦିଲ୍ଲୀ ଯିବା ପାଇଁ ମୁଁ ତାଙ୍କୁ ଅନୁରୋଧ କଲି । ସେ କାଳରେ ସେପରି ଅଧିବେଶନ ପାଇଁ ଗଲାବେଳେ ସଦସ୍ୟମାନଙ୍କୁ ଗୋଟିଏ ମାତ୍ର ଫାଷ୍ଟକ୍ଲାସ ଭଡ଼ା ମିଳେ । ପିତାଙ୍କ ନିକଟରେ ପଇସା ନ ଥାଏ । ତେଣୁ ସେ ଫାଷ୍ଟକ୍ଲାସରେ ନ ଯାଇ ସେହି ପଇସାରେ ଦୁଇଟି ଇଣ୍ଟରକ୍ଲାସ ଟିକେଟ କିଣି ମୋତେ ସଙ୍ଗରେ ନେଇ ଦିଲ୍ଲୀ ଯାତ୍ରା କଲେ ।

ଆମେ ଦିଲ୍ଲୀଗାଡ଼ି ଧରିବାକୁ କଲିକତାରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ରହିବା ଭିତରେ ଏଲଗିନ ରୋଡ଼ରେ ସୁଭାଷ ବାବୁଙ୍କ ଘରକୁ ଗଲୁ । ମୋ ପିତାଙ୍କର ସୁଭାଷଙ୍କ ବଡ଼ଭାଇ

ଶରତ ଚନ୍ଦ୍ର ବୋଷଙ୍କ ସହିତ ବହୁ ସମୟ ଧରି ଗୁପ୍ତମନ୍ତ୍ରଣା ଚାଲିଲା । ସେମାନଙ୍କ ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧରେ ଆଲୋଚନାରତ ଥିବାବେଳେ ମୁଁ ବାହାର ଘରେ ରହି ସେଠା ଲୋକଙ୍କୁ ପଚାରି ସୁଭାଷଙ୍କ ଅନ୍ତର୍ଦ୍ଧାନ ବିଷୟରେ କିଛି ତଥ୍ୟ ଜାଣିବାକୁ ଚେଷ୍ଟା କରି ନିଷ୍ଫଳ ହେଲି ।

ସନ୍ଧ୍ୟାରେ କଲିକତା ଛାଡ଼ି ଆମେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲୁ । ଦିଲ୍ଲୀରେ ପହଞ୍ଚି ଆମେ ଜୁମ୍ମା ମସଜିଦ୍ ସାମ୍ନା ଆଗ୍ରା ହୋଟେଲରେ ରହିଲୁ । ସେ ହୋଟେଲରେ କିଦ୍‌ଓ୍ୱାଇ ଅହମ୍ମଦ ସମେତ ଆଉ କେତେଜଣ କେନ୍ଦ୍ର ଆସେମ୍ବ୍ଲି ସଦସ୍ୟ ମଧ୍ୟ ରହିଥିଲେ ।

ସେ'ଦିନ ଅପରାହ୍ନରେ ବଙ୍ଗଳାର ସଦସ୍ୟ ଶ୍ରୀ ଅମରେନ୍ଦ୍ର ନାଥ ଚାଟାର୍ଜୀ ଓ ଶ୍ରୀ ଲକ୍ଷ୍ମୀକାନ୍ତ ମୈତ୍ର ପ୍ରଭୃତି ବିଶିଷ୍ଟ ନେତାମାନଙ୍କ ସହିତ ସାକ୍ଷାତ ହେଲା । ସନ୍ଧ୍ୟାରେ ଆମେ (ମୁଁ ଓ ପିତା) ଚାନ୍ଦିନୀଚୌକ ଆଡ଼କୁ ଚାଲିକରି ବୁଲିବାକୁ ଗଲୁ । ସେଠାରେ ସ୍ୱର୍ଗତା କବୟତ୍ରୀ ଡାକ୍ତର କୁନ୍ତଳାକୁମାରୀ ସାବତଙ୍କ ବାସଗୃହ ଓ କ୍ଲିନିକ୍ ଥିବାର ସ୍ଥାନ ସବୁ ମୋତେ ଦେଖାଇଲେ । ସେ କୁନ୍ତଳାଙ୍କୁ ନିଜର କନ୍ୟା ଭଳି ଦେଖୁଥିଲେ । କୁନ୍ତଳାଙ୍କ ପ୍ରତିଭା ବିଷୟ ବର୍ଣ୍ଣନା କଲାବେଳେ ତାଙ୍କ ଚକ୍ଷୁ ଛଳଛଳ ହୋଇଗଲା । କୁନ୍ତଳା କୁମାରୀଙ୍କ ସଙ୍ଗେ କେତେକ ଯୁବ ହିନ୍ଦି ଲେଖକ ମୋର ପିତା ଦିଲ୍ଲୀରେ ଥିବାବେଳେ ତାଙ୍କ ନିକଟକୁ ଆସୁଥିଲେ । ୧୯୨୭ରେ ସେମାନଙ୍କ ଭିତରୁ (ପରେ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ) ହିନ୍ଦି ସାହିତ୍ୟିକ ଜୈନେନ୍ଦ୍ର ମୋର ପିତାଙ୍କ ନିକଟରେ ବସି ତାଙ୍କ ଓଡ଼ିଆ 'ଆର୍ଯ୍ୟଜୀବନ' ପୁସ୍ତକକୁ ହିନ୍ଦି ଭାଷାରେ ଅନୁବାଦ କରିଥିଲେ ।

ତା'ପରେ ସେହି ଚାନ୍ଦିନୀଚୌକରେ ଆମେ ଚଷମା ଦୋକାନୀ କପୁରଙ୍କ ନିକଟରେ ପହଞ୍ଚିଲୁ । କପୁର ଜାଲିଆନାବାଗ୍ ହତ୍ୟାକାଣ୍ଡ ବେଳେ ସେଠାରେ ଉପସ୍ଥିତ ଥିଲେ ତାଙ୍କ ହାତରେ ଗୋଟାଏ ଗୁଳି ବାଜିଥିଲା । ସେ ବଡ଼ ମେଳାପି ଲୋକ । ସେ ମୋତେ ତାଙ୍କର ହାତର କ୍ଷତଚିହ୍ନ ଦେଖାଇ ଜାଲିଆନାବାଗ୍ ହତ୍ୟାକାଣ୍ଡର ଭୟାବହ ଦୃଶ୍ୟ ମୋ ଆଗରେ ବର୍ଣ୍ଣନା କଲେ । ତାଙ୍କର ବର୍ଣ୍ଣନାରେ ମୋର ଦେହ ଶୀତେଇ ଉଠିଲା ।

ଦିଲ୍ଲୀରେ କିଛିଦିନ ରହିବା ଭିତରେ ମୁଁ ବୁଲିବୁଲି ଇଣ୍ଡିଆଗେଟ୍, କନର୍ଟ ସର୍କସ, ଆସେମ୍ବ୍ଲି ଗୃହ (ପାର୍ଲିଆମେଣ୍ଟ ଭବନ) କୁତବ୍‌ମୀନାର ପ୍ରଭୃତି ଦେଖିବାର ସୁଯୋଗ ପାଇଲି । ସେ ସମୟରେ ମୁଁ ପିତାଙ୍କ ସଙ୍ଗେ ମଧ୍ୟପ୍ରଦେଶର କେନ୍ଦ୍ର ଆସେମ୍ବ୍ଲି ସଦସ୍ୟ (ପରେ ଗଭର୍ଣ୍ଣର) ମାଧବ ଶ୍ରୀହରି ଆଣେଙ୍କ ଘରକୁ ଯାଇ, ସେଠାରେ ଶ୍ରୀ ଦେଶମୁଖ, ଯମୁନାଦାସ ମେହେଟା ପ୍ରଭୃତିଙ୍କୁ ଭେଟିଲି । ମୁଁ ଟିକିଏ ଦୂରେଇ ରହି ସେମାନଙ୍କର ବିଶ୍ୱଯୁଦ୍ଧ ଓ ଭାରତର ତତ୍‌କାଳୀନ ରାଜନୀତି ବିଷୟରେ ଆଲୋଚନା ଶୁଣିଲି, ଯୁଦ୍ଧକାଳୀନ ପରିସ୍ଥିତିରୁ ଭାରତର ସ୍ୱାଧୀନତା ପାଇଁ ଇଂରେଜଙ୍କ ଠାରୁ କି ଫାଇଦା ଉଠାଯାଇପାରିବ, ତାହା ତାଙ୍କର ଆଲୋଚ୍ୟ ବିଷୟ ଥିଲା ।

ମୁଁ ମଝିରେ ମଝିରେ ବିପ୍ଳବୀ ଅମରେନ୍ଦ୍ର ନାଥ ଚାଟାର୍ଜୀଙ୍କ ଘରକୁ ଯିବାଆସିବା କରୁଥିଲି । ତାଙ୍କ ଘରକୁ ତାଙ୍କ କୁଟୁମ୍ବର ଭାଇ ପଞ୍ଚୁଗୋପାଳ ଚାଟାର୍ଜୀ ନାମକ ଜଣେ ଯୁବକ ଆସିଥିଲେ । ମୋର ତାଙ୍କ ସଙ୍ଗେ ଆଗ୍ରା ଯାତ୍ରା କରିବାର ଠିକ୍ ହେଲା ।

ଆମେ ଦିଲ୍ଲୀରୁ ଟ୍ରେନରେ ଆଗ୍ରା ସହରକୁ ଯାଇ 'ତାଜମହଲ' ନାମକ ହୋଟେଲରେ ରହିଲୁ । ପରଦିନ ସକାଳୁ ସେଠାରୁ ଟାଙ୍ଗାଟିଏ ନେଇ ଦର୍ଶନୀୟ ସ୍ଥାନ ସବୁ ଦେଖିବା ପାଇଁ ବାହାରିଲୁ । ମୁଁ ଆଗରୁ ଟାଙ୍ଗାରେ କେବେ ବସିନଥିଲି । ତାହା ଏକ ଘୋଡ଼ା ଲାଗିଥିବା ଯାନ । ତା'ର ଚାଳକ ଘୋଡ଼ା ଚଳାଇବା ପାଇଁ ସାମନାକୁ ମୁହଁ କରି ବସେ । ତା'ର ପଛରେ ପଛକୁ ମୁହଁକରି ପଡ଼ିଥିବା ସିଟରେ ଯାତ୍ରୀ ବସନ୍ତି । ସେ ଗାଡ଼ି ଜୋର୍‌ରେ ଚାଲିଲେ ଯାତ୍ରୀମାନେ ସେମାନଙ୍କ ସାମ୍‌ନାକୁ ଝୁଙ୍କି ପଡ଼ନ୍ତି । ସେଥିରୁ ତଳକୁ ପଡ଼ିଯିବାର ସମ୍ଭାବନା ଥାଏ ।

ଆମ ଝଟ୍‌କା ଚାଳକଟି ଗୋଟିଏ ସ୍ଥାନୀୟ ମୁସଲମାନ ବୁଢ଼ା । ସେ ଆମକୁ ଆଗ୍ରାର ଇତିହାସ ବିଷୟରେ କ'ଣ କହି ଯାଉଥାଏ । ତା'ର ଅବୋଧ ବିକୃତ ଉର୍ଦ୍ଦୁ ଭାଷାରୁ ଆମେ ବିଶେଷ କିଛି ବୁଝିପାରୁ ନଥାଉ । ସେ ତା'ର ଅନର୍ଗଳ ବକ୍ତୃତା ଭିତରେ ବେଳେ ବେଳେ ହଠାତ୍ ବଡ଼ ପାଟିଟାଏ କରି ତା'ର କଥା ଠିକ୍ କି ନାହିଁ ପ୍ରଶ୍ନ କରୁଥାଏ । ସେ ହଠାତ୍ 'ହେ କି ନେହିଁ' ବୋଲି ପାଟିଟାଏ କରିଦେଲେ ଆମେ ଚମ୍‌କି ପଡ଼ି ସିଟ୍ କଡ଼କୁ ଜୋର୍‌କରି ଧରିନେଉ । ନ ହେଲେ ରାସ୍ତା ଉପରେ ମୁହଁମାଡ଼ି ପଡ଼ିଯିବା ସୁନିଶ୍ଚିତ ଥିଲା । ଯାହାହେଉ ଆମେ କୌଣସିମତେ ଯାଇ 'ତାଜମହଲ' ଗେଟ୍ ନିକଟରେ ପହଁଚିଲୁ । ସେଠାରେ ଟାଙ୍ଗା ବାଲାକୁ ଅଟକାଇ ତାଜମହଲ ପ୍ରାଙ୍ଗଣରେ ପ୍ରବେଶ କଲୁ ।

ମଖମଲ ପ୍ରସ୍ତରର ଚଟାଣ ଉପରେ ରାସ୍ତାରେ ଗଲାବେଳେ ରାସ୍ତା ମଝିରେ ଲମ୍ବିଥିବା କୃତ୍ରିମ ଜଳାଶୟରେ ନିଜ ପ୍ରତିବିମ୍ବ ଓ ତାଜମହଲ ପ୍ରତିବିମ୍ବ ଦେଖି ଦେଖି ସେହି ସୁରମ୍ୟ ଅଟ୍ଟାଳିକା ନିକଟରେ ପହଁଚିଲୁ । ଚାରିପଟେ ଚାରିଟା ଗୋଲିଆ ଉଚ୍ଚ ଗମ୍ବୁଜର ମଧ୍ୟସ୍ଥଳରେ ସେହି ଶୁଭ୍ର ସ୍ମାରକୀ ଅଟ୍ଟାଳିକା ଯୁଗ ଯୁଗ ଧରି ଅମଳିନ ଶରୀରରେ ସେ ଦର୍ଶକର ଦୃଷ୍ଟି ଆକର୍ଷଣ କରିଆସୁଛି । ଶୁଭ୍ର ଧବଳ ଓ ରଙ୍ଗୀନ ମଖମଲ ପ୍ରସ୍ତରରେ ନିର୍ମିତ ଓ ନାନା କାରୁକାର୍ଯ୍ୟରେ ଭୂଷିତ ସେହି ଅଟ୍ଟାଳିକା ଯୁଗ ଯୁଗ ଧରି ଅତି ମନୋରମ ।

ମଖମଲି ପାହାଚରେ ଓହ୍ଲାଇ ତାଜମହଲ୍‌ର ମଧ୍ୟସ୍ଥଳର ଗହ୍ବର ଭିତରେ ପଶି ଦୁଇଟି ମଖମଲି ପ୍ରସ୍ତର ଆବୃତ ସମାଧି ଦେଖିବାକୁ ପାଇଲୁ । ସେହି ଗୃହର ଉପରିଭାଗ ଗୋଟିଏ ବିରାଟ ହାଣ୍ଡି ଭିତର ପଟ ପରି ଦେଖାଯାଉଥାଏ । ସେଠାରେ ଟିକିଏ ଶବ୍ଦ କଲେ ତାହା ବହୁଗୁଣିତ ହୋଇ ବହୁସମୟ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହୁଏ । ସେଠାରେ ଦିଆସିଲିଟିଏ

ଢାଳିଦେଲେ ତାହା ଦେହରେ ଖଞ୍ଜା ଯାଇଥିବା ଅସଂଖ୍ୟ ଦର୍ପଣ କାଚ ଓ ସ୍ପଟିକ ଦେହରେ ସେ ଆଲୋକଟା ପ୍ରତିବିମ୍ବ ହୋଇ ଏକାବେଳକେ ବହୁ ଦୀପାଳି ଜଳି ଉଠିବାର ମନୋହର ଦୃଶ୍ୟ ସୃଷ୍ଟି କରେ ।

ଆମର ହିନ୍ଦୁ ଜଗତରେ ଭକ୍ତିରେ ଭକ୍ତ ରାଜାମାନେ ବହୁ କାରୁକାର୍ଯ୍ୟ ଖଚିତ ଦେବ ମନ୍ଦିରମାନ ଗଠନ କରି ଯାଇଛନ୍ତି । କିନ୍ତୁ ସେହି ତାଜମହଲ୍ ଅଟ୍ଟାଳିକାଟିକୁ ପାର୍ଥିବ ପ୍ରେମକୁ ଚିରଦିନ ପ୍ରତିଫଳିତ କରି ରଖିବା ପାଇଁ ପ୍ରେମିକ ସାହାଜାହାନ ନିର୍ମାଣ କରି ଯାଇଛନ୍ତି ।

ମୁଁ ତାଜମହଲକୁ ବୁଲି ବୁଲି ଦେଖି ନେବା ପରେ ତା'ର ପାର୍ଶ୍ୱରେ ଥିବା ଉଦ୍ୟାନରେ ଯାଇ ବସିଲି । ମୋଗଲ ବାଦଶାହମାନଙ୍କ ଛବିସବୁ ଇତିହାସ ପୁସ୍ତକରୁ ଆସି ମୋ ଆଖି ଆଗରେ ନାଚିବାକୁ ଲାଗିଲେ । ସେଠାରେ ବସିରହି ମୁଁ ସେମାନଙ୍କ ସମ୍ବନ୍ଧରେ କେତୋଟି କବିତା ଲେଖିଥିଲି । ସେଥିରୁ 'ତାଜମହଲ' କବିତାରୁ ଧାଡ଼ିଟିଏ ମନେପଡ଼ୁଛି ।

ସାହାଜାହାନ ସାହାଜାହାନ ଅଦ୍ଭୁତ ବିନ୍ଧାଣୀ
ଜଗତବୁକେ ଲେଖିଯାଇଛି 'ତାଜ' ତୁମର ରାଣୀ ।

ସେ'ଠାରୁ ଆମେ ସେହି ଟାଙ୍ଗାରେ ବସି ଆଗ୍ରା ପୋର୍ଟକୁ ଆସିଲୁ । ସେହି ଦୁର୍ଗର ବିରାଟ ପ୍ରାଚୀର ଭିତରେ ଥିବା ମୋତି ମସଜିଦ୍, ଦରବାର ଗୃହ 'ବିଚାରଗୃହ' ପ୍ରଭୃତି ଦେଖି ଆଉରଙ୍ଗଜେବ ତାଙ୍କ ପିତା ସାହାଜାହାନଙ୍କୁ ବୃଦ୍ଧ ଅବସ୍ଥାରେ ଯେଉଁଠାରେ ବନ୍ଦୀକରି ରଖିଥିଲେ ସେ ସ୍ଥାନ ଦେଖି ମନ ବିଷାଦରେ ଭରିଗଲା ।

ସେହି ଦୁର୍ଗଟି ସାହାଜାହାନ ନିଜେ ନିର୍ମାଣ କରାଇ ସେହିଠାରେ ତାଜମହଲର ଦୃଶ୍ୟ ଉପଭୋଗ କରୁଥିଲେ । ଆମେ ତାର ସନ୍ଧାନ ପାଇଲୁ ସ୍ନାନାଗାର ଗୃହକୁ । ସେହି ସ୍ନାନାଗାରଟି ଚଟାଣର ତଳେ ରହିଥିଲା । ଗୋଟିଏ ଦ୍ୱାରବାଟେ ସିଡ଼ିଦେଇ ତଳକୁ ଯାଇ ସେ ସ୍ନାନାଗାରରେ ପ୍ରବେଶ କରିବାକୁ ହୁଏ । ସେହି ଦ୍ୱାରବନ୍ଧରେ ଏକ କ୍ଷୁଦ୍ର ନୀଳମଣି ପଥର ଲାଗିଥିବାର ଆମେ ଦେଖିଲୁ । ତା'ଭିତରକୁ ଚାହିଁଲେ ସେ ଅଧଇଞ୍ଚ ଗୋଲେଇର ପଥର ଭିତରେ ଦୂରରେ ଥିବା ତାଜମହଲ୍‌ର ସଂପୂର୍ଣ୍ଣ ଛବିଟି ପ୍ରତିଫଳିତ ହେଉଥିଲା । ସେହି ସ୍ନାନାଗାରର ଛାତଟି ଛାଇ ଦିଶୁଥିବା ଟ୍ରାନସଲୁସେଣ୍ଟ ପଥରରେ ନିର୍ମିତ । ସ୍ନାନାଗାର ଭିତରେ ରହି ତା'ଉପରେ କେହି ଚାଲିଗଲେ ତାହାର ଛାଇରୁ ସ୍ନାନାଗାରରେ ଥିବା ଲୋକ ତାହା ଜାଣିପାରେ । ସେଠାରେ ଜଗିଥିବା ଦ୍ୱାରପାଳର ଛାଇରୁ ସ୍ନାନରତ ବାଦଶାହା ସାହାଜାହାନ ଦ୍ୱାରପାଳର ଗତିବିଧି ଲକ୍ଷ୍ୟ କରିପାରୁଥିଲେ । ନିଜର ସମ୍ଭୋଗ, ଆମୋଦ ଓ ସୁରକ୍ଷା ପାଇଁ ସେ ଯେଉଁ ଦୁର୍ଗ ନିର୍ମାଣ କରିଥିଲେ ତାହା ଶେଷରେ ତାଙ୍କ ପାଇଁ କାଳ ହୋଇଥିଲା ଓ ସେଥିରେ ବନ୍ଦୀଭାବରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

ସେହି ଦୁର୍ଗ ଭିତରେ ବହୁ ମୂଲ୍ୟବାନ ପଦାର୍ଥ ଗଚ୍ଛିତ ହୋଇ ରହିଥିବା ଆମେ ଦେଖିବାକୁ ପାଇଲୁ । ଗଜନୀର ମାମୁଦ୍ ଯେଉଁ କାରୁକାର୍ଯ୍ୟପୂର୍ଣ୍ଣ କବାଟ ଭାରତରୁ ଲୁଣ୍ଠନ କରି ନେଇଯାଇଥିଲେ ତାହା ବ୍ରିଟିଶ ରାଜାଙ୍କ ଦ୍ୱାରା ପୁନରୁଦ୍ଧାର କରାଯାଇ ସେଠାରେ ରଖାଯାଇଥିଲା । ତା'ଛଡ଼ା ମୋତି ମାଣିକ୍ୟ ଓ ରତ୍ନ ଖଚିତ ନାଲି ମଖମଲ୍ ପ୍ରସ୍ତର ନିର୍ମିତ ସୁନ୍ଦର ରତ୍ନ ସିଂହାସନ, ମାର୍ବଲର ବିରାଟ ଖଟ, ଚଉକୀ ପ୍ରଭୃତି ସେଠାରେ ଥିଲା ।

ସେହି ଦୁର୍ଗକୁ ନିରୀକ୍ଷଣ କରି ମୁଁ ସେହି ପିତାପୁତ୍ରଙ୍କ କଥା ଭାବିବାକୁ ଲାଗିଲି । ପିତା ସାହାଜାହାନ ପ୍ରେମର ପୁଷ୍ପଗୁଚ୍ଛ ଉପରେ ପଦଚାଳନା କରି ସ୍ୱର୍ଗୀୟ ଆନନ୍ଦ ଉପଭୋଗର ପ୍ରୟାସୀ ହେବାବେଳେ, ପୁତ୍ର ଆଉରଙ୍ଗଜେବ୍ ସାମ୍ରାଜ୍ୟପ୍ରାପ୍ତିର ଲିପ୍ସାରେ ଅନ୍ଧ ହୋଇ ପିତାଙ୍କୁ ବନ୍ଦୀ କରି ନିଜର ତଥାକଥିତ ଧର୍ମ ଦୃଷ୍ଟିରେ, ଧର୍ମ ରାଜ୍ୟ ସ୍ଥାପନ ପାଇଁ ଅନଳର ପଥ ସୃଷ୍ଟି କରିଗଲେ । ସେଥିପାଇଁ ବିରାଟ ସୁଦୃଢ଼ ମୋଗଲ ସାମ୍ରାଜ୍ୟ କେବଳ ଆସ୍ତେ ଆସ୍ତେ ଭସ୍ମୀଭୂତ ହେଲାନାହିଁ, ତାହା ଚିରକାଳ ପାଇଁ ଦେଶକୁ ଜଳାଇ ରଖିବାକୁ ଜ୍ୱଳନ୍ତ ଅଙ୍ଗାର ଛାଡ଼ିଗଲା । ସେଠାରୁ ଯାଇ 'ଇସମତ ଦୁଲା'ରେ ଆକବରଙ୍କ ଶ୍ୱଶୁର ପ୍ରଭୃତିଙ୍କ କବର ସ୍ଥାନ ଦେଖି ସାରି ଆମେ ହୋଟେଲକୁ ଫେରିଲୁ ।

ପରଦିନ ସକାଳୁ ବସ୍‌ରେ ବସି 'ସିକନ୍ଦରା' ଅଭିମୁଖେ ଗମନ କଲୁ । ସେଠାରେ ଆକବରଙ୍କ କବର ସ୍ଥାନ ଦେଖିସାରି ଇଦ୍‌ଗା ଠାରୁ 'ଫତେପୁର ସିକ୍ରୀ' ଯାଇ ସେଠାରେ ନାଲି ପଥରର ବିରାଟ ବିରାଟ କାରୁକାର୍ଯ୍ୟ ପୂର୍ଣ୍ଣ ତୋରଣମାନ ଦେଖିବାକୁ ପାଇଲୁ । କବିଙ୍କ ଭାଷାରେ ଗ୍ରୀଷ୍ମକାଳୀନ ଅପରାହ୍ନର ଲୋହିତ ମେଘ ପୂର୍ଣ୍ଣ ପଶ୍ଚିମ ଦିଗ୍‌ବଳୟ ପରି ସେଗୁଡ଼ିକ ପ୍ରତିଭାତ ହେଉଥିଲା ।

ସେଠାରେ ଆକବରଙ୍କ ଗୁରୁଙ୍କ ପାଇଁ ମୁକ୍ତା ଓ ଶାମୁକା ଖଚିତ ମଖମଲି ପ୍ରସ୍ତର ନିର୍ମିତ ଅତି ସୁନ୍ଦର କବରଟିଏ ଗଢ଼ାଯାଇ ଥିବାର ଦେଖିବାକୁ ପାଇଲୁ ।

ତହିଁ ପରଦିନ ଟ୍ରେନରେ ଆଗ୍ରାଠାରୁ ମଥୁରା ଗମନକଲୁ । ମଥୁରାରେ କିଛି ସମୟ ବୁଲାବୁଲି କରି ପୁରାତନ ପ୍ରେମ ନଗରୀ ବୃନ୍ଦାବନ ଉଦ୍ଦେଶ୍ୟରେ ଯାତ୍ରା କଲୁ । ବୃନ୍ଦାବନ ରାଧାକୃଷ୍ଣଙ୍କ ରାସଲୀଳା କ୍ଷେତ୍ର ଭାବେ ବିଖ୍ୟାତ । ହିନ୍ଦୁ ଧର୍ମରେ ଅନ୍ୟ କୌଣସି ଦେବତାଙ୍କୁ ପାର୍ଥିବ ପ୍ରେମ ସଙ୍କେତରେ ଆରାଧନା କରାଯାଏ ନାହିଁ । ସେଠାରେ ବହୁ ରାଧାକୃଷ୍ଣ ଭକ୍ତ ବାବାଜି ଓ ମାତାଙ୍କର ମଠମାନ ରହିଥିବାର ଶୁଣିଥିଲି ଓ ବହୁ ସ୍ଥାନରେ ମନ୍ଦିରମାନ ବିକ୍ଷିପ୍ତ ହୋଇ ରହିଥିବାର ଜାଣିବାକୁ ପାଇଲି । ଆମକୁ ସବୁ ସ୍ଥାନ ବୁଲାଇକରି ଦେଖାଇବା ପାଇଁ ଆମେ ଜଣେ ପଣ୍ଡା ନିଯୁକ୍ତ କରିଥିଲୁ । ଭାରତର ଅନ୍ୟ ଧର୍ମକ୍ଷେତ୍ରର ପଣ୍ଡାମାନଙ୍କ ପରି ଏଠାରେ ପଣ୍ଡାମାନଙ୍କର ମଧ୍ୟ ବିଭିନ୍ନ ସ୍ଥାନରୁ ଆସୁଥିବା ଭକ୍ତଯାତ୍ରୀଙ୍କ

ବିବରଣୀ ଥାଇ ଖାତା ରହିଥିଲା । ମୋ ବଙ୍ଗୀୟ ବନ୍ଧୁ ବା ସାଥୀଙ୍କ ବଂଶାବଳୀ ଯେଉଁ ପଣ୍ଡାଙ୍କ ଖାତାରେ ଥିଲା ସେ ଆମର ପଣ୍ଡା ରୂପେ ନିଯୁକ୍ତ ହୋଇଥିଲେ ।

ପଣ୍ଡା ମହାଶୟ ଆମକୁ ସଙ୍ଗରେ ନେଇ ପୁରାଣମାନଙ୍କର ଦୃଷ୍ଟାନ୍ତ ଦେଇ ବିଭିନ୍ନ ସ୍ଥାନମାନ ଦେଖାଇଥିଲେ । ସୁନା ତାଳଗଛ ଥିବା ସେଠକୀ ମନ୍ଦିର ଓ ବ୍ରଜଧୂଳି ମନ୍ଦିର ଦର୍ଶନ କରାଇଲାବେଳେ ସେ ଯେଉଁ ବ୍ୟାଖ୍ୟା ବୟାନ କଲେ ସେଥିରେ ସାକ୍ଷୀଗୋପାଳ ପଣ୍ଡାଙ୍କ ଜ୍ଞାନକଥା ମନେପଡ଼ି ମୋତେ ହସଲାଗିଲା ।

ସତ୍ୟବାଦୀ ମନ୍ଦିର ମାତ୍ର ଉନବିଂଶ ଶତାବ୍ଦୀରେ ନିର୍ମିତ ହୋଇଥିଲେ ମଧ ସେଠାରେ କେତେକ ପଣ୍ଡା ତା'ର ପୁରାତନତ୍ୱ ପ୍ରତିପାଦନ କରିବା ପାଇଁ ସେଠାରେ ବିଭିନ୍ନ ସ୍ଥାନକୁ ପୌରାଣିକ ନାମରେ ନାମିତ କରନ୍ତି, ଯାତ୍ରୀମାନଙ୍କୁ ସାରଗର୍ଭକ ଅନର୍ଗଳ ବକ୍ତୃତାମାନ ପ୍ରଦାନ କରି ବକୁଳ ବନକୁ ଗୁପ୍ତ ବୃନ୍ଦାବନ (କାନନ), ଥାଳିଧୂଆ ପୋଖରୀକୁ ଶ୍ୟାମକୁଣ୍ଡ, କେତକୀଝର ପୋଖରୀକୁ ରାଧାକୁଣ୍ଡ ପ୍ରଭୃତି ନାମକରଣ କରି ବୁଝାଇ ଥାଆନ୍ତି । ଥରେ ଜଣେ ପଣ୍ଡା ତା'ର ଯାତ୍ରୀମାନଙ୍କୁ ସେପରି ବୁଝାଉଥିଲାବେଳେ ସେ ଯାତ୍ରୀଙ୍କ ଭିତରୁ ଜଣେ ଶିକ୍ଷିତ ବ୍ୟକ୍ତି ଗିରିଗୋବର୍ଦ୍ଧନ କାହିଁ ବୋଲି ପଚାରିବାରେ ସେ ପଣ୍ଡା ସଙ୍ଗେ ସଙ୍ଗେ ସେଠାରେ ଥିବା ଗୋଟିଏ ଲମ୍ବ ଗାଡ଼ିଆକୁ ଦେଖାଇଦେଲେ । ସେଥିରେ ସେ ଯାତ୍ରୀ ଆପତ୍ତି କରି କହିଲେ ଗିରିର ଅର୍ଥ ପର୍ବତ । ଖାତଟାଏ କିପରି ଗିରି ହେବ ? ପଣ୍ଡା ମହାଶୟ ଗିରି ଓ ଗର୍ତ୍ତର ପାର୍ଥକ୍ୟ ଜାଣି ନ ଥିଲେ । ସେ ଗାଲୁକରି କହିଲେ ହଁ ଗୋପୀ ବଲ୍ଲଭ ଗୋପାଳଙ୍କ ମାୟାର ମହିମାରୁ ସବୁ ହୋଇପାରେ । ଆପଣ ବିଶ୍ୱାସ କରନ୍ତୁ । ''ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର ।''

ପଣ୍ଡାଙ୍କ କଥାରେ ସନ୍ତୁଷ୍ଟ ନ ହୋଇ ଜଣେ ସ୍ଥାନୀୟ ବିଦ୍ୱାନ ବ୍ୟକ୍ତିଙ୍କୁ ପଚରାଯିବା ପାଇଁ ସେ ଯାତ୍ରୀ ଜିଦ୍ ଧରିଲେ । ପଣ୍ଡାଙ୍କର ସେ ଯାତ୍ରୀଙ୍କଠାରୁ ମୋଟା ପାଉଣା ପାଇବାର ଆଶା ଥିଲା । ତେଣୁ ସେ କହିଲେ ''ହେଉ ମୁଁ ସ୍ଥାନୀୟ ହାଇସ୍କୁଲର ପ୍ରଧାନଶିକ୍ଷକ ଅଛନ୍ତି କି ନାହିଁ ଦେଖିଆସେ । ଏହାକହି ମନ୍ଦିର ସାମନାରେ ଯାତ୍ରୀମାନଙ୍କୁ ଠିଆକରାଇ ପଣ୍ଡା ମନ୍ଦିର ପଛକୁ ଦଉଡ଼ିଯାଇ ପ୍ରଧାନ ଶିକ୍ଷକଙ୍କୁ ଭେଟିଲେ । ପ୍ରଧାନ ଶିକ୍ଷକ କହିଲେ ''ହଇରେ ମୂର୍ଖ, ବହିପତ୍ର କିଛି ନ ପଢ଼ି ନିଜକୁ ପଣ୍ଡିତ ମନେକରି ଧର୍ମ ନାମ ନେଇ ଯାହା ତାହା କହିଦେଉଛୁ । ତାଙ୍କ କଥା ଶୁଣି ପଣ୍ଡାଟି ତାଙ୍କ ଗୋଡ଼ ହାତ ଧରି ପକାଇ ରକ୍ଷାକରନ୍ତୁ ବୋଲି ଅନୁରୋଧ କଲା । ପ୍ରଧାନ ଶିକ୍ଷକ ତାକୁ ତଳୁ ଉଠାଇ ମୁରୁକି ହସି କହିଲେ, ହଉ ଯା ସେ ଯାତ୍ରୀଙ୍କୁ ସଙ୍ଗରେ ଏଠାକୁ ଡାକିଆଣେ । ମୁଁ ସବୁ ଠିକ୍ କରିଦେବାକୁ ଚେଷ୍ଟା କରିବି ।

ପଣ୍ଡାଟି ସେଠାରୁ ଧାଇଁଯାଇ ସେ ଯାତ୍ରୀଙ୍କୁ ସଙ୍ଗରେ ଧରି ପୁଣି ଆସି ପ୍ରଧାନ ଶିକ୍ଷକଙ୍କ ନିକଟରେ ପହଁଚିଗଲା । ପଣ୍ଡାଙ୍କ କଥାର ଗୁହ୍ୟ ରହସ୍ୟ କ'ଣ ବୋଲି ଯାତ୍ରୀ

ପଧାନ ଶିକ୍ଷକଙ୍କୁ ପଚାରିଲେ । ଶିକ୍ଷକ କହିଲେ ଆପଣତ ପୁରାଣ ସବୁ ପଢିଥିବେ ଏତିକି ଜାଣିପାରୁନାହାନ୍ତି । ଯେତେବେଳେ ଇନ୍ଦ୍ର ସାତଦିନ କାଳ ଅନବରତ ବୃଷ୍ଟିକଲେ, ସେତେବେଳେ ଗୋପବାସୀ ଗାଈ ଗୋରୁ ଧରି ଏଠାରେ ଗୋବର୍ଦ୍ଧନ ପର୍ବତ ନିକଟରେ ଗୋରୁ ଚରାଉଥିଲେ । ଚାରିଆଡ ଜଳାର୍ଣ୍ଣବ ହୋଇ ଆସିବା ବେଳେ ଶ୍ରୀ କୃଷ୍ଣ ଗୋବର୍ଦ୍ଧନ ପର୍ବତଟିକୁ ତଳୁ ଓପାଡି ନିଜ ଆଙ୍ଗୁଠି ଅଗରେ ଛତାପରି ଧରି ଠିଆ ହୋଇଗଲେ । ତା' ତଳେ ଗାଈଗୋରୁ ଓ ଗୋପବାସୀମାନେ ନିରାପଦରେ ରହିଗଲେ । ବର୍ଷା ଛାଡିଯିବା ସଙ୍ଗେ ସଙ୍ଗେ ସେ ସେହି ପର୍ବତଟାକୁ ଦୂରକୁ ଫିଙ୍ଗିଦେଲେ । ତେଣୁ ସେ ପର୍ବତ ଉପୁଡା ହୋଇଥିବା ସ୍ଥାନରେ ଏ ଗାତଟା ରହିଯାଇଛି । ତେଣୁ ଏଥିରେ ନ ବୁଝିବାର କ'ଣ ଅଛି ?

ସେ ଉତ୍ତରରେ ବୁଝିଯାଇ ଯାତ୍ରୀ ପଣ୍ଡାଙ୍କ ସଙ୍ଗେ ଏକମୁହାଁହୋଇ ଯାଉଥିଲା ବେଳେ ପଣ୍ଡା ପଛକୁ ଚାହିଁ, ପ୍ରଧାନ ଶିକ୍ଷକ ମୁରୁକି ମୁରୁକି ହସୁ ଥବାର ଦେଖୁଥିଲେ । ସେ ଶିକ୍ଷକ ନିଜେ ସେହି ଗାତ ଖୋଳାଇ ଥିଲେ । ସେ ନିଜେ ଜଣେ ସତ୍ୟନିଷ୍ଠ ବ୍ୟକ୍ତିହୋଇଥିଲେ ହେଁ ମାନବିକତା ଦୃଷ୍ଟିରୁ ଗରିବ ପଣ୍ଡାଟିକୁ ବିପଦରୁ ରକ୍ଷା କରିବା ପାଇଁ ''ନରେ ବା ଗୁଞ୍ଜରେବା'' ନୀତି ପ୍ରୟୋଗ କରିଥିଲେ ।

ଆମ ପଣ୍ଡା ଆମ ଆଗରେ ତାଙ୍କ ପାଣ୍ଡିତ୍ୟ ସାବ୍ୟସ୍ତକରି ଆମକୁ ମନ୍ଦିର ଓ ଦର୍ଶନୀୟ ସ୍ଥାନ ସବୁ ଦେଖାଇ ସାରି ସ୍ନାନ ପାଇଁ ଯମୁନାନଦୀ କୂଳକୁ ଘେନିଗଲେ । ସେ ନଦୀକୂଳ ପାଣିରେ ବିରାଟ ବିରାଟ କଇଁଛଗୁଡାକ ଯାତ୍ରୀଙ୍କଠାରୁ ଆହାର ପାଇବା ଆଶାରେ ଏପଟ ସେପଟ ହେଉଥିଲେ । ତାଙ୍କୁ ଆଡେଇ ସେଠାରେ ସ୍ନାନ କରିବାକୁ ପଡୁଥିଲା । ତାହାଦେଖି ଆମ ପୁରୀ ଇନ୍ଦ୍ରଦ୍ୟୁମ୍ନ ପୋଖରୀର କୁରୁମ ବା ବିରାଟ କଇଁଛ କଥା ମନେପଡିଲା । ସେହି କୁରୁମମାନେ କେଉଁଠି ମଣିଷ ଥିଲେ । ମନ୍ଦିର ନିର୍ମାଣ ବେଳେ ମନ୍ଦିର ପଥର ବୋହି ବୋହି କୁରୁମ ପାଲଟି ଯାଇ ଇନ୍ଦ୍ରଦ୍ୟୁମ୍ନରେ ରହି ମନ୍ଦିରକୁ ଚାହିଁରହିଥିଲେ । ବୃନ୍ଦାବନର କଇଁଛମାନେ ଗୋପୀଥିଲେ କି ଆଉ କ'ଣ ଥିଲେ ମୁଁ ପଣ୍ଡାଙ୍କୁ ପଚାରିଥିଲେ ଜାଣି ପାରିଥାଆନ୍ତି । କିନ୍ତୁ ପଚାରିଲି ନାହିଁ । ପରେ ଭାରତର ସ୍ୱାଧିନତା ପ୍ରାପ୍ତିପରେ ପାଣି ସଫାରହିବା ପାଇଁ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ କେମିକାଲ ସବୁ ପଡିବା ଦ୍ୱାରା ସେ କୁରୁମମାନେ ସଦଳବଳେ ଅମରତ୍ୱ ସମାପ୍ତ କରି ସ୍ୱର୍ଗାରୋହଣ କରିଛନ୍ତି, ଏବେ ସେଥିରେ ଗୋଟିଏ ହେଲେ କଇଁଛ ନାହାନ୍ତି । ସେହି ଯମୁନା କୂଳରେ (ଗୋପୀରୂପୀ) କଇଁଛମାନେ ଏବେ ଅଛନ୍ତିକି ନାହିଁ ମୁଁ ଖବର ରଖିନାହିଁ ।

ଆମେ ଦିଲ୍ଲୀ ଫେରିବା ପରେ ପିତାଙ୍କୁ (ଆସେମ୍ଲି) ସରକାରୀ ଘର ମିଳିବାରୁ ସେଠାରେ ଯାଇ ରହିଲୁ । ମାର୍ଚ୍ଚ ଶେଷ ଦିନ ଅମର ଚାଟାର୍ଜୀ ଆମକୁ ତାଙ୍କ ଘରକୁ ସାନ୍ଧ୍ୟଭୋଜନ ପାଇଁ ନିମନ୍ତ୍ରଣ କଲେ । ତାଙ୍କଠାରୁ ତାଙ୍କ ଅଭିଜ୍ଞତା ସମ୍ବନ୍ଧରେ ଶୁଣିବାକୁ

ମୋତେ ଭାରି ଭଲ ଲାଗେ । ସେ'ଦିନ ସେଠାକୁ ଅନ୍ୟ କେତେକ ଭଦ୍ରବ୍ୟକ୍ତି ବି ନିମନ୍ତ୍ରିତ ହୋଇ ଆସିଥିଲେ । ମୋର ପିତା ଅମର ବାବୁ ଓ ଅନ୍ୟ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଭିତରେ ଆଲୋଚନା ଚାଲିଲାବେଳେ ମୁଁ ଟିକିଏ ଦୂରେଇ କରି ବସି ଆଗ୍ରହ ସହକାରେ ସେ ସବୁ ଶୁଣିବାକୁ ଲାଗିଲି ।

ସେମାନେ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ଶକ୍ତି ସମ୍ବନ୍ଧରେ ଆଲୋଚନା କରୁଥିଲାବେଳେ ଅମର ବାବୁ କହିଲେ, ତାଙ୍କଗ୍ରାମରେ ଜଣେ ବ୍ୟକ୍ତିଙ୍କର ମୃତ୍ୟୁ ଘଟିବାରୁ ତାଙ୍କର ସହଧର୍ମିଣୀ ନିଜ ବୁକୁରେ ଗୀତା ଖଣ୍ଡିଏ ଧରି ଚକା ପକାଇ ବସି ଦେହରେ କିରୋସିନି ଢାଳି ନିଆଁ ଲଗାଇଦେଲେ । ସେ ସମ୍ବାଦ ପାଇ ସେଠାର ଶାସକ ଓ ପୋଲିସ୍ ଅଳ୍ପକ୍ଷଣ ମଧ୍ୟରେ ସେଠାରେ ଆସି ପହଞ୍ଚିଗଲେ । ସେମାନେ ସେ ଅଗ୍ନି ନିର୍ବାପିତ କରିବାକୁ ଚେଷ୍ଟା କରିବାରୁ ସ୍ତ୍ରୀଲୋକ ସେମାନଙ୍କୁ ତାହା ନ କରିବା ପାଇଁ ନିର୍ଦ୍ଦେଶ ଦେଇ ଏପରି କଟମଟ କରି ଚାହିଁଲେ ଯେ ଅଫିସରମାନେ ସ୍ତମ୍ଭୀଭୂତ ହୋଇ ସେଠାରେ ଠିଆ ହୋଇ ରହିଲେ ।

ସେ ସ୍ତ୍ରୀଲୋକ ସ୍ତବଗାନ କରୁଥିବାବେଳେ ସେମାନଙ୍କୁ କହିଲେ ମୁଁ ଠିକ୍ ଦିନ ତିନିଟା ସମୟରେ ଦେହତ୍ୟାଗ କରିବି । ତୁମେ ମୋର ଅର୍ଦ୍ଧଦଗ୍ଧ ଶରୀରକୁ ସ୍ୱାମୀଙ୍କ ଶବ ସହିତ ନେଇ ଏକା ସଙ୍ଗେ ଦାହ କରିବ । ଏହାକହି ଯେ ଯୋଗୀ ପରି ସେହି ଅଗ୍ନିଭିତରେ ସ୍ଥିର ହୋଇ ନିର୍ବିକାର ଚିତ୍ତରେ ବସି ରହିଲେ । ଠିକ୍ ତିନିଟା ବେଳକୁ ତାଙ୍କର ପ୍ରାଣ ଶରୀର ଛାଡି ଚାଲିଗଲା ।

ମୋର ପିତା କହିଲେ ଯୋଗସ୍ଥ ହୋଇ ପ୍ରାଣ ଛାଡିବା ଆମ ସଂସ୍କୃତିର ଏକ ଅଙ୍ଗ । ମହାବୀର ଆଲେକଜାଣ୍ଡର ଭାରତରୁ ଜଣେ ଯୋଗୀଙ୍କୁ ନିଜ ସାଥିରେ ନେଇ ଗ୍ରୀସ୍ ଫେରିବା ପାଇଁ ଖୋଜି ଖୋଜି ମହାଯୋଗୀ କଲ୍ୟାଣ ବା କଲିନସଙ୍କୁ ସଙ୍ଗରେ ନେଇଥିଲେ । କଲ୍ୟାଣ କିଛି କାଳ ଗ୍ରୀସ୍‌ରେ ରହିବାପରେ ଦେହତ୍ୟାଗ କରିବା ପାଇଁ ଇଚ୍ଛା ପ୍ରକାଶ କରି ଚନ୍ଦନ କାଠର ଏକ ଜୁଇ ନିର୍ମାଣ କରାଇଲେ । ସେଥିରେ ଅଗ୍ନି ସଂଯୋଗ ହେବାପରେ କଲ୍ୟାଣ ଶ୍ଳୋକ ବୋଲି ବୋଲି ସେ ଅଗ୍ନି ମଧ୍ୟରେ ପ୍ରବେଶ କରି ଯୋଗାସନରେ ବସିଗଲେ । ତାଙ୍କର ବାକ୍‌ରୁଦ୍ଧ ହେବା ପର୍ଯ୍ୟନ୍ତ ସେ ପ୍ରଶାନ୍ତ ଚିତ୍ତରେ ବେଦ ମନ୍ତ୍ର ଗାନ କରୁ କରୁ ତାଙ୍କର ଆତ୍ମା ମରଶରୀର ଛାଡି ସ୍ୱର୍ଗାରୋହଣ କରିଥିଲା । ଏପରି ତ୍ୟାଗ ଓ ନିରାଲମ୍ବତା ହିଁ ଆମ ସଂସ୍କୃତିର ମୂଳ ।

ସେ କଥା ଶୁଣି ମୋର ସ୍ୱର୍ଗତ ପଣ୍ଡିତ ମୋତିଲାଲ ନେହେରୁଙ୍କ ଜେରା କଥା ମନେପଡିଲା । ଗୋଟିଏ ସତୀଦାହ ମୋକଦ୍ଦମାରେ ପାଟନା ହାଇକୋର୍ଟର ପ୍ରଧାନ ବିଚାରପତି ସାର କଟନୀ ଟେଲର ସତୀଦାହ ପ୍ରଥା ସପକ୍ଷରେ ମତ ପ୍ରକାଶ କରିଥିବା କେତେକ ବ୍ୟକ୍ତିଙ୍କୁ ଦଣ୍ଡ ବିଧାନ କରିଥିଲେ ।

ସେହି ବିଚାର ସମ୍ପର୍କରେ ମତ ପ୍ରକାଶ କରି ପାଟନାର ଟେଲିଗ୍ରାଫ ପତ୍ରିକା ବିଚାରପତିଙ୍କ ରାୟକୁ ସମାଲୋଚନା କରିଥିବାରୁ ବିଚାରପତି ସେ ପତ୍ରିକାର ସମ୍ପାଦକଙ୍କୁ ଅଦାଲତ ଅବମାନନା ଦୋଷରେ ଅଭିଯୁକ୍ତ କରିଥିଲେ ।

ଟେଲିଗ୍ରାଫ ପତ୍ରିକା ପକ୍ଷରୁ ଓକିଲ ମୋତିଲାଲ ସେ ମୋକଦ୍ଦମା ଲଢି ହିନ୍ଦୁଙ୍କ ଆଧ୍ୟାତ୍ମିକ ବିଶ୍ୱାସ ଉପରେ ଆଲୋଚନା କରି ସମ୍ପାଦକଙ୍କ ମନ୍ତବ୍ୟ ଠିକ୍ ଓ ନିର୍ଦ୍ଦୋଷ ବୋଲି ଦର୍ଶାଇ ଥିଲେ । ଜୋରଜବରଦସ୍ତିରେ ସଂପୃକ୍ତ ନ ଥାଇ ଯଦି କୌଣସି ଲୋକ ସତୀର ସେପରି ସ୍ୱର୍ଗାଗମନକୁ ଧର୍ମ କାର୍ଯ୍ୟ ବୋଲି ବିଶ୍ୱାସ କରେ ତା' ପ୍ରତି ଦଣ୍ଡବିଧାନ କରାଯିବା ଅନୁଚିତ ବୋଲି ମୋତିଲାଲ ଯୁକ୍ତି ଦର୍ଶାଇବାରୁ ମାନ୍ୟବର ବିଚାରପତି କହିଲେ, ଏହା ଏକ ଅନ୍ଧବିଶ୍ୱାସ ହୋଇଥିବାରୁ ଦଣ୍ଡନୀୟ ।

ମୋତିଲାଲ ଯୁକ୍ତି ଦେଖାଇ କହିଲେ ଏହା ଅନ୍ଧବିଶ୍ୱାସ ନୁହେଁ । ଏହା ଏକ ଧର୍ମ ବିଶ୍ୱାସ । ଖ୍ରୀଷ୍ଟିଆନ ଧର୍ମରେ ମଧ ସେହିପରି ବିଶ୍ୱାସ ରହିଛି । ଯୀଶୁ ଯଦି ପିତା ନ ଥାଇ ଜନ୍ମ ହୋଇଥିବା ଓ କବରରୁ ଉଠି ପୁଣି ଜୀବନ ଲାଭ କରିଥିବା ପ୍ରଭୃତି ଘଟଣାକୁ ଆପଣଙ୍କ ପରି ବିଦ୍ୱାନ ଖ୍ରୀଷ୍ଟିଆନ ମାନେ ବିଶ୍ୱାସ କରନ୍ତି ଓ ତାହା ଧର୍ମବିଶ୍ୱାସ ବୋଲି ଧରାଯାଏ, ତେବେ ସ୍ୱାମୀ ସଙ୍ଗେ ଚିତାରେ ପ୍ରବେଶ କଲେ ସ୍ୱର୍ଗପ୍ରାପ୍ତି ହେଲାଭଳି ହିନ୍ଦୁଙ୍କ ବିଶ୍ୱାସକୁ କାହିଁକି ଧର୍ମବିଶ୍ୱାସ ବୋଲି ଧରା ନ ଯାଇ ଅନ୍ଧବିଶ୍ୱାସ ବୋଲି ତାହା ଆଇନ ଦୃଷ୍ଟିରେ ଦଣ୍ଡନୀୟ ହେବ । ସେହି ଅକାଟ୍ୟ ଯୁକ୍ତିରେ ବିଚାରପତି ଟେଲର ଅଭିଭୂତ ହୋଇ ଯାଇଥିଲେ ଓ ପରେ ପାଟନା ବିଶ୍ୱବିଦ୍ୟାଳୟର ମୋତିଲାଲଙ୍କ ଶୋକସଭାରେ ତାହା ପ୍ରକାଶ କରିଥିଲେ ।

ଦିଲ୍ଲୀରେ କିଛିକାଳ ରହି ବଡଲାଟ ସଭାର ଦର୍ଶକ ଗ୍ୟାଲେରିରେ ବସି ସେକାଳ ସଦସ୍ୟ ମାନଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଓ ଅକାଟ୍ୟ ଯୁକ୍ତି ସବୁ ଶୁଣିବାର ସୁଯୋଗ ପାଇଲି । ଇଂରେଜମାନଙ୍କର ଭାରତୀୟ ଲୋକ ବିରୋଧି ଆଇନ ପ୍ରଣୟନର ବିରୋଧ ପାଇଁ ଅଧିକାଂଶ ସଦସ୍ୟ ନିର୍ବାଚିତ ହୋଇ ବିରୋଧି ଦଳର ଆସନ ଗ୍ରହଣ କରିଥିଲେ । ସେ ସମୟରେ ଇଂରେଜ ସରକାର ପ୍ରତ୍ୟେକ ବିଭାଗରେ ସେହି ବିଷୟରେ ବିଶେଷ ଅଭିଜ୍ଞତା ଥିବା ବ୍ୟକ୍ତିମାନଙ୍କୁ ବିଲାତରୁ ଆଣି ଭାରତର ମନ୍ତ୍ରୀ ପଦରେ ନିଯୁକ୍ତ କରୁଥିଲେ । ସେମାନଙ୍କୁ 'ମେମ୍ବର' ଆଖ୍ୟା ଦିଆଯାଉଥିଲା । ବିରୋଧି ଦଳର ଭାରତୀୟ ସଦସ୍ୟମାନଙ୍କୁ ସେମାନଙ୍କ ସଙ୍ଗେ ଟକ୍କର ଦେଇ ଯୁକ୍ତି ଦର୍ଶାଇ ସେମାନଙ୍କ ପ୍ରସ୍ତାବିତ ବିଲ ଓ ଆଇନର ବିରୋଧ କରିବାକୁ ପଡୁଥିଲା । ତେଣୁ ଅଧିକାଂଶ ବିରୋଧି ଦଳର ସଦସ୍ୟ ଅତି ବିଦ୍ୱାନ ସୁବକ୍ତା ଥିଲେ । ତେଣୁ ସଭା ଚାଲିଥିବାବେଳେ ସେ ସଭା ସରଗରମ ହୋଇ ଉଠୁଥିଲା ଓ ସେଥିରୁ ବହୁ ବିଷୟ ଶିଖିବାର ଥିଲା । ସତ୍ୟମୂର୍ତ୍ତୀ ନୀଳକଣ୍ଠଙ୍କ

ପରି ସଦସ୍ୟମାନେ ଏକାଧାରରେ ଛ' ଆଠ ଘଣ୍ଟା ବକ୍ତୃତା ଦେଇ ସେ ସଭାକୁ ସରଗରମ ଓ ସ୍ତମ୍ଭୀଭୂତ କରି ରଖୁଥିଲେ ।

ବଡ଼ଲାଟ ସଭା ବନ୍ଦ ହେବା ଦିନ ପୁଣି ଆମେ ଅମର ବାବୁଙ୍କ ଘର୍‌କୁ ଯାଇ ମହାବିପ୍ଳବୀ ଏମ.ଏନ. ରାଏ ଓ ତାଙ୍କ ପତ୍ନୀ ଏଲେନ ରାଏଙ୍କୁ ଭେଟିଲୁ । ମିସେସ ଏଲେନ ରାଏ ୟୁରୋପିଆନ ମହିଳା ହୋଇଥିଲେ ମଧ୍ୟ ସାମ୍ୟବାଦୀ ମତାବଲମ୍ବୀ ହୋଇଥିବାରୁ ଅତି ସାଧାରଣ ଭାବରେ ଚଳୁଥିଲେ । ବିପ୍ଳବୀ ଏମ.ଏନ ରାଏ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଭାରତରେ ସଶସ୍ତ୍ର ଆନ୍ଦୋଳନ ପାଇଁ ଇଂରେଜଙ୍କ ବିପକ୍ଷ ଦଳଙ୍କଠାରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ ପାଇଁ ଭାରତ ଛାଡ଼ି ଗୁପ୍ତରେ ୟୁରୋପକୁ ଚାଲିଯାଇ ଥିଲେ । ଇଂରେଜଙ୍କର ସେ ଯୁଦ୍ଧରେ ବିଜୟ ହେବାରୁ ସେ ଭାରତ ଆସି ନ ପାରି ଋଷିଆର ବିଦ୍ରୋହ ସମୟରେ ସେ ଲେନିନଙ୍କର ଜଣେ ସାଥୀ କର୍ମୀଭାବରେ କମ୍ୟୁନିଷ୍ଟ ରାଜ୍ୟ ପ୍ରତିଷ୍ଠା ପାଇଁ କାର୍ଯ୍ୟ କରିଥିଲେ । ଋଷ ରିପବ୍ଲିକ୍ ଗଢ଼ାଯିବା ପରେ କମ୍ୟୁନିଜିମକୁ ପୃଥିବୀର ଅନ୍ୟ ଦେଶମାନଙ୍କରେ ପ୍ରସାର କରାଇ ତା' ମାଧ୍ୟମରେ ଭାରତକୁ ଇଂରେଜଙ୍କ ହାତରୁ ମୁକୁଳାଇବା ମାନବେନ୍ଦ୍ରଙ୍କ ଉଦ୍ଦେଶ୍ୟ ଥିଲା । କିନ୍ତୁ ଲେନିନଙ୍କ ତିରୋଧାନ ପରେ ଷ୍ଟାଲିନ୍ ଋଷିଆର କମ୍ୟୁନିଜିମକୁ ସେହି ଦେଶରେ ସଙ୍କୁଚିତ କରି ନିଜର ଡିକ୍ଟେଟରସିପ୍ ବା ପ୍ରାଧାନ୍ୟ ଜାହିର କଲେ ।

ସେଥିରେ ଏମ.ଏନ. ରାଏ ଋଷିଆ ଛାଡ଼ିବାକୁ ବାଧ୍ୟ ହୋଇ ୟୁରୋପର ଅନ୍ୟ ଦେଶମାନଙ୍କରେ ଆଶ୍ରୟ ନେଇଥିଲେ । ବହୁତ ପରେ ସେହି ଦମ୍ପତିଙ୍କୁ ଭାରତ ଫେରିବାକୁ ଅନୁମତି ମିଳିଥିଲା । ସେ ଭାରତ ଆସି "ରାଡ଼ିକାଲ ଡ଼େମୋକ୍ରାଟିକ ପାର୍ଟି" ନାମକ ଏକ ଦଳ ଗଢ଼ିଥିଲେ । ସେ ଭାରତ ଆସି ଷ୍ଟାଲିନଙ୍କ ସ୍ତାବକ ଥିବା ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଚକ୍ଷୁଶୂଳ ହୋଇଥିଲେ । ମାନବେନ୍ଦ୍ର ଦଳିତ ମାନବର ସେବା ପାଇଁ ଜୀବନୋତ୍ସର୍ଗ କରିଥିଲେ । ସେ ସେଠାରେ କଥା ପ୍ରସଙ୍ଗରେ କହି ପକାଇଲେ ସତରେ କ'ଣ ଭାରତ ରାଜ୍ୟ ଦିନେ ସ୍ୱର୍ଗରାଜ୍ୟରେ ପରିଣତ ହୋଇ ପାରିବ ? ତାହା ଶୁଣି ଜଣେ ତାଙ୍କୁ କହିଲେ, ମହାଶୟ, ଆପଣ ଜଣେ ମାର୍କସବାଦୀ । ସେହି ମତ ଅନୁସାରେ ସ୍ୱର୍ଗ ଏକ କାଳ୍ପନିକ ବୁର୍ଜୁଆ ବା ଧନୀ ବିଳାସର ରାଜ୍ୟ । ସ୍ୱର୍ଗରେ ଲୋକେ କୌଣସି କାର୍ଯ୍ୟ ନ କରି ବିଳାସ ବ୍ୟସନରେ କାଳାତିପାତ କରନ୍ତି । ତାହା ଆପଣଙ୍କ ଖଟିଖିଆ ନୀତିରୁ ସଂପୂର୍ଣ୍ଣ ପୃଥକ । ସେ କଥା ଶୁଣି ଏମ.ଏନ. ରାଏ ହସି ପକାଇ କହିଲେ ପରମ୍ପରା କ'ଣ ଛାଡ଼ିହୁଏ ? ତେଣୁ ତାହା ମୋ ପାଟିରୁ ବାହାରି ପଡ଼ିଲା ।

ଦିଲ୍ଲୀରୁ ଫେରି ସତ୍ୟବାଦୀରେ କିଛିଦିନ କଟାଇବା ପରେ ଗୋଟିଏ ମିଟିଙ୍ଗ ପାଇଁ ମୋର ପିତା ବମ୍ବେ ଯିବା ପାଇଁ ବାହାରିବାରୁ ମୁଁ ମଧ୍ୟ ତାଙ୍କ ସଙ୍ଗେ ଯିବାକୁ ବାହାରି ପଡ଼ିଲି ।

ଆମେ ବମ୍ବେରେ ଜଣେ ବିଖ୍ୟାତ ହୋମିଓପ୍ୟାଥିକ ଡାକ୍ତର ବି.କେ. ବାନାର୍ଜିଙ୍କର ଅତିଥି ହେଲୁ । ସେ ମୋର ପିତାଙ୍କର ଅନ୍ତରଙ୍ଗ ବାଲ୍ୟବନ୍ଧୁ ନଗେନ୍ଦ୍ର ନାଥ ରକ୍ଷିତ୍‌ଙ୍କ ଶ୍ୱଶୁରଙ୍କ ଗ୍ରାମର ଲୋକ । ସେ ଜଣେ ବିପ୍ଳବୀ ଥିଲେ । ତାଙ୍କୁ ନଗେନ୍ ବାବୁ ନାନା ଭାବରେ ସାହାଯ୍ୟ କରିଥିବାରୁ ସେ ତାଙ୍କ ପ୍ରତି କୃତଜ୍ଞ ଥିଲେ । ୧୯୩୦ରେ ମୋର ପିତା ମାତାଙ୍କୁ ସେ ଟାଟାରୁ ଗାଡ଼ିରେ ନେଇ ଗୟା ଶ୍ରାଦ୍ଧ କରାଇ ଆଣିଥିଲେ ।

ଟାଟାରୁ ଆସି ଧନୀ ପାର୍ଶୀମାନଙ୍କର ଡାକ୍ତର ହୋଇ ସେ ବମ୍ବେରେ ବହୁତ ନାମ ଓ ଅର୍ଥ ଅର୍ଜନ କରିଥିଲେ । ତାଙ୍କର ଗୋଟିଏ ମାନସିକ ଚିକିତ୍ସାର ନର୍ସିଂହୋମ ଥିଲା । ସେଥିରେ ସେ ମସ୍ତିଷ୍କ ବିକୃତ ଲୋକଙ୍କର ସକ୍ ଥେରାପି ଚିକିତ୍ସା କରୁଥିଲେ । ଧନୀ ପାର୍ଶୀଙ୍କ ଭିତରେ ବହୁ ମାନସିକ ରୋଗୀ ଥିବାରୁ ତାଙ୍କ ନର୍ସିଂହୋମରେ ରୋଗୀର ଅଭାବ ନ ଥିଲା । ମୁଁ ଆଗରୁ ପାର୍ଶିମାନଙ୍କ ବିଷୟରେ କିଛି ଜାଣିନଥିଲି । ସେମାନେ ପାରସ୍ୟରୁ ଆସିଥିବାରୁ ମୁସଲମାନ ହୋଇଥିବେ ବୋଲି ଭାବିଥିଲି । କିନ୍ତୁ ସେମାନେ ଜରାଧୃଷ୍ଟ ଧର୍ମାବଲମ୍ବୀ ଅଗ୍ନିପୂଜକ । ତାଙ୍କ ମନ୍ଦିରରେ ସର୍ବଦା ଅଗ୍ନି ଜଳୁଥାଏ । ସେମାନେ ପଇତାଭଳି ଦଉଡ଼ିଟିଏ ବେକରେ ପକାନ୍ତି । ମରିଗଲେ ନପୋତି କିମ୍ବା ନପୋଡ଼ି ଟାଉଆର ଅଫ ସାଇଲେନସ ନାମକ ଏକ ଉଚ୍ଚା ଛାତ ଉପରେ ଶବକୁ ରଖିଦିଅନ୍ତି । ଶାଗୁଣାମାନେ ଆସି ଶବକୁ ଖାଇସାରିବା ପରେ ହାଡ଼ଗୁଡ଼ିକୁ ସମୁଦ୍ରକୁ ଫିଙ୍ଗି ଦିଅନ୍ତି ।

ମୁଁ ସେହି ଡାକ୍ତରଙ୍କ ଚଉପାଟୀ ବାସଭବନରେ ପହଞ୍ଚିବା ପରେ ସେ ତାଙ୍କ ସ୍ତ୍ରୀଙ୍କୁ ମୋତେ ତାଙ୍କର ଭଣଜା ବୋଲି ଚିହ୍ନାଇ ଦେଇଥିଲେ । ସେହି ସମୟରେ ରବୀନ୍ଦ୍ର ନାଥ ଠାକୁରଙ୍କର ବିୟୋଗ ଘଟିଥିବାରୁ ତାଙ୍କ ଫଟୋ ସବୁ ଖବର କାଗଜରେ ବାହାରୁଥିଲା । ଡାକ୍ତରଙ୍କର ଦୁଇଟିଯାକ ସାନଝିଅ ସେ ଫଟୋକୁ ଦେଖି ଦାଦୁ କହି ମୋ ପିତାଙ୍କୁ ଦେଖାଇ ଦେଉଥିଲେ ।

ବମ୍ବେ ରହଣି ବେଳେ ମୁଁ କେତେକ ମହାପୁରୁଷଙ୍କ ଦର୍ଶନ ଲାଭର ସୁଯୋଗ ପାଇଥିଲି । ତା ୨୦.୦୮.୧୯୪୧ରେ ମୁଁ ପିତାଙ୍କ ସଙ୍ଗେ ଯମୁନା ଦାସ ମେହେଟ୍ଟାଙ୍କ ମାଲବାର ହିଲ୍ ବାସ ଭବନକୁ ଯାଇ ତାଙ୍କ ସଙ୍ଗେ ତାଙ୍କ ସ୍ଥାପିତ ସ୍କୁଲଟି ଦେଖିବାକୁ ଯାଇଥିଲି । ମେହେଟ୍ଟାଙ୍କ ସଙ୍ଗେ ଆମେ ବୀର ଦାମୋଦର ସଭରକରଙ୍କୁ ଦର୍ଶନ କରିବାକୁ ଗଲୁ । ବିପ୍ଳବୀ ସଭରକର୍ ବିଲାତରେ ପଢୁଥିଲାବେଳେ ଜାଲିଆନାବାଗ୍ ହତ୍ୟାକାରୀ ଜେନେରାଲ ଡାୟାରଙ୍କୁ ବିପ୍ଳବୀ ଉଦ୍ଧାମସିଂହ ହତ୍ୟା କରିବା ପରେ ଲଣ୍ଡନରେ ଏକ ସରକାରୀ ସଭା ହୋଇଥିଲା । ସେ ସଭାରେ ଡାୟାର ହତ୍ୟାକାରୀ ସିଂହଙ୍କ ବିରୋଧରେ ଏକ ନିନ୍ଦା ପ୍ରସ୍ତାବ ଆସିଲା । ସେ ପ୍ରସ୍ତାବକୁ ସର୍ବସମ୍ମତି କ୍ରମେ ପାଶ୍ କରାଯିବାର ଘୋଷଣା ହେବାବେଳକୁ ବୀର ସଭରକର୍ ହାତ ଉଠାଇ ଏହା ସର୍ବସମ୍ମତି ପାଇନାହିଁ

ବୋଲି ପାଟିକରି ଉଠିଲେ । ସଙ୍ଗେ ସଙ୍ଗେ ତାଙ୍କୁ ବନ୍ଦୀ କରାଯାଇ ଉଦ୍ଧାମ ସିଂହଙ୍କ ଷଡ଼ଯନ୍ତ୍ର ମୋକଦ୍ଦମାରେ ସାମିଲ କରାଯାଇ ପରେ ପରେ ଭାରତରେ ତାଙ୍କ ବିଚାର ହେବା ପାଇଁ କଡ଼ା ପ୍ରହରୀ ଭିତରେ ପାଣି ଜାହାଜରେ ବିଲାତରୁ ଭାରତ ଅଣାଯିବାର ବ୍ୟବସ୍ଥା ହେଲା । ସେ ଜାହଜଟି ଫ୍ରାନସର ମାର୍ଶେଲିସ୍ ସହର ଉପକୂଳର ପାଞ୍ଚ ମାଇଲ ଦୂରରେ ଥିବା ସମୟରେ ସଭରକର୍ ପାଇଖାନା ଯାଇ ପାଇଖାନା ଦର୍ପଣ ଉପରେ ନିଜ କୋଟଟି ଓହ୍ଲାଇ ଦେଲେ । ତାଙ୍କ ଜଗୁଆଳିମାନେ ସେ ଦର୍ପଣରେ ତାଙ୍କ ଗତିବିଧି ଲକ୍ଷ୍ୟ କରନ୍ତି, ସେଇଟି ଘୋଡ଼ି ହୋଇ ପଡ଼ିବାରୁ ସେମାନେ ତାହା ଲକ୍ଷ୍ୟ କରି ପାରିଲେ ନାହିଁ । ସଭରକର ଜାହାଜ ଝଳାବାଟେ ସମୁଦ୍ରକୁ ଡେଇଁପଡ଼ି କୂଳ ଆଡ଼କୁ ପହଁରିବାକୁ ଲାଗିଲେ । ଜଗୁଆଳିମାନେ ପରେ ତାହା ଜାଣି ପାରି ଡଙ୍ଗା ଧରି ତାଙ୍କୁ ଗୋଡ଼ାଇଲେ । ସେ ପାଣିରୁ ମୁଣ୍ଡ ଟେକିବା ସଙ୍ଗେ ସଙ୍ଗେ ସେମାନେ ଗୁଳି କରନ୍ତି । ସଭରକର୍ ସଙ୍ଗେ ସଙ୍ଗେ ବୁଡ଼ିଯାଇ ଅନ୍ୟଠାରେ ବାହାରନ୍ତି । ସେ ପହଁରି ପହଁରି ଫ୍ରାନସ୍ କୂଳରେ ଲାଗି ଫ୍ରାନସ୍ ପୋଲିସ୍ ନିକଟରେ ଆତ୍ମସମର୍ପଣ କରନ୍ତି ସେ ବିନା ଆଦେଶରେ ସେ ଦେଶକୁ ଆସିଥିବାରୁ ସେ ଫ୍ରାନସର ବନ୍ଦୀ ଓ ଇଂରେଜଙ୍କର ତାଙ୍କ ଉପରେ କୌଣସି ଅଧିକାର ନାହିଁ ବୋଲି ଘୋଷଣା କରାହୁଏ । ଇଂରେଜ ସରକାର ପୃଥିବୀ କୋର୍ଟରେ ମୋକଦ୍ଦମା କରି ତାଙ୍କୁ ଫ୍ରାନସରୁ ଆଣି ଭାରତରେ ବିଚାର କରି କଳାପାଣି ଆଣ୍ଡାମାନର ସେଲୁଲାର ଜେଲରେ ରଖିଥିଲେ । ସେ ସତର ବର୍ଷ ପରେ ସେଥିରୁ ଖଲାସ ହୋଇ ଭାରତ ଫେରିବା ପରେ ହିନ୍ଦୁ ମହାସଭାର ସଭାପତି ହୋଇଥିଲେ । ସେ ମୋତେ ଦେଖି ଆଶୀର୍ବାଦ କଲେ । ବମ୍ବେରେ ବୁଲାବୁଲି ସାରି ମୁଁ ଗ୍ରାମକୁ ଫେରିଲି ।



# କଲେଜ ପଢ଼ା ଓ ଆନ୍ଦୋଳନ

ମାଟ୍ରିକ ଫଳ ବାହାରିବା ପରେ କଲେଜରେ ନାମ ଲେଖାଇବା ପାଇଁ ପରାମର୍ଶ ନେବାକୁ କଟକ ଆସି ମୋର ଜ୍ୟେଷ୍ଠଭ୍ରାତା ଅଶୋକ ବାବୁ ଓ ପିତା ପଣ୍ଡିତ ନୀଳକଣ୍ଠଙ୍କୁ ଅପେକ୍ଷା କଲି । ସେମାନେ କଟକ ବାହାରକୁ ଯାଇଥିଲେ, ଆସିବାକୁ ବହୁତ ଡେରିହେଲା । ନାମ ଲେଖା ତାରିଖ ଚାଲି ଯାଉଥିବାରୁ ମୁଁ ରେଭେନ୍‌ସା କଲେଜକୁ ଯାଇ ନାମ ଲେଖାଇ ନେଲି । ମୁଁ ନବ ଭାରତ ପ୍ରେସର ପଡ଼ିଆ ଉପରେ ଥିବା ଦୋତାଲା ଚାଳିଆ ଘରେ ରହି ଟିମା ନନା ହୋଟେଲରୁ ଦୁଇ ଅଣିକିଆ ମିଲ ଖାଇ ସାଇକେଲରେ କଲେଜକୁ ଯିବା ଆସିବା କରୁଥାଏ । ସେ ଦୁହେଁ ମଝିରେ ମଝିରେ ପ୍ରେସକୁ ଆସୁଥିଲେ ମଧ୍ୟ ସେମାନଙ୍କ ସଙ୍ଗେ ମୋ ପାଠପଢ଼ା ବିଷୟରେ ଆଲୋଚନା କରିବାର ଆଉ ପ୍ରୟୋଜନ ମଧ୍ୟ ନ ଥିଲା ।

କେତେକାଳ ପରେ ପ୍ରେସ୍ କୋଠା ଉପରେ ସେମାନଙ୍କ ସହିତ ଦେଖାହେବା ସଙ୍ଗେ ସଙ୍ଗେ ଭାଇନା ମୋତେ ପଚାରିଲେ 'କ'ଣ କଲେଜରେ ଆଡ଼ମିଶନ୍ ନେଲୁ ? ଚତୁର୍ଥ ବିଷୟ (ଫୋର୍ଥ ସବଜେକ୍ଟ) କ'ଣ ନେଲୁ ? ମୁଁ କହିଲି 'କଳା'ରେ କ'ଣ ଚତୁର୍ଥ ବିଷୟ ଥାଏ ? ମୁଁ ସଂସ୍କୃତ, ଲଜିକ ଓ ଇକୋନମିକ୍ସ ନେଇ ଆଇ.ଏ.ରେ ନାମ ଲେଖାଇଛି ।

ମୋ ପାଟିରୁ କଥା ନ ସରୁଣୁ ଭାଇନା ଗର୍ଜନ କରି କହିଲେ ତା' ହେଲେ ବୃଥା ଅର୍ଥ ଶ୍ରାଦ୍ଧ କରି କଟକରେ ରହି ସଂସ୍କୃତ ପଢ଼ିବାର କି ପ୍ରୟୋଜନ ଅଛି ? ତୁ କଲେଜରୁ ନାମ କଟାଇ ପୁରୀରେ ଯାଇ ସଂସ୍କୃତ ପଢ଼ । ଚୁଟି ରଖି ଚିତା ଚୈତନ୍ୟ କରି ସଂସ୍କୃତ ପଢ଼ିଲେ ଏମାର ମଠରେ ବିନା ଭଡ଼ାରେ ରହିବାର ବ୍ୟବସ୍ଥା ସଙ୍ଗେ ସଙ୍ଗେ ମାଗଣାରେ ଦୁଇଓଳି ମୁଠିଏ ମୁଠିଏ ଅଭଡ଼ା ମଧ୍ୟ ଖାଇବାକୁ ମିଳିଯିବ ।

ତାଙ୍କର ସେପରି ତାସଲ୍ୟପୂର୍ଣ୍ଣ କଥାରେ ମୋ ଆଖି ଛଳ ଛଳ ହୋଇଗଲା । ମୋର ପିତା ସେଠାରେ ବସି ଚିନ୍ତାମଗ୍ନ ଥିଲେ । ଆମ କଥୋପକଥନ ପ୍ରତି ସେ କର୍ଣ୍ଣପାତ କରୁନଥିଲେ । ମୁଁ ତାଙ୍କ ଚିନ୍ତାଭଗ୍ନ ହେବା ଭଳି ବଡ଼ ପାଟିରେ କହିଲି ମୁଁ କଅଣ ପଢ଼ିବି ନ ପଢ଼ିବି ଯଦି ଆପଣମାନଙ୍କର ଠିକ କରିବା କଥା ତେବେ ମୋ କଥା ନ ବୁଝି ଆପଣମାନେ ଏତେ ଦିନ କାହିଁକି ନିରବ ଥିଲେ ।

ଭାଇନା ପିତାଙ୍କ ଆଡ଼କୁ ଚାହିଁ କହିଲେ କଳା ବିଭାଗରୁ ବିଜ୍ଞାନ ବିଭାଗକୁ ବଦଳାଇ ବିକ୍ରମକୁ ଆଇ.ଏସ.ସିରେ ସ୍ଥାନ ଦେବା ପାଇଁ ଅନୁରୋଧ କରି ଆପଣ ରେଭେନ୍‌ସା

କଲେଜ ପ୍ରିନ୍‌ସପାଲ ପରିଜା ସାହେବଙ୍କ ନିକଟକୁ ବିକ୍ରମ ହାତରେ ପତ୍ରଟିଏ ପଠାନ୍ତୁ । ମୋର ବିଶ୍ୱାସ ସେ ଆପଣଙ୍କ କଥା ରଖିବେ । ଆଜିକାଲି ଯୁଗରେ ବିଜ୍ଞାନ ନପଢ଼ି କଳା ପଢ଼ିଲେ ଭବିଷ୍ୟତରେ କିଛି ଲାଭ ହେବନାହିଁ ।

ମୁଁ ପିତାଙ୍କଠାରୁ ଚିଠି ଖଣ୍ଡି ନେଇ ପରିଜା ସାହେବଙ୍କୁ ଦେଲି । ସେ ଚିଠିଟି ପଢ଼ି ସାରି କହିଲେ, ଏତେ ଦିନ କ'ଣ ଶୋଇଥିଲ ? ଏବେ ନିଦ ଭାଙ୍ଗିଲା ? ପ୍ରଥମରୁ ବିଜ୍ଞାନ ପାଇଁ ଦରଖାସ୍ତ ତାରିଖ ଗଲାପରେ କଅଣ ହେବ ? ବାପାଙ୍କୁ କହିବ ଏବେ ସେପରି କରିବା ସମ୍ଭବ ନୁହେଁ ।

ମୁଁ କହିଲି ତା' ହେଲେ ମୋ ଅସୁବିଧା କଥା ବୁଝାଇବା ପାଇଁ କ'ଣ ମୋତେ ଏଠାରେ ଅନଶନ କରି ବସିବାକୁ ପଡ଼ିବ ? ସେ କହିଲେ କ'ଣ ବୁଝାଇବ ? ତା ପରେ କହିଲି ଆପଣ କ'ଣ କହୁଛନ୍ତି ମୁଁ ପାଠ ପୂରା ଛାଡ଼ି ଦେବି ନଚେତ, ପୁରୀ ମଠରେ ମାଗଣା ଅଭଡ଼ା ଖାଇ ସଂସ୍କୃତ ଟୋଲରେ ପଢ଼ିବି ?

ପରିଜା ସାହେବ କହିଲେ ଏକଥା କିଏ କହୁଛି ? ତା'ପରେ ମୁଁ ଭାଇନା କହିଥିବା କଥା ତାଙ୍କ ସାମନାରେ ବର୍ଣ୍ଣନା କଲି । ତାହା ଶୁଣି ଠୋ ଠୋ କରି ହସି ହସି କହିଲେ 'ଏବେ ବୁଝିଲି ଅଶୋକ ବିଜ୍ଞାନର ଛାତ୍ର ଥିଲାନା, ସେଥିଯୋଗୁ ସେ ବିଜ୍ଞାନ ଉପରେ ଗୁରୁତ୍ୱ ଦେଇ ତୁମେ ବିଜ୍ଞାନ ପଢ଼ିବା ସେ ଚାହୁଁଛି । ହଉ, ତୁମେ ଯଦି ଏପରି ବିପଦରେ ପଡ଼ିଯାଇଛ, ତୁମକୁ ସାହାଯ୍ୟ କରିବାକୁ ଚେଷ୍ଟା କରିବା । ସେଥିପାଇଁ ଗୋଟିଏ ମାତ୍ର ଉପାୟ ଅଛି । ଯଦି ବିଜ୍ଞାନ ନେଇଥିବା କୌଣସି ଛାତ୍ର ସେଥିରେ ନପାରି କଳା ନେବାକୁ ଚାହୁଁଥିବ ତା'ହେଲେ ମୁଁ ତା' ସଙ୍ଗରେ ତୁମର ପାଠ ଅଦଳ ବଦଳ କରାଇ ଦେଇପାରିବି । ତୁମେ ହଷ୍ଟେଲକୁ ଯାଇ ଦେଖ ।

ମୁଁ ପଶ୍ଚିମ ଛାତ୍ରାବାସକୁ ଯାଇ ଗୋରା ଜାନକୀ (ପରେ ଓଡ଼ିଆ ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି), ବିଜ୍ଞାନ ଛାଡ଼ି କଳା ନେବାକୁ ଚାହୁଁଥିବାର ଶୁଣି ତାଙ୍କୁ ସାଥୀରେ ଘେନି ପରିଜା ସାହେବଙ୍କ ନିକଟକୁ ଗଲି । ସେ ଆମ ଦରଖାସ୍ତ ସୁପାରିଶ୍ କରିବା ପରେ ମୁଁ ବିଜ୍ଞାନ ବିଭାଗ ଛାତ୍ର ହୋଇଗଲି ।

ମୁଁ କଲେଜ ଛାତ୍ରାବାସରେ ରହିବା ପରେ ପୁଣି ମୋର ପୁରାତନ ସଂଗ୍ରାମୀ ବନ୍ଧୁଙ୍କ ସଙ୍ଗେ ଆସର ଜମିଲା । ମୋର ସ୍କୁଲସାଥୀ ଚିନ୍ତାମଣି ପାଣିଗ୍ରାହୀ (ପରେ ମଣିପୁର ଗଭର୍ଣ୍ଣର), ଗଙ୍ଗାଧର ରଥ (ପରେ ଆଡ଼ଭୋକେଟ ଜେନେରାଲ), ଶ୍ରୀନିବାସ ଶତପଥୀ (ପରେ ମେଡ଼ିକାଲ କଲେଜ ପ୍ରଫେସର), ସତ୍ୟବାଦୀ ମିଶ୍ର (ପରେ ପୁରୀ କଲେଜ ଅଧକ୍ଷ), ଓ କଲେଜିଏଟ ସ୍କୁଲର ପୂର୍ବତନ ତଥା ଅନ୍ୟ ଛାତ୍ର ସାଥୀମାନଙ୍କ ସଙ୍ଗେ ପୁଣି ମିଶି ରାଜନୀତି ଚର୍ଚ୍ଚା କରିବାର ସୁବିଧା ହେଲା । କିନ୍ତୁ ସେ ସବୁ ଆଲୋଚନାରେ ୧୯୩୯ ଛାତ୍ର ଆନ୍ଦୋଳନର ଉଷ୍ମତା ଆଉ ନ ଥିଲା । ଏକତା ଓ ଉନ୍ମାଦନା ସ୍ଥାନରେ ଆମ

ବନ୍ଧୁମାନଙ୍କ ଭିତରେ ରାଜନୈତିକ ମତଭେଦ ଦୃଢ଼ୀଭୂତ ହୋଇ ସାରିଥିଲା । କେତେକ ବନ୍ଧୁ ବିଦେଶୀ କମ୍ୟୁନିଷ୍ଟବାଦକୁ ଆଦରି ନେଇ ସାରିଥିଲେ, କେତେକ କଂଗ୍ରେସର ଦୃଢ଼ ସମର୍ଥକ ଥିବାବେଳେ ଆମପରି କେତେକ ସୁଭାଷ ପନ୍ଥୀ ହୋଇ ସାରିଥିଲେ । ଆଉ କେତେକ ପୁରୁଣା ଦେଶ ମିଶ୍ରଣ ଆନ୍ଦୋଳନକୁ ଆଶ୍ରାକରି 'ବାହିନୀ' ପତ୍ରିକା ପ୍ରକାଶନରେ ଲାଗିଥିଲେ ।

ଓଡ଼ିଶା ରାଜନୀତିରେ ସେତେବେଳେ ମଧ୍ୟ ଏକ ବଡ଼ ଦ୍ୱନ୍ଦ୍ୱ ଦେଖାଯାଇଥିଲା । କଂଗ୍ରେସ ନେତାମାନେ ମନ୍ତ୍ରୀମଣ୍ଡଳ ଛାଡ଼ି ବ୍ୟକ୍ତିଗତ ସତ୍ୟାଗ୍ରହ କରୁଥିଲେ । ସୁଭାଷ ପନ୍ଥୀମାନେ ସେହି ଗାନ୍ଧି ପନ୍ଥୀଙ୍କ ପ୍ରତି ବିତସ୍ପୃହ ହୋଇ ସୁଭାଷଙ୍କ ପୂର୍ବ ନିର୍ଦ୍ଦେଶ ଧରି ମୁସଲିମ ଲିଗକୁ ଓ ବିପକ୍ଷ ଦଳକୁ ଘେନି ଏକ ଜାତୀୟ ମିଳିତ ମଣ୍ଡଳ ଗଢ଼ିବା ପାଇଁ ଉଦଗ୍ରୀବ ହୋଇ ଉଠିଥିଲେ । ୨୩.୧୧.୧୯୪୧ରେ ବିରୋଧୀଦଳର ପାରଳାଖେମୁଣ୍ଡି ମହାରାଜା, ସୁଭାଷପନ୍ଥୀ ଗୋଦାବରୀଶ ମିଶ୍ର ଓ ମୁସଲିମଲିଗ୍‌ର ଶୋଭାନ ଖାଁଙ୍କୁ ନେଇ ଓଡ଼ିଶାରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ା ଯାଇଥିଲା ।

ଜମିଦାର ଗୋଷ୍ଠୀର ପାରଳା ମହାରାଜା ମନ୍ତ୍ରୀମଣ୍ଡଳର ମୁଖ୍ୟ ରହି ଖୋଲାଖୋଲି ଭାବେ ଇଂରେଜ ସରକାର ଓ ବିଶ୍ୱଯୁଦ୍ଧରେ ମିତ୍ର ପକ୍ଷକୁ ସାହାଯ୍ୟ କରିବା ଘୋଷଣା କରିବାରୁ ସୁଭାଷପନ୍ଥୀଙ୍କୁ ତାଙ୍କ କାର୍ଯ୍ୟରେ ଆଗେଇ ଯିବା ପାଇଁ ସେତିକି ସୁବିଧା ମିଳିଲା, ତାଙ୍କ ନେତାମାନଙ୍କୁ ଲୋକଙ୍କଠାରୁ ଯେତିକି ଭର୍ତ୍ସନା ଶୁଣିବାକୁ ପଡ଼ିଲା । ସେମାନେ ସେହି ଅସୁବିଧା ଭିତରେ ନିନ୍ଦା ପ୍ରଶଂସାକୁ ଭ୍ରୂକ୍ଷେପ ନ କରି ଗୁପ୍ତରେ ବିପ୍ଲବ ପାଇଁ ଦେଶକୁ ପ୍ରସ୍ତୁତ କରୁଥିଲେ ।

ମୁଁ ରେଭେନ୍‌ସା କଲେଜରେ ପଢୁଥିଲା ବେଳେ ୨୪.୨.୧୯୪୨ରେ କଲେଜ ଇଉନିଅନ ପକ୍ଷରୁ ଆଲୋଚନା ସଭାଟିଏ ହେଲା, ବିନା ସର୍ତ୍ତରେ ଭାରତ ବିଶ୍ୱଯୁଦ୍ଧରେ ଯୋଗଦେବ କି ନାହିଁ ତା'ର ବିଷୟବସ୍ତୁ ଥିଲା । କମ୍ୟୁନିଷ୍ଟ ଛାତ୍ରସଂଘର ସଦସ୍ୟମାନେ ଓ ଉଚ୍ଚ ସରକାରୀ କର୍ମଚାରୀଙ୍କ ସନ୍ତାନମାନେ ଯୁଦ୍ଧରେ ଇଂରେଜଙ୍କ ସଙ୍ଗେ ଯୋଗଦେବା ସପକ୍ଷରେ ଭାଷଣ ଦେଲେ । ସୁଭାଷପନ୍ଥୀ ବିବୁଧେନ୍ଦ୍ର ମିଶ୍ର ଓ କଂଗ୍ରେସ ତରଫରୁ ଶ୍ରୀ ବନମାଳି ପଟ୍ଟନାୟକ ସାହାଯ୍ୟ କରିବାର ଘୋର ବିରୋଧ କଲେ ।

ସେହିସବୁ କାରଣରୁ ମିଳିତ ମନ୍ତ୍ରୀମଣ୍ଡଳ ସହିତ ସଂଯୁକ୍ତ ଥାଇ ମଧ୍ୟ ପୂର୍ବତନ ଫରଓ୍ୱାଡ୍ ବ୍ଲକ ସହିତ ସଂଯୁକ୍ତ ଥିବା ବ୍ୟକ୍ତିମାନଙ୍କ ଉପରେ କେନ୍ଦ୍ର ସରକାରଙ୍କ ସନ୍ଦେହ ବଢ଼ି ଚାଲିଥିଲା । ସେମାନଙ୍କ ପଛରେ ଗୁପ୍ତଚର ଲାଗି ରହିଥିଲେ । ୨୬.୧.୪୨ କଂଗ୍ରେସ ଘୋଷିତ ସ୍ୱାଧୀନତା ଦିବସରେ ମୋର ଭାଇନା ଛାତ୍ରନେତା ଓ ପୂର୍ବତନ ଫରଓ୍ୱାଡ଼ ବ୍ଲକର ସଦସ୍ୟ ଶ୍ରୀ ଅଶୋକ ଦାସ ଆପତ୍ତିଜନକ ଭାଷଣ ଦେଇଥିବା ଅଭିଯୋଗରେ ୨୪.୨.୧୯୪୨ରେ ବନ୍ଦୀ ହେଲେ । ଦୀନବନ୍ଧୁ ସାହୁ ଆଡ଼ଭୋକେଟ ପକେ

କଂଗ୍ରେସମନ୍ତ୍ରୀ ଭାଇନାଙ୍କ ପକ୍ଷରୁ ଲଢ଼ି ସି.ଆଇ.ଡ଼ି ବିମଳ ଘୋଷଙ୍କୁ ଜେରାରେ ଅପଦସ୍ତ କରିବାରୁ ସରକାର ଭାଇନାଙ୍କ ବିରୁଦ୍ଧରେ ଥିବା ଅଭିଯୋଗଗୁଡ଼ିକ ପ୍ରମାଣ କରି ନ ପାରି ଭାଇନାଙ୍କୁ ଏକମାସ ହାଜତରେ ରଖିବା ପରେ ୨୫.୩.୧୯୪୨ରେ ବାଧ ହୋଇ ମୁକ୍ତ କରି ଦେଇଥିଲେ ।

ସେହି ସମୟରେ ୨.୩.୧୯୪୨ରେ କମ୍ୟୁନିଷ୍ଟ ଦଳ ଓ ସରକାର ମିଶି ଚୀନ୍ ଦିବସ ପାଳନ କଲେ । ଋଷ ଶାସକ ଷ୍ଟାଲିନ ଇଂରେଜ ପକ୍ଷରୁ ଯୋଗ ଦେଇଥିବାରୁ କମ୍ୟୁନିଷ୍ଟମାନେ ସେହି ବିଶ୍ୱଯୁଦ୍ଧକୁ ଲୋକଙ୍କ ଯୁଦ୍ଧ କହି, 'ଆଜାଦି ଝଟା ହେ' ବା ସ୍ୱାଧୀନତା ନ୍ୟାୟ ବୋଲି ଧ୍ୱନିମାନ ଦେଇଥିଲେ ।

୩.୨.୪୨ରୁ ୧୧.୨.୪୨ ପର୍ଯ୍ୟନ୍ତ ସିଙ୍ଗାପୁରରେ ଇଂରେଜ ସେନା ଜାପାନର ଅବରୋଧରେ ରହି ଶେଷରେ ଆତ୍ମସମର୍ପଣ କରିଥିଲେ । ସେହି ସମୟରେ ବ୍ରିଟିଶ ସେନାପତି, ଗୋରା ସେନାମାନଙ୍କୁ ସେଠାରୁ ଅପସାରିତ କରି ତାଙ୍କ ସୈନ୍ୟବାହିନୀରେ ଥିବା ଭାରତୀୟ ସୈନ୍ୟମାନଙ୍କୁ ଅସହାୟ ଭାବରେ ଛାଡ଼ି ଯାଇଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ଠାରୁ ଜାପାନରେ ରହୁଥିବା ବିପ୍ଳବୀ ବୃଦ୍ଧ ରାସବିହାରୀ ଘୋଷ ଜାପାନ ସରକାରଙ୍କ ଉପରେ ଚାପ ପକାଇ ଭାରତୀୟ ବନ୍ଦୀ ସୈନ୍ୟମାନଙ୍କୁ ମୁକ୍ତ କରି ଏକ ସ୍ୱାଧୀନ ଭାରତ ସୈନ୍ୟବାହିନୀ ଗଢ଼ିଥିଲେ । ସେମାନଙ୍କ ଉପରେ ଜାପାନର କର୍ତ୍ତୃତ୍ୱ ରହିଥିବାରୁ ସେମାନେ ଛଟପଟ ହେଉଥିଲେ ।

ପରେ ପରେ ଜର୍ମାନରୁ ବୁଡ଼ାଜାହାଜ ଯୋଗେ ଆସି ନେତାଜୀ ମାଲୟରେ ପହଞ୍ଚିବା ପରେ ସେହି ସେନାବାହିନୀକୁ ଜାପାନର କର୍ତ୍ତୃତ୍ୱରୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ସେ ସବୁ ରାଜ୍ୟର ଭାରତୀୟ ଅଧିବାସୀମାନଙ୍କ ଭିତରୁ ସୈନ୍ୟ ସଂଗ୍ରହ କରି ତାଙ୍କର ଆଜାଦହିନ୍ଦ ଫୌଜ ଗଢ଼ିଥିଲେ ଓ ସ୍ୱାଧୀନ ଭାରତ ସରକାରର କର୍ତ୍ତା ରୂପେ ନିଜକୁ ଘୋଷଣା କରି ବିଭିନ୍ନ ରାଜାଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରିଥିଲେ ।

ବ୍ରିଟିଶ ପକ୍ଷର ପରାଜୟରେ ଆମେ ଉଲ୍ଲସିତ ହେଉଥିଲୁ । ଭାରତ ସାରା ସୁଭାଷ ପନ୍ଥୀ କର୍ମୀମାନେ ଭିତରେ ଭିତରେ ସଶସ୍ତ୍ର ବିଦ୍ରୋହ କରିବା ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ଓଡ଼ିଶାରେ ମଧ୍ୟ ବନ୍ଧୁକ ଓ ଗୁଳିଗୋଳା ସବୁ ସଂଗୃହୀତ ହୋଇ ବିଭିନ୍ନ ସ୍ଥାନରେ ମହଜୁଦ ରହୁଥିବାର ମୁଁ ଆମର ଜଣେ ଯୁବ ନେତା ଶ୍ରୀ ଶ୍ରୀହର୍ଷ ମିଶ୍ରଙ୍କଠାରୁ ସୁରାକ ପାଇଥିଲି । ଦିବାକର ପଟ୍ଟନାୟକ ପୂର୍ବତନ ଫରଓ୍ୱାଡ଼ ବ୍ଲକର ଏକ ବରିଷ୍ଠ ନେତା ଥାଇ ମିଳିତ ମନ୍ତ୍ରୀମଣ୍ଡଳର ଜଣେ ଟାଣୁଆ ପୃଷ୍ଠପୋଷକ (ବିଧାନସଭା ସଦସ୍ୟ) ଭାବେ କାର୍ଯ୍ୟ କରୁଥିଲେ ।

ଦିବାକର ବାବୁ ଓ ଶ୍ରୀହର୍ଷ ବାବୁ ସୁଭାଷଙ୍କ ଦରିଆପାରିର ସଂଗଠନ ସଙ୍ଗେ ଗୁପ୍ତ ଯୋଗାଯୋଗ ପାଇଁ କଲିକତା ଯାଇ ଗୋଟିଏ ହୋଟେଲରେ ରହିଥିବା ସମୟରେ କେନ୍ଦ୍ର

ପୋଲିସ୍ ସେ ହୋଟେଲ ଉପରେ ଚଢ଼ାଉ କରିଥିଲେ । ସେ ସମୟରେ ଶ୍ରୀହର୍ଷ ତାଙ୍କ କୋଠରୀ ବାହାରକୁ ଆସିଥିବା ସମୟରେ ସେ ପୋଲିସ ଫୌଜକୁ ଦେଖିପାରି କୋଠରୀ ଭିତରେ ଥିବା ଦିବାକର ବାବୁଙ୍କୁ ସଙ୍କେତ ଦେଇ ସତର୍କ କରାଇ ଦେଲେ । ଶ୍ରୀହର୍ଷଙ୍କୁ ସେହି ପୋଲିସ ଅଟକାଇ ପଚରାପଚରି କରୁଥିବା ସମୟରେ, ଦିବାକର ବାବୁ ସମସ୍ତ ଆପତ୍ତିଜନକ କାଗଜପତ୍ର ସହିତ ସେ କୋଠରୀର ସଂଲଗ୍ନ ପାଇଖାନା ଭିତରକୁ ଯାଇ ଦ୍ୱାର ବନ୍ଦ କରିଦେଲେ । ସେ ସେହିସବୁ କାଗଜକୁ ଚୋବାଇ ପାଇଖାନା ଭିତରେ ପକାଇ ଫ୍ଲସ କରିଦେଲେ । ପୋଲିସ ସେ କୋଠରୀ ଭିତରେ ପଶି ସେ ପାଇଖାନା ଦ୍ୱାର ବାଡ଼େଇବାରୁ, ଯାଉଚି ଯାଉଚି କହି ସେ ବାହାରକୁ ଆସିଲା ବେଳକୁ ରେକର୍ଡ଼ ସବୁ ନଷ୍ଟ କରିବା କାର୍ଯ୍ୟ ସମାପ୍ତ ହୋଇ ସାରିଥିଲା । ପୋଲିସ ଦିବାକର ବାବୁ ଓ ଶ୍ରୀହର୍ଷଙ୍କୁ ଗିରଫ କରି ସେ ଘର ଖାନତଲାସ କଲେ । ଖାନତଲାସରେ କିଛି ନ ପାଇଲେ ମଧ ଭାରତ ରକ୍ଷା ଆଇନରେ ବନ୍ଦୀ କରି ରଖିବାକୁ ଥାନାକୁ ନେଲେ ।

ସେ ସମ୍ବାଦ ଓଡ଼ିଶାରେ ଆସି ପହଞ୍ଚିବା ସଙ୍ଗେ ସଙ୍ଗେ ମିଳିତ ମନ୍ତ୍ରୀମଣ୍ଡଳ ପକ୍ଷରୁ ଦିବାକର ବାବୁଙ୍କ ଗିରଫର ଘୋର ପ୍ରତିବାଦ ହେଲା । ଦିବାକର ବାବୁଙ୍କ ବିନା ସେହି ମନ୍ତ୍ରୀମଣ୍ଡଳ ତିଷ୍ଠି ରହିବା ସମ୍ଭବ ନ ଥିବା ଦର୍ଶାଇ ଓଡ଼ିଶା ସରକାର କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଇବାରୁ ଦିବାକର ବାବୁ ମୁକ୍ତ ହୋଇ ଓଡ଼ିଶା ଫେରିଲେ, କିନ୍ତୁ ଶ୍ରୀହର୍ଷ ବାବୁ ବହୁକାଳ କଲିକତାର ଦମ୍ ଦମ୍ କାରାଗାରରେ ଅଟକବନ୍ଦୀ ହୋଇ ରହିଲେ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ସୁଭାଷପନ୍ଥୀଙ୍କ ତରଫରୁ ବିଶେଷରେ ଦିବାକର ବାବୁଙ୍କ ପରି ନେତାମାନଙ୍କ ନେତୃତ୍ୱରେ ଗୁପ୍ତ ସଂଗଠନ ସବୁ ଗଢ଼ି ଉଠିଥିଲା । ସେହି ସମୟରେ ମୁଁ ଗଞ୍ଜାମ ଯାଇ ଦିବାକର ବାବୁ ଓ ଜଗନ୍ନାଥ ମିଶ୍ର (ନଈବନ୍ଧ)ଙ୍କ ସଙ୍ଗେ କରଡ଼ା ବାଡ଼ି, ହିଞ୍ଜଳିକାଟୁ ଓ ଆସ୍କା ପ୍ରଭୃତି ବୁଲି ସେଠାର କର୍ମୀମାନଙ୍କ ସଙ୍ଗେ ଆଲୋଚନା କଲା ପରେ ସୋରଡ଼ାର ମାଳ ଅଞ୍ଚଳକୁ ଯାଇଥିଲି । ସେଠାରେ ରଘୁରାମ ପାତ୍ର ଓ ଅନ୍ୟ କେତେକ କର୍ମୀଙ୍କ ସଙ୍ଗେ ମଧ ଆଲୋଚନା ହୋଇଥିଲା ।

ବ୍ରହ୍ମପୁର ଫେରି କାଶୀ ପାତ୍ରଙ୍କ ସଙ୍ଗେ ବ୍ରହ୍ମପୁର ରେଲଷ୍ଟେସନ ନିକଟ ପୁରୁଣା ଚାଉଳଟ୍ରୀକୁ ଯାଇଥିଲି । ସେଠାରେ ମଧ ଏକ ଗୁପ୍ତ ରେଡ଼ିଓ ଟ୍ରାନ୍ସମିଟର କେନ୍ଦ୍ର କାର୍ଯ୍ୟ କରୁଥିଲା । ପରେ ବୟାଳିଶ ଆନ୍ଦୋଳନ ସମୟରେ ବ୍ରହ୍ମପୁରରୁ ପୂର୍ବତନ ପ୍ରଧାନ (ମୁଖ୍ୟ) ମନ୍ତ୍ରୀ ବିଶ୍ୱନାଥ ଦାସ ଗିରଫ ହେବା ସମୟରେ ଭାରତରେ ସେ ସମ୍ବାଦ ପ୍ରଚାରିତ ହେବା ପୂର୍ବରୁ ବ୍ରହ୍ମପୁର କେନ୍ଦ୍ରରୁ ସେ ସମ୍ବାଦ ଯାଇ ବିଦେଶୀ ରେଡ଼ିଓ ମାଧମରେ ପ୍ରଥମରେ ଭାରତରେ ପ୍ରଚାରିତ ହୋଇ ସାରିଥିଲା ।

ଗଞ୍ଜାମର ପାଲୁର୍ ଓ ଅନ୍ୟ କେତେକ ସ୍ଥାନରେ ଟ୍ରାନ୍ସମିଟର ରହିଥିବା ସଙ୍ଗେ ସଙ୍ଗେ କର୍ମୀମାନେ ସମୁଦ୍ର ଉପରେ ଦୃଷ୍ଟି ରଖିଥିଲେ । ପରେ ବିଦେଶରେ ଥିବା କେତେକ

ସୁଭାଷ କର୍ମୀ ସେ ସ୍ଥାନରେ ଅବତରଣ କରି ଭାରତରେ ପ୍ରବେଶ କରିଥିଲେ । ସେମାନେ ସଙ୍ଗରେ ପ୍ରଚାରପତ୍ର ଓ ସୈନିକ ବ୍ୟାଜ ସବୁ ଆଣିଥିଲେ । ସେମାନଙ୍କ ଭିତରୁ କେତେକ ଓଡ଼ିଶାର ଅନ୍ୟ ସ୍ଥାନରେ ଗୋଇନ୍ଦା ପୋଲିସଙ୍କ ହାତରେ ଧରା ପଡ଼ିଥିବା ସମ୍ବାଦ ପ୍ରକାଶ ପାଇଥିଲା ।

୩୧.୩.୪୨ରେ ଏକ ଉଡ଼ାଜାହାଜ ଦୁର୍ଘଟଣାରେ ସୁଭାଷଙ୍କ ମୃତ୍ୟୁ ହୋଇଥିବା ଗୁଜବ ମିତ୍ରପକ୍ଷ ପ୍ରଚାର କରାଇଥିଲେ, କିନ୍ତୁ ତାହା ମିଥ୍ୟା ସମ୍ବାଦ ବୋଲି ଆମେ ସଙ୍ଗେ ସଙ୍ଗେ ତା'ର ଖବର ସଂଗ୍ରହ କରିପାରିଥିଲୁ । ମୋର ଜ୍ୟେଷ୍ଠ ଭ୍ରାତା ଫରଓ୍ୱାଡ଼ ବ୍ଲକ ବେଆଇନ ଘୋଷିତ ହେବା ପୂର୍ବରୁ ତା'ର କାର୍ଯ୍ୟକାରୀ କମିଟି ସଦସ୍ୟ ଥିବାରୁ ସରକାରଙ୍କ ଗୋଇନ୍ଦା ବିଭାଗ ତାଙ୍କ ଉପରେ ଓ ତାଙ୍କ ବନ୍ଧୁମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ।

ମୋର ପିତା ମିଳିତ ମନ୍ତ୍ରୀମଣ୍ଡଳ ଗଠନର ପ୍ରଧାନ ପୁରୋଧା ହେଲେ ମଧ୍ୟ ସୁଭାଷଙ୍କ ନୀତିର ଜଣାଶୁଣା ସମର୍ଥକ ଥିବାରୁ ତତ୍‌କାଳୀନ ଲାଟ୍ ହଥର୍ଣ୍ଣ ଲୁଇସ ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଅନେକ କାଳୁ 'ନବଭାରତ ପ୍ରେସ' ରାଜନୈତିକ କର୍ମୀ ଓ ମେଧାବୀ ଛାତ୍ରମାନଙ୍କର ଏକ ତାଲିମ୍ କେନ୍ଦ୍ର ପରି ରହିଥିଲା । ପ୍ରେସର ପଛପଟରେ ଥିବା ଦୋତାଲା ଚାଳିଆ ଘରେ ଛୁଟି ସମୟରେ ଓ ଦରକାର ବେଳେ ଆସି ସେମାନେ ରହି ଯାଉଥିଲେ । ପ୍ରେସର ଆୟରୁ ସେମାନଙ୍କ ବ୍ୟବସ୍ଥା କରାଯାଉଥିଲା । ସେ ସମସ୍ତଙ୍କୁ ମୋର ପିତା, ପୁତ୍ର ସ୍ଥାନ ଦେଇଥିଲେ । ନିଜର ପୁତ୍ର ଓ ସେମାନଙ୍କ ମଧ୍ୟରେ ସେ କୌଣସି ପ୍ରଭେଦ ଦେଖୁ ନଥିଲେ । ମୋର ମାଟ୍ରିକ ଫଳ ଓ କୁନି ଭାଇନା (ବିଭୁଧେନ୍ଦ୍ର ମିଶ୍ର)ଙ୍କ ବି.ଏ. ପରୀକ୍ଷା ବେଳେ ସେ'ଠି ରହୁଥିବା କର୍ମୀ ଓ ଛାତ୍ରମାନେ ମୋର ପିତାଙ୍କୁ ଭୋଜି ମାଗିଥିଲେ । ସେହି ଭୋଜି ପାଇଁ ସେ ଅର୍ଥ ଦାନ କରିଥିଲେ । ପ୍ରେସ ଭିତରେ ସରକାରୀ ବିରୋଧୀ କାର୍ଯ୍ୟ ହେଉଛି ସନ୍ଦେହ କରି କେନ୍ଦ୍ରସରକାର ଓ ଲାଟ ସାହେବଙ୍କ ନିର୍ଦ୍ଦେଶରେ ୩୦. ୬. ୪୨ରେ (ବୟାଳିଶ ଆନ୍ଦୋଳନ ପୂର୍ବରୁ) ହଠାତ 'ନବଭାରତ ପ୍ରେସ' ଖାନତଲାସ ହୋଇଥିଲା । ସେ ସମୟରେ ଭାଇନା କିମ୍ବା ପିତା କେହି ପ୍ରେସରେ ନ ଥିଲେ । ସେହି ଖାନତଲାସ୍‌ରେ ମୋ ପିତାଙ୍କ ପୁସ୍ତକ ଭିତରୁ ସୁଭାଷଙ୍କ ସମ୍ବନ୍ଧରେ ବହୁ ଆପତ୍ତିଜନକ ପ୍ରଚାରପତ୍ର ଜବତ ହୋଇଥିଲା । ସେ ପ୍ରଚାରପତ୍ର ଗୁଡିକ ସବୁ ଅଗ୍ନିବର୍ଷୀ ଥିଲା । ସେଥିରୁ ଗୋଟିକରେ ଥିଲା 'ସୁଭାଷ ସୈନିକ ବ୍ରିଟିଶ ସାମ୍ରାଜ୍ୟର ସ୍ନାୟୁକେନ୍ଦ୍ର ଦଳି ମାଡ଼ିଯିବେ।' ତା' ଛଡ଼ା ଖାନତଲାସ୍‌ରେ ସେହି ପ୍ରେସରେ ଛପା ହୋଇଥିବା 'ସୁଭାଷ ବୋଷ' ପୁସ୍ତକ ମଧ୍ୟ ଜବତ ହୋଇଥିଲା ।

ସେହି ପ୍ରଚାରପତ୍ର ପାଇଁ ସରକାର ମୋକଦ୍ଦମା ରୁଜୁ କରି ତା୨୮.୭.୧୯୪୨ରେ ନବଭାରତ ପ୍ରେସରୁ ଭାଇନାଙ୍କୁ ଗିରଫ କଲେ । ସୁଭାଷ ପନ୍ଥୀ ବିଭୁଧେନ୍ଦ୍ର ମିଶ୍ର, ବଳରାମ

ମହାନ୍ତି, ମୁଁ ଓ ଗୋଦାବରୀଶ ମହାପାତ୍ର ପ୍ରଭୃତି ଅଭ୍ୟର୍ଥନା ସହିତ ଭାଇନାଙ୍କୁ ବିଦାୟ ଦେଇଥିଲୁ ।

ଭାଇନା (ଅଶୋକ ବାବୁ)ଙ୍କୁ ବେଲ୍ ଦିଆ ନ ଯାଇ ଯୁଦ୍ଧ ବନ୍ଦୀ ଭାବେ ବିଚାର ପାଇଁ ଷଡ଼ଯନ୍ତ୍ର କରାଯାଇ କଟକ ଜେଲରେ ଗୋଟିଏ ଏକୁଟିଆ ସେଲରେ ବନ୍ଦୀ କରି ରଖାଯାଇଥିଲା ।

ଏ ଘଟଣାର ଅବ୍ୟବହିତ ପୂର୍ବରୁ ଜାତୀୟ କଂଗ୍ରେସ ଏକ ଲୋକଦେଖାଣିଆ ପ୍ରସ୍ତାବ ତାଙ୍କ କାର୍ଯ୍ୟକାରୀ କମିଟି ଦ୍ୱାରା ପାଶ କରାଇ ଥିଲେ । ସେଥିରେ ଇଂରେଜଙ୍କ ବିରୁଦ୍ଧରେ ସଂଗ୍ରାମ କରିବା ବିଷୟରେ ନାମ ଗନ୍ଧ ନ ଥିଲା । କେବଳ ଇଂରେଜ ଭାରତରୁ ତାଙ୍କ କ୍ଷମତା ଅପସାରଣ କରିବା ବିଷୟ ବିଚାର କରିବାକୁ ଏକ ପ୍ରକାର ଅନୁରୋଧ କରାଯିବାର ଉଲ୍ଲେଖ ଥିଲା । ଏହାପରେ ସଂଗ୍ରାମ ପାଇଁ ଆହ୍ୱାନ ଦେବାକୁ କଂଗ୍ରେସ ନେତାମାନଙ୍କ ଉପରେ ଚାପ ଚାରିଆଡୁ ଘନିଭୂତ ହେବାକୁ ଲାଗିଲା ।

୩.୮.୧୯୪୨ ଦିନ ଆମ ରେଭେନ୍‌ସା କଲେଜ ଛାତ୍ର ଇଉନିଅନର ନିର୍ବାଚନ ହେଲା । ସେହି ଇଉନିଅନକୁ ଆଗରୁ ଷ୍ଟୁଡେଣ୍ଟ ଫେଡ଼େରେସନ ନାମରେ କମ୍ୟୁନିଷ୍ଟ ଛାତ୍ର ସଂଘ ଏକଚାଟିଆ କରି ନିଜ ହାତରେ ରଖିବାକୁ ଉଦ୍ୟମ କରିଥିଲେ । ସେମାନଙ୍କ ପକ୍ଷରୁ ସଭାପତି ପଦ ପାଇଁ ଶ୍ରୀ ମନମୋହନ ମିଶ୍ର ଓ ସଂପାଦକ ପାଇଁ ଶ୍ରୀ ନରସିଂହ ତ୍ରିପାଠୀ ପ୍ରତିଦ୍ୱନ୍ଦିତା କରିଥିବା ବେଳେ କଂଗ୍ରେସ ଛାତ୍ରମାନେ ପ୍ରତିଦ୍ୱନ୍ଦିତାରୁ ଓହରି ରହିଥିଲେ । ଆମେ କମ୍ୟୁନିଷ୍ଟଙ୍କ ବିରୁଦ୍ଧରେ କଲେଜିଏଟ ସ୍କୁଲର ପୁରାତନ ଛାତ୍ର ପ୍ରଦୀପ୍ତ ଦାସ ଓ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କୁ ନିର୍ଦ୍ଦଳୀୟ ସଭାପତି ଓ ସଂପାଦକ ପ୍ରାର୍ଥୀ ଭାବରେ ପ୍ରତିଦ୍ୱନ୍ଦୀ କରାଇଥିଲୁ ।

ଇଂରେଜଙ୍କ ଯୁଦ୍ଧ ସପକ୍ଷରେ ପ୍ରଚାର କରୁଥିବାରୁ କମ୍ୟୁନିଷ୍ଟଙ୍କ ପ୍ରତିପତ୍ତି କ୍ଷୁର୍ଣ୍ଣ ହୋଇଥିଲା । ଆମ ପ୍ରାର୍ଥୀ ଦୁହେଁ ବହୁ ଭୋଟରେ ନିର୍ବାଚିତ ହୋଇଥିଲେ । ସେହି ନିର୍ବାଚନ ପରେ ପରେ ମୁଁ ଗାଁ'କୁ ଯିବା ଭିତରେ ମୋର ଶୁଭାକାଂକ୍ଷୀ ଓ ଏକ ପ୍ରକାର ଅଭିଭାବକ ଏବଂ ପିତାଙ୍କର ଅନ୍ତରଙ୍ଗ ବନ୍ଧୁ କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟଙ୍କ ତିରୋଧାନ ଖବର ପାଇ ମୁଁ ବଡ଼ ମର୍ମାହତ ହୋଇଥିଲି । ସେ ଅତି ଦୟାଳୁ, ସ୍ନେହଶୀଳ ଓ ଜନସେବୀ ଚିକିତ୍ସକ ଥିଲେ । ମୁଁ ଗ୍ରାମରେ ତାଙ୍କ ପାଇଁ ଶୋକସଭାଟିଏ କରି ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରାଇଲି ।

ଠିକ୍ ସେତିକିବେଳେ ଦେଶ ସାରା ଏକ ଚାଞ୍ଚଲ୍ୟ ଖେଳିଗଲା । ଗାନ୍ଧିଙ୍କ ସମେତ ସମସ୍ତ ତୁଙ୍ଗ ନେତାଙ୍କୁ ସରକାର ହଠାତ୍ ବନ୍ଦୀ କରିଥିବାର ଖବର ପାଇ ମୁଁ କଟକ ଫେରିଲି । ୯.୮.୧୯୪୨ ଦିନ ଜାତୀୟ କଂଗ୍ରେସର ଗୁପ୍ତ ବୈଠକ ଶେଷରେ, ନେତା

ମାନେ 'ଭାରତ ଛାଡ଼' ପ୍ରସ୍ତାବ ପାସ୍ କରାଇବାରୁ ସରକାର ନେତାମାନଙ୍କୁ ବନ୍ଦୀ କରି ଦମନଲୀଳା ପାଇଁ ପ୍ରସ୍ତୁତ ହୋଇଗଲେ ।

ଦେଶସାରା ବିପ୍ଳବୀ କର୍ମୀମାନେ ମଧ୍ୟ ସକ୍ରିୟ ହୋଇ ଉଠିଲେ । କଂଗ୍ରେସର ସାମ୍ୟବାଦୀମାନେ ନେତୃତ୍ୱ ନେଇ ସେ ଆନ୍ଦୋଳନକୁ ଅହିଂସ ପରିବର୍ତ୍ତେ ହିଂସ ଆନ୍ଦୋଳନରେ ପରିଣତ କରିଦେଲେ । ଗାନ୍ଧି ଯେଉଁଥିପାଇଁ ସଂଗ୍ରାମର ଡାକ ଦେବାକୁ ପଛାଉଥିଲେ ସେକଥା ହେଲା । ଚଉରିଚଉରାର କ୍ଷୁଦ୍ର ହିଂସାକାଣ୍ଡ ବେଳେ ସେ ତାଙ୍କ ଅହିଂସ ଆନ୍ଦୋଳନକୁ ବନ୍ଦ କରିଦେଇଥିଲେ, କିନ୍ତୁ ବୟାଳିଶ ଆନ୍ଦୋଳନରେ ତାଙ୍କର ଆନ୍ଦୋଳନ ବନ୍ଦ ଡାକ ଶୁଣିବାକୁ କେହି ପ୍ରସ୍ତୁତ ନ ଥିବାରୁ ସେ ନିରବ ରହିଲେ । ସାମ୍ୟବାଦୀ ଜୟ ପ୍ରକାଶ, ଅରୁଣା ଆସଫ ଅଲ୍ଲୀ ପ୍ରଭୃତି ସେହି ଆନ୍ଦୋଳନର ନେତୃତ୍ୱ ନେଲେ ।

ଏଗାର ଅଗଷ୍ଟ ୧୯୪୨ରେ ଆମ ରେଭେନ୍ସା କଲେଜ ହରତାଳ ପାଳନ କଲା, ବାର ତାରିଖରେ ଗୋଟିଏ ସଭା ହେଲା । ତେର ତାରିଖରେ ଛାତ୍ର ଓ ଯୁବ ଜନତାକୁ ଆନ୍ଦୋଳନରେ ଯୋଗ ଦେବା ପାଇଁ ଆହ୍ୱାନ କରିବାକୁ ଆମେ କଲେଜରୁ ଏକ ଶୋଭାଯାତ୍ରା ଆରମ୍ଭ କରି ସହର ଆଡ଼କୁ ଯିବାକୁ ଉଦ୍ୟତ ହେବାବେଳେ ପୋଲିସ ଫଉଜ ଆମର ପଥରୋଧ କରିବାରୁ ଆମେ ଫେରିଆସି ଆମର ଭବିଷ୍ୟତ ଯୋଜନାରେ ଲାଗିପଡ଼ିଲୁ ।

ଚଉଦ ତାରିଖ ଦିନ ଧରପଗଡ଼ ଆରମ୍ଭ ହୋଇଗଲା । ବଳରାମ ମହାନ୍ତି ପ୍ରଭୃତି ଆମର କେତେକ ସାଥୀଙ୍କୁ ପୋଲିସ୍ ଗିରଫ କରି ନେଲେ । କଲେଜ ଛାତ୍ରମାନଙ୍କୁ ଗିରଫ କରାଯିବାରେ କଲେଜ କର୍ତ୍ତୃପକ୍ଷ କୌଣସି ଆପତ୍ତି କଲେନାହିଁ । ତେଣୁ କଲେଜ କର୍ତ୍ତୃପକ୍ଷ ଓ ଅଫିସ ଉପରେ ଚଢ଼ାଉ କରିବାର ଯୋଜନା ଚାଲିଲା । ସେହି ଆନ୍ଦୋଳନକୁ ସଂଗ୍ରାମ ରୂପ ଦେବା ପାଇଁ ଆମେ ପ୍ରସ୍ତୁତ ହୋଇଗଲୁ ।

ଚିନ୍ତାମଣି ପାଣିଗ୍ରାହୀ ଓ ମୋର ଗୁପ୍ତ ଯୋଜନା ଅନୁସାରେ କେତେକ ବିସ୍ଫୋରକ ଦ୍ରବ୍ୟ ସଂଗ୍ରହ ହେବାର କଥା ହେଲା । ମୁଁ ବିଜ୍ଞାନ ଛାତ୍ର ଥିବାରୁ ରାସାୟନିକ ଲାବରେଟରୀରୁ ସ୍ପିରଟ୍, ଏସିଡ଼ ଓ କେତେକ କେମିକାଲ ଦ୍ରବ୍ୟ ସଂଗ୍ରହ କରିବା ମୋ ପକ୍ଷରେ ସୁବିଧା ହେଲା ।

ଆମେ ଆମ ସାଥୀମାନଙ୍କ ଗିରଫର ପ୍ରତିବାଦ କରି ଆମ ପ୍ରଫେସରମାନଙ୍କୁ ଘେରାଉ କଲୁ । କେତେକ ପ୍ରଫେସରଙ୍କ ବିଲାତି ପୋଷାକର 'ଟାଇ' ଛିଡ଼ି ସେ ପୋଷାକ ବର୍ଜନ କରିବା ପାଇଁ ଦାବି କଲୁ । ସେମାନେ ସମସ୍ତେ ସରକାରୀ ଚାକିରିରୁ ଇସ୍ତଫା ଦେଇ ଆମ ଆନ୍ଦୋଳନରେ ଯୋଗଦେଲେ ସ୍ୱାଧୀନ ଭାରତର କଲେଜ ମାନଙ୍କରେ

ଉଚ୍ଚ ଆସନ ପାଇବେ ବୋଲି ପ୍ରତିଶ୍ରୁତି ଦେଲୁ । (ସେତେବେଳେ ଆମର ଧାରଣା ଥିଲା ଭାରତ ସ୍ୱାଧୀନ ହେଲେ ଇଂରେଜଙ୍କ ଅଧୀନରେ କାର୍ଯ୍ୟ କରୁଥିବା ସମସ୍ତ କର୍ମଚାରୀ ବରଖାସ୍ତ ହୋଇ ଦେଶପ୍ରେମୀ ଲୋକଙ୍କୁ ସେମାନଙ୍କ ସ୍ଥାନରେ ନିଯୁକ୍ତି ଦିଆଯିବ ।)

ପ୍ରଫେସରମାନେ ଆମ କଥାରେ କର୍ଣ୍ଣପାତ ନ କରିବାରୁ କଲେଜ ଅଫିସରେ ଥିବା ସେମାନଙ୍କ ରେକର୍ଡ଼ ସବୁ ପୋଡ଼ି ଧ୍ୱଂସ କରିଦେବା ପାଇଁ ଆମେ ବହୁ ଛାତ୍ରଙ୍କ ସହିତ କଲେଜ ଅଫିସ ଭିତରକୁ ପଶିଯାଇ ସରକାରୀ ଫାଇଲଗୁଡ଼ାକ ଉପରକୁ ବିସ୍ଫୋରକ ଦ୍ରବ୍ୟ ସବୁ ଫିଙ୍ଗି ନିଆଁ ଲଗେଇ ଦେଲୁ । କଲେଜ ଅଫିସ ହୁତହୁତ୍ ହୋଇ ଜଳିଉଠିବା ବେଳକୁ ଆମେ ସେ ସ୍ଥାନ ଛାଡ଼ି ଯାଇ ଅନ୍ୟଠାରେ ଆତ୍ମଗୋପନ କଲୁ ।

ଖବର ପାଇ ପୋଲିସ୍ ସଦଳବଳେ ଆସି ଦମକଳ ସାହାଯ୍ୟରେ ଅଗ୍ନି ନିର୍ବାପିତ କଲେ । ପୋଲିସ୍‌ମାନେ ପ୍ରଫେସରମାନଙ୍କୁ ଦୁର୍ବୃତ୍ତ ଛାତ୍ରମାନଙ୍କ ନାମ ପଚାରିବାରେ, ଜାଣିଥିଲେ ସୁଦ୍ଧା ସେମାନେ କୌଣସି ଛାତ୍ରର ନାମ ପ୍ରକାଶ କଲେନାହିଁ ।

ଏ ସବୁ ଚାଲିଥିଲାବେଳେ କଲେଜର ନେତୃସ୍ଥାନୀୟ ଛାତ୍ରମାନେ କଲେଜ ଭିତରେ ଚାଲିଥିବା ପ୍ରଳୟକାଣ୍ଡ ବିଷୟରେ କିଛି ନ ଜାଣି କଲେଜ ସାମ୍ନା ବଜାରରେ ଗୁଜୁରାଟି ଦୋକାନରେ ବସି ଗାଣ୍ଠିଆ ଖାଉଥିଲେ । ପୋଲିସ କଲେଜ ଭିତରେ ନେତା ଓ ଦୁର୍ବୃତ୍ତମାନଙ୍କୁ ନପାଇ ବଜାର ଭିତରକୁ ଯାଇ ଜଳଖିଆ ଦୋକାନରୁ ଶ୍ରୀ ସୁରଜମଲ୍ଲ ଶାହା, ବିଭୁଧେନ୍ଦ୍ର ମିଶ୍ର ପ୍ରଭୃତି ଛାତ୍ରନେତାମାନଙ୍କୁ ଗିରଫ କରି ଘେନିଗଲେ । ଆମେ ଧରା ନପଡ଼ି ଆନ୍ଦୋଳନ ଚାଲୁ ରଖିଲୁ ।

ସାତ ତାରିଖ ସେପ୍‌ଟେମ୍ବର ଦିନ ଆମେ ଏକ ବିରାଟ 'ଛାତ୍ର ଗିରଫ-ପ୍ରତିବାଦ' ପଟୁଆର ବାହାର କରି କଲେଜରୁ ବିଭିନ୍ନ ସ୍କୁଲ ନିକଟକୁ ଯାଇ ସେଠାରେ ଛାତ୍ରମାନଙ୍କୁ ସେ ଆନ୍ଦୋଳନରେ ଯୋଗ ଦେବାପାଇଁ ଆହ୍ୱାନ କରିବାକୁ ସ୍ଥିର କଲୁ । ଆମେ ରାଣୀହାଟ ସ୍କୁଲର ପିଲାମାନଙ୍କୁ ଆହ୍ୱାନ ଦେବା ପରେ ମେଡ଼ିକାଲ ସ୍କୁଲଆଡ଼କୁ ଯାତ୍ରା କଲୁ । ଆମ ପଟୁଆରର ସାମନାରେ ମହିଳା ଛାତ୍ରୀମାନେ ରହି ଧ୍ୱନୀ ଦେଇ ଓ ଜାତୀୟ ସଙ୍ଗୀତ ଗାଇ ଗାଇ ଚାଲିଥିଲେ ।

ଆମେ ମେଡ଼ିକାଲ ହତାରେ ପଶି ମେଡ଼ିକାଲ ଛାତ୍ରାବାସ ସାମନା ରାସ୍ତାରେ ଠିଆ ହୋଇ ସ୍ଲୋଗାନ ଦେଇ ଛାତ୍ରମାନଙ୍କୁ ଆହ୍ୱାନ ଦେଲୁ । ମେଡ଼ିକାଲ ସ୍କୁଲ ଉଠିଯାଇ କଲେଜ ହେବାର ଥିଲା ଓ ସେଥିରେ ଛାତ୍ରମାନଙ୍କୁ ଗ୍ରହଣ କରାଯିବାର ସମ୍ଭାବନା ଥିବାରୁ ସେମାନେ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରସ୍ତୁତ ନ ଥିଲେ । ଛାତ୍ରାବାସ କୋଠାରୁ ସେମାନେ ଆମକୁ ଚାହିଁ ରହିଥିଲେ ମଧ୍ୟ ଆମ ନିକଟକୁ ଆସି ଆମ ସଙ୍ଗେ ଯୋଗ ଦେଲେନାହିଁ ।

ମେଡ଼ିକାଲ ସ୍କୁଲ ପ୍ରିନିସ୍‌ପାଲ ଆମ ନିକଟକୁ ଆସି ଆମେ ବିନାନୁମତିରେ ସେ ହତା ଭିତରେ ପ୍ରବେଶ କରିଥିବାରୁ ଫେରିଯିବା ପାଇଁ କହିଲେ । ଆମେ ତାଙ୍କ କଥା ନ ମାନି ହତାର ପଶ୍ଚିମ ଫାଟକ ଆଡ଼କୁ ଆଗେଇଲୁ । ପ୍ରିନିସ୍‌ପାଲ ହିକ୍‌ସ ସାହେବ ପୋଲିସକୁ ଫୋନ କରିସାରିଥିଲେ । ହଠାତ୍ ଏକ ବଡ଼ ପୋଲିସ ଫୌଜ ଧରି ପୋଲିସ ସର୍ଜେଣ୍ଟ ହର୍‌ଗ୍ରୀଭସ୍ ସାହେବ ପଶ୍ଚିମ ପଟ ଗେଟର ଅଳ୍ପ ଦୂରରେ ଆମର ପଥରୋଧ କଲେ । ସର୍ଜେଣ୍ଟ ଆମକୁ ଅଟକାଇ ରଖିବା ସଙ୍ଗେ ସଙ୍ଗେ ଆମ ଛାତ୍ରୀ ଦଳକୁ ଆଗେଇ ଯିବାକୁ ଅନୁମତି ଦେଲେ । ସେମାନେ ଗେଟ ପାର ହେଉ ହେଉ ପୋଲିସ୍‌ମାନେ ଧାଡ଼ି ହୋଇ ଠିଆ ହୋଇ ଗେଟ ଜଗିଦେଲେ । ଆମର ପଛରେ ଓ ଦୁଇ ପଟରେ ବିସ୍ତୀର୍ଣ୍ଣ ପଡ଼ିଆମାନ ରହିଥିଲା । ଏବର ଆଉଟଡୋର, ଗାଇନିକ ଓ୍ୱାର୍ଡ଼, ସର୍ଜିକାଲ ଓ୍ୱାର୍ଡ଼, ନର୍ସ ହଷ୍ଟେଲ ପ୍ରଭୃତି କିଛି ନ ଥିଲା । ଆମେ ସେଠାରେ ଠିଆ ହୋଇଥିବା ଭିତରେ, ମେଡ଼ିକାଲ ସ୍କୁଲ ଛାତ୍ରମାନେ ଆମ ସଙ୍ଗେ ଯୋଗ ଦେଇନଥିଲେ ମଧ କେତେକ କର୍ମଚାରୀ ଓ ହସପିଟାଲ ଖଟିଆମାନଙ୍କରେ ଥିବା ଛାତ୍ର ରୋଗୀ ଆମ ନିକଟକୁ ଚାଲି ଆସିଥିଲେ । ସେମାନଙ୍କ ଭିତରୁ ପୋଲିସ ଓ କର୍ମଚାରୀଙ୍କ ପିଲାମାନଙ୍କୁ ଆମେ ଆମର ଶୋଭାଯାତ୍ରା ସାମ୍‌ନାକୁ ପଠାଇ ଦେଇଥିଲୁ । ସେମାନଙ୍କୁ ଦେଖିଲେ ପୋଲିସ କୋହଳ ମନୋବୃତ୍ତି ଅବଲମ୍ବନ କରି ଆମକୁ ବାଟ ଛାଡ଼ିଦେବେ ବୋଲି ଆମେ ଆଶା କରୁଥିଲୁ ।

ହଠାତ୍ ହରଗ୍ରୀଭସ୍ ସାହେବ ଆମକୁ ପଛକୁ ଘଉଡ଼ାଇ ନେବାକୁ ଲାଠିଚାର୍ଜ ଆଦେଶ ଦେଲେ । ପୋଲିସ୍‌ବାହିନୀ ବଢ଼ିପାଣିର ପ୍ରଖର ସ୍ରୋତ ପରି ଆମ ଶୋଭାଯାତ୍ରା ଉପରକୁ ମାଡ଼ି ଆସିଲେ । ଲାଠି ଚାର୍ଜ ଦେଖି ପିଲାମାନେ ଚଟି ଜୋତା ସାଇକେଲ ପ୍ରଭୃତି ଫିଙ୍ଗି ଦେଇ ଛିନ୍ନଛତ୍ର ହୋଇ ଯେ ଯୁଆଡ଼େ ପାଇଲେ ସେ ପଡ଼ିଆ ଭିତରେ ପୂର୍ବ ଦିଗକୁ ଦଉଡ଼ିବାକୁ ଲାଗିଲେ । ପୋଲିସମାନେ ଲାଠି ଧରି ସେମାନଙ୍କ ଅନୁଧାବନ କଲେ । ସାମନାରେ ଥିବା ପ୍ରଖ୍ୟାତ ପୋଲିସ ଅଫିସର ବୈଷ୍ଣବ ଦାସଙ୍କ ପୁତ୍ର ନୀଳମାଧବ ହସପିଟାଲ ଖଟିଆରୁ ଆସି ପଟୁଆରରେ ଯୋଗ ଦେଇଥିଲେ । ସେ ତାଙ୍କୁ ଗୋଡ଼ାଉଥିବା ପୋଲିସ ଆଗରେ ଦଉଡ଼ି ନ ପାରି ପଡ଼ିଗଲେ, ପୋଲିସ ଲାଠିରେ ତାଙ୍କ ମୁଣ୍ଡ ଫାଟିଗଲା । ଚନ୍ଦ୍ରଶେଖର ନାୟକ ପ୍ରଭୃତି ଅନେକ ଛାତ୍ର ଲାଠି ମାଡ଼ରେ ଆହତ ହେଲେ ।

ପୋଲିସ ଲାଠି ଚାର୍ଜର କିପରି ସମ୍ମୁଖୀନ ହେବାକୁ ହୁଏ ସେ ବିଷୟରେ ଛାତ୍ରମାନେ , ଅନଭିଜ୍ଞ ଥିଲେ । ମୁଁ ଓ ବିପ୍ଳବୀ ଜୟକୃଷ୍ଣ ମହାପାତ୍ର ପିଲାମାନଙ୍କୁ ପୋଲିସ ସମ୍ମୁଖରେ ନ ଦଉଡ଼ି କଡ଼ରେ ବଙ୍କେଇ କରି ଦଉଡ଼ି ଯିବାକୁ ପାଟିକରି କହିଲୁ । ଆମେ ଦୁହେଁ କଡ଼କୁ ଦଉଡ଼ିଯାଇ ଗୋଟିଏ ଦେବଦାରୁ ଗଛ ମୂଳେ ଠିଆ ହୋଇଗଲୁ । ଦଉଡୁଥିବା ପୋଲିସମାନେ ଗଛମୂଳେ ଅଟକି ନ ପାରି ଆମ ଦୁଇପଟେ ସିଧା ଦଉଡ଼ି ତାଙ୍କ ସମ୍ମୁଖରେ ଥିବା ଛାତ୍ରଙ୍କୁ ଗୋଡ଼ାଇଗଲେ । ଆମେ ଲାଠିର ବିନା ଆଘାତରେ ସେଠାରୁ ଅନ୍ୟବାଟେ ବୁଲି ହଷ୍ଟେଲକୁ ଫେରିଲୁ ।

ନଅ ତାରିଖ ସେପ୍ଟେମ୍ବରରେ ଆମ କଲେଜରେ ସଂପୂର୍ଣ୍ଣ ଧର୍ମଘଟ ପାଳନ କରାଗଲା । ସେହିଦିନ ମୋର ଭାଇନା ଅଶୋକ ଦାସଙ୍କର କାରାଗାର ଭିତରେ ମୋକଦ୍ଦମାର ବିଚାର ଆରମ୍ଭ ହେବାରୁ ମୁଁ ତାଙ୍କୁ ଦେଖିପାରିଲି ନାହିଁ । ଅବଶ୍ୟ ସେଠାରେ ଜେରା ଜମାନବନ୍ଦୀ ଓ ସାକ୍ଷ୍ୟ ପ୍ରଦାନର ସୁବିଧା ନ ହେବାରୁ ଭାଇନାଙ୍କ ପକ୍ଷ ଆଡ଼ଭୋକେଟ ଶ୍ରୀ ହରିହର ମହାପାତ୍ର (ଜଷ୍ଟିସ)ଙ୍କ ଦାବିରେ ଏଗାର ସେପ୍ଟେମ୍ବର ଦିନ ତାଙ୍କ ମୋକଦ୍ଦମା କଚେରୀରେ କରାଯିବା ପାଇଁ ତାଙ୍କୁ କଡ଼ା ପ୍ରହରାରେ ରିକ୍ସାରେ ବସାଇ ଜେଲରୁ କଚେରୀକୁ ନିଆଗଲା । କଚେରୀରୁ ଅଶୋକ ବାବୁ ରିକ୍ସାରେ ବସି ଜେଲକୁ ଫେରିବା ସମୟରେ ତାଙ୍କ ସଙ୍ଗେ ଅନ୍ୟ କେତେକ ବିଚାରାଧୀନ ଅଭିଯୁକ୍ତ କଏଦୀଙ୍କୁ ଜେଲକୁ ଚଲାଇ ଚଲାଇ ଅଣାଯାଉଥିଲା । ସେମାନଙ୍କ ଭିତରୁ ଗୋଟିଏ ଦୁର୍ବଳିଆ ଲୋକ ଚାଲି ନ ପାରି ବାଟରେ ପଡ଼ିଗଲା । ତାକୁ ଘୋଷାରିକରି ନେବା ପାଇଁ ପୋଲିସମାନେ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ । ତାହା ଦେଖି ଅଶୋକ ବାବୁ ରିକ୍ସାକୁ ଅଟକାଇ ଖପ୍‌କରି ରିକ୍ସାରୁ ଓହ୍ଲାଇପଡ଼ି ପୋଲିସମାନଙ୍କୁ ହାତଯୋଡ଼ି କହିଲେ - 'ଭାଇମାନେ ମୋର ଚାଲିବାର ଶକ୍ତି ଅଛି, ଏ ଲୋକର ନାହିଁ । ତାକୁ ଅନୁଗ୍ରହ କରି ମୋ ରିକ୍ସାରେ ବସାଇ କରି ନିଅ । ମୁଁ ତୁମ ସଙ୍ଗେ ଚାଲି ଚାଲି ଯିବାକୁ ପ୍ରସ୍ତୁତ ଅଛି ।' ତାଙ୍କ କଥାରେ ପୋଲିସବାଲା ଅଭିଭୂତ ହୋଇ ଆଉ ଗୋଟିଏ ରିକ୍ସା ଡକାଇ ସେଥିରେ ସେ ଲୋକକୁ ବସାଇବା ପରେ ଅଶୋକ ବାବୁ ତାଙ୍କ ରିକ୍ସାରେ ବସିଲେ ।

ରେଭେନ୍‌ସା କଲେଜରେ ଧର୍ମଘଟ ଲାଗି ରହିଥିବାବେଳେ ପୂର୍ବ ଓ ପଶ୍ଚିମ ଦୁଇଟିଯାକ ଛାତ୍ରାବାସକୁ ସ୍ୱାଧୀନ ଘୋଷଣା କରାଯାଇ ପ୍ରତିଦିନ ଦଳ ଦଳ ସତ୍ୟାଗ୍ରହୀଙ୍କୁ ସହର ଭିତରେ ସଭା କରି ଆନ୍ଦୋଳନ ସପକ୍ଷରେ ଭାଷଣ ଦେବା ପାଇଁ ବେକରେ ଫୁଲମାଳ ପକାଇ ପଠାଯାଉଥିଲା । ସାଧାରଣତଃ ସରକାରୀ କର୍ମଚାରୀଙ୍କ ସନ୍ତାନମାନଙ୍କୁ ସେ ଦଳର ଡ଼ିକ୍ଟେଟର କରିବା ନେତୃତ୍ୱଦେଇ ପଠାଯାଉଥିଲା । ପୋଲିସ ଡ଼ି.ଏସ.ପି. ଗୋକୁଳାନନ୍ଦ ମହାନ୍ତିଙ୍କ ପୁତ୍ର ଶ୍ରୀ ଦେବେନ୍ଦ୍ର ମହାନ୍ତି ପ୍ରଥମ ଦିନ ୱେଷ୍ଟ ହଷ୍ଟେଲ ଦଳର ନେତୃତ୍ୱ ନେଇ କାରାବରଣ କରିଥିଲେ ।

ଛାତ୍ରାବାସମାନଙ୍କ ଚାରିପଟେ, ଛାତ୍ରମାନଙ୍କ ଗତିବିଧି ଲକ୍ଷ୍ୟ କରିବା ପାଇଁ ସାଧା ପୋଷାକଧାରୀ ଗୁଇନ୍ଦା ପୋଲିସମାନେ ବୁଲୁଥିବାରୁ ଅନ୍ତେବାସୀ ଛାତ୍ରମାନଙ୍କର ସେମାନଙ୍କୁ ଧରି ଅପଦସ୍ତ କରିବାର ଯୋଜନା ହୋଇଥିଲା । ସେପରି ଗୋଇନ୍ଦା ପୋଲିସମାନଙ୍କୁ ଧରିଆଣି ଛାତ୍ରାବାସ ଭିତରେ ବିଚାର କରି ଦଣ୍ଡ ଦେବାପାଇଁ ବିଚାରକ ମଣ୍ଡଳୀ ଓ ଦଣ୍ଡ ବିଧାନକାରୀମାନେ ନିଯୁକ୍ତ ହୋଇଥିଲେ ।

ଊଣେଇଶ ତାରିଖ ସେପ୍ଟେମ୍ବର ଦିନ ପୂର୍ବ ଛାତ୍ରାବାସର ଛାତ୍ର କର୍ମୀମାନେ ଛାତ୍ରାବାସ ବାହାରେ ବୁଲୁଥିବା ଜଣେ ଗୋଇନ୍ଦା ଅଫିସରକୁ ପଛଆଡୁ ଆକ୍ରମଣ କରି ତାଙ୍କ ଚକ୍ଷୁରେ

ପଟି ବାନ୍ଧି, ଛାତ୍ରାବାସ ଭିତରକୁ ଆଣି ସେହି ବିଚାରକ ମଣ୍ଡଳୀଙ୍କ ସାମନାରେ ହାଜର କଲେ । ତାଙ୍କ ଚକ୍ଷୁରେ ପଟି ଓ ପଛରେ ହାତ ଦୁଇଟି ବନ୍ଧା ହୋଇଥିବା ଅବସ୍ଥାରେ ତାଙ୍କର ବିଚାର ଆରମ୍ଭ ହେଲା । ସେ'ଦିନର ପ୍ରଧାନ ବିଚାର କର୍ତ୍ତା ଶ୍ରୀ ଦ୍ୱାରକାନାଥ ଦାସ (ପରେ ଆଡ୍‌ଭୋକେଟ ଓ ପୁରୀ ମ୍ୟୁନିସ୍‌ପାଲିଟି ଚେୟାରମାନ୍) ସେ ବ୍ୟକ୍ତିକୁ ଦେଶଦ୍ରୋହ ଏବଂ ବିଦେଶୀଙ୍କ ଷଡ଼ଯନ୍ତ୍ରରେ ଯୋଗ ଦେଇଥିବା ଘୃଣ୍ୟ ଭୃତ୍ୟ ସାବ୍ୟସ୍ତ କରି ଏକ ଅଦ୍ଭୁତ ଦଣ୍ଡର ଆଦେଶ ଦେଲେ । ତାଙ୍କ ଆଦେଶରେ ସେ ଛାତ୍ରାବାସର ପ୍ରଶସ୍ତ ଦୀର୍ଘ ବାରଣ୍ଡାରେ ଆଖି ପଟି ବନ୍ଧା ଥାଇ ''ଚଲରେ ଚଲରେ ଆଜାଦ କାମ୍ପ ଚଲରେ'' କହି ଦୁଇଜଣ ଛାତ୍ର କର୍ମୀ ତାକୁ ପଛରୁ ଧକ୍କା ମାରି ମାରି ବାରଣ୍ଡାର ଏପଟରୁ ସେପଟ ପର୍ଯ୍ୟନ୍ତ ବହୁଥର ଚଲାଇବା ପରେ ଆଜାଦ କାମ୍ପ ନାମ ଦିଆଯାଇଥିବା ଏକ ଅପରିଷ୍କାର ଦୁର୍ଗନ୍ଧମୟ ପାଇଖାନା ଭିତରେ ରଖି ପାଇଖାନା ଦୁଆର ବନ୍ଦ କରିଦିଆଗଲା । ରାତ୍ରି ହେବାରୁ ଅନ୍ଧାରରେ ତାକୁ ହତା ବାହାରକୁ ନିଆଯାଇ ଗୋଟିଏ ଦୋକାନର ଅଳ୍ପ ଦୂରରେ ଛାଡ଼ି ଦିଆଯାଇ, ଆଉଦିନେ ଏପରି ଦେଶଦ୍ରୋହ କାର୍ଯ୍ୟ କରିବୁ ନାହିଁ କହି ଛାଡ଼ିଦିଆଗଲା । ତା'ର ଚିତ୍କାରରେ ଦୋକାନରୁ ଲୋକ ତା' ନିକଟକୁ ଆସିଲା ବେଳକୁ ଛାତ୍ର କର୍ମୀ ତାଙ୍କ ଛାତ୍ରାବାସକୁ ନିରାପଦରେ ଫେରିଆସିଥିଲେ । ସେ ଲୋକେ ତା' ଆଖି ଓ ହାତରୁ ପଟି ମୁକୁଳାଇବା ପରେ ସେ ନିକଟସ୍ଥ ଥାନାକୁ ଯାଇ ରିପୋର୍ଟ କଲା ।

ପରଦିନ ଭୋରକୁ ପୋଲିସ ଫଉଜ ସେ ଛାତ୍ରାବାସକୁ ଘେରଉ କରି ସେ ଛାତ୍ରାବାସ ଭିତରୁ ସନ୍ଦେହରେ ବାରଜଣ ଛାତ୍ରଙ୍କୁ ଧରି ହାତକଡ଼ା ଦେଇ ଥାନାକୁ ଘେନିଗଲେ । ସେ ଗୁଇନ୍ଦା ପୋଲିସ ସେମାନଙ୍କ ଭିତରୁ କାହାକୁ ଚିହ୍ନି ନପାରିଲେ ମଧ୍ୟ ସେମାନଙ୍କ ଭିତରୁ କେତେକ ବନ୍ଦୀ ହୋଇ ରହିଲେ ।

ସେହି ଗିରଫର ପ୍ରତିବାଦରେ ଦୁଇଟିଯାକ ଛାତ୍ରାବାସରେ ଗଣ-ଅନଶନ ଆରମ୍ଭ ହୋଇଯିବାରୁ, ଶିକ୍ଷା ବିଭାଗର ଡ଼ିରେକ୍ଟର ଶ୍ୟାମାଚରଣ ତ୍ରିପାଠୀ କଲେଜ ଅଫିସକୁ ଆସି ପୂଜା ଛୁଟି ହୋଇଗଲା ବୋଲି ଘୋଷଣା କରି ଦୁଇଟିଯାକ ଛାତ୍ରାବାସ ସଙ୍ଗେ ସଙ୍ଗେ ଖାଲି କରାଇବା ପାଇଁ ନିର୍ଦ୍ଦେଶ ଦେଲେ । ସେ ଘୋଷଣା ଫଳରେ ଆମ୍ଭମାନଙ୍କୁ ଜୋର ଜବରଦସ୍ତ ଛାତ୍ରାବାସରୁ ବହିଷ୍କୃତ କରାଯାଇ ଛାତ୍ରାବାସକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ କରି ଦିଆଗଲା । ସେହି ଘୋଷଣା ସହିତ କଲେଜ ଇଉନିଅନକୁ ନିଷିଦ୍ଧ ଘୋଷଣା କରାଯାଇ ସଭାପତି ପ୍ରଦୀପ୍ତ କିଶୋର ଦାସ ସମ୍ପାଦକ ଚିନ୍ତାମଣି ପାଣିଗ୍ରାହୀଙ୍କ ସମେତ ୩୦ ଜଣ ଛାତ୍ରଙ୍କ ନାମ କଲେଜ ରେଜିଷ୍ଟାରରୁ କାଟି ଦିଆଯିବାର ବିଜ୍ଞପ୍ତି ପ୍ରକାଶିତ ହେଲା ।

ସେହି ଘଟଣାରେ କେତେକ ଛାତ୍ରନେତା ମଧ୍ୟ ଗିରଫ ହେଲେ । ଅନ୍ୟ କେତେକ କଟକ ଛାଡ଼ି ନିଜ ନିଜ ଗ୍ରାମକୁ ଚାଲିଗଲେ । କିଛି ଦିନ ଆତ୍ମଗୋପନ ପରେ ଚିନ୍ତାମଣି

ପାଣିଗ୍ରାହୀ କଲିକତା ଯାଇ ସେଠାରେ ଗୋଟିଏ କଲେଜରେ ନାମ ଲେଖାଇବା ସଙ୍ଗେ ସଙ୍ଗେ, ବଳରାମ ନନ୍ଦଙ୍କ ସହିତ ରହି ଓଡ଼ିଆ ଆନ୍ଦୋଳନ ଓ ବାହିନୀ କାର୍ଯ୍ୟରେ ଲିପ୍ତ ରହିଲେ ।

ଏକୋଇଶ ସେପ୍‌ଟେମ୍ବର ୧୯୪୨ରେ ପୋଲିସ୍ କଚେରୀରେ 'ନବଭାରତ ପ୍ରେସ ଖାନତଲାସ'ର ସଂପୂର୍ଣ୍ଣ ଚାର୍ଜସିଟ୍ ଦାଖଲ କଲେ । ସେହି ମୋକଦ୍ଦମା ମାଜିଷ୍ଟ୍ରେଟ ରାଧାମୋହନ ପଟ୍ଟନାୟକଙ୍କ (ଆଜାଦ ହିନ୍ଦ ଫୌଜର ଗଭର୍ଣ୍ଣର ଡାକ୍ତର ବ୍ରଜମୋହନ ପଟ୍ଟନାୟକଙ୍କ ପିତା) ଇଜ୍‌ଲାସରେ ଅଶୋକ ବାବୁଙ୍କ ବିରୁଦ୍ଧରେ ଚାଲିଲା । ଅଶୋକ ବାବୁଙ୍କ ତରଫରୁ ଆଡ଼ଭୋକେଟ ହରିହର ମହାପାତ୍ର ସେ ମୋକଦ୍ଦମା ଲଢ଼ିଲେ ।

ଅଶୋକ ବାବୁଙ୍କୁ କେନ୍ଦ୍ର ଅଟକ ଆଇନ ପ୍ରଭୃତିରେ ଅଟକ ନ ରଖି ତାଙ୍କ ନାମରେ ମୋକଦ୍ଦମା ରୁଜୁ କରିବା ଦ୍ୱାରା ସରକାର ବୋଧହୁଏ ଭୁଲ କରିପକାଇଥିଲେ । ପୋଲିସ ନବଭାରତରେ ପ୍ରେସ, ଅଶୋକ ବାବୁଙ୍କ ଅନୁପସ୍ଥିତିରେ ଖାନତଲାସ କରି ସୁଭାଷ ପ୍ରଚାରପତ୍ର ସବୁ ପାଇଥିଲେ ତାହା ଅଶୋକ ବାବୁଙ୍କ ବହି ଭିତରେ ଥିଲା ବୋଲି ପୋଲିସ ଭାବିଥିଲେ କିନ୍ତୁ ତାହା ପଣ୍ଡିତ ନୀଳକଣ୍ଠଙ୍କ ବହି ବୋଲି ପରେ ପ୍ରମାଣିତ ହୋଇଥିଲା । ସେ ସବୁ ଜବତ କଲାବେଳେ ପୋଲିସ ଯେଉଁମାନଙ୍କୁ ସରକାରୀ ସାକ୍ଷୀ ରୂପେ ବାଛିଥିଲେ, ସେମାନଙ୍କ ଭିତରେ ପୁରୀର ପୁରାତନ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜଗନ୍ନାଥ ମହାନ୍ତି ରହିଯାଇଥିଲେ । ତେଣୁ ସେହି ମୋକଦ୍ଦମାରେ ସାକ୍ଷୀଙ୍କ ଜମାନବନ୍ଦୀ ସରକାରଙ୍କ ସପକ୍ଷରେ ନ ଯାଇ ବିପକ୍ଷରେ ଗଲା । ପୋଲିସ ସେ ପ୍ରଚାରପତ୍ର ସବୁ ନିଜ ସଙ୍ଗରେ ଆଣି ସେ ବହି ଭିତରେ ରଖିଥିବା ଅଭିଯୋଗର, ପୋଲିସ ବା ତାଙ୍କ ସାକ୍ଷୀମାନେ ସଫେଇ ଦେଇ ପାରିଲେ ନାହିଁ ।

ତେଣୁ ବିଚାର ଶେଷରେ ଭୀଷଣ ସରକାରୀ ଚାପ ସତ୍ତ୍ୱେ ମାଜିଷ୍ଟ୍ରେଟ ରାଧାମୋହନ ବାବୁ ନ୍ୟାୟ ଦୃଷ୍ଟିରୁ ସେ ମୋକଦ୍ଦମା ଖାରଜ କରାଇ ଅଶୋକ ବାବୁଙ୍କୁ ଖଲାସ କରାଯିବା ଆଦେଶ ଦେଲେ । ସେହି ରାୟରେ ଉଚ୍ଚ କର୍ତ୍ତୃପକ୍ଷ ବିଶେଷରେ ଲାଟ ସାହେବ ବଡ଼ ବିବ୍ରତ ହୋଇ ପଡ଼ିଲେ । ସେ ଯାହାକୁ ଯୁଦ୍ଧ ବନ୍ଦୀ ରୂପେ ବିଚାର କରାଇ ଫାଶୀ ଖୁଣ୍ଟରେ ଓହଳାଇବାର ଯୋଜନା କରୁଥିଲେ ସେହି ସୁଭାଷ ପନ୍ଥୀ ରାଜବନ୍ଦୀଙ୍କୁ ନିର୍ଦ୍ଦୋଷରେ ଖଲାସ କରାଯିବାରେ, ବିଚାରପତିଙ୍କ ଉପରେ ତାଙ୍କ କୋପଦୃଷ୍ଟି ପଡ଼ିଲା । ବୃଦ୍ଧ ରାଧାମୋହନ ବାବୁଙ୍କ ଅବ୍ୟାହତି ସମୟ ନିକଟେଇ ଆସିଥିଲେ ମଧ ତାଙ୍କୁ କଟକରୁ ଏଠାକୁ ସେଠା ବଦଳି କରାଯାଇ ନାନା ଭାବରେ ହଇରାଣ ହରକତ କରାଗଲା ।

ଅଶୋକ ବାବୁଙ୍କ ଖଲାସ ହେବା ରାୟକୁ ବାତିଲ କରାଯିବା ପାଇଁ ତାଙ୍କ ନାମରେ ଆଉ ଏକ ମୋକଦ୍ଦମା ରୁଜୁ କରାଗଲା । ଖାନତଲାସ ବେଳେ ସୁଭାଷ-ପ୍ରଚାରପତ୍ର

ସଙ୍ଗେ ସୁଭାଷଙ୍କ ଜୀବନୀ ପୁସ୍ତକ ମଧ ଜବତ ହୋଇଥିଲା । ଅଶୋକ ଦାସ ସେ ପ୍ରେସର 'କିପର୍ସ' ଥାଇ ତାହା ସେ ପ୍ରେସରେ ଛପା ହୋଇଥିବାରୁ ସେହି ପୁସ୍ତକ ପାଇଁ ଅଶୋକ ବାବୁଙ୍କୁ ଜେଲ୍‌ରେ ଅଟକ ରଖାଯାଇ ସରକାର ସେହି ମୋକଦ୍ଦମା ଚଳାଇଲେ । ଅଶୋକ ବାବୁଙ୍କ ଓକିଲ ଆଡ଼ଭୋକେଟ ହରିହର ମହାପାତ୍ର ଅକାଟ୍ୟ ଯୁକ୍ତି ବାଢ଼ି ଏକାସଙ୍ଗେ ଜବତ ହୋଇଥିବା ଗୋଟିକରେ ଆସାମୀ ଖଲାସ ହୋଇଥିବାରୁ ଅନ୍ୟ କୌଣସି ଜବତ ପଦାର୍ଥ ଉପରେ ଆଉ କୌଣସି ମୋକଦ୍ଦମା ଚଳି ନପାରେ ବୋଲି ଓକିଲାତ କରିବାରୁ, ଅଶୋକ ବାବୁଙ୍କୁ କାରାମୁକ୍ତ କରିବାକୁ ସରକାର ବାଧ ହୋଇଥିଲେ । ସେହି ସବୁ ମୋକଦ୍ଦମା ମାନଙ୍କ ତଦ୍‌ବିର କରିବା ପାଇଁ ଓକିଲଙ୍କ ନିକଟକୁ ଜେଲକୁ ଓ କଚେରୀ ନିକଟକୁ ଦଉଡ଼ିବାରେ ମୁଁ ସେତେବେଳେ ବ୍ୟସ୍ତ ରହିଥିଲି ।

କଲେଜ ଗଣ୍ଡଗୋଳ ନେଇ ବନ୍ଦୀ ହୋଇଥିବା ସୁରଜମଲ୍ଲ ଶାହା ଓ ବିଭୁଧେନ୍ଦ୍ର ମିଶ୍ର ପ୍ରମାଣ ଅଭାବରୁ ଖଲାସ ହୋଇଥିଲେ ହେଁ ଭାରତର ନିରାପତ୍ତା ଆଇନରେ ସେମାନଙ୍କୁ ଗିରଫ କରାଯାଇ ସେମାନଙ୍କ ଘର ଖାନତଲାସ କରାଯାଇଥିଲା । ସୁରଜ୍‌ମଲ ବାବୁଙ୍କ ଜିନିଷପତ୍ର ଖାନତଲାସ ବେଳେ ସେଥିରୁ ଆମ ସୁଭାଷ ପନ୍ଥୀ କର୍ମୀମାନଙ୍କ ସମ୍ବନ୍ଧରେ କେତେକ ଗୁପ୍ତ କାଗଜପତ୍ର ଧରାପଡ଼ିଥିଲା । ମୋ ନାମରେ ଥିବା କେତେକ ଆପତ୍ତିଜନକ କାଗଜ ବାହାରିଥିବାର ଶୁଣି ମୁଁ ଆତ୍ମଗୋପନ କଲି । ଅନ୍ୟମାନେ ଅଟକବନ୍ଦୀ ଭାବରେ କଟକ ଜେଲରୁ ବ୍ରହ୍ମପୁର ସେଣ୍ଟ୍ରାଲ ଜେଲକୁ ସ୍ଥାନାନ୍ତରିତ ହେଲେ । ସେ ସମୟରେ ଓଡ଼ିଶାରେ ମିଳିତ ମନ୍ତ୍ରୀମଣ୍ଡଳ ଚାଲୁ ରହିଥିବାରୁ ଓଡ଼ିଶା ପୋଲିସମାନେ ଆମ ସୁଭାଷପନ୍ଥୀଙ୍କ ପ୍ରତି କୋହଳ ମନୋଭାବ ପୋଷଣ କରି କେନ୍ଦ୍ର ପୋଲିସ ଆମକୁ ଗିରଫ କରିବାକୁ ଆସିବାବେଳେ ଆମକୁ ଗୁପ୍ତରେ ଖବର ଦେଇ ଦେଉଥିଲେ । ତେଣୁ ମୁଁ କେନ୍ଦ୍ର ପୋଲିସ ଆଖିରେ ଧୂଳି ଦେଇ ମୋ କାର୍ଯ୍ୟ କରିଚାଲିଥିଲି ।

ସେତେବେଳେ ବିଶ୍ୱ ଯୁଦ୍ଧରେ ଇଂରେଜ ପକ୍ଷଙ୍କର ଦୟନୀୟ ପରାଜୟ ଘଟୁଥିଲା । ୨୧, ୨୨ ଡିସେମ୍ବରରେ ଇଂରେଜଙ୍କ ଶତ୍ରୁପକ୍ଷ ଜାପାନ ପ୍ରଥମ କରି ଲାଗ ଲାଗ କଲିକତା ଉପରେ ବୋମା ମାଡ଼ କରିଥିଲା । ବଙ୍ଗୋପସାଗରର ଆଣ୍ଡାମାନ ଦ୍ୱୀପ ସମୂହକୁ ଜାପାନ ଅଧିକାର କରିନେବା ପରେ ସେଠାରେ ରହି ବଙ୍ଗୋପସାଗରର ଉପକୂଳରେ ବୋମା ମାଡ଼ କରିବା ଜାପାନକୁ ସୁବିଧାଜନକ ହୋଇଥିଲା, ସେତେବେଳେ ଗଞ୍ଜାମ ଟ୍ରଙ୍କ ମର୍ଡ଼ର କେଶର ଦୀପାନ୍ତର ପାଇଥିବା ପିଠାପୁର ରାଜକୁମାର ଜାପାନୀଙ୍କ ଦ୍ୱାରା ଆଣ୍ଡାମାନର ଗଭର୍ଣ୍ଣର ହୋଇଥିଲେ । ପରେ ସୁଭାଷ ଆଜାଦହିନ୍ଦ୍ ସରକାର ଗଢ଼ିବା ପରେ ତାହା ସେହି ସରକାର ଅଧୀନକୁ ଆସି ସେଥିରେ ଭାରତୀୟ ଜାତୀୟ ପତାକା ଉଡ଼ିଥିଲା ଓ ସୁଭାଷ ତାଙ୍କ ସେନାପତି ବିପ୍ଲବୀ ଚାଟାର୍ଜୀଙ୍କୁ ସେ ଦ୍ୱୀପମାନଙ୍କର ଶାସକ ନିଯୁକ୍ତ କରିଥିଲେ ।

ସେ ବର୍ଷର ରାଜନୈତିକ ଆଲୋଡ଼ନ ଓ ବିଶ୍ୱଯୁଦ୍ଧର ବିପ୍ରାତ ସଙ୍ଗକୁ ତାଳ ଦେଇ ପ୍ରାକୃତିକ ବାତ୍ୟା ବିପ୍ରାତ ଦକ୍ଷିଣ ଓଡ଼ିଶାକୁ ଛାରଖାର କରିଦେଇଥିଲା । ତଦ୍ୱାରା ଚିଲିକା ଓ ଗଞ୍ଜାମର ଉପକୂଳ ଅଞ୍ଚଳର ପ୍ରଭୂତ କ୍ଷତି ଘଟିଥିଲା । ଡିସେମ୍ବର ତା୨୬ରିଖରେ ମୁଁ ବ୍ରହ୍ମପୁର ଯାଇ ସେଠାରୁ ଜଗନ୍ନାଥ ମିଶ୍ର (ନଇବନ୍ଧ) ଓ ସତ୍ୟବାଦୀ ପ୍ରଧାନଙ୍କ ସଙ୍ଗେ ବାତ୍ୟା ପ୍ରପୀଡ଼ିତ ଅଞ୍ଚଳକୁ ଯାଇଥିଲି । ବାତ୍ୟାରେ ପାଲୁର ଅଞ୍ଚଳର ୧୪୦ ଜଣ ଲୋକ ଥିବା ଗ୍ରାମରୁ ମାତ୍ର ଦୁଇଜଣ ଜୀବିତ ଥିଲେ । ତାଙ୍କର ଦୁଃଖ ଶୁଣି ଆମ ଦେହ ଶୀତେଇ ଉଠିଲା । ଚିଲିକା କୋଡ଼ିଏ ଫୁଟ ଉଚ୍ଚକୁ ଉଠିଯିବାରୁ ବହୁ ଗାଁ'ଗଣ୍ଡା ନଷ୍ଟ ହୋଇ ସେ ଗ୍ରାମମାନଙ୍କ ଉପରେ ବାଲି ମାଡ଼ିଯାଇଥିଲା । ସେ ଗ୍ରାମ ସବୁର ଯେଉଁ କେତେଜଣ ଜୀବିତ ଥିଲେ ସେମାନଙ୍କ ପାଇଁ ଆମ ନେତା ଗଞ୍ଜାମ ଜିଲ୍ଲା ବୋର୍ଡ଼ର ପ୍ରେସିଡ଼େଣ୍ଟ ଦିବାକର ବାବୁଙ୍କ ନିର୍ଦ୍ଦେଶରେ ଗୋଟିଏ ପାହାଡ଼ ତଳେ ଆମ ସୁଭାଷପନ୍ଥୀ କର୍ମୀମାନେ ବାଉଁଶ ଓ ଚାଞ୍ଚର ଧାଡ଼ି ଧାଡ଼ି ଘର ନିର୍ମାଣ କରି ସେମାନଙ୍କୁ ଥଇଥାନ କରିବା ସଙ୍ଗେ ସେମାନଙ୍କ ସେବାରେ ଲାଗିପଡ଼ିଥିଲୁ ।

୧୯୪୩ ମସିହା ବର୍ଷଟି ମଧ ମୋ ପାଇଁ କୁହେଳିପୂର୍ଣ୍ଣ ଥିଲା । ମୋତେ ଯେପରି ମୋର ଜୀବନ ସଙ୍ଗେ ଲୁଚକାଳି ଖେଳିବାକୁ ପଡୁଥିଲା । କେତେବେଳେ ମୁଁ କେଉଁଠାରେ ଥାଏ, କଅଣ କରେ ତା'ର ଠିକ୍ ଠିକଣା ନ ଥିଲା, କାରଣ ଆମର ଭବିଷ୍ୟତର କାର୍ଯ୍ୟକ୍ରମ ଅନିଶ୍ଚିତ ହୋଇପଡ଼ିଥିଲା । ମୁଁ କଟକରେ ନବଭାରତ ପ୍ରେସରେ ଥିବାବେଳେ ଲେଖାଲେଖି ଓ ସାମ୍ବାଦିକତାରେ ସମୟ କଟାଇ ଦେଉଥିଲି । ଅନ୍ୟ ସ୍ଥାନରେ ବିଶେଷରେ ମଫସଲରେ ବୁଲିବା ସମୟରେ କେତେକ ସାମାଜିକ କାର୍ଯ୍ୟରେ ମନୋନିବେଶ କରୁଥିଲି ।

ନେତାଜୀ ସୁଭାଷଙ୍କ ପୂର୍ବ ନିର୍ଦ୍ଦେଶ ଅନୁସାରେ ବଙ୍ଗଳାକୁ ରକ୍ଷା କରିବାକୁ ତାଙ୍କ ବଡ଼ଭାଇ ଶରତଚନ୍ଦ୍ର ବୋଷ ବଙ୍ଗଳାରେ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ଉଦ୍ୟମ କଲାବେଳେ ସରକାରଙ୍କ ଦ୍ୱାରା ବନ୍ଦୀ ହୋଇଯାଇଥିଲେ । ଜାପାନୀମାନଙ୍କ ବିଜୟରେ ପୂର୍ବ ଦିଗରୁ ଯୁଦ୍ଧ ମାଡ଼ିଆସିବା ଭୟରେ ବ୍ରିଟିଶ ସରକାର ବଙ୍ଗଳାର ଖାଦ୍ୟ ସରବରାହ ଓ ଖାଦ୍ୟ ଯୋଗାଣ ଏକ ପ୍ରକାର ବନ୍ଦ କରିଦେଇ 'ସ୍କର୍ଚ୍ଚଡ୍ ଆର୍ଥ ପଲିସି' 'ଖାଦ୍ୟଶୂନ୍ୟ ଧରଣୀ'ର ବ୍ୟବସ୍ଥା ଜାରି କରିଥିଲେ । ସରକାର କୃତ ସେହି କୃତ୍ରିମ ଦୁର୍ଭିକ୍ଷ ଯୋଗୁଁ ଅବିଭକ୍ତ ବଙ୍ଗଳାରେ ଉତ୍କଟ ଖାଦ୍ୟାଭାବ ଘଟି ବହୁ ସଂଖ୍ୟାରେ ଲୋକ ଧରାଶାୟୀ ହୋଇଥିଲେ । ସେଠାରେ ମିଳିତ ମନ୍ତ୍ରୀମଣ୍ଡଳ ରହିଥିଲେ ତାହା ହୁଏତ ହୋଇପାରି ନ ଥା'ନ୍ତା । କାରଣ ସେ ସମୟରେ ଓଡ଼ିଶାରେ ସେହି ଯୋଜନା ଅନୁସାରେ ମିଳିତ ମନ୍ତ୍ରୀମଣ୍ଡଳଟିଏ ରହିଥିବାରୁ ଓଡ଼ିଶା ସେହି ବିପ୍ରାତରୁ ରକ୍ଷା ପାଇ ଯାଇଥିଲା ।

ସେହି ସମୟରେ ଯୁଦ୍ଧର ବିଭୀଷିକା ମାଡ଼ି ଆସୁଥିବାରୁ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଦୁର୍ମୂଲ୍ୟ ଓ ଦୁଷ୍ପ୍ରାପ୍ୟତା ସମଗ୍ର ଦେଶକୁ ଘାରୁଥିଲା । ସେତେବେଳେ କଳିଯୁଗ ଧ୍ୱଂସ ପାଇଯିବା ଭଳି ଅଜବ ଗୁଜବ ସବୁ ପ୍ରଚାରିତ ହେଉଥିଲା ।

୧୯୪୪ ମସିହା ବେଳକୁ କିଛି କିଛି ସଂଖ୍ୟାରେ ରାଜନୈତିକ ବନ୍ଦୀମାନେ କାରାମୁକ୍ତ ହୋଇ ଆସିବାକୁ ଲାଗିଲେ । ସେମାନଙ୍କ ଭିତରେ ବୟାଳିଶ ଆନ୍ଦୋଳନର ଉତ୍ତେଜନା ଆଉ ନ ଥିଲା । ଦେଶରେ ହିନ୍ଦୁ ମୁସଲମାନ ବିପଦ ଘନୀଭୂତ ହେବାକୁ ଲାଗିଥିଲା । ଦେଶରେ ବହୁ ବିବଦମାନ ସ୍ୱାର୍ଥାନ୍ୱେଷୀ ଦଳର ଆବିର୍ଭାବ ଘଟୁଥିଲା ।

ଭାରତର ପ୍ରଥମ ସତ୍ୟାଗ୍ରହର ଏକତା ଓ ଦେଶପ୍ରେମର ଉଦ୍ଦୀପନାଠାରୁ ତାହା କିପରି ପୃଥକ ଥିଲା ତାହା ବର୍ଣ୍ଣନା କରିବାକୁ ଯାଇ ସଂଗ୍ରାମୀ ଯଦୁମଣି ମଙ୍ଗରାଜ ଦିନେ କହିଲେ ପ୍ରଥମ ସତ୍ୟାଗ୍ରହ ବେଳେ ଭାଗଲପୁର ଜେଲରେ ସେ ଜଣେ ଉପରକ୍ଲାସ ରାଜନୈତିକ ବନ୍ଦୀ ଭାବରେ ରହିଥିବାବେଳେ ସେଠାରେ ସାନ୍ତାଳ ପ୍ରଗଣାର ବିଦ୍ରୋହୀ ଅଧିବାସୀ ସଂଗ୍ରାମୀମାନଙ୍କୁ ସାଧାରଣ ଦାଗୀ ଭଳି ବ୍ୟବହାର କରି ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଉଥିଲା । ଅଟା ପେଶା, ତେଲ ପେଡ଼ା ପ୍ରଭୃତି ବହୁ କଷ୍ଟ କାର୍ଯ୍ୟ ଦିଆଯିବା ସହିତ ସେଥିରେ ଖିଲାପ ହେଲେ ଦଣ୍ଡସ୍ୱରୂପ ହାତକଡ଼ି ଦେଇ ଖରାରେ ଖୁଣ୍ଟରେ ଝୁଲାଇ ଟାଙ୍ଗିବା, ଅଖାରେ ଭର୍ତ୍ତି କରି ଗଡ଼ାଇବା, ଖାଦ୍ୟରୂପେ କେବଳ ମଇଦା ଲେହି ଦେବା ସତ୍ତ୍ୱେ ସେମାନେ ସେ ସବୁରେ ନ ଦବି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ । ଖରାରେ ଟଙ୍ଗା ହୋଇ ଗୋଡ଼ ପୋଡ଼ିଗଲା ବେଳେ ପାଦ ପକାଉଠା କରିବାବେଳେ ସେମାନେ 'ବିସ୍ତରା ବାନ୍ଧ ଲୋ ଫିରିଙ୍ଗି' ଗୀତ ବୋଲିବାରେ ଲାଗିଥିଲେ ।

ସେତେବେଳର ସେ ଜେଲ୍‌ର ଗୋରା ସୁପରିନ୍‌ଟେଣ୍ଡେଣ୍ଟ ସେ ସବୁ ଶାସ୍ତି ଦେଇ ସେ ସାନ୍ତାଳମାନଙ୍କୁ ନପାରି ମଙ୍ଗରାଜ ପରି ଉଚ୍ଚ ଶ୍ରେଣୀ ରାଜନୈତିକ ବନ୍ଦୀଙ୍କୁ କହିଥିଲେ ତୁମର ଏ ଲୋକେ ଯେଉଁ ପଦାର୍ଥରେ ତିଆରି ସେମାନେ ସବୁ ପଥର ଖାଇ ହଜମ କରି ଦେଇପାରନ୍ତି ।

ସେ କଥା ମନେପକାଇ ଦୀର୍ଘ ନିଶ୍ୱାସ ଛାଡ଼ି ମଙ୍ଗରାଜ କହିଲେ 'ସେଦିନ କୁଆଡ଼େ ଗଲା ? ଏବେ ହିନ୍ଦୁ-ମୁସଲମାନ, ଆଦିବାସୀ-ହରିଜନ ଭାଇ-ଭାଇ ଗୋଷ୍ଠି-ଗୋଷ୍ଠି ଭିତରେ ମରାମରି ଚାଲିଛି ।' ରାଜନୀତିର ସେପରି କରୁଣ ପରିଣତି କଥା ଉପଲବ୍ଧି କରି ମୋ ମନରେ ଚେତନା ପଶିଲା । କୌଣସି ମତେ ପାଠ ପଢ଼ି ନିଜ ଗୋଡ଼ରେ ଛିଡ଼ା ହେବାର ଶକ୍ତି ସଂଗ୍ରହ କରିବା ପାଇଁ ମୁଁ ଦୃଢ଼ପ୍ରତିଜ୍ଞ ହେଲି ।



# କଲିକତା ପାଠପଢ଼ା

ଆଇ.ଏସ.ସିର ପ୍ରଥମ ବର୍ଷଟି ପାଶ କରି ଦ୍ୱିତୀୟ ବର୍ଷରେ ଗୋଡ଼ ଦେଉ ଦେଉ ବୟାଳିଶ ଆନ୍ଦୋଳନର ରାଜନୀତିକ ଝଡ଼ରେ ଚାହୁଁ ଚାହୁଁ ଦୁଇଟି ବର୍ଷ କେଉଁଆଡ଼େ ଗଡ଼ି ଚାଲିଗଲା । ମୁଁ ନ ଯଯୌ, ନ ତସ୍ଥୌ ଅବସ୍ଥାରେ ଦୋଳାୟମାନ ହୋଇ ରହିଲି । ଅବସ୍ଥା ଏପରି ହେଲା ଯେ, ମୋର ରାଜନୀତିକ ଜୀବନକୁ ଗୁରୁତ୍ୱ ନ ଦେଇ ମୋ ପରୋକ୍ଷରେ ମୁଁ ପଣ୍ଡିତ ବଂଶର ଏକ ବିଦ୍ୟାହୀନ ବାଳୁଙ୍ଗା ବୋଲି ମୋର କେତେକ ଗୁରୁଜନ ମୋତେ ତାଚ୍ଛଲ୍ୟ କରୁଥିବାର ଶୁଣିବାକୁ ପାଇ ମୋ ମନରେ କ୍ଷୋଭ ଆସିଲା ।

ଆଗରୁ ମେଡ଼ିକାଲରେ ପଢ଼ି ଡାକ୍ତର ହେବାର ମୁଁ ଯେଉଁ ସ୍ୱପ୍ନ ଦେଖିଥିଲି ତାହା ଆକାଶ କୁସୁମ ପାଲଟି ଯାଇଥିଲା । ୧୯୪୩ ପର୍ଯ୍ୟନ୍ତ ମାତ୍ର ୪ଜଣ ଆଇ.ଏସ.ସି. ପାଶ ଛାତ୍ର ଜିଲ୍ଲା ଅନୁସାରେ ଓଡ଼ିଶା ସରକାରଙ୍କ ଦ୍ୱାରା ପାଟନା ମେଡ଼ିକାଲ କଲେଜରେ ପଢ଼ିବା ପାଇଁ ବଛା ଯାଉଥିଲେ । ୧୯୪୩ରେ ପରୀକ୍ଷା ଫଳ ଖୁବ୍ ଖରାପ ହୋଇଥିଲା, ତେଣୁ ଥାର୍ଡ ଡ଼ିଭିଜନ ଛାତ୍ର ମଧ ତାଙ୍କ ଜିଲ୍ଲାରେ ସର୍ବୋଚ୍ଚ ନମ୍ବର ରଖି ସେଥିପାଇଁ ବଛା ଯାଇଥିଲେ । ସେ କଥା ଚିନ୍ତା କରିବା ମୋ ପକ୍ଷରେ ଶାରୋନାସ୍ତି କୁତୋ ବ୍ୟଥା ପରି ଥିଲା ।

ପାଠପଢ଼ା ଇଚ୍ଛା:

୧୯୪୪ରେ ମୋର ମଝିଆ ଭିଣୋଇ ଇଂ. ମଧୁସୂଦନ ଦାସ ଯାଦବପୁର ଇଂଜିନିୟରିଂ କଲେଜରୁ ପାଶ କରି କଲିକତାରେ ଗୋଟିଏ ଫାକ୍ଟରୀରେ ଆପ୍ରେଣ୍ଟିସ କାର୍ଯ୍ୟ କରୁଥିଲେ । ମୋ ମନର ଭାବ ଜାଣିପାରି ସେ କଲିକତାର ତାଙ୍କର ଜଣେ ବନ୍ଧୁଙ୍କ ସାହାଯ୍ୟରେ କଲିକତା କାରମାଇକାଲ ମେଡ଼ିକାଲ କଲେଜର ଆଇ.ଏସ.ସି ସେକସନର ପ୍ରିନସିପାଲ ଗୋପାଳ ଭଟ୍ଟାଚାର୍ଯ୍ୟଙ୍କ ସଙ୍ଗେ ଯୋଗାଯୋଗ ସ୍ଥାପନ କରି ମୋତେ ଡକାଇଲେ । ସେ ମେଡ଼ିକାଲ କଲେଜର ଆଇ.ଏସ.ସି. ସେକସନରୁ ପାଶକଲେ ସେ ମେଡ଼ିକାଲ କଲେଜରେ ସିଟ୍ ମିଳିପାରେ ବୋଲି ମୁଁ ପୁଣି ଆଶାବାଦୀ ହୋଇ ପଡ଼ିଲି ।

ମୁଁ କଲିକତା ଯାଇ ମଧୁବାବୁଙ୍କୁ ନେଇ ଗୋପାଳ ବାବୁଙ୍କୁ ସାକ୍ଷାତ କଲି । ସେ ମୋର ପରିଚୟ ପାଇ ଖୁସିରେ କହିଲେ, ଭାରତରେ, ବିଶେଷତଃ ବଙ୍ଗଳାରେ ଏପରି କଲେଜ ବା ଅନୁଷ୍ଠାନ ନାହିଁ ଯେ କି ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁତ୍ରକୁ ସ୍ଥାନ ଦେବା ପାଇଁ ଆଗ୍ରହ

ପ୍ରକାଶ ନ କରିବ । ମୁଁ ତାଙ୍କ ବାକ୍ୟରେ ଉତ୍‌ଫୁଲ୍ଲିତ ହୋଇ କଟକ ଫେରିଲି ।

ମୁଁ ରେଭେନ୍‌ସା କଲେଜରୁ କୌଣସି ମତେ ମୋ ସାର୍ଟିଫିକେଟ୍ ଯୋଗାଡ଼ କରି ନୂଆ ବିଶ୍ୱବିଦ୍ୟାଳୟର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର (ମୋ ସ୍କୁଲସାଥି ରାଜୁର ବାପା) ଶ୍ରୀ ଜଗନ୍ନାଥ ମିଶ୍ରଙ୍କୁ ଅନୁରୋଧ କରି ଇଉନିଭରସିଟି ମାଇଗ୍ରେସନ ସାର୍ଟିଫିକେଟ୍‌ଟି ଗୁପ୍ତରେ ହାସଲ କରି କଲିକତା ଫେରିଲି ।

୧୯୪୩ ଜୁଲାଇ ଦୁଇ ତାରିଖରେ ନେତାଜୀ ସୁଭାଷ ରେଙ୍ଗୁନରେ ପହଞ୍ଚି ଜୁଲାଇ ଚାରି ତାରିଖରେ 'ଆଜାଦ ହିନ୍ଦ୍ ଫୌଜ, ଓ ଅସ୍ଥାୟୀ ସ୍ୱାଧୀନତା ଭାରତ ସରକାର ଗଢ଼ିବାରୁ ଇଂରେଜ ସରକାର ବଙ୍ଗଳା ପୂର୍ବଖଣ୍ଡରେ ଖାଦ୍ୟ ଅଭାବ ଘଟାଇ ସେଠାରୁ ଲୋକଙ୍କୁ ଅପସାରଣ କରିବା ପାଇଁ ଚେଷ୍ଟା କରିଥିଲେ । ତାହା ଯୋଗୁଁ ବହୁ ଲୋକ ସେ ଅଞ୍ଚଳରୁ ଆସି କଲିକତା ପରି ବଡ଼ ବଡ଼ ସହରମାନଙ୍କରେ ରୁଣ୍ଡ ହୋଇଥିଲେ । କଲିକତାରେ ଚାଉଳ, ଅଟା ପ୍ରଭୃତିର ଅଭାବରୁ ସେଗୁଡ଼ିକ ଦୁର୍ମୂଲ୍ୟ ଥାଏ । ମୋର ଭିଣୋଇ ମଧୁବାବୁ ଆପ୍ରେଣ୍ଟିସ୍ ଭାବରେ ମାସକୁ ମାତ୍ର ଶହେଟି ଟଙ୍କା ପାଉଥା'ନ୍ତି, ବାଲି-ଉତ୍ତରପଡ଼ା ଅଞ୍ଚଳରେ ଜଣେ ବୁଢ଼ୀର ଦାଣ୍ଡଘର ଓ ବାରଣ୍ଡାଟି ମାସିକ ୩୦ ଟଙ୍କା ଭଡ଼ାନେଇ ସସ୍ତ୍ରୀକ ରହୁଥା'ନ୍ତି । ତାଙ୍କର ଅତିଥି ହୋଇ ରହିବାର ଥିବାରୁ ମୁଁ ତକିଆ ଖୋଳରେ ଚାଉଳ ପୁରାଇ ତାକୁ ଟ୍ରଙ୍କରେ ମୋ ବହି ଓ ଲୁଗାପଟା ସହିତ ରଖି ଇଣ୍ଟର କ୍ଲାସରେ ବସି, ପୁରୀ ଏକ୍‌ସପ୍ରେସରେ ହାଓ୍ୱଡ଼ା ଆସିଲି । ଚାଉଳ ନବା ଆଣିବା ନିଷେଧ ଥିବାରୁ ରେଳଗାଡ଼ି ଭିତରେ ଯାଞ୍ଚ ଚାଲିଥାଏ, ତେଣୁ ବହୁ ସନ୍ତର୍ପଣରେ ମୁଁ ହାଓ୍ୱଡ଼ାରେ ଓହ୍ଲାଇ ବାଲି ବସ ଧରି ବେଲୁଡ଼ ଦେଇ ବାଲି ବସଷ୍ଟାଣ୍ଡରେ ଓହ୍ଲାଇଲି । ସେଠାରୁ କୁଲି ଦ୍ୱାରା ଟ୍ରଙ୍କଟି ନେଇ ତାଙ୍କ ବସାରେ ପହଞ୍ଚିଲି ।

## ନାମଲେଖାରେ ଧୋକ୍‌କା:

ପରଦିନ ସବୁ ସାର୍ଟିଫିକେଟ ସହିତ ଯାଇ କାରମାଇକାଲ୍ ମେଡ଼ିକାଲ କଲେଜରେ ଗୋପାଳ ବାବୁଙ୍କ ସନ୍ଧାନ ନେଲି । ସେ ଖବର ପାଇଲେ ମଧ ମୋତେ ଦେଖା ନଦେଇ, ମେଡ଼ିକାଲ କଲେଜ ପ୍ରିନ୍‌ସିପାଲଙ୍କ ସଙ୍ଗେ ଦେଖାକରିବାକୁ ତାଙ୍କ ଚପରାଶି ହାତରେ କହି ପଠାଇଲେ । ଗୋପାଳ ବାବୁଙ୍କ ହାତରେ ଆଇ.ଏସ.ସି. ସେକ୍‌ସନର ଆଡ଼ମିସନ ଭାର ନ ଥିଲା । ମେଡ଼ିକାଲ କଲେଜ ପ୍ରିନସପାଲ ନିଜେ ତାଙ୍କ କଲେଜ ଆଡ଼ମିସନକୁ ଆଖିରେ ରଖି ଆଇ.ଏସ୍.ସି. ସେକ୍‌ସନ ପାଇଁ ପିଲା ବାଛୁଥିଲେ । ମୁଁ ତାଙ୍କ ଅଫିସର ଜନୈକ କିରାଣୀଙ୍କୁ ପଚାରିବାରେ ସେ କହିଲେ, ତମ ପରି ଆଇ.ଏସ.ସି ସେକେଣ୍ଡ ଇଅରରେ ଆଡ଼ମିସନ ନେବାକୁ ଇଚ୍ଛା କରୁଥିବା ଛାତ୍ରଙ୍କ ପାଇଁ ଏଠାରେ ନାମ ଲେଖାର ବ୍ୟବସ୍ଥା ନାହିଁ । ତା'ପରେ ତୁମେ ଅନ୍ୟ ପ୍ରଦେଶର ଲୋକ ଓ ତୁମର ବି ବୟସ

ହୋଇଗଲାଣି । ତେଣୁ ତୁମର ଏଠାରେ ଆଡ଼ମିସନ ପାଇବା ଅସମ୍ଭବ । ତାହା ଶୁଣି ସାରିବା ପରେ ବି ମୁଁ ସେ ପ୍ରିନସିପାଲଙ୍କ ସଙ୍ଗେ ସାକ୍ଷାତ କରିବା ପାଇଁ ଚେଷ୍ଟା କଲି କିନ୍ତୁ ତାହା ମଧ ପ୍ରତ୍ୟାଖ୍ୟାତ ହୋଇଥିଲା ।

ମୁଁ ନିରାଶ ହୋଇ ଫେରିବା ବାଟରେ ମୋର ପୂର୍ବତନ ଶିକ୍ଷକ ଓ ବଡ଼ ଭିଣୋଇଙ୍କ ଉପର ଭାଇ ଶ୍ରୀ ବିଘ୍ନେଶ୍ୱର ରଥଙ୍କୁ ଭେଟିଲି । ସେ ବଲିଗଞ୍ଜରେ ରହି କୁଥଲଜିରେ ଏମ.ଏସ୍.ସି. ଡ଼ିଗ୍ରୀ ହାସଲ କରିବା ପାଇଁ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଥିଲେ । ସେ କହିଲେ, ଶ୍ରୀ ପ୍ରେମାନନ୍ଦ ମହାନ୍ତି (ପ୍ରଫେସର ଜଗଦାନନ୍ଦ ମହାନ୍ତିଙ୍କ ବଡ଼ଭାଇ) 'ସେଣ୍ଟପଲ' କଲେଜରେ ପ୍ରିନ୍‌ସିପାଲ ଅଛନ୍ତି । ସେ ଜଣେ ଓଡ଼ିଆ ଖ୍ରୀଷ୍ଟିଆନ । ସେ ତୁମ ପିତା ପଣ୍ଡିତ ନୀଳକଣ୍ଠଙ୍କୁ ବଡ଼ ସମ୍ମାନ କରନ୍ତି । ତୁମେ ମୋ ସଙ୍ଗରେ ତାଙ୍କ ନିକଟକୁ ଚାଲ । ସେ ନିଶ୍ଚୟ ତୁମକୁ ଦେଖି ଖୁସି ହେବେ, ଓ ମୋର ଆଶା ତାଙ୍କ କଲେଜରେ ନାମ ଲେଖାଇ ଦେବେ ।

ମୁଁ ଭାବିଲି ଚୋରଠାରୁ ବିଧାଏ ପାଇବା ନୀତିରେ ମେଡ଼ିକାଲ ଆଶା ଯାଉ ପଛକେ, କଲିକତାରେ କୌଣସି କଲେଜରେ ସ୍ଥାନ ମିଳି ଆଇ.ଏସ.ସି. ଟା ପାସ କଲାପରେ ଅନ୍ୟ କିଛି ପଢ଼ି ଗ୍ରାଜୁଏଟ ଟାଏତ ହୋଇହେବ । ଏସବୁ ଚିନ୍ତା କରି ବହୁ ଆଶା ହୃଦୟରେ ଧରି ପରଦିନ ମୁଁ ବିଘ୍ନେଶ୍ୱର ବାବୁଙ୍କ ସଙ୍ଗେ ପ୍ରେମାନନ୍ଦ ବାବୁଙ୍କ ବାସଭବନକୁ ଗଲି । ବିଘ୍ନେଶ୍ୱର ବାବୁ ମୋତେ ତାଙ୍କ ବାହାର ଘରେ ବସାଇ ଦେଇ ପ୍ରେମାନନ୍ଦ ବାବୁଙ୍କୁ ସାକ୍ଷାତ କରିବାକୁ ଗଲେ । ସେ ମୋତେ ଡକାଇବେ ବୋଲି ମୁଁ ଅପେକ୍ଷା କରୁଥିଲି କିନ୍ତୁ ସେ ଡାକରା ଆସିଲା ନାହିଁ । ବିଘ୍ନେଶ୍ୱର ବାବୁ ନିରାଶ ହୋଇ ଫେରି ଆସିଲେ । ସେଇଟା ଖ୍ରୀଷ୍ଟିଆନ କଲେଜ, ଦୁର୍ଭିକ୍ଷ ଯୋଗୁଁ ଆଇ.ଏସ.ସି. ପରୀକ୍ଷା ଅତ୍ୟନ୍ତ ଖରାପ ହୋଇଥିବାରୁ ସେହି ଖ୍ରୀଷ୍ଟିଆନ ପିଲାଙ୍କୁ ଦ୍ୱିତୀୟ ବର୍ଷରେ ପୁଣି ନାମ ଲେଖାଯାଉ ଥିବାରୁ ଆଉ ସ୍ଥାନ ନାହିଁ ବୋଲି ପ୍ରିନ୍‌ସିପାଲ ତାଙ୍କୁ ଫେରାଇ ଦେଇଥିଲେ ।

ମୁଁ ସେଠାରୁ ଫେରି, ସିଟି, ବିଦ୍ୟାସାଗର ପ୍ରଭୃତି ଅନ୍ୟ କେତେକ କଲେଜରେ ଚେଷ୍ଟାକଲି । ଶେଷରେ ବିଶ୍ୱବିଦ୍ୟାଳୟ ନାମଲେଖା ତାରିଖ ଚାଲିଯାଇଥିବାର ଶୁଣି ପୂରା ନିରାଶ ହୋଇଗଲି । କଟକରୁ ମାଇଗ୍ରେସନ୍ ସାର୍ଟିଫିକେଟ ଘେନି ଆସିବା ପରେ କଟକ ଫେରି ବା କାହାକୁ ମୁହଁ ଦେଖାଇବି ? ତେଣୁ କଟକ ବା ଘରକୁ ଫେରିବାର ପ୍ରଶ୍ନ ଆଉ ଉଠୁନଥିଲା ।

ମୁଁ ବୁଲୁ ବୁଲୁ ସୁଭାଷ ପନ୍ଥୀମାନଙ୍କ ଭିତରୁ ଜଣଙ୍କ ସଙ୍ଗେ ସାକ୍ଷାତ ହେଲା । ସେ ମୋତେ ତାଙ୍କ ଗୁପ୍ତକାର୍ଯ୍ୟାଳୟକୁ ଘେନିଗଲେ । ଆଜାଦ୍ ହିନ୍ଦ ଫୌଜ ଭାରତରେ ପଶିଲାବେଳକୁ ସେମାନଙ୍କୁ ସ୍ୱାଗତ କରିବାପାଇଁ ଆସାମରେ ଏକ ଦୃଢ଼ ସଂଗଠନ

ଗଡ଼ାଯିବାର ଆବଶ୍ୟକତା ସେମାନେ ଉପଲବ୍ଧି କରୁଥିଲେ । ତେଣୁ କେତେକ ସକ୍ରୀୟ କର୍ମୀଙ୍କୁ ଆସାମ ପଠାଇବାର ଯୋଜନା କରୁଥିଲେ । ସେମାନେ ମୋତେ ସେଥିପାଇଁ ବାଛିବା ବିଶେଷ ଅସୁବିଧା ନଥିଲା ।

ମୁଁ ଆସାମ ଯିବାର ସ୍ଥିର କରି ଗାଡ଼ି ସମୟ ପ୍ରଭୃତି ବୁଝିବା ପାଇଁ ସିଆଲଦା ଷ୍ଟେସନ ଅଭିମୁଖେ ଯାତ୍ରାକଲି । ମୁଁ ବଡ଼ ରାସ୍ତାରେ ନଯାଇ ଗଳି କନ୍ଦି ଦେଇ ଯାଉଥିବା ସମୟରେ ଗୋଟିଏ ପୁରୁଣା ତିନିତାଲା କୋଠା ଉପରୁ ଗହଳି ଶୁଭିଲା । ଦୂରରୁ ମୁଁ ତାକୁ ଏକ ଘୋଟ ଗୋଦାମ ବୋଲି ଭାବିଥିଲି । ସେ ଘର ସାମନା ଫାଟକ ନିକଟକୁ ଆସି ଦେଖିଲି ତାହା ପ୍ରାଙ୍ଗଣରେ ଗୋଟିଏ ମାର୍ବଲ ମୂର୍ତ୍ତି ରହିଛି ଓ ତା' ନିକଟରେ ଜାତୀୟ ପତାକାଟିଏ ଉଡୁଛି । ତା'ପରେ 'ବଙ୍ଗବାସୀ କଲେଜ' ସାଇନ ବୋର୍ଡ଼ଟି ମୋ ଆଖିରେ ପଡ଼ିବାରୁ ମୁଁ ନିର୍ଭୟରେ ସେହି ପ୍ରାଙ୍ଗଣ ଭିତରେ ପଶିଲି ।

**ବଙ୍ଗବାସୀ କଲେଜରେ ନାମଲେଖା:**

ଗୋଟିଏ କାଠ ସିଡ଼ିରେ ଉପରକୁ ଉଠିଲି । ସିଡ଼ିଟାର ଉପର ମୁଣ୍ଡ ବାରଣ୍ଡାରେ ଚିଡା ଚୈତନ୍ୟ କରିଥିବା ଜଣେ ମୋଟା ବୟସ୍କ ବ୍ୟକ୍ତି ଜଣେ କଲେଜ ଛାତ୍ର (ମୟୂରଭଞ୍ଜର ଜଗଦୀଶ ମହାପାତ୍ର)ଙ୍କ ସଙ୍ଗେ ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଥିଲେ । ମୁଁ ତାହା ଶୁଣି ସେମାନଙ୍କ ନିକଟକୁ ଯାଇ ଓଡ଼ିଆରେ ସେମାନଙ୍କ ପରିଚୟ ପଚାରିଲି । ବୟସ୍କ ଜଣକ ସେଠାର ପିଅନ ଓ ତାଙ୍କ ନାମ ଭୋଳାନାଥ ପଣ୍ଡା । ସେ ପିଲାଦିନୁ ସେ କଲେଜରେ କାର୍ଯ୍ୟ କରି ଆସୁଛନ୍ତି ବୋଲି କହି ମୋର ପରିଚୟ ନେବାକୁ, ମୁଁ କେଉଁଠାରୁ ଆସିଛି, କାହିଁକି ଆସିଛି ବୋଲି ପଚାରିଲେ । ମୁଁ ଉତ୍ତର ଦେଲି ମୁଁ କଟକରୁ ଆସିଛି । ମୋର କଲିକତାରେ ଆଇ.ଏସ୍.ସି. ସେକେଣ୍ଡ ଇଅରରେ ନାମ ଲେଖାଇବାର ଥିଲା, କିନ୍ତୁ କୌଣସି କଲେଜରେ ସ୍ଥାନ ନ ମିଳିବାରୁ ମୁଁ ଏଣେତେଣେ ବୁଲୁଛି ।

ମୋ କଥା ଶୁଣି ଚମକି ପଡ଼ିଲା ପରି ସେ କହିଲେ, ଆପଣ ଆମ କଟକରୁ ଆସିଛନ୍ତି । ପାଠ ପଢ଼ିବା ପାଇଁ କଲିକତା କଲେଜରେ ସ୍ଥାନ ପାଇଲେ ନାହିଁ ? ହଉ ମୁଁ ଏଠା ପ୍ରିନସିପାଲଙ୍କୁ ପିଲାଦିନୁ କାଖେଇ କୋଳେଇ ମଣିଷ କରିଛି । ଏହାଙ୍କ ପିତା ଏଠାରେ ପ୍ରିନ୍‌ସିପାଲ ଥିଲେ । ଏବର ପ୍ରିନ୍‌ସିପାଲ ବିଲାତରୁ ପାଠପଢ଼ି ଆସି ଏଠାରେ ଶିକ୍ଷକତା କରି ପିତାଙ୍କ ପରେ ପ୍ରିନ୍‌ସିପାଲ ହୋଇଛନ୍ତି । ଆପଣ ଏଠାରେ ଅପେକ୍ଷା କରନ୍ତୁ ମୁଁ ତାଙ୍କ ନିକଟକୁ ଯାଇ ଚେଷ୍ଟା କରେ । ଅଳ୍ପ କିଛି ସମୟ ପରେ ଭୋଳିପଣ୍ଡେ ପ୍ରିନ୍‌ସିପାଲଙ୍କ ନିକଟରୁ ଫେରି ମୋତେ ପ୍ରିନ୍‌ସିପାଲ ଡକାଇଛନ୍ତି କହି ସଙ୍ଗରେ ଘେନି ଗଲେ । ପ୍ରିନ୍‌ସିପାଲ ପ୍ରଶାନ୍ତ ବୋଷ ବିଲାତ ଫେରନ୍ତା ହେଲେ ମଧ୍ୟ ଜାତୀୟବାଦୀ ମନୋବୃତ୍ତିର ବଡ଼ ଧୀର ଶାନ୍ତ ସ୍ୱଭାବର ଲୋକ । ସେ ମୋତେ ବସିବାକୁ କହି ମୋର

ପରିଚୟ ଓ ଅସୁବିଧା କଥା ପଚାରିଲେ । ମୁଁ ପୂର୍ବରୁ ପିତାଙ୍କ ପରିଚୟ ଦେଇ ଅପଦସ୍ତ ହୋଇଥିବାରୁ ଆଉ ସେ ପରିଚୟ ନଦେଇ ମୁଁ ଜଣେ ରେଭଲ୍ୟୁସନାରୀ ଛାତ୍ର, ଓଡ଼ିଶାରେ ମୋ ପାଠପଢ଼ାର ବ୍ୟାଘାତ ଘଟୁଥିବାରୁ ମୁଁ ପୁଣି ମୋର ଗୋଟିଏ ବର୍ଷ ବାକିଥିବା ଆଇ.ଏସ୍.ସି. ପାଠକୁ ସଂପୂର୍ଣ୍ଣ କରିବା ପାଇଁ ଆଇ.ଏସ୍.ସି. ସେକେଣ୍ଡଇୟରରେ ନାମ ଲେଖାଇବାକୁ ଚାହେଁ ବୋଲି କହିଲି ।

ପ୍ରିନ୍‌ସିପାଲ ମୋର ଜ୍ଞାନ ପରୀକ୍ଷା କରିବା ପାଇଁ ମୋତେ ଭାରତର ରାଜନୀତି, ରେଭଲ୍ୟୁସନ ଓ ପାଠ ବିଷୟରେ ଗୁଡ଼ିଏ ପ୍ରଶ୍ନ ବହୁ ସମୟ ଧରି ପଚାରିବା ପରେ ମୋ ଉପରେ ସନ୍ତୁଷ୍ଟ ହେଲାପରି କହିଲେ, ଏ କଲେଜ ବିପ୍ଳବୀ ଯତୀନ କଲେଜ, ଏଠାରୁ ଜଣେ ରେଭଲ୍ୟୁସନାରୀ ଛାତ୍ରଙ୍କୁ ଆଡ୍‌ମିସନ ନ ଦେଇ ଫେରାଇ ହେବ ନାହିଁ, ତା'ପରେ ତୁମ ଜ୍ଞାନର ମୁଁ ଯାହା ଦେଖୁଛି ଏ କେତେ ଦିନ ମନଦେଇ ପଢ଼ିଲେ ତୁମେ ଫାଷ୍ଟ ଡ଼ିଭିଜନରେ କୃତିତ୍ୱ ସହିତ ପାଶ କରିବାର ସମ୍ଭାବନା ଅଛି । କିନ୍ତୁ, କିନ୍ତୁ, କହି ସେ ରହିଯିବାରୁ ମୁଁ ଟିକିଏ ଦବିଗଲି । ତା'ପରେ ସେ କହିଲେ 'ମୋର ଟିକିଏ ସନ୍ଦେହ ରହିଛି । ପୂର୍ବରୁ ତୁମ ପରି କେତେକ ଜାତୀୟବାଦୀ ଛାତ୍ର ଆସି ନାମ ଲେଖାଇବା ପରେ, ଆଉ ଥୟ ଧରି ନପାରି ପରୀକ୍ଷା ପୂର୍ବରୁ ପାଠ ଛାଡ଼ି ଚାଲି ଯାଇଛନ୍ତି । ତେଣୁ ତୁମକୁ ମୁଁ ଆଡ୍‌ମିସନ ଦେବା ଉଚିତ ମନେକରୁ ଥିଲେ ମଧ ତୁମେ କେଉଁ ପରିସ୍ଥିତିରେ ଏଠାକୁ ଆସିଚ ଓ କେତେଦିନ ଥୟ ଧରି ଏଠାରେ ରହିପାରିବ ନଜାଣି କିଛି କରିବା ସମ୍ଭବ ନୁହେଁ ।

ମୁଁ ତାଙ୍କୁ ବିନମ୍ର ଭାବରେ କହିଲି, ମୁଁ ଏଠାରେ ଥିବା ପର୍ଯ୍ୟନ୍ତ ମୋ ଉପରେ ପୋଲିସ ବିପଦ ନାହିଁ । ମୁଁ ଆପଣଙ୍କୁ ଜବାବ ଦେଉଛି ମୁଁ ପରୀକ୍ଷା ନଦେଇ ପାଠଛାଡ଼ି ଯିବି ନାହିଁ । ଆପଣ ସେ ସମ୍ବନ୍ଧରେ ନିଶ୍ଚିନ୍ତ ରହନ୍ତୁ ।

ମୋ ଉତ୍ତରରେ ସନ୍ତୁଷ୍ଟ ହୋଇ ମୋ ଆଡ୍‌ମିସନ ପାଇଁ ସେ ରାଜିହୋଇ, ମୁଁ ଶୀଘ୍ର ମୋ ସାର୍ଟିଫିକେଟ ସବୁ ଆଣି ନାମ ଲେଖେଇ ନେବାକୁ ନିର୍ଦ୍ଦେଶ ଦେଲେ । ମୁଁ ସଙ୍ଗେ ସଙ୍ଗେ ବସାକୁ ଯାଇ କଲେଜ ଛୁଟି ହେବା ପୂର୍ବରୁ ମୋ କାଗଜପତ୍ର ଧରି ପହଞ୍ଚିଲି । ସେ ମୋର ସାର୍ଟିଫିକେଟ ସବୁ ଦେଖିସାରି ମୋର ଦରଖାସ୍ତ ଉପରେ ନାମ ଲେଖା ପାଇଁ ଆଦେଶ ଲେଖିଦେଲେ ଓ କିରାଣୀକୁ ଡାକି ସେଥିପାଇଁ ତାକୁ ନିର୍ଦ୍ଦେଶ ଦେଲେ । ଭୋଳିପଣ୍ଡେ ମୋ ସଙ୍ଗେ ସଙ୍ଗେ ଥିଲେ, ମୁଁ ନାମ ଲେଖା ଫିସ ଦାଖଲ କଲାପରେ ପଣ୍ଡେ କହିଲେ, ଯାଅ ବଜାରରୁ ଝୁଡ଼ିଏ କମଳା କିଣିଆଣ, ମୁଁ ଏଠାରେ ଅପେକ୍ଷା କରୁଛି । ମୁଁ ତାହା ଶୁଣି ହସି ହସି କହିଲି, ତୁମର ମିଠେଇ ରସଗୋଲା ସ୍ଥାନରେ ଶସ୍ତା କମଳା କି ଲୋଡ଼ା । ପଣ୍ଡେ ଟିକେ ଗମ୍ଭୀର ହୋଇଯାଇ କହିଲେ ମୋର କିଛି ଲୋଡ଼ାନାହିଁ ।

ସେ କିରାଣୀଟା ବଡ଼ ଢ଼ିଲା ଲୋକ, ବର୍ତ୍ତମାନ ଛୁଟି ସମୟ ହେଲାଣି ତାକୁ ଛାଡ଼ିଦେଲେ ସେ ତୁମ ନାମ ଲେଖାଇବା ପାଇଁ ଆଜି କାଲି କହି ତୁମକୁ ବହୁତ ଦଉଡ଼ାଇବ । ତାକୁ ଉଜ୍ଜଳିଆ ସ୍ୱରୂପ କମଳା ଧରାଇ ଦେଲେ, ସେ ଚୋପା ଛଡ଼ାଇ ଛଡ଼ାଇ ଖାଉଥିବ ଓ ତୁମ କାମ କରୁଥିବ । ଯେତେ ଡେରି ହେଉ ଆଜି ତୁମ କାମ ସାରି ଯିବା ପାଇଁ ମୁଁ ତାକୁ ବାଧ୍ୟ କରିପାରିବି । ସେଥିରେ ଆଜି ତୁମ କାମ ହୋଇଯିବ ।

କାମ ସରିବା ପରେ ମୁଁ ପଣ୍ଡାଙ୍କ ସଙ୍ଗେ ଯାଇ ତାଙ୍କ ବାସସ୍ଥାନ ଦେଖିଲି । ତଳ ଓ ଉପର ସିଡ଼ିର ମଧ୍ୟରେ ଥିବା ଖାଲିଣ ତଳର ସ୍ଥାନକୁ କାଠପଟାରେ ଏକ କ୍ଷୁଦ୍ର ଲୁଆଣିଆ କୋଠରୀ କରାଯାଇଛି । ତାରି ଭିତରକୁ ଲଇଁ ଲଇଁ ପଶିବାକୁ ହୁଏ । ସେ କୋଠରୀର ଶେଷ ମୁଣ୍ଡରେ ଠାକୁରଙ୍କ ଫଟୋସବୁ ରହିଥିଲା । ସେ କୋଠରୀକୁ ପଣ୍ଡାଏ ତାଙ୍କ ବାସସ୍ଥାନ ଓ ମନ୍ଦିର ଭାବରେ ବ୍ୟବହାର କରି ସକାଳ ସନ୍ଧ୍ୟାରେ ପୂଜା ଆରାଧନା କରନ୍ତି । ପରେ ଜାଣିଲି ପଣ୍ଡେ ଏକ ପିଅନ ହୋଇଥିଲେ ମଧ୍ୟ ତାଙ୍କ ସାଧୁ ଓ ସାତ୍ତ୍ୱିକ ସ୍ୱଭାବ ଯୋଗୁଁ ସେ କଲେଜର ପ୍ରିନ୍ସିପାଲ ପ୍ରଫେସର କିରାଣୀ ସମସ୍ତେ ତାଙ୍କୁ ସମ୍ମାନ ଦେଖାନ୍ତି ଓ ସେ ସମସ୍ତଙ୍କୁ ଆଶୀର୍ବାଦ କରନ୍ତି ।

**ଜାତୀୟବାଦୀ ସ୍ୱାଧୀନ ଶିକ୍ଷକ:**

ସେ କଲେଜଟି ଥିଲା ଏକ ଅଦ୍ଭୁତ ସଂସ୍ଥା । ଶିକ୍ଷକମାନେ ନିଜ ନିଜ ବିଦ୍ୟାରେ ବଡ଼ ବଡ଼ ପଣ୍ଡିତ ଓ ଜାତୀୟବାଦୀ ହୋଇଥିବାରୁ ସ୍ୱତଃପ୍ରବୃତ୍ତ ଭାବରେ ଦେଶ ସେବାପାଇଁ ସେଠାରେ ଅବୈତନିକ ଶିକ୍ଷା ଦାନ କରନ୍ତି । ପ୍ରୟୋଜନ ହେଲେ ନିଜର ରୋଜଗାରରୁ କଲେଜକୁ କିଛି କିଛି ଦାନ କରିଥା'ନ୍ତି ।

ଆମ ପ୍ରଫେସରଙ୍କ ଭିତରୁ ଆମ ଇଂରେଜୀ ପ୍ରଫେସର ଶ୍ରୀ ରାଜକୁମାର ଚକ୍ରବର୍ତ୍ତୀ କେନ୍ଦ୍ର ଆସେମ୍ବ୍ଲିର ସଦସ୍ୟ ଥିଲେ । ଆସେମ୍ବ୍ଲି ନ ବସିବା ସମୟରେ ସେ ସେଠାରେ ଅଧ୍ୟାପନା କରୁଥିଲେ । ସେ ଏତେ ସୁନ୍ଦର ପଢ଼ାନ୍ତି ଯେ, ସେ କବି କଲରିଜଙ୍କ 'ଆନସିଏଣ୍ଟ ମାରାଇନର' ବା 'ପୁରାତନ ନାବିକ' ପଢ଼ାଇଲା ବେଳେ ସମୁଦ୍ରରୁ ପିଇବା ପାଣି ନ ପାଇ ତୋଟି ଶୁଖି ଯାଉଥିଲା ବେଳେ 'ପାଣି ପାଣି ସବୁଆଡ଼େ ପାଣି କିନ୍ତୁ ପିଇବାକୁ ଟୋପାଏ ନାହିଁ' ପଦଟି ବର୍ଣ୍ଣନା କଲାବେଳେ ତାହା ଏପରି ଜୀବନ୍ତ ହୋଇ ଉଠୁଥିଲା, ସେ ଦୃଶ୍ୟ ଏବେ ବି ମୋ ମାନସପଟରେ ଜୀବନ୍ତ ହୋଇ ରହିଛି ।

ଯେଉଁ ଏଇ.ମିତ୍ରଙ୍କ କେମେଷ୍ଟ୍ରୀ ପୁସ୍ତକ ଭାରତ ସାରା ପାଠ୍ୟପୁସ୍ତକ ଥିଲା ସେହି ଲାଡ଼ଲିମୋହନ ମିତ୍ର ଆମର କେମେଷ୍ଟ୍ରୀ ବିଭାଗର ଅବୈତନିକ ମୁଖ୍ୟ ଅଧ୍ୟାପକ ଥିଲେ । ସେ ସିଆଲଦା କଚେରୀରେ ଓକିଲାତି କରି ଜୀବିକା ନିର୍ବାହ କରୁଥିଲେ । ତାଙ୍କ କ୍ଲାସ

ବେଳକୁ ଅନ୍ୟ କଲେଜମାନଙ୍କର ଛାତ୍ରମାନେ ଆସି କେମେଷ୍ଟ୍ରୀ ହଲ ପୂର୍ଣ୍ଣ କରି ଦେଉଥିଲେ । ତେଣୁ ସେଥିରେ ଆଗ ସିଟରେ ଆସନ ପାଇବା ପାଇଁ ଆମେ ପୂର୍ବ ପିରିଅଡ଼ଟି ନଷ୍ଟ କରି ଆଗରୁ ଆସି ସେଠାରେ ସ୍ଥାନ ଅଧିକାର କରି ବସିଥାଉ । କଟକରେ ଫାଷ୍ଟ ଇଅରରେ ଧାତବ୍ୟ ବିଷୟ ପଢ଼ାଗଲା ବେଳେ ତାହା ମୋର ବୋଧଗମ୍ୟ ହୋଇ ନଥିଲା । କିନ୍ତୁ ତାହାକୁ ପ୍ରଫେସର ଏଲ୍. ମିତ୍ର ଏପରି ସୁନ୍ଦର ଭାବରେ ନାଟକୀୟ ରୀତିରେ ପଢ଼ାଇଲେ ଯେ ଆମେ ମନ୍ତ୍ରମୁଗ୍ଧ ଭଳି ସେସବୁ ଶୁଣି ମନେ ରଖି ପାରିଲୁ ।

**କଲିକତା ରହଣୀ:**

କଲିକତାରେ କୌଣସି ଛାତ୍ରାବାସରେ ସ୍ଥାନ ନ ପାଇ ମୋତେ ଭିଣୋଇଙ୍କ ବସାରେ ରହି ପ୍ରତିଦିନ ବାଲିରୁ ବଙ୍ଗବାସୀ କଲେଜକୁ ଯିବା ଆସିବା କରିବାକୁ ପଡୁଥିଲା । ଦୁର୍ଭିକ୍ଷ ଲୋକ ଭିଡ଼ ଯୋଗୁଁ ଟ୍ରାମ ବସ୍ ସବୁଥିରେ ଭୀଷଣ ଭିଡ଼ ଲାଗି ରହୁଥିଲା । ବାଲିରୁ ହାଓ୍ୱଡ଼ା ବସ୍‌ରେ ଆସି ସେଠାରୁ ଟ୍ରାମ୍‌ରେ ସିଆଲଦା ଆସିବା କିମ୍ବା ସେ ବସ୍‌ରେ ସ୍ଥାନ ନ ମିଳିଲେ, ଗଙ୍ଗା ନଦୀ ପାର ହୋଇ ଦକ୍ଷିଣେଶ୍ୱରରୁ ବସ୍‌ରେ ଶ୍ୟାମ ବଜାର ଆସି ସେଠାରୁ ଟ୍ରାମ୍‌ରେ ସିଆଲଦା ଆସି, ଚାଲି ଚାଲିକରି କଲେଜକୁ ଯିବାକୁ ହୁଏ । ସେ ଯାନମାନଙ୍କରେ ବେଳେବେଳେ ଝରକା ବାଟେ ପଶିବାକୁ ହୁଏ, ପଶିଲେ ଖୁନ୍ଦାଖୁନ୍ଦିରେ ଠିଆ ହୋଇ ଯିବାକୁ ପଡ଼େ, ତେଣୁ ସକାଳ ଆଠଟା ପୂର୍ବରୁ ବସାରୁ ବାହାରିଥିଲେ ମଧ ଠିକ୍ ସମୟରେ କ୍ଲାସ୍‌ରେ ଯୋଗ ଦେଇହୁଏ ନାହିଁ । ସେହିପରି ଫେରିବାରେ ମଧ ବସାରେ ପହଞ୍ଚିଲା ବେଳକୁ ରାତି ହୋଇଯାଏ ।

ଏପରି ଶାରୀରିକ ପରିଶ୍ରମ ଯୋଗୁଁ ଘରେ ପହଞ୍ଚୁ ପହଞ୍ଚୁ ନିଦ ଲାଗେ । ଆଖିରେ ପାଣି ମାରି ନିଦ ଭାଙ୍ଗି ପଢ଼ିବାକୁ ଚେଷ୍ଟା କଲେ ମଧ ନାନା ପ୍ରକାର ଅନ୍ୟାନ୍ୟ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । ସେ ଘରର ଦାଣ ଘରଟିରେ ମୁଁ ଥାଏ, ସେଥିରେ ଖୁବ୍ ଉଚ୍ଚରେ ଚାଳିଶ ପାଓ୍ୱାର୍ ବଲ୍‌ବଟିଏ ଜଳୁଥାଏ । ପଢ଼ିବା ପାଇଁ ସେ ଆଲୁଅ ଯଥେଷ୍ଟ ହୁଏ ନାହିଁ । ତା' ସଙ୍ଗେ ଘରବାଲାଙ୍କ ଦୌରାତ୍ମ୍ୟ ମଧ କମ୍ ନ ଥାଏ । ଘରବାଲା ଉପର ତାଲାରେ ଥାଆନ୍ତି । ବୁଢ଼ାଟି ସବୁବେଳେ କଟକଟ ହେଉଥାଏ । ବୁଢ଼ୀର ଝିଅଟି ବୟସ୍କା ହେଲେ ମଧ ଭାଇମାନଙ୍କ ଶାସନରେ ଥାଏ । ଚାରୋଟିଯାକ ବେକାର ପୁତ୍ର ପ୍ରାୟ ଘରେ ଥାଇ ଗଣ୍ଡଗୋଳ କରୁଥାଆନ୍ତି । ଅଗଣା ପାଚେରୀ ବାଟେ ବାହାରକୁ ଯିବାକୁ ରାସ୍ତା ଥିଲେ ମଧ ମୁଁ ଥିବା ଦାଣଘର ବାଟେ ଧଡ଼ଧାଡ଼ ଦୁଆର ମେଲା କରି ସେମାନେ ଯିବା ଆସିବା କରିବାରେ ମୁଁ ଆପତ୍ତି କଲେ ସେମାନେ ଉଡ଼େ ଫୁଡ଼େ କରି ମୋତେ ଗାଳିଗୁଲଜ କରନ୍ତି । ମୁଁ ସେଠାରୁ ଚାଲିଯିବା ପରେ ଭିଣୋଇ କଷ୍ଟରେ ଆଉ ଗୋଟିଏ ଘର ପାଇ ବଦଳାଇ ଥିଲେ । ସେ ଘର ବଦଳିଲା ବେଳେ ମୁଁ ତା' କାନ୍ଥରେ ଦେବନାଗରୀ ଅକ୍ଷରରେ

ଲେଖି ଆସିଥିଲି-

ଏକା ବୃଦ୍ଧା, ପ୍ରକୃତି ମୁଖରା ।
କନ୍ୟା ସା, ଚ ଚଞ୍ଚଳା
ସର୍ବାପୁତ୍ରା, ଇନ୍ଦ୍ରୀୟ ଅଜୟୀ
ଖଚଡ଼ୋ ଦୁର୍ନିବାର
ତାସଂ ରାତ୍ରାଂ ସର୍ବୋଗୃହପରି
ଆୟୁଧ ତାଭ୍ୟାଂ ଗାଳିଃ
ସ୍ମାରଂ ସ୍ମାରଂ ଏ ଗୃହ ଚରିତଂ
ଦୂରୀଭୂତୋ ଭଡ଼ାଳିଃ ।

ଆମ କଲେଜର ସ୍ୱତନ୍ତ୍ର ଛାତ୍ରାବାସ ନ ଥିଲା । ଆମ କଲେଜ ନିକଟରେ କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ ଛାତ୍ରମାନଙ୍କ ପାଇଁ କ୍ୟାନିଙ୍ଗ ହଷ୍ଟେଲ ନାମକ ଛାତ୍ରାବାସ ରହିଥିଲା, କିନ୍ତୁ ତାହା ସବୁବେଳେ ଭରପୂର ଥାଏ । ଆମ କଲେଜର ମୋର କେତେ ସଙ୍ଗୀ ସେଠାରେ ରହୁଥିଲେ, ମୁଁ ବେଳେବେଳେ ତାଙ୍କ ନିକଟରେ ରହି ପଢ଼ାପଢ଼ି କରୁଥିଲି ।

ପଢ଼ାପଢ଼ିରେ ବିଶେଷ ଅସୁବିଧା ହେବାରୁ ପୂଜା ଛୁଟି ପୂର୍ବରୁ ମୁଁ ପ୍ରିନ୍ସପାଲଙ୍କୁ ଭେଟି କହିଲି 'ଆଜ୍ଞା, ମୁଁ ପରୀକ୍ଷା ପର୍ଯ୍ୟନ୍ତ ରହି ପାଠ ଶେଷ କରିବି ବୋଲି କହିଥିଲି, କିନ୍ତୁ ବର୍ତମାନ ପରିସ୍ଥିତିରେ ମୁଁ ତାହା କରିପାରିବା ଆଉ ସମ୍ଭବପର ନୁହେଁ । ଆପଣ ଯଦି କଲେଜ ପାଖରେ ମୁଁ ରହିବାର କୌଣସି ବ୍ୟବସ୍ଥା ନ କରିବେ ତା'ହେଲେ ମୋ ପଢ଼ାପଢ଼ିରେ ବ୍ୟାଘାତ ଯୋଗୁଁ ପାଠ ଛାଡ଼ିବାକୁ ବାଧ ହେବି ।'

ମୋ କଥା ଶୁଣି ପ୍ରିନ୍ସିପାଲ କହିଲେ 'ତୁମ ପରି ଅନ୍ୟ କେତେକ ଅନ୍ୟ ପ୍ରଦେଶର ଛାତ୍ରଙ୍କ ଅସୁବିଧା କଥା ଶୁଣି ଆମ କଲେଜର ଏକ ସ୍ୱତନ୍ତ୍ର ଛାତ୍ରାବାସ ଘରଟିଏ ମୁଁ ଖୋଜି ଠିକ୍ କରିଛି । ସେ ଘର ଏବେ ମରାମତି ଚାଲିଛି । ମୁଁ ସେଥିପାଇଁ ବହିନା ଦେଇ ଆସିଛି । ପୂଜାଛୁଟି ପରେ କଲେଜ ଖୋଲିଲାବେଳକୁ ସେ ଘରଟି ଛାତ୍ରାବାସ ପାଇଁ ପ୍ରସ୍ତୁତ ହୋଇ ଯାଇଥିବ । ତୁମେ ଗୋଟିଏ ଦରଖାସ୍ତ ସହିତ ଷାଠିଏଟି ଟଙ୍କା ଅଫିସରେ ଜମା କରିଦିଅ । ପୂଜାଛୁଟିରୁ ଫେରି ସେଠାରେ ରହିବ ।' ମୁଁ ସଙ୍ଗେ ସଙ୍ଗେ ଯାଇ ଟଙ୍କା ଓ ଦରଖାସ୍ତ ଅଫିସରେ ଜମା କରିଦେଲି ।

ମାସକରୁ ଉର୍ଦ୍ଧ ପୂଜାଛୁଟିରେ ଗ୍ରାମରୁ ଫେରିଆସି ସିଧା କ୍ୟାନିଙ୍ଗ ହଷ୍ଟେଲରେ ବନ୍ଧୁ ରାମନିରଞ୍ଜନ ମୁଖାର୍ଜୀଙ୍କ ନିକଟରେ ମୋର ଜିନିଷପତ୍ର ରଖି ପ୍ରିନ୍ସିପାଲଙ୍କ ନିକଟକୁ ଗଲି । ସେ ନୂତନ ଛାତ୍ରାବାସ ପାଇଁ ବଟାନି ବିଭାଗର ମୁଖ୍ୟ ପ୍ରଫେସର ଦାସଗୁପ୍ତ ସୁପରିନ୍‌ଟେଣ୍ଡେଣ୍ଟ ନିଯୁକ୍ତ ହୋଇଥିବାରୁ ତାଙ୍କୁ ସାକ୍ଷାତ କରିବା ପାଇଁ ମୋତେ ପ୍ରିନ୍‌ସିପାଲ ନିର୍ଦ୍ଦେଶ ଦେଲେ ।

ଅଧ୍ୟାପକ ଦାସଗୁପ୍ତ ମୋ କଥା ଶୁଣିବାକ୍ଷଣି ମୁହଁ ଛିଞ୍ଚାଡ଼ି କହିଲେ 'ସେ ଛାତ୍ରାବାସରେ ଆଉ ଜାଗା ନାହିଁ । ସେଠାରେ ଅଳ୍ପ କେତେଟା ସିଟ୍ ପାଇଁ ପ୍ରିନ୍‌ସିପାଲ ଏତେ ପିଲାଙ୍କ ଠାରୁ ଜମା ଟଙ୍କା ନେଇଗଲେ, ଏବେ ସେ ସମ୍ଭାଳନ୍ତୁ, ମୁଁ କିଛି କରିପାରିବି ନାହିଁ । ତୁମକୁ ସେଠାରେ ସ୍ଥାନ ମିଳିବାର କୌଣସି ସମ୍ଭାବନା ନାହିଁ, ତୁମେ ଯାଇ ତାଙ୍କୁ କୁହ ।'

ସେ କଲେଜରେ ପଢ଼ିବାର ଅଳ୍ପ କେତେମାସର ଅଭିଜ୍ଞତାରେ ଯାହା ଜାଣିଥିଲି, ସେଥିରୁ ଅନୁମାନ କରିପାରିଲି ଯେ ପ୍ରଫେସର ଦାସଗୁପ୍ତ ନ ଚାହିଁଲେ ପ୍ରିନ୍‌ସିପାଲ ମୋତେ ସେ ବିଷୟରେ ସାହାଯ୍ୟ କରିପାରିବେ ନାହିଁ । ସେ କଲେଜରେ ପ୍ରତ୍ୟେକ ଶିକ୍ଷକ ନିଜ ହାତରେ ଚଉଦ ପାଆ । ପ୍ରିନ୍‌ସିପାଲ ପ୍ରଫେସରମାନଙ୍କର କୌଣସି କାର୍ଯ୍ୟରେ ବାଧା ଦେଇ ପାରନ୍ତି ନାହିଁ । ତେଣୁ କୌଣସି ଶିକ୍ଷକ ବିରୁଦ୍ଧରେ ତାଙ୍କୁ କହି କିଛି ଲାଭ ହେବାର ସମ୍ଭାବନା ନଥିଲା ।

ସେତେବେଳେ କ୍ଷୁଟି ପୂର୍ବରୁ ଘଟିଥିବା ଗୋଟିଏ ଘଟଣା ମୋର ମନେ ପଡ଼ିଗଲା । ସେହି ବ୍ରିଟିଶ ଶାସନ କାଳରେ କଲିକତା ବିଶ୍ୱବିଦ୍ୟାଳୟରେ ଆଇ.ଏ., ଆଇ.ଏସ୍.ସି.ରେ 'ବାଇବେଲ' ବିଷୟଟି ଇଂରାଜୀ ପାଠରେ ବାଧ୍ୟତାମୂଳକ ଥିଲା । ବାଇବେଲ ପ୍ରଫେସର ଜଣେ ଧନୀ ଓ ସୌଖୀନ ବ୍ୟକ୍ତି ଥିଲେ । ଗୋରା ଚେହେରା, ଲଣ୍ଡାମୁଣ୍ଡ, ଆଖିରେ ସୁନା ଫ୍ରେମ ଚଷମା, ଧୋବ ଫରଫର ଧୋତି, ପଞ୍ଜାବୀ, କାନ୍ଧରେ ଚଉଡା ସାଲ, ମୁହଁରେ ପାଉଡର ଓ ଜାମାରୁ ବାହାରୁଥିବା ଅତରର ବାସନା ସହିତ ସେ କଲେଜକୁ ଆସୁଥିଲେ ।

ଆମ ବାଇବେଲ କ୍ଲାସ ହେଉଥିବା କୋଠରୀରେ କାଠର ପତଳା ପଟା ବ୍ଲେଡ୍ ଥିବା ପଙ୍ଖା ବ୍ୟବହୃତ ହେଉଥିଲା । କ୍ଲାସ ଚାଲିଥିବା ବେଳେ ସେ ପଙ୍ଖାରୁ କାଠ ବ୍ଲେଡ୍‌ଟିଏ ମୂଳରୁ ଭାଙ୍ଗିଯାଇ ଆମ ମୁଣ୍ଡ ଦେଇ ଛିଟିକି କରି କାନ୍ଥରେ ବାଡ଼େଇ ହୋଇ ତଳେ ପଡ଼ିଲା । ଭାଗ୍ୟକୁ ତାହା କୌଣସି ଛାତ୍ର ଦେହରେ ବାଜିନଥିଲା । ତଥାପି ଅଧ୍ୟାପକ ମହାଶୟ କ୍ରୋଧରେ ଅଗ୍ନିଶର୍ମା ହୋଇ କହିପକାଇଲେ 'ଏ ପ୍ରିନ୍‌ସିପାଲ ଖାସା କଲେଜଟାଏ କରିଛି, ବାପ ମାଆମାନେ କ'ଣ ତାଙ୍କ ପିଲାମାନଙ୍କୁ ଏଠାକୁ ମରିବାକୁ ପଠାଉଛନ୍ତି ? ଏହା କହି ସେ ପଙ୍ଖା କାଠ ଖଣ୍ଡ କାଖରେ ଜାକି ଗରଗର ହୋଇ ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟ ଆଡ଼କୁ ଧପ୍‌ସି ଗଲେ । ଅଧ୍ୟକ୍ଷ ତାଙ୍କୁ କ୍ଷମା ମାଗି ବୁଝାବୁଝି କରିବା ପରେ ସେ କ୍ଲାସକୁ ଫେରିଆସିଲେ ।

ପ୍ରଫେସରମାନଙ୍କର ସେପରି ପ୍ରତିପତ୍ତି କଥା ହୃଦୟଙ୍ଗମ କରି ମୁଁ ଅଧ୍ୟକ୍ଷଙ୍କ ନିକଟକୁ ନ ଯାଇ ଦାସଗୁପ୍ତଙ୍କ ପିଛା ଧରିବାକୁ ସ୍ଥିର କଲି । ମୁଁ ତାଙ୍କ ନିକଟରେ ବହୁ ସମୟ ଠିଆ ହୋଇ ରହିବାରୁ ସେ ଅଶ୍ୱସ୍ତି ବୋଧକଲେ । ସେ ମୋତେ ଚାହିଁ କହିଲେ ତୁମେ ମୋ

କଥା ବିଶ୍ୱାସ କରୁନାହଁ, ତେବେ ବର୍ତ୍ତମାନ ମୁଁ ସେଠାକୁ ଯାଉଛି । ତୁମେ ମୋ ସଙ୍ଗରେ ଆସ, ସେଠାର ଅବସ୍ଥା ବୁଝିପାରିବ । ଏହା କହି ସେ ଚଉକୀରୁ ଉଠି ଆଗେ ଆଗେ ଚାଲିଲେ । ସେତିକି ବେଳକୁ ତାଙ୍କର ଜଣେ ସ୍ନାତକୋତ୍ତର ବଟାନି ଛାତ୍ର ତାଙ୍କ ଗୋଡ଼ ଛୁଇଁ ପ୍ରଣାମ ଜଣାଇ ତାଙ୍କ ସଙ୍ଗେ ଯିବାକୁ ବାହାରି ପଡ଼ିଲେ । ମୁଁ ସେମାନଙ୍କ ପଛରେ ଅନୁଧାବନ କଲି ।

## ନୂତନ ଛାତ୍ରାବାସରେ ସ୍ଥାନ:

ଅଧ୍ୟାପକ ଦାସଗୁପ୍ତ ଗୋଟିଏ ଗଳିର ପୁରୁଣା କୋଠା ଉପରେ ନୂଆ ଗଢ଼ା ଯାଇଥିବା ସାଧାରଣ ଘରଟିର ଅଗଣା ସାମନା ପାଚେରୀର ଦୁଆରଟି ଖୋଲି ଭିତରକୁ ପଶିଲା ବେଳକୁ କହିଲେ ଦେଖ ଏଥିରେ କେତେ ପିଲାଙ୍କ ନାମ ରହିଛି ଓ ଏଠାରେ କେତୋଟି ସିଟ ଅଛି । ତାଙ୍କ ପାଟିରୁ କଥା ସରିବା ପୂର୍ବରୁ ଗେଟ୍ କଡ଼ରେ ଥିବା ଗୋଟିଏ ଏକ ସିଟ୍ ଲେଖା ହୋଇଥିବା କ୍ଷୁଦ୍ର କୋଠରୀକୁ ଦେଖାଇ ତାଙ୍କର ସେ ଛାତ୍ର କହିଲେ, ସାର୍, ମୁଁ ଏଥିରେ ରହିବି । ଦାସଗୁପ୍ତ ତାଙ୍କ କଥା ଭାଙ୍ଗି ନପାରି କହିଲେ ହଉ । ଏହା କହି ହାତରେ ଥିବା ତାଙ୍କ ଲିଷ୍ଟ ଉପରେ ଟିକ୍ ମାରିଦେଲେ । ସେଠାରୁ ଦାସଗୁପ୍ତ ଅଗଣା ସିଡ଼ି ଚଢ଼ି ଏକ ମହଲାକୁ ଉଠିଲେ, ମୁଁ ତାଙ୍କ ପଛେ ପଛେ ଚାଲିଥାଏ । ସେଠାରେ ଗୋଟିଏ ଛୋଟ କୋଠରୀ ସାମନାରେ 'ତିନି ସିଟ୍' ବୋଲି ଲେଖାଯାଇଥାଏ । ମୁଁ ସେ କୋଠରୀକୁ ଦେଖାଇ କହିଲି, ସାର୍ ମୁଁ ଏ ଘରର ଗୋଟିଏ ସିଟ୍‌ରେ ରହିବି । ଦାସଗୁପ୍ତ ସାଧାସିଧା ମୋହବତିଆ ଲୋକ । ସେ ତାଙ୍କ ପ୍ରିୟ ଛାତ୍ରକୁ ହଁ କରିସାରିବା ପରେ ମୋତେ ନାହିଁ ନକରି ପାରି ତାଙ୍କ ପାଟିରୁ ହଉ ବୋଲି ବାହାରି ପଡ଼ିଲା । ସେ କିନ୍ତୁ ଲିଷ୍ଟରେ ମୋ ନାମ ପାଖରେ ଟିକ୍ ଚିହ୍ନ ନଦେଇ ଫାଇଲ ଧରି ଉପର ତାଲାର ତାଙ୍କ ଅଫିସ ଘରକୁ ଚାଲିଲେ । ସେ ସେଠାରେ ଘଣ୍ଟେ ଖଣ୍ଡେ ରହିବେ ବୋଲି ମୁଁ ତାଙ୍କଠାରୁ ବୁଝିନେଲି । ତାଙ୍କୁ ଆଉ ବେଶି ବିରକ୍ତ ନକରି ଯାଅ, କାଲି ଆସିବ କହି ସେ ମୋତେ ବିଦାୟ ଦେଲେ ।

ମୁଁ ସଙ୍ଗେ ସଙ୍ଗେ କ୍ୟାନିଙ୍ଗ୍ ହଷ୍ଟେଲକୁ ଯାଇ ମୋ ଜିନିଷପତ୍ର ଘେନି ସେଠାରେ ହାଜର ହୋଇଗଲି । ସେ ମୋତେ ଦେଖିବା ପୂର୍ବରୁ ମୁଁ ପାଖ ଶଶିଭୂଷଣ ଦେ ଷ୍ଟ୍ରୀଟକୁ ଯାଇ ଦେବଦାରୁ (ପାକିଂ) ପଟାରେ କଣ୍ଟାମରା ହୋଇ କୁଲିମାନଙ୍କ ପାଇଁ ବିକ୍ରୀ ହେଉଥିବା ଖଟ ଟେବୁଲ ଓ ବେଞ୍ଚ ଗୋଟିଏ ସେଟ ତିନିଟଙ୍କା ଆଠଣାରେ କିଣି ମୋ ରୁମ୍‌ରେ ପକାଇ ଦେଲି । କ୍ୟାନିଙ୍ଗ ହଷ୍ଟେଲରୁ ମୋ ସଙ୍ଗୀକୁ ଡାକିଆଣି ମୁଁ ମୋ ରୁମରେ ବସାଇ ବଜାରକୁ ଯାଇଥିଲି । ମୁଁ ଆସି ବନ୍ଧୁଙ୍କ ସାହାଯ୍ୟରେ ଖଟ ଟେବୁଲ ସବୁ ପକାଇ ତା'ଉପରେ ଚାଦର ବିଛାଇ ମୋ ଜିନିଷପତ୍ର ସଜାଡ଼ିବା ଭିତରେ କ'ଣ କାମ ଥିବାରୁ ମୋ ବନ୍ଧୁ ଚାଲିଗଲେ ।

ମୋ ରୁମରେ ଖଡ଼୍ ଖାଡ଼୍ ଶବ୍ଦ ଶୁଣି ଅଧ୍ୟାପକ ଦାସଗୁପ୍ତ ମୋତେ ଡକାଇ କହିଲେ ମୁଁ ତୁମକୁ ଯିବାକୁ କହିଲି ତୁମେ ନ ଯାଇ ସେଠାରେ କ'ଣ କରୁଛ ? ମୁଁ କହିଲି, ସାର ମୁଁ ମୋ ଜିନିଷପତ୍ର ଆଣି ସେଠାରେ ରଖାରଖି କରୁଛି । ସେ କହିଲେ ତୁମେ ଏତେ ଶୀଘ୍ର ଆସିଗଲ । ମୁଁ କହିଲି ସାର୍ ଆଉ କେଉଁଠାରେ ରହନ୍ତି ? ବାରଣ୍ଡା ବା ଫୁଟପାଥ ଅପେକ୍ଷା ଏ ସ୍ଥାନ ଭଲ ଭାବି ଆପଣଙ୍କ ବାରଣ ସତ୍ତ୍ୱେ ଚାଲିଆସିବାକୁ ବାଧ୍ୟ ହେଲି ।

ସେ କହିଲେ ଏଠାରେ ଏପର୍ଯ୍ୟନ୍ତ ଦରୁଆନ ନିଯୁକ୍ତି ହୋଇନାହିଁ, ଗେଟ୍ ଫିଟାଫିଟି କରି ତୁମକୁ ଭିତରକୁ ଛାଡ଼ିବ କିଏ ? ମୁଁ କହିଲି ସାର୍ ଆପଣ ସେଥିପାଇଁ ଚିନ୍ତା କରନ୍ତୁ ନାହିଁ, ଅନୁଗ୍ରହ କରି ମୋ ହାତକୁ ଚାବିଟା ଦେଇଯାଆନ୍ତୁ, ମୁଁ କୁଆଡ଼େ ନ ଯାଇ ଦିନେ ଦୁଇ ଦିନ ସେ କାର୍ଯ୍ୟ ଚଳାଇ ନେବି । ସେ କହିଲେ ଏଠାରେ ତ ମେସ୍ ବି ଆରମ୍ଭ ହେଇନି ତୁମେ ଖାଇବ କ'ଣ ? ମୁଁ ଉତ୍ତର ଦେଲି, ଆପଣ ଯେଉଁଠି ଖାଉଛନ୍ତି ସେଠାରେ ମୁଁ ଆପଣଙ୍କ ଗେଷ୍ଟ ହୋଇ ଖାଇପାରିବି, ସେ କହିଲେ ମୁଁ ତ କ୍ୟାନିଙ୍ଗ ହଷ୍ଟେଲରେ ଗେଷ୍ଟ ହୋଇ ଖାଉଛି । ତାଙ୍କ କଥା ନ ସରୁଣୁ ମୁଁ କହିପକାଇଲି ସାର୍ ଗେଷ୍ଟର ବି ଗେଷ୍ଟ ହୋଇପାରେ । ସେ ପୁଣି ବିରକ୍ତ ହୋଇ କହିଲେ ଏ ପର୍ଯ୍ୟନ୍ତ ଏଠାରେ ଇଲେକ୍ଟ୍ରିକ କନେକ୍ସନ ଲାଗିନାହିଁ, ତୁମେ ଅନ୍ଧାରରେ କିପରି ରହିବ ? ମୁଁ କହିଲି ବଜାରରେ ଯଥେଷ୍ଟ ମହମବତୀ ମିଳୁଛି । ମୋର ସେ ସବୁ ଉତ୍ତରରେ ସେ ବିଚଳିତ ହୋଇ ମୋ ଘର କେଉଁଠି ଓ ମୁଁ କେଉଁଠାରୁ ଆସିଛି ବୋଲି ସେ ମୋତେ ପଚାରିବାରୁ ମୁଁ କହିଲି ମୁଁ ଜଣେ ବନବାସୀ, ମୋର ଘର ସୁନ୍ଦର ବନ । ସେ ମୁହଁ ଫୁଲାଇ ମୋତେ କହିଲେ ଯାଅ ଏଠାରୁ ଯାଅ, ମୁଁ ଏ'ଠା କାମ ସାରିଲେ ତୁମ ସଙ୍ଗେ ଆଉ କଥାବାର୍ତ୍ତା ହେବି ।

ଅଧ୍ୟାପକ ଦାସଗୁପ୍ତ ତାଙ୍କ ଅଫିସ୍ କାମ ସାରି ମୋ କୋଠରୀ ବାଟେ ଫେରିଲାବେଳେ ମୁଁ କୋଠରୀ ଭିତରେ ବସି ପଢୁଥିବାର ଦେଖି ଘର ଭିତରକୁ ଚାହିଁ କହିଲେ କିହୋ ! ତୁମେତ ଏ କୋଠରୀଟାକୁ ଇନ୍ଦ୍ର ଭବନରେ ପରିଣତ କରି ସାରିଲଣି, ତୁମ ପରି ଆଉ ଏକ ଅଦ୍ଭୁତ ପିଲା ମୁଁ ଦେଖିନି । କହିଲ ପ୍ରକୃତରେ ତୁମର ପରିଚୟ କ'ଣ ? ମୁଁ ଉତ୍ତର ଦେଲି ସାର୍ ମୋ ଘର ସୁନ୍ଦରବନ ଶୁଣି ମୁଁ ବାଘ ନୁହେଁ ବୋଲି ବୋଧହୁଏ ଆପଣ ବିଶ୍ୱାସ କରିପାରୁ ନାହାନ୍ତି ? ସେ କଥାରେ ବିଚରା ଦାସଗୁପ୍ତ ଫେଁ କରି ହସି ପକାଇ, ତୁମକୁ ପାରିଲି ନାହିଁ କହି ମୋ ହାତକୁ ଗେଟ୍ ଚାବିଟା ବଢ଼ାଇ ଦେଲେ । ଦରୁଆନ୍ ଆସିବା ସଙ୍ଗେ ସଙ୍ଗେ ସେ ଚାବିଟା ତାକୁ ଦେଇଦେବାକୁ କହି ଦରୁଆନକୁ ପଠାଇବା ପାଇଁ ଚାଲିଗଲେ ।

ଆଗରୁ ସବୁ ବ୍ୟବସ୍ଥା ହୋଇଥିଲା । ସଙ୍ଗେ ସଙ୍ଗେ ଦରୁଆନ୍ ଆସିଲା, ସନ୍ଧ୍ୟା ସୁଦ୍ଧା ଇଲେକ୍ଟ୍ରିକ ଲାଗିଗଲା । ପୂଜାରୀ ଚାକର ଧରି ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ କରୁଣା ବାବୁ ଆସିଗଲେ । ଚାହୁଁ ଚାହୁଁ ଦିନେ ଦୁଇଦିନ ଭିତରେ ସେ ଛାତ୍ରାବାସଟି ପୂର୍ଣ୍ଣ

ହୋଇଗଲା । ସେମାନଙ୍କ ଭିତରେ ସ୍ଥାନୀୟ ବଙ୍ଗାଳୀ ପିଲା ପ୍ରାୟ କେହି ନ ଥିଲେ । ପୂର୍ବବଙ୍ଗ, ବିହାର ଓ ଆସାମରୁ ଆସିଥିବା ଛାତ୍ରମାନଙ୍କୁ ସେଥିରେ ସ୍ଥାନ ଦିଆଯାଇଥିଲା ।

ସେ କାଳର ଓଡ଼ିଆ ପୂଜାରୀ ଚାକରମାନଙ୍କୁ କଲିକତିଆ ବଙ୍ଗାଳୀମାନେ ନ୍ୟୂନ ଦୃଷ୍ଟିରେ ଦେଖୁଥିବାରୁ ସେମାନେ ନିଜର ପରିଚୟ ଦେବାକୁ କୁଣ୍ଠାବୋଧ କରୁଥିଲେ । ସେମାନେ ଶୁଦ୍ଧ ଓଡ଼ିଆ ନ କହି ବଙ୍ଗଳା ମିଶା ଓଡ଼ିଆରେ କଥାବାର୍ତ୍ତା କରୁଥିଲେ । ତଥାପି ସେମାନଙ୍କ ଭିତରେ ଓଡ଼ିଆ ପ୍ରୀତି କମ୍ ନ ଥିଲା । ଆମ ମେସ୍‌ର ପୂଜାରୀ, ଚାକର ଦୁଇଜଣଯାକ ଓଡ଼ିଆ ଥିଲେ । ସେମାନେ ମିଶା ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ ମଧ୍ୟ ମୁଁ ଓଡ଼ିଆ ଜାଣି ମୋତେ ଆମ ବାବୁ ବୋଲି ସମ୍ବୋଧନ କରୁଥିଲେ । ଖାଇବାବେଳେ ଆମ ପୂଜାରୀ ସମସ୍ତଙ୍କୁ ଖଣ୍ଡେ ଖଣ୍ଡେ ମାଛ ବାଢ଼ିବା ବେଳେ ମୋ ଭାତ ଭିତରେ ଲୁଚାଇକରି ଆଉ ଖଣ୍ଡିଏ ମାଛ ରଖି ଦେଉଥିଲା । ତେଣୁ କଲିକତାର ଓଡ଼ିଆ ଭୋଳିପଣ୍ଡାଙ୍କ ମହାନୁଭବତା ସହିତ ଆମ ମେସ୍‌ର ପୂଜାରୀ ଚାକରଙ୍କ ଓଡ଼ିଆ ପ୍ରୀତି ଓ ମୋ ପ୍ରତି ଆଦର ଓ ସ୍ନେହ ଭୁଲିବାର ନୁହେଁ ।

### ନିମୋନିଆ ରୋଗ :

ସେହି ନୂଆ ଛାତ୍ରାବାସର ଓଦା କାନ୍ଥ ଯୋଗୁଁ ଶୀତଦିନ ପାଖେଇବା ସଙ୍ଗେ ସଙ୍ଗେ କାଶ, ଶର୍ଦ୍ଦି ମାଡ଼ି ଆସିଲା । ରାତି ଅନିଦ୍ରା ହୋଇ ଓ ଅକ୍ଳାନ୍ତ ପରିଶ୍ରମ କରି ମୋତେ ମୋ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପଡୁଥିଲା । ସେଥିରେ ମୋତେ ନିମୋନିଆ ଧରିଲା । ଜଣେ ଡାକ୍ତର ସବୁଦିନ ଆସି ମୋତେ ଇଂଜେକ୍‌ସନ୍ ଦେଲେ ।

ସେହି ସମୟରେ କଲିକତାର ଅସ୍ୱାସ୍ଥ୍ୟକର ପରିସ୍ଥିତି ଯୋଗୁଁ ଚାରିଆଡ଼େ ବସନ୍ତରୋଗ ବ୍ୟାପିଗଲା । ଆମ ଛାତ୍ରାବାସର ମୋ ପାଖ କୋଠରୀରେ ବସନ୍ତ ଦେଖାଦେଇ 'କଲିଟା' ନାମକ ଆସାମର ଜଣେ ଛାତ୍ରଙ୍କର ମୃତ୍ୟୁ ଘଟିଲା ଓ ଅନ୍ୟ କେତେକ ମଧ୍ୟ ସେ ରୋଗ ଭୋଗିଲେ । ଟୀକାବାଲା ଆସି ଆମ୍ଭ ଛାତ୍ରାବାସର ପିଲାଙ୍କୁ ବସନ୍ତଟୀକା ଦେଲେ କିନ୍ତୁ ନିମୋନିଆରେ ମୋ ଦେହ ଦୁର୍ବଳ ଥିବାରୁ ମୋତେ ଟୀକା ଦିଆଗଲା ନାହିଁ । ମୁଁ ସେଥିପାଇଁ ଚିନ୍ତିତ ଥିବାବେଳେ ବିଶ୍ୱବିଦ୍ୟାଳୟର ସୁନାମଧନ୍ୟ ଓଡ଼ିଆ ଅଧ୍ୟାପକ ପଣ୍ଡିତ ବିନାୟକ ମିଶ୍ର ହୋମିଓପାଥି ବସନ୍ତ ନିରୋଧକ ଔଷଧ ଦେଉଥିବାର ଶୁଣି ତାଙ୍କଠାରୁ ମାଲେଣ୍ଡିଅମ-ଦଶ ନାମକ ଔଷଧ ଆଣି ଖାଇପକାଇଲି । ସେ ଯୋଗୁଁ ହେଉ ନହେଉ ମୋତେ ବସନ୍ତ ଧରି ନ ଥିଲା ।

### ଓଡ଼ିଆ ସାଥୀ :

ସେ ସମୟରେ କଟକରୁ ଆସି ଆଉ ଦୁଇଜଣ ଛାତ୍ର ଆମ କଲେଜରେ ପଢୁଥିଲେ । ମୋ ଦେହ ଖରାପବେଳେ ସେମାନେ ମୋ ପାଖକୁ ଯିବାଆସିବା କରିବାରୁ ମୋ ସଙ୍ଗେ

ସେମାନଙ୍କ ସଂପର୍କ ବଢ଼ିଥିଲା । ସେମାନେ ଚିତ୍ତରଂଜନ ଆଭିନିଉର ଏକ ଦୋତାଲାର ଏକ ପ୍ରଶସ୍ତ କୋଠରୀରେ ଅନ୍ୟ କେତେଜଣ ଓଡ଼ିଆ ଯୁବକଙ୍କ ସଙ୍ଗେ ରହୁଥିଲେ । ସେମାନେ ସମସ୍ତେ ବେହିସାବି ଓ ବେପରୁଆ ଜୀବନଯାପନ କରୁଥିଲେ । ମୋର ସଙ୍ଗୀ ବଟ ଓ ବିଭୂତିଙ୍କ ଛଡ଼ା ଅନ୍ୟମାନେ ତଥାକଥିତ ସିନେମା ପ୍ରଯୋଜନରେ ମନୋନିବେଶ କରିଥିଲେ ।

ବିଭୂତି ଓ ବଟଙ୍କର ପଢ଼ାପଢ଼ି ସହିତ ବିଶେଷ ସମ୍ବନ୍ଧ ନ ଥିବାରୁ କଟକର ଆଇ.ଏସ୍.ସି. ପରୀକ୍ଷାରେ ବହୁବାର ଅକୃତକାର୍ଯ୍ୟ ହୋଇ ସେମାନେ କଲିକତା ଆସିଥିଲେ । ସେମାନେ ଅତି ସ୍ନେହୀ ବନ୍ଧୁ ଥିଲେ ମଧ ସେମାନଙ୍କ ଜୀବନରେ କୌଣସି ଶୃଙ୍ଖଳା ନ ଥିଲା । ପ୍ରଥମ ସପ୍ତାହରେ ଘରୁ ଟଙ୍କା ଆସିବା ସଙ୍ଗେ ସଙ୍ଗେ ସେମାନେ ପରିଷ୍କାର ପରିଚ୍ଛନ୍ନ ପୋଷାକ ପିନ୍ଧନ୍ତି, ଭଲ ହୋଟେଲରେ ଖିଆପିଆ କରନ୍ତି ଓ ତାଙ୍କ ଚିବୁକରୁ ଦାମିକା ସିଗାରେଟ ଛାଡ଼ ଯାଉନଥାଏ । ଦ୍ୱିତୀୟ ସପ୍ତାହ ବେଳକୁ ପୋଷାକ ମଳିନ ଧରିଆସେ, ମୁହଁରେ ଶସ୍ତା ସିଗାରେଟ ଧରା ହୁଏ । ତୃତୀୟ ସପ୍ତାହରେ ଖାଦ୍ୟପେୟ ବରା ପିଆଜିରେ ସୀମିତ ହୋଇଯାଏ ଏବଂ ମୁହଁରେ ବିଡ଼ି ଶୋଭାପାଏ । ଚତୁର୍ଥ ସପ୍ତାହ ବେଳକୁ ସେମାନେ ତାଙ୍କ ରୁମ୍‌ରେ ପଡ଼ିଥିବା ସିଗାରେଟ ମୁଣ୍ଡି ଗୋଟାଇ ଧୂମ୍ରପାନ କରନ୍ତି । ମଇଳା ଲୁଗା ପରିଧାନ କରି ସେମାନେ ଅର୍ଥର ସନ୍ଧାନରେ ଆସି ସନ୍ଧ୍ୟା ସମୟରେ ମୋ ଭଳି ଚିହ୍ନା ପରିଚୟ ବନ୍ଧୁମାନଙ୍କ ନିକଟରେ ପହଞ୍ଚନ୍ତି । ଅବଶ୍ୟ ପ୍ରଥମ ସପ୍ତାହରେ ସେ ସବୁ ପରିଶୋଧ କରି ଦେଇ ଯାଆନ୍ତି ।

ସେମାନଙ୍କ ବନ୍ଧୁ ତଥାକଥିତ ସିନେମାର ପ୍ରଯୋଜକମାନେ ସିନେମାର ବିଷୟବସ୍ତୁ ପାଇଁ ଦୁସ୍ଥ ଓଡ଼ିଆ କୁଲିପଡ଼ା ଓ ପତିତା ଓଡ଼ିଆ ଝିଅ ରହୁଥିବା ସ୍ଥାନମାନଙ୍କର ଅନୁସନ୍ଧାନ ନେଉଥିଲେ, ବଟ ଓ ବିଭୂତି ସେମାନଙ୍କୁ ସାହାଯ୍ୟ କରିବା ପାଇଁ ବେଶ୍ୟାପଡ଼ା ମଧ ବୁଲିବାକୁ ପଛାପଦ ହେଉନଥିଲେ । ସେଠାକୁ ଜବରଦସ୍ତିରେ ଯୁବତୀ ଅଣାଯାଇ ବୟସାଧିକ ହେବାରୁ ଯେଉଁମାନେ ପରିତ୍ୟକ୍ତା ହୋଇ ଦୁସ୍ଥ ଜୀବନ ଅତିବାହିତ କରିଥା'ନ୍ତି ସେମାନଙ୍କ ଜୀବନ ସମ୍ବନ୍ଧରେ ସେ ଦୁଇ ବନ୍ଧୁ ବହୁ ତଥ୍ୟ ସଂଗ୍ରହ କରି ପ୍ରଯୋଜକମାନଙ୍କୁ ଯୋଗାଇବା ଚେଷ୍ଟା କରନ୍ତି । ସେ ସବୁରେ ବ୍ୟସ୍ତ ରହି ପରୀକ୍ଷା ନିକଟ ହୋଇ ଆସିଲେ ମଧ ବିଦ୍ୟାଧ୍ୟୟନ ପ୍ରତି ସେମାନଙ୍କର ବିଶେଷ ଉଦ୍ୟମ ନ ଥାଏ । ସେମାନେ ମୋତେ ପଣ୍ଡିତେ ବୋଲି ସମ୍ବୋଧନ କରୁଥିଲେ ଓ ମୁଁ ଏକ ବିଦ୍ୟାର ଭଣ୍ଡାର ବୋଲି ମନେ କରୁଥିଲେ । ଶେଷ ମୁହୂର୍ତ୍ତରେ ମୋ ବିଦ୍ୟାରୁ କିଛି ଗ୍ରହଣ କରି ପରୀକ୍ଷା ରୂପକ ତପ୍ତ ବୈତରଣୀ ପାର ହେବା ପାଇଁ ହୁଏତ କୌଣସି ଗୁପ୍ତ ଯୋଜନାରେ ଲାଗି ପଡ଼ିଥିଲେ ।

ବିଶ୍ୱବିଦ୍ୟାଳୟ ପରୀକ୍ଷା ଆସିଲା । ବର୍ଦ୍ଧମାନ କୋଠିର ଉପର ତାଲାରେ ମୋ ସିଟ୍ ପଡ଼ିଥିଲା । ରୋଗରୁ ଉଠି ଏତେ ପାହାଚ ଚଢ଼ି ସେ ପରୀକ୍ଷା ହଲକୁ ଯିବାକୁ ମୋର

ଶକ୍ତି ନ ଥିବା ଜାଣି ଆମ ପ୍ରିନ୍‌ସିପାଲଙ୍କ ସୁପାରିଶ୍‌ରେ ବିଶ୍ୱବିଦ୍ୟାଳୟ କର୍ମକର୍ତ୍ତା ଯିବାଆସିବା କରିବା ପାଇଁ ଥିବା ଇଲେକ୍‌ଟ୍ରିକ୍ ଲିଫ୍‌ଟିରେ ଯିବା ଆସିବା କରିବାକୁ ମୋତେ ଗୋଟିଏ ପାଶ୍ ମିଳିଥିଲା ।

ପାଠରେ ନ ହେଲେ ମଧ ଶାଠରେ ମୋର ଦୁଇ ବନ୍ଧୁ ଅତି ଧୁରନ୍ଧର ଥିଲେ । ମୁଁ ପରୀକ୍ଷା ହଲରେ ପହଞ୍ଚି ଦେଖିଲି ମୋ ସିଟ୍ ପଛକୁ ବିଭୂତି ସିଟ୍ ଓ ତା' ପଛକୁ ବଟର ସିଟ୍ ପଡ଼ିଛି ଏବଂ ଆମର ଇନଭିଜିଲେଟର ଭାବରେ ବିଶ୍ୱବିଦ୍ୟାଳୟର ଓଡ଼ିଆ ସ୍ନାତକୋତ୍ତର ଛାତ୍ର ଶ୍ରୀ ନାରାୟଣ ପତି ନିଯୁକ୍ତ ହୋଇଛନ୍ତି । ଆମ ତିନିଜଣଙ୍କର ମାତ୍ର ଓଡ଼ିଆ ବିଷୟରେ ପରୀକ୍ଷା ଦେବାକୁ ଥିବାରୁ ଓ ସ୍ନାତକୋତ୍ତର ଛାତ୍ରମାନେ ଇନଭିଜିଲେଟର ହେବାର ଥିବାରୁ ହୁଏତ ମୋ ବନ୍ଧୁମାନେ ଆଗରୁ କୌଶଳରେ ଏପରି ବ୍ୟବସ୍ଥା କରି ସାରିଥିଲେ ।

ପରୀକ୍ଷା ଆରମ୍ଭ ହେଲା, ମୁଁ ଲେଖିବା ଆରମ୍ଭ କଲାବେଳକୁ ପଣ୍ଡିତେ ଏପଟକୁ କଡ଼େଇକରି ବସ, ଲେଖା ଖାତା ପଛକୁ ଦିଶିଲା ପରି ମେଲାଇ ରଖ, ପ୍ରଭୃତି କାକୁତି ମିନତି ପଛକୁ ଶୁଣାଯିବାରୁ ମୁଁ ନିରୁପାୟ ହୋଇ ସେହିପରି କଲି । ଜଣେ ଦୁଇଜଣ ଇନଭିଜିଲେଟର ମୋ ଖାତାରୁ କପି ହେଉଥିବା ସନ୍ଦେହ କରି ମୁଁ ଖାତା ଘୁଞ୍ଚାଇ ରଖିବାକୁ ଥରେ ଦୁଇଥର ତାଗିଦ୍ କରିଗଲେ, ତା' ପରେ ନାରାୟଣ ବାବୁ ଆଉ ଆମ ପାଖ ନ ଛାଡ଼ି ଆମକୁ ଜଗିରହିବା ଭଳି ପରୀକ୍ଷା ଚାଲିଥିବା ଦିନତକ ପ୍ରହରା ଦେଇ ଅନ୍ୟ ଇନଭିଜିଲେଟରମାନଙ୍କୁ ସେଠାକୁ ଆସିବାର ସୁବିଧା ଦେଲେ ନାହିଁ ।

ପରୀକ୍ଷା ଫଳ ବାହାରିଲା ବେଳକୁ ସେମାନଙ୍କ ଯୋଜନା ଅନୁସାରେ ଫଳ ଫଳିଥିଲା । ମୁଁ ଫାଷ୍ଟ ଡ଼ିଭିଜନରେ, ବିଭୂତି ସେକେଣ୍ଡ ଡ଼ିଭିଜନରେ ଓ ବଟ ଥାର୍ଡ଼ ଡ଼ିଭିଜନରେ ପାଶ୍ କରିଥିବା ପ୍ରକାଶିତ ହୋଇଥିଲା । ସେତେବେଳେ ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ନ ଥିବାରୁ ଓଡ଼ିଆ ପିଲା ବଛା ହୋଇ ବାହାର କଲେଜରେ ପଢ଼ିବା ପାଇଁ ପଠାଯାଉଥିଲେ । ବିଭୂତି ଦରଖାସ୍ତ କଲେ । ଜଣେ ଗୋରା ହାକିମ ତାଙ୍କ ବଛାବଛି କମିଟିର ସଭାପତି ଥିଲେ । ଆଇ.ଏସ୍.ସି. ପାଶ୍ କରିବାକୁ ତାଙ୍କୁ ଏତେକାଳ କିପରି ଲାଗିଲା ବୋଲି ସେ ବିଭୂତିଙ୍କୁ ପ୍ରଶ୍ନ କରିବାରେ ସେ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଚାରବାଟିଆ ଏରୋଡ୍ରମ ତିଆରି କଣ୍ଟ୍ରାକ୍ଟରଙ୍କ ସହକାରୀ ଭାବରେ କାମ କରୁଥିବାରୁ ତାଙ୍କର ଡେରି ହେଲା ବୋଲି କହି ମାଡ୍ରାଜର 'ଗିଣ୍ଡି' କଲେଜରେ ଇଞ୍ଜିନିୟରିଂ ପଢ଼ିବାକୁ ସ୍ଥାନ ପାଇଲେ । ବୁଡ଼ିଯିବା ଲୋକକୁ ଟିକିଏ ସାହସ ମିଳିଲେ ସେ କୂଳରେ ଲାଗିଯିବାର ଦୃଷ୍ଟାନ୍ତ ପରି ବିଭୂତି ଇଞ୍ଜିନିୟର ହୋଇ ସରକାରୀ ଚାକିରି କରିବା ପରେ ଅବ୍ୟାହତି ନେଇ ସ୍ୱର୍ଗାରୋହଣ କଲେଣି । ବଟ କଟକରୁ ବି.ଏ ପାଶ୍ କରି କଣ୍ଟ୍ରାକ୍ଟରୀ ଓ ସ୍ୱାଧୀନ ବ୍ୟବସାୟ କଲା

ପରେ ଏବେ ନିଜ ଗ୍ରାମରେ ବାର୍ଦ୍ଧକ୍ୟ ଜୀବନ ଅତିବାହିତ କରୁଛନ୍ତି ବୋଲି ଖବର ପାଇଛି । ସେହି ବଟ ବା ଶ୍ରୀ ବିବେକାନନ୍ଦ କାନୁନ୍‌ଗୋ ଆଗରୁ ବହୁଥର ମୋ ନିକଟକୁ ଆସିଥିଲେ । ଏବେ ବହୁ ଦିନ ହେଲା ତାଙ୍କ ସଙ୍ଗେ ଆଉ ସାକ୍ଷାତ ହୋଇନାହିଁ ।

ଛାତ୍ର ଜୀବନ ଓ ସାଂସାରିକ ଜୀବନ ଭିତରେ ଆକାଶ ପାତାଳ ପ୍ରଭେଦ ରହିଛି । ଛାତ୍ରାବସ୍ଥାରେ ଜଣେ ଛାତ୍ର ଅତି ମେଧାବୀ ଥାଇ ସର୍ବଜନ ପ୍ରଶଂସିତ ହେଉଥିଲେ ମଧ୍ୟ କାର୍ଯ୍ୟ କ୍ଷେତ୍ରରେ ସଂପୂର୍ଣ୍ଣ ଅଯୋଗ୍ୟ ପ୍ରତିପାଦିତ ହୋଇପାରେ ଏବଂ ଜଣେ ସାଧାରଣ ବା ଅକୃତକାର୍ଯ୍ୟ ଛାତ୍ର ପରବର୍ତ୍ତୀ କାଳରେ କାର୍ଯ୍ୟକ୍ଷେତ୍ରରେ ଅତି ପାରଦର୍ଶିତା ଦେଖାଇ ସମାଜର ସର୍ବୋଚ୍ଚ ସ୍ଥାନ ଆରୋହଣ କରିପାରେ ।

ଦୃଷ୍ଟାନ୍ତ ସ୍ୱରୂପ, ପାଠରେ ମନ ନ ଥିବା ବାରବୁଲା ବିଜୁ ପଟ୍ଟନାୟକ ପରବର୍ତ୍ତୀ ଜୀବନରେ ଶିଳ୍ପ ଓ ରାଜନୀତି ପ୍ରଭୃତିରେ ଶୀର୍ଷ ସ୍ଥାନ ଅଧିକାର କଲେ ।

ମୁଁ କଲିକତାରେ ପଢୁଥିବା ବେଳେ ବିଶେଷ ମେଧାବୀ, ଓଡ଼ିଶାର ପ୍ରଥମ ଭୂତତ୍ତ୍ୱବିତ୍ ଶ୍ରୀ ଗଣେଶ ରଥ ଭାରତ ସରକାରଙ୍କର ଏକ ବଡ଼ ପଦବୀରେ ନିଯୁକ୍ତ ହୋଇଥିଲେ । ତାଙ୍କ ପ୍ରଥମ ସନ୍ତାନର ଏକୋଇଶିଆ ଭୋଜି ବଡ଼ ଆଡ଼ମ୍ବର ସହିତ ପାଳନ କରି ଆମ ଓଡ଼ିଆ ଛାତ୍ରମାନଙ୍କୁ ନିମନ୍ତ୍ରଣ କରି ଭୂରି ଭୋଜନରେ ଆପ୍ୟାୟିତ କରିଥିଲେ । କିନ୍ତୁ ପରେ ପରେ ସେ ଲାଲ-ଫିତା ଚକ୍ରାନ୍ତର ଶୀକାର ହୋଇ ଚାକିରି ଛାଡ଼ିବାକୁ ବାଧ ହୋଇ କଟକ ସହରରେ ବୁଲି ବଡ଼ ଦୈନ୍ୟ ଭାବରେ ଜୀବନ କଟାଇ ଅଳ୍ପ ବୟସରେ ସଂସାର ତ୍ୟାଗ କରିଥିଲେ । ତେଣୁ ପୁରାଣକାରମାନେ କହିଛନ୍ତି, ''ଭାଗ୍ୟଂ ଫଳତି ସର୍ବତ୍ର, ନ ଚ ବିଦ୍ୟା ନ ଚ ପୌରୁଷଂ ।''



# ମେଡ଼ିକାଲ କଲେଜ ନାମଲେଖା

କଲିକତାରେ ଆଇ.ଏସ୍.ସି. ପରୀକ୍ଷା ଦେଇ ସାରି ମୁଁ ଗ୍ରାମକୁ ଫେରିଲି । ପରୀକ୍ଷାରେ ଭଲ କରିଥିବା ମୋର ଧାରଣା ହୋଇଥିଲା । ତଥାପି ଆଇ.ଏସ.ସି. ପାଶ୍ କଲେ ମୁଁ କ'ଣ କରିବି, ତାହା ଠିକ୍ କରି ପାରୁନଥିଲି । ଯେତେ ଭଲ କଲେ ବି ଇଂରେଜ ସରକାରଙ୍କ ରାଜନୀତିକ ବୈର ଦୃଷ୍ଟି ଯୋଗୁଁ କୌଣସି ସରକାରୀ ଟ୍ରେନିଙ୍ଗ କିମ୍ବା ଚାକିରି କ୍ଷେତ୍ରରେ ପ୍ରବେଶ କରିବା ମୋ ପକ୍ଷେ ସମ୍ଭବ ନ ଥିଲା । ଫଳ ବାହାରିବା ପରେ କିଛି ନ ହେଲେ ବଙ୍ଗବାସୀ କଲେଜରେ କମର୍ସରେ ବି.ଏ ପଢ଼ିବି ବୋଲି ମନେ ମନେ ଭାବୁଥିଲି ।

ସେ ସମୟରେ ବିଭିନ୍ନ ଟ୍ରେନିଙ୍ଗ ଓ କଲେଜ ମାନଙ୍କରେ ନାମ ଲେଖିବା ପାଇଁ ବିଜ୍ଞାପନ ମାନ ବାହାରିଲା । ମୋର ପରୀକ୍ଷା ଫଳ ବାହାରି ନ ଥିଲେ ମଧ ମୁଁ ଆଗ ପଛ ନ ବିଚାରି ବହୁ ସ୍ଥାନକୁ ଖଣ୍ଡିଏ ଲେଖାଏଁ ଦରଖାସ୍ତ ପକାଇ ଦେଇଥିଲି ।

୧୯୪୪ରୁ ୧୯୪୫ ମସିହା ଭିତରେ ପୃଥିବୀର ରାଜନୀତି ଓ ଅର୍ଥନୀତିରେ ବହୁ ପରିବର୍ତ୍ତନ ଘଟି ଯାଇଥିଲା । ବିଶ୍ୱଯୁଦ୍ଧ ସମାପ୍ତ ହୋଇଥିଲା । ଭାରତର ସ୍ୱାଧୀନତା ପାଇଁ ନାନା ଆଲୋଚନା ଆରମ୍ଭ ହୋଇ ନେତାମାନେ କାରାଗାରରୁ ମୁକ୍ତି ଲାଭ କରୁଥିଲେ । ରାଜନୀତିକ ସଂଗ୍ରାମୀଙ୍କ ଉପରୁ ସରକାରୀ ଦୃଷ୍ଟି କୋହଳ ହୋଇ ଆସିଥିଲା । ତେଣୁ ମୋର ଦରଖାସ୍ତ ଗୁଡିକ ପାଇଁ ସୁପାରିଶ ସଂଗ୍ରହ ପାଇଁ ଅବାଧରେ ବୁଲାଚଲା କରିବାର ବିଶେଷ ଅସୁବିଧା ହେଲାନାହିଁ ।

ପୂର୍ବରୁ ଚାରୋଟି ମାତ୍ର ଛାତ୍ର ପାଟନା ମେଡ଼ିକାଲରେ ପଢ଼ିବା ପାଇଁ ଓଡ଼ିଶା ସରକାରଙ୍କୁ ଅଜସ୍ର ଟଙ୍କା ଖର୍ଚ୍ଚ କରିବାକୁ ପଡୁଥିଲା । ତାହାକୁ ବିଚାରକୁ ନେଇ ପାରଲା ମନ୍ତ୍ରୀମଣ୍ଡଳ ଅର୍ଥାନାଟନ ସମୟରେ ମଧ ଓଡ଼ିଶା ମେଡ଼ିକାଲ ସ୍କୁଲକୁ ସେହି ଅର୍ଥକୁ ଦେଇ ୧୯୪୪ରେ ତାକୁ ମେଡ଼ିକାଲ କଲେଜରେ ପରିଣତ କରିବାର ବ୍ୟବସ୍ଥା କରିଥିଲେ ।

**ମେଡ଼ିକାଲ କଲେଜରେ ନାମ ଲେଖା :**

ସେହି ମେଡ଼ିକାଲ କଲେଜରେ ଛାତ୍ର ନିଆଯିବା ପାଇଁ ବିଜ୍ଞାପନ ବାହାରି ଥିଲା । ସେଥିରେ କେବଳ ଓଡ଼ିଶାବାସୀ ଛାତ୍ରକୁ ଗ୍ରହଣ କରାଯାଉଥିବାରୁ ଦରଖାସ୍ତକାରୀଙ୍କୁ

ଏକ ମାଜିଷ୍ଟ୍ରେଟଙ୍କଠାରୁ ଓଡ଼ିଆ ପ୍ରମାଣପତ୍ର ଦାଖଲ କରିବା ବାଧ୍ୟତାମୂଳକ ଥିଲା । ମୋର ପୂର୍ବତନ କଲେଜିଏଟ ସ୍କୁଲ ସହପାଠୀ ଯାମିନୀଙ୍କ ପିତା ଶ୍ରୀ ଦୁର୍ଗାଚରଣ ଦାସଙ୍କ ନିକଟକୁ ଯାଇ ଅନୁରୋଧ କରିବାରୁ ସେ ଭଲ ସରକାର, ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁତ୍ରକୁ ମଧ୍ୟ ଓଡ଼ିଆ ପ୍ରମାଣପତ୍ର ଦେବାକୁ ପଡ଼ିବ, ଏହା କହି ସେ ପ୍ରମାଣପତ୍ରଟି ଦେଇଥିଲେ । ସେତେବେଳେ ସରକାରୀ କ୍ଷେତ୍ରରେ କର୍ମଚାରୀ ଓ ଛାତ୍ର ସମସ୍ତଙ୍କ ପାଇଁ ବଛାବଛି ବେଳେ ଚରିତ୍ର ଓ ପୋଲିସ ଯାଞ୍ଚ ରିପୋର୍ଟକୁ ମଧ୍ୟ ପ୍ରାଧାନ୍ୟ ଦିଆଯାଉଥିଲା ।

କଲିକତା ବିଶ୍ୱବିଦ୍ୟାଳୟ ପରୀକ୍ଷା ଫଳ ବହୁତ ଡେ଼ରିରେ ବାହାରେ । ଏହା ଭିତରେ କଟକ ମେଡ଼ିକାଲ କଲେଜ ବଛାବଛି ଦିନ ନିର୍ଦ୍ଦିଷ୍ଟ ହୋଇ ସାର୍ଟିଫିକେଟ, ପରୀକ୍ଷାଫଳ ଓ ମାର୍କସିଟ୍ ଦାଖଲ କରିବାର ସମୟ ହୋଇଗଲା । ତା'ର ଅଳ୍ପଦିନ ପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟର ଆଇ.ଏସ୍.ସି. ପରୀକ୍ଷାଫଳ ରୋଲ ନମ୍ବର ଦେଇ ପୁସ୍ତିକା ରୂପେ ବାହାରି ଥିବା ଖବର ପାଇଲି । କିନ୍ତୁ କଲିକତା ଯାଇ ତାହା ଆଣିବା ଓ ମାର୍କସିଟ ଆଣିବାକୁ ମୋ ହାତରେ ବେଳ ନ ଥିଲା । କଲିକତା ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇଥିବା କାପିଟାଲ ସିନେମା ପ୍ରୋପାଇଟରଙ୍କ ପୁତ୍ର ରବିନ୍ଦ୍ରକୁ ମୁଁ ଚିହ୍ନିଥିଲି । ସେ ସେହିଦିନ କଲିକତାରୁ ପରୀକ୍ଷାଫଳ ବାହାରିଥିବା ଲିଷ୍ଟ ବହିଟିଏ ଧରି ଆସିଥିଲେ । ସେଥିରେ ମୁଁ ଫାଷ୍ଟ ଡ଼ିଭିଜନରେ ପାଶ୍ କରିବା ମୋ ନମ୍ବରଟି ଦେଖିବାକୁ ଯାଇ ଲିଷ୍ଟ ତାଙ୍କଠାରୁ ମାଗିନେଇ ଆଟେଷ୍ଟେଡ଼ କପି କରାଇଲି । ଦୁଃଖର କଥା ରବିନ୍ଦ୍ର ପାଶ କରିଥିବା ଆନନ୍ଦରେ ଉଲ୍ଲସିତ ହୋଇ ଗୋଟିଏ ଲଣ୍ଡା ଛାତ ଉପରେ ଗୁଡ଼ି ଉଡ଼ାଉ ଉଡ଼ାଉ ତଳକୁ ଖସିପଡ଼ି ପ୍ରାଣ ହରାଇଲେ । ପରେ ତାଙ୍କ ନାମରେ ତାଙ୍କ ପିତା 'ରବିନ୍ଦ୍ର' ପାଠାଗାର ପ୍ରତିଷ୍ଠା କରିଛନ୍ତି ।

ମୋର ମାର୍କସିଟ୍ ନ ଥିବାରୁ ମୁଁ ମୋର ପରୀକ୍ଷା ପ୍ରବେଶ ପତ୍ର ଓ ଫଳ ବାହାରିଥିବା ନମ୍ବର କପି ମେଡ଼ିକାଲ କଲେଜ ଅଫିସରେ ଦାଖଲ କରିଦେଲି । ମାର୍କସିଟ୍ ନ ଥିବାରୁ ମୁଁ ଆଇ.ଏସ୍.ସି.ରେ କି ବିଷୟ ନେଇ ପାସ କରିଛି ଓ ମେଡ଼ିକାଲ ପାଇଁ ବାଧ୍ୟତାମୂଳକ ଥିବା ବାଓଲଜି ବିଷୟ ମୋର ଥିଲା କି ନାହିଁ ଓ କେଉଁ ବିଷୟରେ କେତେ ନମ୍ବର ରଖିଛି ତାହା ଜଣାଇବାର ଉପାୟ ନ ଥିଲା ।

ମାର୍କସିଟ୍ ନ ଥାଇ ଆଡ଼ମିଶନ ମିଳିବାର ସମ୍ଭାବନା ନ ଥିଲେ ମଧ୍ୟ ସବୁ କାଗଜପତ୍ର ନେଇ ଇଣ୍ଟରଭିଉକୁ ଯିବାକୁ ମୋତେ ଡାକରା ଆସିବାରୁ ମୁଁ କ'ଣ କରିବି ଭାବି ନପାରି, ଆମ ସିଲେକ୍ସନ୍ ବୋର୍ଡ଼ର ଜଣେ ଜଣାଶୁଣା ଡାକ୍ତର ସଦସ୍ୟଙ୍କୁ ଦେଖାକଲି । ସେ ମୋ କଥା ଶୁଣି କହିଲେ ''ତୁମେ ଫାଷ୍ଟ ଡ଼ିଭିଜନରେ ପାଶ୍ କରିଛ, ସିଲେକ୍ସନ୍ କମିଟି ସଭାପତି କମିଶନର ଓ୍ୟାର୍ଡ଼ ସାହେବ ସବୁ ଫାଷ୍ଟ ଡ଼ିଭିଜନ ଛାତ୍ରଙ୍କୁ ବିନା ଆପତ୍ତିରେ

ନେବାର ସ୍ଥିର କରିଛନ୍ତି, କାରଣ ତୁମକୁ ମିଶାଇ ମୋଟେ ତିନି ଜଣ ଫାଷ୍ଟ ଡ଼ିଭିଜନ ପିଲା ଆଡ଼ମିଶନ ପାଇଁ ଦରଖାସ୍ତ କରିଛନ୍ତି ତେଣୁ ତୁମର ଚିନ୍ତା କରିବାର ନାହିଁ ।

ତାଙ୍କ କଥାରେ ମୋର ସାହସ ବଢ଼ିଯିବାରୁ ମୁଁ ମେଡ଼ିକାଲ କଲେଜ ପ୍ରିନ୍‌ସିପାଲ ପ୍ରଫେସର ସନାତନ ପୂଜାରୀଙ୍କୁ ଦେଖାକରି ମୋତେ ମାର୍କସିଟ୍ ମିଳି ନ ଥିବା କଥା କହିଲି । ସେ ଅତି ସ୍ନେହୀ ଓ ସହାନୁଭୂତିଶୀଳ ଲୋକ ଥିଲେ । ସେ କହିଲେ 'ତୁମେ ବ୍ୟସ୍ତ ହୁଅନାହିଁ, ଫାଷ୍ଟ ଡ଼ିଭିଜନ ଛାତ୍ରଙ୍କ ପାଇଁ ମାର୍କସିଟ୍ ନ ଥିଲେ ଚଳିବ । କେବଳ ତୁମ ଆଇ.ଏସ୍.ସି. ପାଠ୍ୟକ୍ରମରେ, ବାଓଲଜି ଥିବା ପ୍ରମାଣ ପତ୍ର ଦରକାର ।' ସେଥିପାଇଁ ତୁମେ ଯଦି ଜଣେ ବିଧାୟକ ବା ଉଚ୍ଚପଦସ୍ଥ କର୍ମଚାରୀଙ୍କ ଠାରୁ ସେ ବିଷୟରେ ସାର୍ଟିଫିକେଟଟିଏ ଆଣି ଦେଇ ପାରିବ ତେବେ ତୁମେ ନାମ ଲେଖାଇବାରେ ବିଶେଷ ଅସୁବିଧା ହେବ ନାହିଁ ।

କେଉଁ ବିଧାୟକ ବା ଅଫିସର ମୁଁ ବାଓଲଜି ନେଇଥିବା ଜାଣିଛନ୍ତି ବୋଲି ଭାବିଲା ବେଳକୁ ମୋ ପାଟିରୁ ବାହାରି ପଡ଼ିଲା, 'ସାର୍ ମୋ ପିତା ପଣ୍ଡିତ ନୀଳକଣ୍ଠ ଦାସ କେନ୍ଦ୍ର ଆସେମ୍ବ୍ଲିର ବିଧାୟକ, ସେ ଲେଖିଦେଲେ ଚଳିବ ?' ମୋ କଥା ଶୁଣି ସେ କହିଲେ ନୀଳକଣ୍ଠ ବାବୁ ଲେଖିଦେଲେ ଯଦି ନ ହେବ ତେବେ ତାଙ୍କଠାରୁ କିଏ ବଡ଼ ବିଧାୟକ ଅଛି ? ଯାଅ ତୁମେ ତାଙ୍କଠାରୁ ଲେଖାଇ ଆଣ ।

ମୋ ଭାଗ୍ୟକୁ ସେହି ସମୟରେ ମୋର ପିତା ଦିଲ୍ଲୀରୁ ଆସି କଟକରେ ପହଞ୍ଚିଲେ । ମୁଁ ତାଙ୍କଠାରୁ ତାହା ଲେଖାଇ ନେଇ ମେଡ଼ିକାଲ କଲେଜ ଅଫିସ୍‌ରେ ଦାଖଲ କରିଦେଇ ଆସିଲି ।

ଇଣ୍ଟରଭିଉ ଦିନ ମୋ ଭଳି ସ୍ୱାଧୀନତା ସଂଗ୍ରାମୀ, ଇଂରେଜ ଅଫିସରଙ୍କ ସାମନାକୁ ଯିବା ପାଇଁ ପ୍ରସ୍ତୁତ ହେଲାବେଳେ ଛାତି ଧଡ଼ ଧଡ଼ ହେବା ସ୍ୱାଭାବିକ । ସତକୁ ସତ ସେ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧିକାଂଶ ଫାଷ୍ଟ ଡିଭିଜନ ଛାତ୍ର ଇଞ୍ଜିନିୟରିଂ ଓ ଟେକ୍‌ନିକାଲ ଟ୍ରେନିଂ ପାଇଁ ଦରଖାସ୍ତ କରିଥିଲେ । ମେଡ଼ିକାଲ କାଉନସିଲ ଦ୍ୱାରା ସ୍ୱୀକୃତି ପାଇ ନ ଥିବାରୁ ମେଡ଼ିକାଲ କଲେଜକୁ ସେମାନେ ଦରଖାସ୍ତ କରି ନ ଥିଲେ । ଆମ ଦରଖାସ୍ତକାରୀଙ୍କ ଭିତରେ ରେଭେନସା କଲେଜରୁ ପାଶ୍ କରିଥିବା ଦୁଇଜଣ, ପୂର୍ଣ୍ଣଚନ୍ଦ୍ର ଶତପଥୀ ଓ ନବଘନ ସେନାପତି ଓ କଲିକତାରୁ ପାଶ୍ କରିଥିବା ମୁଁ, ଏପରି ତିନିଜଣ ମାତ୍ର ଫାଷ୍ଟ ଡିଭିଜନର ଛାତ୍ର ଥିଲୁ ।

ମୋର ନାମ ଡକା ହୋଇ ମୁଁ ସିଲେକସନ କମିଟି ସଦସ୍ୟଙ୍କ ନିକଟକୁ ଯିବା କ୍ଷଣି ଓ୍ୟାର୍ଡ ସାହେବ ଠିଆ ହୋଇଯାଇ ମୋ ସଙ୍ଗେ ହାତ ମିଳାଇ ଅଭିବାଦନ କରି ଗୁଡ୍

ଲଜ କହି ବିଦାକରିଦେଲେ । ତାହା ପ୍ରକୃତରେ ମୋ ପାଇ ଗୁଡ୍ ଲକ ବା ଭାଗ୍ୟ ଥିଲା । ପୋଲିସ୍ ରିପୋର୍ଟ ଓ ମାର୍କସିଟ୍ ଦେଇ ନ ଥିବା ବିପଦରୁ ମୁଁ ଉଦ୍ଧାର ପାଇ ଆନନ୍ଦରେ ବାହାରକୁ ଚାଲିଗଲି । ମୋ ସଙ୍ଗେ ଆଉ ଯେଉଁ ୩୦ ଜଣ ବଛା ହୋଇଥିଲେ, ସେମାନେ ହେଲେ ବାସନ୍ତୀ ପଟ୍ଟନାୟକ, ନିରୂପମା ରଥ, ସରୋଜିନୀ ପ୍ରଧାନ, ଇନ୍ଦିରାବାଇ, ଉର୍ମିଳା, ଲାବଣ୍ୟଦେବୀ, ଚକ୍ରଧର ସାହୁ, ବିନୋଦ ଦାସ, ମଧୁସୂଦନ ଖାଡଙ୍ଗା, ବିଶ୍ୱମ୍ଭର ରାଜଗୁରୁ, ସୂର୍ଯ୍ୟ କୁ. ବହିଦାର, ପ୍ରତାପ ବେବର୍ତ୍ତା, କଳ୍ପତରୁ ବିଶ୍ୱାଳ, ବନମାଳୀ ସାହୁ, ଲକ୍ଷ୍ମୀକାନ୍ତ ମହାପାତ୍ର, ବସନ୍ତ କୁ. ପ୍ରଧାନ, ପ୍ରଭାକର ରାଓ, ମିର୍ଜା ଆଦାମ ଅଲ୍ଲି ବେଗ । ସନ୍ଦିପ ରାଓ, ବିମାନ ଆଚାର୍ଯ୍ୟ, ଜଗତ ମହାନ୍ତି, ଅନୁପ ସିଂହଦେଓ, ଘନ ତ୍ରିପାଠୀ, ପ୍ରସନ୍ନ ସେନାପତି, ପୂର୍ଣ୍ଣଚନ୍ଦ୍ର ଶତପଥୀ, ନବଘନ ସେନାପତି, ସଦାନନ୍ଦ ପଟ୍ଟନାୟକ ଓ ଜଗନ୍ନାଥ ବିଶ୍ୱାଳ ।

କଲେଜରେ କୌଣସି ମତେ ନାମ ଲେଖା ହୋଇଗଲା, କିନ୍ତୁ ମେଡ଼ିକାଲ ପାଠ ଅତି ବ୍ୟୟସାପେକ୍ଷ । ମୋର ପୂର୍ବ ଖାମ୍‌ଖିଆଲି ପାଠ ପାଇଁ ବିଶେଷ ପଇସା ପତ୍ରର ପ୍ରୟୋଜନ ପଡୁନଥିଲା । ଗ୍ରାମର ସ୍ୱଳ୍ପ ଆୟରୁ ବୋଉଠାରୁ ଗୋଟିଆଗୋଟି କରି ଆଣି ତାହା କୌଣସି ମତେ ଚଳି ଯାଉଥିଲା । ମେଡ଼ିକାଲର କେବଳ ଗୋଟିଏ ଗୋଟିଏ ବହି ଏତେ ମୋଟା ଯେ ତାକୁ ତକୁ ଉଠାଇବା ଯେପରି କଷ୍ଟ ତାକୁ ପଇସା ଦେଇ କଣି ପାରିବା ମଧ ସେତିକି କଷ୍ଟ । ତା' ଛଡ଼ା ମେଡ଼ିକାଲ ପଡ଼ିଲେ ମୂଳରୁ ଛାତ୍ରାବାସରେ ରହିବାକୁ ପଡ଼ିବ । ସେଠାର ଖର୍ଚ୍ଚ ଅନ୍ୟ ସବୁ ଛାତ୍ରବାସମାନଙ୍କ ଠାରୁ ବ୍ୟୟବହୁଳ ଥିଲା ।

ତେଣୁ ମେଡ଼ିକାଲରେ ପଡ଼ିଲେ ମୋର ଖର୍ଚ୍ଚ କିପରି ଚଳିବ ବୋଲି ମୋର ଚିନ୍ତା ପଡ଼ିଲା । ମୋର ପିତା ଦେଶସେବୀ, ନାମ ବଡ଼ କିନ୍ତୁ ଆୟପନ୍ଥା ସୀମିତ । ସେ କେନ୍ଦ୍ର ଆସେମ୍ବ୍ଲି ବସିବା ଦିନତକ ପ୍ରତିଦିନ ଦୈନିକ ପନ୍ଦର ଟଙ୍କା ଭତ୍ତା ପାଉଥିଲେ । ସେତେବେଳେ ଗ୍ରାମ ଚାଷରୁ ବିଶେଷ ଲାଭ ମିଳୁ ନ ଥିଲା । ରାଜନୀତିକ ଖର୍ଚ୍ଚ ସଙ୍ଗକୁ ନବଭାରତ ପତ୍ରିକା ପ୍ରକାଶ ପାଇଁ କରିଥିବା ନବଭାରତ ପ୍ରେସର ଆୟ ତାଙ୍କ ମୋହମତିଆଗୁଣ ଯୋଗୁଁ ଆଗେଇ ପାରୁ ନ ଥାଏ । ସେଠାର କୋହଳ ପରିଚାଳନା ଯୋଗୁ ସେଠାରେ ରହୁଥିବା ବହୁ କର୍ମୀ ଓ ଛାତ୍ର ପ୍ରେସର ଆଦାୟରୁ ଖିଆପିଆ ଓ ଖର୍ଚ୍ଚବାର୍ଚ୍ଚ କରନ୍ତି । ସେ ସବୁ ଯୋଗୁଁ ମୋର ପିତା ବଡ଼ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇଥାଆନ୍ତି ।

ତଥାପି ମୋର ମେଡ଼ିକାଲ ପଢ଼ା ପ୍ରତି ସହାନୁଭୂତି ଦେଖାଇ ମୋତେ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସେ ତାଙ୍କର ପୁରୁଣା ମଟର ଗାଡ଼ିଟି ଓ ପ୍ରେସର ଦୁଇଟି ବଡ଼ ମେସିନ୍‌ରୁ ଗୋଟିଏ ମେସିନ୍ ବିକି ଆଠ ହଜାର ଟଙ୍କା ସଂଗ୍ରହ କରି ମୋ ହାତକୁ

ବଢ଼ାଇ ଦେଇ କହିଲେ ''ତୋର ମେଡ଼ିକାଲ ପାଠ ପାଇଁ ମୋର ଏତିକି ମାତ୍ର ସାହାଯ୍ୟ, ତୁ ଜଗି ରଖି ଖର୍ଚ୍ଚ କରି ଏତିକିରେ ତୋର ପାଞ୍ଚବର୍ଷର ପାଠ ଶେଷ କର ।''

ଶସ୍ତା ସମୟ, ମାସକୁ ଶହେ ଦେଢ଼ଶହ ହେଲେ ମୋ ଖର୍ଚ୍ଚ ଚଳିଯିବ ତେଣୁ ସେ ଟଙ୍କାରେ ମୋର ପାଠ ପଢ଼ା ହୋଇଯିବ ବୋଲି ମୁଁ ତାଙ୍କୁ କୃତଜ୍ଞତା ଜଣାଇ ସେ ଟଙ୍କା ନେଇ ଇମ୍ପେରିଆଲ ବ୍ୟାଙ୍କ (ଏବର ଷ୍ଟେଟ ବ୍ୟାଙ୍କ) ରେ ରଖିଦେଲି ।

ମୋର ପିତା ଅତି ପଣ୍ଡିତ ଓ ଭାବୁକ ଲୋକ, ବୈଷୟିକ ଚିନ୍ତା କରିବାକୁ ତାଙ୍କୁ ସମୟ ନ ଥାଏ । ତେଣୁ ସେ ବୈଷୟିକ ବୁଦ୍ଧି ନ ଖଟାଇ ଅନେକ ସମୟରେ ସେ ସମ୍ବନ୍ଧରେ ଅନ୍ୟ କଥାରେ ଭୁଲି ଯାଆନ୍ତି । ସେ ଯୋଗୁଁ ତାଙ୍କୁ ବହୁ ଲୋକ ଠକିଛନ୍ତି ଓ ବିପଦରେ ପକାଇଛନ୍ତି । ସେପରି କାର୍ଯ୍ୟ ସବୁ ପାଇଁ ମୋର ବୋଉ ତାଙ୍କୁ ପଣ୍ଡିତ ମୂର୍ଖ ଆଖ୍ୟା ଦେଇ ନିଜେ ଘରବାଡ଼ି ସବୁ ବୁଝେ ।

ମୁଁ ଟଙ୍କା ଜମା କରିବା ପରେ ପରେ ପିତାଙ୍କର ଜଣେ ରାଜନୈତିକ ସହକର୍ମୀ, ନିଜର ଜଣେ ବନ୍ଧୁ, 'ବ୍ୟାଙ୍କ ଅଫ କାଲକାଟା'ର ମ୍ୟାନେଜରଙ୍କୁ ସଙ୍ଗରେ ଧରି ପିତାଙ୍କ ନିକଟକୁ ଆସିଲେ । ସେ ମ୍ୟାନେଜର ପିତାଙ୍କୁ ତାଙ୍କ ବ୍ୟାଙ୍କରେ ଫିକ୍ସ୍‌ଡ଼ ଡପୋଜିଟ୍ କରି ଟଙ୍କା ରଖିଲେ ଅଜସ୍ର ସୁଧ ଓ ଅନ୍ୟ ସୁବିଧା ମିଳିବ ବୋଲି ବୁଝାଇଦେଲେ, ତାଙ୍କ ବ୍ୟାଙ୍କରେ ଟଙ୍କା ରଖିଲେ ମୋର ପାଠ ପଢ଼ା ଖର୍ଚ୍ଚ ଉଠିବା ସଙ୍ଗେ ସଙ୍ଗେ ପ୍ରେସ ଚଳାଇବା ପାଇଁ ମଧ ବ୍ୟାଙ୍କରୁ ସୁଲଭ ସୁଧରେ ଟଙ୍କା ମିଳିବ । ମୋ ଡିପୋଜିଟ ଟଙ୍କାରୁ ଯେଉଁ ସୁଧ ମିଳିବ ସେଥିରେ ଅଳ୍ପ କିଛି ମିଶାଇଲେ ମୋ ପାଠ ପଢ଼ା ଖର୍ଚ୍ଚ ଚଳିଯିବ । ପାଠ ଶେଷକୁ ସେ ଟଙ୍କାକୁ ନେଇ ଉଚ୍ଚ ଶିକ୍ଷା ପାଇଁ ମୁଁ ବିଲାତ ଯାଇପାରିବି ବୋଲି କହିଲେ ।

ଏକା ଗୁଳିକେ ଦୁଇଟା ଚଢ଼େଇ । ମୋର ପିତା ସେ ବ୍ୟାଙ୍କର ସ୍ଥିତି କଥା ଅନୁସନ୍ଧାନ ନ କରି ସେ ବ୍ୟାଙ୍କ ମ୍ୟାନେଜରଙ୍କ କଥାରେ ଭୁଲିଗଲେ । ଇମ୍ପେରିଆଲ ବ୍ୟାଙ୍କରୁ ଟଙ୍କା ଆସି ସେ ବ୍ୟାଙ୍କରେ ଫିକ୍ସ୍‌ଡ଼ ଡିପୋଜିଟ୍ ହୋଇ ରହିଲା, ତାକୁ ଦର୍ଶାଇ ପ୍ରେସ ଖର୍ଚ୍ଚ ଚଳାଇବାକୁ ଅଢ଼େଇ ହଜାର ଟଙ୍କା ବ୍ୟାଙ୍କରୁ କରଜ୍ ଅଣାଗଲା ।

ଏସବୁ ହେବାର ମାସକ ଭିତରେ ଛତୁ ପରି ଫୁଟିଥିବା ସେପରି ବେସରକାରୀ ବ୍ୟାଙ୍କ ସବୁ ଦେବାଳିଆ ହୋଇ ବନ୍ଦ ହୋଇଗଲେ । 'ବ୍ୟାଙ୍କ ଅଫ କାଲକାଟା' ଦେବାଳିଆ ହୋଇ ବନ୍ଦ ହେବାରୁ ମୋ ଟଙ୍କା ତକ ବୁଡ଼ିଗଲା । ଓଲଟି ବ୍ୟାଙ୍କ ପାଇଁ ନିଯୁକ୍ତ ହୋଇଥିବା ସରକାରୀ ରିସିଭର ନବଭାରତ କରଜ ଆଦାୟ ପାଇଁ ପିତାଙ୍କ ନାମରେ କଲିକତାରେ ମୋକଦ୍ଦମା ଦାୟର କଲେ । ଆମକୁ କଲିକତା ଯାଇ ଓକିଲ ନିଯୁକ୍ତ କରି ସେହି ମୋକଦ୍ଦମାରେ ଲଢ଼ି ତାହା ମୋ ଡପୋଜିଟ୍ ଟଙ୍କାରୁ କଟାଯିବା ପାଇଁ ନିଷ୍ପତ୍ତି ହୋଇଥିବା ସାବ୍ୟସ୍ତ କରାଇ ଆମେ ଉଦ୍ଧାର ପାଇଲୁ ।

୧୯୪୪ ଓ ୪୫ ପ୍ରଥମ ଦୁଇବର୍ଷରେ ମେଡ଼ିକାଲ କଲେଜ ନାମ ଲେଖାରେ ୨୨ ଓ ୩୧ ଏପରି ୫୩ ଜଣ ନାମ ଲେଖାଇଥିଲେ । ପ୍ରଥମ ୨୨ ଜଣଙ୍କ ଭିତରେ ଜଣେ ହେଲେ ଛାତ୍ରୀ ନ ଥିଲେ । ଆମ କ୍ଲାସରେ ଛଅଜଣ ଛାତ୍ରୀ ନାମ ଲେଖାଇଥିଲେ । ସେମାନଙ୍କ ଭିତରେ ନାରୀ ନେତ୍ରୀ ନିରୂପମା (ରଥ) ଅନ୍ୟତମା, ଆମର ମେଡ଼ିକାଲ ସ୍କୁଲରେ ପ୍ରତିବର୍ଷ ଷାଠିଏ ଛାତ୍ର ନିଆଯାଉ ଥିଲେ । ମେଡ଼ିକାଲ କଲେଜରେ ଗୋଟିଏ କ୍ଲାସ ଖୋଲିଲେ ମେଡ଼କାଲ ସ୍କୁଲରେ ଆଉ ନାମ ଲେଖା ନ ଯାଇ ଗୋଟିଏ କ୍ଲାସ ବନ୍ଦ କରାଯାଉଥାଏ । ଆମେ ଦ୍ୱିତୀୟ ଦଳ ହୋଇଥିବାରୁ ଆମ ବେଳକୁ ମେଡ଼ିକାଲ ସ୍କୁଲର ତଳ ଦୁଇଟି କ୍ଲାସ ଉଠି ଯାଇଥାଏ ।

**ମେଡ଼ିକାଲ ଛାତ୍ରାବାସ :**

ମେଡ଼ିକାଲ ପାଠ ପାଇଁ ଛାତ୍ରାବାସରେ ରହିବା ନିତାନ୍ତ ପ୍ରୟୋଜନ । ମେଡ଼ିକାଲ ସ୍କୁଲର ଦୁଇଟି କ୍ଲାସ ଉଠିଯାଇଥିବାରୁ ଶହେ କୋଡ଼ିଏ ସିଟ ଖାଲି ପଡ଼ିଥାଏ, ତେଣୁ ଆମର ରହିବାର ମଧ କୈଣସି ଅସୁବିଧା ନ ଥିଲା । ଆମେ ଗୋଟିଏ ରୁମରେ ରହି ଅନ୍ୟଟିଏ ପଢ଼ାରୁମ କରିପାରୁଥିଲୁ । ଛାତ୍ରାବାସର ପଛପଟେ ଥିବା ଖାଲିଘରେ କେହି କେହି ସ୍କୁଲ ଛାତ୍ର ଗାଈ ରଖୁଥିଲେ ।

ଆମ ସଙ୍ଗେ ସେତେବେଳର କରଦ ରାଜ୍ୟ ଖରସୁଆଁର ରାଜକୁମାର ଅନୁପନାରାୟଣ ସିଂହଦେଓ ମେଡ଼ିକାଲ କଲେଜରେ ନାମ ଲେଖାଇଥାଆନ୍ତି । ତାଙ୍କୁ ତଳ ତାଲାରେ ଗୋଟିଏ ସ୍ୱତନ୍ତ୍ର ଘର ଦିଆଯାଇଥାଏ । ତାଙ୍କ ରୋଷେଇ ପାଇଁ ଓ ସେବାକାରୀ ରହିବା ପାଇଁ ସ୍ୱତନ୍ତ୍ର ଘର ଦିଆଯାଇଥାଏ । ରାଜକୁମାରଙ୍କର ଜଣେ ପାଖ ଲୋକ ପାଖେ ପାଖେ ଥାଏ । ସେ ତାଙ୍କ ପାଇଁ ରୋଷେଇ କରି ଖୋପଥିବା ଗୋଲିଆ ରୂପା ଥାଳିରେ ଖାଦ୍ୟ ଆଣି ତାଙ୍କ ଆସନ ସାମନାରେ ବାଢ଼ିବାର ଦୃଶ୍ୟ ଆମେ ଉପଭୋଗ କରୁ । ସେ ପାଖ ଲୋକ ତାଙ୍କର ଅନ୍ୟ ସବୁ ସେବା କରିବା ସଙ୍ଗେ ସଙ୍ଗେ ତାଙ୍କ ବହିପତ୍ର ଧରି ତାଙ୍କ ପଛେ ପଛେ କ୍ଲାସ ଦୁଆର ପର୍ଯ୍ୟନ୍ତ ଯାଏ ।

ରାଜକୁମାର ଅତି ସରଳ ପ୍ରକୃତିର ପିଲା ଥିବାରୁ ଅଳ୍ପଦିନ ଭିତରେ ଆମ ସଙ୍ଗେ ମିଶି ଯାଇଥିଲେ । ଆମ ଦୁଇ କ୍ଲାସ ଛାତ୍ରଙ୍କ ଭିତରେ ସୌହାର୍ଦ୍ଦ୍ୟ ବଢ଼ି ଆମେ ଗୋଟିଏ ପରିବାରରେ ପରିଣତ ହୋଇଯାଇଥିଲୁ । ଲେଡ଼ି ଛାତ୍ରମାନେ ଅନ୍ୟତ୍ର ରହୁଥିଲେ ମଧ ଆମେ ଭାଇ ଭଉଣ ।ପରି ଚଳୁଥିଲୁ ।

ଛାତ୍ରାବାସକୁ ଆସୁଥିବା ଅଭିଭାବକମାନେ ମଧ ଆମେ ସବୁ ମିଳିମିଶି ଖୁସିରେ ଚଳୁଥିବା ଦେଖି ସାଙ୍ଗରେ ଆଣିଥିବା ଖାଦ୍ୟ ପଦାର୍ଥକୁ ଆମ ସମସ୍ତଙ୍କ ଭିତରେ ବାଣ୍ଟିଦେଇ ଯାଆନ୍ତି ।

ଆଗେ ମେଡ଼ିକାଲ ସ୍କୁଲରେ ଓଡ଼ିଆ ଛାତ୍ରଙ୍କ ଛଡ଼ା ବହୁ ସଂଖ୍ୟାରେ ବିହାରୀ ଓ ବଙ୍ଗାଳୀ ଜମିଦାର ଓ ଧନୀ ଲୋକଙ୍କ ପିଲାମାନେ ଆସି ପଢୁଥିଲେ । ସେମାନଙ୍କ ଭିତରୁ କେତେକ ଆରାମରେ ବର୍ଷ ବର୍ଷ ଧରି ଏକ ଶ୍ରେଣୀରେ ପଡ଼ି ଛାତ୍ରାବାସରେ ମଉଜ ମଜଲିସ୍‌ରେ କାଳାତିବାହିତ କରୁଥିଲେ । ପରୀକ୍ଷାରେ ପାଶ୍ ବା କ୍ଲାସଉଠା ପାଇଁ ସେମାନଙ୍କର ବ୍ୟଗ୍ରତା ନ ଥିଲା । ସେମାନଙ୍କ ଘରୁ ସେମାନଙ୍କ ନିକଟରେ ନିୟମିତ ଭାବେ ପ୍ରଚୁର ଅର୍ଥ ପହଞ୍ଚି ଯାଉଥିଲା । ସେହି ଟଙ୍କାରେ ଛାତ୍ରାବାସରେ ନାଚଣା ଗାଉଣା ଓ ଭୋଜି ନିର୍ଦ୍ୱନ୍ଦରେ ଚାଲିଥିଲା । ସେମାନଙ୍କର ସ୍ୱତନ୍ତ୍ର ଚାକର ପୂଜାରୀ ଥିଲେ । ଆମେ ଶୁଣିନ୍ତୁ ସେହି ଧନାଢ଼୍ୟ ଛାତ୍ରମାନେ ସ୍କୁଲର କ୍ଲାସକୁ ଯିବାବେଳେ, ବହିପତ୍ର ଧରି ତାଙ୍କ ଚାକର ପଛେ ପଛେ ଚାଲୁଥିଲେ ଓ ସେମାନେ ହାତରେ ହୁକା ଧରି ହୁକା ଖାଇ ଖାଇ ଆଗରେ ଚାଲୁଥିଲେ । କ୍ଲାସକୁ ପଶିଲା ବେଳକୁ ଚାକର ହୁକାଟା ଘେନି ଆସି ବହିଗୁଡ଼ାକ ତାଙ୍କ ହାତକୁ ବଢ଼ାଇ ଦେଉଥିଲା ।

ମୁଁ ପଢ଼ିଲା ବେଳକୁ ପୁରୁଣା ବୁନିଆଦିର ସ୍କୁଲ ଛାତ୍ରମାନଙ୍କ ଭିତରୁ କେତେଜଣ ସେ ପର୍ଯ୍ୟନ୍ତ ଛାତ୍ରାବାସରେ ରହିଥିଲେ । ମାଣ୍ଡାରାଓ ନାମକ ଜଣେ ଛାତ୍ର ସକାଳୁ ବାରଟି ମାତ୍ର ଅଣ୍ଡା ଜଳଖିଆ କରୁଥିଲେ । ଛାତ୍ରାବାସରେ କେବଳ ସିକ୍ ରୁମ୍‌ରେ ଗୋଟିଏ ପଙ୍ଖା ଥିଲା । ବେଶି ଗରମ ଲାଗିଲେ, ଆମ ରୁମ୍‌ରେ ପଙ୍ଖା ନ ଥିବାରୁ ଆମେ ବେଳେବେଳେ ସିକ୍ ରୁମ୍‌କୁ ଯାଉଥିଲୁ । ମାଣ୍ଡାରାଓ ବଡ଼ ପାଟିରେ ପଢ଼ି ତାଙ୍କ ପରୀକ୍ଷା ପାଇଁ କପି କାଗଜ ପ୍ରସ୍ତୁତ କରିବା ପାଇଁ ସେହି ଘର ଭିତରେ ରହି ଭିତରୁ ଦୁଆର ବନ୍ଦ କରିଦେଉଥିଲେ । ତାଙ୍କ କାର୍ଯ୍ୟରେ ବାଧା ନ ଦେଇ ସେଠାରେ କେବଳ ବିଶ୍ରାମ ନେବାପାଇଁ କହିଲେ, ସେ କହୁଥିଲେ 'ତୁମର ଉପସ୍ଥିତି ହିଁ ବାଧାପ୍ରଦ' । ପରେଶ ବାବୁ ନାମକ ଜଣେ ଛାତ୍ର ଅତି ଦୀର୍ଘକାୟ, ପୃଥୁଳକାୟ ବ୍ୟକ୍ତି ଥିଲେ ଓ ତାଙ୍କ ପକ୍ଷରେ କାଠ ଖଟରେ ଶୋଇବା ବିପଜ୍ଜନକ ଥିବାରୁ ସେ ତଳ ତାଲାର ଗୋଟିଏ ଘରେ ତଳେ ମଶିଣା ପକାଇ ଶୋଉଥିଲେ । ସେ ଶୋଇବା ବେଳେ ତାଙ୍କ ଘୁଙ୍ଗୁଡ଼ିରେ ଛାତ୍ରାବାସ ପ୍ରକମ୍ପିତ ହୋଇ ଉଠୁଥିଲ । ଶୋଇଥିଲେ ତାଙ୍କ ଦେଢ଼ଫୁଟ ଉଚ୍ଚର ପେଟଟା ଆଉ ଛଅ ଇଞ୍ଚ ଉପର ତଳ ହେଉଥିବା ପରି ଜଣା ପଡୁଥିଲା ।

ପୁରାତନ ଦୋତାଲା ଛାତ୍ରାବାସ, ଦୁଇଟି ଓଡ଼ିଆ ଆଠ ମୁହାଁମୁହିଁ ଯୋଡ଼ା ହେଲା ପରି ଗଢ଼ା ଯାଇଥିଲା । ଦକ୍ଷିଣ ଧାଡ଼ିଟି ବଡ଼ ଥିଲା ଓ ତାର ଦୁଇ ବାହୁରେ କେତେ ବଖରା ଘର ରହିଥିଲା, ସେହି ମଝି ଧାଡ଼ିର ଦୁଇପଟେ ଦୁଇଟା ଗୋଲାକାର ଗମ୍ବୁଜ ରହିଥିଲା ସେହି ଗମ୍ବୁଜ ତଳ ଓ ଉପରର ପାଇଖାନା ରହିଥିଲା । ସେହି ଛାତ୍ରାବାସର କୋଠା ଏବେ ନାନା କୋଠା ଭିତରେ ଲୁଚି ଯାଇଛି ।

ସେ ସମୟରେ ଛାତ୍ରାବାସର ଚାରିପଟେ ବସ୍ତୀର୍ଣ୍ଣ ପଡ଼ିଆ ସବୁ ବ୍ୟାପି ରହିଥିଲା । ପାଥୋଲୋଜି, ଫାର୍ମାକୋଲୋଜି କଲେଜ କୋଠା, ଗାଇନାକୋଲଜି ଆଉଟଡ଼ୋର ଓ ନୂଆ ଛାତ୍ରାବାସ, ଶିକ୍ଷକ ମାନଙ୍କ ନିବାସ ପ୍ରଭୃତି କିଛି ନ ଥିଲା । ମେଡ଼ିକାଲ ନିକଟରୁ ମଙ୍ଗଳାବାଗ୍ ଓ ରାଣୀହାଟ ପର୍ଯ୍ୟନ୍ତ ରାସ୍ତାକଡ଼ରେ ଜନବସତି ଖୁବ୍ କମ୍ ଥିଲା । ରାଣୀହାଟ ଓ ମଙ୍ଗଳାବାଗ ବାସିନ୍ଦାମାନେ ମେଡ଼ିକାଲ ଛାତ୍ରଙ୍କ ସଙ୍ଗେ ମିଶିକରି ଚଳୁଥିଲେ । ସେମାନଙ୍କୁ ଖାତିର କରିବା ସଙ୍ଗେ ସଙ୍ଗେ ଭୟ ମଧ କରୁଥିଲେ ।

ଛାତ୍ରାବାସ ପଛକୁ ଲାଗି ଅଧାକାନ୍ଥ ଦିଆଯାଇ ଚାରି ଛଅଟି ପାଣି ଟ୍ୟାପ୍ ଥାଇ ଦୁଇଟି ସ୍ନାନାଗାର ରହିଥିଲା । ତା' ପଛର ଖୋଲା ପଡ଼ିଆଟା ଦୂରର ପ୍ରାଚୀର ପର୍ଯ୍ୟନ୍ତ ଲାଗିଥିବାରୁ ବେଳେ ବେଳେ ବାହାର ଲୋକ ଆସି ସେଠାରେ ସ୍ନାନ କରୁଥିଲେ । ସେଥିରେ ଅସୁବିଧା ହେବାରୁ ବାହାର ଲୋକ ବା ଅନ୍ୟମାନେ ସେଠାରେ ସ୍ନାନ କରିବା ନିଷେଧ ବୋଲି ନୋଟିସଟିଏ ମରାଯାଇଥିଲା ।

ଦିନେ ସକାଳୁ ଓଦା ଲୁଗା ପରିଧାନ କରିଥିବା ରାଣୀହାଟ ବାସୀ ଜଣେ ଦୀର୍ଘକାୟ ବ୍ୟକ୍ତି ଓଦା ଗାମୁଛା କାନ୍ଧରେ ପକାଇ ଆମର ଛାତ୍ରାବାସର ପ୍ରତ୍ୟେକ କୋଠରୀ ସାମନାରେ ସାଷ୍ଟାଙ୍ଗ ପ୍ରଣିପାତ କରିବାରେ ଲାଗିଥିବାର ଦୃଶ୍ୟ ଆମେ ଦେଖିବାକୁ ପାଇଲୁ । ଆମ କୋଠରୀ ସାମନାକୁ ଆସିବାରୁ ସେ ସେପରି କରୁଥିବାର କାରଣ କ'ଣ ବୋଲି ଆମେ ପଚାରିବାରୁ ସେ ପ୍ରଥମେ ପରେଶବାବୁଙ୍କ କୋଠରୀ ଆଡ଼କୁ କରୁଣ ଦୃଷ୍ଟି ନିକ୍ଷେପ କଲେ । ପରେଶବାବୁ ବୀରଦର୍ପରେ ସେଠାରେ ଦୁଆରକୁ ଆଉଜି ଠିଆ ହୋଇ ହାତରେ ସୁନାହାରଟାଏ ଧରି ମୁରୁକି ମୁରୁକି ହସୁଥିଲେ । ସେହି ରାଣୀହାଟ ବାସୀ ବାରଣ ସତ୍ତ୍ୱେ ଛାତ୍ରାବାସ ସ୍ନାନାଗାରରେ ସ୍ନାନ କରୁଥିବାର ଦେଖି ପରେଶ ବାବୁ ତାଙ୍କ ବେକରୁ ହାରଟା ଛଡ଼ାଇ ନେଇ ପ୍ରାୟଶ୍ଚିତ ପାଇଁ ସେପରି ଦଣ୍ଡବିଧାନ କରିଥଲେ । ପରେ ରାଣୀହାଟରେ ସେପରି ଦଣ୍ଡର କୌଣସି ପ୍ରତିକ୍ରିୟା ମଧ ପ୍ରକାଶ ପାଇ ନ ଥିଲା ।

ଫୁଟବଲ ଖେଳ ପଦ୍ଧତିରେ ମେଡ଼ିକାଲ ସ୍କୁଲ ଛାତ୍ରଙ୍କର ଖୁବ୍ ନାମ ଥିଲା । ରେଭେନ୍‌ସା କଲେଜ ଓ ଇଞ୍ଜିନିୟରିଂ ସ୍କୁଲର ଛାତ୍ରମାନଙ୍କ ସହିତ ସେମାନଙ୍କ ପ୍ରତିଯୋଗୀତା ହେଉଥିଲା । ଖେଳରେ ଖଣ୍ଡିଆ ଖାବରା ହେଲେ ଚିକିତ୍ସା ପାଇଁ ଅଣାହେବାକୁ ମେଡ଼ିକାଲ ପିଲାଙ୍କ ସଙ୍ଗେ ଆମ୍ବୁଲାନ୍‌ସଟିଏ ଅନ୍ୟ ଖେଳ ପଡ଼ିଆକୁ ଯାଉଥିଲା । ସେ ଆମ୍ବୁଲାନ୍‌ସରେ ମଣିଷର ଇୟା ଗୋଡ଼ହାତ ମାନ ଲୁଚାହୋଇ ନିଆଯାଇ ବେଳେବେଳେ ମାରପିଟ୍‌ରେ ସାହାଯ୍ୟ କରୁଥିବା ମଧ ଶୁଣାଯାଉଥିଲା ।

ମେଡ଼ିକାଲ ସ୍କୁଲ ଥିଏଟର ମଧ ଓଡ଼ିଶାରେ ବିଖ୍ୟାତ ଥିଲା । ଶିକ୍ଷକମାନେ ଛାତ୍ରାବାସକୁ ଆସି ଛାତ୍ରମାନଙ୍କୁ ଶଯ୍ୟାରୁ ଉଠାଇ ନେଇ ରିହରସଲ କରାଉଥିଲେ ।

ଛାତ୍ରୀମାନେ ଥିଏଟରରେ ଯୋଗଦେବା ପ୍ରଚଳିତ ନ ଥିବାରୁ ପୁଅ ପିଲାମାନେ ଝିଅ ବେଶରେ ଅଭିନୟ କରୁଥିଲେ । ଥରେ ଗୋଟିଏ ଥିଏଟରରେ ପିଲାର ପାର୍ଟ କରିବା ପାଇଁ ଅଳ୍ପ ଉଚ୍ଚର ବାଳକଟିଏ ଖୋଜା ପଡ଼ିଲା । ସେହି ସମୟରେ ବଳଙ୍ଗା ଯାତ୍ରାପାର୍ଟି କଟକ ଆସି ଅଭିନୟ କରୁଥିଲେ । ସେଥିରେ ପିଲା ପାର୍ଟ ମଧ୍ୟ ଅଭିନୀତ ହେଉଥିଲା । ସେଥିରେ ପାର୍ଟ କରୁଥିବା ଶ୍ରୀ ସାହୁ ଅଳ୍ପ ଉଚ୍ଚ ପିଲାଟି ପରି ଦିଶୁଥିଲେ ମଧ୍ୟ ମାଇନର ପାଶ୍ କରି ଆର୍ଥିକ ଦୂରବସ୍ଥା ଯୋଗୁ ଅଧିକା ପଢ଼ି ନ ପାରି ସେ ଯାତ୍ରା ଦଳରେ ଯୋଗ ଦେଇଥିଲେ । ତାଙ୍କୁ ମେଡ଼ିକାଲର ସ୍କୁଲ ଥିଏଟରରେ ପାର୍ଟ ନେବାକୁ ଅନୁରୋଧ କରାଯିବାରୁ ସେ କହିଥିଲେ, ତାଙ୍କୁ ମେଡ଼ିକାଲର କମ୍ପାଉଣ୍ଡର ଟ୍ରେନିଂରେ ସ୍ଥାନ ଦେଇ ପାରିଲେ , ସେ ସେହି ଦଳ ଛାଡ଼ି ମେଡ଼ିକାଲ ଛାତ୍ର ଭାବେ ତାଙ୍କ ଥିଏଟରରେ ଯୋଗ ଦେଇପାରିବେ ।

ମେଡ଼ିକାଲ ଥିଏଟର ଉଦ୍ୟୋକ୍ତା ଦଳ ସେ ବିଷୟରେ ତତ୍‌କାଳୀନ ସୁପରିନ୍‌ଟେଣ୍ଡେଣ୍ଟ ଓ ଶିକ୍ଷକମାନଙ୍କୁ କହି ଶ୍ରୀ ସାହୁଙ୍କୁ କମ୍ପାଉଡ଼ର ଟ୍ରେନିଂରେ ଯୋଗ ଦେବାର ବ୍ୟବସ୍ଥା କରି ତାଙ୍କ ରହିବା ଖାଇବା ପ୍ରଭୃତିର ବନ୍ଦୋବସ୍ତ କରି ଦେବାରୁ ସେ ବଳଙ୍ଗା ଯାତ୍ରାପାର୍ଟି ଛାଡ଼ି ମେଡ଼ିକାଲ ଥିଏଟରରେ ପାର୍ଟ ନେଇ ସେ ଥିଏଟରକୁ କୃତକାର୍ଯ୍ୟ କରାଇ ପାରିଥିଲେ ।

ସେହି ସାହୁବାବୁ ଭାଗ୍ୟ ଓ ଅଧ୍ୟବସାୟ ଫଳରେ କମ୍ପାଉଡ଼ରିଙ୍ଗ ଟ୍ରେନିଂ ପରେ ଜଣେ ବନ୍ଧୁଙ୍କ ସଙ୍ଗେ କଲିକତା ଯାଇ ଘରୋଇ ଭାବରେ ମାଟ୍ରିକ ପରୀକ୍ଷା ପାଶକରି କଟକ ଫେରିଆସି ମେଡ଼ିକାଲ ସ୍କୁଲରେ ପଢ଼ିଲେ । ସେଠାରୁ ଏଲ. ଏମ. ପି ପାଶ କରି ବହୁଦିନ ସରକାରୀ ଚାକିରି କରି ନାମ ଓ ଧନ ଅର୍ଜନ କଲେ । ମେଡ଼ିକାଲ କଲେଜ ଖୋଲିବା ପରେ କଣ୍ଡେନସ୍ କୋର୍ସ ଆରମ୍ଭ ହେବାରୁ ସେଥିରେ ଯୋଗଦେଇ ଏମ. ବି. ବି. ଏସ ପାଶ କରି ଶେଷରେ ଜିଲ୍ଲା ମେଡ଼ିକାଲ ଅଫିସର ରୂପେ କାର୍ଯ୍ୟ କରି ଅବସର ନେଇଥିଲେ ।

ମେଡ଼ିକାଲ ସ୍କୁଲ ପିଲାଙ୍କ ପ୍ରତିପତ୍ତି ଯୋଗୁଁ ସାହୁବାବୁ ସେପରି ଉଚ୍ଚସ୍ଥାନକୁ ଆରୋହଣ କରିବାର ବାଟ ପାଇଥିଲେ । ସେହି ଛାତ୍ରାବାସକୁ ବାହାର ଲୋକ ଆସିବାକୁ ଡରୁଥିଲେ ମଧ୍ୟ ସେଠାରେ ଜଣା ମାଗୁଣିଆ ବାରିକର ଅଖଣ୍ଡ ପ୍ରତିପତ୍ତି ରହିଥିଲା । ମାଗୁଣିଆ ସକାଳରୁ ଆସି ପ୍ରାୟ ଉପରଓଳି ୫ଟା ପର୍ଯ୍ୟନ୍ତ ସେ ଛାତ୍ରାବାସରେ ଖିଅରବାର କରିବା ସଙ୍ଗେ ସଙ୍ଗେ ଛାତ୍ରବାସର ତତ୍ତ୍ୱ ନେଇ ଜଗୁଆଳପରି ଜଗି ରହିଥିଲା । ପିଲାଙ୍କ କୋଠରୀ ଓ ଜିନିଷପତ୍ର ପ୍ରତି ତା'ର ତୀକ୍ଷ୍ଣ ଦୃଷ୍ଟି ରହିଥିଲା । ଛାତ୍ରାବାସକୁ କିଏ ଗଲା ଆଇଲା

ତା'ର ହିସାବ ରଖୁଥିଲା । କୌଣସି ପିଲା ନ ଥିଲା ବେଳେ ତାଙ୍କ ଗ୍ରାମରୁ କେହି ଅଭିଭାବକ ବା ଲୋକ ଆସିଲେ, ସେ ତାଙ୍କୁ ବାକ୍ୟାମୃତରେ ପ୍ରୀତ କରାଇ ସେ ଛାତ୍ରର ବହୁ ପ୍ରଶଂସା ଗାଇ ସେ ଲୋକଙ୍କୁ ପିଲା ଫେରିବା ପର୍ଯ୍ୟନ୍ତ ଘଣ୍ଟା ଘଣ୍ଟା ଅଟକେଇ ରଖି ପାରୁଥିଲା । ମାଗୁଣିଆ ବ୍ୟତୀତ ଗଣେଶା ଗଉଡ଼ ତା' କ୍ଷୀର ଠେକି ଧରି ଛାତ୍ରାବାସରେ କ୍ଷୀର ବ୍ୟବସାୟ କରୁଥିଲା । ତା'ର ସ୍ୱଳ୍ପ ଗାଈ ଥିଲେ ମଧ୍ୟ ସେ ପାଇପ ଜଳ ସାହାଯ୍ୟରେ ସମସ୍ତଙ୍କୁ କ୍ଷୀର ଯୋଗାଇ ସନ୍ତୁଷ୍ଟ କରି ପାରୁଥିଲା । ଗୋଟିଏ ଅଣ୍ଟା ଇଇଁଥିବା ପାକୁଆ ବୁଢ଼ା ପେଡ଼ା ଆଟିକାଟିଏ ଧରି ଛାତ୍ରାବାସରେ ପିଲାଙ୍କୁ ପେଡ଼ା ଯୋଗାଇବା ସଙ୍ଗେ ସଙ୍ଗେ ଥଟ୍ଟାଟାପରାର ସୁଯୋଗ ଦେଇ ଛାତ୍ରାବାସର ପରିବେଶକୁ ସରସ କରି ରଖୁଥିଲା ।

## ମେଡ଼ିକାଲ କଲେଜ ଗଠନ :

ପରାଧୀନ ଭାରତର ଦରିଦ୍ରତମ ପ୍ରଦେଶରେ ଯୁଦ୍ଧକାଳୀନ ଅର୍ଥାନଟନ ଭିତରେ ଓଡ଼ିଶା ମିଳିତ ମନ୍ତ୍ରୀମଣ୍ଡଳର ଦେଶପ୍ରେମୀ ମନ୍ତ୍ରୀମାନେ ସାହସର ସହିତ ଉତ୍କଳ ଇଉନିଭରସିଟି ଓ ମେଡ଼ିକାଲ କଲେଜ ସ୍ଥାପନ କରିଦେଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ରେଭେନ୍‌ସା କଲେଜ ଉପରେ ଏବଂ ମେଡ଼ିକାଲ କଲେଜ ପୂର୍ବତନ ମେଡ଼ିକାଲ ସ୍କୁଲର ସମ୍ବଳ ଉପରେ ନିର୍ଭରଶୀଳ ଥିଲା ।

ବିଶ୍ୱବିଦ୍ୟାଳୟ ପାଇଁ ଗୁଡ଼ିଏ କଲେଜ ଓ ଶିକ୍ଷା ଅନୁଷ୍ଠାନର ଯେପରି ଆବଶ୍ୟକତା ରହିଥିଲା, ମେଡ଼ିକାଲ କଲେଜ ପାଇଁ ଇଣ୍ଡିଆନ ମେଡ଼ିକାଲ କାଉନସିଲର ସ୍ୱୀକୃତି ପାଇବା ପାଇଁ ଅନେକ ଗୁଡ଼ିଏ ସର୍ତ୍ତ ପୂରଣ କରିବାର ଥିଲା । ସେପରି ସ୍ୱୀକୃତି ନ ମିଳିଲେ ସେ କଲେଜରୁ ପାଶ୍ କରିଥିବା ଡିଗ୍ରୀ କୌଣସିଠାରେ ଚଳିବା ସମ୍ଭବ ନ ଥିଲା ତେଣୁ ଅନ୍ୟଠାରେ  ଡାକ୍ତରୀ କରିବା ବା ସ୍ନାତକୋତ୍ତର ପାଠ ପଢ଼ିବା ସମ୍ଭବ ନ ଥିଲା ।

ମେଡ଼ିକାଲ କାଉନସିଲର ନିର୍ଦ୍ଦେଶ ପୂରଣ କରିବା ପାଇଁ ଯଥେଷ୍ଟ ରୋଗ ଶଯ୍ୟା, ଯନ୍ତ୍ରପାତି, ବିଭିନ୍ନ ବିଭାଗ ପାଇଁ ଉପଯୁକ୍ତ ଗୃହ ଏବଂ ସର୍ବୋପରି ତାଲିମ୍ ପ୍ରାପ୍ତ ଶିକ୍ଷକଙ୍କର ପ୍ରୟୋଜନ ଥିଲା । ପୂର୍ବରୁ ପ୍ରତିବର୍ଷ ମାତ୍ର ଚାରିଜଣ ଡକ୍ତରୀଡ଼ିଗ୍ରୀ ପାଠ ପାଇଁ ପାଟନା ମେଡ଼ିକାଲ କଲେଜକୁ ପଠାଯାଉଥିବାରୁ ଓଡ଼ିଶାରେ ଡିଗ୍ରୀଧାରୀ ଡାକ୍ତରଙ୍କ ସଂଖ୍ୟା ବହୁତ କମ୍ ଥିଲା । ସେମାନେ ଆସିଷ୍ଟାଣ୍ଟ ସର୍ଜନ ଭାବରେ ସଦର ଓ ସବଡ଼ିଭିଜନାଲ ଡ଼ାକ୍ତରଖାନା ମାନଙ୍କରେ କାର୍ଯ୍ୟ କରୁଥିଲେ । ସେମାନଙ୍କ ଭିତରୁ ପ୍ରାୟ କାହାର ସ୍ନାତକୋତ୍ତର ଡ଼ିଗ୍ରୀ ବା ମେଡ଼ିକାଲ କଲେଜରେ ଶିକ୍ଷକତା କରିବାର ଯୋଗ୍ୟତା ନ ଥିଲା ।

ଓଡ଼ିଶା ମେଡ଼ିକାଲ କଲେଜ ଚଳାଇବା ପାଇଁ, ଭାରତର ଅନ୍ୟ ମେଡ଼ିକାଲ କଲେଜ ମାନଙ୍କରୁ ଅବ୍ୟାହତି ନେଇଥିବା ପ୍ରବୀଣ ଅଧ୍ୟାପକଙ୍କୁ ଠିକା ବା ଅସ୍ଥାୟୀ ନିଯୁକ୍ତିରେ

ଆଣି ବିଭିନ୍ନ ବିଭାଗର ଅଧ୍ୟାପକ ପଦରେ ରଖାଇଥିଲେ । ତା' ସଙ୍ଗେ ସଙ୍ଗେ ଆସିଷ୍ଟାଣ୍ଟ ପ୍ରଫେସର ପଦରେ ନିଯୁକ୍ତି ଦେଇ ସ୍ନାତକୋତ୍ତର ଉପାଧି ଓ ଶିକ୍ଷା ଅଭିଜ୍ଞତା ହାସଲ ପାଇଁ ବିଲାତ ପଠାଇବାର ବ୍ୟବସ୍ଥା କରାଇଥିଲେ ।

ପୂର୍ବରୁ ଇଂରେଜ ସରକାର ଓଡ଼ିଶାରୁ ବହୁ ଡିପ୍ଲୋମାଧାରୀ ଡାକ୍ତର ଓ କତିପୟ ଡିଗ୍ରୀଧାରୀ ଡାକ୍ତରଙ୍କୁ ବିଶ୍ୱଯୁଦ୍ଧରେ ଯୋଗ ଦେବା ପାଇଁ ପଠାଇ ଦେଇଥିଲେ । ଓଡ଼ିଶାର ଡାକ୍ତରୀ ବିଭାଗରେ ଡାକ୍ତରଙ୍କର ଅତ୍ୟନ୍ତ ଅଭାବ ଦେଖାଯାଇଥିଲା । ଅବସରପ୍ରାପ୍ତ ବୃଦ୍ଧ ଡାକ୍ତରମାନଙ୍କୁ ପୁନର୍ନିଯୁକ୍ତି ଦେଇ ଡାକ୍ତରଖାନା ମାନଙ୍କୁ କୌଣସି ମତେ ଚଳାଯାଉଥିଲା । ସେଥିପାଇଁ ଓଡ଼ିଶା ମେଡ଼ିକାଲ କଲେଜରେ ବାହାରୁ ଆସିଥିବା ବଡ଼ ବଡ଼ ପ୍ରଫେସରଙ୍କ ଛଡ଼ା ତଳିଆ ପଦମାନଙ୍କର କାର୍ଯ୍ୟ ଚଳାଇବାକୁ ପ୍ରାୟ ଅନ୍ୟ ଡାକ୍ତର କେହି ନ ଥିଲେ ।

ପାଟନା ମେଡ଼ିକାଲ କଲେଜର ଅବସରପ୍ରାପ୍ତ ସୁନାମଧନ୍ୟ ଆନାଟେମି ମୁଖ୍ୟ ଅଧ୍ୟାପକ ଡାକ୍ତର ସନାତନ ପୂଜାରୀ ଆମ କଲେଜରେ ଆନାଟମିର ମୁଖ୍ୟ ଅଧ୍ୟାପକ ଭାବେ ଯୋଗ ଦେବା ସଙ୍ଗେ ସଙ୍ଗେ କଲେଜର ଅଧ୍ୟକ୍ଷ କାର୍ଯ୍ୟ ମଧ୍ୟ ଚଳାଉଥିଲେ । ପୂଜାରୀ ସାହେବ ସମ୍ବଲପୁରର ଜଣେ ସ୍ୱାଭିମାନୀ ଓଡ଼ିଆ ଥିଲେ । ସେ ଜଣେ ଡିପ୍ଲୋମାଧାରୀ ଡାକ୍ତର ଥିଲେ ମଧ୍ୟ ତାଙ୍କ ଯୋଗ୍ୟତା ବଳରେ ସେ ପାଟନା ମେଡ଼ିକାଲ କଲେଜର ଆନାଟମି ବିଭାଗର ଶିକ୍ଷକ ପଦ ପାଇପାରିଥିଲେ । ଗୋଟିଏ ନିଯୁକ୍ତି ପ୍ରତିଯୋଗୀତାରେ ସେ ବିଲାତର ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତ ଡାକ୍ତର, ଶିକ୍ଷକ ଓ ଅନ୍ୟ ପ୍ରବୀଣ ଶିକ୍ଷକଙ୍କ ସହିତ ଯୋଗ ଦେଇ, ତାଙ୍କର ଶିକ୍ଷାଦାନ ପ୍ରଣାଳୀ ସମସ୍ତଙ୍କଠାରୁ ଉଚ୍ଚ ଧରଣର ହେବାରୁ ସେ ଡ଼ିଗ୍ରୀଧାରୀ ନ ହେଲେ ମଧ୍ୟ ପାଟନା କଲେଜରେ ଆନାଟମିର ମୁଖ୍ୟ ଅଧ୍ୟାପକ ପଦରେ ନିଯୁକ୍ତ ହୋଇ ପାରିଥିଲେ ।

ଓଡ଼ିଶାରେ ମେଡ଼ିକାଲ କଲେଜଟିଏ ସ୍ଥାପିତ ହେବା ପାଇଁ ପୂଜାରୀ ସାହେବଙ୍କ ପ୍ରାଣ ବ୍ୟାକୁଳ ଥିଲା । ଶିକ୍ଷକ ଅଭାବ, ଶିକ୍ଷାଗୃହ, ରୋଗୀ ନିବାସ ଓ ଶିକ୍ଷକ ନିବାସ ପ୍ରଭୃତିର ଅଭାବ ସତ୍ତ୍ୱେ ସେ ସେହି ଅର୍ଥ ଅନଟନ ସମୟରେ ସେହି କଲେଜର ଉନ୍ନତି ସାଧନ ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲେ । ସେ ନିଜେ ସରକାରୀ ଘର ନ ପାଇ ମଙ୍ଗଳାବାଗରେ ଗୋଟିଏ ଭଡ଼ା ଘରେ ରହୁଥିଲେ । ସେ ଶିକ୍ଷାପ୍ରାଣ ଓ ଅତ୍ୟନ୍ତ ଛାତ୍ରବତ୍ସଳ ଥିବାରୁ ବଡ଼ ଆଶାବାଦୀ ଥିଲେ । ତେଣୁ ସେ କୌଣସି ପ୍ରତିବନ୍ଧକକୁ ଖାତିର ନ କରି ଆଗେଇ ଯିବାକୁ ଚେଷ୍ଟା କରୁଥିଲେ ।

ମୁଁ ମେଡ଼ିକାଲରେ ପ୍ରବେଶ କରିବାର ଅଳ୍ପ କେତେମାସ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ହେଲା । ଜାପାନର ହିରୋସୀମାରେ ଆମେରିକା ଆଟମ୍‌ବମ୍ ପକାଇବାରୁ

ଯୁଦ୍ଧରେ ଇଂରେଜଙ୍କ ମିତ୍ରପକ୍ଷ ଜୟଲାଭ କଲେ । ସେହି ଆଟମ୍ ବୋମା ପାଇଁ ଆମେ ମିତ୍ରପକ୍ଷକୁ ଅତି ନିର୍ମମ ଓ ଜଘନ୍ୟ ହତ୍ୟାକାରୀ ବୋଲି ମନେ କରୁଥିଲୁ ।

**ପୂଜାରୀ ସାହେବଙ୍କ କଲେଜ ପ୍ରୀତି:**

ଇଂରେଜ ସରକାରଙ୍କ ଦ୍ୱାରା ଭାରତ ସାରା ମିତ୍ରପକ୍ଷଙ୍କ ବିଜୟ ଉତ୍ସବ ପାଳନ ପାଇଁ ସରକାରୀ ନିର୍ଦ୍ଦେଶ ଦିଆଯାଇଥିଲା । ଆମ କଲେଜରେ ଇଂରେଜଙ୍କ ଜୟଗାନ କରି 'ଇଉନିଅନଜାକକୁ' (ବ୍ରିଟିଶ୍ ପତାକା) ସମ୍ମାନ ଦେଖାଇ ସେହି ଉତ୍ସବ ପାଳନ ପାଇଁ ବିଜ୍ଞପ୍ତି ପ୍ରକାଶ ପାଇଲା । ଆମ୍ଭେମାନେ ସେ ଉତ୍ସବରେ ଯୋଗ ଦେବୁନାହିଁ ବୋଲି ଜିଦ୍ ଧରି ଅଧକ୍ଷଙ୍କୁ ଜଣାଇଦେଲୁ ।

ଅଧକ୍ଷ ସେ ଖବର ପାଇବା ସଙ୍ଗେ ସଙ୍ଗେ ଆମ ଛାତ୍ରାବାସରେ ଆସି ପହଞ୍ଚିଗଲେ । ସେ ଛଳ ଛଳ ଆଖିରେ କହିଲେ ''ବାବୁ ! ତୁମମାନଙ୍କ ପରି ମୁଁ କଅଣ ଭାରତର ସ୍ୱାଧୀନତା ଚାହେନାହିଁ ? ଇଂରେଜଙ୍କ ଉତ୍ସବରେ ଯୋଗ ଦେଇ ତାଙ୍କ ବିଜୟ ପାଇଁ ଗୁଣଗାନ କରିବାକୁ କ'ଣ ମୋର ପ୍ରାଣ ଡାକୁଛି ? କିନ୍ତୁ ଏ ଶିଶୁ ଅନୁଷ୍ଠାନର ସ୍ୱାର୍ଥ ଓ ପ୍ରଗତି ପାଇଁ ଆମକୁ ଯଥେଷ୍ଟ ତ୍ୟାଗ କରିବାକୁ ପଡ଼ିବ । ଆମର ଏ ନୂଆ କଲେଜଟିକୁ ଠିଆ କରାଇବାକୁ ହେଲେ ସେଥିପାଇଁ କେଉଁବେଳେ କୌଣସେ ସରକାରଙ୍କଠାରୁ ଅନୁଦାନ ଆଦାୟ କରିବାକୁ ପଡ଼ିବ, ତେଣୁ ଆମକୁ ଭଲ ନ ଲାଗିଲେ ମଧ ସେହି ଉତ୍ସବ ପାଳନରେ ଯୋଗ ଦେବାକୁ ପଡ଼ିବ । ମୁଁ ମଧ ତୁମ ଭିତରେ ଜଣେ । ତୁମେ ଯୋଗ ନ ଦେଲେ ମୁଁ ଯୋଗ ଦେବି ନାହିଁ । କଲେଜ ବିରୁଦ୍ଧରେ ରିପୋର୍ଟ ହେବ ଓ କଲେଜ ସ୍ୱାର୍ଥରେ ବାଧା ପଡ଼ିବ । 'ଢୋକେ ପି, ଦଣ୍ଡେ ଜି' ଅବସ୍ଥାରେ ଏବେ ଆମ କଲେଜ ରହିଛି । କଲେଜ ବନ୍ଦ ହୋଇଯିବା କ'ଣ ତୁମ ଇଚ୍ଛା । ତାଙ୍କର ସେପରି କଥାରେ ଆମେ ପୂଜାରୀ ସାହେବଙ୍କର ଜାତିପ୍ରାଣତା ଓ କଲେଜ ପ୍ରତି ଅନୁରାଗ ଅନୁଭବ କରି ତାଙ୍କ ପଛେ ପଛେ ଯାଇ ସେ (ଉତ୍ସବ) ସଭାରେ ଯୋଗ ଦେଲୁ ।

ମାନବର ବ୍ୟକ୍ତିତ୍ୱ ପ୍ରଭାବରେ ହିଂସ୍ର ଜନ୍ତୁ ମଧ ବଶ ହୋଇ ହିଂସ୍ର ସ୍ୱଭାବ ଛାଡ଼ି ଦେବାର ବହୁ ଦୃଷ୍ଟାନ୍ତ ରହିଛି । ସେଥିରେ ତା'ର ଜୀବନର ମୋଡ଼ ସଂପୂର୍ଣ୍ଣ ବଦଳି ଯାଇପାରେ । ୧୯୩୯ରୁ ୧୯୪୫ ପର୍ଯ୍ୟନ୍ତ ମୋର ବାରବୁଲା ରାଜନୀତିକ ସଂଗ୍ରାମୀ ଜୀବନରେ ଗୋଟିଏ ସ୍ଥାନରେ ସ୍ଥିର ରହି ବର୍ଷେକରୁ ଅଧିକ ବିଦ୍ୟାଧ୍ୟୟନ କରିବା ସମ୍ଭବ ହୋଇ ପାରି ନଥିଲା । ଭୋଳି ପଣ୍ଡାଙ୍କ ଅକାତର ସାହାଯ୍ୟ, ପ୍ରିନ୍ସିପାଲ ପ୍ରଶାନ୍ତ ବୋଷଙ୍କ ମହାନୁଭବତା, ଓ୍ୱାର୍ଡ଼ ସାହେବଙ୍କ ନିର୍ଦ୍ଦେଶ ଓ ପୂଜାରୀ ସାହେବଙ୍କ ଛାତ୍ରବତ୍ସଳତା ପ୍ରଭୃତିର ପ୍ରଭାବ ଦ୍ୱାରା ମୋ ବାରବୁଲା ଜୀବନର ମୋଡ଼ ସଂପୂର୍ଣ୍ଣ ରୂପେ ବଦଳିଗଲା । ପାଞ୍ଚବର୍ଷ ସ୍ଥିର ରହି ମୋ ମେଡ଼ିକାଲ ପାଠକୁ ଆୟତ୍ତ କରିବା ପାଇଁ ମୁଁ ସଂକଳ୍ପ ନେଲି ।

ମୁଁ ରାଜନୀତିକୁ ମୋ ଜୀବନରୁ ପୂରା ବାଦ୍ ଦେଇ ଚିକିତ୍ସା ମାଧ୍ୟମରେ ଦେଶସେବା ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଦୃଢ଼ ପ୍ରତିଜ୍ଞ ହେଲି । ରାଜନୀତିରେ ଆଉ ଘାଣ୍ଟି ନ ହେବାର ଗୋଟିଏ ପ୍ରଧାନ କାରଣ ଥିଲା, ଭାରତର ରାଜନୀତି ପଙ୍କିଳ ହୋଇ ଆସୁଥିବା ମୁଁ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ଏକ ପ୍ରକାର ପରିସମାପ୍ତି ଘଟିଥିବାର ମୋର ଧାରଣା ହୋଇଥିଲା ।

ମେଡ଼ିକାଲ ପଢ଼ାର ଆଦି ପର୍ବରେ ମୋର ପୁରାତନ ସଂଗ୍ରାମୀ ସାଥୀମାନେ ମୋତେ ପ୍ରାଦେଶିକ ଓ ମହାଭାରତୀୟ ରାଜନୀତି ଆଡ଼କୁ ପୁଣି ଆକୃଷ୍ଟ କରିବାକୁ ଚେଷ୍ଟା କରି ବିଫଳ ହେଲେ । ମୋର ପୂର୍ବତନ ସାଥୀ ଚିନ୍ତାମଣି ପାଣିଗ୍ରାହୀ କଲିକତାରୁ ପାଠ ଶେଷ କରି ଓଡ଼ିଶା ରାଜନୀତିରେ ଯୋଗ ଦେବା ପାଇଁ କଟକ ଫେରିଲେ । ଗଞ୍ଜାମର ମହେନ୍ଦ୍ର ପର୍ବତ ନିକଟରେ ବସୁଥିବା ଉତ୍କଳ ସମ୍ମିଳନୀର ଅଧିବେଶନରେ ଯୋଗ ଦେବା ପାଇଁ ମୁଁ ତାଙ୍କ ସଙ୍ଗରେ ଯିବାକୁ ଅନୁରୋଧ କଲେ । ମେଡ଼ିକାଲ ବିଦ୍ୟା ବଡ଼ କଠିନ ଓ ସେଥିରେ ଏକନିଷ୍ଠ ହୋଇ ଲାଗିବା ନିମନ୍ତେ ପ୍ରୟୋଜନ ମଣି ମୁଁ ଆଉ କୌଣସି ରାଜନୈତିକ ଅନୁଷ୍ଠାନ ବା ସଭା ସମିତିରେ ଯୋଗ ଦେଇ ପାରିବି ନାହିଁ ବୋଲି ତାଙ୍କୁ ଜଣାଇ ଦେଇଥିଲି । ସେହିଦିନ ଠାରୁ ଆମ ଦୁଇ ଅନ୍ତରଙ୍ଗ ସାଥୀଙ୍କର ଜୀବନ ପୃଥକ ପୃଥକ ପଥରେ ଆଗେଇ ଚାଲିଲା ।

ମୁଁ ୧୯୪୫ ଜୁନ-ଜୁଲାଇରେ ମେଡ଼ିକାଲ କଲେଜରେ ଯୋଗ ଦେଇଥିଲି । ତା' ପୂର୍ବରୁ ୧୯୪୫ ଫେବ୍ରୁଆରୀ ୪ ତାରିଖରେ ଆଜାଦ ହିନ୍ଦ୍ ଫୌଜ ଭାରତ ଆକ୍ରମଣ କରି ମାର୍ଚ୍ଚ ପନ୍ଦର ତାରିଖରେ ଭାରତ-ବର୍ମା ସୀମାନ୍ତ ଅତିକ୍ରମ କରି ଭାରତର ମଣିପୁରରେ ପହଞ୍ଚି ଇମ୍ଫାଲ ନିକଟରେ ଭାରତର ସ୍ୱାଧୀନତା ଧ୍ୱଜା ତ୍ରିରଙ୍ଗ ପତାକା ଉଡ଼ାଇଥିଲେ । ସେଥିରେ ଆମେ ସୁଭାଷପନ୍ଥୀମାନେ ଯେତିକି ଉଲ୍ଲସିତ ହୋଇଥିଲୁ, ଆଟମବମ୍ ଯୋଗୁଁ ବିଶ୍ୱଯୁଦ୍ଧର ପରିସମାପ୍ତି ଓ ଆଜାଦ ସେନାର ପତନରେ ସେତିକି ମର୍ମାହତ ଓ ମ୍ରିୟମାଣ ହୋଇପଡ଼ିଥିଲୁ ।

ପ୍ରଥମେ ଆମ ମନ ବିଷାଦରେ ଭରି ଯାଇଥିଲା, କିନ୍ତୁ ସୁଭାଷ ଇଂରେଜଙ୍କ ଭାରତୀୟ ସେନାବାହିନୀଙ୍କ ମନରେ ଯେଉଁ ବିଦ୍ରୋହାଗ୍ନି ଜାଳି ଯାଇଥିଲେ ତା' ଫଳରେ ଇଂରେଜମାନେ ବିଶ୍ୱଯୁଦ୍ଧରେ ଜୟ ଲାଭ କରି ମଧ୍ୟ, ବ୍ରିଟିଶ ସେନା ଭିତରେ ବିଦ୍ରୋହର ସୂତ୍ରପାତ ହୋଇ ସମସ୍ତ ବ୍ରିଟିଶ ସାମ୍ରାଜ୍ୟ ସଂପୂର୍ଣ୍ଣ ରୂପେ ଦୋହଲି ଯାଇଥିଲା ।

ପରାସ୍ତ ହୋଇ ଯୁଦ୍ଧବନ୍ଦୀ ହୋଇଥିବା ସୁଭାଷ ସେନାଙ୍କ ସେନାପତିମାନଙ୍କର, ଦିଲ୍ଲୀ ଲାଲକିଲ୍ଲାରେ ନଭେମ୍ବର ୧୯୪୫ରେ ବିଚାର ହେବା ବେଳେ ସାରା ଭାରତରେ ଚହଳ

ପଡ଼ିଯାଇଥିଲା । ସେଥିରେ ସୁଭାଷଙ୍କ ପନ୍ଥାକୁ ପୂର୍ବରୁ ବିରୋଧ କରୁଥିବା ପଣ୍ଡିତ ଜବାହରଲାଲ ନେହେରୁ ମଧ ଓକିଲାତି ପୋଷାକ ପିନ୍ଧି ସେମାନଙ୍କ ପାଇଁ ଓକିଲାତି କରିବାକୁ ପ୍ରସ୍ତୁତ ହୋଇ ଯାଇଥିଲେ । ସେତେବେଳେ ଆମେ ପୂର୍ବତନ ସୁଭାଷପନ୍ଥୀ କର୍ମୀମାନେ ଓଡ଼ିଶାରେ ଗୋଟିଏ ''ଆଜାଦ-ହିନ୍ଦ୍-ଫୌଜ'' ସାହାଯ୍ୟ ପାଣ୍ଠି ଖୋଲିଥିଲୁ ।

ମୁଁ ସେଥିପାଇଁ 'ଜାତୀୟ ବାହିନୀର ଇତିହାସ' ନାମକ କ୍ଷୁଦ୍ର ପୁସ୍ତକଟିଏ ଲେଖି ସେହି ପାଣ୍ଠିର ସଭାପତି ଆମର ନେତୃସ୍ଥାନୀୟ ସଂଗ୍ରାମୀ ଯୁଗଳ କିଶୋର ପାଣିଗ୍ରାହୀଙ୍କ ନାମରେ ପ୍ରକାଶ କରାଇଥିଲି । ସେଥିରୁ ଲବ୍ଧ ଧନ ସେହି ପାଣ୍ଠିକୁ ଦିଆଯାଇଥିଲା । ବୋଧହୁଏ ସେହି ଥିଲା ମୋର ଶେଷ ରାଜନୀତିକ କାର୍ଯ୍ୟ ।



# ମେଡ଼ିକାଲ କଲେଜ ବାତାବରଣ

ମେଡ଼ିକାଲ କଲେଜରେ ପ୍ରଥମ ଦୁଇବର୍ଷ ଆନାଟେମି ଓ ଫିଜିଓଲୋଜି (ବାଓକେମେଷ୍ଟ୍ରୀ) ଅଧ୍ୟୟନ କରିବାକୁ ପଡୁଥିଲା ।

ଆନାଟେମି ବିଭାଗରେ ମୁଖ୍ୟ - ପ୍ରଫେସର ସନାତନ ପୂଜାରୀ, ସହକାରୀ ପ୍ରଫେସର ଡାକ୍ତର ରାଏକୃଷ୍ଣ ମହାନ୍ତି ଏମ୍.ବି.ବିଏସ୍, ଅଧାପକ ସୁଧାଂଶୁ ଶେଖର ବୋଷ ଏମ୍.ବି. (କଲିକତା), ଡାକ୍ତର ହରନାଥ ଜୀ ଏଲ.ଏମ.ପି. ନିଯୁକ୍ତ ହୋଇଥିଲେ । ଆନାଟେମି ପଢ଼ା ଆରମ୍ଭରୁ ଶବ ବ୍ୟବଚ୍ଛେଦ କରିବାକୁ ପଡ଼େ । ଆନାଟେମି ଡିସେକସନ ଦଳର ଟେବୁଲମାନଙ୍କ ଉପରେ ଲମ୍ୱା ଲମ୍ୱା ହୋଇ ନଗ୍ନ ଶବ ସବୁ ଶୁଆଇ ଦିଆଯାଇଥା'ନ୍ତି । ସେଠାକୁ ପଶିବା ମାତ୍ରେ ରାସାୟନିକ ପଦାର୍ଥର ଗନ୍ଧରେ ନାକ ଫାଟିଯାଏ । ଟେବୁଲମାନଙ୍କୁ ଚାହିଁବା ମାତ୍ରେ ଶୁଷ କଳା ଚମଡ଼ାର ବିକୃତ ନରନାରୀଙ୍କ ଶରୀରର ସେ ଦୃଶ୍ୟ ଦେଖି ହୃତକମ୍ପ ଜାଗ୍ରତ ହୁଏ । କେତେକ ଛାତ୍ର ସେ ଘରେ ପଶୁ ପଶୁ ମୁହଁ ବୁଲାଇ ସେ ପାଠ ଛାଡ଼ି ଚାଲିଯାଆନ୍ତି । ସେମାନଙ୍କ ଭିତରେ ବିଖ୍ୟାତ ବନ ସଂରକ୍ଷକ ଓ ଖଇରୀ ବାଘ ପାଇଁ ସୁନାମ ଅର୍ଜନ କରିଥିବା ସ୍ୱର୍ଗତ ସରୋଜ ରାଜ ଚୌଧୁରୀ ଅନ୍ୟତମ ।

ଆଉ କେତେକ ଛାତ୍ର ସେ ଘରେ କାର୍ଯ୍ୟ କରିବା ପାଇଁ ସିଗାରେଟ୍ ଧୂଆଁର ଆଶ୍ରୟ ନିଅନ୍ତି । ସେ ଯାହା ହଉ ଆନାଟେମି ପାଠରେ ଭୟ ଓ ଘୃଣାକୁ ସମ୍ପୂର୍ଣ୍ଣ ରୂପେ ଜଳାଞ୍ଜଳି ନ ଦେଲେ ସେ ପାଠ ପଢ଼ିପାରିବା ସମ୍ଭବ ନୁହେଁ । ମୁଁ ମୋର ମନକୁ ସଂଯତ କରି ମୋର ପୂର୍ବ ସ୍ୱାଧୀନତା ସୈନିକ ବେଶ, ଖଦଡ଼ ଲୁଗା, ଗେରୁଆ ଖଦଡ଼, ପଞ୍ଜାବୀ ପିନ୍ଧି ଓ ଚଟିମୋଡ଼ି ଆପ୍ରନ ଘୋଡ଼ାଇ ହୋଇ ସେ ଦୁଇବର୍ଷର ପାଠ ଶେଷ କରିଥିଲି ।

ଆନାଟେମିର ଶବ ବ୍ୟବଚ୍ଛେଦ କାର୍ଯ୍ୟ ସଙ୍ଗେ ବିରାଟ 'ଗ୍ରେ' ବହିକୁ ଏ ସେ ମୁଣ୍ଡରୁ ମୁଣ୍ଡ ପର୍ଯ୍ୟନ୍ତ ଘୋଷି ଘୋଷି ମନେ ରଖିବାକୁ ପଡ଼େ । ସେ ସମ୍ବନ୍ଧରେ ପ୍ରଫେସର ପୂଜାରୀ ଆମକୁ କହିଥିଲେ ''ତୁମକୁ ପରୀକ୍ଷା ପାଇଁ ଯେତେ ଆନାଟେମି ପାଠ ମନେ ରଖିବାକୁ ପଡ଼ିବ, ପରେ ତାକୁ ଭୁଲିବାକୁ ଚେଷ୍ଟା କରି ଯେତେ ଭୁଲିଲେ ମଧ ମନରେ ଯାହା ଅବଶିଷ୍ଟ ରହିବ ତାହା ପରବର୍ତ୍ତୀ କାଳରେ ଡାକ୍ତରୀ ଜୀବନ ପାଇଁ ଯଥେଷ୍ଟ ହେବ ।

ବିରାଟ ଆନାଟେମି (ଗ୍ରେ) ବହିଟା ନେଇ ମୋର ଗୋଟିଏ ଘଟଣା ମନେପଡୁଛି । ଆମ ଗ୍ରାମର ଜଣେ ହୋମିଓପ୍ୟାଥିକ ଡାକ୍ତର ଟ୍ରେନ୍‌ରେ ଚଢ଼ିବା ସମୟରେ ଟ୍ରେନ ଛାଡ଼ି

ଦେଲା । ସେ ଟ୍ରେନ୍ କମ୍ପାର୍ଟମେଣ୍ଟ ଦୁଆରର ଲୁହା ହାଣ୍ଡଲଟା ଧରୁ ଧରୁ ହାତ ଖସିଯାଇ ଲାଇନ କଡ଼କୁ ଗଳି ପଡ଼ିଲେ । ଆମ ଗ୍ରାମର ଜଣେ ସମାଜସେବୀ ତାଙ୍କୁ ସଙ୍ଗରେ ଆଣି ଆମ ହସପିଟାଲରେ ଭର୍ତ୍ତି କରି ତାଙ୍କର ସେବା କରୁଥିଲେ । ଆମ ସଙ୍ଗେ ପଢୁଥିବା ଜଣେ ଛାତ୍ରୀ 'ଗ୍ରେ' ଆନାଟେମି ବହିଟି ହାତରେ ଧରି ଯାଉଥିବାର ଦେଖି ସେ ସମାଜସେବୀ ମୋତେ ପଚାରିଲେ "ଏ ନର୍ସ, ତୁମେ ପଢୁଥିବା ବହିପରି ବହିଟାଏ କାହିଁକି ଧରିଛନ୍ତି ?" ମୁଁ କହିଲି ସେ ନର୍ସ ନୁହନ୍ତି, ସେ ମୋର ସହପାଠିନୀ, ସେ ମଧ ମୋ ପରି ଏହି ବହି ପଢ଼ନ୍ତି । ସେ ଗାଉଁଲି ଲୋକ, ସେ ସମୟକୁ ଆମର ବଡ଼ ଗ୍ରାମଟାରେ ଗୋଟିଏ ହେଲେ ମାଟ୍ରିକ ପଢ଼ା ଝିଅ କି ବୋହୂ ନ ଥିଲେ । ତେଣୁ ସେ ଆଶ୍ଚର୍ଯ୍ୟ ହୋଇଯାଇ କହିପକାଇଲେ "ଆରେ ଇଏ କି କାଳ ହେଲା ? ଆଳୁ ବାଇଗଣ ଭାଜି ପଖାଳ ବାଢ଼ିବା ଲୋକଙ୍କୁ ଏଠାରେ ଏତେ କଷ୍ଟ କରିବାକୁ ପଡୁଛି । ସେ'ବି ତୁମ ସଙ୍ଗେ ଏଡ଼େ ଏଡ଼େ ବହି ଧରି ଏ କଷ୍ଟ ପାଠ ପଢୁଛନ୍ତି । ଏଠାରେ ମାଆ ଜାତି ଉପରେ ଅତ୍ୟାଚାର କରାଯାଉଛି । ହଉ କିସ ପୁଣି ଦେଖା ନଯାଏ ଢିଇଁଥିଲେ ଜୀବରେ ।"

ଆନାଟେମି ମିଉଜିଅମରେ, ପିଲାମାନେ ବିଭିନ୍ନ ଅଂଶ ଚିହ୍ନିବା ପାଇଁ ମନୁଷ୍ୟର ହାଡ଼ କଙ୍କାଳ ସବୁ ଗୁନ୍ଥା ହୋଇ କଙ୍କାଳ ରୂପରେ ଟଙ୍ଗା ଯାଇଥାଏ । ମୁଁ ସେହି କଙ୍କାଳ ସାମନାରେ ଠିଆ ହୋଇ ତା' ସମ୍ବନ୍ଧରେ ଅନେକ ବାସ୍ତବ ଓ ଅବାସ୍ତବ କଥା ଭାବି ଯାଉଥାଏ । ସେତେବେଳକୁ ହାଡ଼ରୁ ସ୍ତ୍ରୀ ପୁରୁଷ ଭେଦ ଜାଣିବା ଶିଖା ଯାଇନଥାଏ ।

ଥରେ ସେପରି ଗୋଟିଏ କଙ୍କାଳକୁ ଚାହିଁ ଚାହିଁ ତା' ପ୍ରତି ସହାନୁଭୂତି ଦେଖାଇ ମୁଁ "ଜୀବନର ଶେଷ ରାଶିଫଳ" ନାମକ କବିତାଟିଏ ଲେଖିଥିଲି ।

ଏ ସୃଷ୍ଟିର ପଛପଟେ
ସଂସାରର ଆବର୍ଜନା ପରି
ହେ କଙ୍କାଳ । ସତ୍ୟ ନିୟାମକ
ତୁମ ଅଙ୍ଗ ଧରି ଧରି
ପଢ଼ାଇଲା ବେଳେ ଗୁରୁ
ବିଜ୍ଞାନ ଛାତ୍ରରେ ।

ତୁମ ପୂର୍ବ କଥା
ଭାସୁ ନଥିବ କି ତାଙ୍କ
କଳ୍ପନା ରାଜ୍ୟରେ ।

ଆଖି
ହେ କଙ୍କାଳ । ତୁମ ଆଖିଗାଡ଼

ଦୁନିଆ ଦେଖୁଛି ଯହିଁ
ଖାଲି ଭୁତ ପ୍ରେତ

ସେଥିରେ ହୁଏତ ଥିଲା
ଚପଳ ଚାହାଣୀ ଭୁଲତାରେ
ବିଚ୍ଛୁରିତ ମରମ କାହାଣୀ ।

କି'ବା ଥିଲା, ଦୁର୍ବାସାର
ଦୁର୍ଦ୍ଧର୍ଷ ଓ ଜଳ ଜଳ
ଅଗ୍ନିବର୍ଷୀ ବାଣ
ଯାହାର କୋପ ଦୃଷ୍ଟିରେ
ମୁହୂର୍ତ୍ତକେ ଭସ୍ମ ହୁଏ
ଦୋଷି ଜନ ଅଭିଶପ୍ତ ପ୍ରାଣ ।

ଥିଲା ଅବା ବ୍ୟଥିତର
କରୁଣ ଚାହାଣୀ
କିମ୍ବା ବୁଦ୍ଧ, ଶଙ୍କରର
ନିମିଳିତ, ଚକ୍ଷୁ କକ୍ଷେ
ସେ ନିର୍ଲିପ୍ତ ମାନବର
ନିର୍ବାଣର ବାଣୀ ।

ନାସା
କରତର ଦାଢ଼ ପରି ନାସା
ନାସାଗ୍ରର ହାଡ଼
କୁଷ୍ଠରୋଗୀ ନାସାଠାରୁ
ବେଶୀ ଭୟଙ୍କର
ଦିନେ ମୁଖମଣ୍ଡଳରେ
ଗର୍ବେ ରାଜିଥିଲା ସିଏ
ଗିରିଶୃଙ୍ଗ ଭଳି

ତାହାର ରେଶମ କକ୍ଷ
ଅତର ମଧୁର ବାଷ୍ପ
ଘ୍ରାଣେ ଥିଲା ପରି ।

ନାସାନିମ୍ନେ ଶୋଭୁଥିଲା
ଦୋହଲାୟିତ ଚାରୁ ବୀର କେଶ
ବାରବର୍ଷେ ଯା'ର ଦେହେ
ଅତର୍କିତେ ବାଢ଼ୁଥିଲା ହାତ

କିମ୍ବା ସେହି ନାସା ଦେହେ
ଝୁଲୁଥିଲା
ସୁବର୍ଣ୍ଣ ହୀରକ
ଯା' ଚମକ ଆକର୍ଷଣେ
ପଥହରା ହେଉଥିଲେ
ସ୍ଥବିର ଯୁବକ ।

ଭାବାବଶେ ସ୍ଫିତ ନାସା
ଘୃଣା ରୋଷେ
ନାଶିକା କୁଞ୍ଚନ

ଦୁଃଖେ ଶୋକେ
ଦୀର୍ଘଶ୍ୱାସ, ବହୁଥିଲା
ପରା ଘନ ଘନ

ମୁଖ
ସେ ମୁଖ ଗହ୍ୱର !
ଗୁପ୍ତ ବ୍ୟାଘ୍ର ଗୁମ୍ଫାଭଳି
ଗୋଟା ଗୋଟା ହାଡ଼ବାଡ଼େ
ଦିଶେ ଭୟଙ୍କର

ତାହାରି ଭିତରେ ଥିଲା
ସୂଚିକଣ ଜିହ୍ୱା
ଭରିଥିଲା ଯା'ର ମଧ୍ୟେ
ସମସ୍ତ ଚାତୁରୀ

କଥା ବଳେ ସୃଷ୍ଟି କଲା
ନିଜ ଆଉ ପର
ବଶ କରି ପାରୁଥିଲା

ପକ୍ୱବିମ୍ବାଧରୀ
ସେହି ସେ କୋମଳ ଜିହ୍ୱା
ବିବେକର ତାଡ଼ନାରେ
ମିଛ ପାଇଁ ଅଟକି ଅଟକି
ସତ ସବୁ ଯାଇଥିବା ଗାଇ ।

ଜୀବନର କେତେ ଦୋଷ
ମରମ ବେଦନା
ଅପାତ୍ରରେ ଯାଇଥିବା କହି
କର୍ଣ୍ଣଛାନେ ଯେ ଗର୍ଭଟି
ଖପୁରୀ ପାର୍ଶ୍ୱରେ
ଦିନେଥିଲା କେତେ ଯନ୍ତ୍ର ପୁରି ।

ଶୁଣିଥିଲା ସବଳର
ଭର୍ତ୍ସନା ସତତି
ଶୁଣିଥିଲା ପୁଣି ଦୁର୍ବଳର
କେତେ କି ଯେ କାକୁତି ମିନତି ।

ଛାତି
ହେ କଙ୍କାଳ
ଶୂନ୍ୟ ଏବେ ଛାତିର ଗହ୍ୱର
ଶୂନ୍ୟ ପୁଣି ତୁମର ଉଦର

ଶୂନ୍ୟ ଏବେ ତୁମ ସ୍ଫିତ ବକ୍ଷ
ବୟସେ ଯେ ଉଠିଥିଲା ଫୁଲି
ପିଲାପାଇଁ ରଖିଥିଲା
ଅମୃତ ନିର୍ଝର
ଖୋଇବାକୁ ଆଦରରେ ଡ଼ାକି

ମସ୍ତିଷ
ରୋଷ ଦ୍ୱେଷ ଅହଙ୍କାର
ପ୍ରେମ ଦୟା ନୀତି ଓ ବିଚାର
ମସ୍ତିଷରେ ସବୁଥିଲା ଭରି

ତା'ର ସଙ୍ଗେ ସୁଖଦୁଃଖ ଲୀନ
ଏବେ ଶୂନ୍ୟ
ପଡ଼ିଛି ଖପୁରୀ

ହାତ
ମୁନିଆ ମୁନିଆ ହୋଇ
ନାଟ୍ୟକାର ଅଙ୍ଗୁଠିରେ ଭଳି
ଗୁଛାଗୁଛି ହାଡ଼ର ସମଷ୍ଟି

ମନ ମଧ୍ୟେ ରଚଇ କୁହେଳି
ଏ ଅଙ୍ଗୁଠି ଦିନେ ପରା
ଛୁଇଁଥିବ କୋମଳ ଚିବୁକ
ପିନ୍ଧିଥିବ କଥାଦିଆ ମୁଦି
ଲେଖିଥିବ ଗୋପନ ଚିଟାଉ
ପୋଛିଥିବ ବିରହୀର ଲୁହ

ଅବା, ପେଟ ପାଇଁ ବିକଳରେ
ଝାଳନାଳ ହୋଇ
ମସ୍ତକରେ ଲଦିଥିବ
କଙ୍କରର ବୋଝ
କିବା ହାକିମର ଅହଂକାରେ
କରିଥିବ କେତେ କା'ର
ଭାଗ୍ୟର ବାତିଲ

ଏଇ ଆଙ୍ଗୁଠିରେ ଟଙ୍କା ଗୋଟାଇ
ଗୋଟାଇ, ମନ୍ଦିରରେ କାଙ୍ଗାଳକୁ
ଦେଉଥିବ ଅବା ଦାନ
ଦୁଇଟି ପଇସା
କିମ୍ବା ଦୁର୍ଭିକ୍ଷର ପୀଡ଼ନରେ
ରାସ୍ତାକଡ଼େ ବସି, ପତାଇଲେ
ଜୀର୍ଣ୍ଣଶୀର୍ଣ୍ଣ ହାତର ପାପୁଲି
କବି ଅବା ଦେଶସେବୀ
ଚକ୍ଷୁର କୋଟରୁ ଝରାଇତ
ଆଣିଥିବ ଦୁଇଟୋପା ଲୁହ

ଗୋଡ଼ହାଡ
ଯୋରା ଯୋରା ଏଇ ଗୋଡ଼ହାଡ
ପିନ୍ଧିଥିବ କେତେ ଅଳଙ୍କାର
କିମ୍ବା ନଗ୍ନ ଅଂଶ ଚମକ ଖେଳାଇ
ଗଣିକାର ପରି କେତେ ହୃଦେ
ଟାଣିଥିବ ଲାଳସାର ଗାର
ଉଠିଥିବ ହିମାଳୟ ବକ୍ଷେ
ପାର ହୋଇଥିବ ଅବା
ସାହାରାର ବାଲି

ଜଳବକ୍ଷେ ସଗର୍ବରେ
ଗୋଡ଼କୁ ବାଡ଼େଇ
ରଚିଥିବ କେତେ ନାବ କେଳି
ହେ କାଳର ରୁଢ଼ ଅବଶେଷ
ଭବିଷ୍ୟର ରୋଗ ନାଶ ପାଇଁ

ତୋତେ ଧରି ଗଢ଼ି ଉଠେ
କେତେ ଇତିହାସ
ହେ କଙ୍କାଳ !
ବିଜ୍ଞାନର ବାର୍ତ୍ତାବହ
ଛାତ୍ରର ସମ୍ବଳ
ଅନିତ୍ୟ ସଂସାର ବକ୍ଷେ
ତୁହି ନୁହଁ ନିତ୍ୟ
ତୁ କେବଳ, ଧୂମାୟିତ ଭବିଷ୍ୟର
ଶେଷ ରାଶିଫଳ ।

ଆନାଟେମି ଭଳି କଷ୍ଟ ଘୋଷା ପାଠକୁ ଭାବୁକ ଦୃଷ୍ଟିରେ ଦେଖି କବିତା ଲେଖା ଦ୍ୱାରା ଆୟତ୍ତ କରିବା ସମ୍ଭବ ନଥିବାରୁ ମୋର ପ୍ରଥମ ପରୀକ୍ଷାରେ ଭଲ ହୋଇନଥିଲା । ମୋର ଅନ୍ୟ ଦୁଇଜଣ ଫାଷ୍ଟ ଡ଼ିଭିଜନ ସାଥୀ ମଧ ଆନାଟେମି ପରୀକ୍ଷାରେ ଭଲ କରିନଥିଲେ ।

ପ୍ରଫେସର ପୂଜାରୀ କ୍ଲାସରେ ଆମ ଖାତା ଦେଖାଇ ଆମକୁ କହିଲେ, ‘‘ଆଇ.ଏସ୍.ସି.ରେ ଫାଷ୍ଟ ଡ଼ିଭିଜନ ପାଇଥିବାରୁ କ’ଣ ମନ ମୋଟ ହୋଇଗଲା ? ଏଠାରେ ଫାଙ୍କି ମାରୁଛ, ଏଠି ତାହା ଚଳିବନି । ଭଲକରି ପଢ଼ ସବୁଦିନର ପାଠ

ସେହିଦିନ ଶେଷ କର, ନ ହେଲେ ଫେଲ ହୋଇଯିବ ।'' ଏ'ଠି କେବଳ ବୁଦ୍ଧି ଚଳିବନି ପରିଶ୍ରମ ବି ଦରକାର । ମୁଁ ମୋର ଖାତାଟି ପାଇଲା ପରେ ତାଙ୍କୁ ଦେଖାଇ କହିଲି ''ସାର୍ ଆପଣ ଯେଉଁ ଧମନୀ କଥା ପଚାରିଥିଲେ, ମୁଁ ସେହି ଧମନୀ କେଉଁଠୁ ବାହାରି କେଉଁ ପର୍ଯ୍ୟନ୍ତ ଯାଇଛି ତାହା ତ ଲେଖିଛି, ମୋତେ ଏତେ କମ ନମ୍ବର କାହିଁକି ଦେଲେ ।'' ସେ କହିଲେ ''ଗଛର କ'ଣ, ଶାଖା ପ୍ରଶାଖା ଓ ଡାଳପତ୍ର ନାହିଁ ? ତୁମେ ଖାଲି ଥୁଣ୍ଟା ଗଛଟାକୁ ବର୍ଣ୍ଣନା କଲେ କି ନମ୍ବର ପାଇବ ?''

ଆନାଟେମି ପାଠକୁ ମନେ ରଖିବା ପାଇଁ ସେ ତୁଣ୍ଡେ ତୁଣ୍ଡେ ସଙ୍କେତ ଗୀତ ଗୁଡ଼ିକର ଦୃଷ୍ଟାନ୍ତ ଦିଅନ୍ତି । ସେ କହିଲେ ''ଛାତିର ସେ ଧମନୀ ପାଇଁ ଗୀତ ହେଲା ''କମ୍ ମାଇଁ ପେଟ୍ ସର୍ଭାଣ୍ଟ ପଲିସ୍ ମାଇଁ ସୁଜ ।'' ଏ ପ୍ରତ୍ୟେକ ଶବ୍ଦର ମୂଳ ଅକ୍ଷରଗୁଡ଼ିକ ଅନୁସାରେ ସେ ଧମନୀର ଶାଖାମାନଙ୍କ ନାମ ଆପେ ଆପେ ମନେ ପଡ଼ିଯିବ ।

ତାଙ୍କର ପଢ଼ାଇବାର ପଦ୍ଧତି କେବଳ ଗୀତରେ ସୀମିତ ନ ଥିଲା । ସେ ପଢ଼ାଇଲା ବେଳେ ଗୋଟିଏ ଲୋକକୁ ଖାଲି ଦେହରେ ଛିଡ଼ା କରାଇ ତାହା ଦେହରେ ରଙ୍ଗୀନ ଚକ ଦ୍ୱାରା ଗାର ପକାଇ ଛାତ୍ରମାନଙ୍କୁ ଶରୀରର ଶୀରା, ପ୍ରଶୀରା ପ୍ରଭୃତି ବିଭିନ୍ନ ଅଂଶ ବିଷୟରେ ବୁଝାନ୍ତି ।

ଫିଜିଓଲଜି-ବାଓକେମେଷ୍ଟ୍ରି କ୍ଲାସମାନ ମଧ୍ୟ ଆନାଟେମି କ୍ଲାସ ସଙ୍ଗେ ଚାଲିଥିଲା । କଲିକତାର ଡ଼ାକ୍ତର ଏସ. ଏମ. ବାନାର୍ଜୀ ଏମ.ବି. ଏମ. ଏସ୍. ସି. ସେଥିରେ ମୁଖ୍ୟ ଅଧ୍ୟାପକ ଥିଲେ । ସେ ତାଙ୍କ ବିଷୟକୁ ମଧ୍ୟ ଜୀବନ୍ତ କରି ପଢ଼ାଉଥିଲେ । ବୃଦ୍ଧ ବୟସରେ ପାରିକିନିସୋନିଜିମ ନାମକ ଯେଉଁ ସ୍ନାୟୁ (ଥରାବାତ) ରୋଗ ହୁଏ ତାହାର ଶରୀର ଉପରେ ଯେଉଁ ପ୍ରଭାବ ପଡ଼େ ତାହା ଦର୍ଶାଇବା ପାଇଁ ସେ ଥରି ଥରି ଯେଉଁ ଅଭିନୟ କରିଥିଲେ ତାହା ମନରେ ଏପର୍ଯ୍ୟନ୍ତ ଜୀବନ୍ତ ହୋଇରହିଛି ।

ମେଡ଼ିକାଲରେ ନାମ ଲେଖାଇବା ପରେ ରାଜନୀତି ପ୍ରତି ମୋର ବିତସ୍ପୃହ । ଆସିଥିଲେ ମଧ୍ୟ ସାହିତ୍ୟ ଚର୍ଚ୍ଚା ଓ ସାମ୍ବାଦିକତା ପ୍ରଭୃତିର ମୋହ ମୁଁ ଛାଡ଼ି ପାରିନଥିଲି । 'ନବଭାରତ ପ୍ରେସ'କୁ ପ୍ରତିଦିନ ଓଡ଼ିଶାର ବହୁ କୃତବିଦ୍ୟ ସାହିତ୍ୟିକ ଆସନ୍ତି । ସେଠାରେ ସେ ସବୁ ବିଷୟରେ ନାନା ଆଲୋଚନା ହୁଏ । ତେଣୁ ପ୍ରତିଦିନ କ୍ଲାସ ସରିବା ସଙ୍ଗେ ସଙ୍ଗେ ମୋ ସାଇକେଲ ଖଣ୍ଡକ ଆଣି ନବଭାରତ ପ୍ରେସରେ ପହଞ୍ଚି ଯାଏ । ସେଠାରେ ସାହିତ୍ୟିକ ମାନଙ୍କ ସାନିଧ ଲାଭ ସଙ୍ଗେ ସଙ୍ଗେ ପିତାଙ୍କ ପତ୍ର ପତ୍ରିକା ପାଇଁ ଲେଖା ଲେଖି କରିବାରେ ସେ ମୋତେ ନିୟୋଜିତ କରିଦିଅନ୍ତି । ଡେରିର ସମ୍ଭାବନା ଥିଲେ ପରୀକ୍ଷା ଅଛି କହି ମୁଁ ଶୀଘ୍ର ଫେରିବାକୁ ଚାହିଁଲେ ମୋର ପିତା ମୋତେ କହନ୍ତି ''ପରୀକ୍ଷା ମୁଣ୍ଡ ଉପରେ ଥିଲେ ମସ୍ତିଷ ସତର୍କ ରହି ବେଶୀ ପାଠକୁ ଅଳ୍ପ ସମୟରେ ଆୟତ୍ତ

କରିହୁଏ । ତେଣୁ ସବୁ କାର୍ଯ୍ୟ କରିବାକୁ ବେଶୀ ସମୟ ଲାଗିବ ନାହିଁ, ତୁ ଏସବୁ କାମ ସାରି କରି ଯା'' ।

ମୁଁ ଏପରି ସବୁ ସନ୍ଧ୍ୟାରେ ନବଭାରତ ପ୍ରେସକୁ ଅସୁଥିବାରୁ ମୋର ଆନାଟେମି ଘୋଷାରେ ବ୍ୟାଘାତ ଘଟୁଥିଲା । ମୁଁ ଓ ମୋର ସାଥୀ ବସନ୍ତ କୁମାର ପ୍ରଧାନ (ପରେ ଆନାଟେମି ପ୍ରାଧାପକ) ଗୋଟିଏ କୋଠରୀରେ ରହୁଥିଲୁ । ବସନ୍ତ ଆନାଟେମି ଘୋଷାରେ ଧୂରନ୍ଧର ଥିଲେ । ମୁଁ ସହରରୁ ଫେରିବା ବେଳକୁ ସେ ପରଦିନ ପାଇଁ ପାଠ ଘୋଷି ସାରିଥାଆନ୍ତି । ମୁଁ ପହଞ୍ଚିବା ପରେ ମୋ ଆଗରେ ସେସବୁ ଆବୃତ୍ତି କରି ମୁଁ ପୁନରାବୃତ୍ତି କରିବା ପାଇଁ କହନ୍ତି । ଭୁଲ ହେଲେ ସଂଶୋଧନ କରନ୍ତି । ଆନାଟେମିରେ ପ୍ରତିଦିନ କ୍ଲାସ ପରୀକ୍ଷା ହୁଏ । ସାତଦିନ ଓ ପନ୍ଦର ଦିନ ପରେ ପୁଣି ସମୂହ ପରୀକ୍ଷା ହୁଏ । ସେସବୁ ପରୀକ୍ଷା ପାଇଁ ମୋତେ ବସନ୍ତଙ୍କ ଉପରେ ନିର୍ଭର କରିବାକୁ ପଡ଼େ । ବହି ନ ଦେଖି କେବଳ ଶୁଣିଶୁଣି ମନେ ରଖୁଥିବାରୁ ମୋ ପକ୍ଷରେ ପାଠଟା ଶ୍ରୁତି ବା ବେଦରେ ପରିଣତ ହୋଇଯାଇଥିଲା । ପରୀକ୍ଷାରେ ମୋର ପାଶ୍ ହୁଏ କିନ୍ତୁ ଲେଖାରେ ବହୁ ବର୍ଣ୍ଣାଶୁଦ୍ଧି ରହିଯାଏ । ଡାକ୍ତରୀ ବିଦ୍ୟାରେ ବର୍ଣ୍ଣାଶୁଦ୍ଧି ଓ ଭାଷା ଭୁଲ ପ୍ରତି ଗୁରୁତ୍ୱ ଦିଆଯାଉ ନଥିବାରୁ ମୋର ନମ୍ବର ମିଳିବାରେ ଆଞ୍ଚ ଆସେ ନାହିଁ ।

ପ୍ରଫେସର ପୂଜାରୀଙ୍କ ତିରୋଧାନ :

ଆନାଟେମି କେବଳ ବହି ପାଠରେ ସୀମିତ ନୁହେଁ । ପ୍ରାକ୍ଟିକାଲ କାର୍ଯ୍ୟ ତାହାର ଏକ ବିଶେଷ ଅଙ୍ଗ । ନିର୍ଦ୍ଦିଷ୍ଟ ସମୟରେ ଆନାଟେମି ପ୍ରାକ୍ଟିକାଲ ବା ଶବ ବ୍ୟବଚ୍ଛେଦ ସଂପୂର୍ଣ୍ଣ କରି ପରୀକ୍ଷା ଦେବାକୁ ହୁଏ । ଆମର ପ୍ରଥମ ବର୍ଷର ଗ୍ରୀଷ୍ମଛୁଟି ଆସିଗଲା । ଆମେ ତା' ପୂର୍ବରୁ ଯେଉଁ କାର୍ଯ୍ୟ ସଂପୂର୍ଣ୍ଣ କରିବା କଥା ତାହା ସରିନଥିଲା । ଶବ ବ୍ୟବଚ୍ଛେଦ ଗୃହ ପ୍ରଫେସରଙ୍କ ଆଦେଶରେ ତାଲା ପଡ଼ିଗଲା । ତାହା ଭିତରକୁ ଯିବା ପାଇଁ ଅନୁମତି ନ ଥିଲା । ଆମକୁ ଦିଆଯାଇଥିବା ଶବର ଅଂଶ ଛୁଟି ଭିତରେ ଶୁଖି ନଷ୍ଟ ହୋଇଗଲେ ଛୁଟିପରେ ତାହା ବ୍ୟବଚ୍ଛେଦ କରିହେବନାହିଁ । ତେଣୁ ଛୁଟି ଆରମ୍ଭରେ ପ୍ରଫେସର ପୂଜାରୀ ପାଟନାକୁ ପରୀକ୍ଷକ ହୋଇଯାଇଥିବା ବେଳେ, ଜଗୁଆଳିକୁ କୁହାପୋଛାକରି ତା' ସାହାଯ୍ୟରେ ପଛ ଝରକା ବାଟେ ସେ ଘରେ ପଶି ମୁଁ ଓ ବସନ୍ତ ଶବ ବ୍ୟବଚ୍ଛେଦ କରିବାରେ ଲାଗିଗଲୁ ।

ହଠାତ୍ ଆମ ଉପର କ୍ଲାସ୍ ଛାତ୍ର ନରେନ୍ଦ୍ର ପରିଡ଼ା ଆସି ଦୁଆର ବାଡ଼େଇ ପାଟିକଲେ ''ଆରେ ଆଉ କାହାକୁ ଲୁଚୁଛ, ସବୁ ସରିଗଲା । ବେଗେ ବାହାରକୁ ଆସ ! ଆମେ ତରତରରେ ହାତ ଧୋଇ ଝରକା ବାଟେ ଡେଇଁ ବାହାରକୁ ଆସିଲୁ ।

ସେହିଦିନ ସକାଳୁ ପୂଜାରୀ ସାହେବ ପାଟନାରୁ ଫେରି ଘରେ ପହଁଚିବା କ୍ଷଣି ତାଙ୍କ ଛାତିରେ ତୀବ୍ର ଯନ୍ତ୍ରଣା ଅନୁଭବ କଲେ । ଚିକିତ୍ସକମାନେ ଖବର ପାଇ ତାଙ୍କ ନିକଟକୁ

ଦଉଡ଼ିଲେ । କିନ୍ତୁ ସେମାନେ ଆସି ପହଞ୍ଚିଲାବେଳକୁ ତାଙ୍କର ଅମର ଆତ୍ମା ସ୍ୱର୍ଗଗାମୀ ହୋଇ ସାରିଥିଲା ।

ଆମେ ଖବର ପାଇବା କ୍ଷଣି ତାଙ୍କ ଘରେ ଆସି ପହଁଚିଲୁ । ଆମ ଉପର କ୍ଲାସ ପିଲାମାନଙ୍କ ବିଶ୍ୱବିଦ୍ୟାଳୟ ଆନାଟେମି ପରୀକ୍ଷା ମାତ୍ର କେତେଟା ଦିନ ବାକି ଥିଲା, ସେମାନେ ପୂଜାରୀ ସାହେବଙ୍କୁ ହରାଇ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲେ । ପୂଜାରୀ ସାହେବ ସେ ପରୀକ୍ଷାରେ ଇଣ୍ଟରନାଲ ପରୀକ୍ଷକ । ପାଟନାର ପ୍ରଫେସର ଘୋଷ ଏକ୍ସଟରନାଲ ବା ବାହାରୁ ଆସୁଥିବା ପରୀକ୍ଷକ ନିଯୁକ୍ତ ହୋଇଥିଲେ । କଲେଜର ତାହା ପ୍ରଥମ ପରୀକ୍ଷା, ସେଥିରେ ପୁଣି ଆଇ.ଏମ.ସି.ର ପ୍ରେରିତ ଜଣେ ଅଭିଜ୍ଞ ଆନାଟେମି ପ୍ରଫେସର ସେ ପରୀକ୍ଷା ଯାଞ୍ଚ ପାଇଁ ଆସିବାର ଠିକ ହୋଇଥିଲା । ପିତୃପ୍ରତିମ ପୂଜାରୀ ସାହେବ ପ୍ରତ୍ୟେକ ଛାତ୍ରକୁ ଜାଣିଥିଲେ । ଭଲ ଛାତ୍ରଟିଏ ପ୍ରାକ୍ଟିକାଲ ବା ମୌଖିକ ପରୀକ୍ଷାରେ ଅକସ୍ମାତ୍ ଖରାପ କରି ଦେଲେ ତାଙ୍କଠାରୁ ସହାନୁଭୂତି ସୂଚକ ସାହାଯ୍ୟ ମିଳିବାର ଆଶା ଥିଲା । ତେଣୁ ତାଙ୍କ ତିରୋଧାନରେ ପରୀକ୍ଷାର୍ଥୀମାନଙ୍କ ଭିତରୁ କେତେକ ସେଠାରେ ବିକଳରେ କାନ୍ଦିକରି ଗଡ଼ିଲେ । ତା' ଛଡ଼ା ଡାକ୍ତର ପୂଜାରୀଙ୍କ ପରି ଜଣେ ଦେଶପ୍ରାଣ ନିରପେକ୍ଷ ବ୍ୟକ୍ତିଙ୍କୁ ହରାଇ ସେ ଅନୁଷ୍ଠାନ ପିତୃହୀନ ହୋଇଥିଲା ପରି ଜଣାଗଲା ।

ଆମେ ଛାତ୍ରମାନେ ତାଙ୍କ ମର ଶରୀରକୁ କାନ୍ଧରେ ବୋହି ସତୀଚଉରା ଶ୍ମଶାନକୁ ନେଇ ଶବ ସତ୍କାର କରି ଫେରିଲୁ । ଆମେ ସମସ୍ତେ ଏପରି ଶୋକାକୁଳ ହୋଇ ପଡ଼ିଥିଲୁ ଯେ କଟକରେ ନ ରହି କିଛିଦିନ ପାଇଁ ଅନ୍ୟସ୍ଥାନକୁ ଯାଇ ବୁଲିବାପାଇଁ ଆମର ମନ ହେଲା ।

ବନ୍ଧୁ ଗ୍ରାମକୁ ଯାତ୍ରା :

ଆମର ସହପାଠୀ ଖୋର୍ଦ୍ଧା ନୟାଗଡ଼ ସୀମାନ୍ତରେ ଥିବା ମାଣିକଗୋଡ଼ା ନିବାସୀ ମିର୍ଜା ଆଦାମ ଅଲ୍ଲି ବେଗଙ୍କ ପିତା ଶେର୍ ଅଲ୍ଲି ବେଗ୍ ଜଣେ ଅତି ସ୍ନେହୀ ଲୋକ ଥିଲେ । ସେ ବହୁତଥର ଆମ ଛାତ୍ରାବାସକୁ ଆସି ଛୁଟିରେ ଆମେ ତାଙ୍କ ଗ୍ରାମକୁ ବୁଲିଯିବାକୁ ନିମନ୍ତ୍ରଣ କରିଥିଲେ । ମୁଁ, ଘନଶ୍ୟାମ ତ୍ରିପାଠୀ (ଆମେରିକାବାସୀ ସର୍ଜନ) ଓ ଶ୍ରୀ ଦୟାନିଧି ବଳ (ଅବସରପ୍ରାପ୍ତ ଜିଲ୍ଲା ମେଡ଼ିକାଲ ଅଫିସର) ତିନିଜଣ ଆଦାମଙ୍କ ସଙ୍ଗେ ତାଙ୍କ ଗ୍ରାମକୁ ଯାତ୍ରା କଲୁ । ଆମେ ପହଞ୍ଚିବା ପରେ ତାଙ୍କ ପରିବାର ଆମକୁ ତାଙ୍କ ନିଜ ପିଲା ପରି ଅତି ସୌହାର୍ଦ୍ଦ୍ୟଜନକ ବ୍ୟବହାର ଦେଖାଇଲେ । ସେହି ଗ୍ରାମରେ ଆମ କଲେଜିଏଟ ସ୍କୁଲର ସୁନାମଧନ୍ୟ ଛାତ୍ରବତ୍ସଳ ଶିକ୍ଷକ ହମିଦ ଖାଁଙ୍କ ଘର ମଧ୍ୟ ରହିଥିଲା । ଅବସର ଗ୍ରହଣ ପରେ ସେ ସେହି ଗ୍ରାମରେ ରହୁଥିଲେ । ଆମେ ସମସ୍ତେ କଲେଜିଏଟ ସ୍କୁଲର ପୂର୍ବତନ ଛାତ୍ର ଥିବାରୁ ସେ ଆମକୁ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ।

ଆଦାମ୍‌ଙ୍କ କକା ଜଣେ ନାମଜାଦା ଶିକାରୀ ଥିଲେ । ସେହି ରାଜରାଜୁଡ଼ା ସମୟରେ ଜଙ୍ଗଲଗୁଡ଼ିକ ସୁରକ୍ଷିତ ଥିଲା ଓ ସେମାନଙ୍କରେ ଭଲ ଶିକାର ମିଳୁଥିଲେ । ଆମେ ତାଙ୍କ ସହିତ ଶିକାର ପାଇଁ ପାହାଡ଼ମାନ ବୁଲି ଶିକାରର ଶିହରଣ ଅନୁଭବ କଲୁ ।

ସେ ଗ୍ରାମର ମୁସଲମାନମାନେ ଅବତାର ବାଦରେ ବିଶ୍ୱାସ କରୁଥିବା ଅହମଦିଆ ଶ୍ରେଣୀୟ ବ୍ୟକ୍ତି ଥିଲେ । ସେମାନେ ଧର୍ମାନ୍ଧ ନ ଥିଲେ, କଛାମାରି ଲୁଗା ପିନ୍ଧୁଥିଲେ ଓ ଭଲ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ ।

ଆଦାମଙ୍କ ପିତା, ଶେଖ୍ ଅଲ୍ଲି ସେ ଗ୍ରାମର ଜଣେ ମୁଖିଆ ଓ ଧନୀ ବ୍ୟକ୍ତି ଥିଲେ । ତାଙ୍କର ପଥର ନିର୍ମିତ କୋଠାଟିଏ ଥିଲା । ତା'ର ଉପର ତାଲାରେ ଆମକୁ ରହିବାକୁ ସ୍ଥାନ ମିଳିଥିଲା । ସେ ଆଖପାଖର ହିନ୍ଦୁ ମୁସଲମାନ ସମସ୍ତେ ତାଙ୍କୁ ସମ୍ମାନ ଦେଖାଉଥିଲେ ଓ ତାଙ୍କ ନିକଟକୁ ଆସି ନିଜ ନିଜର ମନୋମାଳିନ୍ୟ ଓ ଅନ୍ୟାନ୍ୟ ବିବାଦର ମୀମାଂସା କରାଇ ନେଉଥିଲେ । ଆମେ ତାଙ୍କ ଘରେ ରହିବାତକ ସେ ଆମ ରୋଷେଇ ପାଇଁ ବ୍ରାହ୍ମଣ ପୂଜାରୀ ନିଯୁକ୍ତ କରାଇଥିଲେ, ଅବଶ୍ୟ ତା' ସହିତ କୁକୁଡ଼ା ଓ ଖାସି ମାଂସର ବ୍ୟବସ୍ଥା ମଧ କରାଇଥିଲେ ।

ଆଦାମଙ୍କ ଛୋଟ ଭାଇଭଉଣୀମାନେ ଆମକୁ ବଡ଼ ଭାଇର ସମ୍ମାନ ଦେଇ ଆମ ପାଖ ଛାଡ଼ୁନଥିଲେ । ପରେ ଆଦାମଙ୍କର ଗୋଟିଏ ଭଉଣୀ "ବାସ" ବିବାହ ହେବାପରେ କଟକରେ ସ୍ୱାମୀ ସଙ୍ଗେ ଥିବାବେଳେ ଆମ ଘରକୁ ଆସି ଭାଇଭାଉଜ ଭାବରେ ଆମକୁ ତା'ର ଦୁଃଖସୁଖ ଜଣାଇବା ସଙ୍ଗେ ସଙ୍ଗେ ବାପା ଭାଇଙ୍କୁ ଖବର ଦେବାକୁ ମଧ ଅନୁରୋଧ କରୁଥିଲା ।

ଆମ ସହପାଠୀମାନଙ୍କ ଘରଲୋକେ ଆମକୁ କିପରି ନିଜ ଲୋକ ଭଳି ବ୍ୟବହାର କରୁଥିଲେ ତାହାର ବହୁ ଦୃଷ୍ଟାନ୍ତ ରହିଛି । କଟକବାସୀ ଜଣେ ସହପାଠୀ ମୋ ସଙ୍ଗେ ଛାତ୍ରାବାସକୁ ଆସି ପଢ଼ାପଢ଼ି କରୁଥିଲେ । ତାଙ୍କ ଘରେ ପିଠାପଣା ହେଲେ ତାଙ୍କ ମାତା ତାହା ମୋ ନିକଟକୁ ପଠାଇ ଦେଉଥିଲେ । ମୋତେ ଦେଖିଲେ ନିଜ ପୁତ୍ରକୁ ଆଦେଶ ଦେଲାପରି ମୁଁ ଗାଁ'କୁ ଗଲେ ତାଙ୍କ ପାଇଁ ନଡ଼ିଆ ପ୍ରଭୃତି ଆଣିବାକୁ କହୁଥିଲେ ।

ଛାତ୍ରାବାସରେ ଆମ କଲେଜ ଦୁଇ ବର୍ଷର ଛାତ୍ରମାନଙ୍କର ସଂହତି ଥିଲା । ଆମେ ସବୁ ଏକାଠି ରହୁଥିଲୁ । ଦୁଇବର୍ଷର ସ୍କୁଲ ଛାତ୍ରମାନଙ୍କ ମଧରେ ସାଧାରଣ ଛାତ୍ରଙ୍କ ସହିତ ବହୁଦିନ ଧରି ସ୍କୁଲରୁ ଦୂରେଇ ରହିଥିବା ନେତୃସ୍ଥାନୀୟ ବୟସ୍କ ଛାତ୍ରମାନେ ମଧ ସରକାରଙ୍କ କୋହଳ ନୀତି ଯୋଗୁଁ ଓ ସ୍କୁଲ ଉଠି ଯାଉଥିବାରୁ ସେମାନଙ୍କ ପାଠ ଶେଷ କରିବା ପାଇଁ ଅନୁମତି ପାଇ, ସ୍କୁଲରେ ନାମ ଲେଖାଇ ଛାତ୍ରାବାସରେ ରହୁଥିଲେ ।

ସେହି ନେତୃସ୍ଥାନୀୟ ବୟସ୍କ ସ୍କୁଲ ଛାତ୍ରମାନଙ୍କ ଭିତରେ ସ୍ୱର୍ଗତ (ଡାକ୍ତର ନରସିଂହ ସାମନ୍ତ ସିଂହାର (ଏ.ପି.) ମୋତିଲାଲ ତ୍ରିପାଠୀ, ଶ୍ରୀ ସମସୁଲ ହୋଦା, ସ୍ୱର୍ଗତ ବୀର କିଶୋର ମହାନ୍ତି ପ୍ରଭୃତି ଜେଲଫେରନ୍ତା ସଂଗ୍ରାମୀମାନେ ରହିଥିଲେ ।

୧୯୪୬ ଜାନୁୟାରୀ ୨୬ ତାରିଖ ଦିନ ଆମେ ସୁଭାଷ ଦିବସ ପାଇଁ ଏକ ସଭା କରିଥିଲୁ । ସେହିଦିନ ସେହି ସଭାରେ ଆମ ମେଡ଼ିକାଲ କଲେଜ ଛାତ୍ର ଇଉନିଅନ ଗଢ଼ାଯାଇଥିଲା । ସେଥିରେ ନିର୍ବାଚନ କରାଯାଇ ଆମ ଉପର ଶ୍ରେଣୀର କୃତିଛାତ୍ର ଉଦୟନାଥ ଦାଶ (ବର୍ତ୍ତମାନ ଆମେରିକାବାସୀ ବିଖ୍ୟାତ ସର୍ଜନ) ଙ୍କୁ ସଭାପତି, ମୋତେ ଓ ଆମ ଶ୍ରେଣୀର (ନାରୀନେତ୍ରୀ) ନିରୂପମା ରଥଙ୍କୁ ଯୁଗ୍ମ ସମ୍ପାଦକ କରାଯାଇଥିଲା । ପରେ ଛାତ୍ର ଇଉନିଅନରେ ସ୍କୁଲ ପିଲାଙ୍କୁ ଅନ୍ତର୍ଭୁକ୍ତ କରାଯିବା ପାଇଁ ନୂତନ କମିଟି ଗଢ଼ାଯାଇ ସ୍କୁଲ ଛାତ୍ର ସଂଗ୍ରାମୀ ମୋତିଲାଲ ତ୍ରିପାଠୀଙ୍କୁ ଉଦୟନାଥ ଦାଶଙ୍କ ସ୍ଥାନରେ ସଭାପତି କରାଯିବାରୁ ମୁଁ ସମ୍ପାଦକ ପଦରୁ ଓହରି ଯାଇଥିଲି । ପରେ ମୋତିଲାଲ ତ୍ରିପାଠୀଙ୍କ କମିଟିକୁ କଲେଜ ୟୁନିଅନର ପ୍ରଥମ କମିଟି ବୋଲି ମେଡ଼ିକାଲ କଲେଜ ସିଲ୍‌ଭର୍ ଜୁବୁଲି ସ୍ମାରକୀ ପୁସ୍ତକରେ ପ୍ରକାଶିତ ହୋଇଥିଲା ।

**ଚିକିତ୍ସାବିଦ୍ୟା ସହ ପରିଚୟ :**

ଆମେ ତଳ ଦୁଇ ଶ୍ରେଣୀରେ ଆନାଟେମି ଓ ଫିଜିଓଲୋଜି ପଢୁଥିବାବେଳେ ଉପର କ୍ଲାସ ପାଠ ଓ ଚିକିତ୍ସାବିଦ୍ୟା ସହିତ ପରିଚିତ ହେବାପାଇଁ କେତୋଟି କ୍ଲିନିକାଲ କ୍ଲାସ ମଧ୍ୟ ନିଆଯାଇଥିଲା ।

ଇଞ୍ଜେକସନ୍ ଶିକ୍ଷା ପାଇଁ ଆମକୁ କୁକୁର କାମୁଡ଼ା ଚିକିତ୍ସା କେନ୍ଦ୍ରରେ ତାଲିମ ଦିଆଯାଉଥିଲା । କାହାକୁ ବାଇଆ କୁକୁର ବା ବିଲୁଆ କାମୁଡ଼ିବାର ସନ୍ଦେହ ହେଲେ ତାକୁ ଚଉଦଟି ଇଞ୍ଜେକସନ୍ ପେଟରେ ନେବାକୁ ପଡୁଥିଲା । ସେହି ଅଠାଳିଆ ଔଷଧକୁ ଗୋଟିଏ ଲମ୍ବା ମୋଟା ଛୁଞ୍ଚି ଦ୍ୱାରା ତଳ ପେଟର ଚମଡ଼ା ତଳେ ଭର୍ତ୍ତି କରାଯାଉଥିଲା । ଆମେ ପ୍ରଥମେ ସେହି ଇନଜେକସନ ଦେବା, ସେଥିର ଦାୟିତ୍ୱରେ ଥିବା ପାଟନାରୁ ନୂଆ ଏମ.ବି.ବି.ଏସ. ପାଶ କରି ଆସିଥିବା ଅଭିଜ୍ଞ ଡାକ୍ତର ଶରତ ଚନ୍ଦ୍ରମିଶ୍ର (ପରେ ପ୍ରଫେସର)ଙ୍କ ଠାରୁ ଶିଖୁଥିଲୁ ।

ଶରତ ବାବୁଙ୍କ ସଙ୍ଗେ ପାଟ୍‌ନାରୁ ପାଶ୍ କରି ଆସିଥିବା ଅନ୍ୟତମ ଅଭିଜ୍ଞ ଡାକ୍ତର ରାଧାନାଥ ମିଶ୍ର (ପରେ ବୁର୍ଲା ମେଡ଼ିକାଲ କଲେଜ ଅଧକ୍ଷ) ସର୍ଜିକାଲ ଆଉଟ ଡୋରରେ ଆମକୁ ସର୍ଜରୀ ବା ଶଲ୍ୟ ଚିକିତ୍ସା ସହିତ ପରିଚିତ କରାଉଥିଲେ । ଆଉଟ ଡୋରରେ ବଥ କଟା, ଚୁଚୁନ୍ଦ୍ରି ଚମଡ଼ା ବା ପିଲାଙ୍କର ମୂତ୍ର ନଳୀ ସାମନାରେ ଥିବା ଚମଡ଼ା କଟାଯିବା

ପ୍ରଭୃତି କରାଯାଉଥିଲା । ଥରେ ଚାରି ପାଞ୍ଚ ବର୍ଷ ପୁଅ ପିଲାଟିର ପରିସ୍ରା କରିବାରେ କଷ୍ଟ ହେଉଥିବାରୁ ତା'ର ପିତାମାତା ତାକୁ ଘେନି ଡାକ୍ତରଖାନାକୁ ଆସିଥିଲେ । ତା'ର ଚମଡ଼ା ବଢ଼ି ପରିସ୍ରା ବାହାରକୁ ବାହାରିବାର ବାଟ ପ୍ରାୟ ବନ୍ଦ ହୋଇଯାଇଥିଲା । ସେ ଚମଡ଼ାକୁ କାଟି ବାହାର କରିବା ନିତାନ୍ତ ପ୍ରୟୋଜନ ଥିଲେ ମଧ ସ୍ୱାଧୀନତା ପୂର୍ବରୁ ଔଷଧ ପତ୍ରର ଅତ୍ୟନ୍ତ ଅଭାବ ଦେଖାଯାଇଥିଲା । ଅପରେସନ୍ ପାଇଁ ପ୍ରୟୋଜନ ଥିବା ନଭୋକେନ ପ୍ରଭୃତି ନିଶ୍ଚେତକ ଔଷଧ ଡାକ୍ତରଖାନାରୁ ସରିଯାଇଥିଲା । ଏପରିକି ବ୍ୟାଣ୍ଡେଜ୍ ତୁଳା ପ୍ରଭୃତିର ମଧ ଅଭାବ ଘଟିଥିଲା ।

ରାଧାନାଥ ବାବୁ ଆମକୁ କହିଲେ ''ଔଷଧ, ନିଶ୍ଚେତକ ନ ଥାଉ, ଆସ ଆମେ ଆଜି ଅଠରଶ ଶତାବ୍ଦୀର ବାରିକ ସର୍ଜନମାନେ ଯେପରି ଅସ୍ତ୍ରୋପଚାର କରୁଥିଲେ ସେପରି କରିବା ।'' ତାଙ୍କ ପରାମର୍ଶରେ ସେ ପିଲାର ବାପା ମା'ଙ୍କୁ ବାହାରେ ରଖାଇ ପିଲାଟିକୁ ଟେକି ଘର ଭିତରକୁ ଆଣି ବାହାର କବାଟଟା ବନ୍ଦ କରିଦେଲୁ । ସେ ପିଲା ପ୍ରଥମେ ଗୋଡ଼ହାତ ଛାଟି ଭୀଷଣ ରଡ଼ି ଛାଡୁଥିଲା । ଆଗେ ପିଲାଟାକୁ ଅପରେସନ ଟେବୁଲ ଉପରେ ଶୁଆଇ ଦେଇ ତା'ର ହାତଗୋଡ଼ ମାଡ଼ିବସିଲୁ । ରାଧାନାଥ ବାବୁ ସେ ପିଲାର ମୁହଁ ସାମନାରେ ନିଜ ମୁହଁକୁ ବିକୃତ କରି ହାତରେ ବଡ଼ ଛୁରୀଟାଏ ଧରି ସେ ପିଲାକୁ ଡରାଇଲେ । ପିଲାଟା ପୂରା ଡରି ଯାଇ ତା'ର କାନ୍ଦ ବନ୍ଦ ହୋଇଗଲା । ରାଧାନାଥ ବାବୁଙ୍କ ଇଙ୍ଗିତରେ ସେ ଚୁଚୁନ୍ଦ୍ରି ଚମଡ଼ାଟାକୁ ଚିମୁଟାରେ ଟାଣି ଆଣି ଚଟ୍ କରି ଏକାଥରକେ କତୁରୀରେ କାଟି ଦିଆଗଲା । ଉପରେ ଟିକିଏ ଆଣ୍ଟିସେପ୍‌ଟିକ ଦେଇ ବାଣ୍ଡେଜ କରାଯାଇ ପିଲାକୁ ନେଇ ତା'ର ପିତାମାତାଙ୍କୁ ଦେଇ ଦିଆଗଲା । ସେପରି ଅପରେସନରେ ମଧ ୩, ୪ ଦିନ ପରେ ପିଲାଟି ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲା । ଅର୍ଥ ଅନାଟନ ଓ ଅସୁବିଧା ବେଳେ କିପରି ଚିକିତ୍ସା କରି ଜୀବନ ରକ୍ଷା କରାଯାଇପାରିବ ସେପରି ଶିକ୍ଷାର ଏହା ଏକ ଦୃଷ୍ଟାନ୍ତ ଥିଲା । ଅପରେସନ ନ ହୋଇଥିଲେ ପରିସ୍ରା ଅଟକିବା ଦ୍ୱାରା ଇଉରିମିଆ ହୋଇ ହୁଏତ ପିଲାଟା ମୃତ୍ୟୁ ମୁଖରେ ପଡ଼ିଥାଆନ୍ତା ।

ପୂଜାରୀ ସାହେବଙ୍କ ତିରୋଧାନ ପରେ ଆମର ଉପର କ୍ଲାସ ପିଲାଙ୍କ ପରୀକ୍ଷାବେଳେ ମାନ୍ଦ୍ରାଜ କଲେଜର ଅବସରପ୍ରାପ୍ତ ବିଖ୍ୟାତ ଆନାଟେମି ପ୍ରଫେସର କ୍ରିଷ୍ଣା ରାଓ ଆଇ.ଏମ.ସି. ଇନିସ୍‌ପେକ୍ଟର ହୋଇ ଆସିଥିବା ବେଳେ ଡ଼ିରେକ୍ଟରଙ୍କ ଅନୁରୋଧ ରକ୍ଷା କରି ଆମର ଆନାଟେମି ପ୍ରଫେସର ହେଲେ ।

କ୍ରିଷ୍ଣା ରାଓ ଜଣେ ବିଚକ୍ଷଣ ପଣ୍ଡିତ ଥିଲେ । ମେଡ଼ିକାଲ ପାଠ ସହିତ ଭାଷା ଇତିହାସ ପ୍ରଭୃତିରେ ମଧ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଓଡ଼ିଶା ରହଣୀର ଅଳ୍ପଦିନ ଭିତରେ ସେ ଓଡ଼ିଶାର ଇତିହାସ ଅଧ୍ୟୟନ କରି ସାରିଥିଲେ । ଆମ କଲେଜର ଏକ ସାଂସ୍କୃତିକ

ସମାରୋହରେ ସେ ଓଡ଼ିଶାର ସଂସ୍କୃତି ଓ ଇତିହାସ ସମ୍ବନ୍ଧରେ ଅନର୍ଗଳ ଭାବରେ ଏକ ସାରଗର୍ଭକ ଭାଷଣ ଦେଇ ସମସ୍ତଙ୍କୁ ଚମତ୍କୃତ କରିଥିଲେ । ସେଥିରେ ମୁଁ ତାଙ୍କର ଜ୍ଞାନ ଓ ଇତିହାସ ପାଠ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲି ।

**ପ୍ରଥମ ଅସ୍ତ୍ରୋପଚାର ଶିକ୍ଷା :** ୧୯୪୭ ପ୍ରଥମ ଭାଗରେ ମୁଁ ଫାଷ୍ଟ ଏମ.ବି.ବି.ଏସ୍ ପାଶ କରି, କ୍ଲିନିକାଲ ପାଠ ଆରମ୍ଭ କଲି ଥାର୍ଡ ଇଅରକୁ ଆସୁ ଆସୁ । ରୋଗୀ ଚିକିତ୍ସା ଓ ଅପରେସନ ପାଇଁ ଆମର ହାତ ଖଜବଜ ହେଉଥାଏ । ସେତେବେଳେ କଟକ ସିଟି ହସ୍‌ପିଟାଲ ଆରମ୍ଭ ହୋଇନଥାଏ । ମେଡ଼ିକାଲ କଲେଜ ହସ୍‌ପିଟାଲ ସର୍ଜିକାଲ ୱାଡ଼ରେ କଟକ ସିଭିଲ ସର୍ଜନଙ୍କ ପାଇଁ ପାଞ୍ଚୋଟି ମାତ୍ର ଶଯ୍ୟା ନିର୍ଦ୍ଦିଷ୍ଟ ଥାଏ । ସେଥିରେ ସାଧାରଣତଃ ପୋଲିସବାଲାମାନେ ହାଇଡ୍ରୋସିଲ ଅପରେସନ ପାଇଁ ଭର୍ତ୍ତି ହୁଅନ୍ତି । କଟକ ସିଭିଲ ସର୍ଜନ ଡି.ପି.ଦାସ ସେମାନଙ୍କ ଅପରେସନ ଭାର ଡାକ୍ତର ଅଭାବରୁ ପୁନଃନିଯୁକ୍ତି ପାଇଥିବା ବୃଦ୍ଧ ଧନରାଜ ଚୌଧୁରୀ ଏଲ.ଏମ.ପି. ଆସିଷ୍ଟାଣ୍ଟ ସିଭିଲ ସର୍ଜନଙ୍କ ହାତରେ ଛାଡ଼ି ଦେଇଥାଆନ୍ତି ।

ଧନରାଜ ବାବୁଙ୍କୁ ଆମେ ସବୁ ଅଜା ଅଜା ଡାକୁଥିଲୁ । ସେ ସମୟରେ ପ୍ରଫେସର କର୍ଣ୍ଣେଲ ଖେରା ପ୍ରଫେସର ସର୍ଜରୀ ପଦରେ ଯୋଗଦେଇ ଲୋକାଲ ନିଶ୍ଚେତକ ପ୍ରୟୋଗ କରି ହାଇଡ୍ରୋସିଲ ଭଳି ଛୋଟ ଛୋଟ ଅପରେସନ ସବୁ କରୁଥିଲେ । ମୁଁ ତାଙ୍କ ଅପରେସନ ବେଳେ ସେ ସବୁ ଲକ୍ଷ କରିବାର ସୁଯୋଗ ପାଇଥିଲି ।

ମୁଁ ଦିନେ ମନରେ ସାହସ ବାନ୍ଧି ଧନରାଜ ବାବୁଙ୍କୁ ଯାଇ କହିଲି ''ଅଜା ଆପଣ ଏତେ ହାଇଡ୍ରୋସିଲ ଅପରେସନ କରୁଛନ୍ତି ମୋତେ ତାହା ଶିଖିବା ପାଇଁ ଟିକିଏ ସୁବିଧା ଦେଲେ ମୁଁ ଉପକୃତ ହୁଅନ୍ତି ।'' ସେ ମୋତେ କହିଲେ 'ହଉ କାଲି ସକାଳ ଆଠଟା ବେଳକୁ ଆସ, ଅପରେସନ କରିବ ।'

ମୁଁ ପରଦିନ ଠିକ୍ ସମୟରେ ଯାଇ ଅପରେସନ ଥିଏଟରରେ ପହଞ୍ଚିଲି । ରୋଗୀଟି ପ୍ରସ୍ତୁତ ହୋଇ ଅପରେସନ ଥିଏଟର ଭିତରକୁ ଗଲା । ଧନରାଜ ବାବୁ ଆସି ପହଞ୍ଚିଲେ, ମୋତେ ଦେଖି ହାତ ଧୋଇ ଅପରେସନ୍ ପୋଷାକ ଓ ଗ୍ଲୋବ ପ୍ରଭୃତି ପିନ୍ଧି ପ୍ରସ୍ତୁତ ହେବା ପାଇଁ କହିଲେ । ମୁଁ ତାଙ୍କ ଆଦେଶରେ ପ୍ରସ୍ତୁତ ହୋଇଗଲି କିନ୍ତୁ ସେ ନିଜେ ହାତ ପର୍ଯ୍ୟନ୍ତ ଧୋଇଲେ ନାହିଁ । ଭାବିଥିଲେ ସେ ଅପରେସନ୍ କରିବେ ମୁଁ ତାଙ୍କ ପାଖରେ ରହି ସାହାଯ୍ୟକାରୀ ଭାବେ ଅପରେସନ୍ ଶିଖିବି କିନ୍ତୁ ସେ ମୋତେ କହିଲେ । ''ତୁମେ ଅପରେସନ କରିବ ମୁଁ ତୁମ ପାଖରେ ରହିବି । ତୁମେ ଭୟ କରିବାର କିଛି କାରଣ ନାହିଁ ।'' ମୁଁ ତାଙ୍କ କଥାଶୁଣି ଯନ୍ତ୍ରଚାଳିତ ପରି ଅପରେସନ ଥିଏଟରରେ ପଶିଲି ।

ରୋଗୀଟି ଅପରେସନ ଟେବୁଲ ଉପରେ ଶୋଇଥିଲା । ତା'ର ଛାତି ଉପରେ ସ୍କ୍ରିନଟିଏ ଦିଆଯାଇଥିବାରୁ ତାର ଛାତିର ତଳକୁ ଥିବା ଶରୀରର କୌଣସି ଅଂଶ ତାକୁ ଦେଖାଯାଉନଥିଲା । ଅଜାଙ୍କ ନିର୍ଦ୍ଦେଶରେ ମୁଁ ଅପରେସନ ସ୍ଥାନକୁ ଡ଼ିସ୍‌ଇନଫେକ୍ଟ କରିସାରି ସେଠାର ଚମଡ଼ା ଉପରେ ନିଶ୍ଚେତକ ଇନ୍‌ଜେକସନ ଦେଲି । ଅଳ୍ପ ସମୟ ଅପେକ୍ଷା କରିବା ପରେ ଚର୍ମକୁ ମୁଁ ଚିମୁଟିଲି । ରୋଗୀ କିଛି ନ କହିବାରୁ ତାହା ନିଶ୍ଚେତକ ଯୋଗୁଁ ପୂରା ବଧିରା (ସ୍ପର୍ଶ ଜ୍ଞାନହୀନ) ହୋଇଯାଇଛି ବୋଲି ମନେ କଲି ।

ଅପରେସନ୍‌ର ଅନୁମତି ପାଇଁ ମୁଁ ଡାକ୍ତର ଚୌଧୁରୀଙ୍କ ମୁହଁକୁ ଚାହିଁବାରୁ ସେ କହିପକାଇଲେ 'ଶଳାକୁ କାଟ' । ତାଙ୍କର ରୋଗୀଟି ପ୍ରତି ସେପରି ଭାଷା ପ୍ରୟୋଗ ମୋତେ ଅଡୁଆ ଲାଗିଲେ ମଧ ତାଙ୍କଠାରୁ ସଙ୍କେତ ପାଇ ମୁଁ ଅପରେସନ ଆରମ୍ଭ କରି ସେ ଚମଡ଼ା ଉପରେ ଛୁରୀରେ ଗାରଟିଏ ପକାଇଲି । ସଙ୍ଗେ ସଙ୍ଗେ ରୋଗୀଟି ଚିତ୍କାର କରି ଉଠିଲା ବୋଧହୁଏ ସେହି ନିଶ୍ଚେତକ ଔଷଧ ପୂରା କାମ କରି ନ ଥିଲା । ମୁଁ ଚମ୍‌କି ପଡ଼ିଲି, କିନ୍ତୁ ଧନରାଜ ବାବୁ ରୋଗୀର ମୁହଁକୁ ଚାହିଁ କହିଲେ ''ଏତେବଡ଼ ବଳବାନ ପୋଲିସବାଲାଟା ହୋଇଛୁ, ଶଳା, ଏତିକି କଷ୍ଟ ସହିପାରୁ ନାହୁଁ ? ତୁମେ ସବୁ ଏପରି କଲେ ପିଲାଏ ଅପରେସନ ଶିଖିବେ କିପରି ? ତୋର ଯଦି ପ୍ରଫେସରଙ୍କ ହାତରେ ଅପରେସନ୍ ହେବା କଥା, ତେବେ ପଇସା ଦେଇ ନର୍ସିଂ ହୋମରେ ନ ରହି ଏ ମାଗଣା ସରକାରୀ ବେଡ଼ରେ କାହିଁକି ଭର୍ତ୍ତି ହେଲୁ । ହଉ ଦେହକୁ ଟାଣକର ଆଉ ଚିଲେଇଲେ ଅପରେସନ ଗୋଳମାଳ ହୋଇଯିବ ।''

ସେତିକିରେ ସେ ରୋଗୀ ତୁନି ହୋଇଗଲା । 'ଶଳାକୁ କାଟ' ବୋଲି ପୁଣି ନିର୍ଦ୍ଦେଶ ଆସିଲା । ମୁଁ ଭୟରେ ଗୋଟାଏ ସୁଦ୍ଧା ଝାଳରେ ବୁଡ଼ିଯାଉଥିଲି । ଅଧା ପହଁରା ଜାଣିଥିବା ପିଲାକୁ ନଇ ଭିତରକୁ ଠେଲିଦେଲେ ତା'ର ଯେଉଁ ଅବସ୍ଥା ହେବାକଥା ମୁଁ ସେହି ଅବସ୍ଥାରେ ଥିଲି । ଯାହାହେଉ ସାହସ କରି ଗୋଟିଏ ପଟର ହାଇଡ୍ରୋସିଲ ଅପରେସନ ସାରି ସିଲେଇ କରି ବାଣ୍ଡେଜ ପ୍ରଭୃତି କରି ରୋଗୀକୁ ବେଡ଼କୁ ପଠାଇଦେଲି । ମୁଁ ଦିନରାତି ଲାଗି ସେ ରୋଗୀର ଯତ୍ନ ନେବାରେ, ସେ ରୋଗୀ ଠିକ୍ ସମୟରେ ଆରୋଗ୍ୟ ଲାଭ କରି ଚାଲିଗଲା । ତା ପାଖ ଶଯ୍ୟାର ଆଉ ଗୋଟିଏ ହାଇଡ୍ରୋସିଲ ଅପରେସନ ରୋଗୀର ବ୍ୟାଣ୍ଡେଜ ହୁଗୁଳା ଥିବାରୁ ଇନଫେକସନ ହୋଇ ସେ ବହୁଦିନ ହସପିଟାଲରେ ପଡ଼ିରହିଥିଲା । ମୋ ରୋଗୀ ସୁରୁଖୁରୁରେ ଭଲ ହୋଇଯିବାରୁ ନୂଆ ଡାକ୍ତରଙ୍କ ହାତ ଭଲ ବୋଲି ପୋଲିସଙ୍କ ଭିତରେ ପ୍ରଚାର ହୋଇଗଲା । ଅନ୍ୟ ପୋଲିସବାଲାମାନେ ମୋ ହାତରେ ଅପରେସନ ହେବା ପାଇଁ ଆଗ୍ରହ ପ୍ରକାଶ କଲେ । ଅଭିଜ୍ଞ ଡାକ୍ତରଙ୍କ ଅଭାବ ଓ ଛାତ୍ରଙ୍କ ସ୍ୱଚ୍ଛତା ଦୃଷ୍ଟିରୁ ଆମକୁ ଡାକ୍ତର ଶିକ୍ଷା ଆରମ୍ଭରୁ ଅଭିଜ୍ଞତା ଅର୍ଜନ

ପାଇଁ ଯେ ସୁବିଧା ସୁଯୋଗ ମିଳୁଥିଲା, ତାହା ଏବେ ସ୍ନାତକୋତ୍ତର ଡାକ୍ତରମାନଙ୍କୁ ମିଳିବା କଷ୍ଟକର ହେଉଛି ।

ମୋର ସର୍ଜନ ହେବାର ଆକାଂକ୍ଷା ଥିଲା କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ମୁଁ ରୋଗ ନିର୍ଣ୍ଣୟ ବିଶେଷଜ୍ଞ ହୋଇଥିଲି । ମୋର ସେହି ପ୍ରଥମ ଅପରେସନର ପ୍ରାୟ ପଚିଶି ବର୍ଷ ପରେ ମୁଁ ଯେବେ ବ୍ରହ୍ମପୁର ମେଡ଼ିକାଲ କଲେଜର ପାଥୋଲଜି ମୁଖ୍ୟ ଅଧ୍ୟାପକ ଥିଲି, ସେହି ପୂର୍ବତନ ରୋଗୀଟି ମୋର ନାମ ଶୁଣି କ୍ଲିନିକ୍‌ରେ ଆସି ପହଞ୍ଚିଲା ।

ସେ ମୋତେ ଚିହ୍ନା ଦେଇ କହିଲା ମୋର ଅନ୍ୟ ପଟର ହାଇଡ୍ରୋସିଲ୍‌ଟିର ଅପରେସନ ପାଇଁ ବହୁବର୍ଷ ହେଲା ମୁଁ ଆପଣଙ୍କୁ ଖୋଜି ଖୋଜି ଭାଗ୍ୟବଳରେ ଆଜି ଆପଣଙ୍କୁ ପାଇପାରିଛି । ମୋର ଚାକିରି ସରିଆସିଲାଣି, ଅବ୍ୟାହତି ନେବା ପୂର୍ବରୁ ଆପଣ ଅନୁଗ୍ରହ କରି ମୋତେ ରୋଗମୁକ୍ତ କରନ୍ତୁ ।

ତାକୁ କି ଉତ୍ତର ଦେବି ମୋତେ ବୁଦ୍ଧି ଦିଶିଲାନାହିଁ । ମୁଁ ସର୍ଜରୀ ନ ନେଇ ଅନ୍ୟ ବିଦ୍ୟା ନେଇ ଅପରେସନ କାର୍ଯ୍ୟଠାରୁ ବହୁ ଦୂରକୁ ଚାଲିଯାଇଥିବା କଥା ତାକୁ ବୁଝାଇବା ସମ୍ଭବ ନ ଥିଲା । ମୋ ପାଟିରୁ ବାହାରି ପଡ଼ିଲା, ତୁମେ ଯେଉଁ ସର୍ଜନଙ୍କୁ ଖୋଜୁଛ ତାଙ୍କର ବହୁଦିନ ହେଲା କାଳ ହୋଇଗଲାଣି ।  ମୋ କଥା ଶୁଣି ସେ ଲୋକଟି ଜିଭ କାମୁଡ଼ି ପକାଇ କହିଲା, ''ଡାକ୍ତର ବାବୁ କେଡ଼େ କଥା କହୁଛ । ଅପରେସନ୍ ନ କରିବ ତ ନାହିଁ ମୋର ବୟସ ହୋଇ ଗଲାଣି ବୋଲି କ'ଣ ମୋତେ ଅଚିହ୍ନା ଧରିଲାଣି ଯେ ମୁଁ ଆପଣଙ୍କୁ ଚିହ୍ନିପାରିବି ନାହିଁ ?''

ଶେଷରେ ମୁଁ ତାକୁ ବହୁତ ବୁଝାବୁଝି କରାଇ, ମୋର ଜଣେ ପୂର୍ବତନ ଛାତ୍ର ସର୍ଜନଙ୍କ ନିକଟକୁ ପଠାଇଦେଲି ।



# ବିବାହ ଗହଳ

୧୯୪୨ ଅଗଷ୍ଟର ବନ୍ଦୀମାନେ କାରାମୁକ୍ତ ହେବାପରେ ଯୁବକମାନଙ୍କ ଭିତରେ ଏକ ଉନ୍ମୁକ୍ତ ସମାଜ ଗଠନର ଆକାଂକ୍ଷା ଜାଗ୍ରତ ହୋଇଥିଲା । ମେଡ଼ିକାଲ ସ୍କୁଲ ଓ କଲେଜର ମିଶ୍ରିତ ପରିବେଶ ଭିତରେ ସେପରି ମନୋବୃତ୍ତିର ଆଭାଷ ମିଳିଥିଲା । କେତେକ ଛାତ୍ର ଅଭିଭାବକମାନଙ୍କ ମତ ପ୍ରତି ଭ୍ରୂକ୍ଷେପ ନକରି ଜାତି ଧର୍ମ ନିର୍ବିଶେଷରେ ପ୍ରେମ ବିବାହ ପାଇଁ ଆଗେଇ ଆସିଥିଲେ ।

ସେ ସମୟରେ ସ୍ତ୍ରୀ ଶିକ୍ଷାର ବେଶୀ ପ୍ରସାର ନଥିଲା । ମେଡ଼ିକାଲ କଲେଜରେ ମାତ୍ର ଛ'ଟି ଛାତ୍ରୀ ଥିଲେ ଓ ସ୍କୁଲରେ ପ୍ରାୟ ଛାତ୍ରୀ ନ ଥିଲେ । ସଂଗ୍ରାମୀ ସ୍କୁଲ ଛାତ୍ର ନୃସିଂହ ସାମନ୍ତସିଂହାରଙ୍କର ବହୁକାଳ ତଳେ ସେ ମେଡ଼ିକାଲ ସ୍କୁଲରେ ନାମ ଲେଖାଇବା ପରେ ଜଣେ ସ୍କୁଲ ଛାତ୍ରୀଙ୍କ ସଙ୍ଗେ ବିବାହ ପ୍ରସ୍ତାବ ପ୍ରାୟ ଠିକ୍ ହୋଇଯାଇଥିଲା । କିନ୍ତୁ ତାଙ୍କ ପଢ଼ାପଢ଼ିରେ ବ୍ୟାଘାତ ଘଟି ସେ ରାଜନୀତିରେ ଲମ୍ଫ ପ୍ରଦାନ କରି ଅଧାପାଠରୁ ମେଡ଼ିକାଲ ସ୍କୁଲ ଛାଡ଼ିଥିବାରୁ ସେ ବିବାହ ଅନୁଷ୍ଠିତ ହୋଇପାରି ନଥିଲା । ଏହା ଭିତରେ ତାଙ୍କ ବାଗଦତ୍ତା କନ୍ୟା ଆଇ.ଏସ୍.ସି. ପାଶ୍ କରି ମେଡ଼ିକାଲ କଲେଜରେ ପଢୁଥିଲେ । ସେ ପରିସ୍ଥିତିରେ ସେ ଛାତ୍ରୀ ସେହି ପୂର୍ବ ବିବାହ ପ୍ରସ୍ତାବ ଉପରେ ଗୁରୁତ୍ୱ ଦେଇ ନ ଥିଲେ । ନୃସିଂହବାବୁ ଓ ତାଙ୍କ ସାଥିମାନେ ସେ ଛାତ୍ରୀଙ୍କ ମନ ବଦଳାଇବା ପାଇଁ ଏକ ତ୍ରୀନାଥମେଳାର ବନ୍ଦୋବସ୍ତ କରିଥିଲେ । କିନ୍ତୁ ତାହାର ପ୍ରଭାବ ସେ ଛାତ୍ରୀଙ୍କ ଉପରେ ନ ପଡ଼ି ସେ ଅନ୍ୟଜଣେ ଗ୍ରାଜୁଏଟ୍ ଡାକ୍ତରଙ୍କ ପାଣିଗ୍ରହଣ କରିଥିଲେ ।

ସ୍କୁଲର ବୟସ୍କ ଅବିବାହିତ ଛାତ୍ରମାନେ ଉଚ୍ଚ ଶିକ୍ଷିତା କନ୍ୟାମାନଙ୍କ ସହିତ ବିବାହ କରିବାକୁ ଆଗ୍ରହୀ ଥିଲେ । କିନ୍ତୁ ସେ କାଳରେ ଉଚ୍ଚ ଜାତିର କନ୍ୟାମାନେ କିଶୋରୀ ଅବସ୍ଥାରୁ ବିବାହ କରି ଯାଉଥିବାରୁ ବିବାହ ବଜାରରେ ଶିକ୍ଷିତା ବଡ଼ କନ୍ୟାଙ୍କର ଅଭାବ ରହିଥିଲା । ତେଣୁ ଇଚ୍ଛା ଅନୁସାରେ ବିବାହ କରିବା ପାଇଁ ସେହି ଛାତ୍ରମାନେ ନର୍ସିଂ ପଢୁଥିବା ଛାତ୍ରୀମାନଙ୍କ ଉପରକୁ ଦୃଷ୍ଟି ନିକ୍ଷେପ କରିବାକୁ ବାଧ ହୋଇଥିଲେ । ସେ ସମୟରେ ସାଧାରଣତଃ ଓଡ଼ିଆ ଘରର ଅଭିଭାବକମାନେ ସେମାନଙ୍କ କନ୍ୟାକୁ ନର୍ସିଂ ପଢ଼ିବାକୁ ଛାଡୁ ନଥିଲେ । ତେଣୁ ବ୍ରିଟିଶ ଅମଳରୁ କଟକ ବଡ଼ ଡାକ୍ତରଖାନାରେ ଗୋରା କ୍ୟାଥଲିକ ନାରୀମାନେ ସେବିକା କାର୍ଯ୍ୟ ଚଳାଉଥିଲେ । ସେମାନଙ୍କଠାରୁ କେବଳ ଆଙ୍ଗ୍ଲୋଇଣ୍ଡିଆନ ଖ୍ରୀଷ୍ଟିଆନ ଛାତ୍ରୀ, ବଙ୍ଗୀୟ ଓ ଓଡ଼ିଆସମାଜ ପରିତ୍ୟକ୍ତା ବା ବିଧବା ମହିଳା, ସେବିକା ତାଲିମ ପାଉଥିଲେ ।

ସ୍ୱେଚ୍ଛାକୃତ ବିବାହ ପାଇଁ ସ୍କୁଲର ସେହି ବୟସ୍କ ଛାତ୍ରମାନଙ୍କୁ ସେହି ନର୍ସ ଛାତ୍ରୀମାନଙ୍କ ଭିତରୁ ବାଛିବାକୁ ପଡୁଥିଲା । ତାହୁଁ ତାହୁଁ ସେପରି ଗୁଡ଼ିଏ ରେଜେଷ୍ଟ୍ରୀ ବିବାହ ଅନୁଷ୍ଠିତ ହୋଇଯାଇଥିଲା ।

ଆମର ଫାଷ୍ଟ ଇଅର ଗ୍ରୀଷ୍ମଛୁଟି ବେଳକୁ ସ୍କୁଲ ଛାତ୍ର ସଂଗ୍ରାମୀ ବୀରକିଶୋର ମହାନ୍ତି, ନନ୍ଦଦୁଲାଳ ବର୍ଦ୍ଧନ, କିଶୋର ପଟ୍ଟନାୟକ, ଶାନ୍ତନୁ କୁମାର ଦାସ ପ୍ରଭୃତି ନର୍ସମାନଙ୍କୁ ରେଜେଷ୍ଟ୍ରୀ ବିବାହ କରି ସାରିଥିଲେ । ସେ ସମ୍ବାଦରେ ବିବ୍ରତ ହୋଇ ଆମ କଲେଜ ଛାତ୍ରଙ୍କର କେତେକ ଅଭିଭାବକ ତାଙ୍କ ପିଲାମାନଙ୍କୁ ଘରକୁ ଡାକି ନେଇ ବିବାହ କରାଇ ଛାଡ଼ିଥିଲେ । ତଥାପି ଆମ କ୍ଲାସର ଜଣେ ଛାତ୍ରୀ ତାଙ୍କର ଜଣେ ରାଜନୀତିକ ସାଥୀଙ୍କୁ ବିବାହ କରିଥିଲେ ।

ଘନ ବାହାଘର :

ସେପରି ରେଜେଷ୍ଟ୍ରୀ ବିବାହ ସବୁ ଆମ ଛାତ୍ରାବାସରେ ଚହଳ ପକାଇ ଦେଇଥିଲା । ସେପରି ଚହଳରୁ ଏକ ବଡ଼ କୌତୁକପୂର୍ଣ୍ଣ ଘଟଣା ଘଟିଥିଲା । ମୋର ଜଣେ ସହପାଠୀ ଆଜିର ଘନଶ୍ୟାମ ତ୍ରିପାଠୀ (ଏବର ଆମେରିକାବାସୀ ସର୍ଜନ) କୌଣସି କାର୍ଯ୍ୟରେ କଟକ କଚେରୀକୁ ଯାଇ ରେଜେଷ୍ଟ୍ରୀ ଅଫିସ ନିକଟରେ ବୁଲୁଥିଲେ । ସେ ଖବର ଆସି ଛାତ୍ରାବାସରେ ପହଞ୍ଚିବା ସଙ୍ଗେ ସଙ୍ଗେ ସନ୍ଦେହର ଛାୟା ଖେଳି ଯାଇଥିଲା । ଘନ ଆଗରୁ ବାଲ୍ୟ ବିବାହ କରି ତାଙ୍କ ବାଳିକା ପତ୍ନୀ ସ୍ୱର୍ଗାରୋହଣ କରିଥିଲେ । ତେଣୁ ଅଭିଭାବକମାନଙ୍କ ଉପରେ କ୍ଷୋଭ ପ୍ରକାଶ କରି ଏକ ରେଜେଷ୍ଟ୍ରୀ ବିବାହ କରିଥିବା ଆମେ ବିଶ୍ୱାସ କରିଗଲୁ ।

ଆମ୍ଭେମାନେ ଖୁସି ହୋଇ ଘନ ଆମକୁ ଏକ ଭୋଜି ଦେବାପାଇଁ ତା' ନିକଟରେ ଦାବି କଲୁ । ଘନଙ୍କ ଗ୍ରାମ ନିକଟରେ ଆଉ ଜଣେ ଛାତ୍ର (ଦିବାକର ଶର୍ମା) ଭୋଜି ଯୋଗାଡ଼ର ଭାର ନେବାପାଇଁ ଆଗେଇ ଆସିଲେ । ଘନ ଭୋଜି ଦେବାକୁ ରାଜି ହେବା ପରେ ଭୋଜି କେଉଁଠାରେ ହୋଇପାରିବ ତା'ର ତନାଘନା ଆଲୋଚନା ଚାଲିଲା । ଆମ ହସ୍‌ପିଟାଲ କମ୍ପାଉଣ୍ଡ ଭିତରେ କେତେକ ନୂଆ ଘର ତିଆରି ଚାଲିଥିଲା, କିନ୍ତୁ ସେଥିରେ ଦୁଆର ଝରକା ଲାଗିନଥିବାରୁ ସେଠାରେ ଭୋଜି ଆୟୋଜନ କରିବାର ପ୍ରଶ୍ନ ଉଠିଲା ନାହିଁ । ସେପରି ନାନା ପ୍ରସ୍ତାବ ଆସି କାଟ ଖାଇଲା ।

ସେହି ଆଲୋଚନା ଭିତରେ ଆମ ସହପାଠୀ ଖରସୁଆଁ ରାଜକୁମାର ଅନୁପ ସିଂହଦେଓ ଗୋଟାଏ ଗ୍ରହଣ ଯୋଗ୍ୟ ପ୍ରସ୍ତାବ ଦେଲେ । ତାଙ୍କ ଭିଣୋଇ କନିକା ରାଜା ସପରିବାର ଏକ ଦୂର ଗ୍ରୀଷ୍ମାବାସକୁ ଯାଇ ଗ୍ରୀଷ୍ମକାଳ କଟାଉଥିବାରୁ ତାଙ୍କ ରାଜଭବନ

ଖାଲି ପଡ଼ିଥିଲା । ଅନୁବାବୁ ସେହି ରାଜଭବନର ରକ୍ଷକଙ୍କୁ କହି ଭୋଜି ମିଳନ ପାଇଁ ସେ ସ୍ଥାନ ଠିକ କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ଭୋଜିର ଦିନ ଠିକ୍ ହେଲା । ଜୁନ୍ ମାସ ଶେଷ ହେଇ ଆସୁଥିବାରୁ ମଝିରେ ମଝିରେ ଟିପିଟିପି ବର୍ଷା ହୋଇ ଛାଡ଼ି ଯାଉଥିଲା । ନିର୍ଦ୍ଦିଷ୍ଟ ଦିନ ଆମେ କଲେଜର ଦୁଇ ଶ୍ରେଣୀ ଯାକର ଛାତ୍ର ନିଜ ନିଜ ଭିତରେ ଚାନ୍ଦାକରି ସେଥିରେ ପ୍ରେଜେଣ୍ଟ ସବୁ କିଣି ଭୋଜିରେ ଯୋଗ ଦେବାକୁ ପ୍ରସ୍ତୁତ ହେଲୁ । ସେ ସମୂହ ଉପହାର ସହିତ ଘନର କେତେକ ଅତି ଘନିଷ୍ଠ ସାଥୀ ନିଜ ନିଜର ଉପହାର ମଧ କିଣି ଆଣିଥିଲେ ।

କନିକା ରାଜବାଟୀ ଆମ ଛାତ୍ରାବାସରୁ ପ୍ରାୟ ୩/୪ କିଲୋମିଟର ବାଟ । ଆମେ ଦଳ ଦଳ ହୋଇ କିଏ ରିକ୍ସାରେ, କିଏ ସାଇକେଲରେ କିଏ ବା ଚାଲି ଚାଲି ଯାଇ ସେଠାରେ ପହଞ୍ଚିଲୁ । କନିକା ରାଜବାଟୀର ବିରାଟ ପୁଷ୍କରିଣୀ ଉପରୁ ଶୀତଳ ସମୀର ଆସି ଆମକୁ ବିଛି ଆରାମ ପ୍ରଦାନ କଲା ।

ଆମେ ସେଠାରେ ଏକଜୁଟ ହୋଇ ଅପେକ୍ଷା କରିବାର ଅଳ୍ପ ସମୟ ପରେ ଘନ ରିକ୍ସାରେ ବସି ନିଜ ସାଥିରେ ଜଳଯୋଗ ପାଇଁ କିଛି ସାମଗ୍ରୀ ଧରି ଆମକୁ ଚାହିଁ ଟିକିଏ ହସିଦେଇ ରାଜଭବନର ମୁଖ୍ୟ ଦୁଆର ଆଡ଼କୁ ଚାଲିଗଲେ । ଆମ ପାଖରୁ ଉଠି ମୁଁ ବୁଝିଆସେ କହି ତାଙ୍କ ଗ୍ରାମବାସୀ ଦିବାକର ମଧ ଉଠି ଚାଲିଗଲେ । ତା'ପରେ ପରେ ଅନ୍ୟ ଗୋଟିଏ ରିକ୍ସାରେ ଅବଗୁଣ୍ଠିତା ସ୍ତ୍ରୀ ଲୋକ ସହିତ ଆମର ଅପରିଚିତ ଏକ ଯୁବକ । ସେହି ପ୍ରାସାଦର ସାମନା ଡ୍ରଇଁରୁମ୍ ଓ ପାର୍ଶ୍ୱବର୍ତ୍ତୀ ହଲ୍ ଦୁଇଟି ପରିଷ୍କାର ପରିଚ୍ଛନ୍ନ ହୋଇ ସେଥିରେ ଚଉକି ଟେବୁଲ ପ୍ରଭୃତି ପଡ଼ି ସେହି ଉତ୍ସବ ପାଇଁ ସଜ୍ଜିତ ହୋଇ ରହିଥିଲା । ଆଗରୁ ଆସିଥିବା ଆମର ସାଥୀ ରାଜକୁମାର ହସି ହସି ଆଦରରେ ଆମକୁ ସେ ଘର ଭିତରକୁ ପାଛୋଟି ନେଲେ ।

ସେହି ପାର୍ଶ୍ୱ ହଲରୁ ଗୋଟିକରେ ରାଜ ଗାୟକମାନେ ହାରମୋନିୟମ୍ ଧରି ସଙ୍ଗୀତ ପରିବେଷଣ ଆରମ୍ଭ କରିଦେଲେ । ଅନ୍ୟ ପାର୍ଶ୍ୱ ହଲଟିରେ ଖାଦ୍ୟ ସାମଗ୍ରୀ ସବୁ ଓ ପ୍ଲେଟ ଗ୍ଲାସ ସବୁ ଯୋଗାଡ଼ ହୋଇ ରହିଥିଲା । ସଙ୍ଗୀତ ଆସର ସହିତ ମଝି ଘରେ ସଜା ଯାଇଥିବା ଟେବୁଲ ମାନଙ୍କରେ ରାଜଭବନର ସୁନ୍ଦର ସୁନ୍ଦର ପ୍ଲେଟ ମାନଙ୍କରେ ଘନ ଆଣିଥିବା ଗାଣ୍ଡିଆ ଚଣାଚୁର ଓ ଗୋଲାପଜାମୁ ପ୍ରଭୃତି ପରିବେଷଣ କରାଗଲା । ଆମ ସଙ୍ଗେ ଘନ ଓ ନବବଧୂ ସେଠାକୁ ନ ଆସି ଏକ ପାଖ କୋଠରୀରେ ମୁଣ୍ଡ ପୋତି ବସି ରହିଥିଲେ ।

ଭୋଜିରେ ନବବଧୂ ଯୋଗ ନ ଦେବାରୁ ସେ ଅତ୍ୟନ୍ତ ଲଜ୍ୟାଶୀଳା ମନେକରି ଆମେ ନବବଧୂର ସଙ୍ଗୀ ଭାଇର ମୁଖକୁ ଚାହିଁ ନବବଧୂ ବିଷୟରେ ଥଟ୍ଟା ଟାପରା କରି କଥାବାର୍ତ୍ତା

କରିବାକୁ ବିରତ ହୋଇ ଶୀଘ୍ର ଖାଇବା ସାରି ନବବଧୂର ଦର୍ଶନ ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଲୁ । ଆମେ ଉଠିବା ପୂର୍ବରୁ ନବବଧୂର ଭାଇ ତର ତରରେ ଉଠି ସେଠାରୁ ଉଭାନ ହୋଇ ଯାଇଥିଲେ ।

ଆମେ ବୋହୂ ଦେଖା ପର୍ବ ପାଇଁ ପ୍ରସ୍ତୁତ ହୋଇ ହାତରେ ଉପହାର ସାମଗ୍ରୀ ଓ ଫଟୋ କ୍ୟାମେରା ନେଇ ବୋହୂ ଥିବା କୋଠରୀ ଭିତରେ ପ୍ରବେଶ କଲୁ । ବୋହୂର ଦୁଇ ପଟେ ଘନ ଓ ଦିବାକର ଠିଆ ହୋଇ ରହିଲେ । ବୋହୂଟି ଓଢ଼ଣାକୁ ଭିଡ଼ିଦେଇ ଆହୁରି ଛାକିଜୁକି ହୋଇ ବସିଗଲା । ଆମେ ବୋହୂର ହାତକୁ ଉପହାର ବଢ଼ାଇବା ବେଳେ ତା ହାତ ଶାଢ଼ି ବାହାରକୁ ଆସିବା ପୂର୍ବରୁ ଘନ ତାହା ଘେନିଯାଇ ପାଖ ଚଉକିଟି ଉପରେ ରଖି ଦେଉଥିଲେ । ବୋହୂର ମୁହଁ ଦେଖିବାକୁ ପିଲାମାନେ ଅସ୍ଥିର ହୋଇଉଠିଲେ । ପାଠ ପଢୁଆ, ରେଜେଷ୍ଟ୍ରୀ ବିବାହ କରିଥିବା ବୋହୂର ସେପରି ଲଜ୍ୟା ସହ୍ୟ କରି ନପାରି ପାଖକୁ ଘୁଞ୍ଚି ଯିବାକୁ ଚେଷ୍ଟା କରିବା ଆଶ୍ଚର୍ଯ୍ୟ ଲାଗିଲା । ଯାହାହେଉ ବୋହୁ ତାର ଶାଢ଼ୀଟାକୁ ତଳୁ ଟିକିଏ ଘୁଞ୍ଚାଇ ନେଲା । ସେଥିରେ ତାର ଅଳତା ଲାଗି ନଥିବା ବଡ଼ ବଡ଼ ପାଦ ଦୁଇଟା ଦେଖାଗଲା । ସେତିକିବେଳକୁ ଘନ ବୋହୂ ମୁହଁର ଓଢ଼ଣାକୁ ଟିକିଏ ଉପରକୁ ଟାଣି ଦେଉ ଦେଉ ତାହା ବେଶି ଟାଣି ହୋଇଯାଇ ସିନ୍ଦୁର କଲି ମରାଯାଇଥିବା ବିରାଟ ଲମ୍ୱା ନାକଟା ଦୃଷ୍ଟିଗୋଚର ହୋଇଗଲା । ଆମ ଭିତରୁ ଗାନ୍ଧି (ଏବର ଆମେରିକା ବାସୀ ସର୍ଜନ ଆଦିତ୍ୟ ନାରାୟଣ ବର୍ମନ) ନାମକ ଅଭିନେତା ଫଟୋ ନେବା ପାଇଁ ତାଙ୍କ କ୍ୟାମେରା ଧରି ଅଭିନୟ ଭଙ୍ଗୀରେ କହିଲେ - 'ଆଜ କୋନମତେ ବଉଦିକେ ଦେଖେ ଏକବାର ତା'ର ଫଟୋ ନିତେ ହବେ ।'

ତାଙ୍କ ପାଟିରୁ କଥା ନ ସରୁଣୁ ସେଠାରେ ହାତ ଲୁଚାଇ ଠିଆ ହୋଇଥିବା ଦିବାକର ଶର୍ମା ବୋହୂ ହାତକୁ ଗୋଟିଏ ଚିଲମ ନଳୀ ବଢ଼ାଇଦେଲେ । ସେତିକିବେଳକୁ ଅଧର୍ଯ୍ୟ ହୋଇ ଫଟୋ ନେବାପାଇଁ ଗାନ୍ଧି ବୋହୂର ଓଢ଼ଣାଟା ଟାଣି ତା' ମୁଣ୍ଡରୁ ଖସାଇ ଦେଲେ ।

ତା'ପରେ ଲାଗିଲା ତାଣ୍ଡବ ନୃତ୍ୟ । ଓଢ଼ଣା ତଳୁ ବାହାରି ପଡ଼ିଲା ଆମ ସହପାଠୀ ପ୍ରସନ୍ନ ସେନାପତିର ଲମ୍ୱା ମୁହଁ । ସେଥିରେ ଆମ ଭିତରୁ ଅନେକଙ୍କ ମୁହଁ ଲଜ୍ୟାରେ ନାଲି ପଡ଼ିଗଲା । ଆମ ଭିତରୁ କେତେକ ପ୍ରତ୍ୟୁତ୍ପନ୍ନମତି ପିଲା ଚଉକୀ ଉପରୁ ଉପହାର ଗୁଡ଼ିକ ଧରି ବାହାରକୁ ଦଉଡ଼ି ପଳାଇଲେ ।

ପ୍ରସନ୍ନ କଟକୀ ପିଲା, ତା' ନିଜ ଘରେ ରହି ଆମ ସଙ୍ଗରେ ପଢ଼େ । ସେ ଏକ ଯୁବ ପହିଲିମାନ । ସେ ସଙ୍ଗେ ସଙ୍ଗେ ତା'ର ଶାଢ଼ୀକୁ କାଢ଼ି ଫିଙ୍ଗିଦେଇ ଲେଙ୍ଗୁଟି ଦେହରେ ବାହୁସ୍ଫୋଟ କରି ସେଠାରେ ନାଚିବାକୁ ଲାଗିଲା । ଜଣେ ଦୁଇଜଣ ତାକୁ ଅଟକାଇବାକୁ ଯାଇ ଆହତ ହେଲେ । ତୋର ମା' କାନ୍ଦେ ନାହିଁ ଯଦି କାନ୍ଦେ ଦ୍ୱାର ଦେଇ' ଆମେ

ଲଜ୍ଜ୍ୟା ଓ ଅପମାନରେ ରାଜଭବନ ଲୋକଙ୍କୁ ମୁହଁ ନ ଦେଖାଇ ଯେଉଁ ବାଟରେ ଯିଏ ଛାତ୍ରାବାସକୁ ପଳାଇ ଆସିବାକୁ ଆମର ତର ସ ହିଲା ନାହିଁ । ପ୍ରସନ୍ନ ମଧ ଶାଢ଼ୀକୁ ଲୁଙ୍ଗି କରି ପିନ୍ଧି ରିକ୍ସାରେ ତା' ଘରକୁ ଚାଲି ଯାଇଥିଲା ।

ସେ ସବୁରେ କିନ୍ତୁ ସେ ବିବାହ ଯୁଦ୍ଧର ବିରାମ ଘଟିଲା ନାହିଁ । ଚିଲମ ନଳୀ ଉପହାର ଦେଇଥିବା ଦିବାକର ଶର୍ମା (ପରେ ବିଧାୟକ) ସେ ଷଡ଼ଯନ୍ତ୍ର ନେତୃତ୍ୱ ନେଇଥିବା ପ୍ରମାଣିତ ହେବାରୁ ଛାତ୍ରାବାସରେ ଆମର ସାଥୀ ବସନ୍ତ ପ୍ରଧାନ ପ୍ରଭୃତି ତାଙ୍କ ଉପରେ ଚଢ଼ାଉ କଲେ, ଆମେ କୌଣସି ମତେ ବୁଝାବୁଝି କରାଇ ସମସ୍ତଙ୍କୁ ଥଣ୍ଡା କଲୁ । ତେଣୁ ଦିନେ ଦୁଇଦିନ ପରେ ଅବସ୍ଥା ଥଣ୍ଡା ପଡ଼ିଯାଇ ସେହି କ୍ରୋଧ ହାସ୍ୟରସରେ ପରିଣତ ହେଲା । କନିକା ରାଜବାଟୀରୁ ଫେରସ୍ତ ଅଣାଯାଇଥିବା ଉପହାର ପଦାର୍ଥ ସବୁ ଆଉ ଜଣେ ସାଥୀଙ୍କ ବିଭାଘରେ ଉପହାର ରୂପେ ବ୍ୟବହାର କରାଗଲା ।

ସେ କାଳରେ ପୁଅ ବିବାହ ନକରି କୋଡ଼ିଏ ବର୍ଷରୁ ଅଧିକ ରହିବାକୁ ବିବାହ ବୟସ ଗଡ଼ି ଯାଇଥିବା ଧରିନେଇ 'ତ୍ରିଂଶ ବରଷରେ ଯୋ ନେହି ପୋତା ଓ ନେହି ପୋତା' ଅର୍ଥାତ ବାହା ହୋଇ କୋଡ଼ିଏ ବର୍ଷରେ ପୁତ୍ର ଲାଭ ନକଲେ ସେ ପୁତ୍ର, ପୁତ୍ର ଗଣ୍ୟ ନୁହେଁ ବୋଲି କୁହାଯାଉଥିଲା । ତା' ଅର୍ଥ ବୃଦ୍ଧ ବୟସରେ ଜନ୍ମିତ ପୁତ୍ର ପିତାମାତାଙ୍କ କାର୍ଯ୍ୟରେ ଲାଗେ ନାହିଁ ।

ଆଗେ ମାଟ୍ରିକ ପଢୁ ପଢୁ ଅନେକ ବିଭା ହୋଇ ଯାଉଥିଲେ । ଆମ ମେଡ଼ିକାଲ କଲେଜର ବହୁ ଛାତ୍ର ଅବିବାହିତ ଥିଲେ କିନ୍ତୁ ସେକେଣ୍ଡ ଥାର୍ଡ଼ ଇଅର ବେଳକୁ ସେମାନଙ୍କୁ ବିବାହ କରାଇବା ପାଇଁ ସେମାନଙ୍କ ଅଭିଭାବକ ମାନେ ଉଦଗ୍ରୀବ ହୋଇ ଉଠୁଥିଲେ । ବିଶେଷରେ ରେଜେଷ୍ଟ୍ରୀ ବିବାହ ସେମାନଙ୍କୁ ବିଚଳିତ କରିଥିଲା । ଆମର ଫାଷ୍ଟ ଇଅର ଶେଷରେ ଆମ ସଙ୍ଗେ ପଢୁଥିବା ମୋ ଠାରୁ ୪ ବର୍ଷ ଛୋଟ ମୋ ମାଉସୀପୁଅ ଭାଇ ଲକ୍ଷ୍ମୀକାନ୍ତର ବାହାଘର ହୋଇ ଯାଇଥିଲା ।

ମୁଁ ସେକେଣ୍ଡ ଇଅର ପାଶ କଲାବେଳକୁ ମୋତେ ୨୫, ୨୬ ବର୍ଷ ବୟସ ହୋଇ ଯାଇଥିଲା । ପିଲାଦିନୁ ମୋ ବିଭାଘର ପ୍ରସ୍ତାବ ଆସିବାରେ ଲାଗିଥିଲା । ମୁଁ ଅତି ଛୋଟ ଥିବାବେଳେ ମୋର ଜେଜେବାପା ତାଙ୍କର ଜଣେ ବନ୍ଧୁଙ୍କ କନ୍ୟାକୁ ମୋ ସହିତ ବିବାହ କରିବା ପ୍ରତିଶ୍ରୁତି ଦେଇଥିବାରୁ ମୁଁ ସେ କନ୍ୟାର ମାତାଙ୍କୁ ଶଶ୍ରୁ (ଶାଶୁ) ବୋଲି ଡାକୁଥିଲି । ମୁଁ ମାଟ୍ରିକ ପଢ଼ିବା ଦିନଠାରୁ ମୋର ବିବାହ ପାଇଁ ବିଧିବଦ୍ଧ ଭାବରେ ପ୍ରସ୍ତାବ ସବୁ ଆସୁଥିଲା କିନ୍ତୁ ମୁଁ ସେସବୁ ଏଡ଼େଇ ଚାଲିଥିଲି । ଅନ୍ୟମାନଙ୍କ ପିତାମାତାଙ୍କ ପରି ମୋର ପିତାମାତା ମୋ ବିବାହ ଉପରେ ସେପରି ଜୋର ଦେଉନଥିଲେ । ମୋର ସଂଗ୍ରାମୀ ଜୀବନରେ ବିବାହର ପ୍ରଶ୍ନ ମଧ ଉଠୁନଥିଲା । କାରଣ ମାଟ୍ରିକ ପଢ଼ା ଦିନୁ ମୁଁ ଯୋଗ

ସାଧନା ପ୍ରଭୃତିରେ ଆଗ୍ରହୀ ହୋଇ ବ୍ରହ୍ମଚାରୀ ଭାବରେ ଦେଶ ସେବା କରିବି ବୋଲି ଭାବୁଥିଲି ।

ବିଶ୍ୱଯୁଦ୍ଧ ସରିଥିଲା, ଦେଶର ସ୍ୱାଧୀନତା ପ୍ରାୟ ଦ୍ୱାର ଦେଶରେ । ମୋର ପାଠପଢ଼ା ଓ ଭବିଷ୍ୟତ ଲାଇନ ଧରିଥିଲା । ମୋର ବଡ଼ଭାଇ ଓକିଲାତି କରିବା ପାଇଁ ପିଲାପିଲି ଘେନି କଟକରେ ଆସି ରହିଲେ । ମୋର ପିତା ଦେଶସେବା ଓ ବିଦ୍ୟାଧ୍ୟୟନ ନେଇ ସଂସାର ପ୍ରତି ଏକ ପ୍ରକାର ନିର୍ଲିପ୍ତ ଥିଲେ । ସେ ପ୍ରାୟ ଗ୍ରାମ ଠାରୁ ଦୂରରେ କଟକ ବା ଦିଲ୍ଲୀରେ ନିଜ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ ।

**ବିବାହ ସମ୍ମତି :**

ମୋର ସଂଗ୍ରାମୀ ମାତା ବିଚରା ଏକୁଟିଆ ଗ୍ରାମରେ ରହି ଜମିବାଡ଼ି ଓ ଘର ସମ୍ଭାଳୁଥିଲେ । ବାର୍ଦ୍ଧକ୍ୟ ଯୋଗୁଁ ତାଙ୍କୁ ଭଲ ଶୁଣା ଯାଉନଥିଲା । ଗାଁ'କୁ ଯାଇ ବହୁ ସମୟ ଧରି ଦାଣ୍ଡଦୁଆର ବାଡ଼େଇଲେ ମଧ୍ୟ, ସେ ଶବ୍ଦ ଶୁଣିବା ତାଙ୍କ ପକ୍ଷରେ କଷ୍ଟ ଥିବାରୁ ଦୁଆର ଫିଟିବାରେ ଅତ୍ୟନ୍ତ ଡେ଼ରି ହେଉଥିଲା ।

ମୁଁ ଥରେ ଗାଁ'କୁ ଯାଉଥିବା ଅବସ୍ଥାରେ ସେ ମୋତେ ଅଭିମାନ କରି କହିଲେ, ମୁଁ କ'ଣ ଏପରି ଏକୁଟିଆ ପଡ଼ିଥିବି ତୁ ଘରକୁ ବୋହୂ ଆଣିବୁ ନାହିଁ ! ତୋ ଭାର୍ଯ୍ୟା ମୋ ପାଖରେ ରହିଲେ କଅଣ ଏତେ ଅସୁବିଧା ହୁଅନ୍ତା ? ବିଭାହେବା ପାଇଁ ନିଜ ଗୋଡ଼ରେ ଠିଆ ହେବାକୁ ଡାକ୍ତରୀ ପାଶ୍ କରିବା ପାଇଁ ବହୁତ ଡେ଼ରିଅଛି । ଏବେ ମୋ ପକ୍ଷରେ ପରିବାର ପୋଷଣ କରି ପାରିବାର ପ୍ରଶ୍ନ କେଉଁଠୁ ଉଠୁଛି ? ମୋ କଥା ଶୁଣି ସେ କହିଲେ ତୁ ନିଜ ଗୋଡ଼ରେ କି ମୁଣ୍ଡରେ ଠିଆ ହେବା ପର୍ଯ୍ୟନ୍ତ ମୁଁ କ'ଣ ତୋ ଭାର୍ଯ୍ୟାକୁ ପୋଷି ପାରିବି ନାହିଁ ? ସେ ମୋ ପାଖରେ ବେଶ୍ ରହିପାରିବ । ସେ ଅଭିମାନରେ ସେପରି କହିବାରୁ ମୁଁ ତାଙ୍କୁ ଆଉ ବ୍ୟସ୍ତ ନକରି ତୁ କନ୍ୟା ଠିକ କର, ଯାହାକୁ କହିବୁ ମୁଁ ତୋ ପାଇଁ ତାକୁ ବିଭା ହୋଇ ପଡ଼ିବି ବୋଲି କହିଲି ।

ପରେ ମୋର ପିତାମାତା ମୋର ସମ୍ମତି ଥିବା ଜାଣି ମୋ ବିବାହ ପାଇଁ ଯୋଗାଡ଼ କଲେ । ଦିନେ ମୁଁ 'ନବଭାରତ ପ୍ରେସ'କୁ ଡାକରା ହୋଇ ଆସିଲି । ନବ ଭାରତ ପ୍ରେସର ଉପରତାଲାର  କୋଠରୀ ଭିତରେ ପିତା ବସି ରହିଥିଲେ । ସେ କୋଠରୀର ଦୁଆର ମୁହଁରେ ମୋ ସାନ ଭିଣୋଇ ଦ୍ୱାରୀବାବୁ (ପୁରୀର ଆଡ଼ଭୋକେଟ ସ୍ୱର୍ଗତ ଦ୍ୱାରକାନାଥ ଦାସ) ବସି ରହିଥିଲେ । ମୁଁ ବାରଣ୍ଡାରେ ରହି ଦ୍ୱାରୀକା ବାବୁଙ୍କଠାରୁ ମୋ ଡାକରାର ବିଷୟ ଶୁଣିସାଇ ଆଉ ପିତାଙ୍କ ନିକଟକୁ ନ ଯାଇ ସେ ବାରଣ୍ଡାରେ ପଡ଼ିଥିବା ଚଉକିଟି ଉପରେ ବସିଗଲି ।

ମୋ ଉପରେ ଆଖି ପଡ଼ିବା କ୍ଷଣି ମୋର ପିତା ଦ୍ୱାରୀ ବାବୁଙ୍କ ମାଧ୍ୟମରେ ମୋ ମତ ଜାଣିବା ପାଇଁ କହିଲେ ତାକୁ କହ ସେ ସମ୍ମତି ଦେଇଥିବାରୁ ଆମେ ଅମୁକ ରାୟସାହେବଙ୍କ କନ୍ୟାକୁ ତା' ବିବାହ ପାଇଁ ଠିକ୍ କରିଛୁ, ସେ କଥା ତାକୁ ଜଣାଇ ବିବାହ ତାରିଖ ଠିକ୍ କରିବା ପାଇଁ ମୁଁ ତାକୁ ଡକାଇଛି ।

ସେହି ରାୟସାହେବଙ୍କୁ ଜଣେ ଆତ୍ମଗର୍ବୀ ଓ ରୁକ୍ଷ ଲୋକ ବୋଲି ମୁଁ ଜାଣିଥିବାରୁ ଓ ମୋ ଅନିଚ୍ଛା ସତ୍ତ୍ୱେ ସେ କୌଶଳରେ ମୋତେ ତାଙ୍କ କନ୍ୟାକୁ ଦେଖାଇଥିବାରୁ ମୁଁ ସେ ପ୍ରସ୍ତାବରେ ବିମୁଖଥିଲି । ତେଣୁ ହଠାତ୍ ମୋ ପାଟିରୁ ନା ସେଠାରେ ହେବ ନାହିଁ ବୋଲି ବାହାରି ପଡ଼ିଲା । ମୋର ସେହି ପଦକ କଥାରେ ମୋ ପିତା ଅଗ୍ନିଶର୍ମା ହୋଇଯାଇ ବଡ଼ ପାଟିଟାଏ କରି କହିଲେ 'ସେ ବିଭା ହେବ ବୋଲି ବୋଉକୁ ଜବାବ ଦେଇସାରି ଏ ଖେଳ କ'ଣ ଆରମ୍ଭ କଲାଣି, ମୁଁ ଏହା ଜାଣିଥିଲେ ଏଥିରେ ପଶି ନଥାନ୍ତି, ଧ୍ୟାତ୍ । ମୁଁ ଦ୍ୱାରୀବାବୁଙ୍କୁ କହିଲି, ତାଙ୍କୁ କହ କିଛି ନ ବୁଝି ନ ବିଚାରି ସେ ଏପରି ଚିଡ଼ି ଉଠିଲେ କିପରି ଚଳିବ । ମୁଁ ତ ବିବାହ କରିବାକୁ ମନା କରୁନାହିଁ । କିନ୍ତୁ ସେ ଯେପରି ଘରର କନ୍ୟାକୁ ଠିକ୍ କରିଛନ୍ତି ସେପରି ଗୋଟାଏ ଧଳାହାତୀ ଆଣି ବୋଉ ବେକରେ ବାନ୍ଧି ଦେଲେ କ'ଣ ଲାଭ ହେବ ? ସେ ବଡ଼ ଲୋକ ଘରର ଅବହାଓ୍ୱା, ଦାମିକା ପୋଷାକ, ସୌଖିନ ସାଜ ସଜ୍ଜା, ସହରର ସିନେମା ଥିଏଟର ପ୍ରଭୃତି ଛାଡ଼ି ମଫସଲ ଗାଁ'ରେ ରହି କ'ଣ ବୋଉର ସେବା କରି ପାରିବ ? ସେପରି ବିବାହରେ କେବଳ ପରିବାରର ଅଶାନ୍ତି ବଢ଼ିବା ହିଁ ସାର ହେବ ।

ମୋ ବକ୍ତବ୍ୟ ଶୁଣିବା କ୍ଷଣି, ନିଆଁରେ ପାଣି ପଡ଼ି ଲିଭିଗଲା ପରି ସେ କ୍ଷଣକୋପୀ ଋଷିଙ୍କର କୋପ ମୁହୂର୍ତ୍ତକେ ଶାନ୍ତ ହୋଇଗଲା । ସେ ତାଙ୍କ ଦାଢ଼ିକୁ ଆଉଁସି ଆଉଁସି କହିଲେ ହଁ ସେ ଯାହା କହୁଛି ତା' ଠିକ୍ କହୁଛି, ସେ'ତ ବିଭା ହେବା ପାଇଁ ମନା କରୁନାହିଁ । ତା' ହେଲେ ଠିକ୍ ଅଛି, ଅନ୍ୟ ସ୍ଥାନ ଦେଖିବା । ଏହା କହି ସେ ତାଙ୍କ ପଢ଼ାରେ ଲାଗିଗଲେ ।

ବିବାହ ଷଡ଼ଯନ୍ତ୍ର :

୧୭.୭.୧୯୪୬ ଆମ କଲେଜର ଜନ୍ମ ଦିବସ । ସେ ଉତ୍ସବକୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ମୁଖ୍ୟ ଅତିଥି ହୋଇ ଆସିବାର ଥାଏ । ତାଙ୍କ ଆଗମନକୁ ଅପେକ୍ଷା କରି ଆମେ ସଭାଗୃହ ନିକଟରେ ରୁଣ୍ଡ ହୋଇଥାଉ । ପାଞ୍ଚଟା ସମୟରେ ତାଙ୍କ ଆସିବାର କଥା । ସେତେବେଳକୁ ମାତ୍ର ଚାରିଟା ବାଜିଥାଏ । ମେଡ଼ିକାଲ ସ୍କୁଲ ଛାତ୍ରନେତା ଓ ମୋ ପିତାଙ୍କର ଜଣେ କନିଷ୍ଠ ସହକର୍ମୀ ଶ୍ରୀ ନୃସିଂହ ଚରଣ ସାମନ୍ତସିଂହାର ପଛରୁ ଆସି ମୋ କାନ୍ଧରେ ହାତ ପକାଇ କହିଲେ 'ସଭା ହେବାକୁ ବହୁତ ଡ଼େରି ଅଛି । ଆସ, ଏଇ ପାଖରୁ ଟିକିଏ ବୁଲି ଆସିବା ।'

ମୁଁ ତାଙ୍କ କଥା ଭାଙ୍ଗି ନ ପାରି ତାଙ୍କ ସଙ୍ଗେ ଚାଲିଲି । ଆମେ ପଡ଼ିଆଟା ପାର ହେଉଥିବା ବେଳେ ଆମର ପୂର୍ବ ପରିଚିତ 'ଓଡ଼ିଶା କେମିକାଲ'ର ପ୍ରତିଷ୍ଠାତା ଶ୍ରୀ ନିଧିରାମ ମିଶ୍ର ସାଇକେଲରେ ଆସି ଆମ ନିକଟରେ ଓହ୍ଲାଇ ନୃସିଂହବାବୁଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ହୋଇ ଆମ ସଙ୍ଗେ ଚାଲିଲେ । ସେ ଦୁହିଁଙ୍କ ଭିତରେ ଆଳାପ ଚାଲିବାରୁ ମୁଁ ସେଠାରୁ ଖସି ପଳାଇ ଆସିବାକୁ ଉଦ୍ୟତ ହେଲି । ନୃସିଂହ ବାବୁ ମୋ ହାତଟାକୁ ଧରି ପକାଇ କହିଲେ - ''ଏତେ ତରତର କାହିଁକି ? ଆସ ଆଉ ଅଳ୍ପ ବାଟ, କେବଳ ଗୋଟିଏ ସ୍ଥାନରେ ମୁହଁମାରି ସଙ୍ଗେ ସଙ୍ଗେ ଫେରି ଆସିବା । ଏହା କହି ମୋର ହାତ ଧରି ମେଡ଼ିକାଲ ପଡ଼ିଆ ଡ଼େଇଁ ଏମୋରିଅମ୍ ଗଳି ବାଟେ ମୋତେ ରାଣୀହାଟ ମଙ୍ଗଳାବାଗ ରାସ୍ତାକୁ ଘେନିଗଲେ । ମଙ୍ଗଳାବାଗ ଥାନା ଆଡ଼କୁ ଅଳ୍ପବାଟ ଗଲାବେଳେ ନିଧିରାମ ବାବୁଙ୍କ ଶ୍ୱଶୁର ଡାକ୍ତର ଷାଠିଆଙ୍କ ଘର ପଡ଼ିଲା । ନିଧିରାମ ବାବୁ ଆମ ଦୁହିଁଙ୍କୁ ସେ ଘରର ଫାଟକ ଭିତରକୁ ଡାକିନେଲେ । ସେ ହତା ଭିତରେ ଘୋଡ଼ା ଗାଡ଼ିଟିଏ ଠିଆ ହୋଇଥିଲା । ତାକୁ ପାରହୋଇ ଆମେ ସେ ଘରର ପିଣ୍ଡାକୁ ଉଠି ଦାଣ୍ଡ ଘରେ ପ୍ରବେଶ କଲୁ । ସେ ଘରେ ଚଉକିଗୁଡ଼ିଏ ପଡ଼ିଥିଲା ଓ କେତେକ ଭଦ୍ରବ୍ୟକ୍ତି ବସିଥିଲେ । ସେମାନେ ନୃସିଂହବାବୁଙ୍କୁ ଓ ମୋତେ ସେଠାରେ ଖାଲିଥିବା ଚଉକିରେ ବସିବା ପାଇଁ ଅନୁରୋଧ କଲେ । ନିଧିରାମ ବାବୁ ଘର ଭିତରକୁ ଚାଲିଗଲେ ।

ମୁଁ ଗପୁଡ଼ି ଲୋକ । ଆମେ ସେଠାରେ ବସିବା କ୍ଷଣି ରାଜନୀତି ସଂସ୍କୃତି କଳା ସବୁ ବିଷୟରେ ଆଲୋଚନା ଆରମ୍ଭ ହୋଇଗଲା । ସେହି ସମୟରେ ଦାଣ୍ଡ ଘରର ଭିତର ଦ୍ୱାରର ଆରପଟୁ ହାରମୋନିୟମ ସଙ୍ଗୀତର ଝଙ୍କାର ଭାସି ଆସିଲା । ସେ ସଙ୍ଗୀତ ମୂର୍ଚ୍ଛନାକୁ ଅନ୍ୟମାନେ ମନ ଦେଇ ଶୁଣି ପସନ୍ଦ କଲାଭଳି ଅଙ୍ଗଭଙ୍ଗୀ କରିବାକୁ ଲାଗିଲେ । ଅଯଥା ଡ଼େରି ହେଉଥିବାରୁ ମୁଁ ବିରକ୍ତ ହୋଇ ଉଠ୍ ଉଠ୍ ହେଉଥିଲି । ସେତିକିବେଳେ ସେଠାରେ ବସିଥିବା ଜଣେ ଯୁବକ ''ସେ ସଙ୍ଗୀତ କିପରି ଲାଗୁଛି'' ବୋଲି ମୋତେ ପଚାରିଲେ । ମୁଁ କହିଲି ଯାତ୍ରାବାଲାଙ୍କ ହାରମୋନିୟମ ଯନ୍ତ୍ର ଉଠିଯିବାକୁ ବସିଲାଣି । ପିଆନୋ ଓ ବିଭିନ୍ନ ଆଧୁନିକତାର ଯନ୍ତ୍ର ସବୁ ତା'ର ସ୍ଥାନ ନେଲେଣି, ମୁଁ ସଙ୍ଗୀତ ପ୍ରିୟ ନୁହେଁ ହାରମୋନିୟମ୍ ସଙ୍ଗୀତ ଉପରେ ମୁଁ କଅଣ ବା କହିପାରିବି । ସେଠାରେ ଉପସ୍ଥିତ ବ୍ୟକ୍ତିମାନେ ମୁଁ ସୌଜନ୍ୟତା ଦୃଷ୍ଟିରୁ ଅନ୍ତତଃ ସେ ସଙ୍ଗୀତକୁ ପ୍ରଶଂସା କରିବି ବୋଲି ଭାବିଥିଲେ । ମୋ ବକ୍ତବ୍ୟରେ ସେଠାରେ ଥିବା ବୟସ୍କ ବ୍ୟକ୍ତିଙ୍କ ମୁହଁ ଶୁଖିଗଲା ଓ କାହାର ଇଙ୍ଗିତରେ ସେ ବାଜା ଓ ସଙ୍ଗୀତ ମଧ୍ୟ ହଠାତ ବନ୍ଦ ହୋଇଗଲା । ଯୁବକ ଜଣଙ୍କ କହିଲେ ସେ ହାରମୋନିୟମ୍‌ଟି ମରାମତି ଚାହୁଁଛି, ହାରମୋନିୟମ୍ ବଜାଇଲାବାଲୀ ମଧ୍ୟ ଅନ୍ୟ ଆଧୁନିକ ଯନ୍ତ୍ର ବଜାଇ ଜାଣେ । ହଉ ତା'ର କଣ୍ଠସ୍ୱର ଆପଣଙ୍କୁ କିପରି ଲାଗିଲା ? ମୁଁ ତାଙ୍କ କଥା ପ୍ରତି ଭ୍ରୂକ୍ଷେପ ନ କରି ବା ତା'ର ଅର୍ଥ

ବୁଝିବାକୁ ଚେଷ୍ଟା ନ କରି ଡେରି ହୋଇଲାଣି କହି ସେଠାରୁ ଚାଲିଯିବାକୁ ଉଠ୍ ଉଠ୍ ହେଲି ।

ଏହା ଭିତରେ ନିଧିରାମ ବାବୁ ଆମ ନିକଟକୁ ଆସିଥିଲେ ସେ ମୋ କଥା ଶୁଣି ହଉ କହି ଭିତରକୁ ପଶିଯାଇ ପୁଣି ଫେରିଆସି କହିଲେ ଭିତରକୁ ଆସ ଆମର ନୂଆଘର ତୋଳା ଚାଲିଛି, ଦେଖିସାରି କଲେଜ ଫେରିବା । ଏହା କହି ମୁରକି କରି ଟିକିଏ ହସିଦେଇ ମୋତେ ଘର ଭିତରକୁ ଘେନିଗଲେ ।

ତଥାପି ମୁଁ ତାଙ୍କ କଥାର ଗୁହ୍ୟ ଅର୍ଥ କିଛି ବୁଝିପାରିଲି ନାହିଁ । ମୁଁ ଘର ଭିତରକୁ ପଶିବା କ୍ଷଣି, ସେ ବାରଣ୍ଡାରେ ଟିକିଏ ହଇଚଇ ଲାଗିଗଲା ପରି ଜଣାଗଲା । କେତେକ ସ୍ତ୍ରୀ ଲୋକ ସେଠାରେ ପଡ଼ିଥିବା ମସିଣା ଉପରୁ ଉଠି ଯାଉଥିଲେ । କିନ୍ତୁ ସେଠାରେ କାନ୍ଥକୁ ଲାଗି ବସିଥିବା ସ୍ତ୍ରୀ ଲୋକଟି ତା' ସାମ୍ନାରେ ହାରମୋନିୟମଟି ଥୁଆ ହୋଇଥିବାରୁ ହାରମୋନିୟମଟାକୁ କଡ଼େଇ ଦେଇଥିଲେ ମଧ ସେଠାରୁ ଉଠି ଯାଇପାରିନଥିଲା । ମୁଁ ତା' ଆଡ଼କୁ ଟିକିଏ ଚାହିଁଦେଇ ମୁହଁ ବୁଲାଇ ନେବା ବେଳକୁ ନିଧିରାମ ବାବୁ ମୋ ହାତକୁ ମିଠାଇ ପ୍ଲେଟଟାଏ ବଢ଼ାଇ ଦେଲେ । ମୁଁ ପ୍ଲେଟଟି ହାତରେ ଧରି ଗୋଟିଏ ମିଠା ପାଟିରେ ପୂରାଇ ଅଗଣାରେ ତୋଳା ହେଉଥିବା ନୂଆ ଘର ଆଡ଼େ ଦୃଷ୍ଟି ଦେଲି ।

ମୋର ସେ ଝିଅଟି ଉପରେ ଯେତିକି ଦୃଷ୍ଟି ପଡ଼ିଥିଲା, ସେଥିରେ ତା'ର ହଳଦିଆ ଶାଢ଼ୀର ଓଢ଼ଣା ଓ ଶାଢ଼ୀଭିତରୁ ବାହାରକୁ ଦିଶୁଥିବା ଲମ୍ବା ଲମ୍ବା ଗୋରାପାଦ ମାତ୍ର ଦେଖି ଘନ ବାହାଘର କଥା ମନେପଡ଼ି ମୋତେ ହସ ଲାଗିଲା । ମୁଁ ଟିକିଏ ହସିଦେଲି । ନିଧିରାମ ବାବୁ ମୋ ହସ ଦେଖି ମଧ ଟିକିଏ ହସିଦେଲେ । ସେ'ଦିନ ନିଧିରାମ ବାବୁଙ୍କ ଶ୍ୱଶୁର ଘରର ଘର ପ୍ରତିଷ୍ଠା ବା ଅନ୍ୟ କିଛି ଉତ୍ସବ ହେଉଥିବାରୁ ସେହି ଝିଅ (ବା ନୂଆବୋହୂ) ସହିତ ଅନ୍ୟମାନେ ସେଠାରେ ରୁଣ୍ଡ ହୋଇଛନ୍ତି ବୋଲି ମୁଁ ଭାବିଲି । ପ୍ଲେଟଟି ତଳେ ଥୋଇଦେଇ ରୁମାଲରେ ମୁହଁ ହାତ ପୋଛି ତରତରରେ ଦାଣ୍ଡ ଘର ଭିତରକୁ ଚାଲିଆସିଲି । ଚାଲ ଯିବା ବୋଲି ନୃସିଂହ ବାବୁଙ୍କୁ କହି ଆମେ ବାହାରିଲାବେଳକୁ କୁଣ୍ଡା ଝାଡ଼ିଲା ପରି ବର୍ଷା ଆରମ୍ଭ ହୋଇଗଲା । ନିଧିରାମ ବାବୁ କହିଲେ ଆସ ମୁଁ ତୁମ ଦୁହିଁଙ୍କୁ ଏହି ଘୋଡ଼ା ଗାଡ଼ିରେ କଲେଜରେ ଛାଡ଼ି ଦେଇ ଆସିବି ।

ଆମେ ତିନି ଜଣ ଘୋଡ଼ା ଗାଡ଼ିରେ ବସି ଆସିବା ବାଟରେ ନିଧିରାମ ବାବୁ ମୋତେ ପଚାରିଲେ "କନ୍ୟାଟି ତୁମ ମନକୁ କିପରି ପାଇଲା ?" ମୁଁ ଚମକି ପଡ଼ି କହିଲି କେଉଁ କନ୍ୟା ? ନିଧିରାମ ବାବୁ କହିଲେ ତୁମ ହସରୁ ମୁଁ ଜାଣିଛି ତୁମ ମନକୁ ପାଇଛି, ତୁମେ ଫିଟାଇ କରି ନ କହି ଏପରି ନ ଜାଣିଲା ଭଳି କିପରି କହୁଛ ? ତୁମ ବାପାଙ୍କ ସଙ୍ଗେ

କଥାବାର୍ତ୍ତା ସରିଛି । ତୁମେ ଦେଖି ଶେଷ ନିଷ୍ପତ୍ତି ନେବାର କଥା । ତୁମ ବାପାଙ୍କ ନିର୍ଦ୍ଦେଶରେ ଆମେ ତୁମକୁ କନ୍ୟା ଦେଖାଇବାକୁ ଆଣିଥିଲୁ । କନ୍ୟା ପିତା ମଧ୍ୟ ରାଜି ହୋଇ ତୁମେ ଦେଖିବା ପାଇଁ କନ୍ୟାକୁ ସଙ୍ଗରେ ଧରି ତୁମ କଲେଜ ନିକଟ ମୋ ଶ୍ୱଶୁର ଘରକୁ ଆସିଥିଲେ ।

ତାଙ୍କ କଥା ଶୁଣି ମୋର ହାଲୁକ ଶୁଖିଗଲା । ମୋର ହାରମୋନିୟମ ସଙ୍ଗୀତ ଉପରେ ମନ୍ତବ୍ୟ ଓ ସେମାନଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାର କଥା ମନେପଡ଼ି ଲଜ୍ଜ୍ୟାରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । ମୁଁ ଗୋଟିଏ ବଡ଼ ପାପ କରିପକାଇଥିଲା ପରି ମୋର ମନେ ହେଲା । ମୋ ପାଟିରୁ ବାହାରି ପଡ଼ିଲା ''ଆପଣମାନେ ମୋର ଗୁରୁଜନ ସ୍ଥାନୀୟ, ମୁଁ କ'ଣ ଆପଣମାନଙ୍କର ଥଟ୍ଟାର ପାତ୍ର । ଆପଣମାନେ ମୋତେ ଆଗରୁ କିଛି ନ କହି ଛଳନାରେ ସେଠାକୁ ନେଇ ଏପରି ଅପଦସ୍ତ କରାଇବାର କି ପ୍ରୟୋଜନ ଥିଲା ।''

ନିଧିରାମ ବାବୁ ଅପ୍ରତିଭ ହୋଇ ନୃସିଂହ ବାବୁଙ୍କ ମୁହଁକୁ ଚାହିଁ କହିଲେ ''ତୁମେ କଣ ବିକ୍ରମକୁ କନ୍ୟା ଦେଖା କଥାର କୌଣସି ଇସାରା ଦେଇନଥିଲ ?'' ନୃସିଂହବାବୁ କହିଲେ ''କଥାଟା ଆଗରୁ ଜାଣିଥିଲେ ଏ ବାବାଜି କଣ ଆମ ସଙ୍ଗେ ଆସିଥାଆନ୍ତେ ?'' ତାଙ୍କ କଥା ଶୁଣି ବ୍ୟସ୍ତ ହୋଇଯାଇ ନିଧିରାମ ବାବୁ କହିଲେ, ''ବଡ଼ ଅପଦସ୍ତ କଥା ହେଲା, ହଉ ସେମାନେ ତ ସେଠାରେ ଅଛନ୍ତି, ତା' ହେଲେ ଚାଲ ଫେରିଯିବା, ବିକ୍ରମ ଦେଖିଆସିବେ ।'' ମୁଁ ରାଗିଯାଇ କହିଲି ମୋର ଆଉ ଦେଖିଯିବା ଦରକାର ନାହିଁ, ମୁଁ ଦେଖିଛି ମୋର ପସନ୍ଦ ହୋଇଛି ବୋଲି ମୋ ପିତାଙ୍କୁ ଜଣାଇଦେବେ । ଆମ ଗାଡ଼ି କଲେଜ ହତାକୁ ପଶିବା ସଙ୍ଗେ ସଙ୍ଗେ ମୁଁ ଗାଡ଼ିକି ଅଟକାଇ ସେଥିରୁ ଡେଇଁପଡ଼ି ଏକମୁହାଁ ହୋଇ ସଭାକୁ ଚାଲିଗଲି ।

କେତେଦିନ ପରେ ମୁଁ 'ନବଭାରତ ପ୍ରେସ'କୁ ଯାଇଥିବା ବେଳେ ପିତା ମୋତେ କହିଲେ ବଡ଼ ଦୁଃଖର କଥା, ଆମେ ଯେଉଁ କନ୍ୟାଟିକୁ ଠିକ୍ କରିଥିଲେ ସେ ତାଙ୍କ ଗ୍ରାମରେ ବସନ୍ତ ରୋଗରେ ପଡ଼ି ମରିଗଲା । ସେ କଥା ଶୁଣି ମୋ ମନରେ ଦୁଃଖ ହେବା ପରିବର୍ତ୍ତେ ମୁଁ ଆଶ୍ୱସ୍ତିରେ ନିଶ୍ୱାସ ମାରିଲି । ବିବାହ ପରେ ମୋର ଦୁର୍ବ୍ୟବହାର ପାଇଁ ମୋତେ ସେ କନ୍ୟାକୁ ଆଉ କୈଫୟତ୍ ଦେବାକୁ ପଡ଼ିବ ନାହିଁ ଭାବି ମୋର ଚିନ୍ତାଗ୍ରସ୍ତ ମନ ହାଲୁକା ହୋଇଗଲା । ସେ କନ୍ୟାଟି କିଏ ? ଓ ତା'ର ସ୍ୱଭାବ ଚରିତ୍ର ସମ୍ବନ୍ଧରେ ମୁଁ କିଛି ଜାଣି ନ ଥିବାରୁ ତା'ର ତିରୋଧାନ ସମ୍ବାଦରେ ମୋର ବିବ୍ରତ ହେବାର କୌଣସି କାରଣ ନ ଥିଲା ।

ସେତେବେଳେ ବିବାହ ବଜାରରେ ବର କନ୍ୟାଙ୍କ ବୟସର ତାରତମ୍ୟ ରୋଜଗାର କ୍ଷମତା ପ୍ରଭୃତି କିଛି ବୁଝା ନ ଯାଇ କେବଳ ବଂଶ ବୁନିଆଦିକୁ ବେଶୀ ଗୁରୁତ୍ୱ

ଦିଆଯାଉଥିଲା । ତେଣୁ ମୋତେ ଜାମାତା କରିବା ପାଇଁ ଆଗ୍ରହୀ ଲୋକଙ୍କର ଅଭାବ ନ ଥିଲା ।

ବିବାହ ନିଷତ୍ତି :

ଅଳ୍ପଦିନ ପରେ ପିତାଙ୍କଠାରୁ ଡ଼ାକରା ପାଇ ମୁଁ ଗ୍ରାମକୁ ଗଲି । ମୋର ପୂର୍ବତନ ସାଥୀ ଓ ସହପାଠୀ ସତ୍ୟବାଦୀ ମିଶ୍ରଙ୍କ ପିଉସୀ ଝିଅ ଭଉଣୀ, କନ୍ୟା ଦେଖାପାଇଁ ଆମ ଗ୍ରାମକୁ ଅଣାଯାଇ ତାଙ୍କ ମାମୁଁ ଅଜା (ଆଚାର୍ଯ୍ୟ ହରିହର ଦାସ)ଙ୍କ ଘରେ ଥିଲେ । ସେ କନ୍ୟାଙ୍କ ବୟସ ମାତ୍ର ଚଉଦ ବର୍ଷ ଶୁଣି ତାଙ୍କ ସଙ୍ଗେ କି ଦେଖା ବା କଥାବାର୍ତ୍ତା କରିବି ଭାବି ତାଙ୍କୁ ଦେଖିବା ମୋର ପ୍ରୟୋଜନ ନାହିଁ ବୋଲି ଜଣାଇଦେଲି । ଆମ ଘରୁ ମୋ ଭଉଣୀ ପ୍ରଭୃତି ଯାଇ ଦେଖି ଆସିବା ପରେ ସେହି କନ୍ୟାଙ୍କ ସହିତ ମୋର ବିବାହ ଠିକ ହୋଇଗଲା ।

ଶୀଘ୍ର ବିଭାଘର ସାରିଦେବା ପାଇଁ ବାହୁଡ଼ା ଦିନ ବିଭାଘର ହେବାର ଦିନ ବି ଠିକ୍ କରାଗଲା । ସେ'ଦିନ ବର୍ଷା ହେବାର ସମ୍ଭାବନା ଥିବାରୁ ସେ'ଦିନଟି ଘୁଞ୍ଚାଇ ଦେବାପାଇଁ ମୁଁ ପ୍ରସ୍ତାବ ଦେଲି, କିନ୍ତୁ ଶୁଭସ୍ୟ ଶିଘ୍ରଂ ନୀତିରେ ମୋର ଯୁକ୍ତି କାଟ ଖାଇଗଲା । ବିଭାଘର ପାଇଁ ନିମନ୍ତ୍ରଣ ପତ୍ର ଛପା ହେବାକୁ ମଧ ମୋର ପିତା ରୋକ ଠୋକ୍ ମନା କରିଦେଲେ । ତାଙ୍କର ଯୁକ୍ତି ଥିଲା - ତାହା ଆମ ସଂସ୍କୃତି ବିରୋଧି, ରାଜା ଗଭର୍ଣ୍ଣର ପ୍ରଭୃତିଙ୍କ ଭୋଜିକୁ ନିମନ୍ତ୍ରଣ ଆଦେଶ ପତ୍ର ସେମାନଙ୍କ ଅଧୀନସ୍ଥ ପ୍ରଜା ବା କର୍ମଚାରୀଙ୍କୁ ଦିଆଯାଏ । ଆମ ସମାଜରେ ନିଜ ଲୋକ ଯାଇ ପୁଅ ମହାପ୍ରସାଦ ଦେଇ ବନ୍ଧୁ ଓ ଅତିଥି ଭାବରେ ନିମନ୍ତ୍ରଣ କରି ଆଣି ବିବାହ ଉତ୍ସବ ପ୍ରଭୃତିରେ ଅତିଥି ସେବା କରିବାକୁ ହୁଏ ।

ମୋ ସାଥୀ (ମାଉସୀ ପୁଅ ଭାଇ) ଲକ୍ଷ୍ମୀକାନ୍ତ ପ୍ରଭୃତି ମୋର ପିତାଙ୍କୁ କହିଲେ ଆଜ୍ଞା ବନ୍ଧୁବାନ୍ଧବଙ୍କ ସହିତ ଆମକୁ ପ୍ରବୀଣ ଶିକ୍ଷକ ଓ ହସ୍‌ପିଟାଲର କାର୍ଯ୍ୟବ୍ୟସ୍ତ ଡାକ୍ତର ଓ କର୍ମଚାରୀମାନଙ୍କୁ ନିମନ୍ତ୍ରଣ କରିବାକୁ ପଡ଼ିବ । ନିମନ୍ତ୍ରଣ କରିବାକୁ ନିମନ୍ତ୍ରଣ ପତ୍ରଟିଏ ନଥିଲେ ସେମାନେ ବିବାହ ତାରିଖଟି ମନେ ରଖି ଭୋଜିକୁ ଆସିବା ସମ୍ଭବ ହେବନାହିଁ ।

ସେମାନଙ୍କ ଯୁକ୍ତି ଶୁଣି ସେ କହିଲେ ଓଃ ହୋ । ମନେ ପକେଇଦବା କଥା ତ ହେଲେ ମୁଁ ଡ଼ାକି ଦଉଛି ତୁମେ ଲେଖିନିଅ -

ସୁହୃଦ୍ ବରେଷୁ,

ଆସନ୍ତା ମିଥୁନ ୧୪ ଦିନ ବାହୁଡ଼ା ଦଶମୀ ଶନିବାର (୨୮.୬.୪୭)ମୋର ପୁତ୍ର ଶ୍ରୀମାନ୍ ବିକ୍ରମର ବୀରପ୍ରତାପପୁରର ସ୍ୱର୍ଗତ ମଧୁସୂଦନ ମିଶ୍ରଙ୍କ ଦ୍ୱିତୀୟା କନ୍ୟା ବସନ୍ତ କୁମାରୀ ସହିତ ବିବାହ ହେବ ।

ତା' ପୂର୍ବଦିନ ମୋର ଶ୍ରୀରାମଚନ୍ଦ୍ରପୁର ଘର ଠାରେ ରାତିରେ ମଙ୍ଗଳକୃତ୍ୟ ଭୋଜନ ହେବ ।

ଏଥିପାଇଁ ଆପଣଙ୍କୁ ଅନୁରୋଧ, ଆପଣ ସବାନ୍ଧବେ ମୋ ଘରଠାରେ ଉପସ୍ଥିତ ହୋଇ ଏ ସମସ୍ତ କାର୍ଯ୍ୟରେ ଯୋଗ ଦେଇ ମତେ କୃତାର୍ଥ କରିବେ ।

॥ ଇତି ॥

ନୀଳକଣ୍ଠ ଦାସ

ନିମନ୍ତ୍ରଣର ସ୍ମାରକ ସ୍ୱରୂପ ଏପତ୍ରଟି ଦେଲି

ସେ ପତ୍ରଟି ଆମ ପ୍ରେସରେ ଛପା ହୋଇ ଆସିବା ପରେ ସେ ଆମକୁ କହିଲେ ପ୍ରଥମେ ବିଧିବଦ୍ଧ ଭାବରେ ଗୁଆ ମହାପ୍ରସାଦ ପ୍ରଭୃତି ଦେଇ ନିମନ୍ତ୍ରଣ କରିବ ତା'ପରେ ମନେ ପକାଇ ଦେବା ପାଇଁ ଏ ପତ୍ରଟି ଦିଆଯାଉଛି କହି ଏ ପତ୍ରଟି ଦେବ ।

ଆମ ମେଡ଼ିକାଲ କଲେଜର ପ୍ରଫେସର ଓ ଅନ୍ୟ କର୍ମଚାରୀମାନଙ୍କ ଭିତରୁ ଅନେକ ଅଣଓଡ଼ିଆ ହୋଇଥିବାରୁ ସେମାନଙ୍କ ପାଇଁ ଇଂରାଜୀରେ ଆଉ ଅଳ୍ପ ନିମନ୍ତ୍ରଣ ପତ୍ର ଛପାଇ ଦେବା ପାଇଁ ତାଙ୍କୁ ଅନୁରୋଧ କରାଯିବାରୁ ସେ କହିଲେ ଯେ ଦେଶ ଯାଇ ସେ ଫଳ ଖାଇ । ସେମାନଙ୍କ ପାଇଁ କ'ଣ ସେମାନେ ଯାହା ଖାଆନ୍ତି ସେପରି ଭୋଜି ହେବ, ନା, ତାଙ୍କର ଯେଉଁ ରୀତିରେ ବାହାଘର ହୁଏ ଆମେ ସେମାନଙ୍କ ପାଇଁ କଣ ସେହି ରୀତିରେ ବାହାଘର କରାଇବା ? ସେମାନେ ଆମର ଅତିଥି, ଆମର ଭାଷା ଓ ସଂସ୍କୃତି ସହିତ ସେମାନେ ପରିଚିତ ହେବା ଉଚିତ । ତେଣୁ ସେମାନଙ୍କୁ ତୁମେ ଓଡ଼ିଆ ପତ୍ରଟି ପଢ଼ି ଶୁଣାଇ ଦେଲାପରେ ତାଙ୍କ ହାତରେ ଦେଇ ଆସିଲେ ଚଳିବ । ଆମ ଧର୍ମ କାର୍ଯ୍ୟ ପାଇଁ ଇଂରାଜୀ ଭାଷା ବ୍ୟବହାର କରିବା ସମୀଚିନ ହେବନାହିଁ ।

ମୋର ପିତା ବାସ୍ତବିକ ଓଡ଼ିଆ ସ୍ୱାଭିମାନର ଏକ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଥରେ ରେଭେନ୍‌ସା କଲେଜ ଛାତ୍ରାବାସର ବାର୍ଷିକ ଉତ୍ସବକୁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ତାଙ୍କୁ କିଛି କହିବାକୁ ଅନୁରୋଧ କରାଗଲା । ସେଠାରେ ଓଡ଼ିଆ ଅଣଓଡ଼ିଆ ସବୁ ପ୍ରକାର ଛାତ୍ର ଥିଲେ । ସେ କର୍ମକର୍ତ୍ତାଙ୍କୁ କହିଲେ ମୁଁ କେଉଁ ଭାଷାରେ ଭାଷଣ ଦେବା, ତୁମେ ଚାହୁଁଛ । ଆମେ ଓଡ଼ିଆରେ କହୁ ଏବଂ ଆମକୁ ଇଂରାଜୀରେ କହିବାକୁ ହୁଏ । ତାହା ଶୁଣି ଆପଣ କହିବା ଭାଷାରେ କହନ୍ତୁ ବୋଲି ସମସ୍ତେ ପାଟି କରିବାରୁ ସେ ଓଡ଼ିଆ ଭାଷାରେ ଏକ ସାରଗର୍ଭକ ଭାଷଣ ଦେଇଥିଲେ ।

ମେଡ଼ିକାଲ କଲେଜରେ ମୋ ସାଥୀମାନଙ୍କ ଦ୍ୱାରା ମୁଁ ସେ ନିମନ୍ତ୍ରଣ ପତ୍ର ବଣ୍ଟାଇଲି । ପ୍ରଫେସର ସ୍ୱର୍ଗତ କାଶୀନାଥ ଓଝା ଆଗ୍ରା ବାସୀ ଥିଲେ । ସେ ଲକ୍ଷ୍ନୌରୁ ଏମ. ଡ଼ି.

ପାଶ୍ କରି ଫର୍ମାକୋଲଜି ଆସିଷ୍ଟାଣ୍ଟ ପ୍ରଫେସର ଭାବରେ କିଛି ଦିନ ପାଇଁ ଆମ ଛାତ୍ରାବାସର ଏକ କୋଠରୀରେ ରହୁଥିଲେ । ତାଙ୍କର ଆମ ସଙ୍ଗେ ଭଲ ଭାବ ରହିଥିଲା । ମୋର ରୁମମେଟ୍ ବସନ୍ତ କୁମାର ପ୍ରଧାନ ମୋ ନିମନ୍ତ୍ରଣ ପତ୍ରଟି ନେଇ ତାହା ଓଡ଼ିଆରେ ଥିବାରୁ ତାହା ତାଙ୍କ ଆଗରେ ପଢ଼ି ଶୁଣାଇ ଦେଲେ । ମୋର ସ୍ତ୍ରୀଙ୍କ ଘର ନାମ ଥିଲା ବସନ୍ତ କୁମାରୀ । ''ନିମନ୍ତ୍ରଣ କାର୍ଡ଼ରୁ'' ମୋର ପୁତ୍ର ବିକ୍ରମ ସହିତ ବସନ୍ତ କୁମାରୀର ଶୁଭବିବାହ କଥା ଶୁଣିବା ମାତ୍ରେ କୁମାରୀ ଓ କୁମାରର ପ୍ରଭେଦ ନ ଧରି ଓଝା ସାହେବ ବସନ୍ତକୁ ଥଟାରେ କହିଲେ 'କଣ ହେଲା ତୁମ ଦୁଇଜଣ ରୁମ ମେଟଙ୍କ ଭିତରେ ବିବାହ ଠିକ୍ ହୋଇଗଲା ।' ସେଠାରୁ ଫେରି ବସନ୍ତ ଧରିଥିବା ନିମନ୍ତ୍ରଣ କାର୍ଡ଼ ପୁଳାକ ମୋ ମୁହଁକୁ ଫିଙ୍ଗି ଦେଇ କହିଲା, ତୁମ ବିଭାଘର କାର୍ଡ଼ ତୁମେ ବାଣ୍ଟ ମୁଁ ତୁମ ପାଇଁ ଥଟା ଅପମାନ ସହ୍ୟ କରିପାରିବି ନାହିଁ ।

ତା'ପରେ ସେ କାର୍ଡ଼ତକ ଗୋଟାଇ ମୁଁ ନିଜେ ବାଣ୍ଟିବାକୁ ବାହାରିଛି, ପ୍ରଭିନ୍‌ସିଆଲ ଲାବରେଟୋର ୀରେ କାର୍ଯ୍ୟ କରୁଥିବା ପ୍ରାଣକୃଷ୍ଣ କହିଲେ 'ଆପଣ ମଙ୍ଗଳାବାଗରେ ଯେଉଁ କନ୍ୟା ଦେଖି ଆସିଲେ ସେ କଥା କ'ଣ ହେଲା ? ସେ ବିଭାଘର କେବେ ହେବ ? ତା'ର ତିଥି ଆପଣଙ୍କ ଘର ଏପର୍ଯ୍ୟନ୍ତ ଜଣାଇ ନ ଥିବାରୁ କନ୍ୟାଘର ବ୍ୟସ୍ତରେ ଅଛନ୍ତି ।'

ମୁଁ ତାଙ୍କ ମୁହଁକୁ ଚାହିଁ କହିଲି, ତୁମେ ସେ କନ୍ୟାର କଅଣ ହୁଅ ? ତୁମେ କ'ଣ ଜାଣ ନାହିଁ ଯେ ସେ କନ୍ୟାଟି ବସନ୍ତ ରୋଗରେ ତା' ଗ୍ରାମରେ ଥିବାବେଳେ ମରିଯାଇଛି ।' ସେ ମୋତେ ଚାହିଁ କହିଲା 'ସେ ତ କଟକରେ ଗାର୍ଲ ସ୍କୁଲରେ ରହି ପଢୁଛି । ସେ ମୋର ମାମୁ ଝିଅ ଭଉଣୀ, ମୁଁ ତାକୁ ଦେଖି ଏବେ ତାଙ୍କ ଘରୁ ଆସୁଛି । ତୁମେ ଏପରି ମିଥ୍ୟାକଥା କାହାଠାରୁ ଶୁଣିଲ ? ଅବଶ୍ୟ ତାଙ୍କ ଗ୍ରାମରେ ତାଙ୍କ କୁଟୁମ୍ବରେ ସେହି ନାମର ଗୋଟିଏ ଝିଅର ବସନ୍ତ ରୋଗରେ ମୃତ୍ୟୁ ହୋଇଥିବାର ମୁଁ ଶୁଣିଛି ।' ମୁଁ ତାକୁ ଆଉ କିଛି ନ କହି ମୋ ବିବାହ ନିମନ୍ତ୍ରଣ କାର୍ଡ଼ ତାକୁ ଧରାଇ ଦେଇ ସେଠାରୁ ବିଦା କରିଦେଲି । ମୁଁ ପରେ ବୁଝିଲି ସେ କନ୍ୟା ଘରର ଜଣେ ବିରୋଧୀ, ସେ ପ୍ରସ୍ତାବ ଭାଙ୍ଗିବା ପାଇଁ ନନାଙ୍କୁ ଆସି ସେପରି ଖବର ଦେଇଥିଲେ । 'ଅଶ୍ୱତ୍ଥାମା ହତଃ ସତ୍ୟ ନରେ ବା ଗୁଞ୍ଜରେ ବା' ଏକା ନାମର କନ୍ୟା ଥିବାରୁ ତାହା ସମ୍ଭବ ହୋଇଥିଲା, ମୋର ମନେହେଲା ଯାହାର ଯେଉଁଠି ଯୋଗଥାଏ ବିଧାତାଙ୍କ ନିର୍ଦ୍ଦେଶରେ ସେହିଠାରେ ହିଁ ବିବାହ ସମ୍ପନ୍ନ ହୁଏ ।

ମୋ ଜୀବନରେ ଘୋଡ଼ାଚଢ଼ାଠାରୁ ପାଠପଢ଼ା ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ସିଧାସଳଖ ବାଟରେ ହୋଇ ନାହିଁ, ତେଣୁ ବିଭାଘର ମଧ ତା'ର ଗୋଟିଏ ଦୃଷ୍ଟାନ୍ତ । ମୋର ବିବାହ ପୂର୍ବ ଦିନ ରାତ୍ରୀରେ ହଠାତ୍ ବୋଉଙ୍କର କଲେରା ଭଳି ଝାଡ଼ା ଆରମ୍ଭ ହୋଇଗଲା । ଭୋରରୁ ସେ ମୋତେ ଗନ୍ଧେଇ କରି ପାଲିଙ୍କିରେ ବସାଇ ବାହାହେବାପାଇଁ ପଠାଇବା

କଥା, କିନ୍ତୁ ମୁଁ ଯିବା ପୂର୍ବରୁ ସେ ଡ଼ାକ୍ତରଖାନାକୁ ନିଆଯାଇ ତାଙ୍କ ଦେହରେ ସାଲାଇନ୍ ଇଞ୍ଜେକସନ୍ ପ୍ରଭୃତି ଦିଆଗଲା ।

ମୋର ଶ୍ୱଶୁର ଘର ଆମ ଘରଠାରୁ ମାତ୍ର ଚାରିମାଇଲ । ତେଣୁ ମୁଁ ପାଲିଙ୍କିରେ ବସି ବାହା ହେବାପାଇଁ ଯାଇ ତାଙ୍କ ଗ୍ରାମ ମୁଣ୍ଡ ପୁଷ୍କରିଣୀ ନିକଟରେ ବସିରହିଲି । ବୋଉ ଅବସ୍ଥା ନିରୀକ୍ଷଣ କରି ସାରି ଆସିବା ପାଇଁ ମୋର ପିତା ଓ ଗୁମାସ୍ତା ପ୍ରଭୃତି ଡ଼ାକ୍ତରଖାନାରେ ଅଟକି ଯାଇଥିଲେ । ବୋଉ ଅବସ୍ଥା ଭଲ ନ ଥିବାରୁ ମୋର ପିତା ନ ଆସି ମୋର ଜଣେ ଦୂର ସମ୍ପର୍କୀୟ କକେଇ ଆସି ମୋତେ ବେଦିକୁ ନେଇ ବିଭାଘର କରାଇଲେ । ମୁଁ ବୋଉ ଖବର ଶୁଣିବାକୁ ଉଦ୍‌ଗ୍ରୀବ ଥାଇ ଯନ୍ତ୍ରଚାଳିତ ଭାବେ ବିବାହ କାର୍ଯ୍ୟରେ ଯୋଗ ଦେଇଥିଲି । ଘଣ୍ଟାକୁ ଘଣ୍ଟା ବୋଉ ଚିକିତ୍ସା ଓ ଅବସ୍ଥାର ସମ୍ବାଦ ଅସି ମୋ ନିକଟରେ ପହଞ୍ଚୁଥାଏ । ବୋଉର ସେପରି ଅବସ୍ଥା ଯୋଗୁଁ ସବୁଆଡ଼େ ଅବ୍ୟବସ୍ଥା ଦେଖାଗଲା । ଆମ ସଙ୍ଗରେ ଯଥେଷ୍ଟ ଖାଦ୍ୟଦ୍ରବ୍ୟ ଆସିଥିଲା ଓ ମୋର ଶ୍ୱଶୁର ଘର ବରଯାତ୍ରୀମାନଙ୍କୁ ଖାଇବାକୁ ଦେବାକୁ ପ୍ରସ୍ତୁତ ଥିଲେ ମଧ ସେ ସବୁର ଭାର ନେଇଥିବା ଆମ ଗୁମାସ୍ତା ଆସି ନ ପାରିବାରୁ ସବୁ ଅବ୍ୟବସ୍ଥା ଘଟିଗଲା । କଟକରୁ ଅସିଥିବା ମୋର ସାଥୀ ବରଯାତ୍ରୀମାନେ ମୋର ମାନସିକ ଅବସ୍ଥା ଦୃଷ୍ଟିରୁ ତାଙ୍କ ଅସୁବିଧା କଥା ମୋତେ କିଛି ନ ଜଣାଇ ଚନ୍ଦନପୁର ବଜାରକୁ ଯାଇ ଚୂଡ଼ା କଦଳୀ ପ୍ରଭୃତି ଯାହା ମିଳିଲା ତାହା ଖାଇକରି ଫେରିଥିବାର ମୁଁ ପରେ ଶୁଣିବାକୁ ପାଇଲି । ବିଭାଘର ସରିବା ସଙ୍ଗେ ସଙ୍ଗେ ସନ୍ଧ୍ୟାରେ ମୁଁ ସତ୍ୟବାଦୀ ଡ଼ାକ୍ତରଖାନାକୁ ଯାଇ ବୋଉକୁ ଦେଖି ଆସିଲି । ତା'ର ଅବସ୍ଥା ସେତେ ଭଲ ନ ଥିଲା । ପରଦିନ ସକାଳେ ପାଲିଙ୍କିରେ କନ୍ୟାକୁ ଧରି ମୁଁ ଘରକୁ ଫେରିଲି । ମୁଁ କନ୍ୟାକୁ ଆମ ଘରେ ଛାଡ଼ିଦେଇ ଡ଼ାକ୍ତରଖାନାକୁ ଦଉଡ଼ିଲି । ସେତେବେଳେ ଅବଗୁଣ୍ଠିତା ବାଳିକା ବଧୂକୁ ଦେଖି ତା' କଥା ବୁଝିବା ଭଳି ମୋ ମାନସିକ ଅବସ୍ଥା ନ ଥିଲା । ଦୁଇଦିନ ପରେ ବୋଉ ଆରୋଗ୍ୟ ଲାଭ କରି ଘରକୁ ଲେଉଟିଲା ।

ଜୀବନ ସାଥୀ :

ମୋର ଶ୍ୱଶୁର ସ୍ୱର୍ଗତ ମଙ୍ଗୁ (ମଧୁସୂଦନ) ମିଶ୍ରେ ଜଣେ ନିର୍ଭିକ ସ୍ୱାଧୀନଚେତା ବ୍ୟକ୍ତି ଥିବା ତାଙ୍କ ସଙ୍ଗୀ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି । ମଙ୍ଗୁ ମିଶ୍ରଙ୍କ ସନ୍ତାନମାନେ ଖୁବ ଛୋଟ ଛୋଟ ଥିବା ସମୟରେ ନିମୋନିଆ ରୋଗରେ ତାଙ୍କର ତିରୋଧାନ ଘଟିଥିଲା । ସେତେବେଳକୁ ସଲଫା ଆଣ୍ଟିବାଓଟିକ୍ ଔଷଧ ସବୁ ଉଦ୍ଭାବିତ ହୋଇ ନ ଥିଲା । ମୋର ସହଧର୍ମିଣୀ ବାସନ୍ତୀ (ତାଙ୍କ ଘର ନାମ ବସନ୍ତ କୁମାରୀ) ମାତ୍ର ଚାରିବର୍ଷର ହେଲାବେଳକୁ ପିତାଙ୍କୁ ହରାଇଥିଲେ । ପିତାଙ୍କ ମୃତ୍ୟୁ ପରେ ତାଙ୍କ ଘରର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ଚିକିତ୍ସା ଅଭାବରୁ ତାଙ୍କ

ମାତା ତାଙ୍କର ଦୁଇଗୋଟି ଶିଶୁକନ୍ୟାଙ୍କୁ ମଧ୍ୟ ହରାଇଥିଲେ । ବାସନ୍ତୀଙ୍କ ମାତା ହରିହର ଦାସଙ୍କ ଭାଣେଜୀ ଥିଲେ । ସେ ଜଣେ ଦୃଢ଼ଚେତା ମହିଳା ଥିବାରୁ ସେସବୁ ବିପଦରେ ଭାଙ୍ଗିନପଡ଼ି ପିଲାମାନଙ୍କୁ ପାଠ ପଢ଼ାଇ କିପରି ମଣିଷ କରିବେ ସେଥିପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ରଖିଥିଲେ । ସେ ସେହି ଗ୍ରାମର କନ୍ୟା ଓ ବଧୂ ହୋଇଥିବାରୁ ଅଧିକାଂଶ ଲୋକ ତାକୁ ଚମ୍ପାନାନୀ ବୋଲି ଡ଼ାକୁଥିଲେ । ତାଙ୍କ ଘରଟି ସଂସ୍କୃତି ଓ ରାଜନୈତିକ ଚେତନାର ଏକ ପ୍ରଧାନ ପୀଠ ଥିଲା । ବାସନ୍ତୀଙ୍କ କକେଇ ଅଜାଙ୍କ ପୁତ୍ର ମନୁ ମାମୁ (ବିପ୍ଳବୀ ମନ ମୋହନ ମିଶ୍ର), ଗୋପବନ୍ଧୁଙ୍କ କନ୍ୟା ବାସନ୍ତୀଙ୍କ ବଡ଼ ମାଇଁ କାଳିମୟୀଙ୍କ ପୁତ୍ର ସତ୍ୟବାଦୀ ଭାଇନା (ପ୍ରଫେସର ସଂଗ୍ରାମୀ ସତ୍ୟବାଦୀ ମିଶ୍ର) ପ୍ରଭୃତି ଗ୍ରାମକୁ ଆସିଲେ ଦଳ ଦଳ ରାଜନୀତିକ ସାଥୀ କର୍ମୀଙ୍କୁ ଆଣି ତାଙ୍କ ଘରେ ଆଡ଼୍‌ଡ଼ା ଜମାଇ ନାନା ପ୍ରକାର ରାଜନୈତିକ ଆଲୋଚନାରେ ବ୍ୟସ୍ତ ରହୁଥିଲେ ।

ସେପରି ଆବହାଓ୍ୱା ଭିତରୁ ଆସିଥିବାରୁ ମୋର ମାତା ସଂଗ୍ରାମୀ ରାଧାମଣୀ ଦେବୀଙ୍କ ତତ୍ତ୍ୱାବଧାନରେ ଆମ ଘରେ ବର୍ଷ ବର୍ଷ ଧରି କାଳାତିପାତ କରିବାରେ ତାଙ୍କର ବିଶେଷ ଅସୁବିଧା ହୋଇନଥିଲା ।

ବାସନ୍ତୀଙ୍କର ବଡ଼ ଭଉଣୀ ରମା ନାନୀଙ୍କର ୧୦, ୧୧ ବର୍ଷ ବୟସରେ ଗୋଟିଏ ପାଖ ଗ୍ରାମର କଲେଜରେ ପାଠ ଆରମ୍ଭ କରିଥିବା ଜଣେ ଯୁବକ ସହିତ ନିର୍ବନ୍ଧ ହୋଇଥିଲା । ବରପକ୍ଷ ପରେ, ସେ ଘରୁ ଯୌତୁକର ଆଶା ନ ଦେଖି ସେ ସମ୍ବନ୍ଧ ଭାଙ୍ଗିଦେଇ କନ୍ୟାକୁ ବରପୂର୍ବା କରି ଛାଡ଼ି ଯାଇଥିଲେ । ଭାଗ୍ୟବଶତଃ ରମା, ସ୍ୱନାମଧନ୍ୟ (ଯୁଦ୍ଧରେ ଥିବା) ନରସିଂହ ରଥଙ୍କ ପାଣିଗ୍ରହଣ କରିଥିଲେ । ପରେ ନରସିଂହ ବାବୁ ଜଣେ ପ୍ରବୀଣ ପ୍ରଶାସକ ଭାବରେ ସୁନାମ ଅର୍ଜନ କରିପାରିଥିଲେ ।

ବାସନ୍ତୀଙ୍କ ମାତା ପିଲାପିଲିଙ୍କ ପାଠ ଉପରେ ବିଶେଷ ନଜର ଦେଇଥିବାରୁ ସମସ୍ତେ ମେଧାବୀ ଛାତ୍ର ଛାତ୍ରୀ ଭାବରେ ନାମ କରିଥିଲେ । ବଡ଼ଭାଇ ସତ୍ୟାନନ୍ଦ ବାବୁ ବୃତ୍ତି ପାଇ ପାଇ ପାଠପଢ଼ି ଓଡ଼ିଶା ସରକାରଙ୍କର ଏକ ଦକ୍ଷ ଶାସକ ଭାବେ କାର୍ଯ୍ୟରୁ ଅବ୍ୟାହତି ନେଲେ । ସାନଭାଇ ସଚ୍ଚିଦାନନ୍ଦ ଏକ ଦକ୍ଷ ଇଞ୍ଜିନିୟର ଭାବରେ ଭାରତ ଷ୍ଟିଲ ଅଥରିଟିର ସର୍ବୋଚ୍ଚ ସ୍ଥାନ ଅଧିକାର କରି କାର୍ଯ୍ୟରୁ ଅବ୍ୟାହତି ନେଲେ । ବଡ଼ଭଉଣୀ ବିବାହ ପରେ ଶାଶୁଘରେ ରହି ବ୍ରହ୍ମପୁରରେ ପାଠ ପଢ଼ି କୃତିତ୍ୱ ସହିତ ମାଟ୍ରିକ ପାଶ୍ କରିଥିଲେ ।

ଆମ ଘରକୁ ଆସିବା ପୂର୍ବରୁ ଦୁଇ ତିନି ମାଇଲ ଦୂର ହାଇସ୍କୁଲକୁ ଯିବାଆସିବାକରି ବାସନ୍ତୀ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ, ତା'ପରେ କେବଳ ପରୀକ୍ଷା ଦେଇ ନବମ ଶ୍ରେଣୀକୁ ଯାଇଥିଲେ । ଆମ ଘରକୁ ଆସିବା ପରେ ପୁଣି ପଢ଼ିବାକୁ ଅଳି କରି ସେ ବିବାହର ପରବର୍ଷ ଘରୋଇ ଭାବରେ ମାଟ୍ରିକ ଦେଇ ପାଶ୍ କଲେ ।

ମୁଁ ଏମ. ବି.ବି.ଏସ . ପାଶ୍ କରିବା ପରେ ସ୍ନାତକୋତ୍ତର ବିଦ୍ୟା ପାଇଁ ଆମେରିକା ଗଲି । ୧୯୪୭ ରୁ ୧୯୫୪ ଶେଷ ପର୍ଯ୍ୟନ୍ତ ସାତ ବର୍ଷରୁ ଊର୍ଦ୍ଧ୍ୱ ବାସନ୍ତୀ ଆମ ଗ୍ରାମରେ ମୋ ବୋଉ ପାଖରେ ରହିଥିଲେ । କଷ୍ଟସହିଷ୍ଣୁ ରାଜନୈତିକ ସଂଗ୍ରାମର ଆଦର୍ଶ ଥିବା ଏକ ପାଠପଢୁଆ ଘରେ ଜନ୍ମ ହୋଇଥିବାରୁ ସେ ଆମ ଘରର ଚଳଣି ସହିତ ନିଜକୁ ଖାପଖୁଆଇ ବେଶ ଚଳି ଯାଉଥିଲେ ।

ଆମ ଘରେ ସମୟ ସମୟରେ ଅବେଳାରେ ଦଳ ଦଳ ରାଜନୈତିକ ଓ ସାହିତ୍ୟିକ ବ୍ୟକ୍ତିଙ୍କୁ ଧରି ମୋର ପିତା ଆସି ଝଡ଼ପରି ପହଞ୍ଚିଯାଆନ୍ତି । ବାସନ୍ତୀ ବୋଉ ସଙ୍ଗେ ମିଶି ସେମାନଙ୍କୁ ଚର୍ଚ୍ଚା କରନ୍ତି ଏପରିକି ଜାତି ଅଜାତି ନ ମାନି ଅତିଥି ମୁସଲମାନ ହୋଇଥିଲେ ମଧ୍ୟ ସେମାନଙ୍କ ଖାଇବା ବାସନ ମାଜନ୍ତି । ପଢ଼ାପଢ଼ିରେ ମନ ଥିବାରୁ ସେ ବହୁ ପୁସ୍ତକ ଓ ଗ୍ରନ୍ଥାବଳୀମାନ ପଢ଼ି ଓଡ଼ିଶାର ସବୁ କବିଙ୍କର କବିତାମାନ ମନେରଖି ଦରକାର ବେଳେ ଗାଇପାରନ୍ତି । ସାଧାରଣ ଜୀବନଧାରଣ ଓ ଉଚ୍ଚ ଭାବନାକୁ ସେ ଜୀବନର ଆଦର୍ଶରେ ପରିଣତ କରିପାରିଥିଲେ । ତାଙ୍କର ସ୍ମରଣ ଶକ୍ତି ପ୍ରଖର ଥିବାରୁ ମୋର ପରବର୍ତ୍ତୀ ସାହିତ୍ୟିକ ଜୀବନରେ ସେ ମୋତେ ବହୁ ଭାବରେ ସାହାଯ୍ୟ କରି ଚାଲିଛନ୍ତି । ସେ ମୁହେଁ ମୁହେଁ ମୋର ବର୍ଣ୍ଣ ଶୁଦ୍ଧି ସନ୍ଦେହକୁ ନିବାରଣ କରିପାରନ୍ତି । ମୁ କେଉଁକାଳେ କି କବିତା ଲେଖି ଫିଙ୍ଗି ଦେଇଥିଲି ସେ ତାକୁ ଆବୃତ୍ତି କରି ମୋତେ ଶୁଣାନ୍ତି ।

ବୋଉର ଇଚ୍ଛା ପୂରଣ କରିବାକୁ ଓ ଉତ୍‌ଥାନ ପତନ ଭିତରେ ଗତି କରୁଥିବା ମୋର ଜୀବନ ସହିତ ତାଳ ଦେଇ ଚାଲିବା ପାଇଁ ମୋର ପିତା ଯେ ମୋ ପାଇଁ ଏକ ଉପଯୁକ୍ତ ଜୀବନ ସାଥୀ ବାଛିଥିଲେ ସେଥିପାଇଁ ମୁଁ ଚିର କୃତଜ୍ଞ ।



# ସ୍ୱାଧୀନତାର ଝଲକ ଓ ମେଡ଼ିକାଲ ଟ୍ରେନିଙ୍ଗ

୧୯୪୭ ବର୍ଷ ବହୁ ଘଟଣା ବହୁଳ ବର୍ଷ ଭାବେ ଦେଖାଦେଇଥିଲା । ସେହିବର୍ଷ ମେ ମାସରେ ମୁଁ ପ୍ରଥମ ଏମ. ବି. ବି. ଏସ. ପାଶ୍ କରି କ୍ଲିନିକାଲଇଅର ବା ରୋଗୀ ଚିକିତ୍ସା ତାଲିମ କ୍ଲାସରେ ଗୋଡ଼ ଦେଇଥିଲି । ସେହି ବର୍ଷ ଜୁନ୍ ମାସରେ ମୋର ବୈବାହିକ ଜୀବନ ଆରମ୍ଭ ହୋଇଗଲା ।

**ସ୍ୱାଧିନତା ଦିବସ :**

ଗୋଟିଏ ଯୁଗାନ୍ତକାରୀ ସ୍ମରଣୀୟ ଦିବସ ଭାବରେ ସେହିବର୍ଷ ଅଗଷ୍ଟ ପନ୍ଦର ତାରିଖ ଦିନ ବ୍ରିଟିଶ ଶାସନର ଅବସାନ ଘଟି ଭାରତ ସ୍ୱାଧିନ ହୋଇ ତା'ର ଶାସନଭାର ଜାତୀୟ କଂଗ୍ରେସ ଗ୍ରହଣ କରିଥିଲା । ତା'ର ଏଗାର ବର୍ଷ ତଳେ ୧୯୩୬ ରେ ବିଛିନ୍ନାଞ୍ଚଳମାନଙ୍କୁ ଛାଡ଼ି ଖଣ୍ଡିତ ଓଡ଼ିଶା ପ୍ରଦେଶ ଗଠିତ ହେଲା ଭଳି ଭାରତ ଭାଗ ଭାଗ ହୋଇ ସ୍ୱାଧୀନତା ଲାଭ କରିଥିଲା । ଓଡ଼ିଶା ପ୍ରଦେଶ ଗଠନ ବେଳେ ଯେପରି ଆମ ଆନନ୍ଦରେ ଦୁଃଖ ମିଶି ଯାଇଥିଲା । ଖଣ୍ଡିତ ହିନ୍ଦୁସ୍ଥାନର ମୁକ୍ତିରେ ଆମ ପୂର୍ବତନ ସ୍ୱାଧିନତା ଯୁଦ୍ଧର ସୈନିକମାନଙ୍କ ଭିତରୁ ଅନେକଙ୍କ ମନରେ ଆନନ୍ଦ ସହିତ ନୈରାଶ୍ୟ ଭାବ ଜାଗ୍ରତ ହୋଇଥିଲା । ନେତାଜୀ ସୁଭାଷ ଥିଲେ ଏପରି ବିଭାଜନ ହୋଇ ନଥା'ନ୍ତା ବୋଲି ଆମର ବିଶ୍ୱାସ ଥିଲା ।

କନଷ୍ଟିଟ୍ୟୁଏଣ୍ଟ ଆସେମ୍ବ୍ଲିରେ ପଶୁ ପଶୁ କଂଗ୍ରେସର ତୁଙ୍ଗ ନେତାମାନଙ୍କୁ କ୍ଷମତା ଲିପ୍ସା ଘାରିଥିଲା । କଂଗ୍ରେସ ଅନୁଷ୍ଠାନ ମହାତ୍ମା ଗାନ୍ଧିଙ୍କୁ ଆଡ଼େଇ ଦେଇ ତରତରରେ କ୍ଷମତା ହାସଲ ପାଇଁ ଆଗଭର ହୋଇ ପଡ଼ିଥିଲେ । ସ୍ୱାଧିନତା ଆନ୍ଦୋଳନ ବେଳେ ଯେଉଁ ବ୍ରିଟିଶ ପଦଲେହନକାରୀ ଅଫିସରମାନେ ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ଘୋର ଅତ୍ୟାଚାର ଚଳାଉଥିଲେ, ଭାରତ ସ୍ୱାଧିନ ହେଲେ ଯେଉଁମାନଙ୍କୁ ଫାସି ଖୁଣ୍ଟରେ ଝୁଲା ହେବ ବୋଲି ଆମେ ଘୋଷଣା କରିଥିଲୁ, ଭାରତ ସ୍ୱାଧିନ ହେବା ସଙ୍ଗେ ସଙ୍ଗେ ରାତାରାତି ସେମାନେ ଖଦଡ଼ ଲୁଗା ପିନ୍ଧି କଂଗ୍ରେସୀ ଶାସକଙ୍କ ହାତ ବାରେସୀ ପାଲଟି ଯାଇ ସେମାନଙ୍କ ନାମରେ ପୂର୍ବପରି ରାଜ୍ୟ ଶାସନ କରିଦେବା ଆରମ୍ଭ କରିଦେଲେ ।

ଅସହଯୋଗ ଆନ୍ଦୋଳନ ବେଳେ ସରକାରୀ ବିଚାରାଳୟ ଓ କଚେରୀ ଉପରେ ଜାତୀୟ ପତାକା ଉଡ଼ାଇ ସଂଗ୍ରାମୀମାନେ ହାକିମ ଚଉକା ଦଖଲ କରୁଥିଲେ । ଭାରତ ସ୍ୱାଧିନ ହେଲେ ସେ ହାକିମମାନଙ୍କ ଅପରାଧର ବିଚାର ହୋଇ ଦଣ୍ଡ ଦିଆଯିବ ବୋଲି

କହୁଥିଲେ । ୧୯୪୨ ଆନ୍ଦୋଳନ ସମୟରେ ଆମେ ଆମ ସରକାରୀ ପ୍ରଫେସର ମାନଙ୍କୁ ବାଟ ଓଗାଳି ଇସ୍ତଫା ଦେବାପାଇଁ ଦାବି କରିଥିଲୁ । ୧୯୪୨ରୁ ୧୯୪୭ ଏହି ପାଞ୍ଚଟା ବର୍ଷ ଭିତରେ ଯେପରିକି ସବୁ ଓଲଟ ପାଲଟ ହୋଇଗଲା । ସ୍ୱାଧିନତାର ଝଲକ କ୍ଷଣସ୍ଥାୟୀ ହୋଇ କାଳ ବକ୍ଷରେ ଲୀନ ହୋଇଗଲା ପରି ବୋଧହେଲା । ବ୍ରିଟିଶ୍ ଗଲେ କିନ୍ତୁ ଲୋକଙ୍କ ଦୁଃଖର ସମାପ୍ତି ହେଲାନାହିଁ । ଦୁର୍ନୀତି ଲେଲିହାନ ଜିହ୍ୱା ମେଲାଇ ସମଗ୍ର ଦେଶକୁ ଗିଳିଦେବାକୁ ବସିଲା ।

ମୋର ଖଦଡ଼ ପୋଷାକ ସ୍ୱାଧୀନତା ସୈନିକର ପୋଷାକ ଥିଲା । ସଂଗ୍ରାମୀ ଘରର ଖଦଡ଼ କନା ଉପରେ ମୁଁ ଭୂମିଷ୍ଠ ହୋଇଥିଲି । ଖଦଡ଼ ପୋଷାକ ସୁବିଧାବାଦୀ କ୍ଷମତା ଲିପ୍ସୁଙ୍କର ପୋଷାକରେ ପରିଣତ ହେବାରୁ ମୋ ମନରେ କ୍ଷୋଭ ଆସିଲା । ମୁଁ ସବୁଦିନ ପାଇଁ ଖଦଡ଼କୁ ବିଦାୟଦେଇ କ୍ଷମତା ରାଜନୀତିରୁ ନିଜକୁ ସଂପୂର୍ଣ୍ଣ ଅଲଗା ରଖିବା ପାଇଁ ଶପଥ ନେଲି ।

ମୋ ମନରେ ଯେଉଁ ଭାବ ଆସିଲା ତାକୁ ରୂପ ଦେଇ ଭବିଷ୍ୟତ ବଂଶଧରଙ୍କ ପାଇଁ ନିମ୍ନଲିଖିତ କବିତାଟି ଲେଖି ''ନବ ଭାରତ'' ପତ୍ରିକାର ସ୍ୱାଧୀନତା ସଂଖ୍ୟାରେ ପ୍ରକାଶିତ କରାଇଥିଲି ।

## ସମାପ୍ତ ନୁହେଁ ତବ କାହାଣୀ

ଯୁଗ ଯୁଗ ପୀଡ଼ିତ କଙ୍କାଳ
ନୂତନ ଜୀବନର ପରଶେ
ଚାହିଁରହେ ବିସ୍ମୃତ ପଥରେ
ଶୃଙ୍ଖଳ ଖୋଲି ତା'ର ହରଷେ ।
ରୁଦ୍ଧ ହୃଦୟ ଆଜି କାହାର
ସଂଭ୍ରମେ ଖୋଜିବୁଲେ ସପନେ,
ପାଇ ସେ ପାଏ ନାହିଁ ଭାଷାରେ
ଭାବ ତା' ମରେ କାହିଁ ଗୋପନେ ।
ମୁକତି ଆଲୋକର ହାତରେ
ସେ ଯୁଗ ଅନ୍ଧାରୁଆ ରାତିରେ,
ଚାଲିଗଲା ପଣ୍ଡା ପୁଅ ଡାଖିଆ
ବିଳାସ ଫିଙ୍ଗି ବନ ଗହନେ ।
ବଂଗର ବନେ ପୁଣି ଫୁଟିଲା
ଶତ ଯୁଗ ସଂଚିତ କଳିକା,

ସ୍ପନ୍ଦିତ ହେଲା ଅନ୍ତର
ହସିଲା ଯେବେ ଫାସି ଫଳକା ।
ଆସିଲେ କାହୁଁ ଭାସି ମୋହନ
ଅହିଂସା ଚାବୁ ତୋର ହାତରେ,
ନିସ୍ତବ୍‌ଧ ଦୁଇଯୁଗ ଯୁବକ
ପ୍ରଣମେ ଭକ୍ତିଭରା ଅନ୍ତରେ ।
ଖେଳିଲା ପୁଣି ବନ ସ୍ପନ୍ଦନ
କୋହିମାରେ ନିଭୃତ ଶବଦେ,
ତୁଂଗ ଆଭାଷେ ପଥ ଫିଟିଲା
ରୁଦ୍ର ସେ 'ଦିଲ୍ଲୀ ଚଲୋ' ନିନାଦେ ।
ଗଢ଼ିବୁ ନିଜ ହାତେ ନିଜରେ
ଅମୃତ କିମ୍ବା ବିଷ ପରଶି,
ଚାହାଁନା ତୁ କଙ୍କାଳ ପଛରେ
ଦେଖ ତୁ ସମ୍ମୁଖରେ ଭରଷି ।
ସରି ତ ସରିନାହିଁ ସେ ପଥ
ଚାହିଁରହେ କଙ୍କର ବାହିନୀ,
ଚାଲ ତୁ ମାଡ଼ିଚାଲ ପଥିକ
ସମାପ୍ତ ନୁହେଁ ତବ କାହାଣୀ ।

ଦେଶ ସେବା ପାଇଁ କ୍ଷମତା ରାଜନୈତିକ ପଛାଠାରୁ ଦୂରରେ ରହି ରୋଗୀସେବା ଓ ଚିକିତ୍ସା ବିଦ୍ୟାର ପ୍ରସାର ପଥକୁ ମୁଁ ବାଛିନେଇ ମେଡ଼ିକାଲ ପାଠରେ ପୂର୍ଣ୍ଣ ପ୍ରାଣରେ ମନୋନିବେଶ କଲି ।

ଆମ କଲେଜରେ ସବୁ ବିଷୟରେ ତାଲିମ୍ ପାଇଁ ବ୍ୟବସ୍ଥା ହୋଇ ନ ଥିବାରୁ ସେସବୁର ତାଲିମ ପାଇଁ ଆମକୁ ଓଡ଼ିଶା ବାହାରର ଅନ୍ୟ ଅନୁଷ୍ଠାନମାନଙ୍କୁ ଯିବାକୁ ପଡ଼ିଲା ।

ପ୍ରଥମ ଏମ୍.ବି.ବି.ଏସ୍. ପାଶ୍ ପରେ ଦ୍ୱିତୀୟ ଏମ.ବି.ବି.ଏସ୍. ପରୀକ୍ଷା ପାଇଁ ସ୍ୱାସ୍ଥ୍ୟରକ୍ଷା, 'ଜୁରିସ' ପାଥୋଲଜି (ଓ ବ୍ୟାକ୍ଟିଓଲଜି), ଫରମାକୋଲଜି ଏପରି ଚାରୋଟି ବିଷୟରେ ତାଲିମ ନେବାକୁ ପଡୁଥିଲା । ପାଥୋଲଜି ଓ ଫର୍‌ମାକୋଲଜି ଦୁଇଟି ସ୍ଥାୟୀ ବିଭାଗ ହୋଇଥିବାରୁ ସେଥିରେ ସ୍ଥାୟୀ ଅଧ୍ୟାପକମାନେ ନିଯୁକ୍ତ ହୋଇଥାଆନ୍ତି । ସ୍ୱାସ୍ଥ୍ୟରକ୍ଷା ବିଷୟ କଟକର ହେଲ୍‌ଥ ଅଫିସର ସାମୟିକ ଅଧ୍ୟାପକ ଭାବରେ ଶିକ୍ଷାଦାନ କରନ୍ତି ଏବଂ କଟକର ସିଭିଲ ସର୍ଜନ ସାମୟିକ ଅସ୍ଥାୟୀ ଅଧ୍ୟାପକ ଭାବେ 'ଜୁରିସ'ରେ ଶିକ୍ଷା ଦିଅନ୍ତି ।

## କଲିକତା ସ୍ୱାସ୍ଥ୍ୟରକ୍ଷା ପରିଭ୍ରମଣ :

ଆମେ ପଢ଼ିଲା ବେଳକୁ ସ୍ୱାସ୍ଥ୍ୟରକ୍ଷା ପ୍ରଫେସର (କଟକ ହେଲ୍‌ଥ ଅଫିସର)ଙ୍କୁ କ'ଣ ଟ୍ରେନିଙ୍ଗ୍ ପାଇଁ ବିଲାତ ପଠାଯାଇଥିବାରୁ ଆମ ପାଥୋଲଜି ପ୍ରଫେସର ସ୍ୱାସ୍ଥ୍ୟରକ୍ଷା ବିଭାଗର ଦାୟିତ୍ୱରେ ଥିଲେ ।

ଆମକୁ ସମୂହ ଜଳ ବିଶୋଧନ, ଜଳ ଭଣ୍ଡାର ଓ ବଡ଼ ସହରକୁ ଜଳ ଯୋଗାଣ ଏବଂ ଆବର୍ଜନା ନିଷ୍କାସନ ପ୍ରଭୃତିରେ ଶିକ୍ଷା ଦେବା ପାଇଁ ପାଥୋଲଜି ପ୍ରଫେସର ଡାକ୍ତର ବନବିହାରୀ ପଟ୍ଟନାୟକ ଆମକୁ ସଙ୍ଗରେ ଧରି କଲିକତା ଯାଇଥିଲେ । କଲିକତାର ଚିତ୍ତରଞ୍ଜନ ଆଭିନିଉର ଏକ ହୋଟେଲ ହଲରେ ଆମ ପୁଅମାନଙ୍କ ପାଇଁ ଏକାଠି ରହିବାର ବ୍ୟବସ୍ଥା ହୋଇଥିଲା । ଝିଅ ଛଅ ଜଣ ପ୍ରଫେସର ରହୁଥିବା କୋଠରୀର ଏକ ପାଖ କୋଠରୀରେ ରହିଥିଲେ । ବନ୍ନୁ ବାବୁ ଆମକୁ ସଙ୍ଗରେ ନେଇ କଲିକତା କର୍‌ପୋରେସନ୍ ଜଳ ନିଷ୍କାସନ ଓ ଜଳ ଯୋଗାଣ ସଂସ୍ଥା ସବୁ ବୁଲାଇ ଦେଖାଇଲେ । ବିରାଟ ବିରାଟ ଜଳ ଭଣ୍ଡାରମାନଙ୍କରେ ଜଳ ରଖାଯାଇ କିପରି ବିଶୋଧନ ହୋଇ ଲୋକଙ୍କୁ ଯୋଗାଇ ଦିଆଯାଏ ସେ ସବୁ ଦେଖାଇ ସେ ସମ୍ବନ୍ଧରେ ଆମକୁ ଭାଷଣ ଦେଇ ବୁଝାଇଲେ । ସେ ସବୁ ସରିବା ପରେ ଆମେ ନିଜେ ନିଜେ ଦଳ ଦଳ ହୋଇ ବୁଲି କଲିକତା ମହାନଗରୀର ବିଭିନ୍ନ ସ୍ଥାନ ବୁଲି ଦେଖିଲୁ । ମୁଁ କଲିକତାର ରାସ୍ତାଘାଟ ଓ ଚାଲିଚଳଣ ସହିତ ପରିଚିତ ଥିବାରୁ କଲିକତାକୁ ପ୍ରଥମ ଥର ଆସିଥିବା କେତେକ ବନ୍ଧୁ ମୋ ସଙ୍ଗେ ସଙ୍ଗେ ବୁଲୁ ଥାଆନ୍ତି । ଥରେ ଚୌରଙ୍ଗୀରେ ବୁଲୁଥିବା ସମୟରେ ଆମ ଭିତରୁ ବସନ୍ତ ପ୍ରଧାନ ଆମକୁ ନ କହି ଆମ ଦଳ ଛାଡ଼ିଗଲେ । ସେ କଲିକତାରେ ନୂଆ ଥିବାରୁ ଆମେ ତାଙ୍କୁ ଖୋଜି ନ ପାଇ ବସାକୁ ଲେଉଟିଲୁ । କେତେ ଘଣ୍ଟା ପରେ ବସନ୍ତ ଆସି ପହଞ୍ଚିଲେ । ସେ ବାଟ ଚିହ୍ନି ଏକୁଟିଆ କିପରି ଆସିପାରିଲେ ପଚାରିବାରୁ ସେ କହିଲେ ''କ'ଣ ହେଲା ଲୋକେ ବାଟ ପଚାରି ପଚାରି ରାସୋଳ (ଅନୁଗୁଳ ନିକଟ ଏକ ସ୍ଥାନ)ରୁ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ପାରୁଛନ୍ତି । ମୁଁ ଏହି ସହରଟାରେ ବାଟ ଭୁଲି ଏଠାକୁ ଆସି ପାରନ୍ତି ନାହିଁ ? ତୁମେ ମୋତେ କ'ଣ ବିଚାରିଛ କି ? ମୋ ପାଇଁ ବ୍ୟସ୍ତ ହୋଇ ପଡ଼ିଲ ।'' ତାଙ୍କ ନବଜିଆ କଥାରେ ଆମ ଭିତରେ ହସ ବୃଷ୍ଟି ହେଲା ।

ଆମେ ଫେରିବା ଦିନ ମୁଁ କେତେକ ପିଲାଙ୍କୁ ସଙ୍ଗରେ ନେଇ ଗଙ୍ଗା ନଦୀ ପାର ହୋଇ ଶିବ୍‌ପୁର ବଟାନିକାଲ ଗାର୍ଡ଼ନ ଦେଖିବା ପାଇଁ ଯାଇଥିଲି । ଆମେ ଉପରଓଳି ଆସି ବସାରେ ପହଞ୍ଚି ମୋର ମାଉସୀପୁଅ ଭାଇ ଲକ୍ଷ୍ମୀକାନ୍ତ ପେଟ ଯନ୍ତ୍ରଣା ପାଇଁ କଲିକତା ମେଡ଼ିକାଲ କଲେଜରେ ଭର୍ତ୍ତି ହୋଇଥିବାର ସମ୍ବାଦ ମିଳିଲା । ମୁଁ ସଙ୍ଗେ ସଙ୍ଗେ ସେଠାକୁ ଯାଇ, ତାର ଆପେଣ୍ଡିକ୍ସ ଅପରେସନର ବ୍ୟବସ୍ଥା ହେଉଥିବାର ଶୁଣିଲି ।

ସନ୍ଦିତ ହେଲା ଅନ୍ତର
ହସିଲା ଯେବେ ଫାସି ଫଳକା ।
ଆସିଲେ କାହୁଁ ଭାସି ମୋହନ
ଅହିଂସା ଚାକୁ ତୋର ହାତରେ,
ନିସ୍ତବ୍ଧ ଦୁଇଯୁଗ ଯୁବକ
ପ୍ରଣମେ ଭକ୍ତିଭରା ଅନ୍ତରେ ।
ଖେଳିଲା ପୁଣି ବନ ସନ୍ଦନ
କୋହିମାରେ ନିଭୃତ ଶବଦେ,
ତୁଂଗ ଆଭାଷେ ପଥ ଫିଟିଲା
ରୁଦ୍ର ସେ 'ଦିଲ୍ଲୀ ଚଲୋ' ନିନାଦେ ।
ଗଢ଼ିବୁ ନିଜ ହାତେ ନିଜରେ
ଅମୃତ କିମ୍ବା ବିଷ ପରଶି,
ଚାହାଁନା ତୁ କଙ୍କାଳ ପଛରେ
ଦେଖ ତୁ ସମ୍ମୁଖରେ ଭରଷି ।
ସରି ତ ସରିନାହିଁ ସେ ପଥ
ଚାହିଁରହେ ଜଙ୍ଗର ବାହିନୀ,
ଚାଲ ତୁ ମାଡ଼ିଚାଲ ପଥିକ
ସମାପ୍ତ ନୁହେଁ ତବ କାହାଣୀ ।

ଦେଶ ସେବା ପାଇଁ କ୍ଷମତା ରାଜନୈତିକ ପନ୍ଥାଠାରୁ ଦୂରରେ ରହି ରୋଗୀସେବା ଓ ଚିକିତ୍ସା ବିଦ୍ୟାର ପ୍ରସାର ପଥକୁ ମୁଁ ବାଛିନେଇ ମେଡ଼ିକାଲ ପାଠରେ ପୂର୍ଣ୍ଣ ପ୍ରାଣରେ ମନୋନିବେଶ କଲି ।

ଆମ କଲେଜରେ ସବୁ ବିଷୟରେ ତାଲିମ୍ ପାଇଁ ବ୍ୟବସ୍ଥା ହୋଇ ନ ଥିବାରୁ ସେସବୁର ତାଲିମ ପାଇଁ ଆମକୁ ଓଡ଼ିଶା ବାହାରର ଅନ୍ୟ ଅନୁଷ୍ଠାନମାନଙ୍କୁ ଯିବାକୁ ପଡ଼ିଲା ।

ପ୍ରଥମ ଏମ୍.ବି.ବି.ଏସ୍. ପାଶ୍ ପରେ ଦ୍ୱିତୀୟ ଏମ.ବି.ବି.ଏସ୍. ପରୀକ୍ଷା ପାଇଁ ସ୍ୱାସ୍ଥ୍ୟରକ୍ଷା, 'ଜୁରିସ' ପାଥୋଲଜି (ଓ ବ୍ୟାକ୍ଟିଓଲଜି), ଫରମାକୋଲଜି ଏପରି ଚାରୋଟି ବିଷୟରେ ତାଲିମ ନେବାକୁ ପଡୁଥିଲା । ପାଥୋଲଜି ଓ ଫର୍ମାକୋଲଜି ଦୁଇଟି ସ୍ଥାୟୀ ବିଭାଗ ହୋଇଥିବାରୁ ସେଥିରେ ସ୍ଥାୟୀ ଅଧାପକମାନେ ନିଯୁକ୍ତ ହୋଇଥାଆନ୍ତି । ସ୍ୱାସ୍ଥ୍ୟରକ୍ଷା ବିଷୟ କଟକର ହେଲ୍ଥ ଅଫିସର ସାମୟିକ ଅଧାପକ ଭାବରେ ଶିକ୍ଷାଦାନ କରନ୍ତି ଏବଂ କଟକର ସିଭିଲ ସର୍ଜନ ସାମୟିକ ଅସ୍ଥାୟୀ ଅଧାପକ ଭାବେ 'ଜୁରିସ'ରେ ଶିକ୍ଷା ଦିଅନ୍ତି ।

## କଲିକତା ସ୍ୱାସ୍ଥ୍ୟରକ୍ଷା ପରିଭ୍ରମଣ :

ଆମେ ପଢ଼ିଲା ବେଳକୁ ସ୍ୱାସ୍ଥ୍ୟରକ୍ଷା ପ୍ରଫେସର (କଟକ ହେଲ୍‌ଥ ଅଫିସର)ଙ୍କୁ କ'ଣ ଟ୍ରେନିଙ୍ଗ୍ ପାଇଁ ବିଲାତ ପଠାଯାଇଥିବାରୁ ଆମ ପାଥୋଲଜି ପ୍ରଫେସର ସ୍ୱାସ୍ଥ୍ୟରକ୍ଷା ବିଭାଗର ଦାୟିତ୍ୱରେ ଥିଲେ ।

ଆମକୁ ସମୂହ ଜଳ ବିଶୋଧନ, ଜଳ ଭଣ୍ଡାର ଓ ବଡ଼ ସହରକୁ ଜଳ ଯୋଗାଣ ଏବଂ ଆବର୍ଜନା ନିଷ୍କାସନ ପ୍ରଭୃତିରେ ଶିକ୍ଷା ଦେବା ପାଇଁ ପାଥୋଲଜି ପ୍ରଫେସର ଡାକ୍ତର ବନବିହାରୀ ପଟ୍ଟନାୟକ ଆମକୁ ସଙ୍ଗରେ ଧରି କଲିକତା ଯାଇଥିଲେ । କଲିକତାର ଚିତ୍ତରଞ୍ଜନ ଆଭିନିଉର ଏକ ହୋଟେଲ ହଲରେ ଆମ ପୁଅମାନଙ୍କ ପାଇଁ ଏକାଠି ରହିବାର ବ୍ୟବସ୍ଥା ହୋଇଥିଲା । ଝିଅ ଛଅ ଜଣ ପ୍ରଫେସର ରହୁଥିବା କୋଠରୀର ଏକ ପାଖ କୋଠରୀରେ ରହିଥିଲେ । ବନ୍ନୁ ବାବୁ ଆମକୁ ସଙ୍ଗରେ ନେଇ କଲିକତା କର୍‌ପୋରେସନ୍ ଜଳ ନିଷ୍କାସନ ଓ ଜଳ ଯୋଗାଣ ସଂସ୍ଥା ସବୁ ବୁଲାଇ ଦେଖାଇଲେ । ବିରାଟ ବିରାଟ ଜଳ ଭଣ୍ଡାରମାନଙ୍କରେ ଜଳ ରଖାଯାଇ କିପରି ବିଶୋଧନ ହୋଇ ଲୋକଙ୍କୁ ଯୋଗାଇ ଦିଆଯାଏ ସେ ସବୁ ଦେଖାଇ ସେ ସମ୍ବନ୍ଧରେ ଆମକୁ ଭାଷଣ ଦେଇ ବୁଝାଇଲେ । ସେ ସବୁ ସରିବା ପରେ ଆମେ ନିଜେ ନିଜେ ଦଳ ଦଳ ହୋଇ ବୁଲି କଲିକତା ମହାନଗରୀର ବିଭିନ୍ନ ସ୍ଥାନ ବୁଲି ଦେଖିଲୁ । ମୁଁ କଲିକତାର ରାସ୍ତାଘାଟ ଓ ଚାଲିଚଳଣ ସହିତ ପରିଚିତ ଥିବାରୁ କଲିକତାକୁ ପ୍ରଥମ ଥର ଆସିଥିବା କେତେକ ବନ୍ଧୁ ମୋ ସଙ୍ଗେ ସଙ୍ଗେ ବୁଲୁ ଥାଆନ୍ତି । ଥରେ ଚୌରଙ୍ଗୀରେ ବୁଲୁଥିବା ସମୟରେ ଆମ ଭିତରୁ ବସନ୍ତ ପ୍ରଧାନ ଆମକୁ ନ କହି ଆମ ଦଳ ଛାଡ଼ିଗଲେ । ସେ କଲିକତାରେ ନୂଆ ଥିବାରୁ ଆମେ ତାଙ୍କୁ ଖୋଜି ନ ପାଇ ବସାକୁ ଲେଉଟିଲୁ । କେତେ ଘଣ୍ଟା ପରେ ବସନ୍ତ ଆସି ପହଞ୍ଚିଲେ । ସେ ବାଟ ଚିହ୍ନି ଏକୁଟିଆ କିପରି ଆସିପାରିଲେ ପଚାରିବାରୁ ସେ କହିଲେ ''କ'ଣ ହେଲା ଲୋକେ ବାଟ ପଚାରି ପଚାରି ରାସୋଳ (ଅନୁଗୁଳ ନିକଟ ଏକ ସ୍ଥାନ)ରୁ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ପାରୁଛନ୍ତି । ମୁଁ ଏହି ସହରଟାରେ ବାଟ ଭୁଲି ଏଠାକୁ ଆସି ପାରନ୍ତି ନାହିଁ ? ତୁମେ ମୋତେ କ'ଣ ବିଚାରିଛ କି ? ମୋ ପାଇଁ ବ୍ୟସ୍ତ ହୋଇ ପଡ଼ିଲ ।'' ତାଙ୍କ ନବଜିଆ କଥାରେ ଆମ ଭିତରେ ହସ ବୃଷ୍ଟି ହେଲା ।

ଆମେ ଫେରିବା ଦିନ ମୁଁ କେତେକ ପିଲାଙ୍କୁ ସଙ୍ଗରେ ନେଇ ଗଙ୍ଗା ନଦୀ ପାର ହୋଇ ଶିବ୍‌ପୁର ବଟାନିକାଲ ଗାର୍ଡ଼େନ ଦେଖିବା ପାଇଁ ଯାଇଥିଲି । ଆମେ ଉପରଓଳି ଆସି ବସାରେ ପହଞ୍ଚି ମୋର ମାଉସୀପୁଅ ଭାଇ ଲକ୍ଷ୍ମୀକାନ୍ତ ପେଟ ଯନ୍ତ୍ରଣା ପାଇଁ କଲିକତା ମେଡ଼ିକାଲ କଲେଜରେ ଭର୍ତ୍ତି ହୋଇଥିବାର ସମ୍ବାଦ ମିଳିଲା । ମୁଁ ସଙ୍ଗେ ସଙ୍ଗେ ସେଠାକୁ ଯାଇ, ତାର ଆପେଣ୍ଡିକ୍ସ ଅପରେସନର ବ୍ୟବସ୍ଥା ହେଉଥିବାର ଶୁଣିଲି ।

କଲିକତା ମେଡ଼ିକାଲ କଲେଜ 'ନାମ ବଡ଼ା କାମ ଥୋଡ଼ା' । ଲକ୍ଷ୍ମୀକାନ୍ତକୁ କୌଣସି ପ୍ରଫେସର ବା ବିଶେଷଜ୍ଞ ପରୀକ୍ଷା କରିବା ପୂର୍ବରୁ ଜଣେ ଜୁନିଅର ସର୍ଜନ ଦେଖିବା ମାତ୍ରେ ଆପେଣ୍ଡିସାଇଟିସ୍ କହି ନିଜେ ତାକୁ ଅପରେସନ୍ କରିବା ପାଇଁ ଠିକ୍ କରି ସାରିଥିଲେ । ହଠାତ୍ ଯେ କୌଣସି ଯନ୍ତ୍ରଣାଦାୟକ ଫୁଲା ରୋଗରେ ଅତି ଜରୁରୀ ନ ଥିଲେ ଅପରେସନ ହୁଏ ନାହିଁ । ତେଣୁ ଭେଷଜ ଚିକିତ୍ସା ନ କରି ବିଶେଷଜ୍ଞଙ୍କୁ ନ ଦେଖାଇ ବାହାଦୂରୀ ଦେଖାଇ ହାତ ଠିକ୍ କରିବାକୁ ଯାଉଥିବା ସେହି ଜୁନିଅର ଡାକ୍ତରଙ୍କ କାର୍ଯ୍ୟରେ ମୋର ସନ୍ଦେହ ହେଲା । ମୁଁ ଫେରିଆସି ପ୍ରଫେସର ବନବିହାରୀ ପଟ୍ଟନାୟକଙ୍କୁ ଅନୁରୋଧ କରିବାରେ ସେ ସିଧା ଯାଇ ସର୍ଜରୀ ପ୍ରଫେସରଙ୍କୁ କହିଲେ ।

ସର୍ଜରୀ ପ୍ରଫେସର ରୋଗୀକୁ ପରୀକ୍ଷା କରିସାରି କହିଲେ ବର୍ତ୍ତମାନ 'ଆବଡ଼ୋମେନ'ରେ ଫୁଲା (ଇନ୍‌ଫେକସନ) ରହିଛି । ତାହା ଆପେଣ୍ଡିସାଇଟିସ୍ ହେଉ ନ ହେଉ ପ୍ରଥମେ ତାକୁ ନୂଆ ବାହାରିଥିବା ତିନି ଘଣ୍ଟିଆ ପେନସିଲିନ ଇଞ୍ଜେକ୍ସନ ଦିଆଯିବା ଉଚିତ କହି, ସେଦିନ ସେ ଅପରେସନ ବନ୍ଦ କରିଦେଲେ ।

ଲକ୍ଷ୍ମୀକାନ୍ତଙ୍କୁ ଗୋଟିଏ କ୍ଷୁଦ୍ର ପୁରୁଣାକାଳିଆ ଅନ୍ଧାରିଆ କୋଠରୀରେ ରଖାଯାଇ ପେନସିଲିନ ଇଞ୍ଜେକ୍ସନ ଦିଆଯିବା ଆରମ୍ଭ ହେଲା । ଆମର ସେ ଦିନ ରାତିରେ କଟକ ଫେରିବାର ଥିବାରୁ ବନୁ ବାବୁ ମୋତେ କହିଲେ ତୁମେ ଟେଲିଗ୍ରାମ କରି ତାଙ୍କ ପିତାଙ୍କୁ ଡକାଅ । ଲକ୍ଷ୍ମୀକାନ୍ତଙ୍କୁ କେତେଦିନ ପାଇଁ ଏଠାରେ ରହିବାକୁ ପଡ଼ିବ, ତେଣୁ ତାଙ୍କ ପିତା ବା ଘରୁ ଅନ୍ୟ କେହି ଆସି ତା'ର ତତ୍ତ୍ୱ ନିଅନ୍ତୁ ।

ପ୍ରଫେସର ପଟ୍ଟନାୟକଙ୍କ କଥା ଶୁଣି ମୁଁ କ'ଣ କରିବି ଭାବି ପାରିଲି ନାହିଁ । ଲକ୍ଷ୍ମୀକାନ୍ତର ପିତା ଜଣେ ପୁରୁଣାକାଳିଆ ଶିକ୍ଷକ । ସେ ଆଉ ଦୁଇଜଣ ଶିକ୍ଷକଙ୍କ ସହିତ ଥରେ ମାତ୍ର କଲିକତା ବୁଲି ଦେଖିବା ପାଇଁ ଆସିଥିଲେ । ସେମାନେ କଚ୍ଛାଭିଡ଼ି ହାତ ବଢ଼ାଇ ଟ୍ରାମ ଓ ବସ୍‌ର ହାଣ୍ଡଲ ଧରୁ ଧରୁ ଅଳ୍ପ ସମୟ ଅଟକୁଥିବା ଓ ଭିଡ଼ଥିବା କଲିକତା ଟ୍ରାମ୍ ଓ ବସ୍‌ଗୁଡ଼ିକରେ ଚଢ଼ିବାରେ ଅକୃତକାର୍ଯ୍ୟ ହୋଇଥିଲେ । ଶେଷରେ କଲିକତାର ହାତଟଣା ରିକ୍‌ସାରେ ବସି କାଳୀ ମନ୍ଦିର ଦେଖିବାକୁ ଯାଇ ଲେଉଟିଲା ବେଳେ ଏପଟ ସେପଟ ହେବାରୁ ଭାରସାମ୍ୟ ରଖି ନ ପାରି ରିକ୍‌ସାକୁ ଟେକି ଧରିଥିବା ରିକ୍‌ସାବାଲାର ହାତ ଛାଡ଼ିଯିବାରୁ ପଛପଟକୁ ଲେଉଟିପଡ଼ି ଲୋକହସା ହୋଇ କଲିକତା ଦେଖା ବନ୍ଦ କରି ଗ୍ରାମକୁ ଫେରି ଆସିଥିଲେ । ସେପରି ଜଣେ ବ୍ୟକ୍ତି ଆସି କଲିକତାରେ ପୁତ୍ରର କି ତତ୍ତ୍ୱ ନେଇ ପାରନ୍ତେ ?

ମୁଁ ଲକ୍ଷ୍ମୀକାନ୍ତ ନିକଟକୁ ଯିବା କ୍ଷଣି ସେ ଅନ୍ଧାରୁଆ ଘରର ଖଟିଆ ଉପରୁ ଉଠି ମୋତେ ଭିଡ଼ିଧରି କହିଲା ''ଭାଇନା ମୋତେ ସଙ୍ଗରେ ନେଇ ଚାଲ । ଏଠାରେ ମୋତେ

ଛାଡ଼ି ଯାଅନାହିଁ । ଏମାନେ ମୋତେ ମାରି ଦେବେ । ଆମ ହସ୍‌ପିଟାଲକୁ ଗଲେ ମୁଁ ଭଲ ହୋଇଯିବି ।'' ମୁଁ ବନ୍ନୁ ବାବୁଙ୍କୁ ସେକଥା କହିବାରେ ସେ ପ୍ରଥମେ ଖିଙ୍କାରି ଉଠିଲେ । ତାକୁ ସଙ୍ଗରେ କିପରି ନବ, ତାକୁ କ'ଣ ବାଟରେ ମାରିଦବ ? ମୁଁ କହିଲି, ସାର୍ ତିନି ଘଣ୍ଟାରେ ଥରେ ପେନ୍‌ସିଲିନ୍ ଇଞ୍ଜେକ୍‌ସନ ଦେବା କଥା, ଗୋଟାଏ ଥର୍ମୋଫ୍ଲାକ୍‌ସରେ ବରଫ ଭିତରେ ପେନ୍‌ସିଲିନ୍ ସଲ୍ୟୁସନକୁ ରଖି ସଙ୍ଗରେ  ନେଲେ ଗାଡ଼ି ଭିତରେ ଠିକ୍ ସମୟରେ ଇଞ୍ଜେକ୍‌ସନ ଦେଇ ହେବ, ଆମେ ଫାଷ୍ଟ କ୍ଲାସରେ ତାକୁ ଶୁଆଇ ନେଇଯାଇ ପାରିବା । ଗୋଟିଏ ରାତିର କଥା । କଟକ ଷ୍ଟେସନରୁ ଆମ୍ବୁଲାନ୍‌ସ ଡାକି, ଆମ ହସ୍‌ପିଟାଲକୁ ନେଇ ଯାଇପାରିବା । ତା'ର ଯତ୍ନ ନେବା ଭଳି ଏଠାକୁ ଆସିବା ଭଳି କେହି ଲୋକ ନାହାନ୍ତି । ଏଠା ଡାକ୍ତରଙ୍କ ଖାମଖିଆଲି ବ୍ୟବହାରରେ ସେ ଛାନିଆରେ ମରିଯିବ । ''ମୋ କଥା ଶୁଣି ବନ୍ନୁ ବାବୁ ଗମ୍ଭୀର ହୋଇ କହିଲେ ତୁମର ଯାହା ଇଚ୍ଛା ତା' କର, ଆଉ ପଛରେ ମୋତେ ଦୋଷ ଦେବ ନାହିଁ ।''

ମୁଁ ହସ୍‌ପିଟାଲକୁ ଯିବା ପରେ ''ମୁଁ ମୋ ନିଜ ଦାୟିତ୍ୱରେ ଯାଉଛି'' ବୋଲି ଲକ୍ଷ୍ମୀକାନ୍ତ ହସ୍‌ପିଟାଲ କାଗଜରେ ଲେଖିଦେଲା । ଆମେ ଟାକ୍‌ସି କରି ତାକୁ ଷ୍ଟେସନକୁ ଆଣି ଧରାଧରି କରି ନେଇ ଗାଡ଼ିରେ ବସାଇ ଏକ ସମୟରେ ଇଞ୍ଜେକ୍‌ସନ ଦେଇ କଟକ ଆଣିଲୁ । ଆମ ହସ୍‌ପିଟାଲରେ ଦିନେ ଦୁଇଦିନ ରହିବା ପରେ ସେ ଝାଡ଼ିଝୁଡ଼ି ହୋଇ ରୋଗ ଶଯ୍ୟାରୁ ଉଠିଲା । ଆମ ବିଶେଷଜ୍ଞମାନେ ତାକୁ ପରୀକ୍ଷା କରିବା ପରେ ତା'ର ରୋଗ ଆପେଣ୍ଡିସାଇଟିସ ନୁହେଁ ଓ ସେ ଫାଇଲେରିଆ ଅରକାଇଟିସ୍ ରୋଗ ଭୋଗ କରୁଥିଲା ବୋଲି ଜଣା ପଡ଼ିଲା । ତା'ର ଆପେଣ୍ଡିକ୍‌ସ ଅପରେସନ କରିବା ପ୍ରୟୋଜନ ନ ଥିଲା ।

### ବିହାର ପରିଭ୍ରମଣ :

ଏ ଘଟଣାର କିଛି ସମୟ ପରେ ମାନସିକ ରୋଗ, ଯକ୍ଷ୍ମାରୋଗ ପାଇଁ ଥିବା ବିହାରର ବଡ଼ ବଡ଼ ହସ୍‌ପିଟାଲ ଓ ଟୀକା ତିଆରି କେନ୍ଦ୍ର ସବୁରେ ଟ୍ରେନିଙ୍ଗ ନେବାପାଇଁ ଆମକୁ ବିହାରକୁ ଯିବାର ଆଦେଶ ଆସିଲା । ଓଡ଼ିଶାରେ ସେ ସବୁ କେନ୍ଦ୍ର ନ ଥିବାରୁ ସେ ସବୁ ସ୍ଥାନକୁ ତାଲିମ ପାଇଁ ଯିବା ବାଧତାମୂଳକ ଥିଲା । ସେଥିପାଇଁ ସେ ସବୁ ସ୍ଥାନରେ ଉପଯୁକ୍ତ ଶିକ୍ଷା ଥିବାରୁ ଆମ ସଙ୍ଗେ କୌଣସି ଶିକ୍ଷକ ଯିବାର ବ୍ୟବସ୍ଥା ନ ଥିଲା । ଆମ କ୍ଲାସର ଜଣେ ଛାତ୍ରୀଙ୍କର ଛୋଟ ପିଲାଟିଏ ଥିବାରୁ ତାଙ୍କ ମାତା ପିଲାଟିକୁ ଧରି ଆମ ସଙ୍ଗେ ଯାଇଥିଲେ ।

### କାଂକେ ମାନସିକ ରୋଗ ତାଲିମ କେନ୍ଦ୍ର :

ବିହାର ପ୍ରଦେଶର ରାଞ୍ଚି ନିକଟସ୍ଥ କାଂକେ ସହରରେ ଦୁଇଟି ବଡ଼ ବଡ଼ ମାନସିକ ରୋଗର ଡାକ୍ତରଖାନା ଥିଲା । ଗୋଟିଏ ଗୋରା ରୋଗୀଙ୍କ ପାଇଁ ଓ ଦ୍ୱିତୀୟଟି କଳା ବା

ଭାରତୀୟ ଦେଶୀ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଭାରତ ସ୍ୱାଧୀନ ହେବା ପରେ ଗୋରାଙ୍କ ପାଇଁ ଥିବା ଡାକ୍ତରଖାନାଟି ଗୋଟିଏ ପେଇଙ୍ଗ ବା ପଇସାଦିଆ ଡାକ୍ତରଖାନାରେ ପରିଣତ ହୋଇଥିଲା ।

ଦେଶୀ ଲୋକଙ୍କ ଡାକ୍ତରଖାନାକୁ ପାଗଳ ଗାରଦ ବୋଲି ମଧ୍ୟ କୁହାଯାଉଥିଲା କାରଣ ସେଠାରେ ଚିକିତ୍ସିତ ହେବାକୁ ଆସିଥିବା ସାଧାରଣ ରୋଗୀଙ୍କ ଛଡ଼ା ନରହତ୍ୟାକାରୀ ଓ ଅନ୍ୟାନ୍ୟ ଆଇନ ଅଦାଲତ ଦ୍ୱାରା ଦଣ୍ଡିତ ଅପରାଧି ପାଗଳମାନଙ୍କୁ ମଧ୍ୟ କଡ଼ା ପହରା ଭିତରେ ସେଠାରେ ରଖାଯାଉଥିଲା । ସେମାନଙ୍କ ଭିତରୁ ଅଧିକାଂଶ ସେଇଠାରେ ତାଙ୍କ ଜୀବନ କଟାଉଥିଲେ ।

ସେହି ବିରାଟ ପାଗଳ ଗାରଦକୁ ଲାଗି ବାହାର ରାସ୍ତାକୁ ମୁହଁ କରିଥିବା ଏକ ଦୋତାଲା କୋଠା ଉପରେ ଆମ ଭଳି ତାଲିମ୍ ପାଇଁ ଆସୁଥିବା ଛାତ୍ରମାନଙ୍କ ରହିବା ପାଇଁ ବ୍ୟବସ୍ଥା ହୋଇଥିଲା । ସେହି ଛାତ୍ରାବାସର ସାମନାରେ ଏକ ସୁରମ୍ୟ ଫଳ ଉଦ୍ୟାନ ରହିଥିଲା । ସେଥିରେ ପେଛା ପେଛା ହୋଇ ଲିଚୁ ସବୁ ପାଚି ଓହଳି ଥିଲା । ଜଗୁଆଳିକୁ କହି ଆମେ ସେ ସୁରମ୍ୟ ଉଦ୍ୟାନ ଭିତରେ ବୁଲିବା ସଙ୍ଗେ ସଙ୍ଗେ ଲିଚୁ ତୋଳି ଖାଇବାର ସୁବିଧା ପାଉଥିଲୁ ।

ଆମେ ରହୁଥିବା ଦୋତାଲାର ପଶ୍ଚାତରେ ବିରାଟ କାନ୍ଥର ପ୍ରାଚେରୀଘେରା ପଡ଼ିଆଟିଏ ରହିଥିଲା । ପାଗଳ ଗାରଦ ଭିତରୁ ବେଳେ ବେଳେ ଜଣେ ଅଧେ ପାଗଳାକୁ ସେଠାରେ ବୁଲିବାକୁ ଅନୁମତି ଦିଆଯାଉଥିଲା । ଆମେ ସେଠାରେ ଥିଲାବେଳେ ଜଣେ ସଂସ୍କୃତ ପଣ୍ଡିତ ପ୍ରତିଦିନ ସକାଳେ ସେଠାକୁ ଆସି ସୁନ୍ଦର ସଂସ୍କୃତ ଶ୍ଳୋକ ଆବୃତ୍ତି କରୁଥିଲେ । ଆମେ ଉପରୁ ଝରକାବାଟେ ସେ ପଡ଼ିଆକୁ ଚାହିଁଲେ ସେ ଖୁସିହୋଇ ଆମ ସଙ୍ଗେ ଧର୍ମ ସମ୍ବନ୍ଧରେ ଆଲୋଚନା କରିବାକୁ ଚେଷ୍ଟା କରୁଥିଲେ । ସେପରି ଜଣେ ବୁଦ୍ଧିମାନ ବିଦ୍ୱାନ ଧର୍ମାତ୍ମାକୁ ସେଠାରେ କାହିଁକି ବନ୍ଦୀ କରି ରଖାଯାଇଛି ବୋଲି ଆମେ ପ୍ରଥମେ ଆଶ୍ଚର୍ଯ୍ୟ ହେଉଥିଲୁ, କିନ୍ତୁ ପରେ ପରେ ସେ ପଣ୍ଡିତ ସେଠାକୁ ଆଉ ଆସିବାର ଦେଖାଗଲାନାହିଁ । ଆମେ ସେଠାରେ ଜଗୁଆଳିକୁ ତାଙ୍କ ବିଷୟ ପଚାରିବାରୁ ସେ କହିଲା ''ସେ ପଣ୍ଡିତଙ୍କ ପାଗଳାମିର ଭିନ୍ନ ଭିନ୍ନ ସମୟ ରହିଛି । ସେ କେତେବେଳେ କେତେବେଳେ ସଂପୂର୍ଣ୍ଣ ସୁସ୍ଥ ଲୋକପରି ବ୍ୟବହାର କରନ୍ତି ଓ ଅନ୍ୟ ସମୟରେ ଉତ୍କଟ ପାଗଳାମିର ବଶବର୍ତ୍ତୀ ହୋଇ ପଡ଼ନ୍ତି । ତେଣୁ ସେ ସମୟରେ ତାଙ୍କୁ କୋଠରୀ ଭିତରେ ଲୁହାବାଡ଼ ଘେରରେ ବନ୍ଦୀ କରି ରଖାଯାଏ ।

ସେହି ପାଗଳ ଗାରଦ ଓ ଡାକ୍ତରଖାନାର ସୁପରିନ୍ଟେଣ୍ଡେଣ୍ଟ ହବିବ୍ ସାହେବ ବିଲାତରୁ ମାନସିକ ବିଦ୍ୟାରେ ସ୍ନାତକୋତ୍ତର ବିଦ୍ୟା ହାସଲ କରିଥିଲେ । ସେ ଜଣେ ଗୌରବର୍ଣ୍ଣ

ମିଷ୍ଟଭାଷୀ ପୌଢ଼ ବ୍ୟକ୍ତି ଥିଲେ । ସେ ଧୀର ସ୍ଥିର ବ୍ୟକ୍ତି ଥିବାରୁ ଧୈର୍ଯ୍ୟର ସହିତ ପାଗଳା ରୋଗୀମାନଙ୍କ ସଙ୍ଗେ ବନ୍ଧୁପରି ଚଳାଚଳ ହେଉଥିଲେ ।

ବିଭିନ୍ନ ପ୍ରକାରର ପାଗଳମାନଙ୍କୁ ଦେଖାଇ ସେ ଆମକୁ ପଢ଼ାଇଲାବେଳେ ସେ ରୋଗୀମାନେ ତାଙ୍କୁ ସଙ୍ଗୀ ଭଳି ବ୍ୟବହାର କରି କିଏ ତାଙ୍କ ଟାଙ୍ଗରା ମୁଣ୍ଡକୁ ଆଙ୍ଗୁଠିରେ ଠୁକାଇ ଦିଏ । କିଏ ସାଙ୍ଗ ସାଙ୍ଗ କହି ତାଙ୍କ ଗାଲ ଚିପିଦିଏ, କିଏ ବା ତାଙ୍କ କଥା ଶୁଣିବା ପାଇଁ ତାଙ୍କ ହାତ ଭିଡ଼ି ମୁହଁ ତା' ଆଡ଼କୁ କରିବାକୁ କହେ କିନ୍ତୁ ସେ ସବୁରେ ହବିବ୍ ସାହେବ ବିଚଳିତ ନ ହୋଇ ଟିକିଏ ହସିଦେଇ ତାଙ୍କ ଭାଷଣ ଦେଇ ଚାଲିଥାଆନ୍ତି ।

ଆମେ ପ୍ରତିଦିନ ତାଙ୍କ ସଙ୍ଗେ ବା ତାଙ୍କ ସହକାରୀ ଡାକ୍ତରମାନଙ୍କ ସଙ୍ଗେ ପାଗଳଖାନା ଭିତରକୁ ରୋଗୀମାନଙ୍କୁ ଦେଖିବାକୁ ଯାଉ । ସେଠାରେ ଭିନ୍ନ ଭିନ୍ନ ଧରଣର ରୋଗୀମାନଙ୍କ ପାଇଁ ଭିନ୍ନ ଭିନ୍ନ ଖୁଆଡ଼ ସବୁ ରହିଥାଏ । ହତ୍ୟାକାରୀ ବନ୍ଧ ପାଗଳମାନଙ୍କୁ ଲୁହା ବାଡ଼ ଆରପଟେ ବନ୍ଦୀ କରି ପିଞ୍ଜରାବଦ୍ଧ ହିଂସ୍ରଜନ୍ତୁ ପରି ରଖାଯାଇଥାଏ । ସେହିପରି ଥିବା ଜଣେ ରୋଗୀ ଭଦ୍ରବ୍ୟକ୍ତି ଭଳି ଆମକୁ ନମସ୍କାର କରି ସ୍ୱାଗତ ଜଣାଇ ପାଖକୁ ଡାକିଲା । ଆମ ଭିତରୁ ଜଣେ ଛାତ୍ର ତା'ର ପିଞ୍ଜରା ବାଡ଼ ନିକଟକୁ ଯିବାକ୍ଷଣି ସେ ତା' ମୁହଁକୁ ମେଞ୍ଚାଏ ଛେପ ପକାଇ ଦେଇ ''ପାଇଲୁ, ପାଇଲୁ'' କହି ତାଳି ଦେଇ ନାଚିବାକୁ ଲାଗିଲା । ଆମ ସଙ୍ଗରେ ଥିବା ଡାକ୍ତର କହିଲେ ପାଗଳାକୁ ବିଶ୍ୱାସ ନାହିଁ । ସେମାନେ ଡାକିଲେ ସେମାନଙ୍କ ନିକଟକୁ ଯିବା ଅନୁଚିତ୍ । ସେମାନଙ୍କଠାରୁ ଦୂରେଇ ରହିବା ଉଚିତ୍ ।

ଆମେ ସେହି ବିରାଟ ହତା ଭିତରେ ବୁଲୁବୁଲୁ ସେପରି ଗୋଟିଏ କୋଠରୀରେ ଆମ ପୂର୍ବ ପରିଚିତ ପଣ୍ଡିତଙ୍କୁ ଦେଖିଲୁ । ସେ ଆମକୁ ଦେଖି ଚିହ୍ନି ନ ପାରିବା ଭଳି ଭାବ ଦେଖାଇଲେ ଓ ମୁହଁଟା କାନ୍ଥଆଡ଼କୁ କରି ଗୁଣୁ ଗୁଣୁ ହୋଇ ମନକୁ ମନ କ'ଣ ଗପିବାକୁ ଲାଗିଲେ । ଆମେ ଆମ ସାଥିରେ ଥିବା ଡାକ୍ତରଙ୍କ ଦ୍ୱାରା ତାଙ୍କ କାଗଜ 'ଫାଇଲ' ମଗାଇ ଦେଖିଲୁ । ସେଥିରୁ ଜାଣିଲୁ ସେ ଜଣେ ଏକ ଦେବଦର୍ଶୀ ସଂସ୍କୃତ ପଣ୍ଡିତ ଥିଲେ । ତାଙ୍କର ସାଂସାରିକ ବୁଦ୍ଧି ନ ଥିଲା । ସେ ଅଜ୍ଞକରେ ସମସ୍ତଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ, ତାଙ୍କ ସହଧର୍ମିଣୀ ଘର ଚଳାଇବା ବିଷୟରେ କିଛି କହିଲେ ସେ ଚିଡ଼ି ଉଠୁଥିଲେ । ଦିନେ ସେ ପଢ଼ିବାରେ ବ୍ୟସ୍ତ ଥିଲାବେଳେ ଘରର ଅଭାବ ନେଇ ସହଧର୍ମିଣୀ କିଛି ପଚାରିବାରୁ ସେ ବହି ଛାଡ଼ି ଉଠିଯାଇ ଟଙ୍କା ସବୁ କ'ଣ କରୁଛ ବୋଲି ଗର୍ଜନ କଲେ । ମିଛରେ କାହିଁକି ରାଗୁଛ ବୋଲି ସହଧର୍ମିଣୀ କହୁ କହୁ ସେ ଛୁରୀଟାଏ ଗୋଟାଇ ଆଣି ସ୍ତ୍ରୀଙ୍କ ଛାତିକୁ ଭୁଷିଦେଲେ । ତା'ପରେ ପୂରା ଭାବରେ ମସ୍ତିଷ୍କର ଭାରସାମ୍ୟ ହରାଇ ସ୍ତ୍ରୀଙ୍କ ଶବ ଚାରିପଟେ ଲଙ୍ଗଳା ହୋଇ ନାଚିବାକୁ ଲାଗିଲେ । ସେଥିରେ ତାଙ୍କୁ

ବନ୍ଦୀ କରାଯାଇ ବିଚାର ପରେ ପାଗଳ ଗାରଦରେ ଆଜୀବନ ବନ୍ଦୀ ରହିବା ପାଇଁ ଆଦେଶ ହୋଇଥିଲା । ସେଠାରେ ରହିବା ପରେ ସମୟ ସମୟରେ ତାଙ୍କ ମସ୍ତିଷ୍କର ପୂର୍ବାବସ୍ଥା ଫେରିଆସି ସେ ଅନୁତାପ କରନ୍ତି ଓ ସମସ୍ତଙ୍କ ପ୍ରତି ଭଲ ବ୍ୟବହାର ଦେଖାଇ ଧର୍ମଚର୍ଚ୍ଚା କରନ୍ତି ।

ସେ ସମୟରେ ମସ୍ତିଷ ବିକୃତି ପାଇଁ ଏବର ଅମୋଘ ଔଷଧ ସବୁ ଆବିଷ୍କୃତ ହୋଇନଥିଲା । ଆବଦ୍ଧ କରି ରଖିବା, ମୁଣ୍ଡରେ ଇଲେକ୍ଟ୍ରିକ କରେଣ୍ଟ ଦ୍ୱାରା 'ସକ୍' ଦେବା ଛଡ଼ା ମସ୍ତିଷକୁ ଶାନ୍ତ କରାଇବା ପାଇଁ ଅନ୍ୟ ଔଷଧ ବା ଉପାୟ ଉଦ୍ଭାବନ ହୋଇନଥିଲା ।

ସେଠାରେ ବହୁ ପ୍ରକାର ରୋଗୀମାନଙ୍କ ଭିତରେ ଜଣେ ଜଣେ ରୋଗୀ ନିଜକୁ ଜଣେ ଜଣେ ଅନନ୍ୟ ବ୍ୟକ୍ତିତ୍ୱ ବୋଲି ମନେ କରି ବାହାସ୍ଫୋଟ କରୁଥିଲେ । ଜଣେ ଜଣେ ସାଧାରଣ ପରିବାରରୁ ଆସିଥିବା ରୋଗୀ ନିର୍ଦ୍ଦିଷ୍ଟ ରାଜ୍ୟର ରାଜା ମହାରାଜା ବୋଲି ନିଜକୁ ମନେ କରି ଅନ୍ୟମାନଙ୍କଠାରୁ ସମ୍ମାନ ଦାବି କରୁଥିଲେ ।

ସେଠାରେ ଜଣେ ମାନସିକ ବିକୃତ ଓଡ଼ିଆ ରୋଗୀ ଆମକୁ ଦେଖିବା କ୍ଷଣି ନିଜର ପରିଚୟ ଦେବାକୁ ଯାଇ କହିଲା 'ମୁଁ ଯଦୁମଣି ମଙ୍ଗରାଜ । ଏ ରାମ ରାବଣ ଯୁଦ୍ଧରେ ମୁଁ ଏ ଯୁଗର ହନୁମାନ । ମୁଁ ସାତ ସମୁଦ୍ର ଡ଼େଇଁ ବିଲାତ ଲଙ୍କାରେ ପ୍ରବେଶ କରିବି, ବିଲାତ ଲଙ୍କାକୁ ପୋଡ଼ିଜାଳି ପାଉଁଶ କରି ସ୍ୱାଧିନତା ରୂପୀ ସୀତାଙ୍କୁ ଫେରାଇ ଆଣି ରାମ ରାଜ୍ୟ ପ୍ରତିଷ୍ଠା କରିବି । ମହାନ୍ ସ୍ୱାଧିନତା ସଂଗ୍ରାମୀ ବାଗ୍ମୀ କଂଗ୍ରେସ ନେତା ଯଦୁମଣି ମଙ୍ଗରାଜଙ୍କ ବକ୍ତୃତା ଶୁଣି ସେଥିରେ ଉଦ୍‌ବୁଦ୍ଧ ହୋଇ ସେ ରୋଗୀର ମସ୍ତିଷରେ ଛାପ ପଡ଼ିଯାଇଥିଲା । ସେ ନିଜକୁ ଯଦୁମଣି ମଙ୍ଗରାଜ ବୋଲି ମନେ କରୁଥିଲା ।

ବହୁମୂତ୍ର ରୋଗୀ:

ବିହାର ଓଡ଼ିଶା ପ୍ରଦେଶ ଥିବା ବେଳୁ କେତେକ ଓଡ଼ିଆ କର୍ମଚାରୀ କାଙ୍କେ ହସପିଟାଲରେ ରହିଥିଲେ । ଆମେ ସେମାନଙ୍କ ଭିତରୁ କେତେକଙ୍କୁ ଡାକି ଭୋଜିଟିଏ କରିଥିଲୁ । ସେଥିରେ ମୋର ଜଣେ ମୋଟା ଓଡ଼ିଆ କିରାଣୀଙ୍କ ସହିତ ପରିଚୟ ହେଲା । ତାଙ୍କର ବହୁମୂତ୍ର ବା ଡାଏବେଟିସ୍ ରୋଗ ଥିଲେ ମଧ ସେ ନିର୍ବିକାର ଚିତ୍ତରେ ମିଠା ପଦାର୍ଥ ଭୋଜନ କରୁଥିଲେ । ସେ ହିମାଳୟରୁ ଗୁଡ଼ମାରୀ ପତ୍ର ଆଣି ଖାଇବାରୁ ତାଙ୍କ ବହୁମୂତ୍ର ସମ୍ପୂର୍ଣ୍ଣ ରୂପେ ଆରୋଗ୍ୟ ହୋଇଯାଇଛି ବୋଲି ବାହାଦୂରୀ କରୁଥିଲେ । ମୂତ୍ର ଓ ରକ୍ତ ପରୀକ୍ଷା କରୁଛନ୍ତି କି ନାହିଁ ବୋଲି ପଚାରିବାରେ ସେସବୁର ଆଉ ପ୍ରୟୋଜନ ନାହିଁ ବୋଲି କହିଲେ ।

ମୋର ପିତାଙ୍କର ଦୁଇ ତିନିବର୍ଷ ତଳୁ ବହୁମୂତ୍ର ରୋଗ ବାହାରିଥିଲା । ସେତେବେଳକୁ ଖାଇବା ପାଇଁ ବଟିକା ସବୁ ବାହାରି ନ ଥିବାରୁ ତାଙ୍କୁ କେବଳ ଇନ୍‌ସୁଲିନ ଇଞ୍ଜେକ୍‌ସନ ନେବାକୁ ପଡୁଥିଲା । ମୁଁ ତାଙ୍କ ଚିକିତ୍ସା ସମ୍ବନ୍ଧରେ ଆମ ଫର୍ମାକୋଲଜି ପ୍ରଫେସର ଭେଙ୍କେଟଚେଲମ୍‌ଙ୍କ ସହିତ ପରାମର୍ଶ କରିଥିଲି । ସେ ଜଣେ ଅଭିଜ୍ଞ ଗବେଷକ ଥିଲେ । ସେ ମୋର ପିତାଙ୍କୁ ପରୀକ୍ଷା କରି କହିଥିଲେ ଏହାଙ୍କ ଶରୀର ପାଇଁ ଅଧିକ ଚିନି ପ୍ରୟୋଜନ କାରଣ ଏହାଙ୍କ ପରିସ୍ରାବାଟେ ଚିନି ସବୁ ବାହାରି ଯାଉଛି, ତେଣୁ ଏହାଙ୍କୁ ଯଥେଷ୍ଟ ଚିନି ଖାଇବାକୁ ଦିଅ । ମୁଁ କହିଲି ବହି ତ କହୁଛି ବହୁମୂତ୍ର ରୋଗରେ ଚିନି ଜାତୀୟ ଖାଦ୍ୟ ଖାଇବା ମନା, ତେଣୁ ଆପଣଙ୍କ କଥାରେ ଚିନି ଦେଲେ ଶରୀରର କ'ଣ କ୍ଷତି ହେବ ନାହିଁ ? ସେ କହିଲେ ''କିଏ କହିଲା କ୍ଷତି ନ ହେବ ବୋଲି ?'' ମୁଁ କହିଲି ''ଯଦି କ୍ଷତି ହେବ ତେବେ ଚିନି କିପରି ଦିଆଯିବ ।'' ସେ କହିଲେ ''ଚିନି ଦେଲେ କ୍ଷତି ହେବ ନ ଦେଲେ ବି କ୍ଷତି ହେବ, ତେଣୁ ଏ ବୟସରେ ତାଙ୍କୁ ଖାଦ୍ୟର ବାଧ ବାଧକତାରୁ ମୁକ୍ତ ରଖିବା ମୋର ମତ ।'' ସେ ପାଗଳା ଅଧ୍ୟାପକଙ୍କ ମତ ଶୁଣି ମୁଁ କହିଲି, ତେବେ ଇନ୍‌ସୁଲିନ ସହିତ କିଛି ସର୍କରା ଜାତୀୟ ଖାଦ୍ୟ ଦେଲେ ଅସୁବିଧା କ'ଣ ? ସେ କହିଲେ ତାହା ତ ଉତ୍କୃଷ୍ଟ ପନ୍ଥା । ସେ'ଦିନ ମୁଁ ନିରାଶ ହୋଇ ଫେରିଥିଲି, ମନେ ମନେ ବହୁମୂତ୍ର ପାଇଁ ଭଲ ଔଷଧ ଖୋଜିବାରେ ଲାଗିଥିଲି ।

ମୁଁ ସେହି କିରାଣୀଙ୍କ କଥା ଶୁଣି ପରଦିନ ସକାଳେ ତାଙ୍କ ଘରକୁ ଗଲି । ସେ ସେହି ପତ୍ରର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସେହି ଗୁଡ଼ମାରୀ ଶୁଖିଲାପତ୍ରର କିଛି ଗୁଣ୍ଡା ସହିତ ମୁଠାଏ ଚିନି ଦେଇ ମୋତେ ଚୋବେଇବାକୁ କହିଲେ । ମୁଁ ଚୋବାଇବାରେ ଚିନିଗୁଡ଼ାକ ପାଉଁଶ ପରି ପାଟିକୁ ଲାଗିଲା । ମୁଁ ତାଙ୍କ ଠାରୁ ସେ ଗୁଡ଼ମାରୀ ପତ୍ର ମିଳୁଥିବା ସ୍ଥାନର ଠିକଣା ଆଣି ଚିଠି ଲେଖିଲି ।

ପରେ କଟକ ଫେରି ସେ ପତ୍ରର ପାର୍ଶଲ ପାଇ ସେ ପତ୍ରର ଦ୍ରବ୍ୟ ଗୁଣ ଜାଣିବା ପାଇଁ ଜଣେ ଗବେଷକଙ୍କ ସାହାଯ୍ୟରେ ବମ୍ବେର ଗୋଟିଏ ନାମଜାଦା ଗବେଷଣାଗାରକୁ ପରୀକ୍ଷା ପାଇଁ ପଠାଇଥିଲି । ସେଠାର ରିପୋର୍ଟରେ ସେ ପତ୍ରରେ ଶରୀରର ଚିନି ବା ସର୍କରାନାଶକ ଗୁଣ କିଛି ନଥିବାର ଉଲ୍ଲେଖ ଥିଲା । ତାହା ଜିଭ ଉପରେ ଥିବା ସର୍କରା ସ୍ୱାଦ-ବାହୀ ସ୍ନାୟୁ କଢ଼ି ଗୁଡ଼ିକୁ ଚେତନାହୀନ କରି ଦେଉଥିବାରୁ ଜିଭର ମିଠା ବାରିବା ଶକ୍ତି ସାମୟିକ ଭାବରେ ଲୋପ ହୋଇ ଯାଉଥିଲା । ସେ ଘଟଣାର କେତେ ମାସ ପରେ ସେହି କିରାଣୀଙ୍କର ମୃତ୍ୟୁ ଘଟିଥିବାର ଖବର ମୁଁ ପାଇଥିଲି । ଅତି ପଣ୍ଡିତଙ୍କ ଅଧିକ ଚିନି ଖୁଆଇବା ଓ ମୂର୍ଖଙ୍କ ଗୁଡ଼ମାରୀ ପତ୍ର ସେବନ ଏ ଦୁଇଟାରୁ କୌଣସିଟି ନ କରିବାରୁ ମୋର ପିତା ବହୁମୂତ୍ର ରୋଗ ପରେ ଆଉ ଦୁଇଦଶନ୍ଧିରୁ ଅଧିକ ସମୟ

ଜୀବନ ଧାରଣ କରି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଚାନସେଲର, ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରତିଷ୍ଠାତା ସଭାପତି ଓ ଓଡ଼ିଶା ବିଧାନସଭାର ବାଚସ୍ପତି ପ୍ରଭୃତି କାର୍ଯ୍ୟ ସୁଚାରୁରୂପେ ଚଳାଇ ଓଡ଼ିଶାର ପ୍ରଭୁତ ଉପକାର ସାଧନ କରି ପାରିଥିଲେ ।

## ଇଟକି ଯକ୍ଷ୍ମା ତାଲିମ କେନ୍ଦ୍ର :

କାଙ୍କେରୁ ଆମ ଟ୍ରେନିଙ୍ଗ ସମୟ ସରିବା ପରେ ଆମକୁ ଟ୍ରେନିଙ୍ଗ ପାଇଁ ଯକ୍ଷ୍ମା ଚିକିତ୍ସା କେନ୍ଦ୍ର ଇଟକି ହସ୍‌ପିଟାଲକୁ ଯିବାକୁ ପଡ଼ିଥିଲା । ସେତେବେଳେ ଯକ୍ଷ୍ମାର ଭଲ ଔଷଧ ବାହାରି ନ ଥିବାରୁ ତାହା ଏକ ଦୂରାରୋଗ୍ୟ ହୋଇ ରହିଥିଲା । ତେଣୁ ସେ ରୋଗୀମାନଙ୍କୁ ଜନବସତିରୁ ବହୁ ଦୂରରେ ଏକ ନିଛାଟିଆ ସ୍ଥାନରେ ରଖାଯାଇ ଔଷଧ ଓ ଖାଦ୍ୟ ଦ୍ୱାରା ସେ ରୋଗ ଦବି ରହିଲେ ତାକୁ ସେଠାରୁ ଛାଡ଼ି ଦିଆ ଯାଉଥିଲା ଓ ମଝିରେ ମଝିରେ ଆସି ପରୀକ୍ଷା କରାଇ ନେବାକୁ କୁହା ଯାଉଥିଲା ।

ଯକ୍ଷ୍ମା ଏକ ସାଂଘାତିକ ସଂକ୍ରାମକ ରୋଗ ହୋଇଥିବାରୁ, ସେ ରୋଗୀମାନଙ୍କୁ ପରୀକ୍ଷା ଓ ଚିକିତ୍ସା କଲାବେଳେ ତାହା ବଡ଼ ସାବଧାନତାର ସହିତ କରିବା କଥା । ତେଣୁ ଅନେକ ସେପରି ରୋଗୀ ନିକଟକୁ ଯିବାକୁ ଭୟ କରନ୍ତି; କିନ୍ତୁ ଆମର ଭେଷଜ ଅଧାପକ କର୍ଣ୍ଣେଲ ପିସାରୋଟି କେତେକାଂଶରେ ଆମଠାରୁ ସେ ଡ଼ର ଛଡ଼ାଇ ନେଇଥିଲେ । ପ୍ରଥମେ ପ୍ରଥମେ କଟକ ହସ୍‌ପିଟାଲର ସଂକ୍ରାମକ ୱାର୍ଡ଼ର ଯକ୍ଷ୍ମାରୋଗୀଙ୍କୁ ଦେଖିବାକୁ ସେ ଆମ୍ଭମାନଙ୍କୁ ସଙ୍ଗରେ ଡାକିନେଲେ, ସେ ରୋଗୀ ନିକଟକୁ ଯିବାକ୍ଷଣି ଆମେ ବାରଣ୍ଡାରେ ଆଡ଼େଇ ହେଲାଭଳି ଠିଆ ହୋଇ ଭିତରକୁ ଚାହୁଁଥିଲୁ । ସେ ଆମକୁ ଭିତରକୁ ନ ଡାକି ଆମକୁ ଦେଖାଇଲା ଭଳି ସେ ଯେଉଁ ହାତରେ ରୋଗୀକୁ ଛୁଇଁ ପରୀକ୍ଷା କରିଥାଆନ୍ତି, ସେହି ହାତରେ ତାଙ୍କ ଚଷମା କାଠିକୁ କିଛି ସମୟ ବୁଲାଇଲା ପରେ ସେହି କାଠିକୁ ନିଜ ପାଟିରେ ପୂରାଇ ଦାନ୍ତ ଖୁଣ୍ଟୁଥିଲେ । ଏତେ ବଡ଼ ଡାକ୍ତର ହୋଇ ସେ ସେପରି ଅବିବେକି କାର୍ଯ୍ୟ କରୁଥିବା ଦେଖି ଆମକୁ ଆଶ୍ଚର୍ଯ୍ୟ ଲାଗୁଥିଲା ।

ଏପରି କେତେଦିନ ଚାଲିବା ପରେ ସେ ଆମ୍ଭମାନଙ୍କୁ ଡାକି କହିଲେ ''ତୁମେମାନେ ଏ ରୋଗକୁ କାହିଁକି ଏପରି ଡରୁଛ ? ଏହା ତୁମ ଉପରକୁ ଖପ୍ କରି ଡେଇଁ ପାରିବ ନାହିଁ । ତୁମେ ଜାଣିଚ ଯେ କୌଣସି ପ୍ରତିଷେଧକ ଟୀକା ଦ୍ୱାରା ଶରୀରରେ ଅଳ୍ପ ସଂଖ୍ୟକ ଜୀବାଣୁ ପ୍ରବେଶ କରାଇ ଦିଆଯାଏ ତାହା ଦ୍ୱାରା ଶରୀର ସେ ଜୀବାଣୁଙ୍କୁ ଜାଣିପାରି ତା' ବିରୁଦ୍ଧରେ ଲଢ଼ୁଆ ପଦାର୍ଥ ତିଆରି କରି ରଖେ । ତାହାକୁ ଶରୀରର ପ୍ରତିଶୋଧ ପ୍ରକୃତି କହନ୍ତି । ସେଥିଯୋଗୁଁ ପରେ ବେଶୀ ସଂଖ୍ୟାରେ ସେହି ଜୀବାଣୁ ଶରୀରକୁ ଆକ୍ରମଣ କଲେ ସେ ସବୁ ନଷ୍ଟ ହୋଇ ଯାଆନ୍ତି । ତେଣୁ ଶରୀର ସେ ରୋଗରୁ ରକ୍ଷା ପାଏ । ଏହା ଭିତରେ ତୁମେ ବହୁ ଯକ୍ଷ୍ମା ରୋଗୀଙ୍କ ସଂପର୍କରେ ଆସିଲଣି । ପବନରେ

ଉଡ଼ି ସେମାନଙ୍କଠାରୁ ଖୁବ୍ ଅଳ୍ପ ସଂଖ୍ୟାରେ ତୁମ ଶରୀରରେ ପ୍ରବେଶ କରି ପ୍ରତିଶୋଧ ଶକ୍ତି ସୃଷ୍ଟି କରି ସାରିଲେଣି । ସହଜରେ ତୁମକୁ ସେ ରୋଗ ଆଉ ଆକ୍ରାନ୍ତ କରି ପାରିବ ନାହିଁ ।

ଆମେ ଇଟକିର ଯକ୍ଷ୍ମା ହସ୍‌ପିଟାଲ ଭିତରେ ବୁଲି ରୋଗୀ ଚିକିତ୍ସା ଦେଖିଲୁ । ସେତେବେଳେ ଯକ୍ଷ୍ମାର ଅବ୍ୟର୍ଥ ଔଷଧ ସବୁ ବାହାରି ନଥିବାରୁ ରୋଗୀଙ୍କୁ କ୍ୟାଲସିଅମ୍, ଭିଟାମିନ୍ ଓ ପୁଷ୍ଟିକର ଖାଦ୍ୟ ଦିଆଯାଇ ଚିକିତ୍ସା କରାଯାଉଥିଲା । ଇଟକିରେ ବିଦେଶରୁ ତାଲିମ୍ ପାଇ ଆସିଥିବା ଛାତି ରୋଗ ସର୍ଜନମାନେ ଯକ୍ଷ୍ମା ରୋଗ ନଷ୍ଟ କରିଥିବା ଫୁସ୍‌ଫୁସ୍‌ର ଅଂଶ ବିଶେଷକୁ ଅପରେସନ କରି ଶରୀରରୁ ବାହାର କରି ଦେଇ ପାରୁଥିଲେ ।

ସେଠାର ଯକ୍ଷ୍ମା ବିଶେଷଜ୍ଞ ସୁପରିନ୍‌ଟେଣ୍ଡେଣ୍ଟ ଆମକୁ ଫୁସ୍‌ଫୁସ୍ ଯକ୍ଷ୍ମା, ଗ୍ରନ୍ଥି ଯକ୍ଷ୍ମା, ଅନ୍ତନାଳୀ ଯକ୍ଷ୍ମା, ଅସ୍ଥି ଯକ୍ଷ୍ମା, ଯକୃତ ଯକ୍ଷ୍ମା, ମସ୍ତିଷ ଯକ୍ଷ୍ମା ପ୍ରଭୃତିର ସ୍ପେସିମେନ୍ ବା ରୋଗୀ ଶରୀରରୁ ଅଣାଯାଇଥିବା ଅଂଶ ସବୁ ଦେଖାଇ ସେ ସବୁ ସମ୍ବନ୍ଧରେ ବିଷଦ ବିବରଣୀ ଦେଇ ଭାଷଣ ଦେଉଥିଲେ । ରୋଗୀମାନଙ୍କ ଶଯ୍ୟା ପାଖକୁ ନେଇ ରୋଗୀର କିପରି ପରୀକ୍ଷା ହୁଏ ତାହା ବୁଝାଉଥିଲେ ।

ସୁପରିନ୍‌ଟେଣ୍ଡେଣ୍ଟ ଆମକୁ ଶିକ୍ଷା ଦେବାବେଳେ ତାଙ୍କ ସଙ୍ଗେ ସଙ୍ଗେ ନର୍ସ ପୋଷାକ ପିନ୍ଧିଥିବା ଜଣେ ସୁନ୍ଦରୀ ମହିଳା ରହି ସହକାରୀ ଭାବେ ସାହାଯ୍ୟ କରୁଥିଲେ । ସେହି ଉଚ୍ଚବଂଶୀୟା, ଉଚ୍ଚଶିକ୍ଷିତା ମହିଳା ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇ ସେ ହସ୍‌ପିଟାଲକୁ ଆସିଥିଲେ । ତାଙ୍କ ଶରୀରର ବିଭିନ୍ନ ସ୍ଥାନକୁ ସେ ରୋଗ ଆକ୍ରମଣ କରିଥିବାରୁ ସେ ବହୁକାଳ ସେହି ହସ୍‌ପିଟାଲର ରୋଗ ଶଯ୍ୟାରେ ପଡ଼ି ରହିଥିଲେ । ତାଙ୍କ ଶରୀରରେ ବହୁଥର ଅସ୍ତ୍ରୋପଚାର ହେବା ପରେ ସେ ଆରୋଗ୍ୟ ଲାଭ କରିଥିଲେ, କିନ୍ତୁ ସେ ଘରକୁ ନ ଫେରି ସେହି ହସ୍‌ପିଟାଲରେ ରହି ରୋଗୀ ସେବାରେ ନିଜକୁ ନିୟୋଜିତ କରିଥିଲେ ।

ଆମେ ସେ ହସ୍‌ପିଟାଲରେ ଯକ୍ଷ୍ମା ରୋଗ ବିଷୟରେ ତାଲିମ ପାଇ ସାରିବା ପରେ ଆମେ ନାମକୁମର ଟୀକା ତିଆରି ଅନୁଷ୍ଠାନ କେନ୍ଦ୍ରକୁ ଗଲୁ ।

**ନାମକୁମ ଟୀକା ତିଆରି କେନ୍ଦ୍ର :**

ନାମକୁମ ଟୀକା ତିଆରି କେନ୍ଦ୍ରରେ ବସନ୍ତ, ଟିଟାନାସ୍, ଜଳାତଙ୍କ ପ୍ରଭୃତିର ପ୍ରତିଷେଧକ ଟୀକା ଓ ଟାଇଫଏଡ, କଲେରା, ସର୍ପଦଂଶନ ପ୍ରତିଶେଧକ ଇଞ୍ଜେକ୍‌ସନ୍ ପ୍ରଭୃତି ପ୍ରସ୍ତୁତ ହେଉଥିଲା ।

ସେପରି ଔଷଧମାନଙ୍କ ପ୍ରସ୍ତୁତି ପାଇଁ ସେଠାରେ ଘୋଡ଼ା, ଠେକୁଆ, ମୂଷା, ବିଷଧର ସର୍ପ ପ୍ରଭୃତି ରଖା ଯାଇଥିଲେ । ଅଳ୍ପ ଇଞ୍ଜେକ୍‌ସନ ଦ୍ୱାରା ଜୀବଜନ୍ତୁଙ୍କ ଶରୀର ଭିତରକୁ ଛାଡ଼ି ଦିଆଯାଏ । ସେହି ଜୀବାଣୁ ପ୍ରଭୃତିଙ୍କ ଦ୍ୱାରା ଶରୀରରେ ନିରୋଧ ଶକ୍ତି ପ୍ରସ୍ତୁତ ହେବାପରେ, ସେ ଜୀବଙ୍କ ଶରୀରରୁ ରକ୍ତ ସଂଗ୍ରହ କରାଯାଇ ସେଥିରୁ ଲାସା ବାହାର କରାଯାଇ ପ୍ରତିଶେଧକ ଇଞ୍ଜେକସନ ପ୍ରସ୍ତୁତ କରାଯାଏ ।

ଆମେ ସେଠାରେ (ନାମକୁମ ସେଣ୍ଟରରେ) ଟୀକା ଓ ଇଞ୍ଜେକସନ ପାଇଁ ବ୍ୟବହୃତ ସିରମ ପ୍ରସ୍ତୁତ ଦେଖିବା ପରେ ବିଷାକ୍ତ ନାଗ ସର୍ପର ବିଷ କିପରି ଦୁହାଁଯାଏ ତାହା ଦେଖିଲୁ । ଗୋଟିଏ କପ୍ ଉପର ସେଲୋଫେନରେ ବନ୍ଦ କରାଯାଇ, ସାପର ଲାଙ୍ଗୁଡ଼କୁ ଧରି ଉପରକୁ ଟେକି ସାପକୁ ସେ କପ୍‌ର ସେଲୋଫେନ ଉପରେ ଫଣାମାରିବାକୁ ଦିଆଯାଏ । ତା'ଦ୍ୱାରା ସେଲୋଫେନରେ କଣା ହୋଇ ସେ ବିଷ ଭିତରେ ଜମା ହୋଇଯାଏ । ବିଷ କଢ଼ା ସରିବା ପରେ ସାପକୁ ସେଠାରୁ ନେଇ ତା ପାଇଁ ଥିବା କାଚ ଘରେ ରଖି ଦିଆଯାଏ ।

ସେ ବିଷକୁ ନେଇ ସାପମରା ରୋଗୀ ପାଇଁ ଔଷଧ ପ୍ରସ୍ତୁତ କରାଯାଏ ଓ ଅନ୍ୟ ଔଷଧମାନଙ୍କରେ ବ୍ୟବହାର କରାଯାଏ ।

**କଟକ କାର୍ଯ୍ୟ ନିର୍ଘଣ୍ଟ :**

ଆମେ ସେ ସବୁ ସ୍ଥାନକୁ ଆମ ଟ୍ରେନିଙ୍ଗ ଶେଷକରି କଟକ ଫେରିଲୁ । ପାରାକ୍ଲିନିକାଲ ଓ କ୍ଲିନିକାଲ ପାଠ ଏକତ୍ର ପଢ଼ା ଯାଉଥିବାରୁ ଆମକୁ ବହୁତ କମ୍ ଫୁରୁସତ୍ ମିଳୁଥିଲା । ଆମେ ଭୋର ଛଅଟାରୁ ଶଯ୍ୟାରୁ ଉଠି ନିତ୍ୟକର୍ମ ସାରି ଠିକ୍ ସକାଳ ୭ଟାରେ ପ୍ରଫେସର ପପେଟଲାଙ୍କ ଚକ୍ଷୁ ଓ ଗଳା ଚିକିତ୍ସା କ୍ଲାସରେ ଉପସ୍ଥିତ ହେଉଥିଲୁ । କର୍ଣ୍ଣେଲ ପପେଟଲା କି ଶୀତ, କି ବର୍ଷା ସବୁଦିନ ଠିକ୍ ସମୟରେ ଘଣ୍ଟା କଣ୍ଟା ଭଳି ଆସି ସଙ୍ଗେ ସଙ୍ଗେ ଉପସ୍ଥାନ ନେବା ଆରମ୍ଭ କରି ଦିଅନ୍ତି । କାହାର କେତେ ସେକେଣ୍ଡ ଡେରି ହୋଇଗଲେ ତାହାକୁ କ୍ଲାସ ଭିତରକୁ ଆସିବା ଅନୁମତି ମିଳେନାହିଁ । ଉପସ୍ଥାନ ପକାଇଲାବେଳେ ସେ ଖୁବ୍ ଶୀଘ୍ର ଶୀଘ୍ର ନାଁ ଗୁଡ଼ାକ ଡାକି ଯାଆନ୍ତି । ନାଁ ଡକା ହେଲାବେଳେ ଉତ୍ତର ଦେବାକୁ ଟିକିଏ ଡେରି ହେଲେ ସେ ଅନୁପସ୍ଥିତ ପକାଇ ଦିଅନ୍ତି । ହାତ ଟେକି ଥିବାର ଦର୍ଶାଇଲେ ''ମୁଁ ଦୁଃଖିତ, କିନ୍ତୁ ତୁମକୁ ଆଉ ସାହାଯ୍ୟ କରି ପାରିବି ନାହିଁ'' ବୋଲି କହନ୍ତି ।

ସେ କ୍ଲାସରୁ ଫେରି ଆଠଟା ନଅଟା ଭିତରେ ସ୍ନାନ ଜଳଖିଆ ପ୍ରଭୃତି ସାରି ସେ'ଦିନର ପାଠ ଉପରେ ଟିକିଏ ଆଖି ବୁଲାଇ ନଉ । ତା' ପରେ ପରେ ହସ୍‌ପିଟାଲରେ ଆମ

ପାଇଁ ନିର୍ଦ୍ଦିଷ୍ଟ ଥିବା ରୋଗୀର ଶଯ୍ୟା ନିକଟକୁ ଯାଇ ରୋଗୀ କଥା ତନ୍ନ ତନ୍ନ କରି ବୁଝୁ । ରୋଗୀର ମଳ, ମୂତ୍ର, ରକ୍ତ ପରୀକ୍ଷାଠାରୁ ବ୍ୟାଣ୍ଡେଜ ବନ୍ଧା ପର୍ଯ୍ୟନ୍ତ ସବୁର ବ୍ୟବସ୍ଥା କରୁ । ଶିକ୍ଷକମାନେ ରୋଗୀ ଦେଖିବାକୁ ଆସିଲେ ତାଙ୍କ ସହିତ ବୁଲି ରୋଗୀମାନଙ୍କ ସମ୍ବନ୍ଧରେ ତାଙ୍କ ମନ୍ତବ୍ୟ ଓ ଭାଷଣ ଶୁଣୁ ।

ବାରଟା ପରେ ଆମକୁ ୱାର୍ଡ଼ରୁ ଛୁଟି ମିଳେ । ସେହି ସମୟରେ ଆମେ ମଧ୍ୟାହ୍ନ ଭୋଜନ ସମାପନ କରି ପୁଣି ବିଭିନ୍ନ କ୍ଲାସମାନଙ୍କ ପାଇଁ ପ୍ରସ୍ତୁତ ହୋଇଯାଉ । ପ୍ରାୟ ଗୋଟେ ଦୁଇଟାରୁ ପାଞ୍ଚଟା ପର୍ଯ୍ୟନ୍ତ ଆମର ଥିଓରୀ ଓ ପ୍ରାକ୍ଟିକାଲ କ୍ଲାସ ସବୁ ଲାଗି ରହିଥାଏ । ପାଞ୍ଚଟାରୁ ସାତଟା ଭିତରେ ଜଳଖିଆ-ଚା' ଖାଇବା ଓ ବୁଲାବୁଲି କରିବାକୁ ସୁବିଧା ମିଳେ ।

ସନ୍ଧ୍ୟା ସାତଟା ବେଳକୁ ପୁଣି ଆମେ ରୋଗୀ ନିକଟରେ ହାଜର ହୋଇଯାଉ । ରାତି ନଅଟାରେ ଆମେ ହସପିଟାଲରୁ ଫେରିଲା ବେଳକୁ ଆମ ମେସ୍ ପୂଜାରୀମାନେ ବଜାରରୁ ସଉଦା ଘେନି ଫେରି, ରୋଷେଇବାସ ଆରମ୍ଭ କରନ୍ତି ।

ଆମେ ସେ ଦିନକର ପାଠକୁ ଚର୍ବିତ ଚର୍ବଣ କରିବା ପାଇଁ ରାତି ନଅଟାରୁ ଏଗାରଟା ପର୍ଯ୍ୟନ୍ତ ଲାଗିଯାଉ । ସେହିଦିନର ପଢ଼ା ସେହିଦିନ ଆୟତ୍ତ ନ କଲେ ତାହା ପରୀକ୍ଷା ବେଳକୁ ଆୟତ୍ତ କରିବା ପାଇଁ ବହୁ ଅଧିକା ସମୟ ଓ ପରିଶ୍ରମ ଲାଗେ । ଦିନକର ପାଠ ଖଇଚା ହୋଇଗଲେ ତା ପର ପାଠକୁ ଧରି ପାରିବାରେ ମଧ କଷ୍ଟ ହୁଏ ।

ରାତି ଏଗାରଟା ବେଳେ ଡାକରା ଆସିଲେ ଆମେ ମେସ୍‌କୁ ଯାଇ ଖାଇନେଉ । ଖାଇସାରି ଶଯ୍ୟା ଧରିବାକୁ ଯିବା ସମୟରେ ଥରେ ଥରେ ରୋଗୀର ଖରାପ ଅବସ୍ଥା ଦର୍ଶାଇ ତୁରନ୍ତ ୱାର୍ଡ଼କୁ ଯିବାକୁ ଡାକରା ଆସେ । ରୋଗୀର ପରିସ୍ରା ଜମି ତାକୁ କଷ୍ଟ ହେଉଥିଲେ ତା'ର ମୂତ୍ରନଳୀରେ କାଥେଟର ଦେଇ ତାକୁ ପରିସ୍ରା କରାଯାଏ । ବେଳେ ବେଳେ ପିଠି ହାଡ ଭିତରେ ଛୁଞ୍ଚି ଗେଞ୍ଜି ଲମ୍ବାର ପଙ୍କଚର କରି ମସ୍ତିଷ୍କରେ ଜମିଥିବା ଅଧିକ ଜଳକୁ ବାହାର କରି ରୋଗୀର ସ୍ନାୟୁ ଚାପକୁ କମାଇବାକୁ ପଡ଼େ । ରକ୍ତ ଟ୍ରାନ୍ସଫିଉଜନ୍ ଓ ଗ୍ଲୁକୋଜ ସାଲାଇନ ପ୍ରଭୃତି ଦେଇ ରୋଗୀର ପ୍ରାଣ ରକ୍ଷା ପାଇଁ ଚେଷ୍ଟା କରିବାକୁ ପଡ଼େ ।

ଶିଖିବାର ଆଗ୍ରହ ଓ ଆକାଂକ୍ଷା ଯୋଗୁଁ ଆମ ଭିତରେ ପ୍ରତିଯୋଗୀତା ଚାଲିଥାଏ । ତେଣୁ ସେ କଠିନ ପରିଶ୍ରମ ଆମକୁପରିଶ୍ରମ ପରି ଜଣାପଡୁନଥାଏ । ରୋଗୀମାନଙ୍କର କୃତଜ୍ଞତା ମଧ ଆମ ମନରେ ଅଶେଷ ଉତ୍ସାହ ଆଣି ଦେଉଥାଏ ।

ଆନାଟେମି, ଫିଜିଓଲଜି ପରୀକ୍ଷାରେ ଦୁଇବର୍ଷ ପରେ ସେକେଣ୍ଡ ଏମ .ବି.ବିଏସ୍ ବା ପାରାକ୍ଲିନିକାଲ ବିଷୟମାନଙ୍କ ପରୀକ୍ଷା ନିକଟେଇ ଆସିଲା । ସେ ବିଷୟମାନଙ୍କ

ଭିତରୁ ପାଥୋଲଜି, ଫାରର୍ମାକୋଲଜି ଦୁଇଟି ସ୍ଥାୟୀ ବିଭାଗରେ ସ୍ଥାୟୀ ଅଧ୍ୟାପକମାନେ ଥିଲେ । ସେମାନେ ଆମ ସ୍ଥାୟୀ ପରୀକ୍ଷକ ଥିଲେ । ହାଇଜିନ୍ ଓ ଜୁରିସରେ, କଟକର ଯିଏ ହେଲଥ ଅଫିସର ଓ ସିଭିଲ ସର୍ଜନ ରହୁଥିଲେ ସେ ଅସ୍ଥାୟୀ ଅଧ୍ୟାପକ ହେବା ସଙ୍ଗେ ସଙ୍ଗେ ସେସବୁ ବିଷୟର ପରୀକ୍ଷକ ହେଉଥିଲେ ।

କଟକ ହେଲଥ୍ ଅଫିସର ଆମର ହାଇଜିନ୍‌ର ଅସ୍ଥାୟୀ ଅଧ୍ୟାପକ ବାଳମୁକୁନ୍ଦ ନାୟକଙ୍କ ଅନୁପସ୍ଥିତିରେ ତାଙ୍କ ସ୍ଥାନରେ ପାଥୋଲୋଜି ପ୍ରଫେସର ବନୁବାବୁ ମଧ୍ୟ ସେଥିରେ ଆମ ପରୀକ୍ଷକର ଦାୟିତ୍ୱ ବହନ କଲେ । ତତ୍‌କାଳୀନ କଟକ ସିଭିଲ ସର୍ଜନ ଡକ୍ଟର ଜଲାଲ ଜୁରିସ୍ ପରୀକ୍ଷକ ନିଯୁକ୍ତ ହେଲେ । ସେମାନଙ୍କ ଛଡ଼ା ପ୍ରତ୍ୟେକ ବିଷୟରେ ଜଣେ ଜଣେ ବାହାର ମେଡ଼ିକାଲ କଲେଜରୁ ବିଶେଷଜ୍ଞ ପ୍ରଫେସର ପରୀକ୍ଷକ ହୋଇ ଆସୁଥିଲେ । ଆମର ଲେଖା ବା ଥିଓରି ପରୀକ୍ଷାର କିଛିଦିନ ପରେ ମୌଖିକ ଓ ପ୍ରାକ୍ଟିକାଲ ପରୀକ୍ଷା ହୁଏ । ସେଥିରେ ବିଭାଗୀୟ ପ୍ରଫେସରମାନେ ତାଙ୍କ ଛାତ୍ର ଛାତ୍ରୀଙ୍କୁ ଭଲ ଭାବରେ ଜାଣିଥିବାରୁ ଭଲ ଛାତ୍ରଟିଏ କିଛି ଭୁଲ କରିଦେଲେ ପ୍ରଫେସର ସେ ଛାତ୍ରକୁ ଅନ୍ୟ ପ୍ରଶ୍ନ ପଚାରି ପରୀକ୍ଷାରେ ପାଶ୍ କରିବାରେ ସାହାଯ୍ୟ କରିଥାଆନ୍ତି । ତେଣୁ ଆମ ପ୍ରଫେସରମାନଙ୍କ ଉପରେ ଆମର ଆସ୍ଥା ଥାଏ ।

## ଫାର୍ମାକୋଲଜି ପ୍ରଫେସର ଓ ପରୀକ୍ଷା:

ଆମର ଫାର୍ମାକୋଲଜି ପ୍ରଫେସର ଡାକ୍ତର ଭେଙ୍କଟଚେଲମ ଜଣେ ବଡ଼ ଗବେଷକ ଥିଲେ । ସେ ଆନ୍ଧ୍ର ମେଡ଼ିକାଲ କଲେଜରୁ ଅବ୍ୟାହତି ନେବା ପରେ ଆମ କଲେଜରେ ଯୋଗ ଦେଇଥିଲେ । ସେ ବଡ଼ ଅମାୟିକ ଓ ଛାତ୍ରବତ୍ସଳ ଥିଲେ ମଧ୍ୟ ସବୁବେଳେ ଗବେଷଣା ସମ୍ବନ୍ଧୀୟ ବିଷୟ ଚିନ୍ତା କରୁଥିବାରୁ ବେଳେ ବେଳେ ଖାମଖିଆଲି ଭାବ ଦେଖାଉଥିଲେ । କ୍ଲାସରେ ପାଠ ପଢ଼ାଇବା ଆରମ୍ଭ କରିବାର ଅଳ୍ପ ସମୟ ପରେ କିଏ ପିଲା ସମୟ ହୋଇ ଗଲାଣି କହିଲେ ପଢ଼ାଇବା ବନ୍ଦ କରି ଗୁଡ୍ ଆଫଟରନୁନ୍ କହି ଚାଲି ଯାଉଥିଲେ ।

ଥରେ ଏକ କ୍ଲାସ ପରୀକ୍ଷାରେ ମୁଁ ପାଠ୍ୟପୁସ୍ତକ ଅନୁସାରେ ଲେଖି ତାଙ୍କଠାରୁ ଯେତିକି ନମ୍ବର ପାଇଥିଲି, ଆଉ ଗୋଟିଏ ପିଲା ଭୁଲଭାଲ କରି ଏଣୁତେଣୁ ଲେଖି ତାଙ୍କଠାରୁ ସେତିକି ନମ୍ବର ପାଇଥିଲା । ମୁଁ ଆମ ଦୁଇଟି ଯାକ ଖାତା ପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କଲି । ଅନ୍ୟ ପିଲା ଖାତାର ଭୁଲ୍ ସବୁ ମୁଁ ଦର୍ଶାଇବାରୁ ସେ ମୋ ସହିତ ଏକମତ ହୋଇ ସେସବୁ ଭୁଲ ବୋଲି ସ୍ୱୀକାର କଲେ । ମୁଁ କହିଲି "ସେ ଭୁଲ ଲେଖି ମୋ ନମ୍ବର ସଙ୍ଗେ ସମାନ ନମ୍ବର କିପରି ପାଇଲା ?" ସେ କହିଲେ- ତୁମେ ଲେଖିଥିବା ବିଷୟ ମଧ୍ୟ ସବୁ ଭୁଲ । ମୁଁ କହିଲି- "ସାର ବହି ଓ ଆପଣଙ୍କ ନୋଟ ମିଳାଇ ଦେଖନ୍ତୁ

ମୁଁ ସବୁତକ ଲେଖିଛି ।'' ସେ କହିଲେ ''ମୋ ନୋଟ ଓ ବହି ଲେଖା ମଧ୍ୟ ସବୁ ଭୁଲ । ବିଜ୍ଞାନ ବଦଳି ଚାଲିଛି । ତୁମେ ଦୁହେଁ ବିଷୟଟିର ସମ୍ୟକ ଧାରଣା କରି ପାରିଛ ବୋଲି ମୁଁ ତୁମ ଦୁହିଁକୁ ପାଶ ନମ୍ବର ଦେଇଛି ।''

ଇଉନିଭରସିଟି ପରୀକ୍ଷା ଆସିଲା । ଫାର୍ମାକୋଲଜି ଲେଖା ପରୀକ୍ଷା ସରିଲା । ଦୁଇ ଚାରିଦିନ ପରେ ମୌଖିକ ଓ ପ୍ରାକ୍ଟିକାଲ ହେବାର ଥାଏ । ସେଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ମୁଁ ଓ ବସନ୍ତ କୁମାର ପ୍ରଧାନ ଫାର୍ମାକୋଲଜି ମ୍ୟୁଜିୟମରେ ରଖାଯାଇଥିବା ସ୍ପେସିମେନ ସବୁ ଚିହ୍ନିବାକୁ ସେ ବିଭାଗର କାର୍ଯ୍ୟାଳୟକୁ ଗଲୁ । ପ୍ରଫେସରଙ୍କ ଅଫିସ ସାମନାରେ ଥିବା କ୍ଷୁଦ୍ର ମ୍ୟୁଜିୟମରେ ସେସବୁ ରଖାଯାଇଥାଏ । ଆମେ ସେସବୁ ଦେଖୁଥିବା ସମୟରେ ବୃଦ୍ଧ ଫାର୍ମାକୋଲଜି ଅଧ୍ୟାପକ ହାତ ଦୁଇଟି ପଛରେ ରଖି ଧୀରେ ଧୀରେ ଚାଲି ଚାଲି ଆସି ତାଙ୍କ କୋଠରୀରେ ପ୍ରବେଶ କଲେ । ସେ ଆରାମ ଚଉକିଟି ଉପରେ ଅଳ୍ପ ସମୟ ବସି ସାରିବା ପରେ ତାଙ୍କ ନିକଟକୁ ବୋଇଟିଏ ଆଣିବା ପାଇଁ ଚପରାଶୀକୁ ଡାକ ପକାଇଲେ । ସେ ବୋଲ ବା ପାତ୍ରଟି ପାଇବା ପରେ ତାକୁ ଆର୍ମଚେୟାରର ବାହୁ ଉପରେ ରଖି ନିଜେ ନିଜ ତଣ୍ଟିରେ ଆଙ୍ଗୁଠି ପୂରାଇ ତା' ଭିତରକୁ ବାନ୍ତି କଲେ । ଆମକୁ ତାହା ଦିଶୁଥାଏ । ଗୁଡ଼ାଏ ଚୁଡ଼ା ଚୁଡ଼ା ଗୁଣ୍ଡପରି ବାନ୍ତି କରିବା ଦେଖି ସେ'ଦିନ ତାଙ୍କୁ ଭାତ ଖାଇବାକୁ ମିଳି ନାହିଁ ବୋଲି ଆମେ କଥାବାର୍ତ୍ତା ହେଲୁ । ସେ ତାଙ୍କ ପରିବାରକୁ କଟକ ନ ଆଣି ତାଙ୍କ କ୍ୱାର୍ଟରରେ ଏକୁଟିଆ ରହୁଥାଆନ୍ତି । ଅନ୍ୟଜଣେ ତାଙ୍କର ରନ୍ଧାବଢ଼ା କଲେ, ସେ'ଦିନ ତାଙ୍କ ଘରେ ଚୁଲିଲାଗି ନ ଥିଲା ବୋଲି ଆମେ ଧରିନେଲୁ ।

ହଠାତ୍ ସେ କୋଠରୀରୁ ଏକ ଶବ୍ଦ ଶୁଣିବାରୁ ଆମେ ଭଲକରି ତା' ଭିତରକୁ ନିରୀକ୍ଷଣ କରି ଦେଖିଲୁ, ପ୍ରଫେସର ଅସ୍ପଷ୍ଟ ସ୍ୱରରେ ଏବଂ ହାତଠାରି ଆମକୁ ତାଙ୍କ ନିକଟକୁ ଯିବାକୁ ଡାକୁଥିଲେ । ଆମେ ତାଙ୍କ ନିକଟରେ ପହଞ୍ଚିବା କ୍ଷଣି ସେ ତାଙ୍କ ଡାହାଣ ହାତରେ ଅଚଳ ହୋଇ ଆସୁଥିବା ବାମ ହାତକୁ ଦେଖାଇଲେ । ତା' ପରେ ଅସ୍ପଷ୍ଟ ସ୍ୱରରେ କହିଲେ ''ପିଲାଏ ମୁଁ ଯାଉଛି ବିଦାୟ ।'' ତା' ପରେ ପରେ ତାଙ୍କ ଆଖି ମୁଦି ହୋଇଗଲା ଓ ସେ ପୂରା ଅଜ୍ଞାନ ହୋଇଗଲେ ।

ରକ୍ତଚାପର ଆଧିକ୍ୟ ହେବା ଜାଣିପାରି ସେ ମସ୍ତିଷ୍କ ରକ୍ତ ଚାପ ଉଣା କରିବା ପାଇଁ ବାନ୍ତିକରି ମସ୍ତିଷ୍କର ରକ୍ତକୁ ପାକସ୍ଥଳୀ ଆଡ଼କୁ ଅଣାଇବା ପାଇଁ ଚେଷ୍ଟା କରି ବିଫଳ ହେବା ପରେ ସେ ଆମକୁ ଡକାଇଥିଲେ ।

ଆମେ ଧାଇଁ ଯାଇ ଚିକିତ୍ସକ ଡାକ୍ତର ଓ ଆମ ସାଥୀମାନଙ୍କୁ ଡାକି ଆଣିଲୁ । ଖରାବେଳଠାରୁ ରାତି ଦୁଇଟା ପର୍ଯ୍ୟନ୍ତ ସେ ଚୈତନ୍ୟ ଶୂନ୍ୟ ହୋଇ ପଡ଼ିରହିଥିବା ଭିତରେ

ତାଙ୍କୁ ଆମେ ହସ୍‌ପିଟାଲ ବେଡ଼କୁ ଘେନି ଯାଇ ହାତର ଶୀରା କାଟି ରକ୍ତ ବାହାର କରି ତାଙ୍କ ରକ୍ତଚାପ କମାଇବା ପାଇଁ ଚେଷ୍ଟା ଚାଲିଲା । ତାଙ୍କ ଶ୍ୱାସକ୍ରିୟା ଚାଲୁ ରଖିବା ପାଇଁ ମଧ ବହୁ ଚେଷ୍ଟା କରାଗଲା, କିନ୍ତୁ ଶେଷରେ ତାଙ୍କ ପ୍ରାଣବାୟୁକୁ ଅଟକାଇ ରଖାଯାଇ ପାରିଲା ନାହିଁ । ତାଙ୍କର ମରଶରୀରକୁ ବରଫ ଭିତରେ ରଖି ତାଙ୍କ ଘରକୁ ଖବର ଦେଇ ଟେଲିଗ୍ରାମ କଲୁ । ତା' ପରଦିନ ତାଙ୍କ ପୁତ୍ର ଆସି ପହଞ୍ଚିବା ପରେ ତାଙ୍କ ଶବାଧାରକୁ କାନ୍ଧେଇ କରି ଆମେ ସତୀଚଉରା ମଶାଣିକୁ ନେଇ ଦାହ କଲୁ ।

ସେ ନଥିଲେ ଆମେ ପରୀକ୍ଷାରେ କ'ଣ କରିବୁ ବୋଲି ବ୍ୟାକୁଳ ହୋଇଉଠିଲୁ । ଅନ୍ୟ ପରୀକ୍ଷକ ନିଯୁକ୍ତ ହୋଇ ପରୀକ୍ଷା ଚାଲିଲା । ଆମେ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ପାରାକ୍ଲିନିକାଲ ପରୀକ୍ଷା ଦେଇ କ୍ଲିନିକାଲ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲାବେଳେ ଆମ ଗୁରୁପତ୍ନୀମାନଙ୍କ ହାତ କାଚ ବନ୍ଧ ହେଉ ବୋଲି ଭଗବାନଙ୍କୁ ଡାକିବାରେ ଲାଗିଲୁ ।



# ମେଡ଼ିକାଲ ଶିକ୍ଷାର ଶେଷ ପର୍ଯ୍ୟାୟ

## ଶିକ୍ଷକ ଛାତ୍ର ସଂପର୍କ :

ଶେଷ ବା ଉପର କ୍ଲାସ ମାନଙ୍କରେ ମେଡ଼ିସିନ (ଭେଷଜ ବିଜ୍ଞାନ), ସର୍ଜରୀ (ଶୈଲ୍ୟ ବିଜ୍ଞାନ), ପ୍ରସୂତି ଓ ସ୍ତ୍ରୀରୋଗ ବିଜ୍ଞାନ ଏବଂ ଚକ୍ଷୁ ଓ କର୍ଣ୍ଣ, ନାସା, କଣ୍ଠ ପ୍ରଭୃତି ରୋଗ ଚିକିତ୍ସା ବିଜ୍ଞାନ ଉପରେ ଛାତ୍ରମାନଙ୍କୁ ସଂପୂର୍ଣ୍ଣ ଗୁରୁତ୍ୱ ଦେବାକୁ ପଡ଼େ । ସେହି ବିଦ୍ୟା ମାନଙ୍କ ପାଇଁ ମଧ୍ୟ ବୃଦ୍ଧ ଅଧ୍ୟାପକମାନେ ଠିକାରେ ନିଯୁକ୍ତ ହୋଇଥିଲେ ।

ମାନ୍ଦ୍ରାଜ ମେଡ଼ିକାଲ କଲେଜର ପ୍ରଫେସର ପଦରୁ ଅବ୍ୟାହତି ନେଇଥିବା କର୍ଣ୍ଣେଲ କେ.ଏନ୍.ପିସାରୋଟି ମେଡ଼ିସିନ ପ୍ରଫେସର ପଦ ଗ୍ରହଣ କରିଥିଲେ । ଅବିଭକ୍ତ ଭାରତର ଲାହୋର ମେଡ଼ିକାଲ କଲେଜର ପୂର୍ବତନ ବିଖ୍ୟାତ ସର୍ଜରୀ ଅଧ୍ୟାପକ ରୋସେନଲାଲ ଖେରା ସର୍ଜରୀ ପ୍ରଫେସର ପଦରେ ନିଯୁକ୍ତ ହୋଇଥିଲେ ।

ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗରୁ କଟକ ସିଭିଲ ସର୍ଜନ ଅଭିଜ୍ଞ ଶୈଲ୍ୟ ଚିକିତ୍ସକ ଡାକ୍ତର କାଶୀନାଥ ମିଶ୍ରଙ୍କୁ କ୍ଲିନିକାଲ ଶୈଲ୍ୟ ଅଧ୍ୟାପକ ଓ ହସପିଟାଲର ସୁପରିନ୍‌ଟେଣ୍ଡେଣ୍ଟ ପଦରେ ରଖାଯାଇଥିଲା ଏବଂ ପ୍ରସୂତି ବିଦ୍ୟାରେ ବିଦେଶୀ ଡ଼ିପ୍ଲୋମା ପ୍ରାପ୍ତ ଅଭିଜ୍ଞ ପି.ସି. ରାୟଙ୍କୁ ପ୍ରସୂତି ଓ ସ୍ତ୍ରୀରୋଗ ଅଧ୍ୟାପକ କରାଯାଇଥିଲା । ଯୁଦ୍ଧ ଫେରନ୍ତା କର୍ଣ୍ଣେଲ ପି. ପପେଟଲା ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗରେ ଯୋଗ ଦେଇ ଚକ୍ଷୁ ଓ ଗଳା ବିଭାଗର ପ୍ରଫେସର ଦାୟିତ୍ୱ ନେଇଥିଲେ । ପରେ ସେ ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗର ଡ଼ିରେକ୍‌ଟର ଥାଇ ଅବ୍ୟାହତି ନେବାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଅକୁଣ୍ଠିତ ଚିତ୍ତରେ ଦାନ କରିଥିଲେ ।

କଲେଜ ଓ ହସ୍‌ପିଟାଲର ପରିଚାଳନା ଦୃଷ୍ଟିରୁ ଉପରେ ଉତ୍ତୁଙ୍ଗ ନୀଳଆକାଶ ପରି ଅଭିଜ୍ଞ ପ୍ରଫେସର ଗଣ, ନିମ୍ନରେ ଶ୍ୟାମଳ ଦୂର୍ବାଦଳ ପରି କେତେକ ସାହାଯ୍ୟକାରୀ ସେବକ ଓ ସେବିକା ମାନଙ୍କ ମଧ୍ୟରେ ଆମେ କେତୋଟି ଛାତ୍ରଛାତ୍ରୀ ଉଡ଼ନ୍ତା ପତ୍ର ପରି ଦୋଦୁଲ୍ୟମାନ ହୋଇ ରହିଥିଲୁ ।

ଡାକ୍ତରଖାନାର ରୋଗୀ ଖଟିଆର ଦାୟିତ୍ୱଠାରୁ ଅସ୍ତ୍ରୋପଚାର ସମୟରେ ବିଶେଷଜ୍ଞ ଅଧ୍ୟାପକଙ୍କ ସହକାରୀ ଦାୟିତ୍ୱ ପ୍ରଭୃତି, ରୋଗୀମାନଙ୍କ ସମସ୍ତ ପ୍ରକାର ଚିକିତ୍ସାରେ ଆମକୁ ଭାଗ ନେବାକୁ ପଡୁଥିଲା । ହସ୍‌ପିଟାଲରେ ଡାକ୍ତରମାନଙ୍କ ଉତ୍କଟ ଅଭାବ ଯୋଗୁଁ

ସେଠାରେ କୌଣସି ରୋଗୀର କୌଣସି ଅସୁବିଧା ଘଟିଲେ ଅସମୟରେ ଏପରିକି ରାତି ଅଧରେ ମଧ ଡାକରା ଖାତା ନେଇ ଓ୍ୟାର୍ଡ଼ର ଅର୍ଡ଼ରଲି ଆମ ନିକଟରେ ପହଞ୍ଚ ଯାଉଥିଲା । ଚିକିତ୍ସା ପଦ୍ଧତି ଅନୁସାରେ ଯେଉଁ ପରିସ୍ଥିତିରେ ଡାକ୍ତରମାନଙ୍କର ନିତାନ୍ତ ପ୍ରୟୋଜନ, ସେଠାରେ ତାଲିମପ୍ରାପ୍ତ ଡାକ୍ତରଙ୍କ ଅଭାବରେ ଆମ ଛାତ୍ରମାନଙ୍କୁ ସାହସର ସହିତ ସେ କାର୍ଯ୍ୟ ସବୁ ତୁଲାଇବାକୁ ପଡୁଥିଲା ।

ଛାତ୍ରମାନଙ୍କ ଦାୟିତ୍ୱ ଦୃଷ୍ଟିରୁ ସେମାନଙ୍କୁ ତାଲିମ୍ ଦେବାପାଇଁ ପ୍ରଫେସର ମାନଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଥିଲା । ଦୃଷ୍ଟାନ୍ତ ସ୍ୱରୂପ ରୋଗୀ ଖଟିଆ ନିକଟରେ ପ୍ରଫେସର ପିସାରୋଟି ରୋଗୀର ରୋଗକୁ ନେଇ ଆଲୋଚନା କଲାବେଳେ ବରାବର ଛାତ୍ରମାନଙ୍କୁ ଲକ୍ଷ୍ୟ କରୁଥିଲେ । ସେତେବେଳେ ଯଦି ଜଣେ କେହି ଛାତ୍ର ଅନୁପସ୍ଥିତ ରହୁଥିଲା ସେ ତା' ମନେରଖି ପରଦିନ ଆଲୋଚନା ବେଳେ ସେ ପିଲା ଉଦ୍ଦେଶ୍ୟରେ ତାଚ୍ଛଲ୍ୟ କରି କହୁଥିଲେ ''ସେ ତ ଚିକିତ୍ସା ବିଦ୍ୟାରେ ପାରଙ୍ଗମ ହୋଇ ଗଲେଣି ଆଉ ଆମଠାରୁ ତାଙ୍କର ଶିକ୍ଷା କରିବାର କଅଣ ଅଛି ? ସେ କାହିଁକି କଷ୍ଟକରି ସବୁଦିନ ଆଲୋଚନାରେ ଭାଗ ନେବେ ?'' ସେଥିପାଇଁ ଆମେ ସବୁବେଳେ ତାଙ୍କ ଖଟିଆ ନିକଟ ଆଲୋଚନାରେ ଭାଗ ନେବାପାଇଁ ତତ୍ପର ଥିଲୁ ।

ଆମର ଶୈଲ୍ୟ ଅଧାପକ କର୍ଣ୍ଣେଲ ଖେରା ଜଣେ ସିଦ୍ଧହସ୍ତ ସର୍ଜନ ଥିବା ସଙ୍ଗେ ସଙ୍ଗେ ଛାତ୍ରବତ୍ସଳ ଥିଲେ । ତାଙ୍କର ଅସ୍ତ୍ରୋପଚାର ପଦ୍ଧତି ବଡ଼ ଅଭିନବ ଥିଲା । ଆମ ହସପିଟାଲରେ ପୂର୍ବରୁ ହୋଇପାରୁ ନଥିବା ବଡ଼ ବଡ଼ ଅପରେସନକୁ ସେ ଅନାୟାସରେ ଅଳ୍ପ ସମୟ ମଧ୍ୟରେ ସମ୍ପନ୍ନ କରିପାରୁ ଥିଲେ । ସେତେବେଳେ ନିଶ୍ଚେତକ ବିଶେଷଜ୍ଞର ଅଭାବ ଥିଲା । ତେଣୁ ଅନେକ ସ୍ଥଳରେ ଜେନେରାଲ ନିଶ୍ଚେତକ ବା ରୋଗୀକୁ ପୂରା ଚେତନାଶୂନ୍ୟ କରି ଅପରେସନ୍ କରିବା ପଦ୍ଧତି ବଦଳରେ ସେ ସ୍ଥାନୀୟ ବା ଲୋକାଲ ନିଶ୍ଚେତକ ଇଞ୍ଜେକସନ୍ ପ୍ରୟୋଗ କରି ସ୍ଥଳ ବିଶେଷରେ ଅପରେସନ କରୁଥିଲେ ।

ଛାତ୍ରମାନଙ୍କ ସ୍ୱାସ୍ଥ୍ୟପ୍ରତି ତାଙ୍କର ଦୃଷ୍ଟି ଥିଲା । ମୋର ଉପର ଶ୍ରେଣୀର ଛାତ୍ର (ପରେ ଚକ୍ଷୁ ବିଶେଷଜ୍ଞ) ବ୍ରଜାନନ୍ଦ ଦାସ ତାଙ୍କର ପରୀକ୍ଷାର ଆଠ ଦଶ ଦିନ ପୂର୍ବରୁ ଆପେଣ୍ଡିସାଇଟିସ ରୋଗରେ ଆକ୍ରାନ୍ତ ହୋଇ ଖେରା ସାହେବଙ୍କୁ ପରାମର୍ଶ କଲେ । ସେ ରୋଗ କଥା ଜାଣିପାରି ସେ ପ୍ରଫେସରଙ୍କୁ କହିଲେ ''ସାର୍ ମୋ ପରୀକ୍ଷା ମୁଣ୍ଡ ଉପରେ ଅଛି, ଆପଣ ଔଷଧ ଦେଇ ମୋ ପରୀକ୍ଷା ଶେଷ ହେବା ପର୍ଯ୍ୟନ୍ତ ଅପରେସନ ଘୁଞ୍ଚାଇ ଦିଅନ୍ତୁ ।'' ତାହାଶୁଣି ଖେରା ସାହେବ ''ପରବାୟ ନାହିଁ କହି ହସି ହସି କହିଲେ ତୁମେ ଏଠାରେ ଖଟିଆରେ ରହ, କାଲି ସକାଳେ ଟେବୁଲ ଉପରେ ପରୀକ୍ଷା କରି ଯାହା କରିବାର କରିବା ।'' ସେ ସେହି ଓ୍ୱାର୍ଡ଼ର ନର୍ସ ପ୍ରଭୃତିଙ୍କୁ ନିର୍ଦ୍ଦେଶ ଦେଇ ସେଠାରୁ ଚାଲିଗଲେ ।

ପରଦିନ ରୋଗ ପରୀକ୍ଷା ପାଇଁ ସେ ଛାତ୍ରକୁ ଅପରେସନ ଥିଏଟରକୁ ନିଆଗଲା । ତାକୁ ଅପରେସନ ଟେବୁଲ ଉପରେ ଶୁଆଇ ତାଙ୍କ ଛାତି ଉପରେ ଛଅ ଆଠ ଇଞ୍ଚ ଉଚ୍ଚର ପରଦାଟିଏ ସିଧାକରି ରଖାଗଲା । ତାହା ଫଳରେ ବ୍ରହ୍ମାନନ୍ଦଙ୍କୁ ଛାତିଠାରୁ ତଳକୁ ଆଉ ଦେଖାଗଲା ନାହିଁ । ପ୍ରଫେସର ଖେରା ପେଟ ଉପରେ ଇଞ୍ଜେକସନ ଦେଇ ପରୀକ୍ଷା କରୁଥିବାର ବାହାନା କରୁ କରୁ ପେଟ ଉପରେ ଫଟକରି ଛୁରୀରେ କଣାଟାଏ କରି, ଚିମୁଟାରେ ଆପେଣ୍ଡିକ୍ସଟାକୁ ଟାଣିଆଣି କାଟି ବାହାର କରି ତା'ର ମୂଳଟା ସଙ୍ଗେ ସଙ୍ଗେ ବାନ୍ଧି ଦେଲେ । ପେଟର କଣାଟା ସିଲାଇ କରି ଅଳ୍ପ ସମୟ ଭିତରେ ଅପରେସନ ସାରିଦେଲେ ।

ତା'ପରେ ପ୍ରଫେସର ଖେରା ମୁଣ୍ଡଟେକି ବ୍ରହ୍ମାନନ୍ଦଙ୍କ ମୁହଁକୁ ଚାହିଁବାରୁ, ବ୍ରହ୍ମାନନ୍ଦ କହିଲେ "ସାର୍ କ'ଣ ପରୀକ୍ଷା କଲେ ? ପରେ ଅପରେସନ କଲେ ଚଳିବତ ?" ପ୍ରଫେସର ଖେରା ହସି ହସି କହିଲେ "ଭାୟା ହୋ ଗିଆ ଫିକର ମତ୍ କରୋ । ଦୋ ତିନ ଦିନ ବାଦ୍ ସବ୍ ଠିକ ହୋ ଯାଏଗା, ତୁମ ଇନତହାନ ଦେଗା ।"

କ୍ଲିନିକାଲ ସର୍ଜରୀ ପ୍ରଫେସର ଡାକ୍ତର କାଶୀନାଥ ମିଶ୍ରଙ୍କ ଅସ୍ତ୍ରୋପଚାର ଠିକ୍ ଓଲଟା ଧରଣର ଥିଲା । ଯେ କୌଣସି ସାଧାରଣ ଅସ୍ତ୍ରୋପଚାରକୁ ମଧ ବହୁତ ସମୟ ନେଇ ସେ ପିଲାମାନଙ୍କୁ ଟିକିନିଖି କରି ପ୍ରତ୍ୟେକ ପଦକ୍ଷେପଟି ଭଲକରି ଶିଖାଇବାକୁ ଉଦ୍ୟମ କରୁଥିଲେ । ଅବସ୍ଥା ଅନୁଯାୟୀ ବ୍ୟବସ୍ଥା କରିବାର ଶିକ୍ଷା ଓ ସ୍ୱଳ୍ପବ୍ୟୟରେ ରୋଗ ଚିକିତ୍ସା ତାଙ୍କ ଶିକ୍ଷାର ପ୍ରଧାନ ମାଧମ ଥିଲା । ଡାକ୍ତର ଅଭାବରୁ ଅସ୍ତ୍ରୋପଚାର ସମୟରେ ସେ ଛାତ୍ରମାନଙ୍କୁ ସହକାରୀ ରୂପେ ଗ୍ରହଣ କରୁଥିଲେ, କିନ୍ତୁ ଅସ୍ତ୍ରୋପଚାର ପରେ ସେହି ରୋଗୀର କ୍ଷତସ୍ଥାନର ପଟି ଟିକିଏ କୋହଳ ହୋଇଥିବାର ଦେଖିଲେ ସେ ଅଗ୍ନିଶର୍ମା ହୋଇଯାଇ କହୁଥିଲେ "ସର୍ଜନଙ୍କ ସାହାଯ୍ୟକାରୀ ହେଲ ବୋଲି କଣ ନିଜକୁ ମନେ ମନେ ଏକ ବଡ଼ ସର୍ଜନ ବୋଲି ଧରିନେଲ ? କାଶୀବାବୁଙ୍କ ପରି ସର୍ଜନ ହେବା ପୂର୍ବରୁ ଆଗ କାଶୀ ବେହେରାଠାରୁ ବାଣ୍ଡେଜ୍ ବାନ୍ଧି ଶିଖ ।"

ଅସ୍ତ୍ରୋପଚାର ବା ଅନ୍ୟ ଯେ କୌଣସି କ୍ଷତକୁ କି ପ୍ରକାର ଔଷଧ ପ୍ରୟୋଗ କରି କିପରି ବ୍ୟାଣ୍ଡେଜ ବାନ୍ଧି ଅତି ଅଳ୍ପ ସମୟ ଭିତରେ ଶୁଖାଇ ରୋଗୀକୁ ଆରୋଗ୍ୟ କରିବାକୁ ପଡ଼ିବ ସେସବୁ ଛାତ୍ରମାନେ ଶିଖିବା ଉପରେ ସେ ବିଶେଷ ଗୁରୁତ୍ୱ ଦେଉଥିଲେ ।

**ଡାକ୍ତରଖାନା ପରିଚାଳନା :**

ପରିବେଶ, ୱାର୍ଡ଼ ଓ ରୋଗୀମାନଙ୍କର ପରିଷ୍କାର ପରିଚ୍ଛନ୍ନତା ଉପରେ ସୁପରିନ୍‌ଟେଣ୍ଡେଣ୍ଟ ଭାବରେ ତାଙ୍କର ତୀବ୍ର ଦୃଷ୍ଟି ରହିଥିଲା । ସେ ଜଣେ ଅତି ଶୃଙ୍ଖଳାପ୍ରିୟ ବ୍ୟକ୍ତି ଥିଲେ । ନିର୍ଘଣ୍ଟ ସମୟ ଓ ଅନୁମତି ଛଡ଼ା ବାହାର ଲୋକଙ୍କର ହସପିଟାଲ

ଓ୍ୟାର୍ଡ଼ମାନଙ୍କରେ ପ୍ରବେଶ କରିବା ନିଷିଦ୍ଧ ଥିଲା । ତାଙ୍କ ସମୟରେ ସିଗାରେଟ ମୁଣ୍ଡି ବା କାଗଜ ଟୁକୁରା ଖଣ୍ଡିଏ ହସପିଟାଲ ବାରଣ୍ଡାରେ ପଡ଼ି ରହିଥିବାର ଦିଶୁ ନଥିଲା । ହସପିଟାଲର କର୍ମଚାରୀମାନେ ତାଙ୍କୁ ଭକ୍ତି ଓ ସମ୍ମାନ ଦେଖାଇବା ସଙ୍ଗେ ସଙ୍ଗେ ତାଙ୍କ ଶାସ୍ତିବିଧାନ ପ୍ରତି ସତର୍କ ଥିଲେ । ହସପିଟାଲର ସବୁ କର୍ମଚାରୀ କିପରି ସେବାବ୍ରତୀ ହୋଇ ରୋଗୀମାନଙ୍କର ଉପଯୁକ୍ତ ସେବା କରିବେ ସେଥିପ୍ରତି ସେ ଦୃଷ୍ଟି ରଖିଥିଲେ ।

ରୋଗୀର ଲୋକେ କର୍ମକର୍ତ୍ତାଙ୍କୁ ନ ଜଣାଇ କର୍ମଚାରୀଙ୍କୁ ଅର୍ଥ ଯାଚିବା ଏବଂ କର୍ମଚାରୀ ରୋଗୀଙ୍କଠାରୁ କିଛି ଗ୍ରହଣ କରିବାକୁ ସେ ଉତ୍କୋଚ ଗ୍ରହଣ ସଙ୍ଗେ ସମାନ ବୋଲି ଧରି ନେଇଥିଲେ । ତେଣୁ ସେପରି ଦେବାନେବା ଦଣ୍ଡନୀୟ ଅପରାଧ ବୋଲି ସେ ଓ୍ୟାର୍ଡ଼ର କାନ୍ଥମାନଙ୍କରେ ନୋଟିସ ମରାଇଥିଲେ । ଏବେ ବି ଚାଳିଶ ପଞ୍ଚଚାଳିଶ ବର୍ଷର ଲେଖା (କୌଣସି ହସପିଟାଲ କର୍ମଚାରୀ ରୋଗୀକୁ ପଇସା ମାଗିଲେ ସଙ୍ଗେ ସଙ୍ଗେ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଜଣାଅ) ସଂକ୍ରାମକ ରୋଗ ଓ୍ୟାର୍ଡ଼ ପ୍ରଭୃତିର ପୁରୁଣା କାନ୍ଥରେ ଲେଖାଯାଇଥିବା ଦେଖିବାକୁ ମିଳୁଛି ।

ସେ ସମୟରେ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଆଯାଇ ରୋଗୀମାନଙ୍କର ଯତ୍ନ ନିଆଯାଉଥିବାରୁ ସଲଫା ଓ ପେନ୍‌ସିଲିନ୍ ପ୍ରଭୃତି ନୂଆ ବାହାରିଥିବା ଆଣ୍ଟିବାଓଟିକ ଔଷଧ ଅଭାବ ଥିଲେ ମଧ ସେ ସବୁ ବ୍ୟବହାର ନ ହୋଇ ରୋଗୀମାନେ ନିର୍ଦ୍ଦିଷ୍ଟ ସମୟରେ ଆରୋଗ୍ୟ ଲାଭ କରି ପାରୁଥିଲେ ।

ଛାତ୍ର ଓ ଶିକ୍ଷକମାନଙ୍କ ସମ୍ବନ୍ଧ ଅତି ଘନିଷ୍ଠ ଥିବାରୁ ଛାତ୍ରମାନେ ପ୍ରଫେସରମାନଙ୍କୁ ନିଜର ଅଭିଭାବକ ଭଳି ମନେ କରୁଥିଲେ । ତେଣୁ ଶିକ୍ଷକଙ୍କ ଆଦେଶ କଠିନ ହେଲେ ମଧ ତାହା ପାଳନ କରିବାକୁ ଅଗ୍ରାଧିକାର ଦେଉଥିଲେ । ସେ ଶିକ୍ଷକମାନେ ଛାତ୍ର ବା କର୍ମଚାରୀଙ୍କ ଦୋଷ ଦେଖିଲେ ସେମାନଙ୍କୁ ନିଜେ କଠୋର ଦଣ୍ଡ ଦେବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ ମଧ କୌଣସି ବାହାର ବ୍ୟକ୍ତି ହସପିଟାଲ ବା କଲେଜର କୌଣସି ବ୍ୟକ୍ତି ପ୍ରତି ଆକ୍ରୋଶମୂଳକ ବ୍ୟବହାର କଲେ ତାହା ଶିକ୍ଷକମାନେ ସହ୍ୟ କରୁ ନଥିଲେ ଓ ବିପଦବେଳେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିଲେ ।

## ମୋ ସାନଭଉଣୀର ଅସ୍ତ୍ରୋପଚାର :

ମୋର ସାନଭଉଣୀ ରମା ତା'ର ବିବାହର ଅଳ୍ପ କେତେକ ମାସ ପରେ ତା'ର ସ୍ୱାମୀଙ୍କ ସଙ୍ଗେ ତା'ର ବଡ଼ ଭଉଣୀ ଶାରଦା ନିକଟକୁ ଅନୁଗୁଳ ଯାଇଥିଲେ । ସେଠାରୁ ଫେରିବା ବାଟରେ ରମାର ପେଟରେ ଯନ୍ତ୍ରଣା ହେବାରୁ ସେ କଟକରେ ଓହ୍ଲାଇଲା । ମୁଁ ଦେଖିଲା ବେଳକୁ ସେ ତା'ର ତଳି ପେଟରେ ଅତ୍ୟନ୍ତ ଯନ୍ତ୍ରଣା ଅନୁଭବ କରିବା ସଙ୍ଗେ ସଙ୍ଗେ ତା'ର ପେଟ ଫୁଲିବାକୁ ଲାଗିଥିଲା । ନାଡ଼ି ମଧ କ୍ଷୀଣ ହୋଇ ଶରୀରରୁ ଝାଳ

ବୋହି ସେ ନିସ୍ତେଜ ହୋଇ ପଡୁଥିଲା । ସେତେବେଳକୁ ମୁଁ ମେଡ଼ିକାଲ କଲେଜର ତଳ ଶ୍ରେଣୀରେ ପଢୁଥିଲି । ମୋତେ ସ୍ତ୍ରୀରୋଗ ଅଧ୍ୟାପକ ଡାକ୍ତର ପି.ସି. ରାୟ ଚିହ୍ନି ନଥିଲେ ମଧ୍ୟ ମୁଁ ତାଙ୍କର ଦ୍ୱାରସ୍ଥ ହେଲି । ମୋତେ ଛାତ୍ର ବୋଲି ଜାଣି ଅବେଳା ହୋଇଥିଲେ ମଧ୍ୟ ମୁଁ ଡାକିବା ସଙ୍ଗେ ସଙ୍ଗେ ମୋ ସହିତ ଆସି ରୋଗୀକୁ ଦେଖି ମୋତେ କହିଲେ ପେଟ ଭିତରର ଜରାୟୁ ନିକଟର ନାଳୀ ଫାଟି ପେଟ ଭିତରେ ରକ୍ତସ୍ରାବ ଚାଲିଛି । ଏହିକ୍ଷଣି ରୋଗୀର ଅସ୍ତ୍ରୋପଚାର ନ କଲେ ସେ ବଞ୍ଚିବା ଅସମ୍ଭବ । ଅପରେସନ ଅନୁମତି ପାଇଁ ରମାର ସ୍ୱାମୀ କାଗଜରେ ଦସ୍ତଖତ କରିବା ପରେ ଅଳ୍ପ ସମୟ ଭିତରେ ସେହି ସନ୍ଧ୍ୟାରେ ଅସ୍ତ୍ରୋପଚାର ଆରମ୍ଭ ହୋଇଗଲା ।

ମୁଁ ଅସ୍ତ୍ରୋପଚାର ଗୃହର ବାହାର ଘରେ ଅପେକ୍ଷା କରି ବସି ରହିଲି । ଅପରେସନ ପରେ ପରେ ରକ୍ତ ପିଣ୍ଡୁଳା ପରି ମେଞ୍ଚାଏ ହାତରେ ଧରି ପ୍ରଫେସର ରାୟ ମୋ ନିକଟକୁ ଆସି କହିଲେ ''ଏଇ ଦେଖ, ଜରାୟୁ ପାଖର ଏହି ନଳୀଟି ଭିତରେ ରହି ଭ୍ରୁଣଟି ବଢ଼ିବାରୁ ସେ ନଳୀଟି ଫାଟି ରକ୍ତସ୍ରାବ ହୋଇ ପେଟ ଭିତରେ ରକ୍ତ ଜମା ହେବାରେ ଲାଗିଥିଲା । ମୁଁ ସେ ଟିଉବଟା କାଟି ତା'ର ମୂଳ ସିଲେଇ କରିଦେଇଛି । ରୋଗୀ ଦେହରୁ ବହୁତ ରକ୍ତ ଯାଇଥିଲେ ମଧ୍ୟ ବିପଦର କାରଣ ନାହିଁ । ସେତେବେଳେ ରକ୍ତ ଦେବାର ବିଶେଷ ବ୍ୟବସ୍ଥା ନଥିଲା ତେଣୁ ଆଉ ବେଶୀ ରକ୍ତସ୍ରାବ ହୋଇଥିଲେ ମୃତ୍ୟୁ ସୁନିଶ୍ଚିତ ଥିଲା । ପ୍ରଫେସର ରାୟଙ୍କ ସହୃଦୟତା ଯୋଗୁ ରମା ଅଳ୍ପ ଦିନରେ ଆରୋଗ୍ୟ ହେଲା ।

## ପୁରୁଷ ପାଲଟୁଥିବା ସ୍ତ୍ରୀ :

ଆମ ଡାକ୍ତରଖାନାକୁ ସାଧାରଣ ସାଧାରଣ ରୋଗୀ ସବୁ ଆସିବା ସଙ୍ଗେ ସଙ୍ଗେ ବେଳେବେଳେ ଅତି ଦୁଷ୍ପ୍ରାପ୍ୟ ଅଜଣା ରୋଗ ଧରି ଜଣେ ଜଣେ ଆସି ପହଞ୍ଚନ୍ତି । ସେପରି ରୋଗୀଙ୍କର ନିଦାନ ଓ ଚିକିତ୍ସା ଅନୁଧ୍ୟାନ କରିବା ପାଇଁ ଛାତ୍ରମାନଙ୍କ ମନ ଉଦ୍‌ଗ୍ରୀବ ହୋଇଉଠେ ।

ପୁରୁଷ ସ୍ତ୍ରୀ ପାଲଟିବା ବା ସ୍ତ୍ରୀ ପୁରୁଷ ପାଲଟିବା ବିଷୟ ଥିଲା ଆମର ପୁସ୍ତକଗତ ବିଦ୍ୟା । ସେପରି ଗୋଟିଏ ରୋଗୀ ସ୍ତ୍ରୀ ରୋଗ ବିଭାଗରେ ଭର୍ତ୍ତି ହୋଇଥିବା ଶୁଣି ଆମେ ଛାତ୍ରମାନେ ସେଠାକୁ ଦଉଡ଼ିଲୁ । ସ୍ତ୍ରୀ ରୋଗ ଖଟିଆରେ ଅବଗୁଣ୍ଠିତା ମଫସଲି ବୋହୂଟିଏ ବସି ରହିଥିଲା । ତା' ଖଟିଆ ନିକଟରେ ଠିଆ ହୋଇଥିବା ତା'ର ଲୋକେ ସେ ବୋହୂଟି ମରଦ ପାଲଟି ଯାଉଛି ବୋଲି ଆମକୁ ଜଣାଇଲେ । ଆମ ପଛେ ପଛେ ସ୍ତ୍ରୀରୋଗ ଅଧ୍ୟାପକ ପି.ସି. ରାୟ ସେ ଖଟିଆ ନିକଟକୁ ଆସି ରୋଗୀକୁ ପରୀକ୍ଷା କରିବାକୁ ଲାଗିଲେ । ମୁଣ୍ଡରୁ ଓଢ଼ଣା କଢ଼ାଯିବା ପରେ ସେ ଲାଜରେ ମୁଣ୍ଡପୋତି ବସିଲା । ତା' ସତ୍ତ୍ୱେ ଆମେ ତାର ମୁଖମଣ୍ଡଳରେ ଗଜୁରୁଥିବା ନିଶ ଦାଢ଼ି ଦେଖି ପାରିଲୁ ।

ସେ ବହୁ ସନ୍ତର୍ପଣରେ ପ୍ରଫେସରଙ୍କ ପ୍ରଶ୍ନର ଉତ୍ତର ଦେବାବେଳେ ତା'ର କଣ୍ଠସ୍ୱର ପୁରୁଷର କଣ୍ଠସ୍ୱର ପରି କର୍କଶ ଶୁଭୁଥିଲା । ତା' ଛାତିର କୁଚ ଯୁଗଳର ଉଚ୍ଚତା କମିଯାଇ ଛାତି ଏକପ୍ରକାର ସମତଳ ଦିଶୁଥିଲା ଏବଂ ତା' ଶରୀରରେ ଅନ୍ୟ ପୁରୁଷ ଲକ୍ଷଣ ସବୁର ଆବିର୍ଭାବ ହେଉଥିଲା । ସେପରି ମୁଣ୍ଡ ପୋତି ବସି ରହିବା ବେଳେ ମଧ ଦୁଃଖରେ ତା'ର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଇଥିଲା ।

ପ୍ରଫେସର ତାକୁ ଖଟିଆ ଉପରେ ଶୁଆଇ ତା' ପେଟରେ ହାତ ମାରି ସାରି ଆମକୁ ହାତ ମାରିବାକୁ କହିଲେ । ତାର ତଳି ପେଟରେ ଗୋଟିଏ ପଟ ଫୁଲି ପେଟ ଭିତରେ ବଡ଼ ଗୋଲିଆ ଆବୁଟିଏ ରହିଥିଲା ।

ପ୍ରଫେସର ରାୟ ଆମକୁ ବୁଝାଇ କହିଲେ ସେ ଆବୁ ତା' ଟିଉମରଟି ତା'ର ଅଣ୍ଡକୋଷ ବା ଓଭାରିର ଟିଉମର । ସେଥିରୁ ଅନ୍ତଃସ୍ରାବୀ ପୁଂରସ ଅଧିକ ପରିମାଣରେ ନିର୍ଗତ ହେଉଥିବାରୁ ତାହା ରୋଗୀର ରକ୍ତରେ ମିଶି ଅଙ୍ଗ ପ୍ରତ୍ୟେଙ୍ଗମାନଙ୍କରେ ପୁଂଲକ୍ଷଣ ସବୁ ପ୍ରକାଶ କରିପାରୁଛି । ସେ ଟିଉମରର ନାମ 'ଆରେନ୍‌ବ୍ଲାଷ୍ଟେ ମା' ।

ସ୍ତ୍ରୀ ଓ ପୁରୁଷ ପ୍ରତ୍ୟେକଙ୍କର ଶରୀରରେ ପୁଂ ଓ ସ୍ତ୍ରୀ ଯନ୍ତ୍ରମାନ ରହିଛି, ପୁଂ ଓ ସ୍ତ୍ରୀ ଗ୍ରନ୍ଥିମାନଙ୍କରୁ ହରମୋନ ବା ଅନ୍ତଃସ୍ରାବୀ ରସ ରକ୍ତରେ ମିଶି ପ୍ରବାହିତ ହୁଏ । ପୁରୁଷ ଦେହରେ ପୁଂରସ ବେଶୀ ପରିମାଣରେ ପ୍ରବାହିତ ହେଉଥିବାରୁ ତା'ର ଅଙ୍ଗ ପ୍ରତ୍ୟେଙ୍ଗରେ ପୁଂ ଲକ୍ଷଣ ସବୁ ପରିସ୍ଫୁଟ ହୁଏ, ସ୍ତ୍ରୀ ଲକ୍ଷଣ ସବୁ ଦବିକରି ଥାଏ । ସେହିପରି ସ୍ତ୍ରୀମାନଙ୍କ ଦେହରେ ସ୍ତ୍ରୀ ରସ ଅଧିକ ଥିବାରୁ ସ୍ତ୍ରୀ ଲକ୍ଷଣ ସବୁ ବିଶେଷ ଭାବରେ ପ୍ରକାଶିତ ହୁଏ । ଏହି ସ୍ତ୍ରୀ ଲୋକର ଏହି ଆବୁଟିକୁ ଅସ୍ତ୍ରୋପଚାର ଦ୍ୱାରା ପେଟରୁ ବାହାର କରି ଦେଲେ ତା'ର ଶାରିରୀକ ପରିବର୍ତ୍ତନ ଆପେ ଆପେ ବନ୍ଦ ହୋଇ ସେ ତା'ର ଲକ୍ଷଣ ସବୁ ଫେରି ପାଇପାରିବ । ସେହି ଆବୁରୁ ଅଧିକ ପୁଂରସ ନିର୍ଗତ ହୋଇ ତା' ରକ୍ତରେ ମିଶି ପୁରୁଷ ଲକ୍ଷଣ ପ୍ରକାଶ କରୁଛି ।

ସେ ସ୍ତ୍ରୀ ଲୋକର ପେଟ ଅପରେସନ ହୋଇ ଗୋଟିଏ ପଟ ଓଭାରି ନିକଟରୁ ଏକ ବଡ଼ ଆବୁ କାଢ଼ି ନିଆଗଲା । ଅସ୍ତ୍ରୋପଚାର ପରେ ସେ ରୋଗୀଟି ଘରକୁ ଫେରିଯାଇ ପରବର୍ଷ ପୁଣି ପେଟ ଉଚ୍ଚାକରି ହସ୍‌ପିଟାଲର ପ୍ରସୂତି ବିଭାଗରେ ଭର୍ତ୍ତି ହେଲା । ତା'ର ରୋଗ ଲେଉଟିଲା ଭାବି ଆମେ ଉତ୍କଣ୍ଠିତ ହୋଇ ତା'ର ନିକଟକୁ ଗଲୁ । ସେ ଓଢ଼ଣା ଟେକିବାରେ ତାର ସ୍ତ୍ରୀ ସୁଲଭ କୋମଳ ସ୍ୱର ସହିତ ତା'ର ହସ ହସ ସାଉଁଳିଆ ମୁହଁ ଦେଖିବାକୁ ପାଇଲୁ । ତା'ର ଦାଢ଼ି ନିଶ ଲୋପ ପାଇଛି, ଛାତି ଫୁଲିଛି ଓ ସେ ଗର୍ଭଧାରଣ କରି ପିଲାଜନ୍ମ ପାଇଁ ହସ୍‌ପିଟାଲକୁ ଆସିଛି ବୋଲି ଜାଣିପାରିଲୁ । ଅଳ୍ପ ଦିନ ପରେ ସେ ପୁତ୍ର ସନ୍ତାନଟିଏ ପ୍ରସବ କରି ଖୁସି ମନରେ ଘରକୁ ଲେଉଟିଗଲା ।

ଅନ୍ତଃସ୍ରାବୀ ରସ ବା ହରମୋନ ସୃଷ୍ଟିକାରୀ ଆବୁମାନଙ୍କ ଦ୍ୱାରା ଯେ ଏପରି ହଟଚମଟ ସୃଷ୍ଟି ହୋଇପାରେ ତା'ର ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାର ସୁଯୋଗ ଆମେ ପାଇ ପାରିଥିଲୁ । ଜୀବନରେ ସେପରି ମୁଁ ଆଉ ଦେଖିବାର ସୁଯୋଗ ପାଇନଥିଲେ ମଧ ଆମେରିକା ଯାତ୍ରା ବେଳେ ପିଟ୍ୟୁଟାରୀ ଗ୍ରନ୍ଥିର ଆବୁରୁ ଶରୀର ବର୍ଦ୍ଧିଷ୍ଣୁ ଅନ୍ତଃରସର ଅଧିକ କ୍ଷରଣ ଯୋଗୁଁ ଉଚ୍ଚରେ ବଢ଼ି ଚାଲିଥିବା ଏକ ବାଳକ ରାକ୍ଷସକୁ ଆମ ଜାହାଜରେ ବିଲାତରୁ ଚିକିତ୍ସା ପାଇଁ ଆମେରିକା ଯାତ୍ରା କରୁଥିବା ବେଳେ ଦେଖିବାକୁ ପାଇଥିଲି । ଆମେମାନେ ତା'ପାଖରେ ବାମନ ଛେଳି ଭଳି ଜଣାପଡୁଥିଲୁ । ସେହି ଅତିକାୟ ଅଳ୍ପ ବୟସର ବାଳକ ପାଇଁ ଜାହାଜର ଡ଼େକ ଉପରେ ଏକ ସ୍ୱତନ୍ତ୍ର କୋଠରୀ ଗଢ଼ାଯାଇଥିଲା ।ସେ କୋଠରୀ ଦ୍ୱାର ଅତି ଉଚ୍ଚ ଥିଲା ଓ ତା' ଭିତରେ ସେ ଶୋଇବା ପାଇଁ ଦୁଇ ତିନିଟା ଖଟ ଯୋଡ଼ା ହୋଇ ପଡ଼ିଥିଲା ।

ପୂର୍ବ ବର୍ଷର ପୁରୁଷ ପାଲଟୁଥିବା ସ୍ତ୍ରୀ ରୋଗୀଟିର ମୁଖମଣ୍ଡଳରେ ଆତଙ୍କ ଭାବ ଓ ପରବର୍ଷର ସନ୍ତାନ ଲାଭର ଆଶାରେ ମୁଖ ମଣ୍ଡଳର ଉଲ୍ଲାସ ଜନିତ ଆଭାର ଦୃଶ୍ୟ ଜୀବନରେ ଭୁଲିବାର ନୁହେଁ । ସେଥିରେ ଦୁସ୍ଥ ଦୂରାରୋଗ୍ୟ ଭୋଗୁଥିବା ରୋଗୀକୁ ଚିକିତ୍ସା କରି ତା' ମୁହଁରେ ହସ ଫୁଟାଇବାରେ କି ଆନନ୍ଦ ମିଳେ ତାହା ଆମେ ଅନୁଭବ କରିଥିଲୁ ।

ଆମର ଅଭିଜ୍ଞ ଗୁରୁମାନଙ୍କର ରୋଗୀମାନଙ୍କ ପ୍ରତି ସହାନୁଭୂତିଶୀଳତା ଯୋଗୁ ଆମର ରୋଗୀ ଚିକିତ୍ସା ପ୍ରତି ଆଗ୍ରହ ବଢ଼ିଥିଲା ଓ ମୂଳରୁ ଆମେ ରୋଗୀ ଚିକିତ୍ସା ଆରମ୍ଭ କରିଦେଇଥିଲୁ । ଛୁଟିରେ ଗ୍ରାମକୁ ଗଲେ ରୋଗୀମାନେ ଆସି ଆମ ନିକଟରେ ରୁଣ୍ଡ ହେଉଥିଲେ । ଆମେ ସେମାନଙ୍କ ଭଲମନ୍ଦ ବୁଝୁଥିଲୁ । ଗ୍ରାମ ଓ ପାଖ ଆଖର ଚିହ୍ନା ପରିଚୟ ରୋଗୀମାନଙ୍କ ଭିତରୁ କେତେକ ରୋଗୀ କଟକ ହସ୍‌ପିଟାଲରେ ଭର୍ତ୍ତି କରି ସେମାନଙ୍କର ଚିକିତ୍ସା କରାଇବା ପାଇଁ ଆମକୁ ଅଥୟ କରୁଥିଲେ । ଆମେ ବାଧ ହୋଇ ସେମାନଙ୍କୁ ଆଉଟଡୋରକୁ ନେଇ କୁହା କୁହି କରି ହସପିଟାଲରେ ଭର୍ତ୍ତି କରୁଥିଲୁ । ତା' ପରେ ସେ ବିଭାଗର ପ୍ରଫେସରଙ୍କୁ ଅନୁରୋଧ କରି ପରୀକ୍ଷା ଓ ଚିକିତ୍ସାର ବ୍ୟବସ୍ଥା କରାଉଥିଲୁ । ସାଂଘାତିକ ରୋଗୀମାନେ ଶେଷ ମୁହୂର୍ତ୍ତରେ ଆସି ହସ୍‌ପିଟାଲରେ ମୃତ୍ୟୁବରଣ କଲେ ଆମକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ଆମେ ପାଠ ନଷ୍ଟ କରି ସେହି ଶବ ସତ୍କାର ପାଇଁ ଲୋକ ଯୋଗାଡ଼ କରିବା, ସେମାନଙ୍କ କୁଟୁମ୍ବକୁ ଗ୍ରାମରୁ ଅଣାଇବା ଓ ଶବ ସତ୍କାର କାର୍ଯ୍ୟ ପାଇଁ ବେଳେ ବେଳେ ଅର୍ଥ ଯୋଗାଡ଼ କରିବାକୁ ମଧ ପଡୁଥିଲା । ତା' ଛଡ଼ା ତା' ବଂଶ ଲୋକଙ୍କ ଦୁର୍ଦ୍ଦଶାରେ ଆମକୁ ସମଦୁଃଖୀ ଭାବେ ମନସ୍ତାପ କରିବାକୁ ପଡୁଥିଲା ।

କେତେକ ଦୃଷ୍ଟାନ୍ତ : ଆମ ଗ୍ରାମରେ ଲୋକାଡିଆଡ଼ ନାମକ ଜଣେ ଗରିବ ଦେଶୀ ଚିକିତ୍ସକ ଥିଲେ । ଗୋଟିଏ ବଟୁଆରେ କେତେକ ଚେରମୂଳ ଓ ଷଢେଇଟିଏରେ ଏକ

ପ୍ରକାର ମଲମ ରଖି ସେ ଅତି ଗରିବମାନଙ୍କ ମଧ୍ୟରେ ତାଙ୍କ ବ୍ୟବସାୟ ଚଳାଉଥିଲେ । ସେ ନାମକୁ ମାତ୍ର ଔଷଧ ଖର୍ଚ୍ଚ ନେଇ ତାଙ୍କର ଗୋଟିଏ ପ୍ରକାର ଔଷଧକୁ ନାନା ରୋଗ ପାଇଁ ପ୍ରୟୋଗ କରୁଥିଲେ । ସେ ଚିକିତ୍ସା ବିଶେଷ ଫଳପ୍ରଦ ନ ହେବାରୁ ତାଙ୍କ ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଥିଲା । ତାଙ୍କ ବଡ଼ ପୁଅ କଲିକତାର ଝୋଟ କଳରେ କାମ କରି ସ୍ୱଳ୍ପ ଅର୍ଜନରୁ କିଛି ଘର ଖର୍ଚ୍ଚ ପାଇଁ ପଠାଇବାରୁ ଘର ଖର୍ଚ୍ଚ ଚଳୁଥିଲା । କିନ୍ତୁ ଝୋଟ କଳରେ କାର୍ଯ୍ୟ କରି ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେବାରୁ ସେ ଚାକିରି ହରାଇ ଗ୍ରାମକୁ ଆସିଲା । ଗ୍ରାମରେ ତାହାର ଅବସ୍ଥା ଅତି ଖରାପ ଆଡ଼କୁ ଗତି କରିବାରୁ ତିଆଡ଼ ମହାଶୟ ମୋର ଶରଣ ପଶିଲେ । ମୁଁ ରୋଗୀକୁ ଅଣାଇ ହସପିଟାଲ ଟି.ବି. ଓ୍ୱାର୍ଡ଼ରେ ଭର୍ତ୍ତି କରିବା ଦିନ ହିଁ ଚିକିତ୍ସା ପାଇଁ ସମୟ ନ ଦେଇ ସେ ସ୍ୱର୍ଗାରୋହଣ କଲା । ତିଆଡ଼ଙ୍କର ଆର୍ଥିକ ସମ୍ବଳ ବା ସାହା କେହି ନଥିଲେ । ସେ ପାଗଳ କରି ପ୍ରଳାପ କରି ତଳେ ଗଡ଼ିଲେ । ମୁଁ ତାଙ୍କ ଅବସ୍ଥା ହୃଦୟଙ୍ଗମ କରି ବ୍ୟାକୁଳ ଚିତ୍ତରେ ମୋ ସାଥୀମାନଙ୍କୁ ଅନୁରୋଧ କରି ସେ ଶବ ସତ୍କାର କରାଇବା ସଙ୍ଗେସଙ୍ଗେ ତିଆଡ଼କୁ ଗାଡ଼ି ଖର୍ଚ୍ଚ ଦେଇ ବୁଝା ସୁଝା କରି ଗ୍ରାମକୁ ପଠାଇବାକୁ ପଡ଼ିଲା ।

ଆମ ଗ୍ରାମର ଜଣେ ସ୍ୱାଧୀନତା ସଂଗ୍ରାମୀ କାରାଗାରରୁ ଫେରି ଟାଟା କମ୍ପାନୀରେ ଫୋରମ୍ୟାନ କାର୍ଯ୍ୟ କରୁଥିଲେ । ତାଙ୍କର ହୃଦରୋଗ୍ ଆରମ୍ଭ ହେବାରୁ ସେ ଟାଟାରୁ ଚାକିରି ଛାଡ଼ି ଗ୍ରାମରେ ଆସି ରହିଥିଲେ । ତାଙ୍କର ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁପରେ ସେ ଦ୍ୱିତୀୟ ବିବାହ କରି ତାଙ୍କର ଛୋଟ ଛୋଟ ଦୁଇ ତିନୋଟି ସନ୍ତାନ ମଧ୍ୟ ରହିଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ଗୋଟିଏ ଶିଶୁପୁତ୍ର ଘରଛାଡ଼ି କେଉଁଆଡ଼େ ଚାଲିଯିବାରୁ ତାଙ୍କ ମନରେ ଆଘାତ ଲାଗିଥିଲା । ସେ ଛାତିର ଯନ୍ତ୍ରଣା ଅନୁଭବ କରିବାରୁ ସିଧା କଟକ ଆସି ମୋର ଛାତ୍ରାବାସରେ ପହଞ୍ଚିଲେ । ମୁଁ ତାଙ୍କୁ ନେଇ ପ୍ରଫେସର ପିସାରୋଟିଙ୍କୁ ଦେଖାଇ ଡାକ୍ତରଖାନାରେ ଭର୍ତ୍ତି କଲି । କିନ୍ତୁ ତର ସହିଲା ନାହିଁ । ହୃଦରୋଗର ପ୍ରକୋପ ବଢ଼ି ଦିନେ ଦୁଇଦିନ ଭିତରେ ସେ ସ୍ୱର୍ଗାରୋହଣ କଲେ । ସମାଜ ପ୍ରେସରେ କାର୍ଯ୍ୟ କରୁଥିବା ଆମ ଗ୍ରାମର କେତେକ ଗ୍ରାମବାସୀଙ୍କୁ ଡ଼କାଇ ତାଙ୍କ ଶବ ସତ୍କାର ପ୍ରଭୃତିର ବ୍ୟବସ୍ଥା କରାଇଲି । ତାଙ୍କ ତରୁଣୀ ଭାର୍ଯ୍ୟା ଓ କ୍ଷୁଦ୍ର ସନ୍ତାନମାନଙ୍କୁ ମୁଁ କି ସାନ୍ତ୍ୱନା ଦେବି ଭାବି ମ୍ରିୟମାଣ ହୋଇ ପଡ଼ିଥିଲି ।

ଏପରି ନାନା ଦୁଃଖ କଷ୍ଟର ଅଭିଜ୍ଞତା ଭିତରେ ମେଡ଼ିକାଲ ପାଠ ଆଗେଇ ଚାଲିଥିଲା । ହସପିଟାଲର ସ୍ୱର୍ଗ ସଙ୍ଗେ ସମ୍ବନ୍ଧ ଥାଉ ନ ଥାଉ ପାତାଳର ଯମପୁରୀ ସଙ୍ଗେ ଯେପରିକି ନିବିଡ଼ ସମ୍ବନ୍ଧ ରହିଥିଲା । ତାହା ଜୀବନ ମୃତ୍ୟୁର ଏକ ଯୁଦ୍ଧଭୂମି ଓ ଚିକିତ୍ସକ ସେଥିରେ ଏକ କ୍ରୀଡ଼ନକ । ସେଠାକୁ ଆସିଥିବା ଆଶା ନ ଥିବା କେତେକ ରୋଗୀ ମଧ୍ୟ ଅଳ୍ପ ଦିନ ମଧ୍ୟରେ ରୋଗମୁକ୍ତ ହୋଇ ଘରକୁ ଫେରନ୍ତି । ଅନ୍ୟ କେତେକ

ଆପାତତଃ ସାଧାରଣ ରୋଗ ପାଇଁ ହସପିଟାଲକୁ ଆସିଥିଲେ ମଧ୍ୟ ସମସ୍ତ ଚିକିତ୍ସା ସତ୍ତ୍ୱେ ସେମାନଙ୍କ ରୋଗ ହଠାତ୍ ବଢ଼ିଯାଇ ସେମାନେ ଯମପୁରୀକୁ ଗମନ କରନ୍ତି। ପ୍ରତିଦିନ ସେହି ବ୍ୟାଧି ଯୁଦ୍ଧ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ଡାକ୍ତରୀ ଛାତ୍ରର ହୃଦୟ ଆଘାତ ପାଇ ପଥର ପାଲଟି ଯିବାକୁ ବସେ। ତା'ର ମନର ସରସତା ଓ ଭାବ ପ୍ରବଣତା ପରିସମାପ୍ତି ଆଡ଼କୁ ଗତିକରେ। ଅନ୍ୟ କଥାରେ ନିଜର ବନ୍ଧୁ ଓ ଆତ୍ମୀୟ ଓ ଦୁସ୍ଥ ମାନବର ମରଣକାଳୀନ ଯନ୍ତ୍ରଣା ଡାକ୍ତରୀ ଛାତ୍ର ମନରେ ଗଭୀର ଛାପ ପକାଇ ତା'ର ମନକୁ ଏକପ୍ରକାର ପଙ୍ଗୁ କରିଦିଏ।

## ପୁରାତନ ସାଥୀଙ୍କ ମୃତ୍ୟୁ :

କଲେଜିଏଟ ସ୍କୁଲର ମୋର ସାଥୀ ଶ୍ରୀ ବଳରାମ ନନ୍ଦ ଆମେ ଗଢ଼ିଥିବା 'ଉତ୍କଳ ଅବକାଶ ବାହିନୀ'ର ଜଣେ ପ୍ରଧାନ ଉଦ୍ୟୋକ୍ତା ଓ ସଂଗଠକ ଥିଲେ। ସେ ଜଣେ ଅତି ଉତ୍ସାହୀ ଦେଶପ୍ରାଣ ଯୁବକ ଥିଲେ। ମାଟ୍ରିକ ପାଶ୍ ପରେ କଲିକତା ଯାଇ ସେଠାରେ ଓଡ଼ିଆ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ। ସେ କଲିକତାରେ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ରହି କାର୍ଯ୍ୟ କରିବା ଦ୍ୱାରା ତାଙ୍କ ଶରୀର ଭାଙ୍ଗି ପଡ଼ିଲା।

ମୁଁ ମେଡ଼ିକାଲ କଲେଜ ତଳ କ୍ଲାସରେ ପଢୁଥିବା ସମୟରେ ବଳରାମ ତାଙ୍କ ରୋଗ ନିର୍ଣ୍ଣୟ ଓ ଚିକିତ୍ସା ପାଇଁ ମେଡ଼ିସିନ୍ ୱାର୍ଡ଼ରେ ଭର୍ତ୍ତି ହେଲେ। ଜୀର୍ଣ୍ଣଶୀର୍ଣ୍ଣ ଶରୀର ଓ ମ୍ଳାନ ବଦନରେ ଖଟିଆଟି ଉପରେ ରୋଗ ଶଯ୍ୟାରେ ତାଙ୍କୁ ପଡ଼ି ରହିଥିବାର ଦେଖି ମୁଁ ଚମକି ପଡ଼ିଲି। ତାଙ୍କ ପେଟ ବେମାରି ଅନ୍ତଃନାଳୀର ଯକ୍ଷ୍ମାରୋଗ ବୋଲି ଜଣା ପଡ଼ିଥିଲେ ମଧ୍ୟ ସେତେବେଳେ ସେଥିପାଇଁ ଭଲ ଔଷଧ ଉଦ୍ଭାବିତ ହୋଇ ନ ଥିଲା। ସେହି ଉଦୀୟମାନ ଯୁବକ ଯାହାଙ୍କ ହୃଦୟ ଓଡ଼ିଆଙ୍କ ଦୁଃଖରେ ଅତ୍ୟନ୍ତ ଆତୁର ହୋଇ ଉଠୁଥିଲା, ଦେଶପାଇଁ ଜାତିପାଇଁ ବହୁତ କିଛି କରିବାକୁ ଯେ ଉତ୍କଣ୍ଠିତ ଥିଲେ ସେହି ବନ୍ଧୁ ମୋ ଆଖି ସାମନାରେ ସେହି ରୋଗ ଶଯ୍ୟାରେ ଚିରଦିନ ପାଇଁ ଆଖି ମୁଦିଲେ।

## ଅଚିହ୍ନା ରୋଗରେ ଆକ୍ରାନ୍ତ କଲେଜ ସାଥୀ:

ଫୁସଫୁସ୍‌ର ଯକ୍ଷ୍ମା ରୋଗକୁ ସହଜରେ ଜାଣିହୁଏ। ମୂଳରୁ ଚିକିତ୍ସା କଲେ ତାକୁ ଦବାଇ ଦିଆଯାଇପାରୁଥିଲା। ଏବେ ସମ୍ପୂର୍ଣ୍ଣ ଆରୋଗ୍ୟ କଲାଭଳି ଔଷଧ ବାହାରିଲାଣି। ଯକ୍ଷ୍ମାରୋଗ କିନ୍ତୁ କେବଳ ଫୁସ୍‌ଫୁସ୍‌ରେ ସୀମିତ ନୁହେଁ ତାହା ଅଙ୍ଗ ପ୍ରତ୍ୟେଙ୍ଗର ଅନ୍ୟ ଅନେକ ସ୍ଥାନରେ ପ୍ରକୋପ ସୃଷ୍ଟି କରିପାରେ। ସେ ସବୁକୁ ଚିହ୍ନି ଚିକିତ୍ସା କରିବା ସହଜସାଧ୍ୟ ନ ଥିଲା। ସେପରି ଶରୀର ଭିତରର ଏକ ଅନ୍ତଃସ୍ରାବୀ ଗ୍ରନ୍ଥିର ଗୁପ୍ତ ଯକ୍ଷ୍ମା ରୋଗରେ ମୋର ତଳ କ୍ଲାସର ଜଣେ ମେଧାବୀ ମେଡ଼ିକାଲ ଛାତ୍ରଙ୍କର ରହସ୍ୟଜନକ ମୃତ୍ୟୁ ଘଟିଥିଲା।

ସୁନାମଧନ୍ୟ ଶିକ୍ଷାବିତ୍ ଶ୍ରୀ ମହେଶଚନ୍ଦ୍ର ପ୍ରଧାନଙ୍କ କନିଷ୍ଠ ପୁତ୍ର ହରିଶ୍ ଆମ କଲେଜରେ ନାମ ଲେଖାଇଥିଲେ । ତାଙ୍କର ବଡ଼ଭାଇ ଶିକ୍ଷା ପାଇଁ ୟୁରୋପ ଯାଇଥିଲେ । ତେଣୁ ସେ ପିତାମାତାଙ୍କର ବଡ଼ ଅଲିଅଳ ଥିଲେ । ମାତାଙ୍କଠାରୁ ଅଧିକ ଆଦର ସହାନୁଭୂତି ପାଇବା ପାଇଁ ସେ ନାନା ରୋଗର ବାହାନା କରୁଥିଲେ । ଏପରିକି ତଳ କ୍ଲାସରେ ପଢୁଥିଲେ ମଧ୍ୟ ଆମ ଉପର କ୍ଲାସ ପିଲାଙ୍କ ଭେଷଜ ବିଜ୍ଞାନ ବହିରୁ ରୋଗ ସବୁ ପଢ଼ି ନିଜର ସେପରି ହେଉଛି ବୋଲି ଘରେ ଅଭିନୟ କରନ୍ତି । ଏପରିକି ଛେପରେ ନାଲିକାଳି ପକାଇ ଯକ୍ଷ୍ମାରୁ ତାଙ୍କ ଛେପରେ ରକ୍ତ ପଡୁଛି ବୋଲି କହନ୍ତି । ତାଙ୍କର ସେପରି ସବୁ ଅଭିନୟ ପାଇଁ ତାଙ୍କ ପିତାମାତା ବଡ଼ ବଡ଼ ଡାକ୍ତରମାନଙ୍କର ପରାମର୍ଶ କରନ୍ତି । ସେ ସେପରି ସବୁ ଅଭିନୟ କରୁଥିବା ଜଣାପଡ଼ିବା ପରେ ଡାକ୍ତର ଓ ଉପର ଶ୍ରେଣୀର ଛାତ୍ରମାନେ ତାଙ୍କର ଆଉ କୌଣସି ରୋଗ ଲକ୍ଷଣକୁ ଗୁରୁତ୍ୱ ଦିଅନ୍ତି ନାହିଁ ।

ମିଛୁଆ ରାଧୁଆ ବାଘ ରଡ଼ି ଛାଡ଼ି ଲୋକଙ୍କୁ ଠକିବା ପରେ ସତ ବାଘକୁ ଭେଟି ଚିତ୍କାର କରିବାରେ ଯେପରି କେହି ତାକୁ ସାହାଯ୍ୟ କରି ନ ଥିଲେ ସେହିପରି ସତକୁ ସତ ହରିଶ୍ଙ୍କ ଭାଗ୍ୟରେ ତାହା ଘଟିଲା । ହରିଶ ଏକ ଅଚିହ୍ନା ରୋଗରେ ଦିନକୁ ଦିନ ଦୁର୍ବଳ ହୋଇଗଲେ । ତାଙ୍କର ଦେହ କଳା ପଡ଼ିଗଲା ସେ ଶେଯରେ ଶଯ୍ୟାଶାୟୀ ହୋଇ ପଡ଼ିରହିଲେ । ପ୍ରଥମେ ପ୍ରଥମେ ସେ ନ ଖାଇ ନ ପିଇ ଅଭିନୟ କରି ତାଙ୍କ ଅବସ୍ଥା ବେଶୀ ଖରାପ ହେବାରୁ ତାଙ୍କୁ ଡାକ୍ତରଛାତ୍ରମାନଙ୍କ ପାଇଁ ଥିବା ହସ୍ପିଟାଲର ରୋଗୀ କ୍ୟାବିନକୁ ସ୍ଥାନାନ୍ତରିତ କରାଗଲା ।

ଭେଷଜ ବିଭାଗ ପ୍ରଫେସର ପିସାରୋଟି ସାହେବ ବହୁ ପ୍ରକାର ପରୀକ୍ଷା ଓ ଅନୁସନ୍ଧାନ କରିବା ପରେ ସେ ଅନ୍ତଃସ୍ରାବୀ ଗ୍ରନ୍ଥି ଆଡ୍ରେନାଲ ଗ୍ଲାଣ୍ଡର କ୍ଷୟ ରୋଗରେ ଆକ୍ରାନ୍ତ ହୋଇଥିବା ସନ୍ଦେହ କଲେ । କାରଣ ସେହି ଗ୍ରନ୍ଥିର ରସମାନଙ୍କ ଅଭାବରୁ ଶରୀରରେ ଯେଉଁ ଲକ୍ଷଣ ସବୁ ପରିଲକ୍ଷିତ ହୁଏ ତାହା ହରିଶ୍ଙ୍କ ରୋଗର ଲକ୍ଷଣ ସଙ୍ଗେ ମିଳିଯାଉଥିଲା । ସେହି ରୋଗ ଶଯ୍ୟାରେ ଉଦୀୟମାନ ମେଧାବି ମେଡ଼ିକାଲ ଛାତ୍ର ହରିଶ୍ଙ୍କର ଅକାଳ ମୃତ୍ୟୁ ଘଟିଲା । ତାଙ୍କର ରୋଗର କାରଣ ଜାଣିବା ପାଇଁ ତାଙ୍କର ମର ଶରୀରକୁ ପରୀକ୍ଷା ନିରୀକ୍ଷା କରାଗଲା । ଶରୀରର ଅନ୍ୟ କେଉଁଠି ଯକ୍ଷ୍ମା ରୋଗର ଚିହ୍ନ ନ ଥିଲେ ମଧ୍ୟ ଦକ୍ଷିଣ ବୃକକ୍ ଉପରେ ଥିବା ଆଡ୍ରେନାଲ ଗ୍ରନ୍ଥି ଯକ୍ଷ୍ମା ଜୀବାଣୁର ଆକ୍ରମଣରେ ପୂର୍ଣ୍ଣ ରୂପେ ନଷ୍ଟ ହୋଇଯାଇଥିବାର ଜଣାପଡ଼ିଲା । ରୋଗୀର କଥାକୁ ବାହାନା ବୋଲି ଉଡ଼ାଇ ନ ଦେବା କଥା ଆମେ ଶିକ୍ଷା ପାଇଲୁ ।

**ପରୀକ୍ଷା ଓ ପରୀକ୍ଷକ :**

ଚାହୁଁ ଚାହୁଁ ପାଞ୍ଚବର୍ଷର ମେଡ଼ିକାଲ ପାଠ ସରି ଶେଷ ପରୀକ୍ଷା ନିକଟେଇ ଆସିଲା । ମେଡ଼ିକାଲ ପରୀକ୍ଷା ସେତେବେଳେ ଏକ ଭାଗ୍ୟ ପରୀକ୍ଷା ପରି ଥିଲା । ଶେଷ ପରୀକ୍ଷା

ଏତେ କଷ୍ଟକର ଥିଲା ଯେ ସେଥିରେ ଶତକଡ଼ା ୨୫ ବା ୩୦ ଭାଗ ଛାତ୍ର ପାଶ୍ କଲେ ଭଲ ଫଳ ହେଲା ବୋଲି ଧରାଯାଉଥିଲା । ପ୍ରତ୍ୟେକ ବିଷୟରେ ଲେଖା, ମୌଖିକ ଓ କ୍ଲିନିକାଲ (ରୋଗୀ ପରୀକ୍ଷା) ତିନୋଟିଯାକ ପରୀକ୍ଷାରୁ ପ୍ରତ୍ୟେକଟିରେ ଶତକଡ଼ା ପଚାଶ ନମ୍ବର ନ ରଖିଲେ ପାଶ୍ ହେଉନଥିଲା । ମୌଖିକ ଓ କ୍ଲିନିକାଲ ପରୀକ୍ଷାରେ ଆମ ପ୍ରଫେସର ଓ ବାହାରୁ ଆସିଥିବା ଅନ୍ୟ ଜଣେ ବିଶେଷଜ୍ଞ ଅଲଗା ଅଲଗା ପରୀକ୍ଷା କରି ନମ୍ବର ଦେଉଥିଲେ । ସେ ଦୁଇଜଣଙ୍କ ନମ୍ବରକୁ ମିଶାଇ ତା'ର ଅଧାକୁ ଠିକ୍ ନମ୍ବର ଭାବେ ଗ୍ରହଣ କରାଯାଉଥିଲା । ତେଣୁ ପରୀକ୍ଷକମାନଙ୍କ ଉପରେ ବହୁ ପରିମାଣରେ ପରୀକ୍ଷାଫଳ ନିର୍ଭର କରୁଥିଲା । କପି କରିବା, ଶିକ୍ଷକ ଓ ପରୀକ୍ଷକଙ୍କୁ ଧମକାଧମକି, ଘେରାଉ କରିବା ଓ ସେମାନଙ୍କ ହାତରୁ ପରୀକ୍ଷା ନମ୍ବର ସବୁ ଛଡ଼ାଇନେବା ପ୍ରଭୃତିର ପ୍ରଚଳନ ନ ଥିବାରୁ ଅଧିକାଂଶ ପରୀକ୍ଷକ ନିରପେକ୍ଷ ରହି ପାରୁଥିଲେ ଓ ସେମାନଙ୍କର ଅଖଣ୍ଡ ପ୍ରତିପତ୍ତି ଓ ସମ୍ମାନ ରହିଥିଲା ।

ଶିକ୍ଷକମାନେ ଛାତ୍ରମାନଙ୍କୁ ନିଜେ ଭଲ ଭାବରେ ତାଲିମ ଦେଇଥିବାରୁ ବାହାରୁ ଆସିଥିବା ପରୀକ୍ଷକମାନଙ୍କ ସାମ୍ନାରେ ନିଜ ଛାତ୍ରମାନଙ୍କ କୃତିତ୍ୱ ପ୍ରଦର୍ଶନ କରିବା ପାଇଁ କଡ଼ାକଡ଼ି ଭାବରେ ପରୀକ୍ଷା ପରିଚାଳନା କରୁଥିଲେ ।

ଆମ ମେଡ଼ିସିନ ପରୀକ୍ଷା ସମୟରେ ଯେଉଁ ରୋଗୀମାନଙ୍କୁ ପରୀକ୍ଷାଘରକୁ ନିଆଯିବାର କଥା, ସେମାନଙ୍କୁ ପ୍ରଫେସର ପିସାରୋଟି ଆଗରୁ ମନେ ମନେ ବାଛି ପରୀକ୍ଷାଦିନ ଆସିବାକୁ କହି ଘରକୁ ପଠାଇ ଦେଇଥାଆନ୍ତି । ପରୀକ୍ଷା ବେଳେ ହଠାତ୍ ସେପରି ରୋଗୀମାନଙ୍କ ଭିତରୁ କେତେକଙ୍କୁ ଆଣି ପରୀକ୍ଷାବେଳେ ହାଜର କରି ଦିଅନ୍ତି ।

ସେ ମୋ ପରୀକ୍ଷା ସମୟରେ ଜଣେ ହୃତପିଣ୍ଡ ରୋଗୀ (ମାଇଟ୍ରାଲ ଷ୍ଟେନୋସିସ ରୋଗୀକୁ) ଡକାଇ ଆଣିଥିଲେ । ସେ ରୋଗ ଆମ ପକ୍ଷରେ କେବଳ ଷ୍ଟେଥୋ ସାହାଯ୍ୟରେ ଚିହ୍ନିବା ବଡ଼ କଷ୍ଟକର ଥିଲା । ସେହି ସମୟରେ ଡାକ୍ତର ରଘୁନାଥ ସାହୁ ଏମ.ଆର.ସି.ପି. ପାଶ୍ କରି ସଦ୍ୟ ବିଲାତରୁ ଆସି ପହଞ୍ଚିଥିଲେ । ସେ ସେହି ରୋଗୀକୁ ଆମ ପରୀକ୍ଷାରେ ଦିଆଯାଉଥିବା ଦେଖି କହିପକାଇଲେ ଏପରି ରୋଗୀ ପରୀକ୍ଷା ପାଇଁ ସ୍ନାତକୋତ୍ତର ପରୀକ୍ଷାମାନଙ୍କରେ ଦିଆଯାଏ । ତାଙ୍କ ମନ୍ତବ୍ୟ ଶୁଣି ମଧ ପ୍ରଫେସର ପିସାରୋଟି ସେ ରୋଗୀକୁ ବଦଳାଇଲେ ନାହିଁ । ମୁଁ କୌଣସି ମତେ ତାର ରୋଗ ଚିହ୍ନିପାରି ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିବାରୁ ଡାକ୍ତର ସାହୁଙ୍କର ସେହିଦିନୁ ମୋ ଉପରେ ଭଲ ଧାରଣା ହୋଇଯାଇଥିଲା ।

ବେଳେବେଳେ ପରୀକ୍ଷକମାନେ ବାହାରୁ ଆସିଥିବା ପରୀକ୍ଷକଙ୍କ ସାମ୍ନାରେ ନିଜ ଛାତ୍ରକୁ ମେଧାବୀ ଛାତ୍ର ରୂପେ ପ୍ରତିପାଦିତ କରିବା ପାଇଁ ବାହାଦୁରୀ ଦେଖାଇଥାଆନ୍ତି ।

ପ୍ରଥମ ଏମ.ବି.ବି.ଏସ୍. ପରୀକ୍ଷାରେ ଆମ ପ୍ରଖ୍ୟାତ ଆନାଟେମି ପ୍ରଫେସର ଡାକ୍ତର କୃଷ୍ଣାରାଓ ପରୀକ୍ଷାହଲରେ ଅନ୍ୟ ପରୀକ୍ଷକଙ୍କ ସାମନାରେ ମୋତେ ପ୍ରଶ୍ନ କରିଥିଲେ । ଅମୁକ ଦିନ ଏହି ପ୍ରାକ୍ଟିକାଲ୍ ହଲରେ ମୁଁ ଯେଉଁ ପ୍ରଶ୍ନର ଉତ୍ତର ତୁମକୁ କହିଥିଲି ତୁମେ ନିଶ୍ଚୟ ମନେ ରଖିଥିବ । ମୁଁ ସେହି ପ୍ରଶ୍ନ ତୁମକୁ ପଚାରୁଛି ତୁମେ ଯଦି ତାହା କହିପାରିବ ମୁଁ ତୁମକୁ ଆଉ କୌଣସି ପ୍ରଶ୍ନ ନ ପଚାରି ପାଶ୍ ନମ୍ବର ଦେଇଦେବି । ଯଦିଓ ସେ ପ୍ରଶ୍ନର ଉତ୍ତର ସେ ଦ୍ୱିତୀୟ ଥର ପାଇଁ କହି ନ ଥିଲେ ମୋ ଭାଗ୍ୟକୁ ସେ ଉତ୍ତରଟି ମୋର ମନେ ପଡ଼ିଗଲା ସେ ସତକୁ ସତ ମୋତେ ଆଉ ପ୍ରଶ୍ନ ନ ପଚାରି ଅନ୍ୟ ପରୀକ୍ଷକଙ୍କୁ ମୋତେ ପ୍ରଶ୍ନ ପଚାରିବା ପାଇଁ କହିଥିଲେ । ସେଥିରେ ମୁଁ ଅତି ସୁବିଧାରେ ପାଶ୍ କରିଗଲି । ଉତ୍ତରଟି ମନେ ପଡ଼ିନଥିଲେ ହୁଏତ ମୁଁ ଫେଲ୍ ହୋଇଥାଆନ୍ତି ।

ଜଣେ ଛାତ୍ର ବହି ପଢ଼ି ପରୀକ୍ଷା ଲେଖାରେ ଖୁବ୍ ଭଲ କରିପାରେ, କିନ୍ତୁ ମୌଖିକ ଓ ପ୍ରାକ୍ଟିକାଲ (କ୍ଲିନିକାଲ) ପରୀକ୍ଷା ବେଳେ କେଉଁ ପରୀକ୍ଷକ କିପରି ମାନସିକ ଅବସ୍ଥାରେ ଥିବେ ଓ କ'ଣ ପଚାରିବେ ଏବଂ ଛାତ୍ରର ଉତ୍ତର କିପରି ଗ୍ରହଣ କରିବେ ତାହା ଥିଲା ଏକରକମର ଭାଗ୍ୟର କଥା ।

ସ୍ତ୍ରୀ ରୋଗ ପରୀକ୍ଷାରେ ଆମ ପରୀକ୍ଷକ ପ୍ରଫେସର ପି.ସି.ରାୟ ଚିକିତ୍ସା ଓ ଅପରେସନ୍‌ରେ ଧୁରନ୍ଧର ଥିଲେ, କିନ୍ତୁ ଗବେଷଣାତ୍ମକ ନୂତନ ଉଦ୍ଭାବନ ଓ ନୂତନ ବୈଜ୍ଞାନିକ ଥିଓରୀ ସହିତ ପରିଚିତ ହେବାକୁ ତାଙ୍କୁ ବେଳ ନ ଥିଲା । ମୋର ପରୀକ୍ଷା ବେଳେ ରୋଗୀଟିର ରକ୍ତହୀନତା ଲକ୍ଷ୍ୟ କରି ରକ୍ତହୀନତାର କାରଣ ସବୁ (କ୍ଲାସିଫିକେସନ) କହିବା ପାଇଁ ନିର୍ଦ୍ଦେଶ ଦେଲେ । ନୂଆ ବହିରେ ଥିବା ନୂତନ ଶ୍ରେଣୀ ବିଭାଜନ ବିଷୟକୁ ମୁଁ ତାଙ୍କୁ କହିଲି । କିନ୍ତୁ ସେ ଚାହୁଁଥିଲେ ପୁରୁଣା ଶ୍ରେଣୀ ବିଭାଗ । ମୋ ଉତ୍ତର ଶୁଣି "ନା ନା ସେଇଟା ନୁହେଁ ଆଉଟା କହ ବୋଲି ପଚାରିବାରେ ଲାଗିଲେ । ସେହି ସମୟରେ ତାଙ୍କ ଆସିଷ୍ଟାଣ୍ଟ ଡାକ୍ତର ସୌଦାମୀନି ପରିଡ଼ା ଝରକାର ଲୁହା ରଡ଼ଟି ଦେଖାଇ ଟିକିଏ ହଲାଇ ଦେଲେ ମୁଁ ସଙ୍ଗେ ସଙ୍ଗେ ବୁଝିଯାଇ ଲୌହ ବା ଆଇରନ ଅଭାବ ଓ ଯକୃତଜନିତ ରକ୍ତହୀନତା ବୋଲି ଉତ୍ତର ଦେବାରେ ପ୍ରଫେସର ଖୁସି ହୋଇଗଲେ ଓ ସେଥିରେ ମୋତେ ଭଲ ନମ୍ବର ମିଳିଲା ।

ଭାଗ୍ୟ ପରୀକ୍ଷା :

ସର୍ଜରୀ ବା ଶୈଲ୍ୟ ପରୀକ୍ଷା ସମୟରେ ଆମ ପ୍ରଫେସର କର୍ଣ୍ଣେଲ ଖେରା ସାହେବ ପରୀକ୍ଷାର ପୂର୍ବ ରାତ୍ରୀରେ ଅମୃତସର ପରୀକ୍ଷା ସାରି କଟକ ଫେରିଲେ । ସେ ବଡ଼ ବେପରୁଆ ମେଜାଜର ପଞ୍ଜାବୀ ବ୍ୟକ୍ତି । ସେ ଜୀବନକୁ ଏକ ପିଲାଖେଳ ବୋଲି ମନେ କରନ୍ତି । ସେ ଅବିଭକ୍ତ ଭାରତର ଲାହୋର ମେଡ଼ିକାଲ କଲେଜର ଶୈଲ୍ୟ ପ୍ରଫେସର

ଥିବା ବେଳେ ତାଙ୍କର ଜଣେ ଜୁନିଅର ଡାକ୍ତରଙ୍କୁ ଆର୍ମି ବା ସୈନ୍ୟ ବାହିନୀରୁ ଅଣାଯାଇ ସେ କଲେଜର ଅଧକ୍ଷ ପଦରେ ନିଯୁକ୍ତ କରାଯିବାରୁ ତା'ର ପ୍ରତିବାଦରେ ସେ ଇସ୍ତଫା ଦେଇଥିଲେ । ସେ ସେହି କଲେଜର ସାମନାରେ ତାଙ୍କ ସର୍ଜରୀ କ୍ଲିନିକ୍ ଖୋଲିଥିଲେ । ତା'ଦ୍ୱାରା ହସପିଟାଲର ସର୍ଜରୀ ରୋଗୀ ସଂଖ୍ୟା କମି ତାଙ୍କ କ୍ଲିନିକରେ ସେ ରୋଗୀଙ୍କ ଭିଡ଼ ଜମିଥିଲା । ଭାରତ ବିଭାଜନ ସମୟରେ ଲାହୋର ପାକିସ୍ଥାନର ହସ୍ତଗତ ହୋଇ ହିନ୍ଦୁଙ୍କୁ ସେଠାରୁ ତଡ଼ା ଯିବାରୁ ଖେରା ସମସ୍ତ ସମ୍ପତ୍ତିର ଆଶା ଛାଡ଼ି ଖାଲି ହାତରେ ଭାରତକୁ ପଳାଇ ଆସିଥିଲେ । ସେ ଦିଲ୍ଲୀରେ ଅନ୍ନ ସଂସ୍ଥାନ ପାଇଁ ଚେଷ୍ଟା କରୁଥିବା ସମୟରେ ଲୋକସେବକ ମଣ୍ଡଳର ସଭାପତି ପୁରୁଷୋତ୍ତମ ଦାସ ଟଣ୍ଡନଙ୍କ ଜରିଆରେ ଓଡ଼ିଶାର ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ଖେରାଙ୍କୁ ଚୁକ୍ତିରେ ଅଣାଇ ସର୍ଜରୀ ପ୍ରଫେସର ପଦରେ ନିଯୁକ୍ତ କରିଥିଲେ ।

ସେହି ଏକଜିଦିଆ ଖେରା ସାହେବ ଗୋଟିଏ ରୋଗୀ ପାଇଁ ଗୁଡ଼ିଏ ଦାମିକା ଔଷଧ ବରାଦ କରିଥିଲେ । ତାହା ହସ୍‌ପିଟାଲ ସୁପରିନ୍‌ଟେଣ୍ଡେଣ୍ଟ ଯୋଗାଇ ନ ପାରିବାରୁ ଖେରା ତାଙ୍କ ଇସ୍ତଫା ପତ୍ର ସୁପରିନ୍‌ଟେଣ୍ଡେଣ୍ଟଙ୍କ ମୁହଁ ଉପରକୁ ଫିଙ୍ଗି କଟକ ଛାଡ଼ି ଚାଲିଯାଇଥିଲେ । ସେଥିରୁ ନିବୃତ୍ତ ହେବାକୁ ତାଙ୍କୁ ଛାତ୍ରମାନେ ବୁଝାଇବାରେ ସେ କହିଥିଲେ ''ଲେ ଯାଓ ତେରା ନୋକରୀ, ଭଗବାନ ଦେତା ହେ, ଲେତା ହେ, ବହୁତ ଦିଆ ବହୁତ ଲିଆ, ହମ୍ ଚଲତା ।'' ସେ ଦିଲ୍ଲୀ ଯାଇ ପଟେଲ ନଗରରେ ଯେଉଁ କ୍ଲିନିକ୍ କରିଥିଲେ ତାହା ବେଶ ଖ୍ୟାତି ଲାଭ କରିଥିଲା । ତାଙ୍କ ତିରୋଧାନ ପରେ ବିଲାତର ଏଫ.ଆର.ସି.ଏସ୍ ପାଶ କରି ତାଙ୍କ ପୁତ୍ର ସର୍ଜନ ଭାବରେ ତାହା ଚଳାଇଥିଲେ ।

ସର୍ଜରୀ ପରୀକ୍ଷା ପୂର୍ବରୁ ରୋଗୀମାନଙ୍କୁ ପରୀକ୍ଷା କରି ପରୀକ୍ଷା ପାଇଁ ଉପଯୁକ୍ତ ରୋଗୀମାନଙ୍କୁ ପରୀକ୍ଷା ସ୍ଥାନକୁ ପଠାଯାଇଥାଏ । ଖେରା ସାହେବ ଆମ ପରୀକ୍ଷାର ପୂର୍ବଦିନ ରାତିରେ କଟକରେ ପହଁଚି ସକାଳୁ ଆସି ରୋଗୀଙ୍କ ଲିଷ୍ଟ ଦେଖି ସେଥିରୁ କେତେକଙ୍କୁ ପରୀକ୍ଷାକୁ ପଠାଯିବା ପାଇଁ ନିର୍ଦ୍ଦେଶ ଦେଇଦେଲେ । ରୋଗୀକୁ ପରୀକ୍ଷା କରି ଦେଖି ବାଛ ବିଚାର କରିବାକୁ ତାଙ୍କର ବେଳ ନ ଥିଲା । କ୍ଲିନିକାଲ ପରୀକ୍ଷାରେ ଛାତ୍ର ରୋଗୀମାନଙ୍କୁ ପଚରା ଉଚରା କରି ତା'ର ରୋଗର ଲକ୍ଷଣମାନ ବୁଝିସାରି ରୋଗୀର ଶରୀରକୁ ନିଜ ହାତରେ ପରୀକ୍ଷା କରି ରୋଗୀର ରୋଗ ନିର୍ଣ୍ଣୟ କରିବାକୁ ପଡ଼େ । ତେଣୁ ସେପରି ପରୀକ୍ଷା ପାଇଁ ଉତ୍ତର ଦେଇ ପାରୁଥିବା କ୍ରନିକ ବା ପୁରୁଣା ରୋଗୀଙ୍କୁ ସାଧାରଣତଃ ପରୀକ୍ଷା ପାଇଁ ବଛା ଯାଇଥାଏ ।

ମୋର ପରୀକ୍ଷା ପାଇଁ ଥିବା ରୋଗୀଟି ପୂର୍ବଦିନ ହସ୍‌ପିଟାଲରେ ଭର୍ତ୍ତି ହୋଇଥିଲା । ସେ ଗଛରୁ ପଡ଼ି ତା' ଅଣ୍ଟା ଭାଙ୍ଗି ଥିବାରୁ ଅତ୍ୟଧିକ ଯନ୍ତ୍ରଣାରେ ଛଟପଟ ହେଉଥିଲା ।

ତାକୁ ପ୍ରଫେସର ଦେଖି ନ ଥିଲେ । ସେ ମୋ ପ୍ରଶ୍ନର ଉତ୍ତର ଦେବା ଅବସ୍ଥାରେ ନ ଥିଲା । ଦେହରେ ପରୀକ୍ଷା ପାଇଁ ହାତ ମାରୁ ମାରୁ ସେ ଅଶ୍ଳୀଳ ଭାଷାରେ ଗାଳି ଗୁଲଜ ଆରମ୍ଭ କରି ମୋତେ ପାଖକୁ ପୂରାଇ ଦେଲା ନାହିଁ । ତେଣୁ ସେପରି ରୋଗୀର ରୋଗ ନିର୍ଣ୍ଣୟ କରିବା ପୂରା ଅସମ୍ଭବ ଥିଲା ।

ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେଠାରେ ଠିଆ ହୋଇ ରହିଥିବା ଦେଖି ପୂର୍ବବର୍ଷ ପାଶ୍ କରି ହାଉସ ସର୍ଜନ ଥିବା ମୋର ବନ୍ଧୁ ଦୁର୍ଗାଚରଣ ମହାପାତ୍ର ଖେରା ସାହେବଙ୍କ ନିକଟକୁ ଯାଇ ମୋ ରୋଗୀଟି ପରୀକ୍ଷା ପାଇଁ ଅନୁପଯୁକ୍ତ ଥିବାରୁ ତାହାକୁ ବଦଳାଇ ଦେବା ପାଇଁ ମୋ ତରଫରୁ ଅନୁରୋଧ କଲେ । ପ୍ରଫେସର ଖେରା ଦୁର୍ଗାଚରଣଙ୍କ କଥାକୁ କୌଣସି ଗୁରୁତ୍ୱ ନ ଦେଇ "ସେ ପରୀକ୍ଷାର୍ଥୀ ତା' ନିଜର ଭାଗ୍ୟ ପରୀକ୍ଷା କରୁ ।" ରୋଗୀ ବଦଳି ପାରିବ ନାହିଁ ବୋଲି କହିଲେ । ମୁଁ ସେ କଥା ଶୁଣି ମୋ ଭାଗ୍ୟରେ ଫେଲ ଯୋଗ ଅଛି ବୋଲି ଧରି ନେଲି । ପୂର୍ବ ବର୍ଷ ଡ଼ାକ୍ତର ପ୍ରସନ୍ନ ପତି ବଛାବଛି (ଟେଷ୍ଟ) ପରୀକ୍ଷାରେ ସର୍ଜରୀରେ ଫାଷ୍ଟ ହୋଇଥିଲେ ମଧ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେଥିରେ ଫେଲ ହୋଇଥିଲେ । ତେଣୁ ମୁଁ ଆମ ଟେଷ୍ଟ ପରୀକ୍ଷାରେ ସର୍ଜରୀରେ ସର୍ବୋଚ୍ଚ ନମ୍ବର ରଖିଥିଲେ ସୁଦ୍ଧା ପ୍ରସନ୍ନଙ୍କ ପରି ମୋର ଭାଗ୍ୟର ବିଡ଼ମ୍ବନା ଘଟିବ ବୋଲି ଭାବିଲି । ସର୍ଜରୀ ଓ୍ୟାର୍ଡ଼ର ଦାୟିତ୍ୱରେ ଥିବା ଜୁନିଅର ସର୍ଜନ ମଧ ମୋ ରୋଗୀକୁ ବଦଳାଇବା ପାଇଁ ଖେରାଙ୍କୁ କହିଲେ ଓ ମୁଁ ତାଙ୍କର ଜଣେ ପ୍ରିୟ ଓ ଭଲ ଛାତ୍ର ବୋଲି ମଧ ଜଣାଇଲେ । କିନ୍ତୁ ଖେରା ନିଜ କଥାରେ ଅଟଳ ରହିଲେ ।

ପରୀକ୍ଷକମାନେ ସେହି ଓ୍ୟାର୍ଡ଼ର ନର୍ସିଂଡ଼ିଉଟି ରୁମ୍‌ରେ ବସି ପରୀକ୍ଷା ହଲକୁ ଯିବା ପୂର୍ବରୁ ବାକ୍ୟାଳାପ କରୁଥିଲେ । ପ୍ରଫେସର ଖେରା ଓ ବାହାରୁ ଅସିଥିବା ପରୀକ୍ଷକ (ମାନ୍ଦ୍ରାଜ ମେଡ଼ିକାଲ କଲେଜ ପ୍ରଫେସର) ଙ୍କ ସଙ୍ଗେ ସଦ୍ୟ ବିଲାତରୁ ଏଫ. ଆର. ସି. ଏସ. ପାଶକରି ଆସିଥିବା ଡ଼ାକ୍ତର ଗିରିଜାଶଙ୍କର ଦାସ ମହାପାତ୍ର ମଧ ସେଠାରେ ଥିଲେ । ସେ ମୋ ବିଷୟ ଶୁଣିବା ପରେ ସେଠାରୁ ଉଠି ଆସି ମୋ ରୋଗୀକୁ ଚାହିଁବା ପରେ ସେ ରୋଗୀକୁ ଦେଖି ଆସିବାକୁ ଅନୁରୋଧ କଲେ । ସେ ଦୁହେଁ ଓ୍ୟାର୍ଡ଼ ଅଭିମୁଖେ ବାହାରିବାରୁ ତାଙ୍କ ପଛେ ପଛେ ଖେରା ସାହେବ ମଧ ବାହାରି ପଡ଼ିଲେ । ଖେରା ସାହେବ ତାଙ୍କ ଛାତ୍ରମାନଙ୍କ ନାମ ମନେ ରଖନ୍ତି ନାହିଁ କିନ୍ତୁ ଛାତ୍ରମାନଙ୍କ ମୁହଁ ଦେଖି ସେମାନଙ୍କୁ ଚିହ୍ନି କିଏ ଭଲ କିଏ ମନ୍ଦ ତାହା ଜାଣିଥାଆନ୍ତି ।

ସେମାନେ ମୋ ରୋଗୀର ଖଟିଆ ନିକଟରେ ପହଁଚି ରୋଗୀ ଉପରେ ଆଖି ପକାଇଲେ । ରୋଗୀ ବାଉଳି ଚାଉଳି ହୋଇ ଗାଳି ଗୁଲଜ କରୁଥିଲା । ଖେରା ସାହେବ ମୋ ମୁହଁକୁ ଚାହିଁ କହିଲେ "ଭାୟା ! ତୁମ୍ଭାରା ଲକ୍‌ସେ ଏସି ପେସେଣ୍ଟ ପଡ଼ଗିଆ ?"

ତା’ ପରେ ଆସିଷ୍ଟାଣ୍ଟକୁ ଡ଼ାକି କହିଲେ ‘‘ଏ ପେସେଣ୍ଟକୁ ଏଠାରୁ ନେଇ ଯାଅ ।’’ ତାପରେ ଖେରା ସେଠାରୁ ଯାଇ ବାଛିକରି ଗୋଟିଏ କ୍ଲିନିକ ରୋଗୀ ମୋ ପରୀକ୍ଷା ପାଇଁ ପଠାଇଲେ । ତାହା ଯୋଗୁଁ ପରୀକ୍ଷାରେ କୃତକାର୍ଯ୍ୟ ହେବାପାଇଁ ମୋତେ ସୁଯୋଗ ମିଳିଲା ।

ମେଡ଼ିକାଲ କଲେଜ ପରୀକ୍ଷା ଫଳ ପ୍ରକାଶ ପାଇଲା । ୧୯୪୫ ରେ (ଦ୍ୱିତୀୟ ଦଳ) ନାମ ଲେଖାଇ ଥିବା ଆମ ୩୧ ଜଣ ଛାତ୍ରଛାତ୍ରୀଙ୍କ ଭିତରୁ ୧୯୫୦ ମେ’ ମାସରେ ନଅ ଜଣ ଛାତ୍ର କୃତକାର୍ଯ୍ୟ ହୋଇ ମେଡ଼ିକାଲ ଏମ୍.ବି.ବି.ଏସ. ଡ଼ିଗ୍ରୀ ହାସଲ କଲୁ । ସେ ସମୟରେ ସେ ପରୀକ୍ଷା ଫଳ ଖୁବ ଭଲ ହୋଇଥିବାର ମନେ କରାଯାଉଥିଲା । ମେଡ଼ିକାଲ ପରୀକ୍ଷାରେ ଡ଼ିଭିଜନ ନ ଥାଏ । କୌଣସି ସ୍ତରରେ ନ ଅଟକି ଥର ଥରକେ ପାଶ କରିଥିବାକୁ ଫାଷ୍ଟ ଡ଼ିଭିଜନ୍ । ଦୁଇଥର ଚେଷ୍ଟା କରି ପାଶ୍ କରିଥିବାକୁ ସେକେଣ୍ଡ ଡ଼ିଭିଜନ ପ୍ରଭୃତି ବୋଲି ମନେ କରାଯାଉଥିଲା ।



# ଭେଷଜ ତାଲିମ ଓ ରକ୍ତଲେଇ

ଏବେ ମେଡ଼ିକାଲ ପାଠକୁ ସାଢ଼େ ଚାରିବର୍ଷ କରାଯାଇ ତା'ପରେ ଏକ ବର୍ଷ ବାଧ୍ୟତାମୂଳକ ଇଣ୍ଟର୍ଣ୍ଣସିପ୍ ତାଲିମ୍ ପରେ ଡ଼ାକ୍ତରୀ ଡ଼ିଗ୍ରୀ ମିଳୁଛି । ଆମ ପାଞ୍ଚ ବର୍ଷର ପାଠ୍ୟକ୍ରମ ସହିତ ତାଲିମ ସଂଶ୍ଲିଷ୍ଟ ଥିବାରୁ ଆମେ ପାଶ୍ କରିବା ସଙ୍ଗେ ସଙ୍ଗେ ଡ଼ିଗ୍ରୀ ପାଇ ଡ଼ାକ୍ତରୀ ଚିକିତ୍ସା ପାଇଁ ରେଜିଷ୍ଟ୍ରେସନ କରିବାର ଯୋଗ୍ୟତା ଲାଭ କରୁଥିଲୁ ।

ମେଡ଼ିକାଲ ସ୍କୁଲ ରହିଥିବା ବେଳେ ଛାତ୍ର ହାଉସ୍‌ସିପ୍‌ର ବ୍ୟବସ୍ଥା ନ ଥିଲା । ଚିକିତ୍ସାର ସୁବିଧା ପାଇଁ ପାଶ୍ କରିଥିବା ଡ଼ିପ୍ଲୋମାଧାରୀ ଡ଼ାକ୍ତରଙ୍କ ମଧ୍ୟରୁ ସବ୍ ଆସିଷ୍ଟାଣ୍ଟ ସର୍ଜନ ନିଯୁକ୍ତ ହୋଇଥିବା ଜଣଙ୍କୁ ହାଉସ୍‌ଫିଜିସିଆନ ଓ ଅନ୍ୟ ଜଣକୁ ହାଉସ ସର୍ଜନ ଭାବେ ନିଯୁକ୍ତି ଦିଆଯାଉଥିଲା ।

ମେଡ଼ିକାଲ କଲେଜ ଖୋଲିବା ପରେ ହାଉସ୍‌ସିପ୍ ଟ୍ରେନିଂ ଆରମ୍ଭ ହୋଇ ସଦ୍ୟ ପାଶ୍ କରିଥିବା ଡ଼ିଗ୍ରୀଧାରୀ ଡ଼ାକ୍ତରମାନଙ୍କ ଭିତରୁ ବାଛି ସେମାନଙ୍କୁ କିଛି ଭତ୍ତା ସହିତ ମାତ୍ର ୬ ମାସ ପାଇଁ ଭେଷଜ ଶୈଲ୍ୟ ବିଭାଗ ପ୍ରଭୃତିରେ ମୁତୟନର ବ୍ୟବସ୍ଥା ହୋଇଥିଲା । ଷ୍ଟାଇପେଣ୍ଡ ବା ଭତ୍ତା ସଂଖ୍ୟା ସୀମିତ ଥିବାରୁ ଛଅମାସ ପରେ ପୁଣି ସେପରି ବଛା ଯାଉଥିଲା ।

ଡ଼ିଗ୍ରୀ ପାଇବା ସଙ୍ଗେ ସଙ୍ଗେ ଜଣେ ସ୍ୱାସ୍ଥ୍ୟ ବିଭାଗର ଆସିଷ୍ଟାଣ୍ଟ ସର୍ଜନ ଚାକିରୀର ଯୋଗ୍ୟତା ହାସଲ କରୁଥିଲେ ମଧ ଚାକିରିର ଅଭାବରୁ ନୂଆ ଡ଼ାକ୍ତରମାନେ ଭତ୍ତା ସହିତ ରହିବାକୁ ନ ପାଇଲେ ବିନା ଭତ୍ତାରେ ମଧ ଚିକିତ୍ସାରେ ଅଭିଜ୍ଞତା ଅର୍ଜନ ପାଇଁ ମେଡ଼ିକାଲ କଲେଜ ହସ୍‌ପିଟାଲ୍‌ରେ ପଡ଼ି ରହୁଥିଲେ ।

ସରକାରୀ ଅବିଚାର : ପୂର୍ବରୁ ଓଡ଼ିଶାର ସ୍ୱାସ୍ଥ୍ୟ ବିଭାଗରେ ପାଟନା ମେଡ଼ିକାଲ କଲେଜକୁ ଶିକ୍ଷା ପାଇଁ ବାର୍ଷିକ ପଠାଯାଉଥିବା ଚାରୋଟି ଡ଼ାକ୍ତରଙ୍କ ପାଇଁ ନିଯୁକ୍ତିର ବ୍ୟବସ୍ଥା ରହିଥିଲା । ସ୍ୱାଧୀନତା ପରେ ଗଡ଼ଜାତ ମିଶ୍ରଣ ଯୋଗୁଁ ପରେ ସେପରି ବେଶି ସ୍ଥାନ ଖୋଲିଥିଲା ।

ମେଡ଼ିକାଲ କଲେଜ ପ୍ରତିଷ୍ଠା ବେଳେ କଲେଜ ଶିକ୍ଷକ ଓ ବିଶେଷଜ୍ଞ ଚାକିରି ସବୁ ସେହି କଲେଜରୁ ବାହାରୁଥିବା ପୂର୍ବତନ ଛାତ୍ରଙ୍କ ଦ୍ୱାରା ପୂରଣ କରିବା ପାଇଁ ସେ ପର୍ଯ୍ୟନ୍ତ କାମ ଚଳାଇବାକୁ ଠିକାରେ ପ୍ରଫେସର ପ୍ରଭୃତିଙ୍କୁ ନିଯୁକ୍ତି ଦିଆଯାଇଥିଲା । ସେଥିଯୋଗୁଁ

ସେତେବେଳେ ଖାଲି ପଡ଼ିଥିବା ବହୁ ଜୁନିଅର ଡ଼ାକ୍ତରଙ୍କ ପୋଷ୍ଟ ସବୁର କାର୍ଯ୍ୟ ଛାତ୍ରମାନଙ୍କ ଦ୍ୱାରା ଚଳାଇ ନିଆଯାଉଥିଲା ।

ଯୁଦ୍ଧ ସରିଲା । ହଠାତ୍ ସରକାରଙ୍କର ମତିଗତି ବଦଳିଗଲା । ଯେଉଁ ଡ଼ିପ୍ଲୋମାଧାରୀ ଡ଼ାକ୍ତରମାନେ ଇଂରେଜ ସରକାରଙ୍କ ଯୁଦ୍ଧରେ ଯୋଗ ଦେଇଥିଲେ ଓ ହାତବାରିସୀ ପରି କାର୍ଯ୍ୟ କରୁଥିଲେ, ସେମାନଙ୍କ ପାଇଁ ସରକାର ଏକ କଣ୍ଡେନେସ୍ କୋର୍ସ ଆରମ୍ଭ କଲେ । ଆମ ପଛରେ ପ୍ରବେଶ କରି ଯୁଦ୍ଧ ଫେରନ୍ତାମାନେ ଦେଢ଼ ବର୍ଷ ଟ୍ରେନିଙ୍ଗ୍ ପରେ ଓ ଅନ୍ୟ ଡ଼ିପ୍ଲୋମାଧାରୀ ମାନେ ଦୁଇବର୍ଷରେ ଆମେ ରେଗୁଲାର ଛାତ୍ରମାନେ ପରୀକ୍ଷା ଦେବା ପୂର୍ବରୁ ଏମ୍.ବି.ବି.ଏସ୍. ଡ଼ିଗ୍ରୀ ହାସଲ କରିନେଲେ । ଆମ ପାଇଁ ମାଟ୍ରିକ ପରେ ଦୁଇବର୍ଷ ଆଇ.ଏସ୍.ସି., ପାଞ୍ଚ ବର୍ଷ ମେଡ଼ିକାଲ ପାଠ ବାଧ୍ୟତାମୂଳକ ଥିବାବେଳେ ମାତ୍ର ଚାରିବର୍ଷର ଡ଼ିପ୍ଲୋମା ଓ ଦେଢ଼ ବର୍ଷ, ଦୁଇ ବର୍ଷର ଟ୍ରେନିଙ୍ଗରେ ଗ୍ରାଜୁଏଟ ହୋଇଗଲେ । ସେମାନେ ମେଡ଼ିକାଲ କଲେଜର ଜୁନିଅର ଶିକ୍ଷକ ପଦ ଓ ପରେ ପରେ ଗଡ଼ଜାତ ମିଶି ବଡ଼ ପ୍ରଦେଶ ହୋଇଥିବା ଓଡ଼ିଶାର ସମସ୍ତ ଆସିଷ୍ଟାଣ୍ଟ ସର୍ଜନ ପୋଷ୍ଟ ଅଧିକାର କରିନେଲେ । ଆମ ରେଗୁଲାର ଛାତ୍ର ମାନଙ୍କ ପାଇଁ ଚାକିରିର ବାଟ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ।

ମେଡ଼ିକାଲ କଲେଜ ପ୍ରତିଷ୍ଠାର ପାଞ୍ଚବର୍ଷ ପରେ ହେବାକୁ ଥିବା ବିଧିବଦ୍ଧ ପରୀକ୍ଷା ହେବାର ଏକ ବର୍ଷ ପର୍ବରୁ ଓଡ଼ିଶାର କଂଗ୍ରେସ ସରକାର ଏକ ବେନିୟମ ପରୀକ୍ଷା କରାଇ ଡ଼ିପ୍ଲୋମାଧାରୀଙ୍କୁ ଡ଼ିଗ୍ରୀ ପ୍ରଦାନ କରାଇବାରୁ ଇଣ୍ଡିଆନ ମେଡ଼ିକାଲ କାଉନସିଲ ତା'ର ଆପତ୍ତି କରି ବହୁ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ମେଡ଼ିକାଲ କଲେଜ ଡ଼ିଗ୍ରୀକୁ ସ୍ୱୀକୃତି ଦେଲା ନାହିଁ । ତାହା ଫଳରେ ଓଡ଼ିଶା ମେଡ଼ିକାଲ କଲେଜ (ପରେ ଏସ.ସି.ବି.)ରୁ ପାଶ୍ କରିଥିବା ଡ଼ାକ୍ତରମାନଙ୍କୁ ସର୍ବଭାରତୀୟ ସ୍ତରରେ ଗ୍ରହଣ କରାଗଲା ନାହିଁ ଏବଂ ଅନ୍ୟ ପ୍ରଦେଶରେ ଡ଼ାକ୍ତରୀ ଚିକିତ୍ସାର ସୁବିଧା ମିଳିଲା ନାହିଁ । ଫଳରେ ଭାରତର ଅନ୍ୟ ମେଡ଼ିକାଲ କଲେଜରେ ସ୍ନାତକୋତ୍ତର ଶିକ୍ଷା ପାଇଁ ମଧ୍ୟ ସ୍ଥାନ ମିଳିଲା ନାହିଁ ।

ଓଡ଼ିଶାରେ ମେଡ଼ିକାଲ କାଉନସିଲଠାରୁ ଏମ୍.ବି.ବି.ଏସ୍ ପାଇଁ ସ୍ୱୀକୃତି ମିଳି ନ ଥିବାବେଳେ ସ୍ନାତକୋତ୍ତର ଡ଼ିଗ୍ରୀ ଆରମ୍ଭ ହେବାର ମଧ୍ୟ ଆଶା ନ ଥିଲା । ତେଣୁ ଆମେ ଓଡ଼ିଶା ମେଡ଼ିକାଲ କଲେଜରୁ ପାଶ୍ କରିଥିବା ପୂର୍ବତନ ରେଗୁଲାର ଛାତ୍ରମାନେ ଘଡ଼ିକି କି ପେଡ଼ିକି କେଉଁଥିକି ଯୋଗ୍ୟ ନ ହୋଇ ତ୍ରିଶଙ୍କୁ ଅବସ୍ଥାରେ ଓହଳି ରହିଲୁ ।

ଆମେ ପାଶ୍ କଲାପରେ ଆମକୁ ଖତେଇ ହେଲା ପରି ଓଡ଼ିଶା ସରକାର, ଡିପ୍ଲୋମାଧାରୀଙ୍କ ପ୍ରମୋଶନ୍ ପରେ ଖାଲି ପଡ଼ିଥିବା ନନ୍ ଗେଜେଟେଡ଼ ସବ୍ ଆସିଷ୍ଟାଣ୍ଟ ପୋଷ୍ଟ ପାଇଁ ଦରଖାସ୍ତ କରିବାକୁ ନିର୍ଦ୍ଦେଶ ଦେଲେ ।

ସବଆସିଷ୍ଟାଣ୍ଟ ସର୍ଜନମାନେ ସେପରି ପାଶ୍‌କରି ଗେଜେଟେଡ୍ ପୋଷ୍ଟ ପାଇଲେ ଆମେ ସରକାରଙ୍କଠାରେ ପ୍ରତିବାଦ ଜଣାଇଲୁ, ଆମକୁ କେତେକ ରାଜନୈତିକ ନେତା ଓ ବିଶେଷରେ କଟକର (କଂଗ୍ରେସୀ) ବିଧାନସଭା ପ୍ରତିନିଧି ସମର୍ଥନ ଜଣାଇବାକୁ ପ୍ରତିଶ୍ରୁତି ଦେଲେ ।

ଆମେ ମେଡ଼ିକାଲ କଲେଜରୁ ଏକ ପଟୁଆର ବାହାର କରି କଟକ ଟାଉନହଲକୁ ଆସି ପ୍ରତିବାଦ ସଭାଟିଏ କଲୁ । ଗଣତନ୍ତ୍ରରେ ସଂଖ୍ୟାଧିକର ଜୟ ଆବହାଓ୍ୱାରେ ଆମପରି ମୁଷ୍ଟିମେୟ ନୂଆ ଡ଼ାକ୍ତରଙ୍କ ସେପରି ପ୍ରତିବାଦ ସଭା ଫଳପ୍ରଦ ହେବାର ଆଦୌ ଆଶା ନ ଥିଲା ।

ସେ ସଭାରେ କଣ୍ଡେନସ କୋର୍ସ ଡ଼ାକ୍ତରଙ୍କ ନିଯୁକ୍ତି ଯୋଗୁଁ ବଡ଼ ଡ଼ାକ୍ତରଖାନାରେ କିପରି ଅବ୍ୟବସ୍ଥା ହୋଇ ରୋଗ ପରୀକ୍ଷା ଓ ଚିକିତ୍ସାର ଅଧୋଗତି ଘଟୁଛି ସେ ସମ୍ବନ୍ଧରେ ସ୍ଥାନୀୟ ବିଧାୟକ ଏକ ହାସ୍ୟାସ୍ପଦ ଭାଷଣ ଦେଲେ । ସେ ଆମର ନ୍ୟାଯ୍ୟ ଦାବି କଥା କିଛି ନ ଉଠାଇ ଅସୁବିଧାର ଉଦାହରଣ ଦେଇ କହିଲେ ମୁଁ ଏ ଡ଼ାକ୍ତରଖାନାରେ ଚିକିତ୍ସା ହେବା ଦ୍ୱାରା କିଛି ଫଳ ନ ହେବାରୁ ତତ୍‌କାଳୀନ ବଡ଼ କଂଗ୍ରେସୀ ଡ଼ାକ୍ତର ବିଧାନ ରାୟଙ୍କ ପରାମର୍ଶ ପାଇଁ କଲିକତା ଗଲି । ସେ ମୋର କଟକ ହସପିଟାଲର ରକ୍ତ ପରୀକ୍ଷା ରିପୋର୍ଟ ଉପରେ ସନ୍ଦେହ ପ୍ରକାଶ କରି କଲିକତାରେ ପୁଣି ମୋର ରକ୍ତ ପରୀକ୍ଷା ପାଇଁ ନିର୍ଦ୍ଦେଶ ଦେଲେ । ସେ ନୂଆ ରିପୋର୍ଟ ଦେଖି ମୋତେ କହିଲେ "ଖୋକା ! ତୁମାର ସେଖାନେ କି ପରୀକ୍ଷା ହଏ । ସେଖାନକାର ସବ୍ ରିପୋର୍ଟ ନେଗେଟିଭ, ବଟେ ତୁମାର ଏଖାନକାର ରିପୋର୍ଟ ସେଭେନଟି ଫାଇବ ପରସେଣ୍ଟ ଭି.ଡ଼ି. (ସିଫିଲିସରୋଗ) ପଜେଟିଭ ।" ତେଣୁ ଏ କଲେଜକୁ ବନ୍ଦ କରିଦେବା ଉଚିତ ବୋଲି କହି ପରିହାସ ରୋଳ ଭିତରେ ବସି ପଡ଼ିଲେ ।

ସରକାର ଆମ ଦରଖାସ୍ତ ସହାନୁଭୂତି ସହିତ ବିଚାର କରିବା ପରିବର୍ତ୍ତେ ଆସିଷ୍ଟାଣ୍ଟ ସର୍ଜନ ପୋଷ୍ଟ ୩ ଭାଗ କରି ଗ୍ରେଡ୍ ଓ୍ୱାନ୍, ଟୁ ଓ ଥ୍ରୀରେ ପରିଣତ କରିଦେଲେ । ଆମେ ନନଗେଜେଟେଡ୍ ପୋଷ୍ଟ କଦାପି ଗ୍ରହଣ କରିବୁ ନାହିଁ ଶପଥ ନେଇ ଘରୋଇ ଚିକିତ୍ସା କରିବା ପାଇଁ ଠିକ୍ କଲୁ ।

### ଭେଷଜ ତାଲିମ୍ :

ପାଶ୍ କରିବା ପରେ ମୁଁ ମେଡ଼ିସିନରେ ହାଉସ୍‌ସିପ୍ ଟ୍ରେନିଙ୍ଗ୍ ପାଇଁ ଦରଖାସ୍ତ କରି ମାସକୁ ଶହେ ଟଙ୍କା ଲେଖାଏଁ ଭତ୍ତା ପାଇଲି । ପ୍ରଫେସର ପିସାରୋଟିଙ୍କ ତତ୍ତ୍ୱାବଧାନରେ ରହି କଠୋର ପରିଶ୍ରମ କରିବାକୁ ପଡ଼ିଲା, ପ୍ରଫେସର ପିସାରୋଟି ଯେପରି ବିଦ୍ୱାନ ଓ ସମ୍ବେଦନଶୀଳ ସେହିପରି ଜଣେ କଠୋର କାର୍ଯ୍ୟ ଆଦାୟକାରୀ ପ୍ରଭୁ ଥିଲେ । ସେ

ଅତ୍ୟନ୍ତ ଛାତ୍ରବତ୍ସଳ ଥିବାରୁ ତାଙ୍କ ଛାତ୍ର କିପରି ଜଣେ ଭଲ ଚିକିତ୍ସକ ହେବ ସେଥିପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ।

ଯେ କୌଣସି ରୋଗୀକୁ ସେ ଟିକି ନିଖି କରି ପରୀକ୍ଷା କରୁଥିଲେ । ଭେଷଜ ବିଭାଗର ସବୁ ୱାର୍ଡ଼ ବୁଲି ରୋଗୀ ଦେଖିବାରେ ତାଙ୍କୁ ବହୁ ସମୟ ଲାଗୁଥିଲା । ମୋତେ ତାଙ୍କ ପଛେ ପଛେ ରହି ରୋଗୀମାନଙ୍କ ପାଇଁ ବରାଦ ଔଷଧ ପ୍ରଭୃତି ଲେଖି ଷ୍ଟୋରରୁ ଅଣାଇବାକୁ ପଡୁଥିଲା । ଦିନ ଦେଢ଼ଟା, ଦୁଇଟା ବେଳକୁ ରୋଗୀ ପରିକ୍ରମା ସାରିଲା ବେଳକୁ ମୋତେ ଭାରି ଭୋକ ଲାଗୁଥିଲା । ବେଳେ ବେଳେ କ୍ଲିନିକସ୍ ଓ ରୋଗୀ ପରିକ୍ରମା ସରିଲେ ସେ ବାହାରର ରୋଗୀ ଦେଖିବାକୁ ବାହାରନ୍ତି । ସେ'ଦିନ ସେ ନିଜ ଛୋଟ ଅଷ୍ଟିନ ଗାଡ଼ିଟିରେ ଯିବା ପାଇଁ ବାହାରି ମୋତେ ତାଙ୍କ ସଙ୍ଗେ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ବାଧ ହୋଇ ତାଙ୍କ ଗାଡ଼ିରେ ବସି ତାଙ୍କ ସଙ୍ଗେ ଗଲି ।

ଦୁଇ ତିନି ମାଇଲ ଦୂର ଏକ ସ୍ଥାନରେ ପହଁଚିବା ପରେ ଆମେ ଗାଡ଼ିରୁ ଓହ୍ଲାଇ ଡ଼କାଇଥିବା ରୋଗୀଙ୍କ ଗୃହରେ ପ୍ରବେଶ କଲୁ । ସେ ରୋଗୀର ରୋଗ ସେପରି କିଛି ସାଂଘାତିକ ନ ଥିଲା । ଶର୍ଦ୍ଦିଧରି ମୁଣ୍ଡ ବିନ୍ଧୁଥିଲା । ମୁଁ ଭାବିଲି ପ୍ରଫେସର ସେ ରୋଗୀ ପାଇଁ ମୁଣ୍ଡ ବ୍ୟଥା ଔଷଧ ଲେଖିଦେଇ ସଙ୍ଗେ ସଙ୍ଗେ ବାହାରି ପଡ଼ିବେ; କିନ୍ତୁ ପ୍ରଫେସର ସାହେବ ପ୍ରାୟ ଘଣ୍ଟାଏ କାଳ ତନ୍ନ ତନ୍ନ କରି ସେ ରୋଗୀକୁ ପରୀକ୍ଷା କରିବାକୁ ଲାଗିଲେ । ମୁଣ୍ଡର କେଶ, କପାଳର ଚର୍ମ ଓ ଆଖିର ରଙ୍ଗ ଠାରୁ ଆରମ୍ଭ କରି ଶରୀରର ଆଣ୍ଠୁଗଣ୍ଠି ପର୍ଯ୍ୟନ୍ତ ସମସ୍ତ ଅଂଶ ପରୀକ୍ଷା କରିବାକୁ ଲାଗିଲେ ।

ମୋର ଭୋକର ଦାଉ ବଢ଼ି ମୋତେ ଅଥୟ ଲାଗିଲା, ମୋର ମୁହଁ ମଧ୍ୟ ବିରକ୍ତରେ ଲାଲ ପଡ଼ିଗଲା । ସେ ଭଦ୍ରଲୋକଙ୍କ ଘର ଚା' ଯାଚିବାରୁ ପ୍ରଫେସର ତାହା ମଧ୍ୟ ମନା କରିଦେଇଥିଲେ । ଶେଷରେ ସମସ୍ତ ପରୀକ୍ଷା ପରେ ପ୍ରଫେସର ମୁଣ୍ଡବ୍ୟଥା ଔଷଧ ଆସପରିନ ବଟିକାଟିଏ ଲେଖି ଦେଇ ଗାଡ଼ିକୁ ଆସିଲେ । ସେ ପୁଣି ଆଉ କେଉଁ ସ୍ଥାନ ସବୁକୁ ଯାଇ ଏପରି ବୃଥା ଡେରିକରି ପାରନ୍ତି ଭାବି ମୁଁ କହିଲି "ସାର୍ ମୋତେ କ୍ଷମା କରନ୍ତୁ ମୁଁ ରିକ୍ସାରେ ଚାଲିଯାଉଛି ।"ସେ ମୋର ହାତ ଟାଣିନେଇ ହଉ ଚାଲ ଯିବା କହି ଗାଡ଼ି ଭିତରକୁ ଗଲେ । ଆମେ ଗାଡ଼ିରେ ବସିବା ପରେ ସେ ମୋ ଆଡ଼କୁ ଚାହିଁ କହିଲେ, ମୁଁ ବୁଝୁଚି ତୁମେ ଭୋକ ଓ ରାଗରେ ଅତିଷ୍ଠ ହୋଇ ପଡ଼ିଲଣି, କିନ୍ତୁ କ'ଣ କରାଯାଏ ରୋଗୀ ଯେତେବେଳେ ମୋତେ ଷୋଳଟଙ୍କା ଫିସ ଦେଉଛି ସେତେବେଳେ ଆମ ସମୟରୁ ଗୋଟିଏ ଘଣ୍ଟାତ ଅନ୍ତତଃ ତା'ର ପ୍ରାପ୍ୟ । ସେଥିପାଇଁ ଆମର ତା' ନିକଟରେ ସେତିକି ସମୟ କଟାଇବା ଉଚିତ୍ ।

ସେ ହସି ହସି ସେପରି କହିବାରେ ମୋ ମନ ଆହୁରି ଚିଡ଼ି ଉଠିଲା । ମୁଁ ମନେ ମନେ ଭାବିଲି, ତୁମକୁ ତ ଟଙ୍କା ମିଳିବ ତୁମେ ସମୟ ଦେବ, ସେ' କଥା ଜାଣି ମଧ୍ୟ

ମୋର ଖାଇବାକୁ ଯିବାବେଳେ ମୋତେ ବୃଥାରେ ଡ଼ାକିକରି ସଙ୍ଗରେ ଆଣି ଏପରି ଶାସ୍ତି ଦେବା କ'ଣ ଦରକାର ଥିଲା । ସେ ମୋର ମନର ଭାବ ବୁଝିଗଲା ପରି ପୁଣି ହସି କରି କହିଲେ, ଚିକିତ୍ସକ ହେବାକୁ ହେଲେ ଭୋକ ଶୋଷ ଭୁଲି ଧୈର୍ଯ୍ୟ ଧରି ରୋଗୀ ପାଇଁ ସମୟ ଦେବାକୁ ପଡ଼େ । ମୋର ପରୀକ୍ଷାଟା ବୃଥା ପରୀକ୍ଷା ନୁହେଁ ଯେ କୌଣସି କାରଣରୁ ରୋଗୀଟିର ନିକଟରେ ପହଞ୍ଚିଲେ ତା'ର ଶରୀରର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଭଲଭାବରେ ପରୀକ୍ଷା କରିବା ନିତାନ୍ତ ପ୍ରୟୋଜନ । ରୋଗୀଟି କେତୋଟି ସାଧାରଣ ଲକ୍ଷଣ ପାଇଁ ଶରୀରର ଏକ ସ୍ଥାନ ଉପରେ ଜୋର ଦେଉଥିଲେ ମଧ, ତା'ର ବୋଧଗମ୍ୟ ନ ହୋଇ ଶରୀରର ଅନ୍ୟ କୌଣସି ସ୍ଥାନରେ କୌଣସି ସାଂଘାତିକ ରୋଗ ମଧ ଗୁପ୍ତରେ ବଢ଼ିବା ଅବସ୍ଥାରେ ଥାଇ ସୁଦ୍ଧା ଲକ୍ଷଣ ପ୍ରକାଶ କରି ନ ଥାଇପାରେ । ଉଦାହରଣ ସ୍ୱରୂପ ମୁଣ୍ଡବିନ୍ଧା କେବଳ ଶର୍ଦ୍ଦିରୁ ନ ହୋଇ ଦାନ୍ତ ବା କାନ ରୋଗରୁ କିମ୍ବା ମସ୍ତିଷର କର୍କଟ ରୋଗର ଉପସର୍ଗ ଭାବେ ମଧ ପ୍ରକାଶିତ ହୋଇପାରିଥାଏ ।

ତେଣୁ ଭଲ ଭାବରେ ପରୀକ୍ଷା ନ କରି ଉପର ଠାଉରିଆ ଭାବରେ ଦେଖି ଚାଲିଯିବା ଉଚିତ ନୁହେଁ । ସେପରି ଚାଲିଯିବା ପରେ ପରେ ହୁଏତ ରୋଗୀର ସେପରି ଗୁପ୍ତ ସାଂଘାତିକ ରୋଗସବୁ ଆତ୍ମପ୍ରକାଶ କରିପାରନ୍ତି । ଯଥା ହଠାତ୍ ମସ୍ତିଷର ରକ୍ତସ୍ରାବ (ଷ୍ଟ୍ରୋକ), ହୃତପିଣ୍ଡ ଆକ୍ରମଣ (ହାର୍ଟ ଆଟାକ୍) ପ୍ରଭୃତିର ସାଂଘାତିକ ଲକ୍ଷଣ ପ୍ରକାଶ ପାଇପାରେ । ସେପରି ହୋଇ ଯଦି ରୋଗୀ ମୃତ୍ୟୁ ମୁଖରେ ପଡ଼େ ଡ଼ାକ୍ତର ସେଥିପାଇଁ ଦାୟୀ ହେବା ଉଚିତ ନୁହେଁ କି ? କାରଣ ଡ଼ାକ୍ତର ଯଦି ରୁଟିନ୍ ଭାବରେ ସମସ୍ତ ଶରୀରର ପରୀକ୍ଷା କରି ରକ୍ତଚାପ ଓ ଅନ୍ୟ ଲକ୍ଷଣ ସବୁର ଆଭାସ ପାଇଥାଆନ୍ତେ ତେବେ ସେ ସବୁର ନିରାକରଣର ବ୍ୟବସ୍ଥା କରି ରୋଗୀକୁ ବଞ୍ଚାଇ ପାରିଥାଆନ୍ତେ । ମୁଁ ତାଙ୍କର ସେପରି ଶିକ୍ଷଣୀୟ କଥା ଶୁଣିବା ପରେ ମୋ ଭୋକ ଶୋଷ ସବୁ ଭୁଲିଗଲି । ତାଙ୍କ ନିକଟରେ ମୋ ମସ୍ତକ ଆପେ ଆପେ ଅବନତ ହୋଇଗଲା ।

ଆଜିକାଲି ବହୁ ନୂଆ ନୂଆ ଔଷଧର ପ୍ରତିଦିନ ଉଦ୍ଭାବନ ଚାଲିଛି । ଡ଼ାକ୍ତରମାନେ କମ୍ପାନୀମାନଙ୍କ ଦ୍ୱାରା ପ୍ରସ୍ତୁତ ପେଟେଣ୍ଟ ଔଷଧ ମାନଙ୍କ ଉପରେ ବେଶି ନିର୍ଭର କରୁଛନ୍ତି । ବିଭିନ୍ନ ପତ୍ରପତ୍ରିକା ଓ ରେଡ଼ିଓ ଟେଲିଭିଜନ ଓ ଅନ୍ୟାନ୍ୟ ବିଜ୍ଞାପନ ମାଧମରେ କମ୍ପାନୀ ଔଷଧମାନଙ୍କର ଗୁଣଗାନ କରି ପ୍ରଚାର କରାଯାଉଛି । ପ୍ରଫେସର ପିସାରୋଟି କମ୍ପାଉଣ୍ଡର ଦ୍ୱାରା ତଟକା ତିଆରି ଔଷଧରେ ଅଧିକ ବିଶ୍ୱାସ କରୁଥିଲେ । ରୋଗର ଲକ୍ଷଣ ଓ ଉପସର୍ଗମାନଙ୍କୁ ଦେଖି ବିଭିନ୍ନ ରାସାୟନିକ ପଦାର୍ଥ ମିଶାଇ 'ମିକ୍ସଚର' ତିଆରି କରାଇ ରୋଗୀକୁ ସେବନ କରାଉଥିଲେ । କମ୍ପାନୀ ତିଆରି ଔଷଧର ଉପାଦାନମାନଙ୍କୁ ତନ୍ନତନ୍ନ କରି ଦେଖିଲା ପରେ ସେ ଔଷଧର ବ୍ୟବହାର କରାଯିବା ଉଚିତ କି ନାହିଁ ସ୍ଥିର କରୁଥିଲେ । ତାଙ୍କ ମିକ୍ସଚର ଗୁଡ଼ିକ ଅନେକ ସମୟରେ ଚମତ୍କାର କାମ ଦେଖାଉଥିଲା ।

ଆମର ସମାଜ ଯେତେ ବସ୍ତୁବାଦ ପଥରେ ଗୋଡ଼ଉଛି ଆମର ଯୁବକ ଯୁବତୀମାନେ ସେତିକି ଅଶାନ୍ତ ପରିସ୍ଥିତିର ସମ୍ମୁଖୀନ ହେଉଛନ୍ତି । ସେମାନେ ମାନସିକ ଭାରସାମ୍ୟ ହରାଇବା ଦ୍ୱାରା ଅପସ୍ମାର ବା ହିଷ୍ଟିରିଆ ବେମାରିରେ ଆକ୍ରାନ୍ତ ହେଉଛନ୍ତି । ଏହି ରୋଗୀମାନେ ସମାଜ ବା ପରିବାରର ଅନ୍ୟମାନଙ୍କ ସହିତ ନିଜକୁ ଖାପ ଖୁଆଇ ନ ପାରି ନିଜ ଶରୀରରେ ବିଭିନ୍ନ ପ୍ରକାର ବିକୃତି ଦେଖାଯାଉଥିଲା ପରି ଅନୁଭବ କରନ୍ତି ଓ ସେ ରୋଗର ଛଳନା ବା ଅଭିନୟ କରନ୍ତି । ବେଳେ ବେଳେ ସେ ରୋଗୀମାନଙ୍କୁ ଭଲ ଭାବରେ ବୁଝାଇଦେଲେ ସେମାନେ ପ୍ରକୃତିସ୍ଥ ହୋଇଯାଆନ୍ତି, କିନ୍ତୁ ସମୟ ସମୟରେ ସେପରି ରୋଗୀକୁ ଆୟତ୍ତକୁ ଆଣିବା କଷ୍ଟ ହୁଏ ।

ମୁହୁର୍ମୁହୁ ଅଚେତା ହେଲାପରି ଲେଉଟି ପଡ଼ିବା, ଜୋର୍‌ରେ ଅନବରତ ହାକୁଟି ମାରିବା, ଶରୀରର କୌଣସି ସ୍ଥାନରେ ଅତ୍ୟଧିକ ପୀଡ଼ା ଅନୁଭବ କରିବା, ଭୂତ ଲାଗି ଅସାଧ ସାଧନ କରିବା, ପ୍ରଭୃତି ଲକ୍ଷଣ ରୋଗୀଠାରେ ପ୍ରକାଶ ପାଏ । ସେପରି ରୋଗୀର ମାନସିକ ଉତ୍ତେଜନାକୁ ଶାନ୍ତ କରିବା ପାଇଁ ଏବେ ନାନା ଔଷଧ ବାହାରିଲାଣି, କିନ୍ତୁ ସେ ସମୟରେ ଔଷଧ କିଛି ନଥିଲା । ସେପରି ରୋଗୀ ପାଇଁ ପ୍ରଫେସର ପିସାରୋଟି ମିକ୍ସଚର ଡାଇବୋଲିକା ନାମକ ଔଷଧ ଉଦ୍ଭାବନ କରିଥିଲେ । ସେଥିରେ ହେଙ୍ଗୁ, ଚିରେଇତା, କୁଇନାଇନ୍, କୋଚିଲା ଅର୍କ, ଜଡ଼ାତେଲ ପ୍ରଭୃତି ଥିବାରୁ ତାହା ଅତି ପିତା, ଦୁର୍ଗନ୍ଧ ତେଲିଆ ଓ ଅସ୍ୱାଦୁ ଥିଲା । ସେହି ମିକ୍ସଚରରୁ ବଡ଼ ଚାମଚରେ ଚାମ୍‌ଚେ ଲେଖାଏଁ, ଜବରଦସ୍ତି ଅଧଘଣ୍ଟାକେ ଥରେ ଲେଖାଏଁ ରୋଗୀକୁ ମାଡ଼ିବସି ଖୁଆଇବା ପାଇଁ ସେ ନିର୍ଦ୍ଦେଶ ଦେଉଥିଲେ । ସେ ଔଷଧରୁ ଦୁଇ ତିନି ପାନ ଖାଇବା ପରେ ଆଉ ସେ ଔଷଧ ନ ଦେବାପାଇଁ ଅଳିକରି ରୋଗୀ ପ୍ରକୃତିସ୍ଥ ହୋଇ ଯାଉଥିଲା । ଲକ୍ଷଣ ସବୁ ଆପେ ଆପେ ଉପଶମ ହୋଇ ଯାଉଥିଲା ।

କେବଳ ସତ ରୋଗ ଓ ଛଳନା ରୋଗର ପ୍ରଭେଦ ସେ ଜାଣିପାରୁ ଥିଲେ, ସେ ତାଙ୍କ ଦୂରଦୃଷ୍ଟି ଯୋଗୁଁ ରୋଗ ଚିହ୍ନି ଦୁଃସାଧ୍ୟ ରୋଗ ମନେ କରୁଥିବା ରୋଗକୁ ଅଳ୍ପକେ ଆରୋଗ୍ୟ କରି ପାରୁଥିଲେ ।

ଜଣେ ସ୍ତ୍ରୀ ଲୋକଙ୍କର ଗଳଗଣ୍ଡ ରୋଗ ହୋଇଥିବାରୁ ସର୍ଜରୀ ପ୍ରଫେସର ଖେରା ତାହା ଥାଇରଏଡ଼ ଗଏଟର ବୋଲି ଧରିନେଇ ତା'ର ଅପରେସନ୍ ପାଇଁ ରୋଗୀକୁ ପରାମର୍ଶ ଦେଇଥିଲେ । ସେ ରୋଗୀ ଅପରେସନ୍‌କୁ ଡ଼ରି ଔଷଧରେ ଭଲ କରିବା ପାଇଁ ଚେଷ୍ଟା କରିବାକୁ ପ୍ରଫେସର ପିସାରୋଟିଙ୍କୁ ଅନୁରୋଧ କଲେ । ପ୍ରଫେସର ବହୁ ସମୟ ଧରି ଷ୍ଟେଥୋ ପକାଇ ସେ ସ୍ଥାନକୁ ପରୀକ୍ଷା କରିବାପରେ ରୋଗୀକୁ ତା'ର କାର୍ଯ୍ୟ, ବିଶ୍ରାମ ପ୍ରଭୃତି ବହୁ ପ୍ରଶ୍ନ ପଚାରିଲେ । ତା'ପରେ ରାତିରେ ନିଦ ଔଷଧ ଭାବେ

ପାନକରେ ୧୫ଗ୍ରେନ୍ ପିକକ୍ ବ୍ରୋମାଇଡ୍ ଓ ୧୫ଗାମ୍ କ୍ଲୋରାଲ ହାଇଡ୍ରେଟ ଖାଇବା ପାଇଁ ନିର୍ଦ୍ଦେଶ ଦେଲେ । ଛଅ ସାତ ଦିନରେ ଫୁଲାଟି ପୂରା କମିଗଲା । ପିସାରୋଟି ପିଲାଙ୍କୁ କହିଲେ ରୋଗୀର ଇତିହାସ ହିଁ ଏ ରୋଗ ଭଲ ହେବାର ବାଟ ଦେଖାଇଲା । ରୋଗୀ ବୋହୂ ଓ ପିଲାର ମା ଭାବରେ ବହୁ ପରିଶ୍ରମ କରି ଦିନକେ ଘଣ୍ଟାଏ ଦୁଇଘଣ୍ଟା ସମୟ ପାଉନଥିଲା । ପରିଶ୍ରମର ଦୀର୍ଘଶ୍ୱାସ ଯୋଗୁଁ ତା'ର ଶ୍ୱାସନଳୀ ଉପରି ଭାଗ ଫୁଲି ସେପରି ଦିଶୁଥିଲା । ସେ ରୋଗୀକୁ ରାତିରେ ପ୍ରତିଦିନ ଆଠ ଦଶ ଘଣ୍ଟା ଶୁଆଇ ଦେବା ଦ୍ୱାରା ଶ୍ୱାସନଳୀ ଉପରେ ଆଉ ଚାପ ନ ପଡ଼ିବାଦ୍ୱାରା ତାହା ଆସ୍ତେ ପୂର୍ବାବସ୍ଥାକୁ ଫେରିଆସିଲା । ବିଶେଷଭାବରେ ରୋଗର କାରଣ ଅନୁଧ୍ୟାନ ନ କରିବାରୁ ଡ଼ାଇଗୋନିସିସ୍ ଭୁଲ ହୋଇଥିଲା । ଖେରା ସାହେବ ରୋଗୀକୁ ଦେଖି ପିସାରୋଟିଙ୍କୁ କହିଲେ ତୁମେ ମୋତେ ନରହତ୍ୟାରୁ ଉଦ୍ଧାର କଲ ।

ପିସାରୋଟି ସାହେବ ଓ୍ୱାର୍ଡ଼ରେ ଆଲୋଚନା କଲାବେଳେ ଗପ ଛଳରେ ମଧ ନାନା ଉପଦେଶ ଦେଇଥାଆନ୍ତି । ରୋଗୀର ଚିକିତ୍ସା ପାଇଁ କେବଳ ଔଷଧ ବରାଦ କରିଦେଇ ପରିଚାରିକା ବା ନର୍ସ ଉପରେ ନିର୍ଭର କଲେ କ'ଣ ହୁଏ, ତା'ର ଦୃଷ୍ଟାନ୍ତ ଦେବାକୁ ଯାଇ ସେ କହିଲେ, ଆଦୌ ନିଦ ହେଉନାହିଁ ବୋଲି ଗୋଟିଏ ରୋଗୀର ଅଭିଯୋଗ ଶୁଣି ସେ ତା' ପାଇଁ ଔଷଧ ବ୍ରୋମାଇଡ଼ ମିକ୍ସଚର ବରାଦ କରି ଚାଲିଯାଇଥିଲେ । କେତେ ସମୟ ପରେ ସେ ସେହି ବାଟଦେଇ ଫେରିଲା ବେଳକୁ ଓ୍ୱାର୍ଡ଼ ଭିତରକୁ ଚାହିଁ ଦେଖିଲେ, ସେହି ଖଟିଆ ନିକଟରେ ନର୍ସଟି ହାତରେ ଔଷଧ ଗ୍ଲାସ ଧରି ଔଷଧ ଦେବାପାଇଁ ନିଘୋଡ଼ ନିଦରେ ଶୋଇଥିବା ସେ ରୋଗୀକୁ ନିଦରୁ ଉଠାଇବା ପାଇଁ ଜୋରରେ ହଲାଇବାରେ ଲାଗିଛି ।

ତାହା ଦେଖି ସେ ନର୍ସକୁ ପଚାରିଲେ ତୁମେ ହାତରେ କି ଔଷଧ ଧରିଛ ? ସେ ଉତ୍ତର ଦେଲା ''ଆଜ୍ଞା ଆପଣ ବରାଦ ଦେଇଥିବା ନିଦ ଔଷଧ । ଷ୍ଟୋରରୁ ଔଷଧ ଆସିବାରେ ଟିକିଏ ଡ଼େରି ହୋଇଗଲା, କ୍ଷମା କରିବେ ।''

ରୋଗୀକୁ ନିଦ ଔଷଧ ଦେବାପାଇଁ ନିଦରୁ ଉଠାଇବା କଥା ଶୁଣି ଆମେ ସମସ୍ତେ ହସିଉଠିଲୁ । କିନ୍ତୁ ହସିବା ସଙ୍ଗେ ସଙ୍ଗେ ଡ଼ାକ୍ତରର ଦାୟିତ୍ୱ ଯେ କେବଳ ଔଷଧ ବରାଦ ଦେବାରେ ସୀମିତ ନୁହେଁ ଓ ଆଦେଶ କିପରି କାର୍ଯ୍ୟକାରୀ ହେଲା ତାହା ଦେଖି କରିବା ମଧ ଏକ ଦାୟିତ୍ୱ ବୋଲି ଶିକ୍ଷା କଲୁ ।

ଶାସକମାନଙ୍କ ଜିଦ୍‌ଖୋର ଗୁଣ ଯୋଗୁଁ ଅନେକ ସମୟରେ ଚିକିତ୍ସକଙ୍କ ଉପରେ ମଧ ଚାପ ପଡ଼େ । ଜଣେ ଆଦିବାସୀ ମନ୍ତ୍ରୀ ସାଂଘାତିକ ଯୌନ ବେମାରି ଭୋଗ କରି ହସ୍‌ପିଟାଲରେ ରହି ଚିକିତ୍ସିତ ହେଉଥିଲେ । ପ୍ରଫେସର ପିସାରୋଟିଙ୍କ ସହକାରୀ ତାଙ୍କ

ରିପୋର୍ଟରେ ସେକଥା ଲେଖିବାରୁ, ତାହା ଦ୍ୱାରା ମନ୍ତ୍ରୀମଣ୍ଡଳର ବଦନାମ ହେବ ଭାବି ଉଚ୍ଚ କର୍ତ୍ତୃପକ୍ଷ ତାହା ଘୋଡ଼ାଇ ରଖି ଅନ୍ୟ ଏକ ସାଧାରଣ ରୋଗ ନାମ ଦେବାପାଇଁ ପ୍ରଫେସରଙ୍କୁ ଅନୁରୋଧ କଲେ । ସତ୍ୟର ଅପଳାପ ହୋଇପାରିବ ନାହିଁ ବୋଲି ପ୍ରଫେସର ନିଜ ମତରେ ଅଟଳ ରହିବାରୁ ସେ ରିପୋର୍ଟ ବଦଳାଇବା ପାଇଁ ରୋଗୀକୁ ପୁଣି ପରୀକ୍ଷା କରି ରିପୋର୍ଟ ଦେବାପାଇଁ ଏକ ମେଡ଼ିକାଲ ବୋର୍ଡ଼ ବସାଇଲେ । ବୋର୍ଡ଼ ମେମ୍ବରମାନେ ସେହି ପ୍ରଫେସରକୁ କହିଲେ "ଆମେ ଅନ୍ୟ ପ୍ରକାର ରିପୋର୍ଟ ଦେଲେ ଆପଣ ଭୁଲ ରିପୋର୍ଟ ଦିଅନ୍ତି ବୋଲି ଆପଣଙ୍କ ମାନ ମର୍ଯ୍ୟାଦା ଉପରେ ଆଞ୍ଚ ଆସିବ, ତେଣୁ ଆପଣ ଆମକୁ ସାହାଯ୍ୟ କଲା ଭଳି ରିପୋର୍ଟକୁ ଟିକିଏ ଏପଟ ସେପଟ କରି ଦିଅନ୍ତୁ ।" "ମୋର ପ୍ରୟୋଜନ ନାହିଁ । ମୁଁ କଦାପି ତାହା କରିପାରିବି ନାହିଁ । ମୁଁ ସେପରି କଲେ ମୋର ସହାୟକ ଓ ଛାତ୍ରମାନେ ମୋଠାରୁ କ'ଣ ଶିଖିବେ ?"

**ରନ୍ତଳେଇ ବିଭୀଷିକା :**

ଗୋଟିଏ ବିଭାଗରେ ହାଉସ୍‌ସିପ୍ ଟ୍ରେନିଙ୍ଗ ନେଲେ, ଭିନ୍ନ ଭିନ୍ନ ସମୟରେ ସେହି ବିଭାଗର ବିଭିନ୍ନ ଓ୍ୱାର୍ଡ଼ରେ ଡ଼ିଉଟି ପଡ଼ି ସେ ଓ୍ୱାର୍ଡ଼ର ଚିକିତ୍ସା ଦାୟିତ୍ୱ ନେବାକୁ ହୁଏ । ମୁଁ ସଂକ୍ରାମକ ଓ୍ୱାର୍ଡ଼ର ଦାୟିତ୍ୱରେ ଥିବା ସମୟରେ ସେଠାରେ ହଇଜା ରୋଗୀଙ୍କ ପାଇଁ ମାତ୍ର ଆଠ ଦଶଟି ଶଯ୍ୟା ରହିଥିଲା । ତାହା ମଧ ଅନେକ ସମୟରେ କଲେରା ରୋଗୀ ଅଭାବରୁ ଡ଼ିସେଣ୍ଟ୍ରି ଅତିସାର ପ୍ରଭୃତି ରୋଗୀଙ୍କୁ ସେଥିରେ ସ୍ଥାନ ଦିଆଯାଇଥିଲା । ସେହିସମୟରେ ଏକ ମାନବାକୃତ ବିପ୍ୟାତ ଘଟି ହଜାର ହଜାର ଲୋକ ହଇଜା ରୋଗରେ ଆକ୍ରାନ୍ତ ହେଲେ । ଅନୁଗୁଳ ନିକଟ ରନ୍ତଳେଇ ନାମକ ଏକ ଗ୍ରାମର ଗୋଟିଏ ୧୨ ବର୍ଷର ବାଳକ ଅଦ୍ଭୁତ ଦୈବ ଶକ୍ତି ପାଇ ଗୋଟିଏ ଚେର ଦେଇ ସମସ୍ତ ଅସାଧ ରୋଗ ଆରୋଗ୍ୟ କରୁଥିବା ସାରା ଭାରତରେ ପ୍ରଚାର ହୋଇଗଲା ।

ଓଡ଼ିଶାର ବଭିନ୍ନ ସ୍ଥାନରୁ, ମଧ ପ୍ରଦେଶ, ବିହାର, ବଙ୍ଗଳା, ଆସାମ ପ୍ରଭୃତି ଦୂର ଦୂରାନ୍ତର ପ୍ରଦେଶମାନଙ୍କରୁ ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ, ଅଶିକ୍ଷିତ ଓ ଚପରାଶିଠାରୁ ମନ୍ତ୍ରୀ ପର୍ଯ୍ୟନ୍ତ ବାଳବୃଦ୍ଧ ନିର୍ବିଶେଷରେ ଦୁଃସାଧ ରୋଗ ଭୋଗ କରୁଥିବା ରୋଗୀମାନେ ଆରୋଗ୍ୟ ଲାଭ ନିମନ୍ତେ ପିମ୍ପୁଡ଼ି ପରି ଧାଡ଼ି ଧରି ସେଠାକୁ ଶଗଡ଼, ଟ୍ରେନ୍, ବସ ପ୍ରଭୃତିରେ ଆସିବାକୁ ଲାଗିଲେ ।

ମନୁଷ୍ୟମାତ୍ରେ ଅଲୌକିକ ଶକ୍ତିଧାରୀ ବ୍ୟକ୍ତି ବୋଲାଉଥିବା ସାଧୁମାନଙ୍କର ବଶବର୍ତ୍ତୀ ହୁଅନ୍ତି । ବହୁ ଭଣ୍ଡ ଅସାଧୁ ବ୍ୟକ୍ତି ଲୋକମାନଙ୍କୁ ନାନା ଉପାୟରେ ଆକର୍ଷଣ କରି ପ୍ରତାରିତ କରିଥାଆନ୍ତି । ତାହାଦ୍ୱାରା ଲୋକେ ନାନା ବିପଦର ସମ୍ମୁଖୀନ ହୋଇ ଥାଆନ୍ତି । ପଣ୍ଡିତଙ୍କ ମତରେ ମଣିଷମାନଙ୍କ ଭିତରେ ଭବିଷ୍ୟତ ଜାଣିବା, ନିରୋଗ ଓ ଧନୀ ହେବା

ଆକାଂକ୍ଷାରେ ସେମାନଙ୍କ ଭିତରେ ଗୋଟିଏ ଠକେଇ ହବାର ପ୍ରବୃତ୍ତି ଜାଗ୍ରତ ହୋଇଥାଏ । ସମାଚର ଭବିଷ୍ୟତ ବାଣୀ ପ୍ରଚାରକ ଓ ଭଣ୍ଡ ସାଧୁମାନେ ସେହି ପ୍ରବୃତ୍ତିର ସୁବିଧା ନେଇ ଲୋକଙ୍କୁ ଠକାଇ ଥାଆନ୍ତି ।

ରନ୍ତଜେଇ ଗ୍ରାମର ନଟବେର ସାହୁଙ୍କର ୧୨-୧୩ ବର୍ଷର ପୁତ୍ର ନେପାଳ, ପାହାଡ଼ ତଳି ଅଞ୍ଚଳରେ ଛେଳି ଜଗିବା ସମୟରେ ତାକୁ ଜ୍ୱର ଆସିବାରୁ ସେ ଗୋଟିଏ ବୃକ୍ଷତଳେ ଚାକିଜୁକି ହୋଇ ପଡ଼ି ରହିଥିଲା । ଶୁଣାଯାଏ ସେହି ସମୟରେ ସେଠାରେ ଜଣେ ଦିବ୍ୟପୁରୁଷ ଆବିର୍ଭାବ ହେଲେ ।

ସେ ନେପାଳକୁ ସାଙ୍ଗରେ ଧରି ନିକଟରେ ଥିବା ମନ୍ଦର ପାହାଡ଼କୁ ଯାଇ ସେଠାର ଗୋଟିଏ ଗଛର ଚେର ଖଣ୍ଡିଏ ଆଣି ତାହା 'ସର୍ବରୋଗ ହର' ଔଷଧ କହି ଖାଇବାକୁ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ନେପାଳ ନିଜେ ତା'ର ରୋଗରୁ ଆରୋଗ୍ୟ ଲାଭ କରିବା ସଙ୍ଗେ ସଙ୍ଗେଗ୍ରାମର କେତେକ ଯୁବ ଫେରନ୍ତା ଯବାନଙ୍କ ପ୍ରରୋଚନାରେ ସେପରି ଗଛମାନଙ୍କର ଚେର ଆଣି ଅନ୍ୟ କେତେକ ରୋଗୀଙ୍କୁ ଦେଲା । ସେଥିରେ ସେ ରୋଗୀମାନେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରିଥିବାର ପ୍ରଚାର ହେଲା । ସେଥିରେ ନେପାଳ 'ନେପାଳି ବାବା'ରେ ପରିଣତ ହୋଇଗଲେ ।

୧୯୫୦ ସେପ୍‌ଟେମ୍ବର ମାସଠାରୁ ସେହି ନେପାଳି ବାବାଙ୍କ ଠାରୁ ଔଷଧ ନେଇ ଆରେଗ୍ୟ ଲାଭ କରିବା ପାଇଁ ବହୁ ଲୋକ ସେଠାକୁ ଆସୁଥିବାର ଖବର ରେଡ଼ିଓ ଓ ଖବରକାଗଜ ମାନଙ୍କରେ ପ୍ରକାଶ ପାଇଲା । ଭାରତର ଦୂରଦୂରାନ୍ତର ସ୍ଥାନମାନଙ୍କରୁ ସମ୍ଭ୍ରାନ୍ତ ଓ ବିଶିଷ୍ଟ ନେତାମାନେ ମଧ ନିଜର ଆରୋଗ୍ୟ ପାଇଁ ସେଠାକୁ ଆସିବାପାଇଁ ଉଦ୍‌ଗ୍ରୀବ ହୋଇପଡ଼ିଲେ । ସେମାନଙ୍କ ମଧରୁ ଆସାମ ପ୍ରଦେଶର କେନ୍ଦ୍ର ଆସେମ୍ବ୍ଲିସଦସ୍ୟ ଶ୍ରୀ ଅନଙ୍ଗମୋହନ ଦାମ୍‌ଙ୍କ ପରି ବିଶିଷ୍ଟ ନେତା ମଧ ରନ୍ତଜେଇ ଆସିବା ପାଇଁ ଇଛା ପ୍ରକାଶକରି ମୋର ପିତା ପଣ୍ଡିତ ନୀଳକଣ୍ଠ ଦାସଙ୍କ ନିକଟକୁ ପତ୍ର ଲେଖିଥିଲେ । ମାତ୍ର ମୋର ପିତା ତାଙ୍କୁ ନ ଆସିବା ପାଇଁ ଉପଦେଶ ଦେଇ ଉତ୍ତର ଦେଇଥିଲେ ।

ମନ୍ଦର ପାହାଡ଼ର ସେହି ସ୍ଥାନର ନିର୍ଦ୍ଦିଷ୍ଟ ଗଛର ଚେରରେ ସେହି ରୋଗ ନିବାରକ ଶକ୍ତି ଥିବାରୁ 'ନେପାଳି ବାବା'ଙ୍କ ଗଚ୍ଛିତ ଚେର ସରିଗଲେ ସେ ଏକାକୀ ସେଠାକୁ ଯାଇ ସେ ଚେର ଆଣି ରୋଗୀଙ୍କୁ ବାଣ୍ଟୁଥିଲେ । ସେ ସେହି ଚେର ବଣ୍ଟା ପାଇଁ କେତେକ ନିର୍ଦ୍ଦିଷ୍ଟ ଦିନ ଠିକ୍ କରିଥିଲେ । ତେଣୁ ଦୂର ଦୂରାନ୍ତରୁ ସେ କ୍ଷୁଦ୍ର ଗ୍ରାମକୁ ଆସିଥିବା ଲୋକମାନେ ଦିନକେ ଫେରିଯାଇ ନ ପାରି ସେଠାର ଏକ ସୁବିସ୍ତୀର୍ଣ୍ଣ ପଡ଼ିଆରେ ତମ୍ବୁ ଟାଣି ବା କମଳ ଘୋଡ଼ି ହୋଇ ଔଷଧ ବଣ୍ଟା ଦିନକୁ ଅପେକ୍ଷାକରି ପଡ଼ିରହିବାକୁ ବାଧ ହେଉଥିଲେ ।

ପ୍ରତିଦିନ ରେଳ, ବସ୍, ଗାଡ଼ି ଓ ପଦବ୍ରଜରେ, ବହୁକାଳ ଧରି ରୋଗ ଭୋଗ କରୁଥିବା, କୁଷ୍ଠରୋଗୀ, ବାତରୋଗୀ, ଶ୍ୱାସରୋଗୀ, ଯକ୍ଷ୍ମାରୋଗୀ ଏବଂ କାଲା, ଅନ୍ଧ ଓ ଘୁଙ୍ଗା ଓ ଛୋଟାମାନେ ମଧ୍ୟ ବହୁ ସଂଖ୍ୟାରେ ଆସି ସେଠାରେ ଜମା ହୋଇ ସୋମ, ମଙ୍ଗଳ, ବୁଧ, ଔଷଧ ବଣ୍ଟନର ସେହି ତିନଟି ଦିନକୁ ଅପେକ୍ଷା କରୁଥିଲେ । ସେ ଗ୍ରାମରେ ଜଳର ଅତ୍ୟନ୍ତ ଅଭାବ ଥିଲା । ସେଠାରେ ଗୋଟିଏ ମାତ୍ର ପୁଷ୍କରିଣୀ ରହିଥିଲା । ତେଣୁ ଲୋକମାନେ ସବୁକାର୍ଯ୍ୟ ପାଇଁ ସେ ପୁଷ୍କରିଣୀର ଜଳ ବ୍ୟବହାର କରିବାକୁ ବାଧ୍ୟ ହେଉଥିଲେ ।

ରଙ୍ଗଲେଇଠାରୁ ଅଳ୍ପ ଦୂରରେ ଏକ ଗାନ୍ଧି ଆଶ୍ରମ ରହିଥିଲା । ସେଠାରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହଧର୍ମିଣୀ ସଂଗ୍ରାମୀ ମାଳତୀ ଚୌଧୁରୀ ଓ ଅନ୍ୟ କର୍ମୀମାନେ ରହୁଥିଲେ । ସେମାନେ ସେପରି ଔଷଧ ବଣ୍ଟାକୁ ଅନ୍ଧ ବିଶ୍ୱାସ କହି ଲୋକଙ୍କୁ ସେଥିରେ ବିଶ୍ୱାସ ନ କରିବା ପାଇଁ ପ୍ରଚାର ଚଳାଇଲେ, ସେଠାକୁ ନ ଯିବା ପାଇଁ ପ୍ରବର୍ତ୍ତାଇଲେ । କିନ୍ତୁ ସେମାନଙ୍କ ବାରଣ ସତ୍ତ୍ୱେ ଲୋକଙ୍କ ସ୍ରୋତ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେଥିରେ ଆଶ୍ରମବାସୀ କ୍ରୋଧାନ୍ୱିତ ହୋଇ ଉଠିଲେ । ସେମାନଙ୍କ ମତକୁ ସମର୍ଥନ କରି ପୋଲିସ କ୍ୟାମ୍ପ ଖୋଲିଲେ କିନ୍ତୁ ସରକାରଙ୍କ ତରଫରୁ ଆଗନ୍ତୁକ ଲୋକଙ୍କ ରହିବା ସ୍ଥାନ, ଖାଦ୍ୟପେୟ ଓ ପାନୀୟ ଜଳ ଓ ସ୍ୱାସ୍ଥ୍ୟରକ୍ଷା ପାଇଁ କୌଣସି ପଦକ୍ଷେପ ନିଆଗଲା ନାହିଁ ।

ଇଂରେଜଙ୍କ ରାଜତ୍ୱ ବେଳେ ମଧ୍ୟ ବିଧର୍ମୀ ଗୋରା ସରକାର ରଥଯାତ୍ରା ସମୟରେ ଦୂରଦୂରାନ୍ତରରୁ ଆସୁଥିବା ହିନ୍ଦୁଯାତ୍ରୀମାନଙ୍କ ସ୍ୱାସ୍ଥ୍ୟ ପ୍ରତି ସତର୍କ ରହି କଲେରା ଇଞ୍ଜେକସନ ଦେଇ ଜଳ ଓ ପାଇଖାନା ପ୍ରଭୃତିର ବ୍ୟବସ୍ଥା କରୁଥିଲେ, କିନ୍ତୁ ଦେଶୀ ସରକାର ନିଜ ଲୋକଙ୍କ ପାଇଁ ସେ ସବୁ କିଛି କଲେ ନାହିଁ । ସେହି ପୁଷ୍କରିଣୀର ଦୂଷିତ ଜଳ ବ୍ୟବହାର ଯୋଗୁଁ ହଠାତ୍ କଲେରା ବ୍ୟାପକ ରୂପରେ ଏକ ତାଣ୍ଡବ ଲୀଳା ଲଗାଇ ଦେଲା ।

ଡ଼ିସେମ୍ବର ମାସ ଶୀତ ରାତିରେ ମୁଁ ମୋ କାର୍ଯ୍ୟସାରି ଆସି ହାଉସ ସର୍ଜନ କ୍ୱାଟରରେ ଘୋଡ଼ିଘାଡ଼ି ହୋଇ ଶୋଇଥିଲି । ରାତି ଅଧରେ ସଂକ୍ରାମକ ଓ୍ୱାର୍ଡ଼ର ଅର୍ଡ଼ରଲିଟି ଆସି ମୋର ଦ୍ୱାର ବାଡ଼େଇ ମୋତେ ଉଠାଇଲା । ମୁଁ ନିଦରୁ ଉଠି ଆଖି ମଳି ମଳି ଦ୍ୱାର ଖୋଲିବା ସଙ୍ଗେ ସଙ୍ଗେ ସେ କହିଲା ସାର୍ ଡ଼େରି କରନ୍ତୁ ନାହିଁ, ଶୀଘ୍ର ଆସନ୍ତୁ, ରଙ୍ଗଲେଇରୁ ଟ୍ରକରେ ପୋଲିସ୍ ହଇଜା ରୋଗୀ ନେଇ ଆସି ପହଞ୍ଚିଛନ୍ତି ।

ମୁଁ ଓ୍ୱାର୍ଡ଼କୁ ଆସି ୧୦,୧୫ ଜଣ ମୁମୂର୍ଷୁ ରୋଗୀଙ୍କୁ ଷ୍ଟ୍ରେଚରରେ ବୁହାଇ ଓ୍ୱାର୍ଡ଼ ଭିତରକୁ ନେଲି । ଓ୍ୱାର୍ଡ଼ରେ ଖଟିଆରେ ତଳେ ଓ ବାରଣ୍ଡାରେ ସେମାନଙ୍କୁ ରଖାଇ

ସାଲାଇନ ଦେବାର ବ୍ୟବସ୍ଥାରେ ଲାଗିବା ବେଳକୁ ରନ୍ତଜେଇରୁ ଟ୍ରକ, ବସ୍ ଓ ଟ୍ରେନରୁ ଆମ୍ବୁଲାନ୍‌ସ ଯୋଗେ ଶହ ଶହ ମୁମୂର୍ଷୁ ହଇଜା ରୋଗୀ ଆସୁଥିବାର ସମ୍ବାଦ ପାଇଲି । ସେମାନେ ଆସ୍ତେ ଆସ୍ତେ ଆସି ସାମନା ପଡ଼ିଆରେ ଜମା ହେବାକୁ ଲାଗିଲେ ।

ସେତେବେଳେ ମୋର ବନ୍ଧୁ ଡ଼ାକ୍ତର ପାର୍ଥ ରାଓ କଣ୍ଡେନସ୍ କୋର୍ସରେ ପାଶ୍ କରି ଅଳ୍ପ ଦିନ ପୂର୍ବରୁ ମେଡ଼ିକାଲ କଲେଜ ଭେଷଜ ବିଭାଗର ଜୁନିଅର ଫିଜିସିଆନ ଭାବେ ନିଯୁକ୍ତି ପାଇଥିଲେ । ଓ୍ୟାର୍ଡ଼ରେ ସ୍ଥାନ ନାହିଁ । ଶୀତ ରାତିରେ କାକର ପଡୁଛି । ସାଲାଇନ ଦେଇ ରୋଗୀ ଚିକିତ୍ସା କରିବା ପାଇଁ ସାହାଯ୍ୟକାରୀ ତ ଦୂରର କଥା, ଷ୍ଟାଣ୍ଡ ମଧ ଯଥେଷ୍ଟ ନାହିଁ । ଏସବୁରେ ମୁଁ ପ୍ରଥମେ ବିବ୍ରତ ହୋଇ ପଡ଼ି ସଙ୍ଗେ ସଙ୍ଗେ ପାର୍ଥବାବୁଙ୍କୁ ଡ଼ାକି ଆଣିବାକୁ ଲୋକ ପଠାଇଲି ।

ଟ୍ରକ ବସ୍ ଶବ୍ଦରେ ମେଡ଼ିକାଲ ହତାରେ ହୁଲସ୍ଥୁଲ ପଡ଼ିଯାଇଥିଲା ଓ ତାହୁଁ ତାହୁଁ ସେ ସମ୍ବାଦ ସହର ସାରା ପ୍ରଘଟ ହୋଇଗଲା । ପାର୍ଥବାବୁ ଆସି ପହଞ୍ଚୁ ପହଞ୍ଚୁ ମେଡ଼ିକାଲ ଛାତ୍ର, କର୍ମଚାରୀ ଓ ସହରର ସେବକମାନେ ଦଳ ଦଳ ହୋଇ ଆସି ପହଞ୍ଚିଲେ ।

ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ ଚାଲିଲା । ତମ୍ବୁ ସବୁ ଟଣାଯାଇ ବାହାରେ କୁଡ଼ା ହେଉଥିବା ରୋଗୀମାନଙ୍କ ଭିତରୁ କେତେକଙ୍କୁ ସ୍ଥାନାନ୍ତରୀତ କରି ସେ ସବୁରେ ମଧ ହଇଜା ରେଗୀଙ୍କୁ ରଖାଗଲା । ସେ ଓ୍ୟାର୍ଡ଼ର ଘର ବାରଣ୍ଡା ସବୁ ମଧ ରୋଗୀରେ ପୂର୍ଣ୍ଣ ହୋଇଗଲା । ତଥାପି ବେଳକୁ ବେଳ ରୋଗୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ।

ସ୍ୱେଚ୍ଛାସେବକ ଅନୁଷ୍ଠାନମାନେ ଯୋଗାଉଥିବା କମ୍ବଳ, ସତରଞ୍ଜି, ଚାଦର ସବୁ ଶେଷ ହେବାକୁ ଲାଗିଲା । ସେତିକିବେଳେ ପାଖ ତାଳଦଣ୍ଡା କେନାଲରେ ବଡ଼ ବଡ଼ ନୌକାରେ ଛଣ ବୋଝେଇ ହୋଇ ରହିଥିବା ସମ୍ବାଦ ପାଇ ଛାତ୍ର ଓ କର୍ମୀମାନେ ସେଠାକୁ ଯାଇ ସେସବୁ ଆଣି ତଳେ ବିଛାଇ ତା' ଉପରେ ରୋଗୀଙ୍କୁ ଶୁଆଇଲେ ।

ତଳ ଉପର ଶ୍ରେଣୀର ସମସ୍ତ ଡ଼ାକ୍ତରୀ ଛାତ୍ର, ନର୍ସ, ବେହେରା ସମସ୍ତେ ହଠାତ୍ ଚିକିତ୍ସକ ପାଲଟି ଗଲେ । ଷ୍ଟାଣ୍ଡ ଅଭାବରୁ ସେମାନେ ଠେଙ୍ଗା ପୋତି ସେଥିରୁ ସାଲାଇନ ଶିଶି ଓହଳାଇ ରୋଗୀମାନଙ୍କୁ ସାଲାଇନ, ଇଞ୍ଜେକସନ ଦେବାକୁ ଲାଗିଲେ । ହସ୍‌ପିଟାଲରୁ, ଏପରିକି କଟକ ବଜାରରୁ ମଧ ସାଲାଇନ, ଗ୍ଲୁକୋଜ ଇଞ୍ଜେକସନ ପ୍ରଭୃତି ସରିଗଲା । ବଡ଼ ବଡ଼ ଡ଼େକ୍‌ଚିରେ ପାଣି ଫୁଟାଇ ତା' ଦେହରେ ଆନୁମାନିକ ମାପରେ ଲୁଣ ପକାଇ ସାଲାଇନ ତିଆରି କରାଯାଇ ରୋଗୀଙ୍କୁ ଦିଆଗଲା ।

ଏପରି ଧମାଧମ୍ କାର୍ଯ୍ୟ ଚାଲିଥିବା ବେଳେ ସ୍ୱାସ୍ଥ୍ୟ ବିଭାଗ ଡ଼ିରେକ୍ଟର କର୍ଣ୍ଣେଲ ହାଜରା ଆସି କେତେକ ସଦ୍ୟ ପାଶ୍ କରିଥିବା ଡ଼ାକ୍ତର ଓ ଉପର କ୍ଲାସ ଛାତ୍ରଙ୍କୁ ବାଛି

ଅନୁଗୁଳକୁ କଲେରା ଇଞ୍ଜେକସନ ସହ ଚିକିତ୍ସା ପାଇଁ ପଠାଇ ଦେଲେ । ଏହା ଭିତରେ କଲେଜର ଛୁଟି ଘୋଷଣା କରାଯାଇଥିଲା । ଅନ୍ୟ ସବୁ ବିଭାଗର ଓ୍ୟାର୍ଡ଼ ମାନଙ୍କରୁ ସାଂଘାତିକ ରୋଗୀଙ୍କ ଛଡ଼ା ଅନ୍ୟ ରୋଗୀମାନଙ୍କୁ ବିଦାୟ କରାଯାଇଥିଲା । ସେସବୁ ଓ୍ୟାର୍ଡ଼ର ଡାକ୍ତର, ନର୍ସ ଓ ବେହେରାଙ୍କୁ ଅଣାଇ ହଇଜା ରୋଗୀ ଚିକିତ୍ସାରେ ଲଗାଇ ଦିଆଯାଇଥିଲା ।

ମେଡ଼ିକାଲ କଲେଜ ପରିସରଟା ତମ୍ବୁରେ ଭର୍ତ୍ତି ହୋଇ ଏକ ସୈନ୍ୟ ଛାଉଣୀ ପରି ଦେଖାଯାଉଥିଲା । ଶୃଙ୍ଖଳାରକ୍ଷା ପାଇଁ ଏକ ଅସ୍ଥାୟୀ ପୋଲିସ୍ ଥାନା ଖୋଲିଥିଲା । ଓ୍ୟାରଲେସ୍ ସାହାଯ୍ୟରେ ଅନୁଗୁଳ ଆଡୁ ଭୟାବହ ଖବର ସବୁ ଆସି ପହଞ୍ଚୁଥିଲା । ଅନୁଗୁଳଠାରୁ କଟକ ପର୍ଯ୍ୟନ୍ତ ରାସ୍ତାର ସ୍ଥାନେ ସ୍ଥାନେ ରୋଗୀଙ୍କ ଶବ ସବୁ ପଡ଼ି ରହି ଦୁର୍ଗନ୍ଧମୟ ପରିବେଶ ସୃଷ୍ଟି କରୁଥିଲା ।

ରୋଗୀଙ୍କ ସଙ୍ଗେ ପୋଲିସ ଟ୍ରକରେ ଗୋଟିଆ ହୋଇ ମୁମୂର୍ଷୁ ଲୋକଙ୍କ ସଙ୍ଗେ ମୁର୍ଦ୍ଦାର ସବୁ ବି ବୁହା ଚାଲିଥିଲେ । ମେଡ଼ିକାଲ ହତାରୁ ମଧ ପୋଲିସ ଗାଡ଼ି ମୁର୍ଦ୍ଦାରମାନଙ୍କୁ ବୋହିନେଇ ଯାଉଥିଲେ । ରୋଗୀମାନଙ୍କର ଶବ ସତ୍କାର ପାଇଁ ସରକାର ଏକ ଅଭିନବ ଉପାୟ ଅବଲମ୍ବନ କରିଥିଲେ । ସେତେବେଳେ କଟକ ସହରର ଉପକଣ୍ଠ ଖାନନଗରଠାରେ ବନ୍ୟା ନିୟନ୍ତ୍ରଣ ପାଇଁ କାଠଯୋଡ଼ି ବନ୍ଧକୁ ଲାଗି ନଦୀ ଭିତରକୁ ଗୋଟିଏ ଲମ୍ବା ପଥର ବନ୍ଧ ବା ସ୍ପର ନିର୍ମାଣ ପାଇଁ ଏକ ଗଭୀର ଲମ୍ବା ଗାତ ଖୋଳାଯାଇଥିଲା । ପୋଲିସ ଟ୍ରକ ତାହା ଭିତରକୁ ଶହ ଶହ ସଂଖ୍ୟାରେ ଶବ ସବୁ ଫିଙ୍ଗି ବାଲି ଘୋଡ଼ାଇ ଶବ ସତ୍କାର କରୁଥିଲେ ବୋଲି ଶୁଣାଯାଉଥିଲା ।

ହସ୍‌ପିଟାଲରେ ଏତେ ସଂଖ୍ୟାରେ ଏପରି ଅସହାୟ ଅବସ୍ଥାରେ ରୋଗୀମାନେ ଆସି ପହଞ୍ଚୁଥାଆନ୍ତି ଯେ ସେମାନଙ୍କ ନାମ ଗ୍ରାମ ଜାଣିବାର ମଧ ସୁବିଧା ନ ଥାଏ । ସେମାନଙ୍କ ଭିତରୁ ହୁକୁ ହୁକୁ ହେଉଥିବା ଅବସ୍ଥାରେ ଆସିଥିବା ବହୁ ରୋଗୀଙ୍କୁ ଶଯ୍ୟା ଉପରକୁ ଆଣୁ ଆଣୁ ସେମାନେ ଚିର ନିଦ୍ରାରେ ଶୋଇ ପଡୁ ଥାଆନ୍ତି । ତାଙ୍କ ପାଖରେ ତାଙ୍କ ଆତ୍ମୀୟ ବା ଚିହ୍ନିବା ଲୋକ କେହି ନଥା'ନ୍ତି । ତେଣୁ ତାକୁ ଚିହ୍ନିବ କିଏ ବା କିପରି ? ସେ ଓ୍ୟାର୍ଡ଼ର ହାଉସ୍ ଫିଜିସିଏନ ଭାବରେ ରୋଗୀଙ୍କ ରେକର୍ଡ଼ ରଖିବା ମୋର ଦାୟିତ୍ୱ କିନ୍ତୁ ସେପରି ପରିସ୍ଥିତିରେ ମୁଁ ତାହା ରଖିବି କିପରି ?

ମନ ଥିଲେ ଉପାୟ ବେଳେ ବେଳେ ଆସି ପହଞ୍ଚେ । ମୁଁ ସ୍ୱେଚ୍ଛାସେବକମାନଙ୍କ ଦ୍ୱାରା ଔଷଧ ଆସିଥିବା ପେଷ୍ଟବୋର୍ଡ଼ ଡ଼ିବା ସବୁ ସଂଗ୍ରହ କରାଇ ସେ ପଟାକୁ ଦୁଇ ଇଞ୍ଚ କରି କାଟି ଗୋଲ ଗୋଲ କରାଇ ରେକର୍ଡ଼ ପାଇଁ ବ୍ୟବହାର କଲି ।

ସେ ସମ୍ବନ୍ଧରେ ମୋର ବନ୍ଧୁ ଡ଼ାକ୍ତର ପାର୍ଥ ରାଓ ଲେଖିଛନ୍ତି 'ଡ଼ାକ୍ତର ବିକ୍ରମ ଦାସ ତାଙ୍କ ନିଜ ବୁଦ୍ଧି ଖଟାଇ ଗ୍ଲୁକୋଜ ଇଞ୍ଜେକସନ ଡ଼ିବାର ପେଷ୍ଟ ବୋର୍ଡ଼ କାଟି ଯୋଡ଼ାଯୋଡ଼ା ଏକ ନମ୍ବର ଦେଇ ଦୁଇଟି ସୂତୁଲି ଗଳାଇ ଆମ୍ଭମାନଙ୍କୁ ଯୋଗାଉ ଥାଆନ୍ତି ଏବଂ ଆମ୍ଭମାନଙ୍କ ସଙ୍ଗରେ ଚବିଶ ଘଣ୍ଟା ଥାଇ ଅଫିସ କାର୍ଯ୍ୟ ଚଳାଇ ରେଜିଷ୍ଟ୍ରେସନ ଖାତା ଲେଖୁଥାଆନ୍ତି । ସେ ଯୋଡ଼ାରୁ ଗୋଟିଏ ପୋଷ୍ଟକାର୍ଡ଼ ଚକତି ରୋଗୀ ହାତରେ ବନ୍ଧା ହୁଏ ଓ ଅନ୍ୟଟିରେ - ରୋଗୀର ନାମ - ଅଜଣା, ବୟସ - ଅନ୍ଦାଜରେ ଯେତିକି, ଲିଙ୍ଗ, ପୁରୁଷ ଅବା ସ୍ତ୍ରୀ ଓ ଶରୀରରେ ଗୋଟିଏ ଚିହ୍ନ ଲେଖାଯାଇ ପ୍ରଥମେ ଗୋଟିଏ ବାକସ୍‌ରେ ରଖାଯାଉ ଥାଏ ।

ସେପରି ଚକତି ସାହାଯ୍ୟରେ ରେକର୍ଡ଼ ରଖିବା କିଛିଟା ସମ୍ଭବ ହୋଇଥିଲା । ରୋଗୀର ଚିକିତ୍ସା ଆରମ୍ଭ ହେବା ପରେ ରୋଗୀଠାରୁ ସଂଗୃହିତ ତଥ୍ୟ ସହିତ କେତେକ ନମ୍ବର ଓ ବିବରଣୀ ରେଜିଷ୍ଟ୍ରୀ ବହିରେ ଲେଖାଯାଏ । ତେଣୁ ରୋଗୀର ଦେହରେ ଥିବା ଅନ୍ୟ ରୋଗ ଓ ରୋଗୀର ନାମ ଗ୍ରାମ ପ୍ରଭୃତି ମିଳିଲେ ମଧ ସେଥିରେ ଲେଖାଯାଏ । ମୋର ସେହି ଉଦ୍ୟମ ଫଳରେ ରୋଗୀମାନଙ୍କ ସମ୍ବନ୍ଧରେ କିଛିଟା ସମ୍ବାଦ ମୋ ରେକର୍ଡ଼ରେ ରହିପାରିଲା ।

ସେତେବେଳେ ମେଡ଼ିକାଲ କଲେଜ ପରିସର ଲୋକାରଣ୍ୟ ହୋଇ ଉଠିଥାଏ । ବହୁ ଲୋକ ଆସି ସେମାନଙ୍କ ରୋଗୀଙ୍କୁ ଖୋଜୁଥାଆନ୍ତି । ରୋଗୀ ଓ ତାଙ୍କ ପାଖ ଲୋକଙ୍କ ଆର୍ତ୍ତନାଦରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠୁଥାଏ । ଅତି ଦୂରାରୋଗ୍ୟ ରୋଗମାନଙ୍କରୁ ଉଦ୍ଧାର ପାଇବା ପାଇଁ ସେମାନେ ଉନ୍ତଳେଇ ଆସିଥିଲେ । ସେମାନଙ୍କ ଭିତରୁ ଯେଉଁମାନଙ୍କଠାରେ କଲେରା ଉପଶମ ଦେଖାଗଲା ସେମାନଙ୍କଠାରେ ପୁରୁଣା ରୋଗର ପ୍ରକାଶ ପାଇ ସେମାନେ ଛଟପଟ ହୋଇ ଚିତ୍କାର କରିବାକୁ ଲାଗିଲେ । ସେ ପରିସ୍ଥିତିରେ ସେଠାରେ ପୁରୁଣା ରୋଗମାନଙ୍କର ଚିକିତ୍ସା କରିବା ସମ୍ଭବ ନ ଥିଲା ।

ସେପରି ଅସହାୟ ଅଜଣା ରୋଗୀଙ୍କ ଛଡ଼ା ଗାଡ଼ି ମୋଟରରେ କେତେକ ଖ୍ୟାତନାମା ବ୍ୟକ୍ତି ମଧ କଲେରାରେ ଆକ୍ରାନ୍ତ ହୋଇ ଅନୁଗୁଳରୁ ଆସି ଆମ ନିକଟରେ ପହଞ୍ଚୁଥିଲେ । ସେ ସମୟରେ ଯକ୍ଷ୍ମା ବିଭାଗର ଏକ ଅର୍ଦ୍ଧନିର୍ମିତ ଗୃହର ଚଟାଣରେ ଯଦୁମଣି ମଙ୍ଗରାଜ ବିଧାୟକଙ୍କ ପରି କେତେକ ନେତାଙ୍କୁ ତଳେ ଶେଯ ପକାଇ ରଖିବାର ବ୍ୟବସ୍ଥା କରାଇଥିଲି ।

ଉନ୍ତଳେଇର ପ୍ରଚାର କେତେକ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମନକୁ ମଧ ବଶ କରି ଦେଇଥିଲା । ଓଡ଼ିଶାର ଗଡ଼ଜାତ ମିଶ୍ରଣ ପରେ ପରେ ବଲାଙ୍ଗିର ରାଜ୍ୟର ଓଡ଼ିଶାର ମନ୍ତ୍ରୀମଣ୍ଡଳରେ ସାମିଲ ହୋଇଥିବା ପ୍ରତିନିଧି ମନ୍ତ୍ରୀ କପିଳେଶ୍ୱର ନନ୍ଦ ନିଜର ପୁରାତନ

ଶ୍ୱାସରୋଗର ନିରାକରଣ ପାଇଁ ରନ୍ତଳେଇ ଯାଇ ସେଠାରୁ ଫେରି ତାଙ୍କ ଶ୍ୱାସରୋଗର ଉପଶମ ହୋଇଛି ବୋଲି ଜଣାଇଥିଲେ । ବିଶିଷ୍ଟ ସାହିତ୍ୟିକ ଆଚନ୍ତୁ ଛୋଟା ଶ୍ରୀ ବିଛନ୍ଦଚରଣ ପଟ୍ଟନାୟକ ରନ୍ତଳେଇରୁ ଫେରି, 'ନେପାଳି ବାବା'ଙ୍କ ଔଷଧର ଗୁଣଗାନ କରି ତାଙ୍କ ଗୋଡ଼ ଭଲ ହୋଇଗଲା ବୋଲି ଖବର କାଗଜମାନଙ୍କରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କ ସମକ୍ଷରେ ସିଧା ହୋଇ ଚାଲିବାର ଅଭିନୟ କରୁଥିଲେ । ସେସବୁ ସତ୍ତ୍ୱେ 'ନେପାଳି ବାବା'ଙ୍କୁ ହଇଜାପାଇଁ ସମ୍ପୂର୍ଣ୍ଣ ରୂପେ ଦାୟୀକରି ସରକାର ବନ୍ଦି କଲେ । ତାଙ୍କୁ ଜେଲକୁ ପଠାଇ ରନ୍ତଳେଇର ଗହଳ ଭାଙ୍ଗିବାକୁ ସମର୍ଥ ହେଲେ ।

କଲେରା ରୋଗ ଚିକିତ୍ସା ସମୟରେ ସେଥିରୁ ଯେ କୌଣସି ମତେ ଜୀବନରକ୍ଷା କରିବା ପାଇଁ ଆପ୍ରାଣ ଚେଷ୍ଟା ଚାଲିଥିବା ବେଳେ ଚିକିତ୍ସାର ଅନ୍ୟ ଅନେକ ସାଧାରଣ ଦିଗ ପ୍ରତି ଦୃଷ୍ଟି ରଖି ସତର୍କତା ଅବଲମ୍ବନ କରିବା ଆମ ପକ୍ଷରେ ସମ୍ଭବ ନ ଥିଲା । ୱାର୍ଡ଼ ବେହେରା, ନର୍ସ, ମେହେନ୍ତରଙ୍କଠାରୁ ଆରମ୍ଭକରି ଅନଭିଜ୍ଞ ଛାତ୍ରମାନେ ଯେଉଁଠି ଚିକିତ୍ସକ, ଫୁଟା ଲୁଣପାଣି ଯେଉଁଠି ଔଷଧ, କୁକୁର କୁଆ ଅଧ୍ୟୁଷିତ ପଡ଼ିଆ ଯେଉଁଠି ରୋଗୀଙ୍କ ଓ୍ୟାର୍ଡ଼, ସେଠାରେ ସମ୍ପୂର୍ଣ୍ଣ ବୈଜ୍ଞାନିକ ପଦ୍ଧତିର ଚିକିତ୍ସା ଅନୁସରଣ କରିବା ଅସମ୍ଭବ ।

ରୋଗୀକୁ ସାଲାଇନ ଦେବାବେଳେ କେତେ ପରିମାଣରେ ସାଲାଇନ ଦରକାର ଓ ସାଲାଇନ ଦେବା ପାଇଁ ଶିରା ନ ମିଳିଲେ ଗୋଇଠି କାଟି କିପରି ଶିରା ବାହାର କରି ଇଞ୍ଜେକ୍‌ସନ ଦେବାକୁ ହୁଏ ଓ ସାଲାଇନ୍ ଦେଉ ଦେଉ ଶିରା ଫୁଟାଇ ମାଂସପେଶୀ ବା ଚମଡ଼ା ତଳେ ସାଲାଇନ ଜମାହେଲେ କଅଣ କରିବାକୁ ହେବ ସେସବୁ ସେହି ଚିକିତ୍ସାକାରୀମାନଙ୍କୁ ଜଣାନଥାଏ । ତେଣୁ ସେସବୁ ଯୋଗୁଁ ବହୁ ସମସ୍ୟା ସୃଷ୍ଟି ହେଉଥାଏ । ବେଳେ ବେଳେ ସେହି କଲେରା ରୋଗୀମାନଙ୍କ ଶରୀରରେ ଅନ୍ୟାନ୍ୟ ରୋଗର ଉପସର୍ଗ ଦେଖାଦିଏ । ସେଥିପାଇଁ ଦାୟିତ୍ୱରେ ଥିବା ଆମପରି ଡ଼ାକ୍ତର ମାନଙ୍କୁ ବୁଲି ବୁଲି ସେସବୁ ଯାଞ୍ଚ କରିବାକୁ ହୁଏ ।

ସେସବୁକୁ ଦୃଷ୍ଟି ଆଗରେ ରଖି ଆମ ପ୍ରଫେସର ଡ଼ାକ୍ତର ପିସାରୋଟି ଯୁଦ୍ଧକାଳୀନ ଚିକିତ୍ସା ପଦ୍ଧତି ଚାଲୁରଖିବା ପାଇଁ ନିର୍ଦ୍ଦେଶ ଦେଇଥାଆନ୍ତି । ହୃତପିଣ୍ଡର ଚାଳନ ଓ ମସ୍ତିଷ୍କକୁ ଶାନ୍ତ ରଖିବା ପାଇଁ ନିର୍ଦ୍ଦେଶ ଦେଇଥାଆନ୍ତି । ମୁମୂର୍ଷୁ ରୋଗୀର ହୃତପିଣ୍ଡର ଚାଳନ ଶକ୍ତି ପାଇଁ ପଚାଶ ସି.ସି. ସିରିଞ୍ଜରେ କୋରାମିନ ଭର୍ତ୍ତିକରି ପ୍ରତି ମୁମୂର୍ଷୁ ରୋଗୀକୁ ଘଣ୍ଟାକୁ ଏକ ସି.ସି. କୋରାମିନ ଇଞ୍ଜେକସନ ଦେବାକୁ ହୁଏ । କଲେରା ରୋଗରେ ରକ୍ତର ଜଳୀୟ ଅଂଶର ହାନୀ ଯୋଗୁ 'ଇଉରିଆ' ଅଂଶ ବଢ଼ି ତାହା ମସ୍ତିଷ୍କକୁ ଉତ୍ତେଜିତ କରେ । ସେପରି ରୋଗୀମାନେ ପାଗଳ ପରି ପ୍ରଳାପ କରନ୍ତି ଓ ବେଳେ ବେଳେ ଶଯ୍ୟାରୁ

ଉଠି ବାହାରକୁ ଦଉଡ଼ି ପଳାଇବାକୁ ଚେଷ୍ଟା କରନ୍ତି । ସେପରି ରୋଗୀ ଘୁଷୁରି ଘୁଷୁରି ଯାଇ ପାଖ ନାଳରେ ପଡ଼ି ପ୍ରାଣ ହରାଇବା ଅସମ୍ଭବ ନଥିଲା । ତେଣୁ ସବୁ କଲେରା ରୋଗୀଙ୍କୁ ନିଦରେ ଶୁଆଇ ମସ୍ତିଷ୍କକୁ ଥଣ୍ଡା ରଖିବା ପାଇଁ 'ପାରଲ ଡ଼ିହାଇଡ଼' ନାମକ ଔଷଧ ବାଧ୍ୟତାମୂଳକ ଭାବରେ ସମସ୍ତଙ୍କୁ ଦିଆଯାଉଥାଏ ।

ରୋଗୀଙ୍କ ଜଞ୍ଜାଳ ସହିତ, ରୋଗୀମାନଙ୍କ ବ୍ୟାକୁଳ ଆତ୍ମୀୟ ମାନଙ୍କ ଆମ ଅସ୍ଥାୟୀ କାର୍ଯ୍ୟାଳୟ ନିକଟରେ ଭିଡ଼ ଆମକୁ ଇତସ୍ତତ କରି ପକାଉଥାଏ । ରୋଗୀଙ୍କୁ ଖୋଜି ଆସିଥିବା ଲୋକେ ତାଙ୍କ ରୋଗୀଙ୍କୁ ନପାଇ କିମ୍ବା ପାଇଲେ ତା'ର ଅବସ୍ଥା ସମ୍ପର୍କରେ ଆମକୁ ପଚାରି ବ୍ୟତିବ୍ୟସ୍ତ କରି ପକାନ୍ତି ।

ସେମାନଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଓ ପାର୍ଥ ବାବୁ ପ୍ରାଣପଣେ ଚେଷ୍ଟା କରୁଥାଉ । ଆମ ରେଜିଷ୍ଟରରୁ ସେମାନେ ସନ୍ତକ ସବୁ ଜାଣି ବେଳେ ବେଳେ ସେମାନଙ୍କ ଆତ୍ମୀୟଙ୍କୁ ଠାବ କରିବାରେ କୃତକାର୍ଯ୍ୟ ହୁଅନ୍ତି । ସେତେବେଳେ ପ୍ରୟୋଜନତା ଅନୁସାରେ ସେମାନଙ୍କଠାରୁ ସେ ରୋଗୀ ସମ୍ବନ୍ଧରେ ଅନ୍ୟ ତଥ୍ୟ ସବୁ ସଂଗ୍ରହ କରି ଆମ ରେଜିଷ୍ଟରରେ ଲେଖିବା ସମ୍ଭବ ହୁଏ । ଅଧିକାଂଶ ଲୋକ ରୋଗୀକୁ ଠାବ କରି ନ ପାରି ବିକଳ କ୍ରନ୍ଦନ ଆରମ୍ଭ କରି ଦିଅନ୍ତି । ତାଙ୍କ ରୋଗୀ ମରିଛି କି ଅଛି, ଥିଲେ ବା କେଉଁଠି କି ଅବସ୍ଥାରେ ଅଛି ଜାଣି ନ ପାରି କାନ୍ଦି କାନ୍ଦି ନିରାଶାରେ ଡ଼ାକ୍ତରଖାନା ଚାରିପଟେ ବୁଲୁଥାଆନ୍ତି ।

ହସ୍‌ପିଟାଲ ସୁପରିଟେଣ୍ଡେଣ୍ଟ ପ୍ରଫେସର କାଶୀନାଥ ମିଶ୍ର ସାଧାରଣ ସମୟରେ ଔଷଧ ଯୋଗାଇବାରେ ଖୋଲାହାତ ନ ଥିଲେ । କିନ୍ତୁ ସେ ସମୟରେ ସେ ଅକୁଣ୍ଠିତ ଚିତ୍ତରେ ଔଷଧ, ଆସବାବପତ୍ର ଓ କର୍ମଚାରୀ ପ୍ରଭୃତି ଯୋଗାଇ ଆମକୁ ଉତ୍ସାହିତ କରୁଥିଲେ । ମୋର 'ପଟାଚିହ୍ନ' ଯୋଜନାରେ ଖୁସି ହୋଇ ମୋତେ ବାହାବା ଦେବା ସଙ୍ଗେ ସଙ୍ଗେ ରୋଗୀ ଚିକିତ୍ସାରେ ସର୍ବୋତଭାବେ ସାହାଯ୍ୟ କରିବା ପାଇଁ ତତ୍ପରତା ପ୍ରକାଶ କରିଥିଲେ । କଲେଜର ଅନ୍ୟ ପ୍ରଫେସର, କର୍ମକର୍ତ୍ତା, ବାହାରର ସ୍ୱେଚ୍ଛାସେବୀ ସଙ୍ଗଠନମାନ ଓ ପୋଲିସ ପ୍ରଭୃତି ସମସ୍ତେ ଆମପ୍ରତି ସହାନୁଭୂତିଶୀଳ ଥାଇ ଆମକୁ ନାନା ଭାବରେ ସାହାଯ୍ୟ କରୁଥିଲେ ।

ଆମର ସବୁ ଉଦ୍ୟମ ସତ୍ତ୍ୱେ ସେଠାରେ ପ୍ରଚ୍ଛଦ ପଟରେ ବହୁ କରୁଣ ଘଟଣା ଘଟି ଯାଉଥାଏ । ଅସହାୟ ଶିଶୁଙ୍କ ଆର୍ତ୍ତନାଦ, ଶିଶୁହରା, ସ୍ୱାମୀହରା, ରୁଗ୍‌ଣ ସ୍ତ୍ରୀର ବୁକୁଫଟା କ୍ରନ୍ଦନ, କଲେରାରୁ ଉଠିଥିବା ଅନ୍ଧ ରୋଗୀର ସାହାରାହୀନ ଆତୁରତା ପ୍ରଭୃତି କାନ ତାବ୍‌ଦା କରି ପକାଉଥାଏ । ଅନେକ ସ୍ଥଳରେ ରୋଗୀ ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା ଓ ବାଳକ ବାଳିକାମାନେ କଲେରା ମୁକ୍ତ ହୋଇ ମଧ୍ୟ ସେମାନଙ୍କ ପୁରାତନ ରୋଗ

ଜନିତ ଶାରୀରିକ ଅକ୍ଷମତା ଯୋଗୁଁ ନିଜର ନିସ୍ୱ ଓ ଅକ୍ଷମ ଅବସ୍ଥାରେ ହସ୍‌ପିଟାଲରୁ ଛାଡ଼ ପାଉଲେ ମଧ କେଉଁଠି ଯାଇ ଆଶ୍ରା ନେବେ କ'ଣ ଖାଇବେ କିପରି ଘରକୁ ଫେରିବେ ପ୍ରଭୃତି ଚିନ୍ତାରେ ମ୍ରିୟମାଣ ହୋଇ ପଡୁଥାଆନ୍ତି । ସେମାନେ ଆମକୁ ଦେଖିଲେ ନାନା ପ୍ରଶ୍ନରେ ପୋତି ପକାନ୍ତି । ଆମେ ତାଙ୍କୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରି ନ ପାରି ସ୍ୱେଚ୍ଛାସେବକ ଓ ପୋଲିସବାହିନୀ ଶିବିରମାନଙ୍କର ଆଶ୍ରାନେବାକୁ ନିର୍ଦ୍ଦେଶ ଦେଉ ।

ଦିନକର ଗୋଟିଏ କରୁଣ ଦୃଶ୍ୟ ଏବେବି ମନେପଡ଼ିଲେ ମୋ ଦେହ ଶୀତେଇ ଉଠେ । ଗୋଟିଏ ତମ୍ବୁରୁ ଗୋଟିଏ କଙ୍କାଳସାର ସ୍ତ୍ରୀଲୋକ ବୋଧ ହୁଏ ଘୁଷୁରି ଘୁଷୁରି ଆସି ଠିକ ତମ୍ବୁ ବାହାରେ ମୁମୂର୍ଷୁ ଅବସ୍ଥାରେ ପଡ଼ି ରହିଥିଲା । ବୋଧହୁଏ ସେ କାହାକୁ ଖୋଜିବାକୁ ବା କାହା ଆଗରେ ନିଜ ଦୁଃଖ ଜଣାଇବାକୁ ସେପରି ଅବସ୍ଥାରେ ନିଜର ଶାରୀରିକ ଦୁର୍ବଳତା ଯୋଗୁଁ ସେଠାରେ ମୁମୂର୍ଷୁ ଅବସ୍ଥାରେ ପଡ଼ିରହିଥିଲା । ସେ ଛାତିରେ ଧରିରଖିଥିବା ଶିଶୁଟି ତା'ର ଶୁଖିଲା ସ୍ତନକୁ ଚୁଲିବାକୁ ଚେଷ୍ଟା କରୁଥିଲା କିନ୍ତୁ ଯାଉ ନ ପାଇ ସେ କ୍ଷୁଧାର୍ତ୍ତ ଦୁର୍ବଳ ଶିଶୁଟି ଅବଶ ହୋଇ ମା' ଛାତି ଉପରେ ପଡ଼ି ରହି ସୁକ୍ ସୁକ୍ ହେଉଥିଲା ।

ମୋ ସଙ୍ଗେ ଥିବା ଜଣେ ସ୍ୱେଚ୍ଛାସେବକ ସେ ଶିଶୁର କରୁଣ ଅବସ୍ଥା ଦେଖି ତା' ହାତରେ ଖଣ୍ଡେ ବିସ୍କୁଟ ଗେଞ୍ଜିଦେଲା । ସେ ଶିଶୁଟି ବିସ୍କୁଟ ଖଣ୍ଡକ ନିଜ ପାଟି ପାଖକୁ ନେବାକୁ ଉଦ୍ୟମ କରୁଥିଲା କିନ୍ତୁ ସେଥିପାଇଁ ହୁଏତ ତା'ର ବଳ ପାଉ ନଥିଲା । ଆମେ ସେପରି ରୋଗୀ ଦେଖି ବୁଲିବା ଅବସ୍ଥାରେ ସେ ସ୍ଥାନ ଛାଡ଼ି ଟିକିଏ ଦୂରକୁ ଚାଲିଯିବା ପରେ ଖଡ଼ ଖଡ଼ ଶବ୍ଦ ଶୁଣି ପଛକୁ ଚାହିଁ ଦେଖିଲୁ ଗୋଟାଏ ବୁଲା କୁକୁର ବିସ୍କୁଟ ସହିତ ସେ ଶିଶୁର ହାତକୁ ଟାଣି ଦେଇ ପିଲଟାକୁ ତଳେ ପିଙ୍ଗି ଦେଇ ବିସ୍କୁଟ ଖଣ୍ଡେ ଧରି ଚାଲି ଯାଉଛି । ସେ ଟଣାଓଟରାରେ ଶିଶୁଟି ମାଆ ଛାତିରୁ ଛିଟିକି ଆସି ତଳେ ପଡ଼ିଛି । ଆମେ ସେଠାକୁ ଲେଉଟି ଯାଇ ଦେଖିଲୁ ମାଆ ଓ ପିଲା ଦୁହେଁ ହଲଚଲ ହେବାର ଶକ୍ତି ମଧ ହରାଇଛନ୍ତି । ଆମେ ଚିକିତ୍ସାରତ ଥିବାବେଳେ ସେ ସବୁ ଦେଖି ସଂସାରର ଅନିତ୍ୟତା ସମ୍ବନ୍ଧରେ ସଚେତନ ହେବାକୁ ବାଧ ହେଲୁ ।

ରନ୍ତଲେଇ ଗହଳ ଭାଙ୍ଗିବା ପରେ ୩.୧.୧୯୫୧ ରେ ତତ୍‌କାଳୀନ ରାଜ୍ୟପାଳ ଆସଫ ଅଲ୍ଲି ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ଆମ ସେବା କାର୍ଯ୍ୟ ପାଇଁ ଆମକୁ ବଧେଇ ଦେବାକୁ କଟକର ଲାଲବାଗ୍ ସ୍ଥିତ ପୁରାତନ ରାଜଭବନରେ ଏକ ଭୋଜି ସଭାର ଆୟୋଜନ କରାଇଥିଲେ । ସେ ସଭାରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଓ ମନ୍ତ୍ରୀମଣ୍ଡଳର ସଦସ୍ୟ ଯୋଗ ଦେଇଥିଲେ କିନ୍ତୁ ମୁଖ୍ୟମନ୍ତ୍ରୀ ସେଠାରେ ଅନୁପସ୍ଥିତ

ଥିଲେ । ମାନ୍ୟବର ରାଜ୍ୟପାଳ ଓ ମନ୍ତ୍ରୀ ପଣ୍ଡିତ ମିଶ୍ର ଆମକୁ ଉଦବୋଧନ ଦେଇ ଆମ କାର୍ଯ୍ୟର ଭୂରି ଭୂରି ପ୍ରଶଂସା କରିଥିଲେ ।

ଭକ୍ତଗୋଳ ଓ ହଇଜାଗୋଳ ସମାପ୍ତ ହେବା ପରେ 'ନେପାଳି ବାବା' କାରାଗାରରୁ ମୁକ୍ତି ପାଇଥିଲେ । ସେ ସେହି ଘଟଣାରେ ମର୍ମାହତ ହୋଇ ପ୍ରକୃତରେ ଜଣେ ସାଧୁ ପାଲଟି ଯାଇଥିଲେ । ମୁଁ ଥରେ ଟ୍ରେନରେ ଯାଉଥିବା ସମୟରେ ସେହି ନୀରିହ ସାଧୁ ଯୁବକଙ୍କ ସହିତ ସାକ୍ଷାତର ସୁଯୋଗ ପାଇଥିଲି । ଲୋକ ସେବା ଓ ଲୋକଙ୍କ ମଧ୍ୟରେ ଥିବା ମନୋମାଳିନ୍ୟ ନିଷରି କରିବାକୁ ସେ ଜୀବନର ବ୍ରତ ବୋଲି ଧରିନେଇ ଥିଲେ । କିଛିକାଳ ପରେ ମୁଁ ଖବର କାଗଜରୁ ଦେଖିଲି ଦିନେ ରାତ୍ରୀକାଳରେ ଅନ୍ୟ ସ୍ଥାନ ଗସ୍ତରୁ ଅନୁଗୁଳ ଫେରିବା ବେଳେ, ରକ୍ତାକ୍ତ ସଂଘର୍ଷରେ ଲିପ୍ତଥିବା କେତେକ ମଦୁଆ ଗୁଣ୍ଡାଙ୍କୁ ସେଥିରୁ ନିବୃତ୍ତ କରିବାକୁ ଯାଇ ମାତ୍ର ୩୪ ବର୍ଷ ବୟସରେ ୧୯୭୫ ମସିହାରେ ଗୁଣ୍ଡାଙ୍କ କଟୁରୀ ଚୋଟ ବାଜି ସେ ପ୍ରାଣ ହରାଇଥିଲେ ।

ଉକ୍ତଗୋଳରେ ପ୍ରପୀଡ଼ିତ କେତେକ ଅସହାୟ ବାଳକବାଳିକାଙ୍କୁ କିଛି ସମ୍ବେଦନଶୀଳ ବ୍ୟକ୍ତି ଓ ଚାକର ଚାକରାଣୀ ଖୋଜୁଥିବା କେତେକ ଭଦ୍ରବ୍ୟକ୍ତି ଘରକୁ ନେଇ ପାଳିଥିଲେ । ସେମାନଙ୍କ ଭିତରୁ ଏବେବି ଅନେକ ଜୀବିତ ଅଛନ୍ତି ।



# ତାଲିମର ଶେଷ ପର୍ଯ୍ୟାୟ ଓ କ୍ଲିନିକ୍ସ

**ଔଷଧର ହଟଚମଟ :**

ଭେଷଜ ବିଭାଗର କଲେରା ବା ସଂକ୍ରାମକ ରୋଗ ୱାର୍ଡ଼ରେ କାମ କରିବା ପରେ ମୋର ପୁଣି ଜେନେରାଲ ୱାର୍ଡ଼ରେ ଡ଼ିଉଟି ପଡ଼ିଲା । ବିଶ୍ୱଯୁଦ୍ଧ ପରେ ଭାରତ ବଜାରକୁ ସ୍ୱଳ୍ପ ପେନସିଲିନ ପ୍ରଭୃତି ଆସିବା ଆରମ୍ଭ କରିଥିଲା । କିନ୍ତୁ ପରେ ଆବିଷ୍କୃତ ହୋଇଥିବା ଟାଇଫଏଡ଼ ଔଷଧ କ୍ଲୋରୋମାଇସେଟିନ ଓଡ଼ିଶାକୁ ଆସିନଥିଲା । ଟାଇଫଏଡ୍ ରୋଗୀକୁ ବଞ୍ଚାଇ ରଖିବା ପାଇଁ ଏଣୁ ତେଣୁ ଔଷଧ ଦେଇ ଏକୋଇଶ ଦିନ ପର୍ଯ୍ୟନ୍ତ ଜଗି ରଖିବାକୁ ପଡୁଥିଲା । ସେ ଜୀବାଣୁର ଆୟୁଷ ଏକୋଇଶ ଦିନ, ତେଣୁ ଯଦି ରୋଗୀ ଏକୋଇଶ ଦିନ କୌଣସି ମତେ ସେ ରୋଗର ପ୍ରକୋପକୁ ସମ୍ଭାଳି ତିଷ୍ଠିଯାଏ ତେବେ ରୋଗୀ ଆସ୍ତେ ଆସ୍ତେ ଆରୋଗ୍ୟ ଲାଭ କରେ । କିନ୍ତୁ ସେହି ଏକୋଇଶ ଦିନ ଭିତରେ ଅଧିକାଂଶ ରୋଗୀଙ୍କର ପ୍ରାଣହାନୀ ଘଟିଥାଏ । ସେତେବେଳେ ମେଡ଼ିକାଲ କଲେଜରେ ସ୍ୱତନ୍ତ୍ର ଶିଶୁ ବିଭାଗ ସଙ୍ଗଠନ ହୋଇନଥିଲା କି ସ୍ୱତନ୍ତ୍ର ଶିଶୁବିଶେଷଜ୍ଞ କେହି ନ ଥିଲେ ।

ଶିଶୁମାନେ ବି ସାଧାରଣ ମେଡ଼ିସିନ ସର୍ଜରୀ ପ୍ରଭୃତି ୱାର୍ଡ଼ରେ ବୟସ୍କ ରୋଗୀଙ୍କ ସଙ୍ଗରେ ରହି ଚିକିତ୍ସିତ ହେଉଥିଲେ । ଆମ ମେଡ଼ସିନ ୱାର୍ଡ଼ରେ ୧୨,୧୪ ବର୍ଷର ସ୍କୁଲ ପିଲାଟିଏ ଟାଇଫଏଡ଼ ରୋଗରେ ଖଟିଆଟି ଉପରେ ପଡ଼ି ରହିଥିଲା । ସେ ଖଟିଆ ନିକଟରେ ଜଣେ ବୟସ୍କ ଖଦଡ଼ଧାରୀ ମୁସଲମାନ ବ୍ୟକ୍ତି ବସି ରହିଥିଲେ ।

ସେ ବ୍ୟକ୍ତିଙ୍କର ହୃଷ୍ଟପୁଷ୍ଟ ଗୋରା ଚକଚକ ତମ୍ବାପରି ଚେହେରା । ମୁଣ୍ଡଟି ବି ଚନ୍ଦା ଚକଚକ, ଆଖି ଦୁଇଟି ଚିଲାଚିଲା, ଅଣ୍ଟାଟି ନଇଁ ଆସୁଥାଏ । କଥାବାର୍ତ୍ତା ଅତି ଧୀର, ବ୍ୟବହାର ନମ୍ର । ସେ ଆଣ୍ଠୁଡ଼ିଆଁ ଖଦଡ଼ ଲୁଗାଟିଏ ପିନ୍ଧି କାନ୍ଧରେ ଖଦଡ଼ ଗାମୁଛା ଖଣ୍ଡିଏ ପକାଇଥାଆନ୍ତି ।

ସେ ବାଲେଶ୍ୱର ଜିଲ୍ଲାର ଜଣେ ପୂର୍ବତନ ଜମିଦାର । ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ନିଜର ଭୂସମ୍ପତ୍ତି ପ୍ରଜା ଓ ଅନ୍ୟ ମାନଙ୍କ ମଧ୍ୟରେ ବାଣ୍ଟିଦେଇଥିଲେ । କେହି କେହି ତାଙ୍କୁ ବାଲେଶ୍ୱର-ଗାନ୍ଧି ବୋଲି କହିଥାଆନ୍ତି । ତାଙ୍କର ସେହି ଏକମାତ୍ର ପୁତ୍ରକୁ ଟାଇଫଏଡ଼ ଧରିବା ପୂର୍ବରୁ ତାଙ୍କର ଝିଅଟିଏ ଟାଇଫଏଡ଼ ରୋଗରେ ମୃତ୍ୟୁବରଣ କରିଥାଏ ।

ମୋର ସେହି ରୋଗୀର ରୋଗ ଲକ୍ଷଣ ବଢ଼ିଚାଲିଥାଏ । ଦ୍ୱିତୀୟ ସପ୍ତାହ ସରି ଆସିଲା ବେଳକୁ ସେ ବାଉଳି ଚାଉଳି ହୋଇ ହାତ ମୁଠା ମୁଠା କରିବା ଆରମ୍ଭ କରି ଦେଇଥିଲା । ମୋଟ ଉପରେ ସେ ରୋଗୀର ଆରୋଗ୍ୟ ଲାଭର ଆଶା ଅତ୍ୟନ୍ତ କ୍ଷୀଣ ହୋଇ ଆସିଥିଲା ।

ୱଣ୍ଡର-ଡ୍ରଗ ବିଷୟ ସେହି ସମୟରେ ବିଲାତି 'ପାର୍କସ-ଡ଼େଭିସ' ଔଷଧ କମ୍ପାନୀର ଜଣେ ଏଜେଣ୍ଟ ମୋତେ କହିଲେ ଚାରି ଛଅଟି କ୍ଲୋରମାଇସେଟିନ ବଟିକା ବା କ୍ୟାପସୁଲ ବିଲାତରୁ ଉଡ଼ାଜାହାଜ ଯୋଗେ ଅଣାଯାଇ ସାମ୍ପଲ ଭାବେ ସେ କମ୍ପାନୀ ତରଫରୁ ଓଡ଼ିଶାର ସ୍ୱାସ୍ଥ୍ୟବିଭାଗର ଡ଼ାଇରେକ୍ଟରଙ୍କୁ ଏବେ ଉପହାର ଦିଆଯାଇଛି । କ୍ଲୋରୋମାଇସେଟିନ ଟାଇଫଏଡ଼ର ଏକ ଅବ୍ୟର୍ଥ ଔଷଧ ବୋଲି ଶୁଣି ଥିଲେ ମଧ୍ୟ ତାହା ଦୁର୍ମୂଲ୍ୟ ଥିବାରୁ ଆମେ ଆଖିରେ ଦେଖିନଥିଲୁ ।

ମୁଁ ସେକଥା ଜାଣି ରୋଗୀର ପିତାଙ୍କୁ କହିଲି 'ଆପଣ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ । ଆପଣଙ୍କର କଂଗ୍ରେସ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସଙ୍ଗେ ପରିଚୟ ଥିବ, ଆପଣ ତାଙ୍କ ଜରିଆରେ ଡ଼ିରେକ୍ଟରଙ୍କଠାରୁ ଯଦି କ୍ଲୋରୋମାଇସେଟିନ ଔଷଧ ଅଣାଇ ପାରିବେ ତେବେ ଆପଣଙ୍କ ପୁତ୍ର ଆରୋଗ୍ୟ ଲାଭ କରିପାରିବ ।' ସେ ସେହି ଦିନ ସେ କ୍ୟାପସୁଲ ଆଣି ମୋତେ ଦେଲେ ।

ମୁଁ ରାତିରେ ସେ କ୍ୟାପସୁଲ ରୋଗୀକୁ ଖୁଆଇବା ଆରମ୍ଭ କରିଦେଲି । ଦୁଇଟି କ୍ୟାପସୁଲ ପରେ ସକାଳକୁ ସେ ରୋଗୀ ଦେହରେ ଉନ୍ନତିର ଲକ୍ଷଣ ଦେଖାଗଲା । ପ୍ରଫେସର ପିସାରୋଟି ତାଙ୍କ ସକାଳ -ରୋଗୀଦେଖା ପାଇଁ ଆସି , ସେ ରୋଗୀର ରୋଗ ବହୁ ପରିମାଣରେ ଉପଶମ ହୋଇଥିବା ଦେଖି ମୋ ଆଡ଼କୁ ଚାହିଁ , ମୋତେ ପଚାରିଲେ 'ତୁମେ ସେ ୱଣ୍ଡର ଡ୍ରଗ ଏ ରୋଗୀଠାରେ ପ୍ରୟୋଗ କରିଅଛ କି ? ତାହା କିପରି ଓ କେଉଁଠୁ ପାଇଲ ?

ସେହି କେତୋଟି ମାତ୍ର କ୍ୟାପସୁଲରେ ରୋଗୀ ଆରୋଗ୍ୟ ଲାଭ କରି ଝାଡ଼ିଝୁଡ଼ି ହୋଇ ଉଠିଲା । ଏବେ ସେ ରୋଗ ଜୀବାଣୁ ମଧ୍ୟ ଚାଲାକ ହୋଇଗଲେଣି । ମଣିଷ ଡ଼ାଳେ ଡ଼ାଳେ ଗଲାବେଳକୁ ଜୀବାଣୁ ପତ୍ରେ ପତ୍ରେ ଚାଲିଛି । ଜୀବାଣୁ ସେମାନଙ୍କ ଶରୀର ଭିତରେ କ୍ଲୋରୋମାଇସେଟିନ ପ୍ରତିରୋଧକ ଶକ୍ତି ସଞ୍ଚୟ କରି ଏବେ ତାହାକୁ ମାନୁ ନାହାନ୍ତି ତେଣୁ ତାହା ଆଉ ଅବ୍ୟର୍ଥ ଔଷଧ ହୋଇ ନାହିଁ । ମଣିଷର ଅପବ୍ୟବହାର ଯୋଗୁ ପେନିସିଲିନ ମଧ୍ୟ ନିଜେ ଏକ ମାରାତ୍ମକ ପଦାର୍ଥରେ ପରିଣତ ହେଲାଣି ।

ସେହି ରୋଗୀଟି ହସ୍‌ପିଟାଲ ଛାଡ଼ି ବସାକୁ ଯିବା ପରେ ମଧ୍ୟ ସେ ସଂଗ୍ରାମୀ ବ୍ୟକ୍ତି ବରାବର ମୋ ନିକଟକୁ ଆସି ସେ ପିଲା ବିଷୟରେ ଖବର ଦେଉଥିଲେ । ସେ କେବେ

ଖେଳୁ ଖେଳୁ ତା' ହାତ କିପରି ଭାଙ୍ଗିଲା, ସେ କଅଣ ପଢୁଛି, କିପରି ପଢୁଛି ସେ ସବୁ ମୋ ଆଗରେ ଆଗ୍ରହ ସହିତ ବର୍ଣ୍ଣନା କରୁଥିଲେ । ସେ ପିଲାଟି ଗୋଟିଏ ମେଧାବୀ ଛାତ୍ର ଥିଲା । ସେ ମାଟ୍ରିକ ଓ ଆଇ.ଏସ୍.ସି. ରେ ଉଚ୍ଚ ନମ୍ବର ରଖି ପାସ୍ କରିବା ପରେ ଓଡ଼ିଶା ବାହାରେ ଉଚ୍ଚ ଶିକ୍ଷା ସମାପ୍ତ କରି ପୁନାର ଆଇ.ଆଇ.ଟି ଅନୁଷ୍ଠାନରେ ଅଧ୍ୟାପକ ପଦରେ ଯୋଗ ଦେଇଥିବା ମୁଁ ତା'ର ପିତାଙ୍କଠାରୁ ଶୁଣିଥିଲି । ସେ ବୃଦ୍ଧଙ୍କ ଦେହାନ୍ତ ପରେ ମୁଁ ସେ ପିଲା ସମ୍ବନ୍ଧରେ ଆଉ କିଛି ଜାଣିବାକୁ ପାଇନଥିଲି ।

ମୋର ସେ ହାଉସ୍‌ସିପ୍‌ର ଚାଳିଶ ବର୍ଷ ପରେ ମୁଁ କାନାଡ଼ା ବୁଲି ଯାଇଥିବା ବେଳେ କାନାଡ଼ାର ଲଣ୍ଡନ ନାମକ ଏକ ସ୍ଥାନକୁ ବୁଲିଯାଇ ସେ ବିଶ୍ୱବିଦ୍ୟାଳୟର ଏକ ଅଧ୍ୟାପକ ଲଲାଟେନ୍ଦୁ ମାନସିଂହ (କବି ମାୟାଧର ମାନସିଂହଙ୍କ ପୁତ୍ର)ଙ୍କ ଘରେ ପହଞ୍ଚିଥିଲି । ସେଠାରେ ଥେମସ୍ ନାମକ ଏକ କ୍ଷୁଦ୍ର ଜଳପ୍ରବାହ ନିକଟରେ ଆମର ପିକନିକ୍ ଟିଏ କରିବାର ଥିଲା । ତେଣୁ କାନାଡ଼ାର ଅନ୍ୟାନ୍ୟ ସ୍ଥାନରୁ ଅନ୍ୟ କେତେକ ଓଡ଼ିଆ ପରିବାର ମଧ୍ୟ ସେ ପିକନିକ୍‌ରେ ଯୋଗଦେବାକୁ ଆସିଥିଲେ ।

ସେଠାରେ ଓଡ଼ିଆଙ୍କ ଭିତରେ ମୁଁ ଆସିଥିବା ପ୍ରଚାର ହୋଇ ଯାଇଥିଲା । ମୁଁ ମାନ ସିଂହଙ୍କ ଘରେ ବସିଥିବା ସମୟରେ ଭାରତରୁ ଭିଜିଟିଙ୍ଗ ପ୍ରଫେସର ଭାବେ ଆସି ସେହି ବିଶ୍ୱବିଦ୍ୟାଳୟରେ କାର୍ଯ୍ୟକରୁଥିବା ବିଖ୍ୟାତ ବୈଜ୍ଞାନିକ ପ୍ରଫେସର ୟୁସୁଫ ତାଙ୍କ ପରିବାର ସହିତ ମୋତେ ସାକ୍ଷାତ କରିବାକୁ ଆସିଥିବା ଶୁଣିଲୁ ।

ପ୍ରଫେସର ୟୁସୁଫ ମୋ ନିକଟକୁ ଆସି ମୋତେ ଓଡ଼ିଆ ଭାଷାରେ କହିଲେ ଡ଼ାକ୍ତର ବାବୁ ମୋତେ ଚିହ୍ନିପାରୁ ନାହାନ୍ତି । ମୁଁ ସେହି ପିଲା ଯାହାକୁ ଓଡ଼ିଶାରେ ପ୍ରଥମେ କ୍ଲୋରୋମାଇସେଟିନ ଦେଇ ଆପଣ ମୃତ୍ୟୁ ମୁଖରୁ ଛଡ଼ାଇ ଆଣି ପାରିଥିଲେ । ତାଙ୍କର ପରିଚୟ ଓ କୃତଜ୍ଞତା ମୋତେ ଅଭିଭୂତ କରିଦେଇଥିଲା । ସେ ଘଟଣାଟି ମୋ ମନରେ କି ଆନନ୍ଦ ଓ ତୃପ୍ତି ଜାଗ୍ରତ କରାଇଥିଲା, ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ସେହି ୟୁସୁଫ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଛାଡ଼ି ମୋତେ କେବଳ ସାକ୍ଷାତ କରିବା ପାଇଁ ସେଠାକୁ ଆସିଥିଲେ । ସେ ଯିବା ପରେ ମୁଁ ଜାଣିଲି ଯେ ଓଡ଼ିଆ ସାହିତ୍ୟିକ ମନ୍ତ୍ରୀ ଶ୍ରୀ ମତଲୁବ୍ ଅଲ୍ଲିଙ୍କ ମଳାଶୁର ଓ ଏସିଆନ ହୋଟେଲ ଅଧିକାରୀଙ୍କ ଜାମାତା । ସେ ବହୁଦିନ ଓଡ଼ିଶା ବାହାରେ ଥିବାରୁ ଓଡ଼ିଶାରେ ବିଶେଷ ପରିଚିତ ନୁହନ୍ତି ।

ମୋର ଛଅ ମାସରେ ମେଡ଼ିସିନ ହାଉସ୍‌ସିପ୍ ସରିବା ପରେ ଆଉ କଅଣ କରିବି ମୋର ଭାବେଣି ପଡ଼ିଲା । ସ୍ୱତନ୍ତ୍ର ଭାବରେ କେଉଁଠାକୁ ଯାଇ ଡାକ୍ତରୀ ବ୍ୟବସାୟ କରିବା ପାଇଁ ମୋର ସୁବିଧା ବା ସମ୍ବଳ ନ ଥିଲା । ତେଣୁ ବ୍ୟବସାୟ କରିବା ପାଇଁ କିଛି ସମୟ ଅପେକ୍ଷା କରିବା ଠିକ କରି ଆଉ କିଛି ଦିନ ତାଲିମ୍ ନେବାକୁ ଠିକ କଲି :

ରୋଗ ଚିକିତ୍ସା ପାଇଁ ରୋଗ ଚିହ୍ନିବା ଜରୁରୀ ଥିବାରୁ ରୋଗ ନିର୍ଣ୍ଣୟ (ପାଥୋଲଜି) ବିଭାଗରେ ତାଲିମ ନେବାପାଇଁ ଓ ପାଥୋଲଜି ରିସର୍ଚ୍ଚ କରିବା ପାଇଁ ମୁଁ ଅବୈତନିକ ଗବେଷକ ଭାବେ ସେ ବିଭାଗରେ ଯୋଗ ଦେଲି ।

ତାହା ସହିତ ଆଉ ଛଅମାସ ଭତ୍ତାଯୁକ୍ତ ହାଉସସିପ୍ ପାଇଁ ମୁଁ ଦରଖାସ୍ତ କରିଥିଲି । ମେଡ଼ିସିନ୍‌ରେ ଛଅ ମାସରୁ ବେଶୀ କାର୍ଯ୍ୟ କରିବାକୁ ଅନୁମତି ଦିଆଯାଉ ନ ଥିଲା । ମୋତେ ଶୈଲ୍ୟ ବିଭାଗରେ ସେହି ମାସିକ ଶହେ ଟଙ୍କା ଭତ୍ତା ସହିତ ହାଉସ-ସର୍ଜନ ଭାବେ କାର୍ଯ୍ୟ କରିବାର ମଧ୍ୟ ନିଯୁକ୍ତି ମିଳିଲା । ମୁଁ ସର୍ଜରୀରେ ବେଶୀ ନମ୍ବର ରଖିଥିବାରୁ ମୋତେ ତାହା ମିଳିଥିଲା, କିନ୍ତୁ ହସପିଟାଲରେ ଚାକିରି ନଥାଇ ଶୈଲ୍ୟ ଚିକିତ୍ସା କରିବା ସମ୍ଭବ ନ ଥିଲା । ସେତେବେଳେ ଓଡ଼ିଶାରେ ଗୋଟିଏ ହେଲେ ଘରୋଇ ନର୍ସିଂହୋମ ମଧ୍ୟ ନ ଥିଲା । ତେଣୁ ଭବିଷ୍ୟତ ପନ୍ଥା ରୂପେ ଶୈଲ୍ୟ ଚିକିତ୍ସାକୁ ବାଛି ନଥିଲି ।

ସ୍ୱାଧୀନ ଭାବରେ ଚିକିତ୍ସା ଆରମ୍ଭ କଲେ ଯେତିକି ଶୈଲ୍ୟ ବିଦ୍ୟାର ପ୍ରୟୋଜନ ତା'ହିଁ ଶିଖିବାରେ ମୁଁ ମନୋନିବେଶ କଲି । ପ୍ରଫେସର କାଶୀନାଥ ମିଶ୍ରଙ୍କର ଶୈଲ୍ୟ ବିଦ୍ୟାରେ ବଡ଼ ଉପାଧି ନ ଥିଲେ ମଧ୍ୟ ତାଙ୍କର ସେ ବିଦ୍ୟାରେ ଯଥେଷ୍ଟ ଅଭିଜ୍ଞତା ଥିବାରୁ ତାଙ୍କୁ ସର୍ଜରୀରେ କ୍ଲିନିକାଲ ପ୍ରଫେସର ଭାବେ ନିଯୁକ୍ତି ଦିଆଯାଇଥିଲା । ମୁଁ ତାଙ୍କର 'ୟୁନିଟ୍'ରେ କାର୍ଯ୍ୟ ଆରମ୍ଭ କଲି ଓ ତାଙ୍କ ତତ୍ତ୍ୱାବଧାନରେ ରହିଲି ।

**ଚିକିତ୍ସାରେ କ୍ଷୋଭ :**

ସେହି ସମୟରେ ଅର୍ଥୋପେଡ଼ିକକୁ ବା ଅସ୍ଥି ଶୈଲ୍ୟ ଡ଼ିପ୍ଲୋମାଧାରି ଡାକ୍ତର ଶୀତିକଣ୍ଠ ମିଶ୍ର ବିଲାତରୁ ଫେରି ଆମ କଲେଜରେ ନୂଆ ଖୋଲାଯାଇଥିବା ଅସ୍ଥିଶୈଲ୍ୟ ବିଭାଗର ଆସିଷ୍ଟାଣ୍ଟ ପ୍ରଫେସର ରୂପେ, ପ୍ରଫେସର କାଶୀନାଥ ମିଶ୍ରଙ୍କ ବିଭାଗରେ ଯୋଗ ଦେଲେ ।

ମୁଁ ସେହି ୱାର୍ଡ଼ରେ କାର୍ଯ୍ୟ କଲାବେଳେ ସେଠାରେ ଅସ୍ଥିଶୈଲ୍ୟ ରୋଗୀମାନଙ୍କ ପାଇଁ ସ୍ୱତନ୍ତ୍ର ଶଯ୍ୟାର ବ୍ୟବସ୍ଥା ହେଲା । ହାଉସ୍‌ସର୍ଜନ ଭାବେ ମୁଁ ସେମାନଙ୍କ ତତ୍ତ୍ୱ ନେବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ ପ୍ରୟୋଜନ ଥିବା ସମସ୍ତ ଔଷଧପତ୍ର ମଗାଇବା ଭାର ମୋ ଉପରେ ନ୍ୟସ୍ତ ଥିବାରୁ ସେଥିରୁ ମୁଁ ସେସବୁ ରିକ୍ୟୁଜିସନ ଖାତାରେ ଲେଖି ବେହେରା ହାତରେ ସ୍ୱୀକୃତି ପାଇଁ ହସପିଟାଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟକୁ ପଠାଉଥିଲି । ସେ ତାହାକୁ ଯାଞ୍ଚ କରି ସପ୍ଲାଇ ପାଇଁ ଆଦେଶ ଦେଇ ସେଣ୍ଟ୍ରାଲ ମେଡ଼ିକାଲ ଷ୍ଟୋରକୁ ପଠାଉଥିଲେ । ବେହେରା ଷ୍ଟୋରରୁ ସେ ଜିନିଷପତ୍ର ଓ ଔଷଧ ଆଣି ୱାର୍ଡ଼ ନର୍ସ ଜିମା ଦେଉଥିଲା । ସେହି ଅସ୍ଥିଶୈଲ୍ୟ ରୋଗୀମାନଙ୍କର ପୁରାତନ ରୀତିରେ ଚିକିତ୍ସା

ଚାଲିଥିଲା । ଗୋଡ଼ ଭାଙ୍ଗିଥିଲେ ଗୋଡ଼ଟଣା (ଟ୍ରାକସନ୍) ଓ ପ୍ଲାଷ୍ଟର ବ୍ୟାଣ୍ଡେଜ ଛଡ଼ା ଅନ୍ୟ ପ୍ରକାର ଆଧୁନିକ ଚିକିତ୍ସାର ବ୍ୟବସ୍ଥା ନ ଥିଲା ।

ଶୀତିକଣ୍ଠ ବାବୁ ବିଲାତରୁ ତାଲିମ୍ ପାଇ ଆସି ଆଧୁନିକ ଚିକିତ୍ସା ପଦ୍ଧତି ଚାଲୁ କରିବା ପାଇଁ ଆଗ୍ରହୀ ଥିଲେ । ସେହି ୱାର୍ଡ଼ରେ ଥିବା ବାଙ୍କି ଅଞ୍ଚଳର ଏକ ରୋଗୀ ଗଛରୁ ପଡ଼ିଯାଇ ତା'ର ଚଟୁଆ ଗଣ୍ଠିହାଡ଼ ଭାଙ୍ଗି ଯାଇଥିଲା । ସେ ଟ୍ରାକସନ ଦ୍ୱାରା ଚିକିତ୍ସିତ ହେଉଥିଲା । ଶୀତିକଣ୍ଠ ବାବୁ ସେ ରୋଗୀ ଖଟିଆ ନିକଟରେ ଛାତ୍ରମାନଙ୍କୁ ଭାଷଣ ଦେଇ କହିଲେ ଟ୍ରାକସନ ଦ୍ୱାରା ଏହାର ଗୋଡ଼ ସିଧା ହେବ ନାହିଁ କି, ଏ ଯନ୍ତ୍ରଣାରୁ ଉଦ୍ଧାର ପାଇବ ନାହିଁ । ଏହାର ଚଟୁଆ ଗଣ୍ଠିକୁ ଅପରେସନ କରି ତା'ଭିତରୁ କ୍ଷୁଦ୍ର ବଙ୍କା ଅସ୍ଥି ଖଣ୍ଡ ବାହାର କରି ଆଣିଲେ ରୋଗୀ ସୁସ୍ଥ ହୋଇଯିବ ଓ ବିନା ଯନ୍ତ୍ରଣାରେ ବୁଲାବୁଲି କରି ପାରିବ । ଏହା କହି ପରଦିନ ଅପରେସନ କରିବା ପାଇଁ ସେ ସ୍ଥିର କଲେ ।

ମୁଁ ସେ ଅପରେସନ ପାଇଁ ଉଦଗ୍ରୀବ ହୋଇଉଠିଥିଲି । ରୋଗୀର ଚଟୁଆରେ ଏକ୍ସରେ ଫଟୋ ନିଆଇ, ରାତିରେ ଜୁଲାପ ପ୍ରଭୃତି ଦେଇ ରୋଗୀକୁ ଅପରେସନ ପାଇଁ ପ୍ରସ୍ତୁତ କରି ରଖିଲି । ସକାଳେ ଶୀତିକଣ୍ଠ ବାବୁଙ୍କ ନିର୍ଦ୍ଦେଶରେ ସେହି ରୋଗୀ ପାଇଁ ଅପରେସନ ପରେ ଦିଆଯିବା ପାଇଁ ଗ୍ଲୁକୋଜ ସାଲାଇନ୍, ଆଣ୍ଟିବାଓଟିକ ଓ ଅନ୍ୟ କେତେକ ମୂଲ୍ୟବାନ ଔଷଧ ପାଇଁ ରିକ୍ୟୁଜିସନ କରି ଖାତାଟି ବେହେରା ହାତରେ ସୁପରିନ୍‌ଟେଣ୍ଡେଣ୍ଟ ସାହେବଙ୍କ ପାଖକୁ ପଠାଇ ଅପରେସନ ଥିଏଟରକୁ ଚାଲିଗଲି ।

ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗଟି ରାଜସ୍ୱ ଓ ବାରିକ ମିସ୍ତ୍ରୀ ବିଭାଗ ପ୍ରଭୃତି ପରି ସରକାରଙ୍କ ରୋଜଗାରିଆ ପୁଅ ନୁହେଁ । ତେଣୁ ସରକାର ଲୋକ ଦେଖାଣିଆ ଭାବରେ ଲୋକଙ୍କ ସ୍ୱାସ୍ଥ୍ୟ ପାଇଁ ଲୁହ ଗଡ଼ାଇଲେ ମଧ ଡାକ୍ତରଖାନା ମାନଙ୍କରେ ପ୍ରୟୋଜନ ଥିବା ଔଷଧପତ୍ର ଏତେ କମ୍ ପରିମାଣରେ ଦିଅନ୍ତି ଯେ ତାହା ସମୁଦ୍ରରେ ଶଙ୍ଖେ ପାଣି ପରି ଜଣାଯାଏ । ତେଣୁ ହସ୍‌ପିଟାଲରେ ଔଷଧ ଓ ଆସବାବପତ୍ରର ଅଭାବ ଲାଗି ରହିଥାଏ ।

ଶୀତିକଣ୍ଠ ବାବୁ ସେ ରୋଗୀଟିକୁ ନେଇ ଅପରେସନ ଟେବୁଲ ଉପରେ ଶୁଆଇ ନିଶ୍ଚେତକ ଦିଆଇଲେ । ସେ ଅପରେସନ କରିବାକୁ ବାହାରିଥିବା ସମୟରେ ମୋତେ ସୁପରିନ୍‌ଟେଣ୍ଡେଣ୍ଟଙ୍କଠାରୁ ଡାକରା ଆସିଲା । ସୁପରିନ୍‌ଟେଣ୍ଡେଣ୍ଟ ସାହେବ ମୋ ରିକ୍ୟୁଜିସନ ଖାତାଟାକୁ ହାତରେ ଧରି ମୋତେ ତାଙ୍କ ନାଟକୀୟ ଭଙ୍ଗୀରେ କହିଲେ "ହଇଓ ବାବୁ, ଗୋଟିଏ ରୋଗୀର ଶରୀରରେ ଅସ୍ତ୍ରୋପଚାର ପାଇଁ ଏତେଗୁଡ଼ାଏ ଔଷଧ ଖର୍ଚ୍ଚ କଲେ ଅନ୍ୟ ରୋଗୀମାନେ କେତେ ଔଷଧ ପାଇବେ ? ଏପରି କଲେ ଏ

ହସ୍‌ପିଟାଲ ଚଳିବଚି ? ମୁଁ ତୁମ ଔଷଧ ତାଲିକାଟି ପୂରା କାଟିଦେବାକୁ ବାଧ୍ୟ ହୋଇଛି, ତୁମେ ଯାଅ ।''

ଶୀତିକଣ୍ଠବାବୁ ମୁଖା ପିନ୍ଧି ହାତରେ ରକ୍ତାକ୍ତ ଛୁରୀଟା ଧରି ମୋତେ ଅପେକ୍ଷା କରି ଠିଆ ହୋଇଥିଲେ । ସୁପରିନ୍‌ଟେଣ୍ଡେଣ୍ଟ ସାହେବ ଏ ଅସ୍ତ୍ରୋପଚାର ପାଇଁ ଔଷଧ ଯୋଗାଇବା ସମ୍ଭବ ନୁହେଁ ବୋଲି କହି ମୋ ଔଷଧ ତାଲିକାଟି କାଟି ଦେଇଛନ୍ତି ବୋଲି ତାଙ୍କୁ ଜଣାଇଲି । ତାଙ୍କ ପାଟିରୁ ବାହାରି ପଡ଼ିଲା 'ସାହେବ କାଟି ଦେଲେ ହଉ !' ଏହା କହି ସେ ଛୁରୀରେ ଗାର କାଟିଥିବା ସ୍ଥାନକୁ ସଙ୍ଗେ ସଙ୍ଗେ ସିଲାଇ କରି ବାଣ୍ଡେଜ ସାରି ଅସ୍ତ୍ରୋପଚାର ସେହିଠାରେ ସମାପ୍ତ କରି ଅପରେସନ ଥିଏଟରରୁ ବାହାରି ଚାଲିଗଲେ । ତାଙ୍କ ନୂତନ ପଦ୍ଧତିର ଅସ୍ତ୍ରୋପଚାର ଚମଡ଼ା ଉପରର କେବଳ କେତେଟା ଛୁରୀଗାରରେ ରହିଗଲା ।

ରୋଗୀର ନିଶାଦେବା ବନ୍ଦ ହୋଇ ସେ ଚେତା ପାଇ ୱାର୍ଡ଼କୁ ଅଣାଗଲା । ଅସ୍ତ୍ରୋପଚାର ପରେ ଆରୋଗ୍ୟ ଲାଭ କରି ଚଲାବୁଲା କରିବ ବୋଲି ସେ ମନରେ ଆଶା ବାନ୍ଧିଥିଲା । ତା'ର ସମ୍ପୂର୍ଣ୍ଣ ଚେତନା ଆସିବା ପରେ ମୁଁ ତା' ଶଯ୍ୟା ନିକଟକୁ ଯିବା ସଙ୍ଗେ ସଙ୍ଗେ ସେ ମୋତେ କୃତଜ୍ଞତା ଭରା ଦୃଷ୍ଟିରେ ଚାହିଁ ହାତ ଉଠାଇ ନମସ୍କାର କଲା । ସେଥିରେ ମୁଁ ନିର୍ବାକ ହୋଇ ନରହତ୍ୟା କରିଥିବା ଦୋଷୀ ପରି ନ ଜାଣିବା ହୋଇ ସେଠାରୁ ବାହାରି ଚାଲିଗଲି । ସେ ୱାର୍ଡ଼ରୁ ଅନ୍ୟ ୱାର୍ଡ଼କୁ ମୋର ବଦଳି କରାଇ ନେଇ ମୁଁ ତାଙ୍କୁ ଏକପ୍ରକାର ଲୁଚି ରହିଲି ।

**ଭବିଷ୍ୟତ ଯୋଜନା :**

ମୋର ସର୍ଜରୀ ହାଉସ୍‌ସିପ୍ ସାରି ମୁଁ କଟକ ବାଙ୍କାବଜାର 'ନବଭାରତ ପ୍ରେସ'ର ଗୋଟିଏ କଣ ଘରେ କ୍ଲିନିକ୍ କରି ବସିଥିବା ସମୟରେ ସେହି ଅସହାୟ ରୋଗୀଟି ହସପିଟାଲରୁ ଛାଡ଼ ପାଇ ତା'ର ଯନ୍ତ୍ରଣା ସହିତ ବାଡ଼ି ଖଣ୍ଡିଏ ହାତରେ ଧରି ଦାଢ଼ି ଥୋଡ଼ି ଯୁକ୍ତ ଭିକାରୀ ବେଶରେ ଭିକ ମାଗି ବୁଲୁଥିବାର ମୋ ଆଖିରେ ପଡ଼ିଲା । ସେ ମୋତେ ଦେଖି ତା' ଆଖିରୁ ଦୁଇଟୋପା ଲୁହ ତଳକୁ ପଡ଼ିଗଲା । ସେହି ଦିନଠାରୁ ସେ ମୋ କ୍ଲିନିକ୍ ଦୁଆରେ ପହଞ୍ଚି 'ବାବୁ', 'ବାବୁ' ବୋଲି କରୁଣ ସ୍ୱରରେ ଡାକିବା ମାତ୍ରେ ମୋତେ ମୋ ଛାତିରେ ଛୁରୀ ଚାଲିଯିବା ପରି ଲାଗେ । ସେତେବେଳେ ଯାହା ପଇସା ମୋ ହାତରେ ପଡ଼େ ମୁଁ ତା'ର ଭିକ୍ଷା ଥଳିରେ ପକାଇ ଦେଇ ତାକୁ ଯଥା ଶୀଘ୍ର ବିଦା କରିଦିଏ । ମୋ ମନରେ ଆସେ ହୁଏତ ଅପରେସନ ହୋଇ ସେ ଆରୋଗ୍ୟ ଲାଭ କରିଥିଲେ ଅନ୍ତତଃ ଭିକ ନ ମାଗି ତା'ର ଗାଁ'କୁ ଫେରି ଚାଷବାସରେ ଲାଗି ସୁଖରେ ତା'ର ପରିବାର ସହିତ ରହିପାରିଥାଆନ୍ତା ।

ସର୍ଜରୀରେ ମୋ ତାଲିମ ଚାଲିଥିବା ବେଳେ, ଭାରତର ନୂଆ ଡାକ୍ତରମାନଙ୍କୁ ଆମେରିକାରେ ଉଚ୍ଚଶିକ୍ଷାର ତାଲିମ ଦେବାର ସୁବିଧା ସମ୍ବନ୍ଧରେ ଇଣ୍ଡିଆନ ମେଡ଼ିକାଲ ଆସୋସିଏସନ ଗୋଟିଏ ବିଜ୍ଞାପନ ଦେଲେ । ଭାରତ ସ୍ୱାଧୀନ ହେବାପରେ କେବଳ ଇଂଲଣ୍ଡ ସଙ୍ଗେ ବାନ୍ଧି ହୋଇ ନ ରହି ଆମେରିକା ପରି ଅନ୍ୟ ସଭ୍ୟ ଦେଶମାନଙ୍କ ସହିତ ଛାତ୍ର ବିନିମୟ ପାଇଁ ସୁଯୋଗ ମିଳିଲା । ତେଣୁ ଆମପରି ଭାରତସରକାରଙ୍କ ସ୍ୱୀକୃତି ପାଇନଥିବା ମେଡ଼ିକାଲ କଲେଜ ଛାତ୍ରମାନେ (ଯେଉଁମାନେ ଭାରତ ଓ ବିଲାତରେ ସ୍ନାତକୋତ୍ତର ଶିକ୍ଷାରୁ ବଞ୍ଚିତ ହୋଇଥିଲେ) ଅନ୍ୟମାନଙ୍କ ସହିତ ବିଦେଶରେ ଯାଇ ଉଚ୍ଚ ଶିକ୍ଷା ପାଇବାର ବାଟ ଫିଟିଲା ।

ସେଥିପାଇଁ ଦରଖାସ୍ତ କରିବାକୁ ମେଡ଼ିକାଲ ଶିକ୍ଷା ଶେଷ କରିବା ପରେ ଏକ ବର୍ଷର ତାଲିମ ଯୋଗ୍ୟତା ବାଧ୍ୟତାମୂଳକ ଥିଲା । ତେଣୁ ଆମ ଉପର କ୍ଲାସର ଡାକ୍ତର ପିଲାଏ ସେଥିପାଇଁ ଯୋଗ୍ୟତା ହାସଲ କରି ପାରିଥିଲେ ଓ ସେମାନଙ୍କ ଭିତରୁ ଅନେକ ଦରଖାସ୍ତ କଲେ, କିନ୍ତୁ ଆମ କ୍ଲାସ ପିଲାଏ ବା କଲେଜରେ ସେକେଣ୍ଡ ବ୍ୟାଚରେ ଆଡ଼ମିସନ ଦେଇଥିବା ଡାକ୍ତରମାନେ ପାଶ୍ କରିବାକୁ ବର୍ଷେ ହୋଇ ନ ଥିବାରୁ ଦରଖାସ୍ତ କଲେନାହିଁ ।

ଉପରୋକ୍ତ ଦରଖାସ୍ତ ସବୁ ସଂଗ୍ରହ କରି ସ୍ଥାନୀୟ ଶାଖା ସଂପାଦକ ଡାକ୍ତର ଦିବାକର ଶର୍ମା ଦିଲ୍ଲୀ ଅଫିସକୁ ପଠାଇବା ବେଳେ ମୋତେ ଦରଖାସ୍ତ କରିବାକୁ ପ୍ରବର୍ତ୍ତାଇଲେ । ସେ କହିଲେ ଦରଖାସ୍ତ ଯାଞ୍ଚ ହେଉ ହେଉ ବହୁତ ଡେରି ହୋଇପାରେ । ସେତେବେଳକୁ ତୁମର ତାଲିମ ଏକ ବର୍ଷ ପୂର୍ଣ୍ଣ ହୋଇ ଯାଇଥିବ । ତେଣୁ ଅନ୍ୟମାନଙ୍କ ସହିତ ଦିଲ୍ଲୀ ଇଣ୍ଟରଭିଉ ପାଇଁ ହୁଏତ ତୁମକୁ ଡାକରା ଆସିବ । ଅନ୍ୟ ଦରଖାସ୍ତକାରୀମାନଙ୍କ ଭିତରୁ କେହି ଦିଲ୍ଲୀ ଦେଖି ନ ଥିବାରୁ ଓ ମୋର ପିତା ଦିଲ୍ଲୀ ବଡ଼ଲାଟ ସଭାର ପୂର୍ବତନ ସଦସ୍ୟ ଥିବାରୁ ମୁଁ ଅନ୍ୟମାନଙ୍କ ସହିତ ଦିଲ୍ଲୀ ଗଲେ ସେମାନଙ୍କର ରକ୍ଷଣାବେକ୍ଷଣର ବ୍ୟବସ୍ଥା କରାଇପାରିବି ବୋଲି ଦିବାକର ବାବୁଙ୍କ ଧାରଣା ଥିଲା ।

ମୁଁ ତାଙ୍କ କଥା ରକ୍ଷାକରି ଦରଖାସ୍ତ କରିବା ସ୍ଥିର କଲି । ମୋତେ ପାଥୋଲଜିରେ ତାଲିମ୍ ମିଳିଲେ ତାହା ମୋ ଘରୋଇ ମେଡ଼ିକାଲ ପ୍ରାକ୍ଟିସ୍‌ରେ ସାହାଯ୍ୟ କରିବ ବୋଲି ମୋର ଧାରଣା ଥିଲା । ପ୍ରଫେସର ପିସାରୋଟିଙ୍କ ଭାଷାରେ ପାଥୋଲଜି ମେଡ଼ିସିନ ବିଦ୍ୟାର ବ୍ୟାକରଣ । ରୋଗ ଦ୍ୱାରା ଶରୀରରେ କ'ଣ ଘଟିଯାଉଛି ନ ଜାଣି ଚିକିତ୍ସା କରିବା, ଅନ୍ଧାରରେ ଅଣ୍ଡାଳି ହେବା ସଙ୍ଗେ ସମାନ । ଦୃଷ୍ଟାନ୍ତ ସ୍ୱରୂପ, ଜଣେ ହସପିଟାଲର କର୍ମଠ ବ୍ୟକ୍ତି ହଠାତ୍ ପେଟମରା ରୋଗରେ ଆକ୍ରାନ୍ତ ହେଲେ । ଡାକ୍ତରମାନେ ତାଙ୍କୁ ନାନା ପ୍ରକାର ପେଟମରା ଔଷଧ ଦେଇ ଚିକିତ୍ସା କଲେ । କିନ୍ତୁ ତହିଁରେ କିଛି ଫଳ ନହେବାରୁ ସେ ଡାକ୍ତର ପିସାରୋଟିଙ୍କର ଦ୍ୱାରସ୍ଥ ହେଲେ । ପିସାରୋଟି

ସାହେବ ସବୁ ଶୁଣି ତାଙ୍କୁ ପରୀକ୍ଷା କରିସାରି ଚାଙ୍କ ପକେଟରେ ଦଶଟଙ୍କା ନୋଟଟିଏ ଗେଞ୍ଜିଦେଇ ସେ କର୍ମଚାରୀଙ୍କୁ କହିଲେ ''ଯାଅ ରସଗୋଲା ଖାଅ, ଦିନକୁ ଅନ୍ତତଃ ଦୁଇଟି ଲେଖାଏଁ ଚାରିଥର ରସଗୋଲା ଖାଇବ ତେବେ ଭଲ ହୋଇଯିବ, ହଁ ତୁମେ ତେଲମସଲା ରାଗ ଛାଡ଼ି କେତେ ଦିନ ଭାତ ଦୁଧ ଓ ଆଳୁ ଚକଟା ଖାଇବ ।''

ଆମେ ପିସାରୋଟି ସାହେବଙ୍କ ମୁହଁକୁ ବଲବଲ କରି ଚାହିଁବାରୁ ସେ ହସିହସି କହିଲେ ''ଏ ଯୁବକ ଏତେ କର୍ମତତ୍ପର ଯେ ତାଙ୍କ ଖାଇବା ପିଇବାର ସମୟ ଠିକ୍ ରହୁନାହିଁ । ପେଟମରା ବାହାରିବା ପୂର୍ବଦିନ କଟକ ବାହାରକୁ ଯାଇ ଦିନଯାକ ଉପାସ ରହିଥିଲେ ଓ ତା'ପରେ ପେଟମରା ବାହାରିଥିଲା । ଖାଇବା ସମୟର ଠିକ୍ ପୂର୍ବରୁ ଆମ ପାକସ୍ଥଳୀ କାନ୍ଥରୁ ଖାଦ୍ୟ ହଜମକାରୀ ଏସିଡ୍ ଝରେ । ସେହି ଏସିଡ ଖାଦ୍ୟ ଅଭାବରେ ପାକସ୍ଥଳି ଭିତର କାନ୍ଥର ପରଦାକୁ ନଷ୍ଟ କରିଦେବାରୁ 'ଗାଷ୍ଟ୍ରାଇଟିସ୍' ପେଟମରା ବାହାରେ, ତା'ପରେ ଭଜାଭଜି, ତେଲିଆ, ଟାଣୁଆ ପଦାର୍ଥ ସେଥିରେ ବାଜିଲେ ସେ କ୍ଷତ ଜୀବନ୍ତ ହୋଇ ରହି ରୋଗୀକୁ କଷ୍ଟ ଦିଏ । ରସଗୋଲାର ଶୀରା 'ସୁକ୍ରୋଜ' ସେ କ୍ଷତ ଉପରେ ବୋଳି ହୋଇ ରହିବ ଓ ସେବାଟେ ନରମ ଖାଦ୍ୟ ଗଲେ ତା'ର କ୍ଷତି ନ କରି ଆସ୍ତେ ଆସ୍ତେ ତାହା ଭଲ ହୋଇଯିବ । ସମସ୍ତ ଔଷଧ ଖାଇବା ବନ୍ଦ କରି ସେ ବ୍ୟକ୍ତି ସେପରି କରିବାରେ ଅଳ୍ପ କେତେଟା ଦିନରେ ସଂପୂର୍ଣ୍ଣ ଆରୋଗ୍ୟ ହୋଇଥିଲେ । ଏବେ ତାଙ୍କର ବୟସ ଅଶୀ ବର୍ଷ ହେଲେ ମଧ ସେ ଆଉ ଜୀବନରେ 'ଗାଷ୍ଟ୍ରାଇଟିସ୍' ରୋଗ ଭୋଗ କରିନାହାନ୍ତି ।

ତେଣୁ କେବଳ ରୋଗର ଲକ୍ଷଣକୁ ନ ଦେଖି ସେ ରୋଗର ପାଥୋଲଜି ବା କାର୍ଯ୍ୟକୁ ଅନୁଧ୍ୟାନ କରିବା ଉଚିତ୍ ଜାଣି ମୁଁ ପାଥୋଲଜି ଗବେଷଣା ଆରମ୍ଭ କରିବା ଓ ସ୍ନାତକୋତ୍ତର ପାଥୋଲଜିରେ ତାଲିମ୍ ହେବା ପାଇଁ ଦରଖାସ୍ତ କରିବା ସ୍ଥିର କରିଥିଲି ।

ଦରଖାସ୍ତ ଗ୍ରହଣ, ଯାଞ୍ଚ ଓ ଆମେରିକାର ଡାକ୍ତରୀ ଅନୁଷ୍ଠାନ ମାନଙ୍କ ସହିତ ଯୋଗାଯୋଗ କରି ଇଣ୍ଟରଭିଉ ତାରିଖ ଠିକ କରିବାରେ ଦିଲ୍ଲୀ କର୍ତ୍ତୃପକ୍ଷଙ୍କର ବହୁ ବିଳମ୍ବ ଘଟିଲା । ଏହା ଭିତରେ କେବଳ ମୋର ହାଉସ୍‌ସିପ୍‌ର ଶେଷ ପର୍ଯ୍ୟାୟ ସରି ନଥିଲା । ମୁଁ ମଧ ମୋର ଘରୋଇ ଚିକିତ୍ସା ଆରମ୍ଭ କରିଦେଇଥିଲି ।

**ବାଙ୍କାବଜାରର କ୍ଲିନିକସ୍ :**

ମୁଁ ବାଙ୍କାବଜାରରେ ଥିବା ପିତାଙ୍କ 'ନବଭାରତ ପ୍ରେସ'ର ରାସ୍ତା ଉପରକୁ ଥିବା ଗୋଟିଏ ଛୋଟ କୋଠରୀରେ ମୋର ଘରୋଇ ଚିକିତ୍ସା କ୍ଲିନିକସ ଖୋଲିଥିଲି । ମୁଁ ବର୍ଷକ ଯାକର ହାଉସ୍‌ସିପ୍ ଭତ୍ତା ଜମା ରଖିଥିଲି । ସେଥିରୁ ନଅଶହ ଟଙ୍କା ଦେଇ

ନୂଆପରି ଥିବା ବସ-ଏଣ୍ଡ-ଲମ୍ବ ଆମେରୀକାନ ମାଇକ୍ରୋସ୍କୋପ୍‌ଟିଏ ଜଣଙ୍କଠାରୁ କିଣି ପକାଇଲି । ମୋର ମଉସା ବିଜୁଳି ସଂପାଦକ ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଗୋଟିଏ ଭାଙ୍ଗିଯାଇଥିବା ବହି ଦୋକାନର ଦୁଇଟି ବଡ଼ ବଡ଼ ଆଲମିରା ଓ ସୋ'କେସ୍ ମୋତେ ଯୋଗାଇ ଦେଇଥିଲେ । ଇଣ୍ଡିଆନ୍ ହେଲ୍ଥ କମ୍ପାନୀର ୨୦୦ ଟଙ୍କାର ଗୁଡ଼ିଏ ଶସ୍ତା ଔଷଧ ଆଣି ସେ ଶିଶିଗୁଡ଼ିକୁ ମୁଁ ଆଲମାରୀରେ ସଜାଇ ରଖିଥିଲି । କମ୍ପାଉଣ୍ଡର ପାଶ କରି ସରକାରୀ କିରାଣୀ କାର୍ଯ୍ୟ କରୁଥିବା ମୂରଲୀ ରଥଙ୍କୁ ମୋର ସାମୟିକ କମ୍ପାଉଣ୍ଡର ଭାବେ ନିଯୁକ୍ତି ଦେଇ ଔଷଧ-ମିକ୍ସଚର ତିଆରି ସରଞ୍ଜାମ ଓ କେମିକାଲ ସବୁ କିଣି ରଖିଥିଲି । ତାହାଛଡ଼ା ମୋର ଗ୍ରାହକମାନଙ୍କ ପାଇଁ ଅଟଳ ବାବୁ ଡାକ୍ତରଙ୍କ ସ୍ୱରାଜ ମେଡ଼ିକାଲ ହଲ ଦୋକାନର ଔଷଧ ଆଣି ଦିଆଯାଉଥିଲା । ସେଥିରେ ସେ ମୋତେ ଶତକଡ଼ା ବାର ପରସେଣ୍ଟ ଛାଡ଼ ଦେଇ ଔଷଧ ଦାମ ଗ୍ରହଣ କରୁଥିଲେ ।

### ସ୍ୱତନ୍ତ୍ର ଘରୋଇ ଚିକିତ୍ସା :

ପୋଥି ବାଇଗଣ ଓ ବାଡ଼ି ବାଇଗଣରେ ତଫାତ୍ ଥିଲା ପରି, ବିଶେଷଜ୍ଞଙ୍କ ତତ୍ତ୍ୱାବଧାନରେ ରହି ହସପିଟାଲରେ ଚିକିତ୍ସା କରିବା ଓ ନିଜେ ସମସ୍ତ ଦାୟିତ୍ୱ ମୁଣ୍ଡାଇ ସ୍ୱତନ୍ତ୍ର ଭାବେ ଘରୋଇ ଚିକିତ୍ସା କରିବାରେ ଆକାଶପାତାଳ ତଫାତ୍ ରହିଛି । ହସ୍‌ପିଟାଲ ଚିକିତ୍ସାରେ ଭୁଲଭଟକା ହେଲେ ମୃଦୁ ଭତ୍ସନା ମିଳିପାରେ କିନ୍ତୁ ଘରୋଇ ଚିକିତ୍ସାରେ ଟିକିଏ ଝୁଣ୍ଟିଲେ ଆଣ୍ଠୁମାଡ଼ି ପଡ଼ିଯିବା ସୁନିଶ୍ଚିତ । ତେଣୁ ପ୍ରଥମେ ପ୍ରଥମେ ରୋଗୀକୁ ସମ୍ପୂର୍ଣ୍ଣ ଚିକିତ୍ସା କରିବାର ଦାୟିତ୍ୱ ନେଲାବେଳେ ଛାତି ଧଡ଼୍‌ଧଡ଼ କରୁଥିଲା ଓ ରୋଗୀକୁ ବିଶେଷଜ୍ଞଙ୍କ ନିକଟକୁ ପଠାଇବାକୁ ପଡୁଥିଲା ।

ତାହା ସତ୍ତ୍ୱେ ବେଳେବେଳେ ମୋହମତ ଜଗି ରୋଗୀର ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିଥାଏ । ସେପରି ରୋଗୀ ଗ୍ରହଣ କରିବାର ଇଚ୍ଛା ନ ଥିଲେ ମଧ ବାରଣ କରିହୁଏ ନାହିଁ । ନାନାପ୍ରକାର ଲୋକ ତା'ଦ୍ୱାରା ଅଯଥା ଲାଭ ଉଠାଇବା ପାଇଁ ମଧ ଆସି ପହଞ୍ଚନ୍ତି । କେହି ଅସମୟରେ ଏପରିକି ରାତିରେ ମଧ ରୋଗୀ ଦେଖିଯିବା ପାଇଁ ଜିଦ୍ ଧରନ୍ତି । ସେଥିରେ ରୋଗୀ ନିକଟରେ ବିନିଦ୍ର ରଜନୀ କଟାଇ ଫିସ୍ ପରେ ମିଳିବାର ଆଶ୍ୱାସନା ମାତ୍ର ପାଇ ଖାଲି ହାତରେ ଘରକୁ ଲେଉଟିବାକୁ ପଡ଼େ । ସେ ରୋଗୀ ଡାକ୍ତରଖାନା ବା ଆରପୁରକୁ ଚାଲିଗଲେ ସେ ପ୍ରତିଶ୍ରୁତି, ପ୍ରତିଶ୍ରୁତି ମାତ୍ରରେ ରହିଯାଏ ।

### ଗୋଟିଏ ରାତ୍ରିର ଅନୁଭୂତି :

ଘରୋଇ ଚିକିତ୍ସାରେ ସମୟ ନିର୍ଘଣ୍ଟ କିଛି ନ ଥାଏ । ଥରେ ଚିକିତ୍ସା କାର୍ଯ୍ୟ ସାରି ବହୁ ରାତିରେ ଘରକୁ ଫେରି ମୁଁ ଖଟରେ ପଡ଼ି ଆଖି ମୁଦ୍ରୁ ମୁଦ୍ରୁ ଜଣାଶୁଣା ଭଦ୍ରଲୋକ ଆସି ମୋ ଦୁଆରେ ଡକାପକାଇଲେ । ମୋ ଦେହ ଭଲ ନାହିଁ, ମୁଁ ବର୍ତ୍ତମାନ ଶୋଇବାକୁ

ଯାଉଛି, କାଲି ସକାଳେ ଯାଇ ସେ ରୋଗୀ ଦେଖିବି ବୋଲି ଯେତେ ଅନୁରୋଧ କଲି ସେ ଶୁଣିଲେ ନାହିଁ । ସେ କହିଲେ ''ମୋ ସ୍ତ୍ରୀ ମୂର୍ଚ୍ଛା ହୋଇ ପଡ଼ି ରହିଛନ୍ତି, ଅନ୍ୟ ଡାକ୍ତରଙ୍କୁ ଡାକିବାକୁ ବେଳ ନାହିଁ । ତା'ପରେ ଆପଣଙ୍କ ଉପରେ ରୋଗୀର ବଡ଼ ବିଶ୍ୱାସ, ଆପଣ ଆମ ଗ୍ରାମପାଖ ଲୋକ ଓ ମୋତେ ନିରାଶ କରିବେ ନାହିଁ ବୋଲି ମୁଁ ଆପଣଙ୍କ ନିକଟକୁ ଆସିଛି ।''

ମୁଁ ବାଧହୋଇ ଆଖି ମଳି ମଳି ସାର୍ଟପ୍ୟାଣ୍ଟ ଗଳାଇ ବାହାରିପଡ଼ିଲି । ସେ ରିକ୍ସାଟିଏ ମଧ ନ ଡାକି ମୋତେ ତାଙ୍କ ସାଇକେଲ ପଛରେ ବସିଯିବା ପାଇଁ ଆଦେଶ ଦେଲେ । ମୋତେ ଏତେ ନିଦ ଲାଗୁଥିଲା ଯେ ସାଇକଲ ପଛରେ ବସିଲେ ବାଟରେ ତଳକୁ ଗଡ଼ି ପଡ଼ିବା ସମ୍ଭାବନା ଥିଲା । ମୋ ଗଳିମୁଣ୍ଡରେ ଖାଲି ରିକ୍ସାଟିଏ ଯାଉଥିବାର ଦେଖି ତାକୁ ଡାକି ସେଥିରେ ବସି ତାଙ୍କୁ ସାଇକେଲରେ ପଛେ ପଛେ ଯିବାକୁ ନିର୍ଦ୍ଦେଶ ଦେଲି ।

ରୋଗୀର କି ବେମାରି ? ସେ କାହିଁକି ମୂର୍ଚ୍ଛା ହୋଇଛି ? ବିଷ ଖାଇଚି କି ? କୌଣସି ସାଂଘାତିକ ବେମାରି ହୋଇଛି ? ସେସବୁ ଭାବି ଭାବି ମୁଁ ରୋଗୀର ଦୁଆରେ ପହଞ୍ଚି ସେ ଭଦ୍ରଲୋକଙ୍କ ସଙ୍ଗେ ଯାଇ ତାଙ୍କ ଦାଣ୍ଡ ଘରେ ପହଞ୍ଚିଲି ।

ମୁଁ ଦାଣ୍ଡଘରେ ପହଞ୍ଚିବା ପରେ ଗୋଟିଏ ଗେଡ଼ି କିଶୋରୀ ଧାଈ ମୋତେ ଆସନ୍ତୁ କହି ପ୍ରସୂତି ଘରକୁ ଘେନିଯାଇ ରୋଗୀ ନିକଟରେ ପହଞ୍ଚାଇଲା । ରୋଗୀଟି ସଦ୍ୟ ପ୍ରସବ କରିଥିବା ବହୁ ସନ୍ତାନର ମାତା । ମୁଁ ପ୍ରସୂତିଠାରୁ ଶୁଣିଲି ପିଲା ପ୍ରସବ ପରେ ସେ ଆଲେଳିଆ ହୋଇ ଅଚେତ ହେବା ପରି ପଡ଼ିରହିଥିଲା, ଏବେ ଏକପ୍ରକାର ସୁସ୍ଥ ଅନୁଭବ କରୁଛି । ମୁଁ ଧାଈକୁ ପଚାରିଲି ପିଲା ଜନ୍ମ ପରେ ଦୁର୍ବଳ ମାଆ ତ ଅଚେତ ହେଲାପରି ପଡ଼ିଯାଆନ୍ତି । ତାକୁ ଗରମ ଚା' ପ୍ରଭୃତି ଦେଲେ ସେ ଆରୋଗ୍ୟ ଲାଭ କରେ ଏକଥା କ'ଣ ତୁମକୁ ଜଣା ନାହିଁ ? ତୁମେ କ'ଣ ନୂଆ ? ସେ କହିଲା ହଁ, ଆଜ୍ଞା ! ତା' କଥା ଶୁଣି ମୋତେ ହସ ଲାଗିଲା । ଡାକ୍ତର ଡାକିବାକୁ କିଏ କହିଲା ବୋଲି ପଚାରିବାରେ ସେ କହିଲା 'ରୋଗୀର ସ୍ୱାମୀ' । ମୁଁ ଭଦ୍ରଲୋକଙ୍କ ମୁହଁକୁ ଚାହିଁ କହିଲି ଏ'ତ ଆପଣଙ୍କର ପ୍ରଥମ ପିଲା ନୁହେଁ । ଆପଣତ ଅନ୍ୟ ପିଲା ଜନ୍ମ ଦେଖିଥିବେ ତେବେ ବୃଥାରେ ଏପରି ବିବ୍ରତ ହେବା କ'ଣ ଦରକାର ଥିଲା ?

ସେତେବେଳେ ଆମ ପ୍ରସୂତି ବିଭାଗ ପ୍ରଫେସର ରାୟଙ୍କ କଥା ମୋର ମନେ ପଡ଼ିଲା । ସେ ପ୍ରଶ୍ନ କରନ୍ତି ପ୍ରଥମଥର ପ୍ରସବ ବେଦନା ପାଉଥିବା ସ୍ତ୍ରୀଲୋକ ପାଇଁ ଚିକିତ୍ସାର କି ବ୍ୟବସ୍ଥା କରିବ ? ତା'ର ଉତ୍ତର ହେଲା ପ୍ରଥମ ପଦକ୍ଷେପ ଭାବେ ତା'ର ସ୍ୱାମୀଙ୍କୁ ଏକ ନିଦ ଇଞ୍ଜେକସନ ଦେଇ ଶୁଆଇ ଦେବ, ନ ହେଲେ ସେ ବୃଥା ବ୍ୟସ୍ତ ହୋଇ ତୁମକୁ ବ୍ୟତିବ୍ୟସ୍ତ କରି ଉଠେଇ ବସେଇ ଦେବ ନାହିଁ ।

ଅବଶ୍ୟ ମୋ ରୋଗୀଣୀଟି ପ୍ରଥମ ପ୍ରସବକାରୀଣୀ ନ ଥିଲା କିମ୍ବା ସେପରି ବ୍ୟତିବ୍ୟସ୍ତ ହୋଇ ଡାକ୍ତରଙ୍କୁ ହଇରାଣ କରିବା ପାଇଁ ତାଙ୍କ ସ୍ୱାମୀଙ୍କର ପ୍ରଥମ ସନ୍ତାନଜାତ ହେଉନଥିଲା । ଯାହାହେଉ ମୁଁ ରୋଗୀକୁ ପରୀକ୍ଷା କରିସାରି ରୋଗୀର ସେବା କରିବାପାଇଁ ଧାଈକୁ ପଦେ ଦି'ପଦ ନିର୍ଦ୍ଦେଶ ଦେଇ ଫେରିବାକୁ ବାହାରି ପଡ଼ିଲି । ମୁଁ ସେଠାରେ ଅଟକି ରହିଥବା ମୋ ରିକ୍‌ସା ନିକଟକୁ ଗଲି । ମୁଁ ଦେଖିଲି ମୋତେ ଡାକି ଆଣିଥିବା ଭଦ୍ରଲୋକ ନିର୍ବିକାର ଭାବରେ ପିଣ୍ଡା ଉପରେ ଠିଆହୋଇ ରହିଲେ । ମୋତେ ଫିସ୍ ଯାଚିବା କଥା ଦୂରେଥାଉ, ରିକ୍‌ସାବାଲାର ପଇସା ଦେବାପାଇଁ ମଧ ତାଙ୍କ ହାତ ତାଙ୍କ ପକେଟ ନିକଟକୁ ଗଲାନାହିଁ । ମୁଁ ଯାଉଛି କହିବାରୁ, ହଁ ଯାଆନ୍ତୁ କହି ସେ ଘର ଭିତରକୁ ପଶିଯାଇ ଦ୍ୱାର ବନ୍ଦ କରିଦେଲେ । ମୁଁ ଘରକୁ ଫେରି ମୋର ବେଠି ପାଇଁ ଘରୁ ପଇସା ଆଣି ରିକ୍‌ସାବାଲା ହାତକୁ ବଢ଼ାଇ ଦେଲି ।

ସେପରି ଅଭିଜ୍ଞତାର ଯେ ପୁନରାବୃତ୍ତି ହୋଇ ନ ଥିଲା ତା' ନୁହେଁ । ରାତ୍ରିର ଜରୁରୀ ଡାକରାକୁ ମନା କରିବା ଡାକ୍ତର ପକ୍ଷରେ ସମୀଚିନ ନୁହେଁ । ସେହିଭଳି ଡାକରାରେ ଯାଇ ପ୍ରାୟ ଖାଲି ହାତରେ ଫେରିବାକୁ ପଡ଼ିଥାଏ । କେତେ ସ୍ଥଳରେ ସାଂଘାତିକ ରୋଗୀ ଦେଖିବାକୁ ଡାକରା ପାଇ ରୋଗୀ ନିକଟରେ ପହଞ୍ଚିଲା ବେଳକୁ ରୋଗୀର ପ୍ରାଣ ଛାଡ଼ି କାନ୍ଦ ବୋବାଳି ଶୁଭୁଥାଏ । ତେଣୁ ରୋଗୀକୁ ମୃତ ବୋଲି ଘୋଷଣା କରି ଏକ ମୁହାଁ ହୋଇ ଫେରିବାକୁ ପଡ଼େ । ସେଠାରେ କେହି ଫିସ୍ ଯାଚିଲେ ମଧ ମାନବିକତା ଦୃଷ୍ଟିରୁ ଆଣି ହୁଏନାହିଁ । ବେଳେବେଳେ ହଠାତ୍ ପକ୍ଷାଘାତ ବା ହୃଦରୋଗରେ ଆକ୍ରାନ୍ତ ହୋଇଥିବା ରୋଗୀ ନିକଟରେ ରାତ୍ରୀଯାପନ କରିବାକୁ ପଡ଼ିଲେ ମଧ ପରେ ଫିସ୍ ପଠାଇ ଦେବାର ଆଶ୍ୱାସନା ମାତ୍ର ଶୁଣି ଫେରିବାକୁ ପଡ଼େ । ସେସବୁ ବାଧେନାହିଁ କିନ୍ତୁ ଗେଲବସର ସ୍ତ୍ରୀର ଚିପା ହାତ ସ୍ୱାମୀଠାରୁ ସେପରି ଅମାନୁଷିକ ବ୍ୟବହାର ଭୁଲିବାର ନୁହେଁ ।

**ପ୍ରେମ ଯନ୍ତ୍ରଣା:**

ପ୍ରେମ ଜନିତ ଆତ୍ମହତ୍ୟାର ଧମକ ଓ ଚେଷ୍ଟା ଯୁବକଯୁବତୀଙ୍କ ଭିତରେ ଯୁଗଯୁଗ ଧରି ରହି ଆସିଛି । ଗୋଟିଏ ଘଟଣା-- ରାତି ଅଧରେ ଜଣେ ଭଦ୍ରଲୋକଙ୍କ ଯୁବତୀ କନ୍ୟାର ଅବସ୍ଥା ସଙ୍କଟାପନ୍ନ ବୋଲି ତାକୁ ଦେଖିବା ପାଇଁ ମୋତେ ଡାକରା ଆସିଲା । ଆମ ସମାଜରେ କୌଣସି ପରିବାର ପକ୍ଷରେ ଆତ୍ମୀୟର ଆତ୍ମହତ୍ୟା ଗୁଜବ କେବଳ ସେ ପରିବାର ପ୍ରତି କଳଙ୍କ ଓ ଆଭିଜାତ୍ୟ ପ୍ରତି ଧକ୍କା ନୁହେଁ, ତା ସଙ୍ଗେ ପୋଲିସ ଦ୍ୱାରା ଘୋଷରା, ଓଟରା, କୋର୍ଟ କଚେରୀର ନିର୍ଯ୍ୟାତନା ଓ ଅର୍ଥ ଶ୍ରାଦ୍ଧର ମଧ ପରିବାରକୁ ସମ୍ମୁଖୀନ ହେବାକୁ ପଡ଼େ ।

ମୁଁ ସେ ଘରେ ପହଞ୍ଚିବା କ୍ଷଣି, ସେ ଘରର ମୁରବୀ ମୋ ଗୋଡ଼ ଧରି ''ଆମକୁ ରକ୍ଷା କରନ୍ତୁ ପିଲାକୁ ଭଲ କରନ୍ତୁ'', ବୋଲି କହି କାନ୍ଦିବାକୁ ଲାଗିଲେ । ମୋତେ ରୋଗୀପାଖକୁ ନିଆଗଲା । ଗୋଟିଏ ଶିକ୍ଷିତା ସୁନ୍ଦରୀ ଆଧୁନିକା କିଶୋରୀ ଆର୍ଦ୍ର ବସନରେ ଅଚେତ ହୋଇଥିଲା ଭଳି ପଡ଼ି ରହିଥିଲା । ତାକୁ ଡାକ୍ତରଖାନା ନ ପଠାଇ ପୋଲିସ୍‌କୁ ନ ଜଣାଇ ଚିକିତ୍ସାର ବ୍ୟବସ୍ଥା କରିବା ପାଇଁ ତା'ର ଘରଲୋକେ ମୋତେ ଅନୁରୋଧ କଲେ ।

ମୁଁ ପଚରା ଉଚରା କରି ବୁଝିଲି ଝିଅଟି ସେ'ଦିନ ମାଆ ପାଖେ ଶୋଇ ରହିଥିଲେ ମଧ୍ୟ ତାକୁ ନିଦ ନ ହୋଇ ସେ ତକିଆରେ ମୁହଁ ମାଡ଼ି ସୁକୁ ସୁକୁ ହୋଇ କାନ୍ଦୁଥିଲା । ମା' ପଚାରିବାରୁ ମୁଣ୍ଡ ବିନ୍ଧୁଛି କହି ବାଆଁରେଇ ଦେଇଥିଲା । ମାଆ ଦିନଯାକ ଘର କାମ କରି କରି ହାଲିଆ ହୋଇଥିବାରୁ ତାକୁ ନିଦ ଲାଗିଯାଇଛି ଭାବି, ମାଆଙ୍କ ଘୁଙ୍ଗୁଡ଼ି ଶୁଣି କିଛି ସମୟ ପରେ ଝିଅଟି ଶେଯରୁ ଉଠି ଧିରେ ଧିରେ କୂଅ ମୂଳକୁ ଚାଲିଲା । ଝିଅ ଚିନ୍ତାରେ ମାଆଙ୍କୁ ଭଲ ନିଦ ହେଉନଥିଲା । ଝିଅ ଖଟରୁ ଉଠିଯିବା ପରେ ତାଙ୍କ ନିଦ ଭାଙ୍ଗିଗଲା । ଅନ୍ଧାରରେ ଝିଅ ପାଦ ବାରି ବାରି ମାଆ ଝିଅର ପଛେ ପଛେ ଚାଲିଲେ ! ଝିଅର ପାଦ ଶବ୍ଦ ଅଗଣାର କୂଅ ପାଖରେ ଅଟକିଯିବା କ୍ଷଣି କୂଅ ଭିତରେ ପଡ଼ିଯିବାର ଝୁପ୍ କରି ଶବ୍ଦ ହେଲା । ମାଆଙ୍କ ଚିତ୍କାରରେ ଘରର ଅନ୍ୟମାନେ ଉଠି କୂଅ ନିକଟକୁ ଦୌଡ଼ି ଆସି ଟର୍ଚ୍ଚ ଆଲୁଅରେ କୂଅ ଭିତରକୁ ପଶି ଝିଅଟିକୁ ଉଦ୍ଧାର କରିଆଣିଲେ । ମୁଁ ସେଠାକୁ ଯିବା ପୂର୍ବରୁ ଘରଲୋକେ ଫାଷ୍ଟଏଡ୍ ଦେଇ ଢୋକିଥିବା ପାଣି ପେଟରୁ ବାହାର କରି ସାରିଥିଲେ ।

ସେ କଲେଜ ପଢ଼ୁଆ ଝିଅଟି ଅତ୍ୟାଧୁନିକା ହେବାକୁ ଚେଷ୍ଟା କରି ଯେଉଁ ଯୁବକଟିକୁ ପ୍ରେମ କରୁଥିଲା, ସେ ଯୁବକ ବିବାହିତ ଥିଲା ଓ ସେକଥା ପ୍ରକାଶ ନ କରି ଝିଅଟିକୁ ପ୍ରତାରିତ କରୁଥିଲା । ସେ ଯୁବକର ବସାକୁ ଝିଅଟି ଯିବାଆସିବା କରୁଥିଲା । ସେ ଯୁବକ ଗ୍ରାମରେ ଥିବା ସ୍ତ୍ରୀର ଚିଠି ଖଣ୍ଡିଏ ହଠାତ୍ ସେ ଝିଅର ହାତରେ ପଡ଼ିଯିବାରୁ ସେ ମର୍ମାହତ ହୋଇ ଆତ୍ମହତ୍ୟା କରୁଥିଲା ।

ମୁଁ ମୋର ଚିକିତ୍ସା ଆରମ୍ଭ କରି ତାକୁ ବାନ୍ତି କରାଇ ଇଞ୍ଜେକ୍ସନ ଦେଲି ଓ କଡ଼ା ଗରମ ଚା' ପିଇବାକୁ ଦେବା ପରେ ସେ ଝିଅ ଆଖି ମେଲାକରି ଉଠିବାକୁ ଚେଷ୍ଟା କଲା । ମୁଁ ସେଠାରୁ ଉଠି ମୁରବୀଙ୍କୁ ଡାକିନେଇ, ସେ ଝିଅକୁ ଗାଳିଗୁଲଜ ନ କରି ତା'ପ୍ରତି ସହାନୁଭୂତିଶୀଳ ହୋଇ ତା' ସଙ୍ଗେ ଘରର ସମସ୍ତେ ମଧୁର ବ୍ୟବହାର କରିବା ପାଇଁ କହିଲି ।

ସେହି ଆତ୍ମହତ୍ୟା ଘଟଣାର କିଛି ମାସ ପରେ ସେ ଝିଅଟିର ପିତାମାତା ଠିକ୍

କରିଥିବା ଅନ୍ୟ ଏକ ସ୍ଥାନରେ ବିବାହ ହେଉଥିବାର ନିମନ୍ତ୍ରଣ ପତ୍ର ମୁଁ ପାଇଲି । ଡାକ୍ତର କେବଳ ରୋଗୀର ରୋଗ ସଙ୍ଗେ ସଂପୃକ୍ତ ନୁହେଁ ସମାଜର ଦୁଃଖ ସୁଖ ସହିତ ସେ ମଧ୍ୟ ଜଡ଼ିତ । ସେଥିପାଇଁ ବେଳେବେଳେ ମାନବିକତା ଦୃଷ୍ଟିରୁ କାର୍ଯ୍ୟ କରି ତାକୁ ଆଇନ ଦୃଷ୍ଟିରୁ ଦଣ୍ଡିତ ହେବାକୁ ପଡ଼ିଥାଏ ।

**ଶିଶୁରୋଗ ଚିକିତ୍ସା:**

ପଶୁପକ୍ଷୀଙ୍କ ପରି କ୍ଷୁଦ୍ର ମାନବ ଶିଶୁ ନିଜର ଯନ୍ତ୍ରଣା ସମ୍ବନ୍ଧରେ କିଛି ପ୍ରକାଶ କରିନପାରି ଛଟପଟ ହୋଇ ରଡ଼ିଛାଡ଼େ । ତେଣୁ ଛୋଟ କଅଁଳା ପିଲାଙ୍କ ଚିକିତ୍ସା କରିବା ଏକ ଦୂରୂହ ବ୍ୟାପାର । ମାନବ ଶିଶୁକୁ ଚିକିତ୍ସା କରୁଥିବା ଡ଼ାକ୍ତରର ଚିକିତ୍ସା ପଦ୍ଧତି ପଶୁ ଡ଼ାକ୍ତରଙ୍କ ଚିକିତ୍ସା ପଦ୍ଧତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପଶୁ ଡ଼ାକ୍ତର ବି ରୋଗୀ ଜୀବଟାକୁ ମାଡ଼ିବସି ଜବରଦସ୍ତି ଇଞ୍ଜେକ୍‌ସନ ଓ ଚିକିତ୍ସାର ବ୍ୟବସ୍ଥା କରି ପାରନ୍ତି । ଚିକିତ୍ସା ଭିତରେ କୌଣସି ଜୀବର ପ୍ରାଣହାନୀ ଘଟିଲେ କିମ୍ବା ଅତି କଷ୍ଟ ପାଉଥିବା ପଶୁକୁ ବିଷାକ୍ତ ଔଷଧ ଦେଇ ମାରିଦେବା ଦ୍ୱାରା ଜଣେ ପଶୁ ଡ଼ାକ୍ତର ଆଇନଗତ ବା ସାମାଜିକ ଅସୁବିଧାର ସମ୍ମୁଖୀନ ହୁଏ ନାହିଁ, କିନ୍ତୁ ମାନବ ଶିଶୁର ଚିକିତ୍ସା ଭାର ଗ୍ରହଣ କରିଥିବା ଡ଼ାକ୍ତର ପକ୍ଷେ ସେପରି କିଛି କରିପାରିବା କେବଳ ଦୋଷାବହ ନୁହେଁ, ତାହା ମଧ୍ୟ କରିବା ଅସମ୍ଭବ ।

ଆମ ନୂଆ ମେଡ଼ିକାଲ କଲେଜରେ ସେତେବେଳକୁ ଶିଶୁ ବିଭାଗ ଖୋଲି ନ ଥାଏ କି ଓଡ଼ିଶାରେ ଶିଶୁରୋଗ ବିଶେଷଜ୍ଞ କେହି ନଥା'ନ୍ତି । ତେଣୁ ଘରୋଇ ଚିକିତ୍ସା କରୁଥିବା ସାଧାରଣ ଡ଼ାକ୍ତରଙ୍କୁ ଶିଶୁକୁ ମଧ୍ୟ ଚିକିତ୍ସା କରିବାକୁ ହୁଏ । ତେଣୁ ମୋତେ ମଧ୍ୟ ଶିଶୁକୁ ଚିକିତ୍ସା କରିବାକୁ ପଡ଼ିଲା । ଶିଶୁକୁ ବୁଝାଇ ସୁଝାଇ କାନ୍ଦ ବନ୍ଦକରି ବିଶ୍ୱାସ ଅଣାଇ ହସାଇବା ପରେ ତା'ଠାରେ ଔଷଧ ଇଞ୍ଜେକ୍‌ସନ ପ୍ରଭୃତି ଅତି ସାବଧାନତା ସହିତ ପ୍ରୟୋଗ କରିବାକୁ ହୁଏ । ସେଥିପାଇଁ ପିଲାମାନଙ୍କୁ ସସ୍ନେହ ଦୃଷ୍ଟିରେ ଦେଖି ମନଭୁଲାଣିଆ ଗପ କହି ଆକୃଷ୍ଟ କରିବାକୁ ପଡ଼େ । ସେମାନଙ୍କ ମନ ଭୁଲାଇ ସେମାନଙ୍କୁ ନିଜର କରିନେବାରୁ ଅନେକ ଶିଶୁ ମୋତେ ନିଜର ସଙ୍ଗୀ ବୋଲି ମନେ କରୁଥିଲେ । ବହୁ ଶିଶୁ କନ୍ୟା ମୋତେ ସଙ୍ଗାତ ଓ ଅନେକ ପୁରୁଷ ଶିଶୁ ମୋତେ ମୈତ୍ର ବୋଲି ସମ୍ବୋଧନ କରୁଥିଲେ । ସେମାନଙ୍କ ଭିତରୁ ବହୁ ବର୍ଷ ବିତିଯାଇଥିଲେ ମଧ୍ୟ କେତେକଙ୍କ ସଙ୍ଗେ ଏବେ ବି ମୋର ସେହି ସମ୍ବନ୍ଧ ଓ ଡ଼ାକ ରହି ଆସିଛି । ସେମାନଙ୍କ ଭିତରୁ ବାହା ହୋଇ କେହି କେହି 'ମାଆ' ହେଲା ପରେ ମଧ୍ୟ ମୋତେ ଫୋନକରି କହନ୍ତି ''ସଙ୍ଗାତ ମୋ ପୁଅକୁ ଟିକିଏ ଦେଖିବାକୁ ଆସିଲନି ?''

ଶିଶୁର ଶାରୀରିକ ଗଠନ ମଧ୍ୟ ସମ୍ପୂର୍ଣ୍ଣ ହୋଇନଥାଏ । ଅତି ଛୋଟ ଶିଶୁର ସାମନା ଖପୁରୀ ହାଡ଼ଙ୍କ ସନ୍ଧି ସ୍ଥଳ ଟାଣହାଡ଼ ପାଲଟି ନ ଥିବାରୁ ଚମଡ଼ା ତଳେ ସେ ସ୍ଥାନ ହାତକୁ

ଲତପତ ଲାଗେ । ସେହିପରି ସେମାନଙ୍କ ମସ୍ତିଷ୍କର କେତେକ କେନ୍ଦ୍ର ମଧ୍ୟ ପୂର୍ଣ୍ଣତା ଲାଭ କରି ନ ଥାଏ । ତେଣୁ ତାହା ଠିକ୍ ରୂପେ କାର୍ଯ୍ୟ କରିପାରେ ନାହିଁ । ଦୃଷ୍ଟାନ୍ତ-ଜଣେ ଭଦ୍ରବ୍ୟକ୍ତିଙ୍କର ଛୋଟ ଶିଶୁ କନ୍ୟାଟିକୁ ଜ୍ୱର ଆସିବା ସଙ୍ଗେ ସଙ୍ଗେ ତା'ର ଶରୀରର ତାପ ବହୁତ ବଢ଼ିଯାଏ । ମୁଁ ପ୍ରଥମ ଥର ଡ଼ାକରା ପାଇ, ସେପରି ଅତ୍ୟଧିକ ତାପ ଥିବା ସମୟରେ ଶିଶୁଟିର ଜ୍ୱର କମିବା ଔଷଧ ଦେଇ ଘରକୁ ଫେରିଆସିବା ସଙ୍ଗେ ସଙ୍ଗେ ସେ ରୋଗୀର ତାପ ପୂରା କମିଯାଇ ଦେହ ହାତ ଥଣ୍ଡା ହୋଇ ସେ ସନ୍ନିପାତ ଅବସ୍ଥାକୁ ଆସିଯାଇଥିବା ଖବର ପାଇ ପୁଣି ତା' ନିକଟକୁ ଦଉଡ଼ିଲି । ମୋ ଚିକିତ୍ସା ପରେ ପରେ ତା'ର ଶରୀରର ତାପ ଜୋରରେ ଉପରକୁ ଉଠିବାକୁ ଲାଗିଲା । ଏହିପରି ତା'ର ଶରୀରର ତାପ ତଳକୁ ପଡ଼ିବା ଓ ଉପରକୁ ଉଠୁଥିବା ଯୋଗୁଁ ତା'ର ଜ୍ୱର ହେବା ମାତ୍ରେ ତାକୁ ଜଗିରହିବାକୁ ପଡ଼େ, ଔଷଧ ପ୍ରୟୋଗରେ ମଧ୍ୟ ସାବଧାନତା ଅବଲମ୍ବନ କରାଯାଏ । ସେହି ଛୋଟ ପିଲାଟିର ମସ୍ତିଷ୍କର ତାପ ନିୟନ୍ତ୍ରଣ କେନ୍ଦ୍ର ଦୃଢ଼ ହୋଇ ନ ଥିବାରୁ ସେପରି ଘଟୁଥିଲା । ଏହିପରି ଅନ୍ୟ ଶିଶୁମାନଙ୍କର ଶରୀରରେ ମଧ୍ୟ ନାନା ଉପସର୍ଗ ଦେଖାଯାଉଥିବାର ଅଭିଜ୍ଞତା ମୋତେ ଅର୍ଜନ କରିବାକୁ ପଡୁଥିଲା ।

ଛୋଟ ପିଲାଙ୍କର କାଛୁକୁଣ୍ଡିଆ ପ୍ରଭୃତି ଚର୍ମ ରୋଗ ଯୋଗୁଁ ବୃକକ୍ ବା କିଡ୍‌ନି ଉପରେ ପ୍ରଭାବ ପଡ଼ି ନେଫ୍ରାଇଟିସ୍ ରୋଗ ଜାତ ହେବା, କୃମି ରୋଗରୁ ଝାଡ଼ା ଓ ଅନ୍ତନାଳୀର ବାଟ ରୁଦ୍ଧ ଯୋଗୁଁ ପେଟମରା ରୋଗ ସବୁ ଦେଖାଯାଏ । ମୁଁ ଚିକିତ୍ସା ଆରମ୍ଭ କରୁ କରୁ ମୋର କେତେକ ବନ୍ଧୁଙ୍କ ଘର ଶିଶୁଙ୍କ ଦାୟିତ୍ୱ ମୋ ଉପରେ ସମ୍ପୂର୍ଣ୍ଣ ନ୍ୟସ୍ତ ହୋଇଥିଲା । ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି ମୋର ଜଣେ ଆତ୍ମୀୟ ବନ୍ଧୁ ଥିଲେ । ସେ ଚାକିରି ଛାଡ଼ି ରାଜନୀତିରେ ଯୋଗ ଦେଇ ସେହି ସମୟରେ ଅଧିକାଂଶ ସମୟ କଟକ ବାହାରେ କଟାଉଥିଲେ । ସୁରେନ୍ଦ୍ର ବାବୁ ଗଡ଼ଜାତର ନୂତନ ରାଜନୈତିକ ଦଳର ସାଙ୍ଗଠନିକ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ତାଙ୍କର ଆର୍ଥିକ ଅବସ୍ଥା ଭଲ ନ ଥିଲା । ଗୋଟିଏ ଛୋଟ ଭଡ଼ା ଘରେ ତାଙ୍କ ପରିବାର ରହୁଥିଲେ । ତାଙ୍କର ପିଲାମାନେ ସବୁବେଳେ ରୋଗଗ୍ରସ୍ତ ଥିଲେ । ତାଙ୍କର ଶିଶୁ ବଡ଼ ପୁଅଟି ଅତ୍ୟନ୍ତ ଅସୁସ୍ଥ ଥିଲା । ଚିକିତ୍ସା ଫଳରେ ''ଡ଼ୋଳେପି ଦଣ୍ଡେ ଜୀ'' ପରି ସେ ବଞ୍ଚି ରହିଥିଲା । ମୁଁ ତାକୁ ଏକ ପ୍ରକାର ଜଗି ରଖିଥିଲି । ମୋର ଆମେରିକା ଯିବାର ଅଳ୍ପଦିନ ପରେ ସେ ସଂସାର ଛାଡ଼ି ଚାଲିଯାଇଥିଲା ।

## ଆମେରିକା ଟ୍ରେନିଂ ପ୍ରସ୍ତାବ :

ଆମେ ଦିଲ୍ଲୀକୁ ଦରଖାସ୍ତ କରିବାର ବହୁଦିନ ପରେ ହଠାତ୍ ଇଣ୍ଟରଭିଉ ପାଇଁ ଡ଼ାକରା ଆସି ପହଞ୍ଚିଲା । ମୋର ଉପରବ୍ୟାଚର ଦରଖାସ୍ତକାରୀଙ୍କ ଭିତରୁ କେତେଜଣଙ୍କ ସଙ୍ଗେ ମୋତେ ମଧ୍ୟ ଇଣ୍ଟରଭିଉ ପାଇଁ ଚିଠି ମିଳିଲା । ମୋର

ଇଣ୍ଟରଭିଉର ଆଶା ଯାହା ହେଉ ନହେଉ ଆଠ ଦଶ ସାଥୀଙ୍କୁ ନେଇ ଦିଲ୍ଲୀରେ ରଖାଇ ଇଣ୍ଟରଭିଉ ଦିଆଇବାର ଦାୟିତ୍ୱ ମୋ ଉପରେ ପଡ଼ିବାରୁ ମୁଁ ପ୍ରଥମେ ବିବ୍ରତ ହୋଇପଡ଼ିଲି । ସେ ସମୟରେ ମୋତେ ସାହାଯ୍ୟ କରିବା ପାଇଁ ଆମ ପ୍ରେସ ପଛପଟ ପଡ଼ିଆରେ ଶାଖା ବସାଉଥିବା 'ରାଷ୍ଟ୍ରିୟ ସ୍ୱୟଂ ସେବକ ସଂଘ'ର ଚାଳକ ବ୍ରହ୍ମଚାରୀ ବାବୁ ରାଓ ପଲ୍‌ଧିକର ମୋତେ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ । ସେ ତାଙ୍କର ଦିଲ୍ଲୀର ସଂଘ ଅଫିସକୁ ଲେଖାଲେଖି କରି ତାଙ୍କ ସବଜିମଣ୍ଡି କାର୍ଯ୍ୟାଳୟ ଭବନରେ ଆମେ ରହିବା ପାଇଁ ବ୍ୟବସ୍ଥା କରିଦେଲେ ।

ଆମେ ଦିଲ୍ଲୀ ଯାଇ ୨୧.୨.୫୧ ରେ ଆଇ.ଏମ.ଏସ. ଦରିଆଗଞ୍ଜ ଅଫିସ କୋଠାରେ ଇଣ୍ଟରଭିଉ ପରୀକ୍ଷା ଦେଇସାରି ଦିନେ ଦୁଇଦିନ ଦିଲ୍ଲୀରେ ବୁଲାବୁଲି କରି କଟକ ଫେରିଲୁ । ମୁଁ ଇଣ୍ଟରଭିଉରେ କୃତକାର୍ଯ୍ୟ ହୋଇ ଆମେରିକା-ନିଉୟର୍କ ସ୍ଥିତ ବ୍ରୋନକ୍ସ ହସପିଟାଲରେ ପାଥୋଲଜିରେ ରେସିଡ଼େନ୍ସି ମିଳିଛି ବୋଲି ମାର୍ଚ୍ଚ ୨୬ ତାରିଖରେ ଚିଠିପାଇଲି । ମୁଁ ଏକ୍ସଚେଞ୍ଜ ଭିଜିଟର ସ୍କିମରେ ଯିବାର ଥିବାରୁ ସେଠାରେ ପହଞ୍ଚିବା ପରେ ସେ ଅନୁଷ୍ଠାନରୁ ମୋତେ ଛାତ୍ରଭତ୍ତା ପ୍ରଭୃତି ମିଳିବାର ଓ ବାଟ ଖର୍ଚ୍ଚ ନିଜ ସରକାର ଯୋଗାଇ ଦେବାର କଥା ଥିଲା । ମୋର ବାଟ ଖର୍ଚ୍ଚ ପାଇଁ ମୁଁ ସ୍ୱାସ୍ଥ୍ୟବିଭାଗକୁ ଦରଖାସ୍ତ କରିବାରେ ଡ଼ିରେକ୍ଟର ସେଥିପାଇଁ ପାଞ୍ଚହଜାର ଏକ ଶହ ଟଙ୍କା ସୁପାରିଶ କରିଥିଲେ ।

ମୁଁ ଆମେରିକା ଯିବା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ସେ ଚିଠିର ତିନି ସପ୍ତାହ ପରେ ଦିଲ୍ଲୀ ଦପ୍ତରରୁ ଯେଉଁ ଚିଠି ଆସିଲା ସେଥିରେ ମୋ ନାମ ନ ଥିଲା । ବୋଧ ହୁଏ ସେତେବେଳକୁ ମୋର ବର୍ଷକ ତାଲିମ ସମ୍ପୂର୍ଣ୍ଣ ହୋଇନଥିବାରୁ ମୋ ନାମ ସେ ତାଲିକାରେ ଛପା ଯାଇ ନଥିଲା । ଏହି ସମୟରେ ଆମେରିକାର ସାମରିକ କର୍ତ୍ତା ଜେନେରାଲ ମାର୍କ ଅର୍ଥରଙ୍କର ପୂର୍ବ ଭୂଖଣ୍ଡରେ ଜାପାନ ପ୍ରଭୃତି ଦେଶ ସହିତ କିଛି ଗଣ୍ଡଗୋଳ ଉପୁଜିବାରୁ ଓ ସଂଘର୍ଷର ସମ୍ଭାବନା ଥିବାରୁ ଆମେରିକା ଅନ୍ୟଦେଶରୁ ଶିକ୍ଷାର୍ଥୀ ଗ୍ରହଣ କରିବା ବନ୍ଦ ହୋଇଗଲା । ତା' ଫଳରେ ମୋ ସଙ୍ଗେ ଯେଉଁ ଅନ୍ୟ ଦୁଇଜଣ ଓଡ଼ିଆ ସାଥୀଙ୍କର ଯିବାର ଥିଲା ସେମାନଙ୍କର ମଧ୍ୟ ଆମେରିକା ଯିବା ବନ୍ଦ ହୋଇଗଲା । ତା' ଯୋଗୁଁ ମୁଁ ଆପାତତଃ ଅପଦସ୍ତ ହେବାରୁ ରକ୍ଷାପାଇଗଲି । ବାଙ୍କୁ ବାଙ୍କୁ ବାଜି ଯାଉପାରେ ନୀତିରେ ମୁଁ ଆମେରିକାର ଉଚ୍ଚଶିକ୍ଷା ପାଇଁ ଦରଖାସ୍ତଟିଏ ପକାଇ ଦେଇଥିଲି । ତାହା ନ ହେବାରୁ ଉଚ୍ଚଶିକ୍ଷା ପାଇଁ ବ୍ୟାକୁଳ ନ ହୋଇ ପାଥୋଲଜି ରିସର୍ଚ୍ଚ ଓ ଘରୋଇ ଚିକିତ୍ସାରେ ମନୋନିବେଶ କରିଥିଲି ।



# ଆମେରିକା ଯାତ୍ରାର ପ୍ରସ୍ତୁତି

ଆମେରିକାରେ ଉଚ୍ଚ ଶିକ୍ଷା ପାଇଁ ଆଶା ସେହି ୧୯୫୧ ବର୍ଷର ଶେଷ ବେଳକୁ ଫଳବତୀ ହେବାକୁ ବସିଲା । ହଠାତ୍ ପୂର୍ବରୁ ବଛା ହୋଇଥିବା ଆମ ୩ ଜଣ ଓଡ଼ିଆ ଡ଼ାକ୍ତରଙ୍କୁ ଆମେରିକା ଯିବା ପାଇଁ ଅନୁମତି ମିଳିଥିବା ଖବର ଆସି ପହଞ୍ଚିଲା । ଶୈକ୍ଷ୍ୟ ତାଲିକା ପାଇଁ ନିଉୟର୍କର ମାଉଣ୍ଟ ସିନାଇ ହସପିଟାଲରେ ଗାନ୍ଧି (ଆଦିତ୍ୟ ନାରାୟଣ ବର୍ମା) ଓ ଉଦୟ (ଉଦୟ ନାଥ ଦାଶ) ଙ୍କୁ ନିଯୁକ୍ତି ମିଳିଥିଲା । ମୁଁ ପାଥୋଲଜିରେ ନିଉୟର୍କ ବ୍ରୋନକସ୍ ହସପିଟାଲରେ ନିଯୁକ୍ତି ପାଇଥିଲି ଓ ଆମକୁ ଯଥାଶୀଘ୍ର ଯାଇ ୧୯୫୨ ଜାନୁଆରୀ ପହିଲାରେ ନିଜ ନିଜ କାର୍ଯ୍ୟରେ ଯୋଗ ଦେବାକୁ ନିର୍ଦ୍ଦେଶ ଆସିଥିଲା ।

ଗାନ୍ଧି ଓ ଉଦୟ ସରକାରୀ ଚାକିରି ପାଇ ସାରିଥିବାରୁ ସରକାରୀ ଖର୍ଚ୍ଚରେ ଡ଼େପୁଟେସନରେ ଉଡ଼ାଜାହାଜ ଯୋଗେ ଯିବା ସେମାନଙ୍କର ଅସୁବିଧା ହେଲା ନାହିଁ । ମୋର ଚାକିରି ନଥିଲା, ବାହାର ଛାତ୍ର ଭାବରେ ସରକାରୀ ଋଣ ପାଇଁ ମୁଁ ଦରଖାସ୍ତ କରିଥିବା ସୁପାରିଶ୍ କାଗଜ ଖଣ୍ଡି ନାଲି ଫିତା ଭିତରେ କେଉଁଠି ହଜି ଯାଇଥିଲା ।

ମୁଁ ବହୁ ଚେଷ୍ଟା ପରେ ସେ ଖଣ୍ଡିକ ଠାବ କରାଇ ତତ୍କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ସଙ୍ଗେ ସାକ୍ଷାତ କଲି । ପଣ୍ଡିତ ଲିଙ୍ଗରାଜ ଆମ ଗ୍ରାମର ଲୋକ ଓ ପିତାଙ୍କର ପୂର୍ବତନ କନିଷ୍ଠ ସହକର୍ମୀ । ସେ କଂଗ୍ରେସ ଦଳ ପକ୍ଷରୁ ମନ୍ତ୍ରୀ ଥାଆନ୍ତି କିନ୍ତୁ ସେ ସମୟରେ ମୋର ପିତା କଂଗ୍ରେସ ବିରୁଦ୍ଧରେ ସତ୍ୟବାଦୀରୁ ନିର୍ବାଚନ ଲଢ଼ିବା ପାଇଁ ବାହାରିଥାଆନ୍ତି । କାରଣ ପୂର୍ବ ମତଭେଦ ଯୋଗୁଁ ପୂର୍ବଥର ନିର୍ବାଚନ ପାଇଁ ସେ କଂଗ୍ରେସ ଟିକଟ ନପାଇ ନିରବ ରହିଥିଲେ ।

ମୁଁ ମନ୍ତ୍ରୀଙ୍କୁ ଦେଖା କରି ମୋର ଦରଖାସ୍ତରେ ଡ଼ିରେକ୍ଟର ପାଞ୍ଚହଜାର ଟଙ୍କା ସରକାରୀ ଋଣ ସୁପାରିଶ କରିଥିବା ଜଣାଇଲି ଓ ତାହା ଶୀଘ୍ର ମିଳିବା ପାଇଁ ବ୍ୟବସ୍ଥା କରିବାକୁ ଅନୁରୋଧ କଲି । ମନ୍ତ୍ରୀ ମୋ ଦରଖାସ୍ତ ମଗାଇ ତାହା ଦେଖିବା ପରେ, ଉଡ଼ାଜାହାଜରେ ନ ଯାଇ ପାଣି ଜାହାଜରେ ଗଲେ କେତେ ଲାଗିବ ବୋଲି ମୋତେ ପଚାରିଲେ । ମୁଁ ଉଡ଼ାଜାହାଜ ଓ ପାଣି ଜାହାଜର କାଗଜପତ୍ର ସବୁ ମଗାଇ ରଖିଥିଲି । ପାଣି ଜାହାଜ କମ୍ପାନୀରୁ ଆସିଥିବା କାଗଜ ତାଙ୍କ ହାତକୁ ବଢ଼ାଇ ଦେଲି । ସେ ସବୁ ରେଟ୍ ଦେଖି ଦେଖି ସର୍ବନିମ୍ନ ରେଟଟି ଉପରେ ତାଙ୍କ ଆଖି ପଡ଼ିଲା । ତାହା ଥିଲା

ଜାହାଜ ଡେକ ଉପରେ ଥିବା ସିଟ୍‌ର ରେଟ୍ ମାତ୍ର ଟ.୧୭୦୦ । ସେ ମୋ ମୁହଁକୁ ଚାହିଁ କହିଲେ ପାଞ୍ଚ ହଜାର ହେଲେ ମଞ୍ଜୁର ନ ହୋଇପାରେ ତେଣୁ ମୁଁ ସତର ଶହ ଟଙ୍କା ଋଣ ପାଇଁ ସୁପାରିଶ୍ କରି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇ ଦେଉଛି । ତୁମେ ଯାଅ ! ଡେକ କଅଣ, କାବିନ କଅଣ ମୋର ଧାରଣା ନ ଥିଲା । ଡେକ ଉପରେ କୁଲି ପରି ଯିବା ଆଦୌ ମୋ ପକ୍ଷରେ ସମ୍ଭବ ନ ଥିଲା, ତଥାପି ଚୋରଠାରୁ ବିଧାଏ ମିଳିବା ନ୍ୟାୟରେ ସରକାରଙ୍କଠାରୁ ସେତକ ମିଳିବାର ଆଶାକରି ଫେରିଲି । ସେ ମନ୍ତ୍ରୀମଣ୍ଡଳ ମୋତେ ସାହାଯ୍ୟ କରିବକି ନାହିଁ ମୂଳରୁ ମୋର ସନ୍ଦେହ ରହିଥିଲା, ତେଣୁ ଯାହା ମିଳିବ ତାହା ସହିତ ଆଉ କିଛି ମୋ ଡ଼ାକ୍ତରୀ ଦୋକାନର ଜିନିଷପତ୍ର ବିକ୍ରୀରୁ ଯୋଗାଡ଼କରି ଜାହାଜରେ ଅନ୍ତତଃ ଗୋଟିଏ ଚାରି ଛଅ ଜଣିଆ କ୍ୟାବିନରେ ଯିବା ପାଇଁ ଚିନ୍ତା କଲି ।

ବିଦେଶ ଯାତ୍ରା ପାଇଁ ପାସ୍‌ପୋର୍ଟ, ଭିସା ଓ ଜାହାଜ ଟିକଟ ପ୍ରଭୃତିର ଯୋଗାଡ଼ କରିବା ପାଇଁ ମୋତେ କଲିକତା ଦିଲ୍ଲୀ ପ୍ରଭୃତି ଦଉଡ଼ା ଦଉଡ଼ି କରିବାକୁ ପଡ଼ିଲା । ଜାହାଜ କମ୍ପାନୀ ସହିତ ସାକ୍ଷାତ କରିବାକୁ ମୁଁ ଦିଲ୍ଲୀ ଯାଇଥିବା ସମୟରେ ହଠାତ୍ ଆମ ହସ୍‌ପିଟାଲ ସୁପରିନ୍‌ଟେଣ୍ଡେଣ୍ଟ ଡ଼ାକ୍ତର କାଶୀନାଥ ମିଶ୍ରଙ୍କ ଜରିଆରେ ଦିଆଯାଇଥିବା ଏକ ସରକାରୀ ଚିଠି ପାଇଲି । ସେ ଚିଠିଟି ପଢ଼ି ହଠାତ୍ ହତ୍‌ବାକ୍ ହୋଇଗଲି । ସେଥିରେ ମନ୍ତ୍ରୀମଣ୍ଡଳର କ୍ୟାବିନେଟ୍ ଡ଼ିସିସନ ଭାବେ ଲେଖାଥିଲା 'ଏହି ଡ଼ାକ୍ତରଙ୍କ ପିତା ଧନୀ ଥିବାରୁ ଏହାଙ୍କୁ କୌଣସି ସରକାରୀ ସାହାଯ୍ୟ ମିଳିବ ନାହିଁ ।' ସେହି ମନ୍ତ୍ରୀମଣ୍ଡଳର ସେପରି ପ୍ରତିହିଂସାପରାୟଣ ଭାବ ଦେଖି ମୋ ମନରେ କ୍ଷୋଭ ଜାତ ହେଲା । ସେ ଯାହାହେଉ ମୁଁ ସେଥିରେ ଦବି ନ ଯାଇ ଆମ ଦିଲ୍ଲୀ ଅଫିସକୁ ଯାଇ ମୋର ଆର୍ଥିକ ଅସୁବିଧା କଥା ଜଣାଇ, ମୋ ପାଇଁ ଅନୁଗ୍ରହ କରି ଆଉ କେତେ ମାସ ସେଠାରେ ମୋ ଯୋଗ ଦେବାର ସମୟ ବଢ଼ାଇ ଦେବା ପାଇଁ ଆମେରିକାର ସେ ଅନୁଷ୍ଠାନକୁ ଅନୁରୋଧ କରିବାକୁ କହିଲି ।

ସେ ସରକାରୀ ଚିଠିର ଉତ୍ତରରେ ମୁଁ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜଙ୍କ ନିକଟକୁ ଦିଲ୍ଲୀରୁ ଲେଖିଥିଲି- ''ଆପଣ ମୋର ଗୁରୁଜନ, 'ନନା'ଙ୍କ ଉପରେ ରାଗ ସୁଝାଇବାକୁ ଆପଣ ମୋତେ ମାଧ୍ୟମ କରିବା କେତେଦୂର ସମୀଚିନ ତାହା ଆପଣ ଉପଲବ୍‌ଧି କରିବା ଉଚିତ ! ଆପଣ ଆମ ଗ୍ରାମର ଲୋକ, ଆପଣଙ୍କ ଅନ୍ତରଙ୍ଗ ବନ୍ଧୁ ଓକିଲ ହରିହର ଦାସଙ୍କ ଠାରୁ ବାର ପରସେଣ୍ଟ ସୁଧରେ ତିନିହଜାର ଟଙ୍କା କରଜ କରି ନନା ନିର୍ବାଚନ ଲଢ଼ୁଥିବାର ଆପଣଙ୍କୁ ଅଜଣା ନାହିଁ । ମୁଁ ଆପଣଙ୍କ ପୁତ୍ର ତୁଲ୍ୟ । ଆପଣ ମୋତେ ସିଧା ମନା

କରିଦେଇ ପାରିଥାଆନ୍ତେ । ତା' ନକରି ଏପରି ଅସୌଜନ୍ୟ ମନ୍ତବ୍ୟ ଦେଇ ସାମାନ୍ୟ କେତେଟା ଟଙ୍କା ମଧ୍ୟ ଶେଷ ମୁହୂର୍ତ୍ତରେ କାଟି ଦେଇ ମୋତେ ଏପରି ହିନସ୍ତା ଓ ଅପଦସ୍ତ କରିବାରେ ଆପଣ କି ଆତ୍ମସନ୍ତୋଷ ପାଇଲେ ?''

ମୁଁ ମନସ୍ତାପ ଘେନି ସିଧା ଗ୍ରାମକୁ ଫେରିଲି । ମୋର ନନା (ପିତା) ନୀଳକଣ୍ଠ ଗ୍ରାମରେ ରହି ତାଙ୍କ ନିର୍ବାଚନ କାର୍ଯ୍ୟ ଆରମ୍ଭର ଯୋଜନା କରୁଥିଲେ । ସେ ଓଡ଼ିଶା କଂଗ୍ରେସର ଏକ ପ୍ରକାର ଭଗିରଥ ଓ ଜାତୀୟ ଆନ୍ଦୋଳନର ଜଣେ ପ୍ରଧାନ ପୁରୋଧା ଥିଲେ ମଧ୍ୟ ବିପ୍ଲବୀ ସୁଭାଷ ପକ୍ଷୀ ଭାବରେ କଂଗ୍ରେସରୁ ଓହରି ଯାଇଥିଲେ । ତେଣୁ ତାଙ୍କ ପୁରାତନ କର୍ମୀମାନେ ସମସ୍ତେ ତାଙ୍କ ବିରୁଦ୍ଧରେ ନିର୍ବାଚନ ପ୍ରଚାର ଚଳାଇଥିଲେ । ତେଣୁ ସେ କେବଳ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇ ନ ଥିଲେ, ସେ କର୍ମୀ ଅନାଟନ ଭିତରେ ମଧ୍ୟ ଗତି କରୁଥିଲେ ।

ମୁଁ ସରକାରୀ ସାହାଯ୍ୟ ନ ପାଇ ଆମେରିକା ଯିବା ବାଧା ପଡ଼ିବାରେ ସେ ଯେତେ ଦୁଃଖିତ ନ ହେଲେ ସରକାରୀ ଚିଠିରେ ତାଙ୍କ ପୂର୍ବତନ ସହକର୍ମୀଙ୍କ ମନ୍ତବ୍ୟରେ ତାଠାରୁ ବେଶୀ ମର୍ମାହତ ହେଲେ । ଏହା ଭିତରେ ମୁଁ ଓ ପିତା ଦୁହିଁଙ୍କ ଅନୁପସ୍ଥିତି ସମୟରେ ମୋ ଦିଲ୍ଲୀ ଚିଠି ପାଇ ସୁଧୀ ଲିଙ୍ଗରାଜ ସିଧା ଆମ ଘରକୁ ଆସି ମୋର ବୋଉ ଓ ଭାର୍ଯ୍ୟାଙ୍କୁ କହିଲେ ''ମୁଁ ବିକ୍ରମ ଚିଠି ପାଇଛି, ସେ ବଡ଼ ବ୍ୟସ୍ତ ହୋଇ ପଡ଼ିଛି । ସେ କିଛି ହେଲେ ପାଉ ବୋଲି ମୁଁ ପାଞ୍ଚ ହଜାର ସ୍ଥାନରେ ମାତ୍ର ସତର ଶହ ସୁପାରିଶ କରିଥିଲି । ତା' ମଧ୍ୟ ରହିଲା ନାହିଁ । ମୋର ଯିବା ଆସିବା ବେଳେ ନୂଆ ନିର୍ବାଚନ ହେଉଛି । ମୁଁ ବିଧାନ ସଭାକୁ ପ୍ରତିଦ୍ୱନ୍ଦ୍ୱିତା କରୁନାହିଁ ତେଣୁ ସୁବିଧା ଦେଖି ମୁଖ୍ୟମନ୍ତ୍ରୀ ମୋ ଗାଲକୁ ଚାପୁଡ଼ାଟାଏ ମାରିଲେ । ଏପରି ପରିସ୍ଥିତିରେ ମୁଁ କଅଣ ବା କରିପାରନ୍ତି ?''

ଆମେ ସେସବୁ ଘରକୁ ଆସି ଶୁଣିଲୁ । ମୋର ପିତା ମୋତେ କହିଲେ ''ଯେଉଁ କାରଣରୁ ହେଉ ଆପାତତଃ ତୋର ଆମେରିକା ଯିବା ବନ୍ଦ ହେବାରୁ, ମୋର କର୍ମୀର ଅଭାବ ବେଳେ ତୁ ମୋତେ ସାହାଯ୍ୟ କରି ପାରିବୁ । ତୁ ନିର୍ବାଚନ ସଙ୍ଗଠନର ଦାୟିତ୍ୱ ଗ୍ରହଣ କର ।''

ମୁଁ ଯଦି ନିର୍ବାଚନ ଜିତେ ତେବେ ମୋତେ ଧାର ମିଳିବ । ମୁଁ କେଉଁଠୁ ହେଲେ ଧାର ଉଧାର କରି ତୋତେ ଆମେରିକା ଯିବାରେ ସାହାଯ୍ୟ କରିପାରିବି । ନୀଳକଣ୍ଠ ୧୯୨୪ରୁ କେନ୍ଦ୍ର ଆସେମ୍ବ୍ଲିକୁ ସମଗ୍ର ଓଡ଼ିଶାର ସୀମିତ ନିର୍ବାଚନ ମଣ୍ଡଳୀରୁ ବହୁବାର ନିର୍ବାଚନ ଲଢ଼ି କେନ୍ଦ୍ର ଆସେମ୍ବ୍ଲିର ସଦସ୍ୟ ହୋଇ ରହି ଆସିଥିଲେ ମଧ୍ୟ ସେ ବିଧାନସଭା ପାଇଁ କେବେ ନିର୍ବାଚନ ଲଢ଼ିନଥିଲେ । କେନ୍ଦ୍ର ଆସେମ୍ବ୍ଲି ନିର୍ବାଚନ ବେଳେ ଭୋଟରମାନେ ତାଙ୍କ ନାମ ଶୁଣିବା ମାତ୍ରେ ସ୍ୱଇଛାରେ ତାଙ୍କୁ ଭୋଟ ଦେଉଥିଲେ । ସେଥିପାଇଁ ତାଙ୍କୁ କାହାର

ଦ୍ୱାରସ୍ଥ ହେବାକୁ ପଡୁନଥିଲା । ବିଧାନ ସଭା ସାବାଲକ ନିର୍ବାଚନ ଅନ୍ୟ ପ୍ରକାର ଥିଲା । ସେ ୧୯୩୬ ରେ କଂଗ୍ରେସ ସଭାପତି ଭାବରେ ସମଗ୍ର ଓଡ଼ିଶାର ବିଧାନ ସଭା ନିର୍ବାଚନ ପରିଚାଳନା କରି କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାଇଥିଲେ । ସେତେବେଳେ ତାଙ୍କର କର୍ମୀଙ୍କ ଅଭାବ ନ ଥିଲା ।

ମୁଁ ତା' ପରେ କଟକ ଯାଇ ମୋ କ୍ଲିନିକସ ବନ୍ଦ କରାଇ ନୀଳକଣ୍ଠଙ୍କ ଫଟୋଥାଇ ଗୋଟିଏ ଛୋଟିଆ ପ୍ରଚାରପତ୍ର ଛପାଇ ଆଣିଲି । ମୋର ମାଟ୍ରିକ ପଢ଼ା ବେଳର ଲୋକ ସମ୍ପର୍କ - ଯାତ୍ରା, ସତ୍ୟବାଦୀ ସ୍କୁଲର ନାନା ଗ୍ରାମର ସ୍କୁଲ ସାଥୀ ପ୍ରଭୃତିଙ୍କ ଯୋଗୁଁ ସତ୍ୟବାଦୀରେ ବହୁ ଗ୍ରାମର ଯୁବକମାନଙ୍କ ସହିତ ମୋର ପ୍ରତ୍ୟେକ୍ଷ ସମ୍ବନ୍ଧ ରହିଥିଲା । ସେସବୁ ଆମ ନିର୍ବାଚନ ସଙ୍ଗଠନ ଓ ପ୍ରଚାରରେ ବହୁ ଭାବରେ ସାହାଯ୍ୟ କଲା ।

ମୁଁ ସାଇକଲ ବା ପଦବ୍ରଜରେ ଗାଁକୁ ଗାଁ ବୁଲି ପ୍ରଚାର ଆରମ୍ଭ କଲି । ଓଡ଼ିଶାର ପୂର୍ବ ତନ ଅପ୍ରତିଦ୍ୱନ୍ଦୀ ଜନନାୟକ, କଂଗ୍ରେସର କର୍ଣ୍ଣଧାର, ଗୋପବନ୍ଧୁଙ୍କ ପ୍ରଧାନ ସହକର୍ମୀ ପଣ୍ଡିତ ନୀଳକଣ୍ଠ, ସ୍ୱାଧୀନତା ପର ଦୂଷିତ କଂଗ୍ରେସ ଅନୁଷ୍ଠାନର ପୁନଃ ସଂସ୍କାର ପାଇଁ ସେ ଅନୁଷ୍ଠାନର ପ୍ରାର୍ଥୀଙ୍କ ବିରୁଦ୍ଧରେ ନିର୍ବାଚନ ଲଢୁଛନ୍ତି ବୋଲି ଶୁଣିବା ମାତ୍ରେ ପ୍ରତ୍ୟେକ ଗ୍ରାମରୁ ସ୍ୱେଚ୍ଛାସେବୀ ପ୍ରଚାରକ ଦଳ ସ୍ୱତଃପ୍ରବୃତ୍ତ ହୋଇ ହାତରୁ ଖାଇ ନୀଳକଣ୍ଠଙ୍କ ପ୍ରଚାର ପାଇଁ ବାହାରି ପଡ଼ିଲେ । ସେମାନଙ୍କୁ ଘେନି ପ୍ରତ୍ୟେକ ଗ୍ରାମର ପ୍ରଚାର ସମିତି ମାନ ଗଢ଼ି ମୁଁ ସେମାନଙ୍କ ହାତରେ ପ୍ରଚାର ଦାୟିତ୍ୱ ନ୍ୟସ୍ତ କଲି ।

ନୀଳକଣ୍ଠଙ୍କର ମୋଟର ଗାଡ଼ି, ଜିପ୍ ବା ମାଇକ ପ୍ରଭୃତି କିଛି ନ ଥିଲା । ବୟସ ଦୃଷ୍ଟିରୁ ଦ୍ୱାର ଦ୍ୱାର ବୁଲି ସବୁ ଭୋଟରଙ୍କ ଦ୍ୱାରସ୍ଥ ହେବା ମଧ୍ୟ ସମ୍ଭବ ନଥିଲା । ତେଣୁ ପୂର୍ବରୁ ସ୍ଥାନ ନିରୂପଣ କରି ଚାରିପଟ ଗ୍ରାମକୁ ଖବର ଦେଇ ନୀଳକଣ୍ଠଙ୍କୁ ସେ ସଭାକୁ ଶଗଡ଼ ଗାଡ଼ି କିମ୍ବା ସବାରୀରେ ନେବାକୁ ପଡୁଥିଲା । ତାଙ୍କ ଦର୍ଶନ ପାଇଁ ସେ ସଭାମାନଙ୍କରେ ହଜାର ହଜାର ଲୋକ ଆସି ଜୁଣ୍ଡ ହେଉଥିଲେ । ନୀଳକଣ୍ଠଙ୍କର ମାଇକ ନ ଥିଲେ ମଧ୍ୟ ତାଙ୍କ ବଜ୍ର ଗମ୍ଭୀର ସ୍ୱରର ଭାଷଣ ବହୁ ଦୂର ପର୍ଯ୍ୟନ୍ତ ଶୁଣାଯାଇ ଲୋକଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲା । ତାଙ୍କ ସଭାର ଜନ ଗହଳି ଯୋଗୁଁ ମେଳଣ ଭଳି ସେଠାରେ ଉଠା ଦୋକାନ ସବୁ ମଧ୍ୟ ବସି ଯାଉଥିଲା । ଲୋକେ ନୀଳକଣ୍ଠଙ୍କ ସେ ଛୋଟ ପ୍ରଚାରପତ୍ରର ଫଟୋ ନେଇ ନିଜ ଘରେ ଭକ୍ତି ସହିତ ବନ୍ଧାଇ କରି ରଖିଥିଲେ ।

ନିର୍ବାଚନ ସରିଲା ୧୦ ଜାନୁଆରୀ ୧୯୫୨ରେ । ନୀଳକଣ୍ଠ ବିପୁଳ ଭୋଟ ପାଇ ଜୟଯୁକ୍ତ ହୋଇଥିବା ଘୋଷିତ ହେଲା । ମୁଁ ଜାନୁଆରୀରେ ଯୋଗ ଦେବାକୁ ଯାଇ ନ ପାରିବାରୁ ବ୍ରୋନକ୍ସ ହସ୍ପିଟାଲ ନିଯୁକ୍ତି ହରାଇଥିଲି । କିନ୍ତୁ ମୁଁ ନିର୍ବାଚନରେ ବ୍ୟସ୍ତ ଥିବାବେଳେ ମୋତେ ଗ୍ରହଣ କରିବାପାଇଁ ଆଉ କେତେକ ଆମେରିକାନ୍ ହସ୍ପିଟାଲ

ଆଗେଇ ଆସିଥିଲେ । ସମଶୀତୋଷ୍ଣ ଜାଗା ହୋଇଥିବାରୁ ମୁଁ ଆମେରିକାର ଟେନେସୀ ରାଜ୍ୟର ଚାଟାନୁଗା ସହରସ୍ଥିତ ବାରେନେସଏରଲାଙ୍ଗର ହସ୍‌ପିଟାଲର ପାଥୋଲଜି ରେସିଡ଼େଣ୍ଟ ପାଇଁ ଆଗ୍ରହ ପ୍ରକାଶ କରିଥିଲି ଓ ସେମାନେ ୧୯୫୨ର ପ୍ରଥମ ଛଅ ମାସ ଭିତରେ ଯେଉଁଦିନ ଆସିଲେ ମଧ ମୋତେ ଗ୍ରହଣ କରିବେ ବୋଲି ଜଣାଇଥିଲେ । ମୁଁ ସେ ଚିଠିପାଇ ପୁଣି ଆମେରିକା ଯାତ୍ରା ଯୋଗାଡ଼ରେ ଲାଗି ପଡ଼ିଲି ।

ନିର୍ବାଚନ ଫଳ ଘୋଷିତ ହେବା ସଙ୍ଗେ ସଙ୍ଗେ ମୋର ପିତା ମୋ ପାଇଁ କରଜ ଯୋଗାଡ଼ କରିବାକୁ ମୋତେ ସଙ୍ଗରେ ଧରି ତାଙ୍କର କଲିକତାର ପୂର୍ବତନ ବନ୍ଧୁଙ୍କ ନିକଟରେ ପହଞ୍ଚିଥିଲେ । ତାଙ୍କ ସାହାଯ୍ୟରେ ଜଣେ ମାରୁଆଡ଼ି ଭଦ୍ରବ୍ୟକ୍ତି ମୋତେ ବାଟ ଖର୍ଚ୍ଚ ପାଇଁ ତିନି ହଜାର ଟଙ୍କା ଧାର ଦେବାପାଇଁ ପ୍ରତିଶ୍ରୁତି ଦେଲେ । ସେହି ତିନି ହଜାର ଟଙ୍କା ମୋର ପାଣି ଜାହାଜରେ ଟୁରିଷ୍ଟ କ୍ଲାସରେ ଗଲେ ଯଥେଷ୍ଟ ହେବ ବୋଲି ମୁଁ ବୁଝିସାରିଥିଲି । ମୁଁ କଟକ ଫେରି ଫେବୃଆରୀ ୨୮ ତାରିଖରେ ବମ୍ବେ ଛାଡ଼ୁଥିବା ପି ଏଣ୍ଡ ଓ କମ୍ପାନୀର କାର୍ଥେଜ ଜାହାଜରେ ମୋ ପାଇଁ ସ୍ଥାନ ସଂରକ୍ଷଣ କରି ରଖିବା ପାଇଁ ଦିଲ୍ଲୀର କମ୍ପାନୀ ଅଫିସକୁ ଲେଖି ଦେଲି । ପ୍ରାୟ ମାସକ ଭିତରେ ମୋର ପ୍ରସ୍ତୁତ ହେବା କଥା । ମୁଁ ପ୍ରଥମେ ମୋ କ୍ଲିନିକର ଔଷଧ ପତ୍ର ବିକ୍ରୀକରି କିଛି ଅର୍ଥ ଯୋଗାଡ଼ କଲି ।

ଆମେରିକା ଯିବା ପାଇଁ ମୋର ଶୀତ ପୋଷାକ, ଯୋତା, ମୋଜା ଓ ସୁଟ୍‌କେସ୍ ପ୍ରଭୃତି କିଛି ନ ଥିଲା । ନୂଆ ଗରମ ପ୍ୟାଣ୍ଟ-କୋର୍ଟ ପ୍ରଭୃତି ବହୁ ମୂଲ୍ୟବାନ ବସ୍ତୁ, ହଜାର ହଜାର ଟଙ୍କା ଦେଇ କିଣିବା ମୋର ସାଧ୍ୟାତୀତ ଥିଲା । ସେତିକିବେଳେ ମୁଁ ମୋ ସ୍ତ୍ରୀଙ୍କ ବଡ଼ଭାଇଙ୍କ ବିଭାଘର ଉତ୍ସବରେ ଯୋଗ ଦେବା ବେଳେ ସେପରି ସେକେଣ୍ଡ ହ୍ୟାଣ୍ଡ ପୋଷାକର ସନ୍ଧାନ ପାଇଲି ।

ସେ ବିଭାଘରେ କନ୍ୟାର ଗ୍ରାମ ଖଣ୍ଡସାହିର ଶ୍ରୀ ବଂଶୀଧର ମିଶ୍ର ଆସି ଯୋଗ ଦେଇଥିଲେ । ମୁଁ ତାଙ୍କ ବିଷୟରେ ବିଶେଷ କିଛି ଜାଣି ନ ଥିଲେ ମଧ ସେ ବହୁବର୍ଷ ଧରି ବିଲାତରେ ଶ୍ରମିକମାନଙ୍କ ମଧରେ କାର୍ଯ୍ୟକରି ଦେଶକୁ ଫେରିଛନ୍ତି ଓ କଟକରେ ଗରମ ପୋଷକ ଦରକାର ହେଉନଥିବାରୁ ସେସବୁ ବିକ୍ରୀ କରିଦେବା ପାଇଁ ଚାହୁଁଛନ୍ତି ବୋଲି ଶୁଣି ତାଙ୍କ ସଙ୍ଗେ ଆଳାପ କଲି । ସେ ବଡ଼ ଗମ୍ଭୀର ପ୍ରକୃତିର ଅଳ୍ପଭାଷୀ ଲୋକ, ରୋକ ଠୋକ୍ ପଦେ ଅଧେ କଥା କହନ୍ତି । ସେ କହିଲେ ମୋର ଦୁଇଟା ପୁରୁଣା କଳା ଭଲ ପ୍ୟାଣ୍ଟ, ଗୋଟିଏ କୋର୍ଟ ଓ ଗୋଟିଏ କଳା କମ୍ବଳର ମୋଟା ଓଭରକୋଟ ଅଛି,ତୁମେ ଅଢ଼େଇଶ ଟଙ୍କା ଦେଇ ସେସବୁ ନେଇ ପାର । ସେ ଉଚ୍ଚରେ ପ୍ରାୟ ମୋ ଉଚ୍ଚ ସହିତ ସମାନ ଥିଲେ ମଧ ମୋଟାରେ ବହୁ ଅଧିକ ଥିଲେ ।

ସେ ତାଙ୍କ ପୋଷାକ ଆଣି ମୋ ଆଗରେ ଥୋଇଲେ । ତାଙ୍କ ପ୍ୟାଣ୍ଟ ବଡ଼ ଥିଲେ ମଧ ତାହା କାନ୍ଧରେ ଓହଳାଇବା ପାଇଁ ସେଥିରେ ଫିତା ଲାଗିଥିଲା । ସେ ପୋଷାକ

ଅତି ପୁରୁଣା ଥିଲେ ମଧ୍ୟ ଛିଣ୍ଡି ନଥିଲା । ସେ ଯାହାହେଉ ବୃଡ଼ିଯିବା ଲୋକ କୁଟାଖିଅକୁ ଆଶ୍ରା କଲା ଭଳି ମୁଁ ସେସବୁ ମୋ ଦୋକାନ ପଇସାରେ କିଣିନେଲି । ସତ୍ୟବାଦୀ ବଜାରର ବୁଲା ଦର୍ଜୀକୁ ଦେଇ ଅଳ୍ପ ଖର୍ଚ୍ଚରେ ସେ ପ୍ୟାଣ୍ଟ କୋର୍ଟକୁ ଜକାଜକି କରି ସିଲାଇ କରାଇ ମୋ ଦେହକୁ କୌଣସି ପ୍ରକାରେ ଫିଟ କରାଇଲି । ତା'ପରେ ଧୋବାକୁ ଦେଇ ସଫା କରାଇଲି ।

ତାହାକୁ ମୁଁ ଜଣେ କୁଲିର ପୋଷାକ ବୋଲି ଭାବିଥିଲି । ସେ ପୋଷାକର ମାଲିକ ଯେ ମହାନ ବିପ୍ଲବୀ ସ୍ୱାଧିନତା ସଂଗ୍ରାମୀ ଶ୍ରମିକ ନେତା ଶ୍ରୀ ବଂଶୀଧର ମିଶ୍ର ଓରଫ ସୁରତ୍ ଅଲ୍ଲୀ ତାହା ମୁଁ ପରେ ଜାଣିବାକୁ ପାଇଲି ।

## ବିପ୍ଳବୀ ବଂଶୀଧର ମିଶ୍ର :

ଓଡ଼ିଶାରେ ପଣ୍ଡିତ ଗୋପବନ୍ଧୁ ପ୍ରଥମେ କଂଗ୍ରେସ ସଙ୍ଗଠନ ଆରମ୍ଭ କଲାବେଳେ ଉଦୀୟମାନ ଯୁବକ ବଂଶୀଧର ମିଶ୍ର କଟକ କଂଗ୍ରେସ କମିଟିର ସଂପାଦକ ଥିଲେ । କଂଗ୍ରେସ ଆନ୍ଦୋଳନର ଧୀର ଅହିଂସ ନୀତି ତାଙ୍କର ବିପ୍ଳବୀ ମନକୁ ତୃପ୍ତ କରି ରଖି ପାରିଲା ନାହିଁ । ସେ ବଙ୍ଗଳାର ବିପ୍ଳବୀମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲେ । ସେ ବିବାହିତ ହୋଇ ତାଙ୍କର କନ୍ୟା ସନ୍ତାନଟିଏ ଥିଲେ ମଧ୍ୟ ଦେଶ ପ୍ରେମ ଆଗରେ ସଂସାର ମାୟା ତାଙ୍କୁ ଭିଡ଼ିଧରି ରଖିପାରି ନ ଥିଲା । ନିଜର ଜୀବନ ପଣ କରି କଲେବଳେ କୌଶଳେ ଭାରତର ସ୍ୱାଧୀନତା ହାସଲ କରି ଦରିଦ୍ର ଜନତା ମୁଖରେ ହସ ଫୁଟାଇବା ପାଇଁ ସେ ଦୃଢ଼ ପରିକର ଥିଲେ । ସେ ଓଡ଼ିଶାରୁ ଯାଇ ବଙ୍ଗର ବିଖ୍ୟାତ ସରକାରୀ ଅସ୍ତ୍ର ଗୋଦାମ ଲୁଟି ସହିତ ସମ୍ପୃକ୍ତ ହୋଇ ପଡ଼ିଥିଲେ । ଚିଟାଗଙ୍ଗଠାରେ ବ୍ରିଟିଶ ସେନା ଓ ବଂଶୀଧରଙ୍କ ସାଥୀ ବିପ୍ଳବୀମାନଙ୍କ ସହିତ ଖଣ୍ଡ ଯୁଦ୍ଧ ଲାଗି ବହୁ ଲୋକ ମୃତାହତ ହୋଇଥିଲେ । ବଂଶୀଧରଙ୍କ କେତେକ ସାଥୀ ବିପ୍ଳବୀ ଧରାପଡ଼ି କାରାରୁଦ୍ଧ ହୋଇଥିଲେ ।

ବଂଶୀଧର ଆତ୍ମଗୋପନ କରି ଚିଟାଗଙ୍ଗ ବନ୍ଦରରେ ଲାଗିଥିବା ଏକ ବିଦେଶୀ ଜାହାଜରେ କୁଲି କାର୍ଯ୍ୟରେ ଯୋଗ ଦେଇ ନିଜକୁ ସୁରତ ଅଲ୍ଲୀ ବୋଲି ପରିଚିତ କରାଇଲେ । ସେ ସେହି ଜାହାଜରେ ୟୁରୋପ ଆସି ଆନ୍ତର୍ଜାତିକ ଶ୍ରମିକ ସଙ୍ଗଠନରେ ଯୋଗ ଦେବା ପରେ ବିଲାତରେ ଶ୍ରମିକ ସଙ୍ଗଠକ ଭାବେ ବିଲାତ ଓ ୟୁରୋପର ବହୁ ନାମଜାଦା ଶ୍ରମିକ ନେତାଙ୍କ ସହିତ ତାଙ୍କର (ସୁରତ ଅଲ୍ଲୀଙ୍କର) ବନ୍ଧୁତା ସ୍ଥାପିତ ହୋଇଥିଲା ଓ ସେ ନିଜେ ଏକ ନାମଜାଦା ଶ୍ରମିକ ନେତାଭାବେ ଖ୍ୟାତି ଲାଭ କରିଥିଲେ ।

ବଂଶୀଧରଙ୍କ ସାନଭାଇ ପୂର୍ବତନ ସାମ୍ୟବାଦୀ ଏମ. ପି. ଆଡ଼ଭୋକେଟ୍ ଶ୍ରୀନିବାସ ମିଶ୍ର ଏବଂ ତାଙ୍କ ସହଧର୍ମିଣୀ ଓ ପରିବାରର ଲୋକେ ବଂଶୀଧରଙ୍କର ଖବର ନ ପାଇ

ସେ ପୋଲିସ ଗୁଳିରେ କେଉଁ ଅଜ୍ଞାତ ସ୍ଥାନରେ ପ୍ରାଣ ହରାଇ ସାରିଛନ୍ତି ବୋଲି ଧରି ନେଇଥିଲେ । ଏ ଶତାବ୍ଦୀର ତୃତୀୟ ଦଶକରୁ ପ୍ରାୟ ପଞ୍ଚମ ଦଶକ ପର୍ଯ୍ୟନ୍ତ ସେ ଆତ୍ମଗୋପନ କରି ରହିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ତାଙ୍କ ଗ୍ରାମ ଖଣ୍ଡସାହିର ପ୍ରଫେସର ବ୍ରହ୍ମାନନ୍ଦ ମିଶ୍ର ପଦାର୍ଥ ବିଜ୍ଞାନରେ ଉଚ୍ଚ ଶିକ୍ଷା ପାଇଁ ଲଣ୍ଡନ ଯାଇଥିବା ସମୟରେ ହଠାତ୍ ବଂଶୀଧରଙ୍କୁ ଦେଖି ପକାଇଲେ । ସେ ତାଙ୍କୁ ବଂଶୀ ନନା, ବଂଶୀ ନନା ବୋଲି ସମ୍ବୋଧନ କରି ଡ଼ାକିବାରେ ସେ ସେହି ଡ଼ାକକୁ ଭ୍ରୂକ୍ଷେପ ନ କରି ନ ଜାଣିଲା ଭଳି ସେଠାରୁ ଉଠି ଦ୍ରୁତ ଗତିରେ ଚାଲିଯାଇ ଲୋକ ଗହଳରେ ମିଶି ଯାଇଥିଲେ । ସେହି ସ୍ଥାନରେ ତାଙ୍କ ସଙ୍ଗେ ଆଳାପ କରୁଥିବା ଜଣେ ଲୋକ ବଂଶୀ ବାବୁଙ୍କର ସାଥୀ ଥିଲା । ସେ ବ୍ରହ୍ମାନନ୍ଦ ବାବୁଙ୍କୁ କହିଲା ''ଆପଣ ସେ ଭଦ୍ରଲୋକଙ୍କୁ କାହିଁକି ବିରକ୍ତ କଲେ । ସେଥିପାଇଁ ସେ ଏଠା ଛାଡ଼ି ଚାଲିଗଲେ । ସେ କିଏ ବୋଲି ବ୍ରହ୍ମାନନ୍ଦ ବାବୁ ପଚାରିବାରେ, ସେ ପ୍ରଖ୍ୟାତ ଶ୍ରମିକ ନେତା ସୁରତ ଅଲ୍ଲୀ ବୋଲି କହିଲେ । ସେ ଭଦ୍ରଲୋକଙ୍କଠାରୁ ସୁରତ ଅଲ୍ଲୀଙ୍କ ଘରର ଠିକଣା ବୁଝିନେଲେ । ପରେ ବ୍ରହ୍ମାନନ୍ଦ ବାବୁ ସୁରତ ଅଲ୍ଲୀଙ୍କ ଘରକୁ ଯାଇ ତାଙ୍କୁ ସାକ୍ଷାତ୍ କଲେ । ସୁରତ ଅଲ୍ଲୀ ପ୍ରଥମ ପ୍ରଥମରୁ ବାଆଁରେଇ ନିଜର ପରିଚୟ ନ ଦେବା ପାଇଁ ଚେଷ୍ଟା କରୁଥିଲେ ମଧ ଶେଷରେ ସେ ବଂଶୀଧର ମିଶ୍ର ବୋଲି ମାନିଥିଲେ ।

ବ୍ରହ୍ମାନନ୍ଦ ବାବୁ ତାଙ୍କ ଆଗରେ ତାଙ୍କ ସହଧର୍ମିଣୀ ଓ କନ୍ୟାର ଦୁର୍ଦ୍ଦଶା ବର୍ଣ୍ଣନା କଲେ, ସେ ସବୁ ଶୁଣିଲେ ମଧ ବ୍ରିଟିଶ ରାଜତ୍ୱ ଚାଲୁ ରହିଥିବାରୁ ଭାରତରେ ତାଙ୍କ ପରିଚୟ ଜଣାପଡ଼ିଲେ ସେ ଦଣ୍ଡିତ ହେବେ ଜାଣି ସେତେବେଳେ ଭାରତ ଫେରିବା ତାଙ୍କ ପକ୍ଷରେ ଉଚିତ ନୁହେଁ ବୋଲି ବ୍ରହ୍ମାନନ୍ଦ ବାବୁଙ୍କୁ କହିଥିଲେ । ଭାରତ ସ୍ୱାଧୀନ ହେବାର କିଛିକାଳ ପରେ ସେ ଭାରତକୁ ଫେରି ଗ୍ରାମରେ ଆସି ନିରବ ଜୀବନଯାପନ କରି ତାଙ୍କ କାର୍ଯ୍ୟରୁ ସମ୍ପୂର୍ଣ୍ଣ ଅବସର ନେଇଥିଲେ । ସେ ନିଜର ପ୍ରଚାର କରି ଲାଭ ଉଠାଇବା ଭଳି ମତିଗତିର ଲୋକ ନ ଥିଲେ । ସେ ନିଜ ବିଷୟରେ କାହାକୁ କିଛି କହୁନଥିଲେ । ଗ୍ରାମରେ ରହି ଟିଉସନ କରି ନିଜର ଜୀବିକା ନିର୍ବାହ କରୁ ଥିଲେ । ତେଣୁ ସେ ବିଲାତରେ କୁଲିକାମ କରି ନିସ୍ୱ ହୋଇ ଫେରିଥିବା ସେଠା ଲୋକଙ୍କ ଧାରଣା ହୋଇଥିଲା ।

ମୋର ସାଥୀ ଦୁଇଜଣ ନୂଆ ଶୀତ ପୋଷାକ ପିନ୍ଧି ଉଡ଼ାଜାହାଜରେ ଯାଇ ପାରିଲେ ମୁଁ ପୁରୁଣା ପୋଷାକ ଗୁଡ଼ାଇ ହୋଇ ପାଣି ଜାହାଜରେ ଯିବି, ସେ କଥା ବିଚାରି ପ୍ରଥମେ ମୋ ମନରେ କ୍ଷୋଭ ଜାତ ହୋଇଥିଲା । କିନ୍ତୁ ପରେ ସେ ପୋଷାକ ଜଣେ ମହାନ ଦେଶସେବୀ ନେତାଙ୍କର ହୋଇଥିବା ଜାଣି ମୋ ମନରେ ଗର୍ବ ଜାତ ହୋଇଥିଲା । ଭାରତର ମୁକ୍ତି ପାଇଁ ପ୍ରାଣପାତ କରିବାକୁ ଯାଇ କୋଡ଼ିଏ ପଚିଶ ବର୍ଷ ଆତ୍ମଗୋପନ

କରି ଦଳିତ ଶ୍ରମିକମାନଙ୍କ ପାଇଁ କାମ କରି ଚାଲିଥିବା ସେହି ମହାନ ବ୍ୟକ୍ତି ସ୍ୱାଧୀନ ଭାରତରେ ନିଜ ପରିଚୟ ଦେଇଥିଲେ ବହୁ ମାନ ପାଇ ସ୍ୱଚ୍ଛଳ ଜୀବନ ଅତିବାହିତ କରି ପାରିଥାଆନ୍ତେ । କିନ୍ତୁ ନିଜର ତ୍ୟାଗ ପାଇଁ ଫାଇଦା ଉଠାଇବା, ସେ ବିପ୍ଳବୀ ବୀରଙ୍କର ଉଦ୍ଦେଶ୍ୟ ନ ଥିଲା । ତେଣୁ ତାଙ୍କର ପ୍ରକୃତ ପରିଚୟ ପାଇବା କ୍ଷଣି ତାଙ୍କ ପାଦତଳେ ମୋ ମୁଣ୍ଡ ଲଇଁ ଯାଇଥିଲା ।

ଆଉ ଗୋଟିଏ ପାଥେୟ । ମୋତେ ସାତ ବର୍ଷ ହେବା ବେଳେ ୧୯୨୮ରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ତିରୋଧାନ ଘଟିଥିଲା । ତା'ପରେ ୧୯୩୦ ବେଳକୁ ଘମାଘୋଟ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ମୋର ପିତା ମାତା ସେ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେହି ସମୟରେ ନିଜେ କାରାବରଣ କରିବା ପୂର୍ବରୁ ଆଚାର୍ଯ୍ୟ ହରିହର ଦାସ ସନ୍ତକ ପରି ସାଇତି ରଖିଥିବା ତାଙ୍କ ଗୁରୁ ଗୋପବନ୍ଧୁଙ୍କ ଖାଲି ଟ୍ରଙ୍କ ଖଣ୍ଡିକ ତାଙ୍କ ଆଶ୍ରମରୁ ଆଣି ଆମ ଘରେ ରଖାଇ ଦେଇ ଯାଇଥିଲେ । ଆମଘରେ ଗୋପବନ୍ଧୁଙ୍କ ସେ ଟ୍ରଙ୍କଟିକୁ ଏକ ପବିତ୍ର ଜିନିଷ ବୋଲି ମନେ କରାଯାଉଥିଲା । ଏପରିକି ବାହାରକୁ ଗଲା ଆଇଲା ବେଳେ ଆମେ ତାକୁ ମୁଣ୍ଡିଆ ମାରୁଥିଲୁ ।

୧୯୫୨ ବେଳକୁ ସେ ଜୀର୍ଣ୍ଣ ହୋଇ ଆସିଥିଲା, ତଥାପି ମୋ ଯାତ୍ରାରେ ତାହା ମଙ୍ଗଳକାରୀ ହେବ ବୋଲି ମନେ କରି ଆଉ ଆଧୁନିକ ସୁଟକେଶ ନ କିଣି ମୋ ସଂଗୃହିତ ପୁରାତନ ପୋଷାକକୁ ସେହି ପୁରାତନ ଟ୍ରଙ୍କରେ ପୂରାଇ ଆମେରିକା ଯାତ୍ରା କରିଥିଲି । ଜାହାଜର ଭଣ୍ଡାର ଘରେ ପଡ଼ି ପଡ଼ି ଛେଚା କଚାରେ ଆମେରିକାରେ ପହଞ୍ଚିଲାବେଳକୁ ସେ ବେରଙ୍ଗ ଓ ବିକୃତ ଦିଶୁଥିଲା । ଆମେରିକା ରହଣି ଭିତରେ ଓ ଫେରିଲାବେଳକୁ ମୋତେ କେତେକ ଆଧୁନିକ ସୁଟ୍‌କେସ୍ ସଂଗ୍ରହ କରିବାକୁ ପଡ଼ିଥିଲେ ମଧ ମୁଁ ସେ ପୁରୁଣା ଟ୍ରଙ୍କଟିକୁ ଫିଙ୍ଗି ନ ଦେଇ ମୋ ସଙ୍ଗରେ ଧରି ଭାରତ ଫେରିଥିଲି । ଅଳ୍ପ କେତେବର୍ଷ ତଳେ ଉଦୟପୁର ସଂଗ୍ରହାଳୟର ବୟୋବୃଦ୍ଧ ସଂଗ୍ରାହକ ଶ୍ରୀ ଦାଶରଥି ପଟ୍ଟନାୟକ ମହାପୁରୁଷ ସ୍ମାରକୀ ପଦାର୍ଥ ସଂଗ୍ରହ କରୁଥିବା ସମୟରେ ତାକୁ ଦେଖିବା ସଙ୍ଗେ ସଙ୍ଗେ ମୁଣ୍ଡରେ ମୁଣ୍ଡାଇ ଚୈତନ୍ୟଙ୍କ ପରି କଟକ ଦାଣ୍ଡରେ ନାଚିନାଚି ନିଜର ସଂଗ୍ରାହଳୟକୁ ଘେନିଯାଇଛନ୍ତି ।

**ଯାତ୍ରାର ଅର୍ଥ ସଂଗ୍ରହ :**

ମୋର ଆମେରିକା ଯାତ୍ରାର ସମୟ ନିକଟେଇ ଆସିଲା । ମୋର ଧାର ଟଙ୍କା ହସ୍ତଗତ ହୋଇପାରି ନ ଥିବାରୁ ଜାହାଜ କମ୍ପାନୀକୁ ମୂଲ୍ୟ ଦେଇ ଟିକଟ ସଂଗ୍ରହକରି ପାରି ନ

ଥିଲି । ସେଥିପାଇଁ ଚାରିଛଅ ଦିନ ପୂର୍ବରୁ କଲିକତା ଯାଇ ସେ ଅର୍ଥ ଯୋଗାଡ଼ କରି ଦିଲ୍ଲୀ ଜାହାଜ କମ୍ପାନୀ ନିକଟକୁ ପଠାଇବାର ସ୍ଥିର କଲି ।

ସେ ସମୟରେ ମୋର ସହଧର୍ମିଣୀ ଅନ୍ତଃସତ୍ତ୍ୱା ଥାଇ ତାଙ୍କର ପ୍ରସୂତି ସମୟ ମାସେ ଖଣ୍ଡେ ମାତ୍ର ବାକିଥିଲା । କିନ୍ତୁ ସେଥିପାଇଁ ଆମେରିକା ଯିବା ସମୟକୁ ଘୁଞ୍ଚାଇବା ଆଉ ସମ୍ଭବ ନ ଥିବାରୁ ସେପରି ଅବସ୍ଥାରେ ତାଙ୍କୁ ମୋତେ ଛାଡ଼ି ଯିବାକୁ ପଡ଼ିଥିଲା ।

ମୁଁ ଗ୍ରାମକୁ ଆସି ସମସ୍ତଙ୍କୁ ବୁଝାସୁଝା କରି ବିଦାୟ ମାଗିଲି । ପିତା ମଧ ଗ୍ରାମରେ ନିର୍ବାଚନ ପରେ ନିର୍ବାଚନ ହିସାବ ତାଲିକା ଦାଖଲ କରିବା କଥା । ନିର୍ବାଚନ ଖର୍ଚ୍ଚ ଲେଖି ରଖିବା ପାଇଁ ନିର୍ବାଚନ ବେଳେ କାହାକୁ ନିଯୁକ୍ତ କରିବା ଆମ ସ୍ୱଳ୍ପ ଅର୍ଥ ଦୃଷ୍ଟିରୁ ପ୍ରୟୋଜନ ନ ଥିଲା । ଯାହା ହେଉ ନିର୍ବାଚନ ପରେ ଟିପା ଖାତାରୁ ଏକ ନିର୍ବାଚନ ହିସାବ ଫର୍ଦ୍ଦ ତିଆରି କରି ଦାଖଲ କରିବା ପାଇଁ ଜଣେ ଉପଯୁକ୍ତ ବ୍ୟକ୍ତିଙ୍କ ଉପରେ ମୁଁ ଭାର ଦେଇଥିଲି ।

ମୁଁ ମାତା ଓ ଭାର୍ଯ୍ୟାଙ୍କଠାରୁ ବିଦାୟ ଘେନି ପିତାଙ୍କ ସଙ୍ଗେ ଗ୍ରାମରୁ ଟ୍ରେନ ଯୋଗେ କଟକ ବାହାରିଲି । ନୀଳକଣ୍ଠ ଜଣେ କର୍ମୀ ପୁରୁଷ , ମୁଁ କାମ ବାକିରଖି ନିର୍ବାଚନ ହିସାବ ଦାଖଲ ନ କରି ଦେଶଛାଡ଼ି ଚାଲିଯିବାକୁ ବାହାରିଥିବାରୁ ସେ ମୋ ଉପରେ କ୍ଷୋଭ ପ୍ରକାଶ କଲେ । ସେ ମୋ ସମେତ ସମସ୍ତଙ୍କୁ ଜଣେ ଜଣେ ଦେଶ କର୍ମୀ ଭାବରେ ଦେଖନ୍ତି, କର୍ମଶୃଙ୍ଖଳାରେ ବିଚ୍ୟୁତି ଘଟିଲେ ଅସହିଷ୍ଣୁ ହୋଇଉଠନ୍ତି । ତେଣୁ ବାଟଯାକ ତାଙ୍କ ଭର୍ତ୍ସନା ଶୁଣି ଶୁଣି ମୋତେ କଟକ ଆସିବାକୁ ପଡ଼ିଲା ।

କଟକ ଆସି ସନ୍ଧ୍ୟାରେ କଲିକତା ଗାଡ଼ି ଧରିବାକୁ ବାହାରିବାବେଳେ ମଧ ସେ ମୋ ପ୍ରତି ରୋଷ ଭାବ ପ୍ରକାଶ କରି ରହିଥିବାରୁ ମୋତେ ବ୍ୟଥିତ ହୃଦୟରେ ତାଙ୍କଠାରୁ ବିଦାୟ ଘେନିଯିବାକୁ ପଡ଼ିଲା । ତାଙ୍କର ନିର୍ଲିପ୍ତ ନୈତିକ ଦୃଷ୍ଟିରୁ କର୍ମ ହିଁ ପ୍ରଧାନ କର୍ମ ଶୃଙ୍ଖଳା, ଏପଟ ସେପଟ ହେବାର ନୁହେଁ । ତେଣୁ ସେ ମୋର ଅସୁବିଧା ନ ବୁଝି ତାଙ୍କ କଥାରେ ଅଟଳ ରହିଥିଲେ ।

ମୁଁ କଲିକତା ଯାଇ ମୋତେ ଧାର ଦେବା ପାଇଁ ପ୍ରତିଶ୍ରୁତି ଦେଇଥିବା ବ୍ୟକ୍ତିଙ୍କ ଦ୍ୱାରସ୍ଥ ହୋଇ ତାଙ୍କ ଅତିଥିଶାଳାରେ ରହିଲି । ସେ ମୋତେ ଦେଖିଏଣୁତେଣୁ ପଚାରୁ ଥାଆନ୍ତି, କିନ୍ତୁ ଟଙ୍କା କଥା ଉଠାଉ ନ ଥା'ନ୍ତି । ମୁଁ ମଧ ପାଟିଖୋଲି ଟଙ୍କା ମାଗିବା ପାଇଁ ସଙ୍କୋଚ ବୋଧ କରୁଥାଏ । ଫେବୃଆରୀ ତା ୨୮ ରିଖରେ ବମ୍ବେ ବନ୍ଦରରୁ ମୋ ଜାହାଜ ଛାଡ଼ିବା କଥା, କିନ୍ତୁ ତା ୨୫ ରିଖ ପର୍ଯ୍ୟନ୍ତ ସେ ନିରବ ରହିଥାଆନ୍ତି । ସେ ଦିନ ସେ ବନାରସ ଯିବାକୁ ବାହାରୁଥିବାର ଶୁଣି ମୁଁ ବାଧ ହୋଇ ମୁହଁ ଫିଟାଇ ମୋ ଅସୁବିଧା ଜଣାଇଲି । ସେ ସେଥିରେ ବିସ୍ମିତ ହୋଇ ତାଙ୍କ ପୁତ୍ର ଘନଶ୍ୟାମଙ୍କୁ ଡ଼ାକି କହିଲେ ''ତୁମେ କ'ଣ

ଏପର୍ଯ୍ୟନ୍ତ ଏହାଙ୍କ ଯିବାର କିଛି ବନ୍ଦୋବସ୍ତ କରି ନାହଁ ?'' ତୁମେ ଏବେ ସଙ୍ଗେ ସଙ୍ଗେ ଦିଲ୍ଲୀର ଜାହାଜ କମ୍ପାନୀ ପାଖକୁ ଫୋନକରି ଟିକଟ ମଗାଅ ଓ ଏହାଙ୍କୁ ଠିକ୍ ସମୟରେ ନେଇ ବମ୍ବେରେ ପହଞ୍ଚାଇ ଦିଅ । ଏହାକହି ସେ ବନାଗ୍ଯେ ଚାଲିଗଲେ ।

ଦିଲ୍ଲୀ ଫୋନ ହୋଇ ଜାହାଜ କମ୍ପାନୀଙ୍କ ନିର୍ଦ୍ଦେଶ ଅନୁସାରେ କଲିକତାର ଗୋଭାନ୍‌ସ ଏଜେନ୍‌ସି ନିକଟରେ ଟଙ୍କା ଜମାକରି ଦିଲ୍ଲୀ ଅଫିସକୁ ଜଣାଇବା ପରେ, ବମ୍ବେ ଉଡ଼ାଜାହାଜ ଘାଟିରେ ତା ୨୭ ରାତିରେ କମ୍ପାନୀ ଏଜେଣ୍ଟ ମୋ ହାତକୁ ଟିକଟ ବଢ଼ାଇ ଦେବେ ବୋଲି ନର୍ଦ୍ଦେଶ ମିଳିଲା । ତା' ପରେ ପରେ ତା ୨୭ ରିଖ ଫେବୃଆରୀ ଉପରଓଳି ଉଡ଼ାଜାହାଜରେ ବମ୍ବେ ଯିବା ପାଇଁ ମୋର ଟିକଟ କରାଗଲା । ମୋର ଯାତ୍ରାର ସମସ୍ତ ଖର୍ଚ୍ଚ ପାଇଁ ମୋତେ ତିନି ହଜାର ଟଙ୍କା ଧାର ମିଳିଥିଲା । ସେଥିରୁ ଉଡ଼ାଜାହାଜ ଟିକଟ ବମ୍ବେକୁ ଟ.୧୯୬ ହାତ ଖର୍ଚ୍ଚ ପାଇଁ ଦେଢ଼ଶହ ଡ଼ଲାର (ପ୍ରାୟ ଟ. ୮୦୦) ଓ ଜାହାଜ ଟିକଟ ପ୍ରାୟ ଦୁଇହଜାର ଟଙ୍କା ଏପରି ପ୍ରାୟ ମୁଣ୍ଡାମୁଣ୍ଡି ସବୁ ଖର୍ଚ୍ଚ ହୋଇଗଲା । ମୋ ହାତରେ ଯେଉଁ ଅଳ୍ପ କିଛି ଟଙ୍କା ଥିଲା ସେଥିରେ ମୋର ଅତ୍ୟାବଶ୍ୟକ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କିଣିବା ପାଇଁ ମୁଁ ଜଣେ ଆତ୍ମୀୟଙ୍କୁ ନେଇ ବଜାରକୁ ଗଲି । ବିଶେଷରେ ଏଡ଼େବଡ଼ ଟ୍ରଙ୍କଠାରେ ବିଶେଷ କିଛି ଜିନିଷ ନଥାଇ-ତାହା ଖଡ଼ ଖଡ଼ ହେଉଥିବାରୁ ମୁଁ ଖଣ୍ଡିଏ କମ୍ବଳ କିଣି ତା' ଭିତରେ ଭର୍ତ୍ତି କରିଦେଲି । ଶୀତ ଦେଶରେ ତାହା କାମରେ ଆସିବ ବୋଲି ମୋର ମଧ ଧାରଣା ଥିଲା ।

**ଯାତ୍ରାରମ୍ଭ :**

୨୭ ତାରିଖ ଉପରଓଳି ଜୀବନରେ ପ୍ରଥମ ଥର ପାଇଁ ମୁଁ ଉଡ଼ାଜାହାଜରେ ବସିବାର ସୁଯୋଗ ପାଇଲି । ସେ ଛୋଟ ଉଡ଼ାଜାହାଜଟି ଅଳ୍ପ ଉଚ୍ଚରେ ଉଡ଼ିକରି ଯାଉଥାଏ । ତା'ର ଝରକା ବାଟେ ଚାହିଁଲେ ଧାନ କ୍ଷେତ ଗୁଡ଼ାକ ପଶା ପାଲି ପରି ଦିଶୁଥାଏ । ଗାଡ଼ି ମୋଟର ସବୁ ପିଲା ଖେଳଣା ଗାଡ଼ିପରି ଦିଶୁଥାଆନ୍ତି । ନଦୀ ଓ ରାସ୍ତାସବୁ ଲମ୍ବା ଲମ୍ବା ସାପ ପଡ଼ିଥିଲା ପରି ଜଣାପଡୁଥାଆନ୍ତି । କେତେବେଳେ ମେଘ ଭିତରେ ବିମାନଟି ଉଡ଼ି ଉଡ଼ି ଚାଲିଥାଏ । ଧଳା କଳା ମେଘସବୁ ବାଘଭାଲୁ ପାହାଡ଼ ପର୍ବତର ରୂପ ନେଇ ସାମନାରେ ଦେଖାଯାଇ ପୁଣି ପଛକୁ ପଳାଉଥାଆନ୍ତି । ସେସବୁ ଦେଖିବା ଭିତରେ ଅନିଶ୍ଚିତ ଭବିଷ୍ୟତର ଅସଂଖ୍ୟ ଭାବନା ସବୁ ମନ ଭିତରେ ଉଙ୍କି ମାରି ଏପଟ ସେପଟ ହେଉଥାଆନ୍ତି । ମୁହଁ ସନ୍ଧ୍ୟାବେଳକୁ ବିମାନଟି ବମ୍ବେ ବିମାନ ଘାଟିରେ ଅବତରଣ କଲା ।

ମୁଁ ବିମାନରୁ ଓହ୍ଲାଇ ବନ୍ଦର ଭିତରକୁ ଆସିଲି । ମୁଁ ଦିନକ ପୂର୍ବରୁ ବାବୁରାଓ ପଲେଧରଙ୍କଠାରୁ ଆଣିଥିବା ବମ୍ବେ ସ୍ୱୟଂ ସେବକ କାର୍ଯ୍ୟାଳୟ ଠିକଣାରେ ଟେଲିଗ୍ରାମ୍‌ଟିଏ ପଠାଇଥିଲି । କିନ୍ତୁ ସେଠାରେ ମୋତେ ଭେଟିବାକୁ ଆସିଥିବା କୌଣସି

ବନ୍ଧୁଙ୍କୁ ନ ଦେଖି ବିବ୍ରତ ହୋଇପଡ଼ିଲି । ସେହି ସମୟରେ ଜାହାଜ କମ୍ପାନୀର ଏଜେଣ୍ଟ ମୋତେ ଠାବ କରି ମୋ ପାଖକୁ ଆସିଲେ । ବମ୍ବେରୁ ବିଲାତ ପର୍ଯ୍ୟନ୍ତ କଟା ଯାଇଥିବା ଟିକେଟ୍‌ଟି ମୋ ହାତକୁ ବଢ଼ାଇ ଦେଇ ସେ କହିଲେ ସମୟର ଅଭାବ ଯୋଗୁଁ ବିଲାତରୁ ଆମେରିକା ଯାଉଥିବା ଜାହାଜ ଟିକେଟ କରି ହେଲା ନାହିଁ । ତେଣୁ ଆପଣ କମ୍ପାନୀ ରିସିଟ୍ ନିଅନ୍ତୁ ଲଣ୍ଡନରେ ଜିନା କମ୍ପାନୀ ଅଫିସକୁ ଯାଇ ସେ ଟିକେଟ ସଂଗ୍ରହ କରି ନେବେ । ଜାହାଜ ଠିକ୍ କରିବାରେ ପାଞ୍ଚ ସାତଦିନ ଲାଗିପାରେ, ତେଣୁ ଲଣ୍ଡନରେ ଆପଣଙ୍କୁ ସେତକ ଦିନ ଅପେକ୍ଷା କରିବାକୁ ପଡ଼ିବ । ଏହା କହି ମୋତେ ରିସିଟ, କାଗଜପତ୍ର ଓ ଠିକଣା ବଢ଼ାଇ ଦେଇ ସେ ବାହାରିଯିବାକୁ ବସିବା ବେଳେ, ମୋର କେହି ବନ୍ଧୁ ମୋତେ ପାଛୋଟି ନେବାକୁ ଆସି ନ ଥିବାରୁ ମୁଁ କେଉଁଠି ରାତ୍ରିଟା କଟାଇବି ବୋଲି ତାଙ୍କୁ ପଚାରିଲି । ସେ ମୋତେ ବାହାରକୁ ଡ଼କାଇ ନେଇ ହୋଟେଲର ଠିକଣା ବତାଇ ହୋଟେଲରେ ମୋତେ ଛାଡ଼ିଦେବା ପାଇଁ ଟାକ୍‌ସିବାଲାକୁ ନିର୍ଦ୍ଦେଶ ଦେଇ ଚାଲିଗଲେ । ଟାକ୍‌ସିବାଲା ସଙ୍ଗେ ମୁଁ ହୋଟେଲମାନଙ୍କୁ ଯାଇ ଗୋଟିଏ ରାତ୍ରି ପାଇଁ ସ୍ଥାନ ଦେବାକୁ ଅନୁରୋଧ କଲି । ସେମାନଙ୍କ ଭିତରୁ କେହି ରାଜି ନ ହେବାରୁ ବାଧ ହୋଇ ଆର.ଏସ.ଏସ. ଅଫିସ ଠିକଣା ଧରି ସେଠାକୁ ଗଲି । ମୁଁ ସେଠାରେ ପହଞ୍ଚିଲା ବେଳକୁ ସେଠାର କେତେକ କର୍ମୀ ବିମାନ ବନ୍ଦରରେ ମୋତେ ନ ପାଇ ଫେରୁଥିଲେ । ମୁଁ ସେମାନେ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ କମ୍ପାନୀ ଏଜେଣ୍ଟଙ୍କ ସଙ୍ଗେ ବନ୍ଦର ବାହାରକୁ ଚାଲି ଆସିଥିଲି । ତେଣୁ ସେମାନଙ୍କ ସଙ୍ଗେ ସେଠାରେ ଦେଖା ହୋଇପାରିନଥିଲା ।

ମୁଁ ସେମାନଙ୍କ ସଙ୍ଗେ କିଛି ସମୟ ସୁଖାଳାପ କରିବା ପରେ ପଂକ୍ତି ଭୋଜନ ସାରି ଶୋଇ ପଡ଼ିଲି । ଭୋରରୁ ଉଠି ନିତ୍ୟକର୍ମ ସାରି କେତେଜଣ କର୍ମୀଙ୍କ ସହିତ ଜାହାଜ ବନ୍ଦରକୁ ଗଲି । ସେ ବନ୍ଦରରେ ପି ଏଣ୍ଡ ଓ କମ୍ପାନୀର କାର୍ଥେଜ ଜାହାଜଟି ଇଂଲଣ୍ଡ ଅଭିମୁଖେ ଯାତ୍ରା କରିବାକୁ ଅଷ୍ଟ୍ରେଲିଆରୁ ବାହାରି ସେଠାରେ ପହଞ୍ଚି ସାରିଥିଲା । ମୋ ବନ୍ଧୁମାନଙ୍କୁ ସେ ବନ୍ଦର ସମ୍ବନ୍ଧରେ ସବୁ ଜଣାଥିବାରୁ ଅଳ୍ପ ସମୟ ଭିତରେ ମୁଁ ମୋର ପାସପୋର୍ଟ, ଭିସା ଓ ଟିକେଟ ପ୍ରଭୃତି ଯାଞ୍ଚ କରାଇ କଷ୍ଟମ ପାର ହୋଇ ଜାହାଜ ଉପରକୁ ଅସ୍ଥାୟୀ ସିଡ଼ିବାଟେ ଉଠିଲି ।

ବନ୍ଦର କୂଳରେ ବାଡ଼ ଆରପଟେ ଯାତ୍ରୀମାନଙ୍କ ଆତ୍ମୀୟ ଓ ବନ୍ଧୁମାନେ ଠିଆ ହୋଇ ଜାହାଜ ଛାଡ଼ିବାକୁ ଅପେକ୍ଷା କରୁଥିଲେ । ମୋ ବନ୍ଧୁମାନେ ମଧ୍ୟ ସେଠାରେ ଯାଇ ଠିଆ ହେଲେ । ମୁଁ ମୋ କୋଠରୀର ସନ୍ଧାନ ନେଇ ସାରି ଡ଼େକ ଉପରେ ଆସି ଠିଆ ହେଲି । କିଛି ସମୟ ପରେ ଜାହାଜ ଛାଡ଼ିବା ପାଇଁ ପ୍ରଥମ ହୁଇସିଲ୍ ବାଜିଲା । ତା'ପରେ ବନ୍ଦରକୁ ଲାଗିଥିବା ଅସ୍ଥାୟୀ ରାସ୍ତା ସିଡ଼ିଟି ଉଠାଇ ନିଆଗଲା । ଦେଶର ଭୂଭାଗ ଓ ଆମ ଭିତରେ

କେବଳ ଜଳରାଶି ବିଦ୍ୟମାନ ହୋଇ ରହିଲା । ସେହି ଜଳରାଶି ଯେ ବଢ଼ି ବଢ଼ି ମହାସମୁଦ୍ର ଦ୍ୱାରା ଆମକୁ ଆମ ଦେଶ ଠାରୁ ବହୁ ଦୂରକୁ ଦୂରେଇ ନବ ସେ କଥା ମନରେ ଉଦ୍ରେକ ହେଲା ।

ବନ୍ଦରରେ ଥିବା ଲୋକମାନେ ଯାତ୍ରୀଙ୍କ ଉଦ୍ଦେଶ୍ୟରେ ହାତ ହଲାଇଲେ, ରୁମାଲ ଉଡ଼ାଇଲେ ଓ କେହି କେହି ଫୁଲ ଫିଙ୍ଗିଲେ । ମୋ ସାଥୀମାନଙ୍କ ଆଖି ମୋ ଉପରେ ପଡ଼ିବା କ୍ଷଣି ସେମାନେ ମଧ ହାତ ହଲାଇ ମୋ ଯାତ୍ରା ଶୁଭଙ୍କରୀ ହେଉ ବୋଲି ପାଟି କଲେ । ସେମାନଙ୍କ ସଙ୍ଗେ ମୋର ଗୋଟିଏ ମାତ୍ର ରାତ୍ରୀର ସାକ୍ଷାତ । ମୁଁ ତାଙ୍କ ସଂଘର ସଦସ୍ୟ ପର୍ଯ୍ୟନ୍ତ ନୁହେଁ । କେବଳ ଓଡ଼ିଶାରେ କାର୍ଯ୍ୟ କରୁଥିବା ତାଙ୍କର ଜଣେ ସଦସ୍ୟଙ୍କ ସୁପାରିଶରେ ସେମାନଙ୍କ ସହିତ ମୋର ପରିଚୟ । ତଥାପି ମୋ ଭଳି ଜଣେ ଦେଶବାସୀଙ୍କ ପ୍ରତି ସେମାନଙ୍କର ସୌହାର୍ଦ୍ଦ୍ୟ ଓ ବନ୍ଧୁଭାବ ଅନୁଭବ କରି ମୋ ଆଖିରୁ ପାଣି ଗଡ଼ିପଡ଼ିଲା । ମଣିଷ ଯେ କିପରି ସ୍ନେହକାଙ୍ଗାଳ ତାହା ମୁଁ ଉପଲବ୍ଧି କଲି ।

**ଜଳଯାତ୍ରା :**

ଜାହାଜଟି ବିସ୍ତୀର୍ଣ୍ଣ ଜଳରାଶି ଭିତରକୁ ଗତି କରିବାକୁ ଲାଗିଲା । ସୌନ୍ଦର୍ଯ୍ୟମୟୀ ବମ୍ବେ ନଗରୀ ଆସ୍ତେ ଆସ୍ତେ ଦୃଶ୍ୟପଟରୁ ଅଦୃଶ୍ୟ ହେବାକୁ ଲାଗିଲା । ଚାରିଆଡ଼ କେବଳ ଜଳମୟ ଦିଶିବା ପରେ ମୁଁ ଡ଼େକରୁ ଜାହାଜ ଭିତରର ମୋ କୋଠରୀ ଭିତରେ ପ୍ରବେଶ କଲି । ସେ କାବିନରେ ୪ଟି ବର୍ଥ ବା ସ୍ଥାନ ରହିଥିଲା । ଅନ୍ୟ ତିନିଜଣ ବ୍ୟକ୍ତିଙ୍କ ଭିତରୁ ଦୁଇଜଣ ଚୀନାବ୍ୟକ୍ତି ବିଲାତ ଯିବା ପାଇଁ ସିଂଘାପୁରରୁ ସେ ଜାହାଜରେ ଉଠିଥିଲେ । ଆଉ ଜଣକ ବମ୍ବେରୁ ଫାର୍ମାକୋଲଜି ପାଇଁ ବିଲାତ ଯାଉଥିବା ଗୁଜୁରାଟି ପିଲା, ସେମାନଙ୍କ ସହିତ ମୋର ଆଳାପ ଜମିଲା । ଚୀନାବାସୀ ଦୁଇଜଣ ଜାହାଜରୁ ଯାଇ ବମ୍ବେ ବୁଲି ଆସିଥିଲେ । ସେମାନେ କହିଲେ ବମ୍ବେ ବଡ଼ ଅପରିଷ୍କାର ସହର, ଲୋକେ ରାସ୍ତାରେ ଅସନା ପକାନ୍ତି । କଦଳୀ ଚୋପାରେ ଗୋଡ଼ ଖସି ତାଙ୍କ ଭିତରୁ ଜଣେ ବମ୍ବେ ରାସ୍ତା ଉପରେ କଚଡ଼ା ଖାଇଥିବା ମଧ ପ୍ରକାଶ କଲେ । ସେ କାଳରେ ବମ୍ବେ ସହର ଭାରତର ସବୁଠାରୁ ସମୃଦ୍ଧିଶାଳୀ ଓ ପରିଷ୍କାର ସହର ବୋଲି ମୋର ଗର୍ବ ଥିଲା । ତାଙ୍କ କଥାରେ ମୁଁ ବଡ଼ ଦୁଃଖିତ ହେଲି । ସେ କଲିକତା ପରି ଅପରିଷ୍କାର ସହରରେ ଓହ୍ଲାଇ ଥିଲେ କ'ଣ ମତ ଦେଇଥାଆନ୍ତେ ବୋଲି ମୁଁ ଭାବି ତୁନି ହେଲି ।

ଆଳାପ ପରେ ମୁଁ ଖଟିଆ ଉପରେ ପଡ଼ିଗଲି । ସେଥିରେ ଗୋଟିଏ ମୋଟା ଗଦି ଓ ଗୁଡ଼ିଏ କମ୍ବଳ ରହିଥିଲା । ତେଣୁ ମୋ କମ୍ବଳ ବାହାର କରିବା ଆଉ ପ୍ରୟୋଜନ ହେଲା ନାହିଁ । ସେହି କମ୍ବଳ ସମ୍ବନ୍ଧୀୟ ଗପଟିଏ ମନେପଡ଼ି ମୁଁ ମନେ ମନେ ହସିବାକୁ ଲାଗିଲି । ବିଲାତ ଏକ ଶୀତପ୍ରଧାନ ଦେଶ । ଲଣ୍ଡନର ହୋଟେଲ ଓ ମେସ୍ ମାନଙ୍କରେ ଖର୍ଚ୍ଚ

ଅତ୍ୟଧିକ ହୋଇଥିବାରୁ ସେଠାକୁ ପଢ଼ିବାକୁ ଯାଉଥିବା ଛାତ୍ରମାନେ ସେଠାର ଲୋକଙ୍କ ଘରେ ପଇସା- ଦିଆ ଅତିଥି ହୋଇରହନ୍ତି । ଆମ ମେଡ଼ିକାଲ କଲେଜ ଖୋଲିଲା ବେଳେ ସଦ୍ୟ ଏମ୍. ବି. ବି.ଏସ୍. ପାଶ୍ କରି ପାଟନାରୁ ଆସିଥିବା କେତେକ ଓଡ଼ିଆ ଡ଼ାକ୍ତରଙ୍କୁ ଓଡ଼ିଶା ସରକାର ଉଚ୍ଚ ଶିକ୍ଷା ପାଇଁ ବିଲାତ ପଠାଇଥିଲେ । ସେମାନଙ୍କ ଭିତରୁ ଜଣେ ଉଡ଼ାଜାହାଜରେ ଆସି ଲଣ୍ଡନରେ ପହଞ୍ଚିବା କ୍ଷଣି ଆଗରୁ ଲଣ୍ଡନ ଯାଇଥିବା କେତେକ ଓଡ଼ିଆ ଛାତ୍ର ତାଙ୍କୁ ପାଛୋଟି ନେଇ ଜଣଙ୍କ ଘରେ ପଇସା- ଦିଆ ଅତିଥି ହୋଇ ରହିବା ପାଇଁ ଛାଡ଼ିଦେଇ ଗଲେ ।

ସେ ଘରର ଇଂରେଜ ମାଲିକାଣୀ ତାଙ୍କୁ ଆଦର କରି ତା' ଘରର ଉପର ତାଲାର ଗୋଟିଏ କୋଠରୀରେ ନେଇ ରଖାଇଲା । ସମସ୍ତ ବ୍ୟବସ୍ଥା କରିସାରି ସେ ଘରରେ ଥିବା ଗ୍ୟାସ୍ ପଏଣ୍ଟଟି ଦେଖାଇ କହିଲା " ବେଶୀ ଶୀତ ଲାଗିଲେ ଗ୍ୟାସ ମେସିନ୍‌ରେ ପେନି ମୁଦ୍ରାଟିଏ ପକାଇଲେ ସେଥିରୁ ଗରମ ଗ୍ୟାସ ବାହାରି ସେ ଘରଟିକୁ କିଛି ସମୟ ପାଇଁ ଗରମ କରି ରଖିବ ।" ଏହା କହି ବୁଢ଼ୀ ତଳକୁ ଚାଲିଗଲା ।

ସେ ଡ଼ାକ୍ତର, ସଙ୍ଗରେ କମ୍ବଳ ଆଣି ନ ଥିଲେ । ଘରବାଲା ଘୋଡ଼ି ହେଲା କମ୍ବଳ ଯୋଗାଇ ଦିଅନ୍ତି ବୋଲି ଶୁଣିଥିଲେ, କିନ୍ତୁ ଘରବାଲୀ ବୁଢ଼ୀ ଗ୍ୟାସ କଥା କହିବା ପରେ ସେ ଆଉ କମ୍ବଳ କଥା ପଚାରିବାକୁ ସାହସ କରିନଥିଲେ । ବୁଢ଼ୀ ଯିବା ପରେ ପରେ ସେ ଲୁଙ୍ଗି ବଦଳାଇ ସେହି ଆରାମଦାୟକ ଖଟ ଉପରେ ଲମ୍ବ ହୋଇ ପଡ଼ିଗଲେ । ତାଙ୍କୁ ଛାଇନିଦ ଲାଗିବା ପରେ ଘରର ଥଣ୍ଡା ବଢ଼ିବାକୁ ଲାଗିଲା । ନିଦ ଭାଙ୍ଗିଗଲା, ସେ ବାଧ ହୋଇ ଶେଯରୁ ଉଠି ପକେଟ୍‌ରୁ ନିର୍ଦ୍ଦିଷ୍ଟ ମୁଦ୍ରାଟି କାଢ଼ି ଗ୍ୟାସ ମେସିନରେ ଗଳାଇ ଦେଲେ । ହଠାତ୍ ଗରମ ଗ୍ୟାସ ଆସି ସେ ଘରକୁ କିଛି ସମୟ ପାଇଁ ଗରମ କରି ରଖିଲା । ସେ ପୁଣି ଖଟ ଉପରେ ଲମ୍ବ ହୋଇ ଶୋଇଗଲେ । କିନ୍ତୁ ପୁଣି ଘର ଥଣ୍ଡା ହୋଇଯିବାରୁ ସେ ଶେଯରୁ ଉଠି ଆଉ ଗୋଟିଏ ମୁଦ୍ରା ଗଳାଇଲେ । ଥଣ୍ଡାରୁ ରକ୍ଷା ପାଇବା ପାଇଁ ଏପରି ଥରକୁ ଥର ମୁଦ୍ରା ସବୁ ସରିଗଲା । ରାତିରେ ବୁଢ଼ୀକୁ ଖୋଜି ଉଠାଇବା ବି ସମ୍ଭବ ନ ଥିଲା । ବୁଢ଼ୀ ତାଙ୍କୁ କମ୍ବଳ ନ ଦେଇ କେବଳ ଗ୍ୟାସ କଥା କହିଥିବାରୁ ସେ ସେହି ବୁଢ଼ୀ ଉପରେ ଓ ତାଙ୍କୁ ଆଣି ସେ'ଠି ରଖାଇଥିବା ସାଥୀମାନଙ୍କ ଉପରେ ରକ୍ତଚାଉଳ ଚୋବାଇଲେ । ସେ ଲୁଙ୍ଗି ବଦଳାଇ ଗରମ ସୁଟ୍‌ଟା ପିନ୍ଧିଲେ । ସେଥିରେ ଶୀତ ନ ଯିବାରୁ ତା' ଉପରେ ଓଭର କୋଟ୍‌ଟା ପକାଇଲେ । ସେଥିରେ ମଧ ଶୀତ ନ ଯିବାରୁ ତାଙ୍କର ସମସ୍ତ ଲୁଗାପଟା ଆଣି ଘୋଡ଼ାଇ ହେଲେ । ଶେଷରେ ମୋଜା ଜୋତା ସବୁ ପିନ୍ଧିଲେ । ସେଥିରେ ମଧ ଶୀତ ନ ଯିବାରୁ ରାତିଯାକ ମଝିରେ ମଝିରେ ଦଣ୍ଡ ବୈଠକ ପକାଇ ଦେହକୁ ଗରମ କରିବାକୁ ଚେଷ୍ଟା କଲେ ।

ସକାଳ ହେବା ସଙ୍ଗେ ସଙ୍ଗେ ଫୋନରେ ସେ ତାଙ୍କ ବନ୍ଧୁମାନଙ୍କୁ ଭର୍ତ୍ସନା କଲେ । ସେମାନେ ସେଥିରେ ବିବ୍ରତ ହୋଇ ଅଳ୍ପ ସମୟ ପରେ ଆସି ତାଙ୍କ ନିକଟରେ ପହଞ୍ଚିଲେ । ସେମାନଙ୍କୁ ଦେଖି, କମ୍ବଳ ଓ ଘୋଡ଼ିହେଲା ଅଭାବରୁ ସେ ରାତିଯାକ କିପରି ଯନ୍ତ୍ରଣା ଭୋଗ କରି ହନ୍ତସନ୍ତ ହୋଇ ଦଣ୍ଡ ବୈଠକର ଆଶ୍ରୟ ନେଇଥିଲେ, ତାହା ବର୍ଣ୍ଣନା କଲେ । ତାଙ୍କ କଥା ଶୁଣିବା ପରେ ତାଙ୍କ ବନ୍ଧୁମାନେ ତାଙ୍କ ଖଟକୁ ଚାହିଁ ସବୁ କଥା ବୁଝିଯାଇ ଠୋ ଠୋ କରି ହସିବାକୁ ଲାଗିଲେ ।

ସେମାନେ ଖଟ ଉପର ବିଛଣାକୁ ଦେଖାଇ କହିଲେ, ତକିଆ ଘୁଞ୍ଚାଇ ଦେଖିଲୁ । ସେ ସେପରି କରି ଦେଖିଲେ, ତାଙ୍କ ଖଟରେ ବିଛଣା ଚାଦର ଉପରେ ମୁଠେ ବହଳର ଘୋଡ଼ିହେଲା କମ୍ବଳ ରହି ତା' ଉପରେ ପଡ଼ିଥିବା ବିଛଣା ଚଦର ପଡ଼ି ତାହା ଖଟର ଦୁଇକଡ଼ରେ ଓ ତଳ ମୁଣ୍ଡରେ ଖୋସା ଯାଇଛି । ତାଙ୍କ ବନ୍ଧୁମାନେ କହିଲେ - ଆରେ ଗାଡ଼ ଭାଲୁ "ଏଠାରେ ମୁଣ୍ଡ ତକିଆଟିକୁ ଟେକି ସେ କମ୍ବଳଗୁଡ଼ାକ ତଳେ ପଶିବାକୁ ହୁଏ । ତୁ ବିଲାତ ପାଠ ପଢ଼ିବାକୁ ଆସିଛୁ, ତୋ ମୁଣ୍ଡରେ ଏତିକି ଟିକିଏ ଅକଲ ନାହିଁ ? ତୁ ତକିଆଟା ନ ଟେକି ଏତିକି କଷ୍ଟ ପାଇ ଲୋକହସା ହେଲୁ । ହଉ ଯାହା ହେବାର ହେଲା ତୁ ଏକଥା ଘର ବୁଢ଼ୀ ବା ଆଉ କାହା ଆଗରେ କହିବୁ ନାହିଁ ।"

ମୁଁ ତଳ ସିଟ୍‌ରେ ଥିଲି । ମୋ ଉପର ସିଟ୍‌ରେ ପଟେଲ ରହୁଥିଲେ, ସେ ଉପରୁ ଓହ୍ଲାଇ ଆସି ମୋ ସିଟରେ ବସି ଗପସପ କରିଥିଲେ । ସେ ବିଲାତରେ ପଇସା- ଦିଆ ଅତିଥି ହେବା ପାଇଁ ଭାରତୀୟ ଦୂତାବାସକୁ ଲେଖି ଠିକ୍ କରି ସାରିଛନ୍ତି । ମୁଁ ବିଲାତରେ ମାତ୍ର ସାତଦିନ ରହିବାର ଥିବାରୁ ହୋଟେଲ ବ୍ୟବସ୍ଥା ପାଇଁ ଦୂତାବାସକୁ ଲେଖିବି ବୋଲି ଭାବୁଥିଲି । ସେ କହିଲେ ହୋଟେଲରେ ରହିବା ବ୍ୟୟସାପେକ୍ଷ । ୭ ଦିନ ପାଇଁ ପଇସାଦିଆ ଅତିଥି ହେବାର ସୁବିଧା ମିଳିବ, ଆପଣ ସେଥିପାଇଁ ଦୂତାବାସକୁ ଲେଖନ୍ତୁ ।

ପରଦିନ ସକାଳେ ପ୍ରାତଃ ଭୋଜନ ସାରି ମୁଁ ଡେକ୍ ଉପରକୁ ଗଲି । ସେଠାରେ ବୁଲାବୁଲି କଲାବେଳେ କଲିକତାରୁ ଏଫ.ଆର.ସି.ଏସ୍. ପରିକ୍ଷା ଦେବାପାଇଁ ଯାଉଥିବା ଡ଼ାକ୍ତର ଘୋଷଙ୍କ ସଙ୍ଗେ ସାକ୍ଷାତ ହେଲା । ସେ ମଧ୍ୟ ବିଲାତରେ ପଇସା ଦିଆ ଅତିଥି ହୋଇ ରହିବାକୁ ଚାହୁଁଥିଲେ । ତେଣୁ ଆମେ ଦୁହେଁ ଏକାଠି ରହିବାର ବ୍ୟବସ୍ଥା କରିବାକୁ ଭାରତୀୟ ଦୂତାବାସକୁ ଜାହାଜରୁ ଲେଖିଲୁ । ଜାହାଜର ଚିଠି ସବୁ ବିମାନ ବନ୍ଦରର ପୋଷ୍ଟ ଅଫିସକୁ ଯାଇ ଉଡ଼ାଜାହାଜ ଯୋଗେ ଲଣ୍ଡନ ଯାଏ । ଆମକୁ ବମ୍ବେରୁ ଲଣ୍ଡନରେ ପହଞ୍ଚିବା ଆଗରୁ ଚିଠି ଯାଇ ଲଣ୍ଡନରେ ପହଞ୍ଚିବାରେ ଅସୁବିଧା ନ ଥିଲା ।

ଜହାଜର ଡ଼େକରେ ଦିନେ ହଠାତ୍ ଜଣେ ବୃଦ୍ଧ ମୋ ପଛରୁ ଆସି ମୋତେ ଖଣ୍ଡି ଖଣ୍ଡି ଓଡ଼ିଆରେ ପଚାରିଲେ ଡ଼ାକ୍ତର ଆପଣ କ'ଣ କଟକରୁ ଆସିଛନ୍ତି । ମୁଁ ଚମ୍‌କି

ପଡ଼ି କହିଲି, ଆପଣ କିପରି ଜାଣିଲେ ? ସେ କହିଲେ ଆପଣଙ୍କର ଆପଣଙ୍କ ସଙ୍ଗୀଙ୍କ ସଙ୍ଗେ କଥାବାର୍ତ୍ତାରୁ ଆପଣ ଡ଼ାକ୍ତର ଓ ଓଡ଼ିଆ ବୋଲି ଜାଣିଲି । ସେ ନିଜର ପରିଚୟ ଦେଇ କହିଲେ ତାଙ୍କ ନାମ ରେଭେରେଣ୍ଡ ଲାଜରସ, ସେ ମାନ୍ଦ୍ରାଜର ଲୋକ ହୋଇଥିଲେ ମଧ ବହୁଦିନ ଧରି କଟକ ମିସନ ପ୍ରେସର ମ୍ୟାନେଜର ଥିଲେ । ତାଙ୍କର ସହଧର୍ମିଣୀ ଜଣେ ଇଂରେଜ ମହିଳା ଥିଲେ ଓ ତାଙ୍କ କନ୍ୟାର ବିଲାତରେ ବିଭାଘର ହେବାକୁ ଯାଉଥିବାରୁ ସେଥିରେ ଯୋଗ ଦେବା ପାଇଁ ଯାଉଛନ୍ତି । ସେ ଓଡ଼ିଶାର ବହୁଲୋକଙ୍କୁ ଚିହ୍ନିଥିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ଜଣେ ଆତ୍ମୀୟଙ୍କ ସଙ୍ଗେ ଆଳାପ କଲାପରି ଲାଗୁଥିଲା ।

ଆମେ ଦିନପରେ ଦିନ ଚାରିପଟର ନୀଳ ସମୁଦ୍ର ଦେଖି ଦେଖି ଚାଲିଥିଲୁ । ଦିନେ ହଠାତ୍ ଜାହାଜର ଡ଼େକ ଉପରେ ଗହଳି ଲାଗିଥିଲା । ଆକାଶରେ 'ଗଲ' ପକ୍ଷୀ ଉଡୁଥିବାର ଦେଖି ସ୍ଥଳ ଭାଗଟିଏ ନିକଟେଇ ଆସୁଥିବା ଅନୁମାନ କରି ଯାତ୍ରୀମାନଙ୍କ ଭିତରେ ଉତ୍ସାହ ଖେଳି ଯାଇଥିଲା । କିଛି ସମୟ ପରେ ଆମ ଜାହାଜ ଆରବର ଏଡ଼େନ ବନ୍ଦରରେ ଲାଗିଲା । ବନ୍ଦରରେ ଦେଖାକରିବା ପାଇଁ ମୋ ସହଯାତ୍ରୀ ପଟେଲଙ୍କର କେତେକ ଆତ୍ମୀୟ ସେ ସହରରୁ ଆମ ଜାହାଜ ନିକଟକୁ ଆସିଗଲେ । ସେମାନଙ୍କ ସଙ୍ଗେ ପଟେଲ ଓ ମୁଁ ଗାଡ଼ିରେ ବସି ସହର ଭିତରକୁ ଗଲୁ । ଆରବ ମରୁଭୂମିରେ ପେଟ୍ରୋଲ ମିଳିବା ଯୋଗୁଁ ଏଡ଼େନ ମଧ ଗୋଟିଏ ସମୃଦ୍ଧ ସହରରେ ପରିଣତ ହୋଇଛି । ସେଠାର ରାସ୍ତା ସବୁ ଅତି ପ୍ରଶସ୍ତ ଓ ସୁନ୍ଦର । ଚାରିଆଡ଼ୁ ତେଲ ନଳୀ ସବୁ ବନ୍ଦରର ବିଶୋଧନାଗାର ଓ ବନ୍ଦରର ଭିତର ପର୍ଯ୍ୟନ୍ତ ପଡ଼ିରହିଛି । ବନ୍ଦରଠାରୁ ଅଳ୍ପ ଦୂରରେ ଥିବା ପଟେଲଙ୍କ ବନ୍ଧୁଙ୍କ ଘରକୁ ଯାଇ ଗୁଜୁରାଟି ଭୋଜନରେ ଆପ୍ୟାୟିତ ହୋଇ ଜାହାଜକୁ ଫେରିଲୁ ।

ଜାହାଜଟି ସେହିପରି ବନ୍ଦରମାନଙ୍କରେ ରହି ରହି ଲୋହିତ ସାଗର, ସୁଏଜ କେନାଲ, ଭୂମଧ ସାଗର ପାର ହେବାପରେ ଆଟ୍‌ଲାଣ୍ଟିକ ମହାସାଗରରେ ପ୍ରବେଶ କଲା । ଜାହାଜଟି କିଛିବାଟ ଯିବା ପରେ ସ୍ପେନ ଉପକୂଳରୁ ଟିକିଏ ଦୂରରେ ଥିବା 'ବେ ଅଫ ବେ ବିସ୍କେ' ରେ ପହଞ୍ଚି ସେଠାରେ ଆମେ ଭୀଷଣ ଝଡ଼ ତୋଫାନର ସମ୍ମୁଖୀନ ହେଲୁ । ଜାହାଜ ଟଳମଳ ହେଲା । ଆମେ ନିଜ କୋଠରୀରେ ବିଛଣା ଧରି ପଡ଼ିରହିଲୁ । ଖାଇବା ସମୟରେ ଡ଼ାଇନିଙ୍ଗ ହଲକୁ ଯିବାକୁ ଅକ୍ଷମ ହେବାରୁ 'ୱାର୍ଡ଼ ବଏ' ଆମକୁ ଆମ କୋଠରୀ ଭିତରେ ବିସ୍କୁଟ, ପାଉଁରୁଟି ଓ ଫଳ ଆଣି ଦେଇ ଯାଉଥାଏ ।

ଦୁଇ ତିନି ଦିନ ପରେ ଝଡ଼ କମିବାରୁ ଆମେ ପୁଣି ଡ଼େକ ଉପରେ ରୁଣ୍ଡ ହେଲୁ । ବୃଦ୍ଧ ଲାଜରାସ ସାହେବ ମୋତେ ଦେଖି କହିଲେ 'ଡ଼କ୍ଟର ବାବୁ, ମୋର ବଡ଼

ଗ୍ରହାଚାର,ମୋ ବୁଢ଼ୀ ଝଡ଼ ବେଳେ ଉପର ଥାକରେ ଶୋଇଲା, ଜାହାଜ ହଲିଲା, ବୁଢ଼ୀ ତଳକୁ ଗଳି ପଡ଼ିଲା । ତା'ର ହାତ ଭାଙ୍ଗିଗଲା । ମୋତେ ବଡ଼ କଷ୍ଟ, ଶେଷରେ ଡ଼ାକ୍ତର ଆସିଲା ପ୍ଲାଷ୍ଟର କଲା ।' ତାଙ୍କ କଥା ଶୁଣିଯାଇ ମୁଁ ବୁଢ଼ୀକୁ ଦେଖି ଆସିଲି ।

୧୭ ତାରିଖ ମାର୍ଚରେ ଆମ ଜାହାଜ ବିଲାତର ଟିଲବରୀ ବନ୍ଦରରେ ଲାଗିଲା । ଆମେ କଷ୍ଟମ ପ୍ରଭୃତି ପାରହୋଇ ବାହାରକୁ ଆସିଲୁ ! ଭାରତୀୟ ଦୂତାବାସର ଜଣେ ଲକ୍ଷ୍ନୌର ଯୁବତୀ କର୍ମଚାରୀ ଆମକୁ ଦେଖାକରି, ଆମ ଲେଖିବା ଅନୁସାରେ ଆମ ଦୁହିଁଙ୍କର ଜଣଙ୍କ ଘରେ ପଇସା- ଦିଆ ଅତିଥି ଭାବେ ରହିବାର ବ୍ୟବସ୍ଥା ହୋଇଛି ବୋଲି କହିଲା । ସେ ଟାକ୍‌ସିଟିଏ ଡ଼ାକି ଟାକ୍‌ସିବାଲାକୁ ଆମ ଅତିଥିଶାଳାର ଠିକଣା ବତାଇ ଦେଇ ବିଦାୟ ଘେନି ଚାଲିଗଲା ।

ଆମେ ଆମର ସହଯାତ୍ରୀଙ୍କଠାରୁ ବିଦାୟ ଘେନି ବନ୍ଦରରୁ ଆସି ଲଣ୍ଡନର ମିସେସ୍ କପୁରଙ୍କ ଘରେ ଅତିଥି ହେଲୁ । ମିସେସ୍ କପୁର ବିଲାତର ଲୋକ । କିନ୍ତୁ ପଞ୍ଜାବରୁ ଆସି ଭାରତୀୟ ଦୂତାବାସରେ କାମ କରୁଥିବା ମିଷ୍ଟର କପୁରଙ୍କୁ ବିବାହ କରିଛନ୍ତି । ତାଙ୍କ ଘରେ ତାଙ୍କର ଏକ ଅବିବାହିତା ଯୁବତୀ କନ୍ୟା ମଧ ଥିଲେ । ଆମେ ପହଁଚିବା ପରେ ସେମାନେ ଆମେ ରହିବାର ସୁବ୍ୟବସ୍ଥା କରିଦେଲେ । ରହିବା ସଙ୍ଗେ ସକାଳର ଚା' ଜଳଖିଆ ମଧ ମିଳିଲା । ଯୁଦ୍ଧପର ବିଲାତରେ ଖାଦ୍ୟଦ୍ରବ୍ୟର ଉତ୍କଟ ଅଭାବ ଥିବା ଯୋଗୁଁ ରାସନ ପ୍ରଚଳିତ ଥିଲା । ମିସେସ କପୁରଙ୍କ ନିର୍ଦ୍ଦେଶରେ ଆମେ ଦୁହେଁ ପଡ଼ି ଦୋକାନକୁ ଯାଇ ପାସପୋର୍ଟ ଦେଖାଇ, ଅଣ୍ଡା ରୁଟି ପ୍ରଭୃତି ଆଣି ତାଙ୍କୁ ଦେଉଥିଲୁ । ସେଠାରେ ରହିବା ପରେ ମୁଁ ମୋ ଆମେରିକା ଯାତ୍ରା ପାଇଁ ଟିକେଟ ସଂଗ୍ରହରେ ଲାଗିପଡ଼ିଲି ।



# ଗନ୍ତବ୍ୟ ସ୍ଥଳ

ଲଣ୍ଡନ ରହଣି ଭିତରେ ବମ୍ବେରେ ମିଳିଥିବା ଠିକଣା ଅନୁସାରେ ଖୋଜି ଖୋଜି ମୁଁ ସେହି 'ଜିନା' ଜାହାଜ କମ୍ପାନୀ ଅଫିସ୍‌ରେ ପହଞ୍ଚିଲି । ସାଉଥ ହାମ୍ପଟନରୁ ବାହାରୁଥିବା 'କୁଇନ ମେରୀ' ଜାହାଜରେ ନିଉୟର୍କ ଯାତ୍ରା ପାଇଁ ଟିକେଟଟି ନେଇ ଆସିଲି ।

ମୁଁ କପୁର ପରିବାରଙ୍କଠାରୁ ବିଦାୟ ଘେନି ୧୯୫୨ ମାର୍ଚ୍ଚ ୨୧ ତାରିଖ ଦିନ ଲଣ୍ଡନର ଓ୍ୱାଟରଲୁ ଷ୍ଟେସନରୁ ରେଳ ଟିକେଟ କରି ସାଉଥ ହାମ୍ପଟନ ବନ୍ଦର ଅଭିମୁଖେ ଯାତ୍ରାକରି ସେଠାରେ ରାତ୍ରୀ ଆଠଟାରେ ପହଞ୍ଚିଲି । ସେଠାରେ ଆମେରିକା ଯାତ୍ରା କରିଥିବା ଅନ୍ୟ କେତେକ ଭାରତୀୟଙ୍କ ସଙ୍ଗେ ଜାହାଜରେ ଆମ ଜିନିଷପତ୍ର ରଖାଇ ଟାକ୍‌ସିଟିଏ କରି ସେ ସହରଟି ବୁଲି ଦେଖିବାକୁ ବାହାରିଲୁ । ମୋ ସଙ୍ଗେ ମିଃ. ଯୋଷୀ, ମିଃ କାପାଡ଼ିଆ, ମିଃ ଲକ୍ଷ୍ମଣ ପାଲ ଓ ମିସ୍ ଖାଁ ପ୍ରଭୃତି ଥିଲେ । ସେ ସମସ୍ତେ ଭିନ୍ନ ଭିନ୍ନ ବିଷୟରେ ଉଚ୍ଚ ଶିକ୍ଷା ପାଇଁ ଆମେରିକା ଯିବାକୁ ବାହାରିଥିଲେ ।

ଆମେ ସେ ସହରଟି ବୁଲି ଦେଖିଲୁ । ଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜର୍ମାନ ପକ୍ଷ ସେ ସହର ଉପରେ ବୋମା ମାଡ଼ରେ ଧ୍ୱଂସ କରିଥିବା ଚିହ୍ନମାନ ବହୁ ସ୍ଥାନରେ ରହିଥିଲା । ବୋମା ବିଧ୍ୱସ୍ତ ଭଙ୍ଗାଘର, ଭଙ୍ଗାକାନ୍ଥ, ବଡ଼ ବଡ଼ ଗାତ ପ୍ରଭୃତି ଦେଖିବାକୁ ମିଳିଲା । ଆମେ ସିଭିଲ୍ ଲାଇନ୍ ଦେଇ ଯିବା ବାଟରେ ନାଚ ଗୃହ, ମଦ୍ୟପାନ ଗୃହର ଗେଟ ପ୍ରଭୃତି ଦେଖି ଯାଉ ଯାଉ ଏକ ସ୍ଥାନରେ ଅପେକ୍ଷାରତ ସିନେମା ଦର୍ଶନ ପ୍ରାର୍ଥୀଙ୍କର ଏକ ଲମ୍ବାଧାଡ଼ିଟିଏ ଦେଖିଲୁ । ସେମାନେ ଗୋଟିଏ ସିନେମା ଘର ସାମନାରେ ବହୁ ସମୟ ଧରି ଧାଡ଼ିବାନ୍ଧି ଠିଆହୋଇ ରହିଥିଲେ । ଯୁଦ୍ଧ ପରେ ସେ ସହରରେ ସିନେମାଘର ଛଡ଼ା ସମୟ କଟାଇବା ପାଇଁ ଶସ୍ତା ସୁବିଧା ଆମୋଦପ୍ରଦ ସ୍ଥାନ ଆଉ ନ ଥିଲା ।

## କ୍ୟୁଇନ ମେରୀରେ ଯାତ୍ରା

ସେ କାଳରେ ପୃଥିବୀରେ ତିନୋଟି ମାତ୍ର ସର୍ବବୃହତ୍ ଯାତ୍ରୀବାହି ଜାହାଜ ଥିଲା- କ୍ୟୁଇନ ମେରୀ, କ୍ୟୁଇନ ଏଲିଜାବେଥ ଓ ଏସ୍. ଏସ୍. ଆମେରିକା । ତାହା ଆକାରରେ ଏତେ ବଡ଼ ଥିଲା ଯେ ସେଥିରେ ଗୋଟିଏ ସହରର ସମସ୍ତ ଲୋକ ଧରିବା ଭଳି ସ୍ଥାନ ଥଲା । ତିନି ତାଲାର ଖୁନ୍ଦାଖୁନ୍ଦି କୋଠରୀମାନଙ୍କ ଭିତରେ ହଜାରହଜାର ଯାତ୍ରୀ ରହିବାର ବ୍ୟବସ୍ଥା ଥିଲା । ସେ ଜାହାଜ ଭିତରେ ଗୋଟିଏ ବଡ଼ ସିନେମାହଲ, ବିରାଟ ବିରାଟ ଡ଼ାଇନିଙ୍ଗହଲ୍, ଖେଳପ୍ରକୋଷ୍ଠ ଓ ସନ୍ତରଣ ପୁଷ୍କରିଣୀ ପ୍ରଭୃତି ରହିଥିଲା । ସେଠାରେ

ପ୍ରେସ୍‌ଟିଏ ଥାଇ ସେଥିରୁ 'ଓସେନ୍ ଟାଇମ୍‌ସ' ନାମକ ଏକ ସମ୍ବାଦପତ୍ର ପ୍ରକାଶିତ ହୋଇ ଯାତ୍ରୀମାନଙ୍କୁ ଯୋଗାଇ ଦିଆଯାଉଥିଲା । ସେଥିରେ ସବୁଦିନ ଦୁନିଆରେ ଘଟୁଥିବା ପ୍ରଧାନ ପ୍ରଧାନ ସମ୍ବାଦ ସବୁ ପରିବେଷଣ କରାଯାଉଥିଲା ।

ଆମ କୋଠରୀରେ ମୁଁ ଓ ମିଃ ଯୋଷୀ ଦୁଇଜଣ ରହୁଥିଲୁ । ସେ କ୍ୟାବିନ ଭିତରେ ଛୋଟ ଆଲୁଅଟିଏ ଜଳୁଥିଲେ ମଧ ତାହା ଅନ୍ଧାରୁଆ ଥଣ୍ଡା ସ୍ଥାନ ଥିଲା । ତେଣୁ ଆମେ କେବଳ ଶୋଇବା ଛଡ଼ା ସେଥିରେ ପଡ଼ି ନ ରହି ଏଣେତେଣେ ଜାହାଜଯାକ ବୁଲୁଥିଲୁ । ସେଠାରେ ଦିନକେ ଦୁଇଥର ମାଗଣାରେ ସିନେମା ଦେଖାଯାଉଥିବାରୁ ମୁଁ ଓ ଯୋଷୀ ତା'ର ସୁବିଧା ନେଲୁ । ପ୍ରଥମେ ଆମେ "ମଣ୍ଟାନାର ନାଲି ଆକାଶ" ଚିତ୍ରଟି ଦେଖିଲୁ । ଆମେରିକାରେ ଜଙ୍ଗଲର ଅଗ୍ନିକୁ କିପରି ହେଲିକପ୍‌ଟର ସାହାଯ୍ୟରେ ନିର୍ବାପିତ କରିବାକୁ ହୁଏ, ସେହି ଭୟାବହ ଦୃଶ୍ୟ ଦେଖାଗଲାବେଳେ ଯୋଷୀ ଭୟାତୁର ହୋଇ ମୋତେ ଜାକି ପକାଇଥିଲେ ।

ପାଞ୍ଚଦିନର ଜାହାଜ ଯାତ୍ରା ଭିତରେ ପୁଣି ଥରେ "ମୁଁ ତୁମକୁ ବିଶ୍ୱାସ କରେ", ସିନେମାଟି ଦେଖିବାକୁ ଗଲୁ । ତାହା ଏକ ମନସ୍ତାତ୍ତ୍ୱିକ ସିନେମା ଥିଲା । ଜଣେ ଅସାମାଜିକ ଅପରାଧୀର ମନରେ ବିଶ୍ୱାସ ଜନ୍ମାଇଲେ ତା'ର କିପରି ଭଲ ଆଡ଼କୁ ପରିବର୍ତ୍ତନ ଘଟିପାରେ ତାହା ସେ ଚିତ୍ରର ପ୍ରଧାନ ବିଷୟବସ୍ତୁ ଥିଲା ।

ଜାହାଜରେ ନାନା ହସ ଖୁସିର ଉତ୍ସବ ଚାଲିଥାଏ । ବିଶେଷତଃ ସନ୍ଧ୍ୟା ଡ଼ିନର ସମୟରେ ଡ଼ାଇନିଙ୍ଗ ହଲ ସୁସଜ୍ଜିତ ହୋଇଥାଏ । ଦିନେ ସନ୍ଧ୍ୟାରେ ସୁସଜ୍ଜିତ ଡ଼ାଇନିଙ୍ଗ ହଲଟିରେ ମୁଁ, ଯୋଷୀ ଓ ମିସ୍ ଖାଁ ଏକାଠି ବସି ଭୋଜନ କରିବା ସମୟରେ ଗୋଟିଏ ଗୋରା ଫଟୋଗ୍ରାଫର ଆସି କହିଲା ଫଟୋ ନେଇପାରେ କି ? ଆମେ କହିଲୁ ଇଚ୍ଛାହେଉଥିଲେ ନେଇପାରନ୍ତି । ସେ ଆମର ଫଟୋ ଉଠାଇ ନେବା ପରେ ଫେରିଯାଇ କିଛି ସମୟ ଉତ୍ତାରେ ତିନୋଟି ଫଟୋ କପି ଆଣି ଆମକୁ ବିକ୍ରି କରି ଦେଇ ଚାଲିଗଲା । ବାହାରର ଫଟୋ ଉଠାଇବା ଦାମ୍ ଠାରୁ ତାହା ବହୁତ ଅଧିକ ଥିଲା । ମୁଁ ଗୋଟେ ୧୫୦ ଡ଼ଲାର ଚେକ ସାଙ୍ଗରେ ନେଇଥିଲି । ସେଥିରୁ ବିଭାତ ଖର୍ଚ୍ଚ ଓ ଛୋଟ ଜିନିଷପତ୍ର କିଣିବା ପରେ ମୋର ସମ୍ବଳ ସୀମିତ ହୋଇ ଯାଇଥିଲା । ତେଣୁ ଫଟୋ ପଇସା ମୋତେ ବାଧିଥିଲା । ସେ' ଦିନ ପୁଣି ଆମେ ସିନେମା ହଲକୁ ଯାଇ "ରବିନହୁଡ୍" ଛବିଟି ଦେଖିଲୁ । ରାଜା ରିଚାର୍ଡ଼, ଦସ୍ୟୁ ରବିନହୁଡ଼କୁ ପୁରସ୍କୃତ କରୁଥିବାର ଦୃଶ୍ୟ ଦେଖିଲୁ ।

ମୁଁ ଜାହାଜ ଡ଼େକରେ ବୁଲାବୁଲି କରୁଥିବା ବେଳେ ଏକ ଦକ୍ଷିଣ ଭାରତୀୟ ପରିବାର ସହିତ ମିଶିବାର ସୁବିଧା ମିଳିଥିଲା । ସେ ପରିବାର କାନାଡ଼ା ଉଦ୍ଦେଶ୍ୟରେ ଯାତ୍ରା

କରୁଥିଲେ । ସେ ଭଦ୍ରଲୋକ କାନାଡ଼ାରେ ଭାରତୀୟ ଦୂତାବାସରେ କାର୍ଯ୍ୟ କରନ୍ତି । ତାଙ୍କର ୩, ୪ ବର୍ଷର ଝିଅଟି ମୋ ପ୍ରତି ଆକୃଷ୍ଟ ହୋଇ ପଡୁଥିଲା । ମୋ ସାଙ୍ଗରେ ଖେଳିବାକୁ ଭଲ ପାଉଥିଲା । ତାର ନାମ ଥିଲା ସୁମିତ୍ରା । ମୁଁ ମାସକରୁ ଅଧିକ ହେଲା ଘରଛାଡ଼ିଥିଲି, ମାତ୍ର ଚିଠିପତ୍ର କିଛି ପାଇ ନଥିଲି । ମୋର ପିଲାଟିଏ ହେବାର ଥିଲା । ପିଲାଟି ଯଦି କନ୍ୟା ହୁଏ ତେବେ ତାର ନାମ ସୁମିତ୍ରା ଦେବି ବୋଲି ମୁଁ ସେ କାନାଡ଼ା ଯାତ୍ରୀ ଝିଅଟିକୁ କହି ଗେଲ କରୁଥିଲି । (ପରେ ମୋର ଝିଅ ହେବାର ସମ୍ୱାଦ ପାଇ ମୁଁ ତା'ର ନାମ ସୁମିତ୍ରା ରଖିଥିଲି । ଭାଗ୍ୟନିୟନ୍ତାଙ୍କ ନିର୍ଦ୍ଦେଶରେ ପରବର୍ତ୍ତୀ କାଳରେ ମୋ କନ୍ୟା ସୁମିତ୍ରା ଆୟୁଷ୍ମାନ୍ ହରନାରାୟଣ ପାଢ଼ିଙ୍କ ପତ୍ନୀ ହୋଇ ତା'ର ଦୁଇଟି ସନ୍ତାନଙ୍କ ସହିତ କାନାଡ଼ାରେ ବସବାସ କରି ରହିଛି) ।

ଆମ ଜାହାଜର ଗତି ସାଧାରଣ ଜାହାଜର ଗତିରୁ ଦୁଇଗୁଣ ଥିବାରୁ ଆମେ ସାଧାରଣ ଜାହାଜର ଦଶ ଦିନର ବାଟକୁ ପାଞ୍ଚ ଦିନରେ ଆସି ନିଉୟର୍କ ବନ୍ଦର ନିକଟରେ ପହଞ୍ଚିଲୁ । ସେଠାରେ ଜାହାଜ ଭିତରେ ରାତିଟି କଟାଇ ସକାଳ ହେଉ ହେଉ ଜାହାଜରୁ ଓହ୍ଲାଇଯିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଲୁ । ନିଉୟର୍କ ସହରକୁ ଘେରି ରହିଥିବା ହଡ଼ସନ ନଦୀ ଦେଇ ଜାହାଜଟି ବନ୍ଦର ନିକଟକୁ ଆଗେଇ ଚାଲିଥିବା ବେଳେ ସକାଳୁ ସେ ମହାନଗରୀର ଉଚ୍ଚ କୋଠାମାନ ଶୋଭା ପାଉଥିବା ଦୁଇକୂଳର ଦୃଶ୍ୟ ସବୁ ଆମକୁ ଦେଖିବାକୁ ମିଳିଲା ।

## ନିଉୟର୍କ

ସକାଳ ସାଢ଼େ ଆଠଟା ବେଳେ ଜାହାଜରୁ ଓହ୍ଲାଇ ମୁଁ ବନ୍ଦର ବାହାରକୁ ଆସିଲି । ମୁଁ ଆଗରୁ ନିଉୟର୍କରେ ଥିବା ମୋର ଦୁଇଜଣଯାକ ଡ଼ାକ୍ତର ବନ୍ଧୁଙ୍କୁ ବନ୍ଦରକୁ ଆସି ମୋତେ ପାଛୋଟି ନେବାକୁ ଲେଖିଥିଲି, କିନ୍ତୁ ସେଠାରେ ସେମାନଙ୍କୁ ଦେଖିଲି ନାହିଁ । ଆମେ ଜାହାଜରୁ ଓହ୍ଲାଇବା ପୂର୍ବରୁ ବନ୍ଦରରେ ଅପେକ୍ଷା କରିଥିବା ଚିଠି ସବୁ ଆମକୁ ଦିଆଯାଇଥିଲା । ମୁଁ ଚାଟାନୁଗା ହସ୍‌ପିଟାଲର ସୁପରିଟେଣ୍ଡେଣ୍ଟଙ୍କ ସ୍ୱାଗତିକା ଚିଠିଟି ପାଇଥିଲି । ନିଉୟର୍କ ବନ୍ଦରରୁ କିପରି କେଉଁବାଟେ ଆସିବାକୁ ହେବ ସେ ସେସବୁ ବିଶଦ ଭାବରେ ଲେଖିଥିଲେ ଓ ମୁଁ ଚାଟାନୁଗା ଷ୍ଟେସନରେ ପହଞ୍ଚିବା ସଙ୍ଗେ ସଙ୍ଗେ ମୋତେ ପାଛୋଟି ନେଇ ମୋର ସମସ୍ତ ବ୍ୟବସ୍ଥା କରିବେ ବୋଲି ଜଣାଇଥିଲେ ।

ମୁଁ ବନ୍ଧୁଙ୍କୁ ନ ଦେଖି ସିଧା ଚାଟାନୁଗା ଚାଲିଯିବା ଉଚିତ ହେବ କି ନାହିଁ ଭାବୁଥିବା ସମୟରେ ଆମେରିକାରେ ରହି ପଢୁଥିବା ଶ୍ରୀ ଶର୍ମା ନାମକ ଜଣେ ଭାରତୀୟ ଛାତ୍ର ମୋ ନିକଟକୁ ଆସି ମୋର ପରିଚୟ ପଚାରିଲେ । ତାଙ୍କ ସଙ୍ଗେ ଆଳାପ ହେବା ଭିତରେ ମୁଁ ଅନୁରୋଧ କରିବାରେ ସେ ଗୋଟିଏ ଟାକ୍‌ସିରେ ମୋତେ ସଙ୍ଗରେ ନେଇ ମୋ

ବନ୍ଧୁମାନେ ରହିଥିବା ମାଉଣ୍ଟ ସିନାଇ ହସ୍‌ପିଟାଲ ସାମ୍‌ନାରେ ଛାଡ଼ି ଦେଇଯିବା ପାଇଁ ରାଜି ହେଲେ ।

ଆମେ ଟାକ୍‌ସିରେ ଆସି ସେ ହସ୍‌ପିଟାଲ ସାମ୍‌ନାରେ ପହଞ୍ଚିବା କ୍ଷଣି ସେ ମୋ ଠାରୁ ବିଦାୟ ଘେନି ତରତରରେ ତାଙ୍କ ପଥରେ ଚାଲିଗଲେ । ନିଉୟର୍କ ବନ୍ଦରରେ ପୋର୍ଟର୍ ସବୁ ଥିବାରୁ ମୋ ବଡ଼ ବାକ୍‌ସଟି ଟାକ୍‌ସି ପର୍ଯ୍ୟନ୍ତ ଆଣିବାରେ କିଛି ଅସୁବିଧା ନଥିଲା । କିନ୍ତୁ ନିଉୟର୍କ ସହରର ଫୁଟପାଥ ଉପରେ କୌଣସି ପୋର୍ଟର ବା କୁଲି ଦେଖିବାର ସମ୍ଭାବନା ନ ଥିଲା । ଟାକ୍‌ସି ଡ୍ରାଇଭରଟା ତା' ଗାଡ଼ିରୁ ମୋ ବାକ୍‌ସଟାକୁ ତଳକୁ ଓହ୍ଲାଇ ଦେବା ପାଇଁ ମଧ ରାଜି ନ ଥିଲା । ମୁଁ ପଇସାର ଲୋଭ ଦେଖାଇବାରୁ ସେ ଗାଡ଼ିରୁ ବାକ୍‌ସଟା ଟାଣିଆଣି ଫୁଟପାଥରେ ଥୋଇ ଦେଇ ତା' ପଇସା ଘେନି ଚାଲିଗଲା ।

ନିଉୟର୍କରେ ସମସ୍ତେ ତରତର, କାହାକୁ ଅନ୍ୟ କାହା କଥା ଶୁଣିବାକୁ ତର ନାହିଁ । ସେଠାରେ ଛୋଟକାଟିଆ ଚୋରି ହୁଏ ନାହିଁ ବୋଲି ଶୁଣିଥିବାରୁ ମୋର ସେପରି ପୁରୁଣା ଟ୍ରଙ୍କଟା କିଏ କାହିଁକି ଛୁଇଁବ ବିଚାରି ମୁଁ ଟ୍ରଙ୍କଟାକୁ ଫୁଟପାଥ୍ ଉପରେ ଛାଡ଼ିଦେଇ ହସ୍‌ପିଟାଲକୁ ଯାଇ ଖବର ଦେବାରେ ମୋ ବନ୍ଧୁ, ଗାନ୍ଧି (ଆଦିତ୍ୟ ନାରାୟଣ ବର୍ମନ ଓ ଏବେ ଆମେରିକାବାସୀ ଏ. ଆଡ଼ିସନ୍ ବର୍ମନ) ଆସି ମୋତେ ଭେଟିଲେ । ଗାନ୍ଧି ଓ ମୁଁ ମୋ ବାକ୍‌ସଟାକୁ ଭିଡ଼ିଭିଡ଼ି ରାସ୍ତା ଉପରୁ ହସପିଟାଲକୁ ଆଣି ଲିଫ୍‌ଟ ଉପରେ ଥୋଇଲୁ । ସ୍ୱୟଂଚାଳିତ ଲିଫ୍‌ଟରେ ବାକ୍‌ସ ସହିତ ମୁଁ ଗାନ୍ଧି ସହିତ ବହୁ ତାଲା ଉପରେ ଥିବା ତା' କୋଠରୀ ନିକଟକୁ ଗଲୁ ।

ସେ'ଦିନ ସକାଳେ ମୋର ବନ୍ଧୁ (ଉଦୟନାଥ ଦାଶ) ଗୋଟିଏ ଜରୁରୀ ଅପରେସନ୍‌ରେ ବ୍ୟସ୍ତ ଥିଲା । ଅପରେସନ୍ ସରିବାରୁ ମୋ ସଙ୍ଗେ ଆସି ଦେଖା କଲା । ସେଠାରେ ବହୁତ ରାସ୍ତା ଦୁର୍ଘଟଣା ଘଟୁଥିବାରୁ ଅସ୍ଥିଶୈଲ୍ୟ ବିଭାଗରେ ବେଶୀ ଭିଡ଼ ଲାଗି ରହୁଥିଲା । ଉଦୟ ସେହି ବିଭାଗରେ କାର୍ଯ୍ୟ କରୁଥିବାରୁ ଅଧିକାଂଶ ସମୟ କାର୍ଯ୍ୟବ୍ୟସ୍ତ ରହୁଥିଲା ।

ବିଲାତ ଓ ଆମେରିକାର ଜଳବାୟୁ ସମ୍ପୂର୍ଣ୍ଣ ପୃଥକ । ନିଉୟର୍କରେ ସବୁ ସମୟରେ ବିଲାତି ମୋଟା ପୋଷାକ ପିନ୍ଧିବା ସମ୍ଭବ ନୁହେଁ । ସେଠାରେ ଅନେକ ସମୟରେ ଲୋକେ ହାଲୁକା ପୋଷାକ ପିନ୍ଧନ୍ତି । ବିଶେଷତଃ ନିଉୟର୍କଠାରୁ ବହୁଦୂର ଦକ୍ଷିଣାଞ୍ଚଳ ଟେନେସୀ ରାଜ୍ୟ ସେ ଦେଶରେ ଗୋଟିଏ ଗରମ ରାଜ୍ୟ ବୋଲି ଗଣତି ହେଉଥିବାରୁ ବିଲାତି ପୋଷାକ ସେଠାରେ ପିନ୍ଧିବା ସମ୍ଭବ ହେବ ନାହିଁ ବୋଲି ମୋତେ ଉଦୟ କହିଲା । ତେଣୁ ମୁଁ ବନ୍ଧୁମାନଙ୍କଠାରୁ ଧାର କରି ଆମେରିକାନ ହାଲୁକା ପୋଷାକ କିଣିବା ପାଇଁ

ଫିରକଲି । ମୁଁ ଉଦୟ ସଙ୍ଗେ ମାର୍କେଟକୁ ଯାଇ କୋଡ଼ିଏ ଡ଼ଲାର ଦେଇ ଗୋଟିଏ କୋର୍ଟ ଓ ଦୁଇଟି ପ୍ୟାଣ୍ଟ କିଣିଲି । ପ୍ୟାଣ୍ଟ ଦୁଇଟିର ଗୋଡ଼ ଲମ୍ୱ ଥିଲା । ନିଜର ମାପ ଅନୁସାରେ ତାକୁ କଟାଇ ପିନ୍ଧିବା କଥା ଉଦୟ ଓ ମୁଁ ଦରଜୀ ଦୋକାନ ଖୋଜି ଖୋଜି ବହୁ କଷ୍ଟରେ ପାଇଲୁ ଓ ତିନି ଡ଼ଲାର ଦେଇ ମୋ ମାପରେ ତଳ କାଟି ସିଲାଇ କରାଇଲୁ ।

ପରଦିନ ଉଦୟର ଛୁଟି ବା ଅଫ୍ ଥିବାରୁ ମୁଁ ତା' ସାଙ୍ଗରେ ବୁଲି ନିଉୟର୍କ ସହର ଦେଖିଲି । ରାସ୍ତା ଦୁଇପଟର କୋଠାଗୁଡ଼ିକ ଏତେ ଉଚ ଯେ ସୂର୍ଯ୍ୟକିରଣ ସେ ରାସ୍ତାକୁ ଛୁଇଁପାରେ ନାହିଁ । ସେ ସହରରେ ଥିବା ବିଖ୍ୟାତ 'ରେଡ଼ିଓ ସିଟି' ପ୍ରେକ୍ଷାଳୟକୁ ଗଲୁ । ସେ ହଲ୍‌ଟିରେ ଏକା ସମୟରେ ପନ୍ଦର ଶହ ଦର୍ଶକଙ୍କ ପାଇଁ ସ୍ଥାନ ରହିଥିଲା ଓ ସେଥିରେ ଦିନ ରାତି କିଛି ନା କିଛି ଅଭିନୟ ଚାଲିଥିଲା । ତା'ର ରିଭଲଭିଙ୍ଗ ବା ବୁଲି ଯାଇପାରୁଥିବା ଷ୍ଟେଜ ମାନଙ୍କରେ, ସିନେମା, ଥିଏଟର, ଜିମ୍ନାଷ୍ଟିକ, ମ୍ୟାଜିକ, ଗୀତ, ନାଚ ଗୋଟାକ ପରେ ଗୋଟେ ଦର୍ଶକମାନଙ୍କ ସାମନାରେ ପ୍ରଦର୍ଶନ କରାଯାଉଥିଲା । ସେ ପେଣ୍ଡାଲ ବା ଷ୍ଟେଜଟି ବୁଲିଯିବା ସଙ୍ଗେ ସଙ୍ଗେ ସେଥି ସଂଲଗ୍ନ ଥିବା ଦୃଶ୍ୟପଟ ଏପରିକି ଝରଣା, ଜଙ୍ଗଲ ପ୍ରଭୃତିର ଦୃଶ୍ୟ ସବୁ ମଧ ବୁଲିଯାଉଥିଲେ । ସେ ପ୍ରେକ୍ଷାଳୟରେ ଟିକେଟ କରି ଥରେ ପଶିଲେ ଯେତେ ଇଛା ସେତେ ସମୟ ସେଠାରେ ଦର୍ଶକ ସେସବୁ ଦେଖିବାର ସୁଯୋଗ ପାଉଥିଲେ ।

ଆମେ ସେଠାରୁ ଆସି ଟାଇମସ୍କୋୟାରରେ ସମ୍ୱାଦ ସବୁ ଘୂରୁଥିବାର ଦେଖିବାକୁ ପାଇଲୁ । ବଡ଼ ବଡ଼ ଉଚ କୋଠା, ପୃଥିବୀର ବୃହତ୍ତମ ଉଚ କୋଠା ଏମ୍ପାୟାର ଷ୍ଟେଟ ବିଲଡ଼ିଙ୍ଗ ଓ ଦୋକାନ ବଜାର ସବୁ ବୁଲି ବୁଲି ସନ୍ଧ୍ୟାରେ ଫେରି ଉଦୟ କୋଠରୀରେ ବିଶ୍ରାମ ନେଲି ।

ସକାଳୁ ଉଠି ଉଦୟଠାରୁ ବିଦାୟ ଘେନି, ଗାନ୍ଧି ସଙ୍ଗେ ପେନସିଲ୍‌ଭାନିଆ ଷ୍ଟେସନକୁ ଆସିଲି । ମୋତେ ଗାନ୍ଧି ଦକ୍ଷିଣଗାମୀ ପୁଲମାନ ରେଳଗାଡ଼ିରେ ବସାଇ ମୋଠାରୁ ବିଦାୟ ଘେନି ଚାଲିଗଲା । ଆମେରିକାରେ ନିଜ ଗାଡ଼ି, ବସ୍ ଓ ଉଡ଼ାଜାହାଜ ଯାତ୍ରାର ବିଶେଷ ସୁବିଧା ରହିଥିବାରୁ, ସମୟ ନଷ୍ଟ ହେଉଥିବା ଯୋଗୁଁ ବହୁ କମ୍ ଲୋକ ରେଳଗାଡ଼ିରେ ଯାତ୍ରା କରନ୍ତି ।

**ଚାଟାନୁଗା :**

ଚବିଶଘଣ୍ଟା ରେଳଯାତ୍ରା ପରେ ମୁଁ ନିଉୟର୍କରୁ ଆସି ଟେନେସୀ ରାଜ୍ୟର ଚାଟାନୁଗା ଷ୍ଟେସନରେ ପହଞ୍ଚିଲି । ମୋ ପୂର୍ବରୁ ଆସି ସେଠାରେ କାର୍ଯ୍ୟ କରୁଥିବା ପାତିଆଲାବାସୀ ଡ଼ାକ୍ତର ସାଗର ଦତ୍ତ ସିଖଣ୍ଡ ହସ୍‌ପିଟାଲର ଜଣେ କର୍ମକର୍ତାଙ୍କ ସହିତ ଷ୍ଟେସନକୁ ଆସି ମୋତେ ପାଛୋଟି ନେଲେ ।

ମୁଁ ସେଠାରେ ବାରୋନେରା ଏରଲାଙ୍ଗର ହସ୍ପିଟାଲର ସୁପରିନ୍‌ଟେଣ୍ଡେଣ୍ଟ ଡ଼ାକ୍ତର ବ୍ରାଣ୍ଡନଙ୍କୁ ସାକ୍ଷାତ କଲି । ସେ ମୋତେ ଅପେକ୍ଷା କରି ବସିଥିଲେ । ଆମେ ଗପସପ କରୁଥିଲାବେଳେ "ଚାଟାନୁଗା ଟାଇମସ" ସମ୍ବାଦପତ୍ରର ଜଣେ ସମ୍ବାଦିକ, ଡ଼ାକ୍ତର ବ୍ରାଣ୍ଡନଙ୍କ ସହିତ ମୋର ଓ ଡ଼ାକ୍ତର ସିଖଣ୍ଡଙ୍କର ଫଟୋ ଉଠାଇ ନେଲେ । ସେଠାର ଲୋକମାନେ ଛଅ ଫୁଟରୁ ଅଧିକ ଉଚ୍ଚ । ପଞ୍ଜାବୀ ଡ଼ାକ୍ତର ସିଖଣ୍ଡ ମଧ ହୃଷ୍ଟପୁଷ୍ଟ ଓ ଡ଼େଙ୍ଗା । ମୁଁ ସେମାନଙ୍କ ସଙ୍ଗେ ଫଟୋରେ ଖୁବ୍ ଛୋଟ ଦିଶୁଥିଲି । ତେଣୁ ପରଦିନ ସେହି ସମ୍ବାଦ ପତ୍ରରେ ଆମ ଫଟୋ ତଳେ ମୋ ପରିଚୟ ଦେବାକୁ ଯାଇ ଭାରତର ଛୋଟ ମଣିଷଟାଏ ସେ'ଠା ହସ୍ପିଟାଲର ପାଥୋଲଜି ବିଭାଗରେ ଯୋଗ ଦେଇଛନ୍ତି ବୋଲି ପ୍ରକାଶ ପାଇଥିଲା । ତା' ପରେ ମୋ ରହଣି କାଳରେ କେତେକ ଲୋକ ମୋତେ ଭାରତୀୟ ଛୋଟ ଡ଼ାକ୍ତର ବୋଲି ଚିହ୍ନାଇ ଦେଉଥିଲେ । ଏବ ଭଳି ଆମେରିକାରେ ଭରତୀୟଙ୍କ ସଂଖ୍ୟା ଏତେ ବେଶୀ ନ ଥିବାରୁ ସେମାନେ ଖୁବ୍ କମ୍ ଭାରତୀୟ ଦେଖିଥିଲେ ।

ମୁଁ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅଫିସରେ ଥିବା ସମୟରେ ଖବର ପାଇ ପାଥୋଲଜି ବିଭାଗର ମୁଖ୍ୟ ଡ଼ାକ୍ତର ଜେ. ଆଡ଼ାମ୍‌ସ ଆସି ମୋ ସଙ୍ଗେ ହାତ ମିଳାଇ ମୋତେ ତାଙ୍କ ସଙ୍ଗେ ପାଥୋଲଜି ବିଭାଗକୁ ଘେନିଗଲେ । ସେ ମୋତେ ଡ଼ିପାର୍ଟମେଣ୍ଟଟି ବୁଲାଇ ଦେଖାଇବା ପୂର୍ବରୁ ସେ ବିଭାଗର ଅନ୍ୟ ଡ଼ାକ୍ତର ଓ କର୍ମଚାରୀଙ୍କ ସହିତ ମୋର ପରିଚୟ କରାଇ ଦେଲେ । ମୋର ଆଉ ଦୁଇଦିନ ପରେ ଏପ୍ରିଲ ପହିଲାଠାରୁ ଟ୍ରେନିଙ୍ଗ ଆରମ୍ଭ ହେବ କହି ବିଦାୟ ନେଲେ ।

ମୁଁ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅଫିସକୁ ଫେରି ଡ଼ାକ୍ତର ସିଖଣ୍ଡଙ୍କ ସାହାଯ୍ୟରେ ମୋ ବାକ୍‌ସକୁ ଧରି ମୋ ରହିବା ପାଇଁ ହଷ୍ଟେଲ 'ଲୁପଟନ ହଲ'କୁ ଗଲି । ମୁଁ ମୋ କୋଠରୀକୁ ଆସି ଧୂଆ ଧୋଇ ହୋଇ ସାରିବା ପରେ ଖାଇବା ସମୟ ହୋଇଯିବାରୁ ଡ଼ାକ୍ତର ସିଖଣ୍ଡଙ୍କ ସଙ୍ଗେ ହସ୍‌ପସଟାଲର ଡ଼ାଇନିଙ୍ଗ ହଲକୁ ଗଲି । ଖାଦ୍ୟ ରହିଥିବା ଟେବୁଲ ଉପରେ ପ୍ରତ୍ୟେକ ଖାଦ୍ୟର ନାମ ଲେଖାଯାଇ କାର୍ଡ଼ ଖଣ୍ଡିଏ ଲେଖାଏଁ ରହିଥିଲା । ସିଖଣ୍ଡ ହିନ୍ଦୁ ଥିବାରୁ ସେ ଖାଦ୍ୟରୁ ମୋର କେଉଁଟା ନ ନେବା କଥା ମୋତେ ବୁଝାଇ ଦେଲେ । ଚାଟାନୁଗା ସହର ଆମେରିକା ଯୁକ୍ତରାଷ୍ଟ୍ରର ଦକ୍ଷିଣାଞ୍ଚଳରେ ଟେନେସୀ ନଦୀକୂଳରେ ଅବସ୍ଥିତ । ସେଠାରେ ପ୍ରଖ୍ୟାତ ଦକ୍ଷିଣୀ କୁକୁଡ଼ା ଭଜା ଓ ମାଛର ବିଭିନ୍ନ ତରକାରୀ ପ୍ରଚୁର ମିଳେ । ତେଣୁ ମୁଁ ଅନ୍ୟ ମାଂସ ଆଡ଼େ ଆଖି ନ ଦେଇ କୁକୁଡ଼ା, ମାଛ ଓ ପାଉଁରୁଟି ପ୍ରଭୃତି ନେଇ ଖାଇବାକୁ ସ୍ଥିର କଲି ।

ଖାଦ୍ୟ ବିଭ୍ରାଟ :

ଦିନେ ସେ ଖାଦ୍ୟମାନଙ୍କ ଭିତରୁ କେତେକଙ୍କ ନାମ ଉପରେ ମୋ ଆଖି ପଡ଼ିଲା । ସେ ଖାଦ୍ୟକୁ ଅନ୍ୟମାନେ ଅତି ଆଦରରେ ନେଇ ଖାଉଥିଲେ । ସେ ଖାଦ୍ୟର ନାମ ହଟ୍‌ଡ଼ଗ (ଗରମ କୁକୁର) ଓ ହାମ ବର୍ଗର (ଘୁଷୁରୀ ମାଂସ) । ମୁଁ ମୋର ଥାଳିଆ ନେଇ ମୋ ଖାଦ୍ୟ ଆଣି ଡ଼ାଇନିଙ୍ଗ ଟେବୁଲରେ ବସି ଖାଇବାପାଇଁ ସେଠାକୁ ଯାଇଥିଲି । କୁକୁର ଓ ଘୁଷୁରି ମାଂସ ସେଠାରେ ଥିବା ପଢ଼ିବା ପରେ ମୋ ହାତରୁ ପ୍ଲେଟଟା ଖସି ପଡ଼ିଲା । ମୁଁ ଆଉ ଗୋଟିଏ ପ୍ଲେଟରେ ସାଲାର୍ଡ୍ ଆଣି ମୋ ଟେବୁଲ ପାଖକୁ ଫେରିଆସି ନିରବରେ ବସି ରହିଲି ।

ମୁଁ ବମ୍ବେରୁ ବିଲାତ ଆସୁଥିବା ବେଳେ ମୋର ଜଣେ ଶିଖ୍ ସହଯାତ୍ରୀ ଘୁଷୁରୀ ମାଂସର ବହୁତ ତାରିଫ୍ କରୁଥିଲେ । କିନ୍ତୁ ଆମ ଆଡ଼ର ଘୁଷୁରୀ ଯେ ଦେଖିଥିବ ଓ ସେକାଳର ବ୍ରହ୍ମପୁର ପ୍ରଭୃତି ଦକ୍ଷିଣୀ ସହର ମ୍ୟୁନିସିପାଲଟି ପୋଷା ଘୁଷୁରୀମାନଙ୍କ ଖାଦ୍ୟ ବିଷୟରେ ଜାଣିଥିବ, ଖାଇଲା ବେଳେ ସେ କଥା ମନେପଡ଼ିଲେ ବାନ୍ତି ନ କରି ରହିପାରିବ ନାହିଁ । ସେହି ହଟ ଡ଼ଗକୁ କ୍ଷୁଦ୍ର ପାଉଁରୁଟି ଭିତରେ ଥିବା କୁକୁର ଲାଙ୍ଗୁଡ଼ ବୋଲି ମୋର ଧାରଣା ହେଲା । ତେଣୁ ସେପରି ଖାଦ୍ୟ ଖାଉଥିବା ଲୋକଙ୍କ ପ୍ରତି ମୋର ବିତୃଷ୍ଣା ହେଲା ଏବଂ ମୁଁ ସେ ଟେବୁଲ୍ ଉପରେ ଖାଉଥିବା ଲୋକମାନଙ୍କଠାରୁ ଦୂରେଇ କରି ବସିଲି ।

ଆମେରିକାର ଲୋକମାନେ ଗପୁଡ଼ି,ସେମାନେ ବିଲାତର ଲୋକଙ୍କ ଭଳି ଏକୁଟିଆ ବାହାରା ନୁହନ୍ତି । ମୁଁ ସେପରି ବସିଥିବା ବେଳେ ସେଠାର ନିଶ୍ଚେତକ ବିଭାଗର ଜଣେ ବୃଦ୍ଧ ଡ଼ାକ୍ତର ମୋ ସଙ୍ଗେ ଆଳାପ ଜମାଇବା ପାଇଁ ମୋ ନିକଟରେ ବସି କହିଲେ ''ତୁମକୁ ବୋଧହୁଏ ଏ ଖାଦ୍ୟ ଭଲ ଲାଗୁ ନାହିଁ । ତୁମ ଦେଶର ଖାଦ୍ୟ ନିଶ୍ଚୟ ଭଲ ହୋଇଥିବ । ମୁଁ ଭାରତରୁ ଆସିଥବା 'ବ୍ରାହ୍ମକାଉ' ହିନ୍ଦୁ ଗୋରୁର ମାଂସକୁ ଚର୍ବିପୂର୍ଣ୍ଣ ବୁଲ ଥରେ ଖାଇଛି ତାହା ଆମ ଗୋ ମାଂସଠାରୁ ବେଶୀ ସୁସ୍ୱାଦୁ ।'' ମୁଁ ତାଙ୍କ କଥା ଶୁଣିବା ସଙ୍ଗେ ସଙ୍ଗେ ସେଠାରୁ ଉଠି ଚାଲିଯିବାକୁ ଭାବୁଥିବାବେଳେ ସିଖଣ୍ଡ ତା' ପ୍ଲେଟରେ ହାମ ବର୍ଗର ଓ ହଟ ଡ଼ଗ ଆଣି ମୋ ନିକଟରେ ଖାଇବାକୁ ବସିଲା । ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି ଏ ଲୋକେ ଘୋଡ଼ା ମାଂସ, ଗୋ ମାଂସ, ଘୁଷୁରୀ ମାଂସ , କୁକୁର ମାଂସ ପ୍ରଭୃତି ଖାଆନ୍ତି । ତୁମେ ସେମାନଙ୍କ ସଙ୍ଗେ ପଡ଼ି ହାମ୍ ବର୍ଗର ଓ ହଟ ଡ଼ଗ ଖାଉଛ ? ସିଖଣ୍ଡ ଟିକିଏ ହସି କରି କହିଲା,ତୁମେ ଦିଲ୍ଲୀ ଚାର୍ଟ, ବମ୍ବେ ଚାର୍ଟ, ପଞ୍ଜାବୀ ଚାର୍ଟ, କୁରୁମା, ପ୍ରଭୃତି ଖାଇନ ? ସେହିପରି ଏଠା ହାମବର୍ଗର ନାମ ଜର୍ମାନୀର 'ହାମବର୍ଗ' ସହରର ନାମ ସହିତ ସଂପୃକ୍ତ । ଏ ଚପ ମେଣ୍ଢା ମାଂସ, କୁକୁଡ଼ା ମାଂସରେ ମଧ ତିଆରି ହୁଏ । ହଟ୍ ଡ଼ଗ, ହଟ ବା ଗରମ ନୁହେଁ କି ଡ଼ଗ ବା କୁକୁର ମାଂସ ନୁହେଁ । ସେଥିରେ କୁକୁର ମାଂସ ରହିବାର

ପ୍ରଶ୍ନ ଉଠୁନାହିଁ । ସେ ରୁଟି ଭିତରେ ଥିବା ଛୋଟ କୁକୁର ଲାଙ୍ଗୁଡ଼ଆକାରର ଅନ୍ୟ ମାଂସର ଭଜା ସସେଜଟିଏ ଥାଏ । ଏଠାରେ ତ ଏପରି ଅଦ୍ଭୁତ ନାମ ସବୁ ବ୍ୟବହୃତ ହୁଏ । ଏହାକହି ଟେବୁଲ ଉପରୁ ଲଙ୍କା ଆଚାର ଶିଶିଟା ଉଠାଇ ଆଣି ମୋତେ କହିଲା ପଢ଼ । ସେ ଶିଶି ଭିତରେ ଗୋଟା ନାଲିଲଙ୍କା ଭେନିଗାର ସହିତ ରହିଥିଲା, କିନ୍ତୁ ଉପରେ ରେଡ୍ ଡେଭିଲ (ନାଲିଭୂତ) ବୋଲି ଲେଖା ଯାଇଥିଲା । ସିଖଙ୍କ କଥା ଶୁଣି ମୁଁ ଆଶ୍ୱସ୍ତ ହୋଇ ମୋ ଖାଦ୍ୟ ଆଣି ଖାଇଲି ।

### ଲୋକ ଚଳଣି :

ଖାଦ୍ୟ ଅସୁବିଧା ସହିତ ସେଠାର ଚାଲିଚଳଣ ଓ ଭାଷାର ଅସୁବିଧା ମଧ୍ୟ ପ୍ରଥମରୁ ଅଡୁଆ ଅଡୁଆ ଲାଗିଲା । ସେ ସମୟରେ ସେହି ଦକ୍ଷିଣାଞ୍ଚଳରେ କଳା (ନିଗ୍ରୋ) ଗୋରା ଭେଦ ଅତି ଉତ୍କଟ ଥିଲା । ଗୋରାମାନେ ନିଗ୍ରୋମାନଙ୍କୁ ନ୍ୟୁନ ଚକ୍ଷୁରେ ଦେଖୁଥିଲେ, ମିଷ୍ଟର ବୋଲି ମଧ ସମ୍ବୋଧନ କରୁନଥିଲେ । ଦୋକାନ, ବଜାର, ଚର୍ଚ୍ଚ, ସିନେମାହଲ, ହସ୍‌ପିଟାଲ ୱାର୍ଡ଼, ବସ୍‌ରେ ବସିବା ସ୍ଥାନଠାରୁ ପିଇବା ପାଣି କଳ ପର୍ଯ୍ୟନ୍ତ ନିଗ୍ରୋ ଓ ଗୋରାଙ୍କ ପାଇଁ ସ୍ୱତନ୍ତ୍ର ହୋଇ ରହିଥିଲା । ବସ୍‌ରେ ଗୋରାଙ୍କ ସ୍ଥାନ ଭିଡ଼ ଥାଇ ନିଗ୍ରୋଙ୍କ ସ୍ଥାନ ଖାଲି ପଡ଼ିଥିଲେ ମଧ ଗୋରାମାନେ ସେଥିରେ ବସୁନଥିଲେ । କଳାଙ୍କ ପାଣିକଳ ଖରାପ ଥିଲେ ମଧ ସେମାନେ ଗୋରାଙ୍କ ପାଣିକଳରୁ ପାଣିପିଇବା ବାରଣ ଥିଲା ।

ନିଗ୍ରୋମାନେ ହସ୍‌ପିଟାଲ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ସବୁ ସାଧାରଣ କାର୍ଯ୍ୟ କରୁଥିଲେ । ଏପରିକି ସେମାନେ ହସପିଟାଲରେ, ହୋଟେଲରେ ଗୋରାମାନଙ୍କ ପାଇଁ ରୋଷେଇ କରୁଥିଲେ, କିନ୍ତୁ ଗୋରାଙ୍କ ସଙ୍ଗେ ଏକା ଟେବୁଲରେ ବସି ଖାଇବା ସେମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । କୌଣସି ନିଗ୍ରୋ ସଙ୍ଗେ ଅନ୍ୟ ରଙ୍ଗର ଲୋକ ସୁଖାଳାପ କରିବାକୁ ଚେଷ୍ଟା କଲେ ତା'ର ପ୍ରାଣହାନୀର ଆଶଙ୍କା ଥିଲା । ଆମ ବିଦେଶୀଙ୍କୁ ବ୍ରାଉନ ରଙ୍ଗର କହି ସେଠାର ଗୋରାମାନେ ତାଙ୍କ ସଙ୍ଗେ ଏକ ବୋଲି ଧରି ନେଇଥବାରୁ ମୋର ସେମାନଙ୍କ ସଙ୍ଗେ ମିଳାମିଶା କରିବାର ଅବଶ୍ୟ ବିଶେଷ ଅସୁବିଧା ନ ଥିଲା । ସେଠାରେ ସେ ସମୟରେ ଯେଉଁ ବର୍ଣ୍ଣ-ବୈଷମ୍ୟ ରହିଥିଲା, ତାହା ସଙ୍ଗେ ସଙ୍ଗେ ଆମର ଅସ୍ପୃଶ୍ୟତା- ଭେଦ ପାସଙ୍ଗରେ ପଡ଼ିବ ନାହିଁ ।

ସେଠାରେ କାୟିକ ପରିଶ୍ରମର ମୂଲ୍ୟ ଅଧିକ ଥିବାରୁ ସେଠାର ନିଗ୍ରୋମାନେ ଆମ ଆଦିବାସୀ ହରିଜନଙ୍କ ପରି ନିଃସ୍ୱ ବା ଗରିବ ନଥିଲେ । ଗୋରାମାନଙ୍କ ପରି ସେମାନଙ୍କର ମଧ, ପ୍ରାୟ ଖଣ୍ଡିଏ ଲେଖାଏଁ ମୋଟର ଗାଡ଼ି ଥିଲା । ସେମାନେ ସେଥିରେ ଚଢ଼ି ନିଜ ନିଜ କାର୍ଯ୍ୟସ୍ଥଳକୁ ଯାତାୟାତ କରନ୍ତି ।

ଦକ୍ଷିଣ ରାଜ୍ୟର ଆମେରିକାନ ଇଂରେଜୀ ବୁଝିବା କଷ୍ଟ । ବିଶେଷତଃ ନିଗ୍ରୋମାନଙ୍କ ଇଂରେଜୀ ଭାଷା ଅତ୍ୟନ୍ତ ଅତୃପ୍ତ, ଅବୋଧ । ସେଥିରେ କ୍ରିୟା, କର୍ମ,କର୍ତ୍ତା ପ୍ରଭୃତିର କିଛି ଠିକ୍ ନ ଥାଏ । ପ୍ରଥମେ ସେହି ଦକ୍ଷିଣୀ ଘୋଷଡ଼ା ବା ଡ୍ରଲ ଇଂରାଜୀ ଭାଷା ମୁଁ କିଛି ଧରି ପାରୁନଥିଲି । ଆସ୍ତେ ଆସ୍ତେ ଟିକିଏ ଟିକିଏ ବୁଝିପାରିଲି । ଡ଼ାକ୍ତର ସିଖଣ୍ଡଙ୍କ ଭାଷା ପଞ୍ଜାବୀ ଭାଷା ଥିଲା, ତେଣୁ ଆମେ ଦୁହେଁ ଇଂରେଜୀରେ କଥାବାର୍ତ୍ତା ହେବାକୁ ବାଧ ହେଉଥିଲୁ । ଓଡ଼ିଆ ଭାଷାର ଅଭାବରୁ ସେଠାରେ ମୋତେ ବେଶୀ ଏକୁଟିଆ ଲାଗୁଥିଲା ।

**ଦକ୍ଷିଣୀ ଆତିଥ୍ୟ :**

ସେପରି ଏକୁଟିଆ ଭାବରେ ଚାରି ଛଅଦିନ କଟିବା ପରେ ,ଏପ୍ରିଲ ତା ୬ରିଖ ଦିନ ହଠାତ୍ ବାହାରୁ ମୁଁ ଫୋନଟିଏ ପାଇଲି । ସେ ଫୋନର ମାର୍ଜିତ ଇଂରେଜୀ ଭାଷା ମୋତେ ଲଙ୍କାରେ ହରିନାମ ପରି ଲାଗିଲା । ସେ ରାଜ୍ୟରେ ମୋତେ କିଏ ଚିହ୍ନେ ଯେ ଫୋନ କରିବ ଭାବି ତାହା ଭୁଲ ନମ୍ବର ହୋଇପାରେ ମନେକରି ‘‘ହେଲେ ଆପଣ କାହାକୁ ଖୋଜୁଛନ୍ତି ବୋଲି ପଚାରିବାରେ, ଉତ୍ତର ଆସିଲା ମୁଁ ଆପଣଙ୍କୁ, ଭାରତରୁ ଆସିଥିବା ଡ଼ାକ୍ତର ଦାସଙ୍କୁ ଖୋଜୁଛି । ଆମେ ଭାରତୀୟମାନଙ୍କର ବନ୍ଧୁ, ଯେଉଁ ଭାରତୀୟ ଏଠାକୁ ଆସନ୍ତି ଆମେ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ନିଜ ଘରକୁ ସାନ୍ଧ୍ୟ ଭୋଜନ ପାଇଁ ନିମନ୍ତ୍ରଣ କରୁ । ଆଜି ସନ୍ଧ୍ୟାରେ ଆପଣ ଆମ ଘରକୁ ରାତ୍ରି ଭୋଜନ ପାଇଁ ଯିବାକୁ ମୁଁ ନିମନ୍ତ୍ରଣ କରୁଛି । ମୋର ନାମ ଜେମସ୍ ଓ୍ୟାଗନର ଓ ମୋ ସହଧର୍ମିଣୀଙ୍କ ନାମ ଏଭେଲିନ ।’’ ମୁଁ ତାଙ୍କ ନିମନ୍ତ୍ରଣରେ ସମ୍ମତି ନ ଦେବାର କିଛି କାରଣ ନ ଥିଲା । ସେ ମୋ ସମ୍ମତି ପାଇ କହିଲେ ସନ୍ଧ୍ୟା ୫ଟା ସମୟରେ ସେ ଲୁପଟନ ହ୍ଲଲକୁ ଆସି ତାଙ୍କ ଗାଡ଼ିରେ ମୋତେ ଓ ଡ଼ାକ୍ତର ସିଖଣ୍ଡଙ୍କୁ ତାଙ୍କ ଘରକୁ ଘେନିଯିବେ ।

ସନ୍ଧ୍ୟାରେ ମୁଁ ଓ ସିଖଣ୍ଡ ଓ୍ୟାଗନରଙ୍କ ସଙ୍ଗେ ଯାଇ ତାଙ୍କ ଘରେ ପହଞ୍ଚିଲୁ । ତାଙ୍କ ସହଧର୍ମିଣୀ ଏଭେଲିନ ଭାରତୀୟ ଶାଢ଼ୀଟିଏ ପିନ୍ଧି ହାତ ଯୋଡ଼ି ନମସ୍କାର କରି ଆମକୁ ସ୍ୱାଗତ ଜଣାଇଲେ । ଭୋଜନ ସମୟରେ ସେ ପ୍ରସ୍ତୁତ କରିଥିବା ଭାରତୀୟ ଖାଦ୍ୟ ପୁରି ଓ ଚିଙ୍ଗୁଡ଼ି ତରକାରୀ ପ୍ରଭୃତି ଆମକୁ ଖାଇବାକୁ ଦେଲେ । ଓ୍ୟାଗନର ଦମ୍ପତ୍ତି ଭାରତ ଦେଖି ନ ଥିଲେ, ସ୍ୱାଧୀନତାର ପ୍ରାକ୍‌କାଳରେ ଭାରତରେ ଦାମୋଦର ନଦୀ ପ୍ରୋଜେକ୍ଟ ଓ ହୀରାକୁଦ ଡ୍ୟାମ ନିର୍ମାଣ ପାଇଁ ଭାରତୀୟ ଇଞ୍ଜିନିଅରମାନଙ୍କୁ ଜ୍ଞାନ ଅର୍ଜନ ପାଇଁ ଚାଟନୁଗା ନିକଟରେ ଥିବା ଟେନେସି ଭାଲି ପ୍ରୋଜେକ୍ଟର ଚିକାମୁଗା ଡ୍ୟାମକୁ ପଠାଯାଉଥିଲା । ଜେମସ୍ ଓ୍ୟାଗନର ଚିକାମୁଗାର ଜଣେ ଇଞ୍ଜିନିୟର ଥିବାରୁ ଭାରତରୁ ଆସୁଥିବା ଇଞ୍ଜିନିଅରମାନଙ୍କ ସହିତ ତାଙ୍କର ଆତ୍ମୀୟତା ବଢ଼ିଥିଲା । ସେମାନେ ତାଙ୍କ

ଘରକୁ ଆସି ଏଭେଲିନଙ୍କୁ ଭାରତୀୟ ଖାଦ୍ୟ ଶିଖାଇବା ସଙ୍ଗେ ସଙ୍ଗେ ଶାଢ଼ି ଦେଇ ଶାଢ଼ିପିନ୍ଧା ମଧ୍ୟ ଶିଖାଇଥିଲେ । ସେ ସମୟରେ ବୁଦ୍ଧିଜୀବୀ ଆମେରିକୀୟମାନେ ମହାତ୍ମାଗାନ୍ଧି ଓ ଭାରତୀୟ ସଂସ୍କୃତିକୁ ଉଚ୍ଚ ସ୍ଥାନ ଦେଇ ଭାରତୀୟଙ୍କ ସଙ୍ଗେ ବନ୍ଧୁତ୍ୱ କରିବାକୁ ଉଦ୍‌ଗ୍ରୀବ ଥିଲେ । ଭୋଜନ ପରେ ପରେ ଏଭେଲିନ ଆମ୍ଭମାନଙ୍କୁ ସେମାନଙ୍କ ଭାରତୀୟ ବନ୍ଧୁମାନଙ୍କ ଫଟୋ ଚିତ୍ର ସବୁ ଦେଖାଇଲେ । ସେ ଛବି ଭିତରେ ହୀରାକୁଦ ଡ୍ୟାମ ଆରମ୍ଭରେ ତାଲିମ ନେବାକୁ ଆମେରିକା ଯାଇଥିବା ଇଞ୍ଜିନିଅର ପ୍ରଶାନ୍ତ ଦାସଙ୍କ ଫଟୋ ମଧ୍ୟ ରହିଥିଲା । ପ୍ରଶାନ୍ତ ବାବୁ ଡ଼ାକ୍ତର ସୁକୁମାର ଦାସଙ୍କ ବଡ଼ଭାଇ ଓ ସ୍ୱର୍ଗତ ସାମୁଏଲ ଦାସଙ୍କ ପୁତ୍ର ।

ସେହି ଭାରତର ସ୍ୱାଧୀନତାର ପ୍ରାକ୍ କାଳରେ ଭାରତ ଓ ଆମେରିକା ସରକାରଙ୍କର ସମ୍ବନ୍ଧ ମଧ୍ୟ ଭଲ ଥିଲା । ଦିନେ 'ଇଣ୍ଟରନାସନାଲ ଆସୋସିଏସନ ଅଫ ଅଣ୍ଡରଷ୍ଟାଣ୍ଡିଙ୍ଗ' ତରଫରୁ ମିସ ଖସ ଖସ ସେଦିନ ସନ୍ଧ୍ୟାରେ ପବ୍ଲିକ ଲାଇବ୍ରେରୀରେ ହେଉଥିବା ସଭାକୁ ମୋତେ ଓ ସିଖଣ୍ଡଙ୍କୁ ଭାରତର ପ୍ରତିନିଧି ଭାବରେ ନିମନ୍ତ୍ରଣ କରି ନେଇଥିଲେ । ସେଠାରେ ଭାରତ ବିଷୟରେ ଆଲୋଚନା ହୋଇଥିଲା । ଭାରତର ଗୋଟିଏ ଚାଷୀ ପରିବାରର ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇଥିଲା । ପରଦିନ ଆମର ଫଟୋ ସହିତ ସେ ସମ୍ବାଦ ଚାଟା ନୁଗା ଟାଇମସ କାଗଜରେ ପ୍ରକାଶିତ ହୋଇଥିଲା ।

ପରେ ସେ ହସପିଟାଲରେ ଆଉ ତିନିଜଣ ଭାରତୀୟ, ଡ଼ାକ୍ତର ରାମଚନ୍ଦ୍ରନ (ବାଙ୍ଗାଲୋରର) ଡ଼ାକ୍ତର ଇକ୍ୟୁବାଲ ସିଂହ(ପଞ୍ଜାବର) ଓ ଡ଼ାକ୍ତର ଶାନ୍ତି କେଶଓ୍ୟାନୀ (ପୂର୍ବତନ ସିନ୍ଧୁପ୍ରଦେଶର) ଯୋଗ ଦେଇଥିଲେ । ସେଠାରେ ଲୋକଙ୍କ ଅନୁରୋଧରେ ସେ ବର୍ଷ ଭାରତର ସ୍ୱାଧୀନତା ଦିବସ ଆମେ ଇଉ.ଏନ . ଓ. ପକ୍ଷରୁ ସେଠାରେ ଧୂମଧାମ୍‌ରେ ପାଳନ କରିଥିଲୁ । ସେଥିରେ ଭାରତୀୟ ଶାଢ଼ି ପିନ୍ଧି ଏଭେଲିନ ଓ ଜଣେ ଫରାସୀ ମହିଳା ଓ ଆଉ ଜଣେ ସୁଇଜରଲାଣ୍ଡର ମହିଳା ମଧ୍ୟ ଅନ୍ୟ ଆମେରିକାନଙ୍କ ସହିତ ଆମ ସଙ୍ଗେ ଯୋଗଦେଇ ଆମ ଜାତୀୟ ସଙ୍ଗୀତ ବୋଲିଥିଲେ । ସେସବୁ ଯୋଗୁଁ ବହୁ ବିଶିଷ୍ଟ ଆମେରିକୀୟ ଆମ ସହିତ ବନ୍ଧୁତ୍ୱ କରିବାକୁ ଆଗେଇ ଆସିଥିଲେ ।

**କନ୍ୟାଜନ୍ମ ସମ୍ବାଦ :**

ଏପ୍ରିଲ ୧୨ ତାରିଖ ଦିନ ମୁଁ ମୋର ଶ୍ୱଶୁରଙ୍କଠାରୁ ଏପ୍ରିଲ ୩ ତାରିଖରେ କଟକ ଜେନେରାଲ ହସପିଟାଲରେ ମୋର କନ୍ୟାଟିଏ ହୋଇଥିବାର ସମ୍ବାଦ ପାଇଲି । ଆମର ପିଲାଟିଏ ହେଲେ ମୁଆଁ ବା ମିଠାଇ ବଣ୍ଟାଯାଏ, କିନ୍ତୁ ସେଠାରେ ଚିରୁଟ ବଣ୍ଟାଯାଏ । ପୁଅଟିଏ ହୋଇଥିଲେ ବନ୍ଧୁମାନଙ୍କୁ ମୋଟା ହାଭାନା ଧୂଆଁପତ୍ର ଚିରୁଟ୍‌ଟାଏ ଓ କନ୍ୟା ଜନ୍ମ ହେଲେ ସରୁଆ ଚିରୁଟଟିଏ ଦିଆଯାଇଥାଏ । କିନ୍ତୁ ମୋର ସେସବୁ କିଛି ଦେବା

ଦରକାର ପଡ଼ିଲା ନାହିଁ, କାରଣ ସେତେବେଳେ ମୁଁ ସିଖଣ୍ଡ ଓ ଓ୍ୟାଗନର ଦମ୍ପତିଙ୍କୁ ସଙ୍ଗରେ ନେଇ ସିନେମା ଦେଖାଇଲି ଓ ସିନେମା ପରେ ଗୋଟିଏ ରେଷ୍ଟୁରାଣ୍ଟରେ ଜଳଯୋଗ କରି-ଆମେ ଘରକୁ ଫେରିଥିଲୁ ।

ସେଠାରେ ସାଧାରଣ ସିନେମା ହଲ ଛଡ଼ା ଖୋଲା ସିନେମା ସ୍ଥାନ ମଧ୍ୟ ରହିଛି । ସେ ସ୍ଥାନକୁ ଯିବାକୁ ହେଲେ ଗାଡ଼ିଟି ଗେଟ୍ ପାଖରେ ପହଞ୍ଚିବା କ୍ଷଣି ହାତ ଭଳି ବାଡ଼ିଟିଏ ଆସି ଆମ ନିକଟରେ ପହଞ୍ଚିଯାଏ । ସେଥିରେ ଯେତେ ଜଣ ଥାଆନ୍ତି ସେମାନଙ୍କ ପାଇଁ ଟିକେଟର ପଇସା ରଖିଦେଲେ ସେ ବାଡ଼ିଟି ବୁଲି ଯାଇ ପୁଣି ଟିକେଟ ଧରି ଫେରିଆସିବା ସଙ୍ଗେ ସଙ୍ଗେ ଫାଟକଟି ମେଲା ହୋଇ ଯାଇ ଗାଡ଼ଟି ଭିତରେ ପ୍ରବେଶ କରେ । ସେ ପଡ଼ିଆରେ ଗାଡ଼ି ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ଥାଏ । ତା'ର ସାମନାରେ ଏକ ଉଚ୍ଚ ସ୍ଥାନରେ ବଡ଼ ସିନେମା ପରଦାଟାଏ ଥାଏ ଓ ପ୍ରତ୍ୟେକ ଗାଡ଼ି ନିକଟରେ ମାଇକ ଖୁଣ୍ଟିଏ ଲେଖାଏଁ ଥାଏ । ମାଇକର ସ୍ପିକରଟି ଗାଡ଼ି ଭିତରକୁ ଘେନି ଆସିଲେ ଗାଡ଼ି ବନ୍ଦ ଥାଇ ମଧ୍ୟ ସିନେମା ଶୁଣିହୁଏ ଓ କାଚବାଟେ ସିନେମା ଦେଖିହୁଏ । ସାଧାରଣତଃ ଗୋଟିଏ ପରିବାର ନିଜ ଗାଡ଼ି ଭିତରେ ବସି ହସଖୁସି କରି ସେ ସିନେମା ଦେଖିପାରନ୍ତି । ସେଠାରେ ଗାଡ଼ିଗୁଡ଼ିକରେ ଶୀତତାପ ନିୟନ୍ତ୍ରଣ ବ୍ୟବସ୍ଥା ଥିବାରୁ ସେଥିରେ ବସି ସିନେମା ଦେଖିବା ବଡ଼ ଆରାମପ୍ରଦ ହୁଏ ।

**ସେଠାର ପାଠ :**

ଭାରତର ଇଂରେଜ ଢ଼ାଞ୍ଚାର ଶିକ୍ଷାପଦ୍ଧତି ଠାରୁ ଆମେରିକାର ଶିକ୍ଷାପଦ୍ଧତି ସଂପୂର୍ଣ୍ଣ ପୃଥକ୍ ଥିଲା । ଇଂରେଜ ପଦ୍ଧତିର ପାଠ ଏକ ପ୍ରକାର ଘୋଷା ପାଠ କିନ୍ତୁ ଆମେରିକାର ମେଡ଼ିକାଲ କଲେଜମାନଙ୍କରେ ପିଲାମାନେ ଗୁରୁମାନଙ୍କ ବକ୍ତୃତା ଉପରେ ବେଶୀ ଗୁରୁତ୍ୱ ନ ଦେଇ ନିଜେ ନିଜେ ଚେଷ୍ଟା କରି ଶିଖିବାରେ ବେଶୀ ଗୁରୁତ୍ୱ ଦିଅନ୍ତି । ତେଣୁ ଆମ ପଦ୍ଧତିକୁ ସେମାନେ 'ଚାମୁଚାରେ ଖୁଆଇବା' ଭଳି ବା ସ୍ପୁନଫିଡ଼ିଙ୍ଗ ବୋଲି କହନ୍ତି ।

ସେଠାର ପାଥୋଲଜି ତାଲିମ୍ ଆମର ଚାହିଦାଠାରୁ ପୃଥକ ଥିଲା । ଆମର ପାଥୋଲଜି ପ୍ରାକ୍ଟିସ ବା ଚିକିତ୍ସାରେ କ୍ଲିନିକାଲ ପାଥୋଲଜି, ବ୍ୟାକ୍ଟିରିଓଲଜି ଓ ହିମାଟୋଲଜି ପ୍ରଭୃତି ଅନ୍ତର୍ଭୁକ୍ତ ଥିଲା । ମଳ, ମୂତ୍ର, ରକ୍ତ ଜୀବାଣୁ ପ୍ରଭୃତି ପରୀକ୍ଷା ଆମ କ୍ଲିନିକ୍‌ମାନଙ୍କରେ ବିଶେଷ ଭାବେ କରାଯାଉଥିଲା । ମୁଁ ଆମେରିକା ଆସିବା ପୂର୍ବରୁ କଟକରେ ମୋ କ୍ଲିନିକ ଆରମ୍ଭ କରିଥିଲି । ସେ ସବୁରେ ଆମେରିକାରୁ ବିଶେଷ ଭାବରେ ତାଲିମ ପାଇଗଲେ ସେଠାରେ ଉନ୍ନତ ଧରଣର ପ୍ରାକ୍ଟିସ କରିପାରିବି ବୋଲି ଭାବିଥିଲି । କିନ୍ତୁ ସେସବୁ ମୋ ଟ୍ରେନିଙ୍ଗ ଅନ୍ତର୍ଭୁକ୍ତ ନ ଥିଲା । ସେଠାରେ ପାଥୋଲଜି ଡ଼ିପାର୍ଟମେଣ୍ଟରେ ରୋଗ ନିର୍ଣ୍ଣୟ ପାଇଁ ଶବ ବ୍ୟବଚ୍ଛେଦ ଓ ମନୁଷ୍ୟ ଶରୀରର ପେଶୀ ପ୍ରଭୃତିର ପରୀକ୍ଷାକୁ ପ୍ରାଧାନ୍ୟ ଦିଆଯାଉଥିଲା ।

ଆମ ହସପିଟାଲର ବେସମେଣ୍ଟ ବା ଭୂତଳ କୋଠରୀରେ ଶରୀର ବ୍ୟବଚ୍ଛେଦ କୋଠରୀଟି ରହିଥିଲା । ସେଥିରେ ଶୀତତାପ ନିୟନ୍ତ୍ରିତ ଭାଡ଼ିମାନଙ୍କରେ ହସପିଟାଲରେ ମୃତ ବ୍ୟକ୍ତିମାନଙ୍କ ଶବକୁ ରଖାଯାଉଥିଲା । ପରେ ସେ ଶବର ବ୍ୟବଚ୍ଛେଦ ଦ୍ୱାରା ମୃତ୍ୟୁର କାରଣ ଓ ରୋଗ ବିଷୟରେ ଅନୁସନ୍ଧାନ କରାଯାଉଥିଲା । ମୋ ଭଳି ସ୍ନାତକୋତ୍ତର ଛାତ୍ରଙ୍କୁ ସେହି ଭାଡ଼ିରୁ ଶବଟି ବାହାର କରି ଶବ ବ୍ୟବଚ୍ଛେଦ ଟେବୁଲ ଉପରକୁ ଟାଣି ନେଇ ଶବକୁ ତନ୍ନ ତନ୍ନ କରି ପରୀକ୍ଷା କରି ତା'ର ରୋଗର ବିବରଣୀ- କାଗଜ ପାଠ କଲାପରେ ଶବ ବ୍ୟବଚ୍ଛେଦ କରିବାକୁ ପଡ଼େ । ସନ୍ଦେହ ଥିବା ମାଂସପେଶୀ ପ୍ରଭୃତିର ଅଂଶ ସଂଗ୍ରହ କରି ତାହା ପରୀକ୍ଷା କରିବା ପାଇଁ ରଖିବାକୁ ହୁଏ ।

ମୋର ପ୍ରଥମ ଦିନ ଡକ୍ଟର ଆଡ଼ାମସ୍ ମୋତେ ସଙ୍ଗରେ ନେଇ ଶବ ବ୍ୟବଚ୍ଛେଦ କରି, କିପରି କ'ଣ କରିବାକୁ ହେବ ମୋତେ ବୁଝାଇ କହିଲେ । ମୁଁ ଆମ ମେଡ଼ିକାଲ କଲେଜରେ ଜୁରିସ ଓ ପାଥୋଲଜିରେ ଶବ ବ୍ୟବଚ୍ଛେଦରେ ଆଗରୁ ସହକାରୀ ଭାବେ କାର୍ଯ୍ୟ କରିଥିବାରୁ ସେ ସବୁ ବୁଝିବାରେ ମୋର ବିଶେଷ ଅସୁବିଧା ହେଲାନାହିଁ ।

ସେହିଦିନ ରାତି ୧୧ଟା ବେଳେ ଏକ ଶବ ବ୍ୟବଚ୍ଛେଦ ପାଇଁ ମୋତେ ଡାକରା ଆସିଲା । ମୁଁ ସଙ୍ଗେ ସଙ୍ଗେ ଯାଇ ସେହି ପାତାଳପୁରୀରେ ପହଞ୍ଚିଲି । ସେ ଦ୍ୱାର ମୁହଁରେ ଟୁଲଟି ଉପରେ ବସି ନିଗ୍ରୋ ଚପରାଶୀ ବୁଢ଼ାଟି ମଦ ଖାଇ ଟଳୁଥିଲା । ମୋତେ ଦେଖି ସେ ଘରର ଦ୍ୱାରଟି ଫିଟାଇ ମୋ ହାତକୁ ଚାବିଟି ବଢ଼ାଇ ଦେଇ ଚାଲିଗଲା ।

ସବୁଆଡ଼ ଶୂନଶାନ, ସାହାଯ୍ୟକାରୀ କେହି ନାହିଁ । ବ୍ୟବଚ୍ଛେଦ ଟେବୁଲ ଉପରର ଲାଇଟ୍‌ଟି କେବଳ ଜଳୁଛି ଓ ସେହି ସ୍ଥାନରେ ଗୋଲାକାରରେ ଆଲୁଅ ପଡୁଛି । ମୁଁ ସେ ଭାଡ଼ି ଉପରୁ ବହୁ କଷ୍ଟରେ ଏକାକୀ ଶବଟାକୁ ଟାଣି ଟାଣି ବ୍ୟବଚ୍ଛେଦ ଟେବୁଲ ଉପରକୁ ଆଣିଲି । ଶବ ସହିତ ଆସିଥିବା ସବୁ ରିପୋର୍ଟ ପଢ଼ି ତା'ର ନିର୍ଯ୍ୟାସ ମାଇକ୍ରୋଫୋନରେ କହି ରେକର୍ଡ଼ କରାଇଲି । ଅପରେସନ୍ ଟେବୁଲ ଉପରେ ଝୁଲା ଯାଇଥିବା ଲାଇଟର ଆଲୋକ ସୀମିତ ସ୍ଥାନରେ ପଡୁଥିଲା ପରି ସେ ଟେବୁଲକୁ ଆଲୋକିତ କରୁଥିଲା ।

ମୁଁ ସେ ଶବଟିର ପେଟରେ ଛୁରୀ ଦେଇ କାଟି ଆରମ୍ଭ କଲାବେଳକୁ ମୋ ପଛରୁ ଏକ ଅନ୍ଧାରୁଆ ସ୍ଥାନରୁ ଖଡ଼ କରି ଶବ୍ଦଟାଏ ଶୁଭିଲା । ମୁଁ ବୁଲିପଡ଼ି ଚାହିଁଲା ବେଳକୁ କଳା କଳା ମୁଣ୍ଡପରି କେତେକ ବସ୍ତୁ ଧୀରେ ଧୀରେ ଉପରକୁ ଉଠୁଥିବାର ଦେଖିଲି । ସେହି ମୁଣ୍ଡମାନଙ୍କ ତଳେ ବହୁତ ଗୁଡ଼ିଏ ଜ୍ୱଳନ୍ତ ଆଖି ମୋତେ ଜଳ ଜଳ କରି ଚାହିଁଥିବା ପରି ମୁଁ ଦେଖିବାକୁ ପାଇଲି । ସେ ମୁଣ୍ଡଗୁଡ଼ିକ ଆଠଦଶ ଇଞ୍ଚ ଉପରକୁ ଉଠିବାପରେ ନାଚନାବାଲିପରି ଟିକିଏ ବୁଲିଗଲେ । ତା' ପରେ ପୁଣି ଠକ୍ କରି ଶବ୍ଦ ହେଲା ଓ ସେ ମୁଣ୍ଡଗୁଡ଼ିକ ନିମ୍ନଗତି କରି ସ୍ଥିର ହୋଇଗଲେ । ସେ ଆଖି ସବୁ ଆଉ ଦିଶିଲା ନାହିଁ । ମୁଁ

ପ୍ରଥମେ ଚମକିପଡ଼ି ହତବାକ୍ ହୋଇଗଲି । ପାଖଆଖରେ କେହି ନ ଥିବାରୁ ଅଳ୍ପ ସମୟ ପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । ତା'ପରେ ଧୈର୍ଯ୍ୟ ଧରି ମୋ ପଛପଟ କାନ୍ଥରେ ଥିବା ଲାଇଟ ସୁଇଚ୍ ଗୁଡ଼ିକରେ ହାତ ମାରିଲି । ସେ ଘର କାନ୍ଥର ଲାଇଟଗୁଡ଼ିକ ଜଳି ଉଠିଲା । ତା'ପରେ ମୁଁ ଦେଖିଥିବା ଦୃଶ୍ୟର ସ୍ଥାନକୁ ଆଖି ପକାଇବା କ୍ଷଣି 'ଟିସୁ ପ୍ରୋସେସର'ଟା ମୋ ଆଖିରେ ପଡ଼ିଲା । ସେପରି ଅଟୋମେଟିକ ମେସିନ ମୁଁ ଦେଖିନଥିଲେ ମଧ୍ୟ ତା'ର ଛବି ଦେଖିଥିଲି ଓ ତା' ବିଷୟରେ ଅବଗତ ଥିଲି । ସେ ମେସିନର କଳା ନବ୍ ତଳେ ଧାତୁ ନିର୍ମିତ କଣା କଣା ଗ୍ଲାସ ସବୁ ଓହଳି ଥାଏ । ସେମାନଙ୍କ ଭିତରେ ବହୁ କଣା ବିଶିଷ୍ଟ ଗୋଲ ଗୋଲ ବଡ଼ ପଇସା ପରି ଚକିତ ଡବାରେ ଶରୀରରୁ ବାହାରିଥିବା 'ପେଶୀ' ବା ଟିସୁ ରଖାଯାଇଥାଏ । ସେ ମେସିନ ଉପରେ ଥୁଆ ଯାଇଥିବା ବଡ଼ କାଚ ପାତ୍ରମାନଙ୍କରେ ଭିନ୍ନମାନର ରାସାୟନିକ ଜଳ ରଖାଯାଇଥାଏ । ସେହି ସ୍ୱୟଂଚାଳିତ ମେସିନରେ ସମୟ ଅନୁସାରେ ସେ କଣା କଣା ଧାତୁ ନିର୍ମିତ ଗ୍ଲାସ ସବୁ ଗୋଟିଏ କାଚପାତ୍ରରୁ ଉପରକୁ ଉଠି ଟିକିଏ ବୁଲିଯାଇ ଅନ୍ୟ କାଚ ପାତ୍ର ଭିତରେ ପଶେ । ତାହା ଉଠିଲା ବେଳେ ତା' କଣାରେ ହରିତ ବର୍ଣ୍ଣର ରାସାୟନିକ ଜଳ ଲାଗି ରହିଥିବାରୁ କ୍ଷୀଣ ଆଲୋକରେ ଆଖି ପରି ତାହା ଜଳ ଜଳ ଦିଶି ଭୂତ ଭୟ ସୃଷ୍ଟି କରୁଥିଲା ।

ଶବ ବ୍ୟବଚ୍ଛେଦ ପରେ ଛୋଟ ଛୋଟ ପେଶୀଖଣ୍ଡମାନଙ୍କୁ ଗୋଲଚକିତ ଡବାରେ ରଖି ତାହା ବନ୍ଦ କରି ଟିସୁ ପ୍ରୋସେସରରେ ଦେବାକୁ ପଡେ । ପରେ ସେ ମେସିନରୁ ତାହା ନିଆଯାଇ ପାତଳା ସେକସନ କାଟି ସ୍ଲାଇଡ୍ ପ୍ରସ୍ତୁତ କରି ତାକୁ ରଙ୍ଗ କରିବା ପରେ ଟେକ୍ନିସିଆନମାନେ ଆମକୁ ଦେଇଥାଆନ୍ତି, ଆମେ ସେ ରୋଗୀର ସେବାର ବିବରଣ ବିଶ୍ଳେଷଣ କରି ଓ ସେ ସ୍ଲାଇଡ଼ମାନଙ୍କୁ ମାଇକ୍ରୋସ୍କୋପରେ ପରୀକ୍ଷା କରିବା ପରେ ଆମ ଭିତରେ ଆଲୋଚନା କରି ସେ ରୋଗ୍ ସମ୍ବନ୍ଧରେ ରିପୋର୍ଟ ଲେଖୁ । ଶବ ବ୍ୟବଚ୍ଛେଦରେ ମିଳିଥିବା ଟିସୁ ଛଡ଼ା ଅପରେସନ ଥିଏଟରରୁ ପରୀକ୍ଷା ପାଇଁ ଆସିଥିବା ପେଶୀ ସବୁକୁ ମଧ୍ୟ ସେହିପରି ସ୍ଲାଇଡ଼ କରାଇ ପରୀକ୍ଷା କରି ରିପୋର୍ଟ ଦେବାକୁ ହୁଏ ।

ସେ ଦେଶ ଲୋକଙ୍କ ବୈଜ୍ଞାନିକ ଦୃଷ୍ଟିକୋଣ ଯୋଗୁଁ ଲୋକେ ରୋଗୀର ରୋଗ କ'ଣ ଜାଣିବା ପାଇଁ ଉଦ୍‌ଗ୍ରୀବ ଥାଆନ୍ତି । ଏହିପରି ହସ୍‌ପିଟାଲ ବାହାରେ କିମ୍ବା ଦୂରରେ କାହାର ମୃତ୍ୟୁ ଘଟିଥିଲେ ଶବଟିକୁ ଆଣି ହସପିଟାଲ ଫିସ ଦେଇ ବ୍ୟବଚ୍ଛେଦ କରନ୍ତି ଏବଂ ଶରୀରର ଘା ଓ ଆବୁ ପ୍ରଭୃତିର ପେଶୀ ଅଣାଇ ଫିସ ଦେଇ ପରୀକ୍ଷା କରାନ୍ତି ।

ମୋର ସେଠାରେ ସେପରି ତାଲିମ ଦିନ ପରେ ଦିନ ଗଡ଼ି ଚାଲିଲା । ମୋ କାର୍ଯ୍ୟରେ ଉତ୍ସାହିତ ହୋଇ କର୍ତ୍ତୃପକ୍ଷ ମଧ୍ୟ ମୋର ଷ୍ଟାଇପେଣ୍ଡ ବୃଦ୍ଧି କଲେ । କିନ୍ତୁ ସେଠାରେ ମୋର ତାଲିମ୍ ସର୍ବୋତ୍ତମୁଖୀ ନଥିବାରୁ ମୋ ମନ ବେଳେବେଳେ ଭଲ ଲାଗୁନଥିଲା ।

ବନ୍ଧୁତ୍ୱର ହାତ:

ସେହି ସ୍ନାତକୋତ୍ତର ଛାତ୍ରନିବାସର ଅନ୍ତେବାସୀମାନେ ପରସ୍ପର ସଙ୍ଗେ ମିଶି ଚଳୁଥିଲେ । ମୁଁ ଏକୁଟିଆ ବିମର୍ଷ ହୋଇ ରହୁଥିବାରୁ ତାଙ୍କ ଭିତରୁ କେତେକ ମୋତେ ଖୁସି ରଖିବାକୁ ତାଙ୍କର ବନ୍ଧୁତ୍ୱର ହାତ ବଢ଼ାଇଥିଲେ । ଡାକ୍ତର ସ୍ମିଡ଼ଟ ନାମକ ଜଣେ ସାଥୀ ସମୟ ପାଇଲେ ବେଂଜୋ ବାଜାଟିଏ ବଜାନ୍ତି । ସେ ମୋତେ ଡାକିନେଇ ସେ ବାଜା ଶିଖାଇବାକୁ ଚେଷ୍ଟା କଲେ । ସେ ପ୍ରାକୃତିକ ଦୃଶ୍ୟର ପୂଜାରୀ ଥିବାରୁ ବେଳେବେଳେ ତାଙ୍କ ଗାଡ଼ିରେ ମୋତେ ସଙ୍ଗରେ ନେଇ ସୁଦୃଶ୍ୟ ପାହାଡ଼ମାନଙ୍କୁ ବୁଲିବାକୁ ଯାଉଥିଲେ । ସେହି ପାହାଡ଼ମାନଙ୍କ ଉପରୁ ମୁଁ ଚଟାନୁଗା ସହରର ଦୃଶ୍ୟ ମଧ ଦେଖିବାକୁ ପାଉଥିଲି ।

ହାନସ ବ୍ରୁଏଟନର ନାମକ ଜଣେ ବୟସ୍କ ଛାତ୍ର ପୂର୍ବତନ ନାଜି ବାହିନୀର କ୍ୟାପଟେନ ଥାଇ ମସ୍କୋ ଅଭିଯାନରେ ଯାଇ ବହୁକାଳ ଯୁଦ୍ଧବନ୍ଦୀ ଜୀବନ ଯାପନ କରିଥିଲେ । ସେ ମୋତେ ବିଲିଆର୍ଡ଼ ଓ ପୋକର ଖେଳ ଶିଖାଇବା ପାଇଁ ଆଗେଇ ଆସିଥିଲେ । ସେ ବନ୍ଦୀ ଜୀବନରୁ ମୁକ୍ତି ପାଇବା ପରେ ଆମେରିକାରେ ଜନ୍ମ ଏକ ଜର୍ମାନ ରମଣୀଙ୍କୁ ବିବାହ କରିଥିଲେ । ସେ ନିଷେତକ ବିଦ୍ୟାରେ ତାଲିମ ପାଇଁ ଯେତିକି ଷ୍ଟାଇପେଣ୍ଡ ପାଉଥିଲେ ଦୁଃଖେ କଷ୍ଟେ ତାଙ୍କର ସ୍ତ୍ରୀ ଓ କ୍ଷୁଦ୍ର ବାଳକକୁ ଚଳାଉଥିଲେ । ସେ ବେପରୁଆ ପ୍ରକୃତିର ଲୋକ ଥିଲେ ଓ ହିଟ୍‌ଲରଙ୍କୁ ଭୁଲି ନ ଥିଲେ । ମୋତେ ଭାରତର ଜର୍ମାନ ବନ୍ଧୁ ବୋଲି କହି ସେ ଲୁଚାଇ ରଖିଥିବା ହିଟଲରଙ୍କର ଫଟୋଟିଏ ମୋତେ ଉପହାର ଦେଇଥିଲେ । ସେ ନାଜି ବାହିନୀରେ ଥିବା ବେଳେ ସ୍ୱାଧୀନ ଭାରତ ଫୌଜର ସର୍ବଶ୍ରେଷ୍ଠ ସେନାପତି ବୀର ସୁଭାଷଚନ୍ଦ୍ର ବୋଷ ହିଟ୍‌ଲରଙ୍କ ସଙ୍ଗେ ସେନାବାହିନୀ ପ୍ରଦର୍ଶନ ବେଳେ ସୈନ୍ୟବାହିନୀ ହେଲ ହିଟଲର, ହେଲ ବୋଷ କହି କିପରି ଅଭିବାଦନ କରୁଥିଲେ ତାହା ବର୍ଣ୍ଣନା କଲାବେଳେ ଅଭିଭୂତ ହୋଇଯାଉଥିଲେ । ଯୁଦ୍ଧରେ ଯିଏ ହାରିଯାଏ ସେ ରାକ୍ଷସ ପଦବାଚ୍ୟ ହୁଏ ଓ ଯେ କୌଣସି ପ୍ରକାରରେ ଜିତିଗଲେ ସେ ଦେବତାର ଆସନ ପାଏ । ଯୁଦ୍ଧରେ ହାରି ହିଟଲର ଘୃଣ୍ୟ ହେଲେ, ଜିତିକରି ଚର୍ଚ୍ଚିଲ ମାନ ପାଇଲେ ଓ ଆଇଜେନହାଓ୍ୟର ରାଷ୍ଟ୍ରପତି ହେଲେ ।

ଅନ୍ୟ ସାଥୀମାନେ ମଧ ମୋ ସଙ୍ଗେ ମିଶି ମୋତେ ଖୁସି ରଖିବାକୁ ଚାହୁଁଥିଲେ । ଦିନେ ସନ୍ଧ୍ୟାରେ ମୋ ମୁଣ୍ଡଟା ଭାରି ଲାଗିବାରୁ ମୁଁ ମୋ କୋଠରୀରେ ଶୋଇ ରହିଥିଲି । ହଠାତ୍ ଜଣେ ସାଥୀ, ଡାକ୍ତର ଗ୍ରୀନ ମୋତେ ଉଠାଇ 'ଆସ, ନର୍ସ' ବୋଲି ଦୁଇପଦ କହି ଚାଲିଗଲେ । ମୁଁ ତାଙ୍କ କଥା ବୁଝି ନ ପାରିଲେ ମଧ ଶେଯରୁ ଉଠି ସାର୍ଟ ଖଣ୍ଡ ଗଳାଇ ପକାଇ ବାରଣ୍ଡାକୁ ଆସିଲି । ବାରଣ୍ଡାର ଝରକା ଆରପଟେ ଦୁଇଜଣ ଯୁବତୀ ଠିଆ ହୋଇ ବାହାରକୁ ଆସନ୍ତୁ ବୋଲି ମୋତେ ଡାକିଲେ । ଆମ ହଷ୍ଟେଲ ପଛପଟ

ପଡ଼ିଆରେ ଦଶ ବାରଜଣ ନର୍ସ ସନ୍ଧ୍ୟା ମଉଜ ପାଇଁ ସେଠାରେ ରୁଣ୍ଡ ହୋଇଥିଲେ । ସନ୍ଧ୍ୟାରେ ସେ ହଷ୍ଟେଲର ଛାତ୍ରମାନେ ପ୍ରାୟ ଡ଼େଟିଙ୍ଗରେ ତାଙ୍କର ନାରୀବନ୍ଧୁମାନଙ୍କ ସଙ୍ଗେ ବାହାରକୁ ଚାଲିଯାଇଥାଆନ୍ତି । ତେଣୁ ସେମାନେ ଅତିଥି ଭାବରେ ହଷ୍ଟେଲରେ ରହିଯାଇଥିବା ଆମ ତିନି ଜଣ ଡାକ୍ତରଙ୍କୁ ସେଠାକୁ ଡାକିଥିଲେ ।

ସେମାନେ ଗୋଟିଏ ସ୍ଥାନରେ ନିଆଁ ଜାଳି ନିଆଁ ପୋଉଁଥିଲେ, ରେଡ଼ିଓଟିଏ ବାଜୁଥିଲା । ଆମ ସଙ୍ଗେ କଥାବାର୍ତ୍ତା କରିବାରେ ସେମାନଙ୍କର ଲଜ୍ୟା ବା ସଙ୍କୋଚ ନ ଥିଲା । ଆମ ସଙ୍ଗେ ଥଟ୍ଟାଳି ରସାଣିଆ କଥାବାର୍ତ୍ତା ହେବାପାଇଁ ସେମାନେ ଆମକୁ ନାନା ପ୍ରଶ୍ନ ପଚାରୁଥିଲେ । ନିଜ ନିଜ ଭିତରେ ଅଶ୍ଲୀଳ କଥାବାର୍ତ୍ତା ଓ ହନିମୁନ ଗୀତ ପ୍ରଭୃତି ଗାନ କରୁଥିଲେ । ସେମାନେ ସେହି ନିଆଁରେ ଛଡା କାଠି ଆଗରେ ପୋଡ଼ାଯାଉଥିବା ମାର୍ସମେଲୋ ବା ଜିଲାଟିନ ମିଠାଇକୁ ସେକି ବଡ଼ିକରି ଖାଉଥିଲେ । ସେମାନେ ତାହା ଆମକୁ ମଧ ଖାଇବାକୁ ଦେଲେ । ତା'ପରେ ଆମ ସଙ୍ଗେ ହାତଧରା ହୋଇ ସେ ନିଆଁ ଚାରିପଟେ ଆଦିବାସୀଙ୍କ ଭଳି ନାଚିବାକୁ ଲାଗିଲେ । ଘଣ୍ଟାଏ ଏପରି ନାଚ ଗାନ ପରେ ହଷ୍ଟେଲକୁ ଫେରିଲୁ ।

### ମୋ ବେମାରୀ :

ଆମେରିକାରେ ରହିବାର ତୃତୀୟ ସପ୍ତାହ ବେଳକୁ ମୁଁ ଅତ୍ୟନ୍ତ ବେମାର ହୋଇପଡ଼ିଲି । ମୋ ଦେହରେ ୧୦୪ ଡ଼ିଗ୍ରୀ ଜ୍ୱର ଓ ପେଟରେ ଭୀଷଣ ଯନ୍ତ୍ରଣା ଯୋଗୁଁ ମୁଁ ବାଉଳି ହେଲି । ସିଖଣ୍ଡ ଓ ଅନ୍ୟ ସାଥୀମାନେ ମୋତେ ଟେକାଟେକି କରି ହସ୍‌ପିଟାଲକୁ ନେଇ ମେଡ଼ିକାଲ ଓ୍ୱାର୍ଡ଼ରେ ଭର୍ତ୍ତି କରାଇଲେ । ମୁଁ ଭେଷଜ ବିଶେଷଜ୍ଞ ଡ଼ାକ୍ତର ପାଟନଙ୍କ ଚିକିତ୍ସାଧିନ ରହିଲି । ମୋ ରୋଗ ପାଇଁ ଅନୁସନ୍ଧାନ ଚାଲିଲା । ମୋ ଫୁସ୍‌ଫୁସ୍‌ରେ ଚିହ୍ନଟିଏ ଏପଟ ସେପଟ ହେଉଥିବାର ଏକସ୍‌ରେ ମାନଙ୍କରୁ ଜଣାପଡ଼ିଲା । ମୋତେ ଗୁଡ଼ିଏ ଆଣ୍ଟିବାଓଟିକ ଔଷଧ ଦିଆଗଲା କିନ୍ତୁ ମୋ ରୋଗର ଉପଶମ ହେଲା ନାହିଁ ।

ମୁଁ ଖଟିଆଟି ଉପରେ ପଡ଼ିରହିଥାଏ, ସେଠା ଡ଼ାକ୍ତରମାନଙ୍କ ଭାଷା ବୁଝିପାରୁ ନଥିବାରୁ ସେମାନଙ୍କ ଆଲୋଚନାରେ ଭାଗ ନେଇପାରୁନଥାଏ । ଜ୍ୱର କମିବା ସମୟରେ ମୁଁ ମୋ ରୋଗ କଥା ଚିନ୍ତା କରୁଥାଏ । ମୁଁ ଆମେରିକା ଆସିବା ପୂର୍ବରୁ ପିତାଙ୍କ ନିର୍ବାଚନ ପ୍ରଚାରରେ ଯୋଗ ଦେଇ, କେଉଁଠି ପାଲଗଦା ମୂଳେ କେଉଁଠି କାହା ପିଣ୍ଡାରେ ରାତ୍ରୀ ଯାପନ କରି ମଶାଙ୍କ ଦାଉରେ ଛଟପଟ ହୋଇଛି । ଯେଉଁଠି ଯାହା ମିଳିଲା ନିର୍ବିକାର ଭାବରେ ଖାଇଛି । ଖାଲି ପାଦରେ ବିଲ ଗୁହ ପଡ଼ିଆ ସବୁଥିରେ ଚାଲିବାକୁ ପଡ଼ିଛି, ତେଣୁ ସେ ସମୟରେ ମୋ ଶରୀରରେ ସଂଗ୍ରହ କରିଥିବା ଜୀବାଣୁମାନେ ମୋ ଶରୀରରେ ପ୍ରକୋପ ଦେଖାଉଛନ୍ତି ବୋଲି ମୁଁ ଜାଣି ପାରୁଥାଏ । ମେଲେରୀଆରେ ଫୁସ୍‌ଫୁସ୍‌ରେ

ସେପରି ଚିହ୍ନ ଦେଖାଯାଏ, ଆକ୍ୟୁଟ ଡ଼ିସେଣ୍ଟ୍ରି ଓ କୃମି ପ୍ରଭୃତିରୁ ଜ୍ୱର ହେବା ଓ ପେଟ ଫାମ୍ପିବା ପ୍ରଭୃତି ଲକ୍ଷଣମାନ ଦେଖାଯାଏ ।

ସେ ଦେଶରେ ସେସବୁ ରୋଗର ବହୁଦିନୁ ମୂଳୋତ୍ପାଟନ କରାଯାଇଛି । ସେପରି ରୋଗ ଭୋଗୁଥିବା ବିଦେଶୀ ଲୋକଙ୍କୁ ସେ ଦେଶରେ ପ୍ରବେଶ କରିବାକୁ ଅନୁମତି ନାହିଁ । ତେଣୁ ମୋ ରୋଗ ବିଷୟ ସେଠା ଡ଼ାକ୍ତରମାନଙ୍କ ନିକଟରେ ପ୍ରକାଶ କରିବା ସାହସ ମୋର ନ ଥିଲା । ମୁଁ ସେପରି ରୋଗ ସବୁ ଭୋଗ କରୁଥିବାର ଜଣାପଡ଼ିଲେ ସେ ଦେଶରୁ ସଙ୍ଗେ ସଙ୍ଗେ ବିତାଡ଼ିତ ହେବାର ସମ୍ଭାବନା ଥିଲା । ମୁଁ ମୋର ସାଥୀ ସିଖଣ୍ଡଙ୍କୁ କିଛି କ୍ୟୁଇନାଇନ୍ ଯୋଗାଡ଼ କରିବାକୁ କହିଲି । ଦୁଇ ଦଶନ୍ଧି ହେଲା ଦେଶରେ ମେଲେରୀଆ ଦେଖାଯାଉନଥିବାରୁ ସେ ଷ୍ଟୋରରେ କ୍ୟୁଇନାଇନ ନାହିଁ ବୋଲି ସେ ମୋତେ ଜଣାଇଲେ ।

ସେ ଦେଶରେ ସ୍ୱଚ୍ଛନ୍ଦ ବୃଦ୍ଧାମାନେ ଅସହାୟ ରୋଗୀଙ୍କ ଯତ୍ନ ନେବା ପାଇଁ ଅବୈତନିକ ସାହାଯ୍ୟକାରୀ ନର୍ସ ରୂପେ କାର୍ଯ୍ୟ କରନ୍ତି । ମିସେସ୍ ପଲ ନାମକ ଜଣେ ବୃଦ୍ଧା ମୋର କେହି ସାହାଯ୍ୟକାରୀ ନ ଥିବାରୁ ମୋ ପାଖରେ ବସି ମୋ ମୁଣ୍ଡ ଆଉଁସୁ ଆଉଁସୁ କହିଲେ, ତାଙ୍କ ପୁଅ କୋରିଆରୁ ଫେରିଥିଲା ପରେ ତା'ର ଏପରି ବେମାରୀ ହୋଇଥିଲା । ସୈନ୍ୟବିଭାଗ ଡ଼ାକ୍ତରଖାନାରେ ଚିକିତ୍ସିତ ହୋଇ ସେ ଭଲ ହୋଇଯାଇଥିଲା । ମୁଁ ତାଙ୍କ କଥା ଶୁଣି ସିଖଣ୍ଡଙ୍କୁ (ସୈନ୍ୟ) ଭେଟେରନ ହସ୍‌ପିଟାଲକୁ ଯାଇ ମେଲେରୀଆ ଓ ହୁକଓ୍ୱାର୍ମ ପ୍ରଭୃତି କୃମିର ଔଷଧ ଆଣିବାକୁ କହିଲି । ସେ ମେଲେରୀଆ ପାଇଁ ଆଟଲୋନ ବଟିକା ଓ କୃମି ପାଇଁ କ୍ରିଷ୍ଟଏଡ଼ ବଟିକା ପ୍ରଭୃତି ଆଣି ମୋତେ ଦେବାରୁ ମୁଁ ଲୁଚାଇ କରି ସେସବୁ ଖାଇ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କଲି ଓ ଆମେରିକା ରହଣି ଭିତରେ ମୁଁ ସେ ରୋଗ ସବୁ ଆଉ ଭୋଗ କରିନାହିଁ ।ଅବଶ୍ୟ ପୂର୍ବପରି ମୋତେ ବରାବର ଶର୍ଦ୍ଦି ଲାଗି ରହୁଥିଲା । ଡ଼ାକ୍ତରଙ୍କ ପରାମର୍ଶରେ ମୁଁ ସେଥିପାଇଁ ମୋ ନାକ ଭିତରେ ଥିବା ବଙ୍କା ହାଡ଼ଟିକି ଅପରେସନ କରାଇ ମଝି ପରଦାକୁ ସିଧା କରାଇଥିଲି । ତା'ପରେ ମୋର ପିଲାଦିନେ ପିତୁଳା ରୋଗ ପାଇଁ ମୋ ବୁଢ଼ୀମା କପାଳକୁ କାଚରେ ଚିରି ଦେଇଥିବାରୁ ମୋ କପାଳରେ ବଡ଼ ଦାଗଟିଏ ଥିଲା । ସେଠାରେ ମୋର ଜଣେ ପ୍ଲାଷ୍ଟିକ ସର୍ଜନ ବନ୍ଧୁ କହିଲେ ''ତୁମେ ମଦ ଖାଇ ରାସ୍ତାରେ ଗଡ଼ୁଥିବାବେଳେ ଗାଡ଼ି ମାଡ଼ିଯାଇ ସେ ଦାଗ ହୋଇଛି ବୋଲି ଅନେକ କୁହାକୁହି ହେଉଛନ୍ତି । ମୁଁ ତ କେବେ ମଦ୍ୟପାନ କରିନାହିଁ, ତେଣୁ ମୁଁ ଅପରେସନ କରି ସେ-ଦାଗଟି ଉଠାଇନେବି ।'' ସେ ମୋର କପାଳରୁ ସେ ଦାଗଟି ପ୍ରାୟ ପୂରା ଉଠାଇ ଦେଇଥିଲେ ।



# ଆମେରିକାର ତତ୍‌କାଳୀନ ଲୋକଚରିତ୍ର

## ଧର୍ମଧାରଣା ଓ ସେଠାର ଗାନ୍ଧି ଭକ୍ତି :

ଆମେରିକାର ଲୋକ ଚରିତ୍ର ବିଲାତଠାରୁ ପୃଥକ୍ ଥିଲା । ଇଂରେଜମାନେ ଶାସକ ଜାତି ଓ ରକ୍ଷଣଶୀଳ । ପରମ୍ପରା ଓ ଆଭିଜାତ୍ୟ ପାଇଁ ସେମାନେ ସର୍ବଦା ସଜାଗ ଥାଆନ୍ତି । ଏପରିକି ନିଜର ନୂତନ କୋଠାର ସାମନାକୁ ପୁରୁଣାକାଳିଆ ରୂପ ଦେଇଥାଆନ୍ତି । ସେମାନେ ବସ୍ ବା ଟ୍ରେନରେ ଯାତ୍ରା କଲାବେଳେ ଅନ୍ୟମାନଙ୍କ ସଙ୍ଗେ ମେଳାପରୁ ଦୂରେଇ ରହିବା ପାଇଁ ମୁହଁ ପାଖରେ ଖବର କାଗଜଟିଏ ଧରି ବସନ୍ତି ।

ଆମେରିକାନ ଲୋକେ ମେଳାପି, ବିକାଶ ପ୍ରିୟ ଓ ନୂତନତ୍ୱର ପୂଜାରୀ । ଯେ କୌଣସି ଜିନିଷ ବା ଯନ୍ତ୍ରଟିଏ ପୁରୁଣା ବା ଖରାପ ହୋଇଯିବା ସଙ୍ଗେ ସଙ୍ଗେ ସେ ସେଇଟାକୁ ଫିଙ୍ଗିଦେଇ ନୂଆଟିଏ କିଣି ଆଣନ୍ତି । ସେମାନେ ଅଳ୍ପ କେତେ ଶହ ବର୍ଷ ତଳେ ବିଦେଶ ବିଶେଷତଃ ୟୁରୋପର ବିଭିନ୍ନ ଅଞ୍ଚଳରୁ ଆସି ସେଠାରେ ମିଶା ମିଶି ଜାତି ସୃଷ୍ଟି କରି ବସବାସ କରିଥିବାରୁ ସେମାନଙ୍କ ଧମନୀରେ କେଉଁ ପୁରାତନ ଦେଶବାସୀଙ୍କ ରକ୍ତ ପ୍ରବାହିତ ହୁଏ ତାହା ସେମାନେ ଜାଣନ୍ତି ନାହିଁ । ତେଣୁ କୌଣସି ପୁରାତନ ଜାତିର ଆଭିଜାତ୍ୟ ତାଙ୍କଠାରେ ନ ଥାଏ । ସେମାନେ ଶାରୀରିକ ସୁଖ ପଛରେ ଧାଇଁ ଥବାରୁ ଧର୍ମ ବା ଆଧ୍ୟାତ୍ମିକତା ସମ୍ବନ୍ଧରେ ସେମାନଙ୍କର କୌଣସି ଦୃଢ଼ ଧାରଣା ନ ଥାଏ ।

ସେଠାରେ ସର୍ବଧର୍ମ ଗୀର୍ଜା ବା 'ଇଉନିଟେରିଆନ ଚର୍ଚ୍ଚ' ତରଫରୁ କାଉଣ୍ଟି କୋର୍ଟ ହାଉସରେ ରବିବାର ଦିନ ଗୋଟିଏ ସର୍ବଧର୍ମ ସଭା ହେଉଥିଲା । ଆମ ହସ୍‌ପିଟାଲର ଡ଼କ୍ଟର ଓ ମିସେସ କିଲବ୍ରିଉ ମୋତେ ନିମନ୍ତ୍ରଣ କରି ସେମାନଙ୍କ ସଙ୍ଗେ ସେ ସଭାକୁ ନେଇଥିଲେ ।

ସେ ସଭାରେ ଟାଟା ନୁଗା ବିଶ୍ୱବିଦ୍ୟାଳୟର ଆଷ୍ଟ୍ରୋ ଫିଜିକସ୍ ପ୍ରଫେସର ଡ଼କ୍ଟର କାରେଲ ହୁଏର ମୁଖ୍ୟ ବକ୍ତା ଭାବେ ଯୋଗ ଦେଇଥିଲେ । ସେ ହିନ୍ଦୁ ଧର୍ମ ଓ ମହାତ୍ମାଗାନ୍ଧିଙ୍କ ଅହିଂସା ନୀତି ଉପରେ ଏକ ସାରଗର୍ଭକ ଭାଷଣ ଦେଲେ । ସେ ଭାଷଣରେ ସେ କହିଥିଲେ, ହିନ୍ଦୁ ଧର୍ମର ନୀତି ଅନୁସାରେ ଲାଳସାରୁ ଦୂରେଇ ରହିବା ଭଳି 'ତ୍ୟାଗ'ର ଯେ ଦର୍ଶନ ପ୍ରତିପାଦିତ କରାଯାଇଛି, ତାହାହିଁ କେବଳ ପୃଥିବୀକୁ ଶାନ୍ତି ପ୍ରଦାନ

କରିପାରିବ । ମହାତ୍ମାଗାନ୍ଧିଙ୍କ ମତରେ 'ମାନବିକ ପ୍ରବୃତ୍ତି ମାନ ତରଙ୍ଗ ଆକାରରେ ସଞ୍ଚାଳିତ ହୁଏ । ସେହି ପ୍ରବୃତ୍ତି ବା ଇଛାର ପୂରଣ ପାଇଁ ମାନବ ତୁଛ ପଦାର୍ଥ ମାନଙ୍କ ପଛରେ ଧାଏଁ । ଶରୀରକୁ ଆପ୍ୟାୟିତ କରିବା ପାଇଁ ଯେତେ ଯେତେ ପଦାର୍ଥ ଯୋଗାଇ ଦିଆଯିବ ସେ ତହୁଁ ଅଧିକ ଦାବି କରିବ ଏବଂ ସେଥିରେ ମଧ ଶରୀର ସନ୍ତୁଷ୍ଟ ହେବ ନାହିଁ । ତେଣୁ ହିନ୍ଦୁ ଯୋଗୀ ଋଷି ମାନେ ଏହି ଇଛା ବା ଲାଳସା ଉପରେ ଏକ ସୀମା ଧାର୍ଯ୍ୟ କରିଥିଲେ ଓ ଲାଳସାର ପ୍ରବୃତ୍ତିକୁ ତ୍ୟାଗ କରିବା ପାଇଁ ସେମାନେ ମାର୍ଗ ଦେଖାଉଥିଲେ । ଅଳ୍ପରେ ସନ୍ତୋଷ ରହିଲେ ଶାସକ ଓ ସେମାନଙ୍କ ଅସ୍ତ୍ରଶସ୍ତ୍ରଠାରୁ ନୈତିକ ଶକ୍ତି ଅଧିକ ବଳଶାଳୀ ବୋଲି ସେମାନେ ଉପଲବ୍ଧି କରିଥିଲେ । ନୂତନ ସମାଜ ବିକାଶ, ଗାନ୍ଧିଜୀଙ୍କର ଏହି ଚିନ୍ତାଧାରା ଉପରେ ପର୍ଯ୍ୟବସିତ ଥିଲା । ଭାରତର ପୁନଃ ନିର୍ମାଣ ଉପରେ ମତ ଦେବାକୁ ଯାଇ ଗାନ୍ଧିଜୀ କହିଥିଲେ - ପ୍ରତ୍ୟେକ ଲୋକର ଆବଶ୍ୟକତା ପୂରଣ ପାଇଁ ଏ ପୃଥିବୀ ଯଥେଷ୍ଟ ପ୍ରଦାନ କରିପାରିଛି, କିନ୍ତୁ କାହାର ଲୋଭ ବା ଲାଳସାର ପୂରଣ ପାଇଁ ନୁହେଁ । ଦେଶ ଖାଦ୍ୟ, ବସ୍ତ୍ର ଓ ବାସଗୃହ ପରି ମୌଳିକ ଆବଶ୍ୟକତାର ପୂରଣ ପାଇଁ ଆତ୍ମନିର୍ଭରଶୀଳ ହେବା ଉଚିତ, କିନ୍ତୁ ଲୋକଙ୍କର ଭୋଗଲାଳସା ବଢ଼ାଇବା ଉଚିତ ନୁହେଁ । ତାହା ହେଲେ ଭାରତ ଶାନ୍ତିପାଇଁ ପୃଥିବୀକୁ ଦିଗଦର୍ଶନ ଦେବ । ମୁଁ ସେହି ମହାନ ଦାର୍ଶନିକଙ୍କ ଭାଷଣ ଶୁଣି ତାଙ୍କ ପ୍ରତି ମୋର ଭକ୍ତି ଜାଗ୍ରତ ହେଲା ।

ଡକ୍ଟର ହୁଏର ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ତାଙ୍କ ଜନ୍ମଭୂମି ଚେକୋସ୍ଲୋଭାକିଆରୁ ଉଚ୍ଚ ଶିକ୍ଷା ପାଇଁ ଆମେରିକାକୁ ଆସି ଯୁଦ୍ଧ ବେଳେ ସେଠାରେ ରହିଯାଇଥିଲେ । ପରେ ସେଠାର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଆମେରିକାର ନାଗରିକ ଭାବେ ବସବାସ କରି ରହିଥିଲେ ।

ସେ ଜଣେ ଗଣିତ ଜ୍ୟୋତିଷବିଜ୍ଞାନୀ ଉଦାରପନ୍ଥୀ, ନିରାଡ଼ମ୍ବର ଅମାୟିକ ବ୍ୟକ୍ତି ଥିଲେ । ଜ୍ୟୋତିଷ ବିଜ୍ଞାନ ବା ଆଷ୍ଟ୍ରୋନମିର ଗବେଷଣାପାଇଁ ସେ ପୃଥିବୀର ବହୁ ପୁରାତନ ରାଜ୍ୟ ପରିଭ୍ରମଣ କରିଥିଲେ, ୟୁରୋପ, ଆମେରିକା, ଦକ୍ଷିଣ ଆମେରିକା ପ୍ରଭୃତିର ବହୁ ଅଞ୍ଚଳ ବୁଲିବା ସଙ୍ଗେ ସଙ୍ଗେ ଭାରତ ଭ୍ରମଣରେ ଯାଇଥିଲେ । ସେ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ଆକୃଷ୍ଟ ହୋଇ ଓ୍ୱାର୍ଦ୍ଧା ଆଶ୍ରମରେ କିଛିଦିନ ରହି ଗାନ୍ଧି ଦର୍ଶନରେ ଅଭିଭୂତ ହୋଇଥିଲେ । ସେ କବିଗୁରୁ ରବିନ୍ଦ୍ରନାଥ ଠାକୁରଙ୍କ ଶାନ୍ତିନିକେତନରେ କିଛିଦିନ ରହିବା ଭିତରେ ସେଠାରେ କଳା, ବିଜ୍ଞାନ ଓ ଦର୍ଶନ ଉପରେ କେତେକ ଭାଷଣ ଦେଇଥିଲେ । ସେଠାରୁ ପଦବ୍ରଜରେ ସେ ହିମାଳୟ ପାର ହୋଇ ତିବ୍ବତ ଯାଇ ଗବେଷଣା କରିଥିଲେ ।

ସେ ଧର୍ମ ସଭା ସାରି ପରିଚୟ ଦିଆ ନିଆ ହେବାବେଳେ ସେ ମୋର ପରିଚୟ ପାଇ ମୁଁ ଜଣେ ଭାରତୀୟ ବୋଲି ଜାଣି ମୋତେ ଆଦରରେ କୋଳାଗ୍ରତ କରି ପକାଇଥିଲେ । କଥାବାର୍ତ୍ତା ପରେ ତାଙ୍କ ତତ୍ତ୍ୱାବଧାନରେ ଥିବା ସେଠାର ବିରାଟ 'ପ୍ଲାନୋଟେରୀଅମ' ତାରକା ନିରୀକ୍ଷଣ କେନ୍ଦ୍ର ଦେଖି ଯିବା ପାଇଁ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ ତାଙ୍କ ନିମନ୍ତ୍ରଣ ରକ୍ଷାକରି ତାଙ୍କ ସଙ୍ଗେ ପ୍ଲାନୋଟେରୀଅମକୁ ଯାଇଥିଲି । ସେ ମୋତେ ଯନ୍ତ୍ର ସାହାଯ୍ୟରେ ତାରକା ମାନଙ୍କୁ ଚିହ୍ନାଇ ଦେଇଥିଲେ । ସେ ବିଭିନ୍ନ ଦେଶରୁ ସଂଗ୍ରହ କରିଥିବା ଗଣିତ ଜ୍ୟୋତିଷ ଶାସ୍ତ୍ର ଇତିହାସର ତାଙ୍କ ପାଠାଗାରଟି ମଧ ମୋତେ ଦେଖାଇ ଥିଲେ । ପ୍ରାୟ ଶେଷ ଜୀବନ ପର୍ଯ୍ୟନ୍ତ ସେହି ବିଶ୍ୱବିଦ୍ୟାଳୟ ଓ ପ୍ଲାନୋଟେରୀଅମର ସମ୍ମାନିତ ପ୍ରଫେସର ଭାବରେ ରହିଥିଲେ । ବିଜ୍ଞାନ ଆଧାତ୍ମିକତା ଓ ମାନବିକତାବାଦର ସମନ୍ୱୟର ସେ ମୂର୍ତ୍ତୀମନ୍ତ ପୁରୁଷ ଥିଲେ ।

ମୋର ଚାଟାନୁଗା ରହଣି ଭିତରେ ତାଙ୍କଠାରୁ ମୁଁ ଖଣ୍ଡିଏ ଖ୍ରୀଷ୍ଟମାସ କାର୍ଡ଼ ପାଇଥିଲି । ସେ କାର୍ଡ଼ ପଛପଟେ ସେ ନିଜ ହାତରେ ଦେବନାଗରୀ ଅକ୍ଷରରେ 'ଗୀତା' ର ''ଯଦା ଯଦାହି ଧର୍ମସ୍ୟ'' ଶ୍ଳୋକଟି ଲେଖି ମୋ ନିକଟକୁ ପଠାଇଥିଲେ । ଦଳିତ ଓ ନିର୍ଯ୍ୟାତିତ ଲୋକଙ୍କ ପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲା । ସେ ଗୋଟିଏ ଖ୍ରୀଷ୍ଟମାସର ତାଙ୍କ ଅନୁଭୂତି ବର୍ଣ୍ଣନା କଲାବେଳେ ତାଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଯାଇଥିଲା । ସେ ସମୟରେ ସେ ଋଷିଆର ସାଇବେରିଆ ଗସ୍ତରେ ଯାଇଥିଲେ । ସେତେବେଳେ ଷ୍ଟାଲିନଙ୍କ ରାଜତ୍ୱ ଚାଲିଥିଲା । ଷ୍ଟାଲିନ୍‌ଙ୍କ ସମୂହ ଚାଷର ବଳାତ୍କାର ଯୋଗୁଁ ସାଇବେରିଆରେ ଯେଉଁ ଦୁର୍ଭିକ୍ଷ ସୃଷ୍ଟି ହୋଇଥିଲା ସେତେବେଳେ 'ବୋଲଟାନିଆ' ରେଳ ଷ୍ଟେସନ ନିକଟରେ ସେ ତାର ସେହି କରୁଣ ଦୃଶ୍ୟଟି ଦେଖିଥିଲେ । ସେଠାରେ ଛିଣ୍ଡା ଜାମା ପରିହିତ ଏକ ଭୋକିଲା ଭୟାତୁର ଛୋଟ ପିଲାର ମୁଖମଣ୍ଡଳ ଉପରେ ତାଙ୍କ ଦୃଷ୍ଟି ପଡ଼ିଥିଲା । ସେ ତା'ର ଅତି ଦୁର୍ବଳ ହାତରେ ଚିରା ଟୋପିଖଣ୍ଡ ବଢ଼ାଇ କ୍ଷୀଣ ସ୍ୱରରେ ତା' ଭାଷାରେ 'ଦେତେ' 'ଦେତେ' ବୋଲି କହିବା ସଙ୍ଗେ ସଙ୍ଗେ ପୋଲିସ୍‌ଙ୍କ ଠାରୁ ରକ୍ଷା ପାଇବା ପାଇଁ କନ କନ କରି ଚାରିଆଡ଼କୁ ଚାହୁଁଥିଲା । ତା'ର ନିକଟରେ ଏକ ରେଳ ଲାଇନ ଉପରେ ବନ୍ଦୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଏକ ମାଲଗାଡ଼ି ଠିଆ ହୋଇଥିଲା, ମାନବ ମାନଙ୍କର ଭୂତ ଭଳି ସେହି ଛାୟାରୂପ ଗୁଡ଼ିକ ପାଣି, ପାଣି ବୋଲି ବିକଳ ଚିତ୍କାର ଛାଡ଼ିଥିଲେ । କିନ୍ତୁ ସେମାନଙ୍କୁ ନିଷ୍ଠୁର ଋଷପୋଲିସର ଗାର୍ଡ଼ମାନେ ଏପରି ଭାବରେ ଜଗି ରହିଥିଲେ ଯେ ସେମାନଙ୍କନିକଟକୁ ଯାଇ ପାଣି ଦେବାକୁ କେହି ସାହସ କରୁନଥିଲେ ।

ମାନବର ଦୁଃଖ କଷ୍ଟ ସହିତ ଜଡ଼ିତ ହେବାପାଇଁ ହ୍ୟୁଏର ଯୁକ୍ତରାଷ୍ଟ୍ରର ଦକ୍ଷିଣ ରାଜ୍ୟରେ ବର୍ଣ୍ଣବୈଷମ୍ୟର ତାଣ୍ଡବ ନୃତ୍ୟ ଚାଲିଥିବା ବେଳେ ସେ ସ୍ଥାନକୁ ଆସି ବସବାସ କରି

ରହିଥିଲେ । ଯେଉଁ ସ୍ଥାନରେ ନିଗ୍ରୋଙ୍କ ପ୍ରତି କୋହଳ ମନୋବୃତ୍ତି ଯୋଗୁଁ ଦେଶର ରାଷ୍ଟ୍ରପତି ମଧ ଗୁଳି ମାଡ଼ରେ ପ୍ରାଣ ହରାନ୍ତି, ନିଗ୍ରୋଙ୍କ ସଙ୍ଗେ ବାକ୍ୟାଳାପ କଲେ ଲିଚ ବା ପ୍ରାଣହାନୀର ଆଶଙ୍କା ଥାଏ ସେ ସମୟରେ ହୁଏର ନିଗ୍ରୋମାନଙ୍କ ନେତା ମାର୍ଟିନଲୁଥର କିଙ୍ଗ ଜୁନିଅରଙ୍କ ସହିତ ସୁସଂପର୍କ ରଖିଥିଲେ । ନିର୍ଯ୍ୟାତିତ ନିଗ୍ରୋମାନଙ୍କ ଉପରୁ ଭେଦଭାବ ଉଠାଇବା ପାଇଁ ସେ ଭିତରେ ଭିତରେ ଚେଷ୍ଟା କରୁଥିଲେ । ସେ ରାତିରେ ନିଗ୍ରୋମାନଙ୍କ ଗୀର୍ଜା ଘରକୁ ଯାଇ ଭାଷଣ ଦେଉଥିଲେ । ସେ ଦିନେ ମୋତେ ମଧ ନିଜ ସଙ୍ଗରେ ଗୋଟିଏ ନିଗ୍ରୋ ଚର୍ଚ୍ଚକୁ ନେଇ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରାଇଥିଲେ ।

ଜୀବନର ଶେଷ ପର୍ଯ୍ୟନ୍ତ ଭାରତ ପ୍ରତି ତାଙ୍କର ଶ୍ରଦ୍ଧା ଓ ମମତା ରହିଥିଲା । ଭାରତ ସ୍ୱାଧୀନ ହେବା ପରେ ପରେ ଭାରତର ପ୍ରଥମ ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ ଏକ ଶାନ୍ତି ସମ୍ମିଳନୀ ପାଇଁ ସେହି ଶାନ୍ତିଦୂତଙ୍କୁ ନିମନ୍ତ୍ରଣ କରି ଆଣିଥିଲେ ।

ମୁଁ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପ୍ରାରମ୍ଭରେ ଆମେରିକା ଯାଇଥିଲି । ସେତେବେଳେ ଆମେରିକାରେ ଭାରତୀୟଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା, କିନ୍ତୁ ପରବର୍ତ୍ତୀ କାଳରେ ହଜାର ହଜାର ଓଡ଼ିଆ ଓ ଲକ୍ଷ ଲକ୍ଷ ଭାରତୀୟ ସେ ଦେଶକୁ ଯାଇ ବସବାସ କରି ରହିଲେ । ଭାରତ ସ୍ୱାଧୀନ ହେବାର ୨୫-୩୦ ବର୍ଷ ପରେ ହୁଏର ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ କ୍ଷୋଭ ପ୍ରକାଶ କରି ମୋତେ ଲେଖିଥିଲେ "ବନ୍ଧୁ ବିକ୍ରମ, ବର୍ତ୍ତମାନ ଭାରତରୁ ଆସି ଏଠାରେ ବସବାସ କରି ରହୁଥିବା ବହୁ ଲୋକଙ୍କୁ ମୁଁ ଦେଖୁଛି, କିନ୍ତୁ ସେମାନଙ୍କ ଭିତରେ ଭାରତୀୟ ସଂସ୍କୃତି ସମ୍ପନ୍ନ ଗୋଟିଏ ହେଲେ ଲୋକ ଦେଖିବାକୁ ପାଉ ନାହିଁ । ସେ ସମସ୍ତେ ଗାନ୍ଧିଙ୍କୁ ଭୁଲି ଏବେ ଲାଳସା ପଥରେ ଦଉଡ଼ିଛନ୍ତି । ସେମାନେ ହିନ୍ଦୁଧର୍ମର ଗୁଢ଼ତତ୍ତ୍ୱକୁ ଭୁଲିଯାଇ ଆଧୁନିକ ବସ୍ତୁବାଦୀ ସମ୍ଭୋଗ ନିଶାର ପଥ ଧରିଛନ୍ତି ।"

**ସାମାଜିକ ସମ୍ପର୍କ :**

ଡ଼କ୍ଟର ହୁଏର ଓ ଓ୍ୱାଗନରଙ୍କ ପରିବାର ଛଡ଼ା ମୋର ଅନ୍ୟ ଅନେକ ପରିବାରଙ୍କ ସହିତ ସ୍ନେହ ବନ୍ଧନ ସ୍ଥାପିତ ହୋଇଥିଲା । ସେମାନଙ୍କ ସାମାଜିକ ବିଚାରଧାରା ଓ ଚାଲିଚଳଣ ସଙ୍ଗେ ପରିଚିତ ହେବା ପାଇଁ ସମୟ ପାଇଲେ ମୁଁ ସେମାନଙ୍କ ସଙ୍ଗେ ମିଶୁଥିଲି । ସେମାନଙ୍କ ପରିବାର ଅତି ଛୋଟ ଥିଲା । ବାପା, ମା, ଓ ବଡ଼ ବଡ଼ ପିଲା କେହି ଏକ ପରିବାରରେ ରହୁ ନ ଥିଲେ । ପିଲାମାନେ ଷୋହଳ ବର୍ଷର ହୋଇଗଲେ ଘରଛାଡ଼ି ଚାଲିଯାଇ ଅନ୍ୟତ୍ର ରହୁଥିଲେ । ପରିବାରଟି ପୁରୁଷ କୈନ୍ଦ୍ରୀକ ନ ହୋଇ ସ୍ତ୍ରୀ କୈନ୍ଦ୍ରିକ ଥିବାରୁ ସେ ପରିବାରରେ ସ୍ତ୍ରୀଙ୍କର ମାତା ଆସି ରହୁଥିଲେ ।

ମୁଁ ଥରେ ଜଣେ ପେସେଣ୍ଟଙ୍କ ଘରକୁ ସେ ସହରରୁ ୩୦୦ ମାଇଲ ଦୂର ଏକ ଗ୍ରାମକୁ ଯାଇ ଚାରିଦିନ ଅତିଥି ହୋଇ ରହିଥିଲି । ସେ ସମୟରେ ସେ ଦେଶର 'ଥାଂକସ

ଗିଭିଙ୍ଗ' ପର୍ବ ଚାଲିଥିଲା । ସେ ପର୍ବ ପାଇଁ ସେ ପରିବାରର ଗୃହସ୍ୱାମୀ ବାପା-ମାଆ, ଭାଇ-ଭଉଣୀ କେହି ଆସିନଥିଲେ ।

ସେଠା ଲୋକେ ବଡ଼ ଅତିଥି ପରାୟଣ ଥିଲେ । ଚାଟାନୁଗାରେ ଥିବା ସମୟରେ ହାମିଲଟନ ପରିବାରଙ୍କ ସହିତ ମୋର ଅତ୍ମୀୟତା ବଢ଼ିଥିଲା । ସେମାନେ ମୋତେ ତାଙ୍କ ଘରକୁ ଡ଼କାଇ ନେଇ ମହୁଚାଷ ଓ ଫଟୋଗ୍ରାଫି ପ୍ରଭୃତି ଦେଖାଉଥିଲେ । ମୁଁ ଚାଟାନୁଗାରୁ ଚାଲିଯିବାର କେତେମାସ ପରେ ଚାଟାନୁଗା ବୁଲି ଆସି, ମୁଁ ଆସିଥିବା ଖବର ଜଣାଇବାକୁ ତାଙ୍କ ଘରକୁ ଫୋନ କଲି । ତାଙ୍କ ଛୋଟ ଝିଅଟି ଫୋନ ଧରି ବାପା-ମା' ଫଟୋ କ୍ଲବକୁ ଯାଇଛନ୍ତି ବୋଲି କହିଲା ।

ମୁଁ ମୋ ପୂର୍ବତନ ହଷ୍ଟେଲରେ ଜିନଷପତ୍ର ରଖି ଧୂଆଧୋଇ ହେବା ସମୟରେ ହାମିଲଟନ ଦମ୍ପତି ତାଙ୍କ ଗାଡ଼ି ଘେନି ଆସି, ମୁଁ ସେମାନଙ୍କ ଅତିଥି, ହଷ୍ଟେଲରେ ରହିବା ମୋର ଉଚିତ ନୁହେଁ ବୋଲି କହି ମୋତେ ତାଙ୍କ ଘରକୁ ଯିବାକୁ ବାଧ କଲେ । ତାଙ୍କ ଘରେ ମାତ୍ର ଦୁଇଟି କୋଠରୀ ଥିଲା । ଗୋଟିଏ କୋଠରୀରେ ସେ ଦମ୍ପତି ଓ ଅନ୍ୟ କୋଠରୀଟିରେ ତାଙ୍କର ବୃଦ୍ଧାଶାଶୂ ଓ କନ୍ୟା ଶୁଅନ୍ତି । ମିଃ ହାମିଲଟନ ଦାଣଘର ପରି ତାଙ୍କ ଗଳି ବାରଣ୍ଡାରେ ଗୋଟିଏ ଦୁଇ ତାଲା ଖଟ ପକାଇ ମୁଁ ତଳ ତାଲାରେ ଓ ସେ ଉପର ତାଲାରେ ଶୋଇବା ପାଇଁ ବ୍ୟବସ୍ଥା କରିଦେଲେ । ମୁଁ ଦୁଇ ଚାରି ଦିନ ତାଙ୍କ ଘର ଭିତରେ ରହିବା ଭିତରେ ସେ ଛୁଟି ନେଇ ତାଙ୍କ ଗାଡ଼ିରେ ମୋର ଯେଉଁ ଯେଉଁ ସ୍ଥାନକୁ ଯିବାର ଥାଏ ସେଠାକୁ ନେବା ଆଣିବା କଲେ । ସେଥିରୁ ସେମାନେ କିପରି ସ୍ନେହି ବ୍ୟକ୍ତି ଥିଲେ ତାହା ଅନୁମେୟ ।

ମୁଁ ଆଲାବାମାର ବରମିଙ୍ଗହାମ୍ ସହରରେ ଥିବାବେଳେ ମୋର ଜଣେ ପାଦ୍ରୀ ବ୍ରଦର ଲେଡ଼ଫୋର୍ଡ଼ଙ୍କ ସହିତ ପରିଚୟ ହେଲା । ଆମ ଶାସ୍ତ୍ରରେ ପଣ୍ଡିତ ମାନେ ମୁମୁର୍ଷୁ ବ୍ୟକ୍ତି ନିକଟରେ ଗୀତା ପାଠ କଲାପରି ସେ ଦେଶର ଗୀର୍ଜାର ପାଦ୍ରୀମାନେ ବାଇବଲ ପାଠ କରନ୍ତି । ଲେଡ଼ଫୋର୍ଡ଼ ସେଥିପାଇଁ ଆମ ହସ୍ପିଟାଲକୁ ଆସୁଥିଲେ । ମୋ ସଙ୍ଗେ ପରିଚୟ ହେବା ପରେ ରବିବାର ଦିନ ତାଙ୍କ ଚର୍ଚ୍ଚ ଭିତରେ ହେଉଥିବା ଆଲୋଚନା ସଭାକୁ ସେ ମୋତେ ଡ଼ାକି ନିଅନ୍ତି ।

ଦିନେ ସେପରି ଗୋଟିଏ ସଭାରେ ନିଗ୍ରୋ ଗୋରା ଭେଦର ଆଲୋଚନା ହେଲା । ଜଣେ (ଗୋରା ବ୍ୟକ୍ତି) କହିଲେ, ''ଏହି ଭେଦ ଭାବ ଯୋଗୁ ଆମ ଦେଶରେ ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ଭିତରେ ଏକ ଯୁଦ୍ଧ ହୋଇଯାଇଛି ଓ ଏବେ ବି ଉତ୍ତର ଦକ୍ଷିଣ ଭାବଧାରାରେ ପାର୍ଥକ୍ୟ ରହିଛି । ସେହି ଭେଦଭାବ ପାଇଁ ଆମ ଦକ୍ଷିଣ ରାଜ୍ୟର ଲୋକଙ୍କୁ ପୃଥିବୀର

ବହୁ ଦେଶର ଲୋକେ ଦୋଷୀ ସାବ୍ୟସ୍ତ କରନ୍ତି । କିନ୍ତୁ ଭାରତରେ ଜାତିଭେଦର ସେପରି ଏକ ସମସ୍ୟା ରହିଥିବାରୁ ଆପଣ ଆମର ଅସୁବିଧା ବିଷୟ ବୁଝିପାରିବେ ବୋଲି ମୋର ବିଶ୍ୱାସ ।''

ଏହି ନିଗ୍ରୋମାନେ ଏ ଅଞ୍ଚଳର ଚାଷବାସ ପାଇଁ କ୍ରୀତଦାସ ରୂପେ ଆଫ୍ରିକାରୁ ଏଠାକୁ ଅଣାଯାଇଥିଲେ । ଆମେ ତାଙ୍କୁ ବନ୍ଧନ ମୁକ୍ତ କଲୁ । କିନ୍ତୁ ଆମର ଧର୍ମ ଏକ ହୋଇଥିବାରୁ ସେମାନଙ୍କ ଓ ଆମ ଭିତରେ ସାଧାରଣ ମିଳାମିଶା ସମ୍ଭବ ହୋଇପାରୁନାହିଁ । ଆମ ଧର୍ମର ଜଣେ ପୁରୁଷ ସେହି ଧର୍ମର ଜଣେ ସ୍ତ୍ରୀକୁ ବିବାହ କରିବାରେ କୌଣସି ପ୍ରତିବନ୍ଧକ ନାହିଁ । କିନ୍ତୁ ନିଗ୍ରୋଙ୍କର ମୌଳିକ ଗଠନ ଓ ଆମ ଗୋରା ଲୋକଙ୍କ ମୌଳିକ ଗଠନରେ ବହୁ ତଫାତ୍ ରହିଛି । ଗୋରାମାନେ ନିଗ୍ରୋଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କଲେ ସେମାନଙ୍କ ସନ୍ତାନମାନଙ୍କ ଶାରୀରିକ ଗଠନରେ ଅଧିକ ନିଗ୍ରୋତ୍ୱ ଦେଖାଯାଏ । ତେଣୁ ସେପରି ବିବାହର ସୁଅ ଛୁଟିଲେ ଆସ୍ତେ ଆସ୍ତେ ଗୋରା ଜାତି ଏ ଦେଶରୁ ନିଶ୍ଚିହ୍ନ ହୋଇଯିବେ । ସେମାନଙ୍କ ସଙ୍ଗେ ପୂରା ମିଶାମିଶିର ଏହି ବିପଦ ରହିଥିବାରୁ ଆମେ ସେମାନଙ୍କୁ ଦୂରେଇ ରଖିବାକୁ ବାଧ ହେଉଛୁ । ଆପଣମାନେ ଭାରତରେ ହରିଜନ ଓ ଆଦିବାସୀ କଲ୍ୟାଣ ପାଇଁ ଓ ସେମାନଙ୍କୁ ସମାନ ଗଣତାନ୍ତ୍ରିକ ଅଧିକାର ଦେବା ପାଇଁ ବ୍ୟବସ୍ଥା କରୁଛନ୍ତି । କିନ୍ତୁ ଆପଣଙ୍କ ଉଚ୍ଚ ଜାତିର ପୁତ୍ର କନ୍ୟାମାନେ ସେମାନଙ୍କ ସହିତ ବିବାହ ବନ୍ଧନରେ ଛନ୍ଦି ହେଲେ ଆପଣମାନଙ୍କୁ କ'ଣ ସୁଖ ଲାଗିବ ? ମୁଁ ସେ ପ୍ରଶ୍ନର କ'ଣ ଉତ୍ତର ଦେବି ଭାବି ନ ପାରି ନିରବ ରହିଥିଲି ।

ବ୍ରଦର ଲେଡ଼ଫୋର୍ଡ଼ଙ୍କ ପୁତ୍ର ପୂର୍ବ ଭୂଖଣ୍ଡର ଯୁଦ୍ଧକ୍ଷେତ୍ରରୁ ଫେରିଆସୁଥିବାରୁ ତାଙ୍କ ନିମିତ୍ତ ଏକ ମିଳନ ଭୋଜି କରି ସେ ମୋତେ ନିମନ୍ତ୍ରଣ ଦେଇ ତାଙ୍କ ଘରକୁ ଘେନି ଯାଇଥିଲେ । ସେ ଦମ୍ପତି ମୋତେ ପୁତ୍ର ଚକ୍ଷୁରେ ଦେଖୁଥିଲେ । ତାଙ୍କ ଘରେ ଆମେ ଆଳାପ କରୁଥିବା ସମୟରେ ତାଙ୍କ ପୁତ୍ର ଓ ପୁତ୍ରବଧୂ ଆସି ପହଞ୍ଚିଲେ । ତାଙ୍କ ପୁତ୍ରବଧୂ ଅନ୍ୟ କେଉଁ ପ୍ରଦେଶରେ ରହି ଚାକିରି କରୁଥିଲେ । ସ୍ୱାମୀ ଯୁଦ୍ଧରୁ ଫେରିବାରୁ ସେ ସ୍ୱାମୀଙ୍କ ସହିତ ଆସି ସେହି ସହରର ଏକ ହୋଟେଲରେ ରହୁଥିଲେ । ସେମାନେ ପହଞ୍ଚିବା କ୍ଷଣି ବାପା ମାଆଙ୍କ ସହିତ ସେମାନଙ୍କର କୋଳାକୋଳି ଚାଲିଲା । ପରସ୍ପର ପରସ୍ପରର ଗୁଣଗାନ କରି ଟେକାଟେକି କଲା ଭଳି କଥାବାର୍ତ୍ତା ହେଲେ । ଆମେ ସମସ୍ତେ ଡ୍ରଇଂରୁମରେ ବସି କିଛି ସମୟ ଆଳାପ କଲାପରେ ମିସେସ୍ ଲେଡ଼ଫୋର୍ଡ଼ ସେଠାରୁ ଉଠିଯାଇ ଟେବୁଲ ସଜାଇ ବଢ଼ାବଢ଼ି କଲେ । ବଢ଼ା ସରିବା ପରେ ଆମେ ସମସ୍ତେ ସେଠାକୁ ଯାଇ ଏକତ୍ର ବସି ଭୋଜନ କଲୁ । ଭୋଜନ ସରିବା ପରେ ପୁଣି ଡ୍ରଇଂରୁମ୍‌ରେ କିଛି ସମୟ ଆଳାପ କରିବା ପରେ ଘଣ୍ଟାକୁ ଚାହିଁ ତାଙ୍କ ପୁତ୍ର ହୋଟେଲକୁ ଫେରିଯିବା

ପାଇଁ ଉଦ୍ୟତ ହେଲେ । ପୁଣି ବିଦାୟରେ କୋଳାକୋଳି ପରେ ପୁଅ-ବୋହୂ ବାପା-ମାଆଙ୍କୁ ସେ ଭୋଜି ପାଇଁ ଧନ୍ୟବାଦ ଅର୍ପଣ କରି ଟା' ଟା' କହି ଘରୁ ବାହାରିଗଲେ ।

ନଦୀ ବଢ଼ି ସମୟରେ ନଦୀବନ୍ଧ ବନ୍ୟାଜଳକୁ ଅଟକାଇ ନ ପାରି ହଠାତ୍ ଜଳ ଉଛୁଳି ନଦୀ ବନ୍ଧକୁ ଡେଇଁପଡ଼ିଲା ପରି ପୁଅ ବୋହୂଙ୍କ ବିଦାୟ ସଙ୍ଗେ ସଙ୍ଗେ ସେ ଦମ୍ପତିଙ୍କ ଧୈର୍ଯ୍ୟବନ୍ଧ ଭାଙ୍ଗିବାକୁ ବସିଲା । ସେମାନଙ୍କ ଆଖି ଛଳଛଳ ହୋଇଗଲା । ଆମେରିକାର ପରିବାର ବିହୀନ ସମାଜରେ ବି ସେପରି ଭାବପ୍ରବଣତା ଅଛି ବୋଲି ମୁଁ ଭାବି ନ ଥିଲି ।

ମୋର ହଷ୍ଟେଲକୁ ଫେରିବାରେ ବିଳମ୍ବ ହେଉଥିବାରୁ ମୁଁ ମଧ ଫେରିଯିବା ପାଇଁ ଉଠ୍ ଉଠ୍ ହେଲି । ଲେଡ଼ଫୋର୍ଡ଼ ଆଉ ଧୈର୍ଯ୍ୟ ଧରି ନ ପାରି ମୋ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ କହିଲେ, ତୁମେ ମଧ ଆମକୁ ଏପରି ଅବସ୍ଥାରେ ଛାଡ଼ି ହଠାତ୍ ଚାଲିଯିବାକୁ ଚାହୁଁଚ ? ସେ ଆଖି ପୋଛୁ ପୋଛୁ କହିଲେ, ' ଦେଖିଲତ ଆମ ଦେଶ କିପରି ଏକ 'ଫର୍ମାଲ' ଦେଶ । ପୁଅ ବୋହୂ ଏତେକାଳ ପରେ ଘରକୁ ଆସିଲେ, କିନ୍ତୁ ରାତିଟାଏ ବି ଘରେ ରହି ଆମ ସହିତ କଟାଇବାକୁ ଚାହିଁଲେ ନାହିଁ । ଏହା କ'ଣ ତୁମ ଦେଶରେ କେବେ ସମ୍ଭବ ହୁଅନ୍ତା ? ଏହା କହି ମୋତେ ଧରି ସେ 'ଭୋ ଭୋ' କାନ୍ଦି ଉଠିଲେ ।

ମୁଁ ସେ ଦମ୍ପତିଙ୍କୁ ଆଶ୍ୱାସନା ଦେବାପାଇଁ ହଷ୍ଟେଲକୁ ନ ଫେରି ସେ ରାତ୍ରୀଟି ସେମାନଙ୍କ ଘରେ କଟାଇଲି । ବହୁ ରାତ୍ରୀ ଯାଏ ଆମର ଦୁଃଖ ସୁଖ କଥାବାର୍ତ୍ତା ଚାଲିଲା । ସେ ସବୁରୁ ଅତ୍ୟାଧୁନିକ ବସ୍ତୁବାଦୀ ସମାଜ ଭିତରେ ମଧ ଲୋକଙ୍କ ମଧରେ ଭାବ ପ୍ରବଣତାର ଆଭାସ ପାଇଲି ତାହା ଭୁଲିବାର ନୁହେଁ ।

ଆଉ ଗୋଟିଏ ଘଟଣାରୁ ମଧବୟସ୍କମାନଙ୍କର ସାମାଜିକ ପ୍ରଥା ଉପରେ ଅସନ୍ତୋଷ ଭାବର ଆଭାସ ମଧ ପାଇଥିଲି । ଆମ ହସ୍‌ପିଟାଲର ଗୋଟିଏ ରୋଗୀଣୀର ସ୍ୱାମୀ ମୋ ନିକଟକୁ ତା' ରୋଗ ସମ୍ବନ୍ଧରେ ବୁଝିବାକୁ ଯା' ଆସ କରିବାରେ ସେମାନଙ୍କ ସଙ୍ଗେ ମୋର ବନ୍ଧୁତା ବଢ଼ିଥିଲା । ସେହି ପୌଢ଼ା ରୋଗୀଣୀର ଶଯ୍ୟା ନିକଟରେ ମୁଁ ଓ ତା'ର ସ୍ୱାମୀ ବସି ରହିଥିବା ସମୟରେ ରୋଗୀଣୀଟି ମୋତେ ମୋ ଘରକଥା ପଚାରିବାକୁ ଯାଇ ଆମ ବିବାହ ପଦ୍ଧତି କଥା ପଚାରିଲା । ଆମର ବାପା-ମାଆ, ପୁତ୍ର-କନ୍ୟାଙ୍କ ବିବାହ ଠିକ୍ କରନ୍ତି ଶୁଣି ସେ ତା'ର ସ୍ୱାମୀଙ୍କୁ କହିଲା 'ପ୍ରିୟ ! ଏ ଡ଼ାକ୍ତରଙ୍କ ଦେଶର ବିବାହ ପ୍ରଥା କେତେ ଚମତ୍କାର, ପୁତ୍ର-କନ୍ୟାଙ୍କ ବାପ ମାଆ ସେମାନଙ୍କ ପୋଖତ ବୁଦ୍ଧିରେ ସବୁ ଆଡ଼କୁ ଦୃଷ୍ଟିଦେଇ ବର କନ୍ୟା ଠିକ କରନ୍ତି, ଆମ ଦେଶରେ ଅପ୍ରାପ୍ତ ବୟସ୍କ ପୁତ୍ର କନ୍ୟାଙ୍କୁ ନିଜେ ନିଜେ ସ୍ତ୍ରୀ ସ୍ୱାମୀ ବାଛିବାକୁ ପଡ଼େ । ତୁମେ ଜାଣ ବିବାହ ପୂର୍ବରୁ

କେତେ ଯେ ଯୁବତୀ ତୁମକୁ ନ ଠକିଛନ୍ତି ଏବଂ କେତେ ଯେ ଯୁବକ ମୋତେ ନ ଠକିଛନ୍ତି । ଆମ ଭାଗ୍ୟ ଭଲ ଯେ ଆମେ ଦୁହେଁ ମନମୁତାବକ ପାତ୍ର ପାତ୍ରୀ ପାଇ ବିବାହ କରିଥିବାରୁ ଏପର୍ଯ୍ୟନ୍ତ ଏକାଠି ରହିପାରିଛେ । ଯଦି ଅନ୍ୟ ଜନ୍ମ କିଛି ଥାଏ ତେବେ ଆର ଜନ୍ମରେ ଆମେ ଭାରତରେ ଜନ୍ମ ହେବାପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରିବା, ତେବେ ବିବାହ ବଛାବଛି ମୁଣ୍ଡବ୍ୟଥାରୁ ଉଦ୍ଧାର ପାଇବା ।'

## ଆମେରିକାର ପର୍ବପର୍ବଣୀ :

ଆମ ଦେଶରେ ବାର ମାସରେ ତେର ପର୍ବ, କିନ୍ତୁ ଆମେରିକା ପରି ନୂଆ ଦେଶରେ ପର୍ବ ପର୍ବାଣୀ ବଡ଼ ସୀମିତ । ଚାରି ଜୁଲାଇ ସେମାନଙ୍କ ସ୍ୱାଧୀନତା ଦିବସ ହୋଇଥିବାରୁ ତାହା ଏକ ଉତ୍ସବ ରୂପେ ଜାକଜମକରେ ପାଳନ କରାଯାଇଥାଏ । ସେ'ଦିନ ବାଣ ଫୁଟାଇ ମଉଜ ମଜଲିସ୍‌ରେ ଲୋକେ ସେ ଉତ୍ସବ ପାଳନ କରନ୍ତି ।

'ହାଲୁଇନ' ପର୍ବଟି ପିଲାମାନଙ୍କ ପାଇଁ ଆମ କୁମାର ପୂର୍ଣ୍ଣମୀ ପରି ଏକ ପ୍ରଧାନ ପର୍ବ । ସେଦିନ ବଡ଼ କଖାରୁକୁ ଖୋଳ କରି କାଟି ମୁଖା ଭଳି ମୁଣ୍ଡରେ ଲଗାଇ ଛୋଟ ପିଲାମାନେ ବଡ଼ମାନଙ୍କ ନିକଟକୁ ଯାଇ ମିଠେଇ ଦାବି କରନ୍ତି । ଆମର କୁମାର ପୂର୍ଣ୍ଣମୀରେ ପିଲାମାନେ ନୂଆଲୁଗା ପିନ୍ଧି ବଡ଼ ମାନଙ୍କୁ ମୁଣ୍ଡିଆ ମାରି ପଇସା ପାଇଲା ପରି ଏହା ତାଙ୍କର ଗୋଟିଏ ଖୁସିର ଦିନ ।

'ଥାଙ୍କସ ଗିଭିଙ୍ଗ' ବା ଧନ୍ୟବାଦ ଅର୍ପଣ ଦିନଟି ସେମାନଙ୍କର ଗୋଟିଏ ବଡ଼ ପର୍ବ । ସେହିଦିନ ଆମେରିକାକୁ ପ୍ରଥମେ ବିଲାତରୁ ଧର୍ମଭିତ୍ତିରେ ନିର୍ବାସନ ଦଣ୍ଡପାଇ ଆସିଥିବା 'ପିଲଗ୍ରୀମ ଫାଦର୍ସ' ଯାତ୍ରୀମାନେ ସେ ଦେଶରେ ଗୋଡ଼ ଦେଇ ବସବାସ କରିବା ଆରମ୍ଭ କରିଥିଲେ । ସେମାନେ ସେଠାରେ ଚାଷବାସ ଆରମ୍ଭ କରିବା ସଙ୍ଗେ ସଙ୍ଗେ ସେ ବର୍ଷ ଫସଲ ହେବା ପର୍ଯ୍ୟନ୍ତ ସେ ଦେଶର ଫଳମୂଳ ଓ ଟର୍କି (ସେ ଦେଶର ବଣ କୁକୁଡ଼ା) ପ୍ରଭୃତି ଜୀବଜନ୍ତୁ ଖାଇ ଜୀବନ ଧାରଣ କରିପାରିଥିଲେ । ସେଥିପାଇଁ ପ୍ରତିବର୍ଷ ସେହିଦିନ ଟର୍କି ଚଢ଼େଇ ଖାଇ ସେ ପର୍ବ ପାଳନ କରନ୍ତି ।

ସେ ପର୍ବ ପାଇଁ ବର୍ଷ ଆରମ୍ଭରୁ ରାଷ୍ଟ୍ରପତି ଭବନରେ ୩୬୫ଟି ଟର୍କୀ ଚଢ଼େଇ ଯୋଗାଡ଼ କରାଯାଇଥାଏ । ସେଥିରୁ ପ୍ରତିଦିନ ଗୋଟିଏ ଗୋଟିଏ କରି କାଟି ଅବଶିଷ୍ଟ ପକ୍ଷୀଙ୍କୁ ଖାଇବାକୁ ଦିଆଯାଏ, ଏପରି କରିବା ଦ୍ୱାରା ବର୍ଷ ଶେଷରେ ଯେଉଁ ପକ୍ଷୀଟି ରହିଯାଏ ତାକୁ ଟେଲିଭିଜନରେ ଦେଶବାସୀଙ୍କୁ ଦେଖାଯାଇ ରାଷ୍ଟ୍ରପତିଙ୍କ ପର୍ବ ପାଳନ ପାଇଁ କଟାଯାଇ ରନ୍ଧାଯାଏ । ସେ ଉତ୍ସବ ଓ ଭୋଜି ମଧ୍ୟ ଦେଶସାରା ପ୍ରଦର୍ଶିତ ହୁଏ ।

ଖ୍ରୀଷ୍ଟମାସ ବା ଯୀଶୁଙ୍କ ଜନ୍ମ ଦିବସଟି ସେମାନଙ୍କର ସବୁଠାରୁ ବଡ଼ପର୍ବ । ସେଥିପାଇଁ ଦେଶସାରା ପ୍ରାୟ ଏକ ସପ୍ତାହ ଛୁଟି ହୋଇଥାଏ । ସେଥିପାଇଁ ଖ୍ରୀଷ୍ଟମାସଟିରେ ସାଜସଜ୍ଜା

ସହିତ ଉପହାର ଦିଆ ନିଆ ଚାଲେ । ଦୋକାନ ବଜାରରେ 'ସାଣ୍ଟାକ୍ଲଜ' ବେଶ ପିନ୍ଧି କିଣା ଜିନିଷକୁ ଜରି କାଗଜରେ ବାନ୍ଧି ଦୋକାନୀମାନେ ଖରିଦଦାର ପିଲାଙ୍କ ହାତକୁ ବଢ଼ାଇ ଦିଅନ୍ତି ।

ଖ୍ରୀଷ୍ଟମାସର ପୂର୍ବଦିନ ଘରର କେତେକ କବାଟ ବନ୍ଧ ଉପରେ 'ମିସଲେ ଟୋ' ନାମକ ପତ୍ର ଟଙ୍ଗାଇ ରଖା ଯାଇଥାଏ । କୌଣସି ପୁରୁଷ ନ ଜାଣି ସେ ଓହଳିଥିବା ପତ୍ର ତଳେ ଠିଆ ହୋଇଗଲେ ସ୍ତ୍ରୀ ଲୋକମାନେ ତା' ନିକଟକୁ ମାଡ଼ି ଆସି ସେ ଲୋକର ଗାଲକୁ ଚୁମାରେ ପୋତି ପକାନ୍ତି । ସେହିପରି ନିମନ୍ତଣରେ ଆସିଥିବା ସ୍ତ୍ରୀ ଲୋକଟିଏ ତା' ତଳେ ଗଲାବେଳକୁ ପୁରୁଷମାନେ ଆସି ତାକୁ ଚୁମା ଦିଅନ୍ତି । ସେ ଦେଶରେ ସେପରି ଚୁମା ଦିଆ ନିଆଟା ଅବଶ୍ୟ ମାମୁଲି କଥା । ଗୋଟିଏ ପୁରୁଷର ମୁଖମଣ୍ଡଳ ସ୍ତ୍ରୀ ଲୋକଙ୍କ ଲିପ୍‌ଷ୍ଟିକ୍ ଲାଗି ପାତି ମାଙ୍କଡ଼ ମୁହଁ ପରି ଲାଲ ହୋଇ ଯାଇଥିବାରୁ ମୋର ଆମ ହୋଲି କଥା ମନେ ପଡ଼ିଲା । ହୋଲି ଖେଳରେ ଯେ କେବଳ ହସଖୁସିର ଖେଳ ହୁଏ ତାହା ନୁହେଁ, ବେଳେବେଳେ ହୋଲି ନାମରେ ଲୋକଙ୍କୁ ଧରି ନେଇ ଜବରଦସ୍ତି ହଇରାଣ କରାଯାଇଥାଏ ।

ମୁଁ କଲିକତାରେ ପଢୁଥିବା ବେଳେ ହୋଲି ଦିନ ବାହାରକୁ ବାହାରିବା ପାଇଁ ଲୋକେ ସାହସ କରୁ ନଥିବାରୁ ହଷ୍ଟେଲ କୋଠା ଉପରେ ଠିଆ ହୋଇ ରାସ୍ତାକୁ ଚାହିଁଥିଲି । ଆମ ଗ୍ରାମରେ ଆଗେ ହୋଲିପାଣି ଖେଳ ନ ଥିଲା । ଫଗୁଦଶମୀ ଦିନ ଦିଅଁଙ୍କ ପାଖରୁ ଆଣି ଫଗୁ ଟିକିଏ ମୁଣ୍ଡରେ ପକାଇ ଦିଆଯାଉଥିଲା । ସହରୀ ସଭ୍ୟତା ମାଡ଼ି ଆସିବା ପରେ ପୂର୍ଣ୍ଣମୀ ବାସୀ ବା ହୋଲି ଦିନ ରଙ୍ଗ ପାଣିର ପିଚକାରୀ ଖେଳ ଓ ମୁହଁରେ ରଙ୍ଗ ବୋଳାବୋଳି ଆରମ୍ଭ ହୋଇ ଯାଇଛି । କଲିକତା ମହାନଗରୀରେ ସେ ଖେଳ କିପରି ହୁଏ ବୋଲି ଦେଖିବାକୁ ଚାହିଁଥିଲା ବେଳେ ସାମନା ରାସ୍ତାରେ ତରତରରେ ଚାଲିଯାଉଥିବା ଜଣେ ଲୋକକୁ ପାଖ ଗଳିମାନଙ୍କରୁ କେତେକ ଗୁଣ୍ଡା ଶ୍ରେଣୀୟ ଲୋକ ବାହାରି ଆସି ଧରିନେଲେ । ଗଳିମୁଣ୍ଡେ ସେମାନେ ରଖିଥିବା ନଳାପାଣି ଓ ଅନ୍ୟାନ୍ୟ ଦୁର୍ଗନ୍ଧମୟ ଜଳରେ ସେ ଲୋକକୁ ବୁଡ଼ାଇ ବୁଡ଼ାଇ ତା ଦେହରେ ଆଲକାତରା ପ୍ରଭୃତି ରଙ୍ଗ ବୋଳି ଛାଡ଼ିଦେଲେ । ସେ ବିଚରାର ପୁଅ ବଡ଼ ବେମାର ପଡ଼ିଥବାରୁ ସେ ବାଧ ହୋଇ ଔଷଧ କିଣିବା ପାଇଁ ଯାଉଥିଲା । ସେ ଯେତେ କାକୁତି ମିନତି କଲେ ମଧ କାମ ନ ସରିବା ପର୍ଯ୍ୟନ୍ତ ଗୁଣ୍ଡାମାନେ ତାଙ୍କୁ ଛାଡୁନଥିଲେ । ହସଖୁସି ନାମରେ ସେପରି ବିଭତ୍ସ କାଣ୍ଡ ପରି ଆମେରିକାରେ ସେ'ଦିନ ମଦ୍ୟ ଓ ବ୍ୟଭିଚାରର ସୁଅ ମଧ ଛୁଟୁଥିଲା । ଖ୍ରୀଷ୍ଟମାସ ଦିନ ଖ୍ରୀଷ୍ଟମାସ କେକ୍ ବ ଣ୍ଟନ, ଉପହାର ଆଦାନ ପ୍ରଦାନ ଓ ପିଲାମାନଙ୍କ ଆନନ୍ଦ ଉତ୍ସବରେ ସାରା ଦେଶ ମୁଖରିତ ହୋଇ ଉଠୁଥିଲା ।

**ସେଠାରେ ଜନ ସଂପର୍କ :**

ରୋଗ ପାଇଁ ଧନୀ ଦରିଦ୍ର ସମସ୍ତେ ସମାନ, ତେଣୁ ସବୁ ଶ୍ରେଣୀର ରୋଗୀ ଡ଼ାକ୍ତର ବା ଡ଼ାକ୍ତରଖାନାର ଦ୍ୱାରସ୍ଥ ହୋଇ ଥାଆନ୍ତି । ତେଣୁ ଜଣେ ଚିକିତ୍ସକ ପକ୍ଷରେ ସବୁ ଶ୍ରେଣୀୟ ଲୋକଙ୍କ ସହ ସମ୍ପର୍କ ରଖିବା ସମ୍ଭବ ହୁଏ । ସେଠାର କେତେକ ଧନୀ ଲୋକଙ୍କର ନିମନ୍ତ୍ରଣ ମୋତେ ବେଳେ ବେଳେ ମିଳୁଥିଲା । ପୃଥିବୀ ବିଖ୍ୟାତ 'କୋକାକୋଲା' କମ୍ପାନୀର ଜଣେ ମାଲିକଙ୍କର ଚାଟାନୁଗା ନିକଟସ୍ଥ ଲୁକଆଉଟ ମାଉଣ୍ଟେନ ଉପରେ ଏକ ପ୍ରାସାଦ ରହିଥିଲା । ମୁଁ ସେଠାକୁ ନିମନ୍ତ୍ରଣରେ ଯାଇ ତାର ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜାରେ ଅଭିଭୂତ ହୋଇଥିଲି । ସେଠାରୁ ଫେରିଲା ବେଳକୁ ନାଲି କୋକାକୋଲା ଆଇସବକ୍ସ ପରି ଦିଶୁଥିବା ଗୋଟିଏ କ୍ଷୁଦ୍ର ମିଉଜିକ ବକ୍ସ ମୋତେ ଉପହାର ମିଳିଥିଲା ।

ବିଶ୍ୱଯୁଦ୍ଧ ପରେ ଏସିଆ ମହାଦେଶର ପୂର୍ବ ଭୂଖଣ୍ଡରୁ ଉଚ୍ଚ ଶିକ୍ଷା ପାଇଁ ଓ କର୍ମସଂସ୍ଥାନ ଉଦ୍ଦେଶ୍ୟରେ ଲୋକମାନେ ଆସିବା ଆରମ୍ଭ କରିଥିଲେ । ଚାଟାନୁଗାର ଯକ୍ଷ୍ମା ହସ୍‌ପିଟାଲରେ ଡ଼କ୍ଟର ସେକ୍ ନାମକ ଜଣେ ଚୀନା ଡ଼ାକ୍ତର କାମ କରୁଥିଲେ । ଯକ୍ଷ୍ମା ରେଗୀଙ୍କ ସମ୍ବନ୍ଧରେ ଆଲୋଚନା ପାଇଁ ଆମ ବିଭାଗୀୟ ମୁଖ୍ୟଙ୍କ ସଙ୍ଗେ ମୁଁ ସେ ହସ୍‌ପିଟାଲକୁ ଯିବା ଆସିବା କରିବା ଅବସରରେ ମୋର ଡ଼ାକ୍ତର ସେକ୍‌ଙ୍କ ସହିତ ବନ୍ଧୁତା ହୋଇଥିଲା । ନିରୋଳାରେ ଆମ ଦୁହିଁଙ୍କ କଥାବାର୍ତ୍ତା ବେଳେ ଡ଼ାକ୍ତର ସେକ୍ ଆମେରିକା ସମାଜ ବିଷୟରେ ସମାଲୋଚନା କରୁଥିଲେ । ଆମେରିକା ସମାଜରେ ଯୌଥ ପରିବାର ନ ଥିବାରୁ ଓ ପରିବାରର କିଶୋର କିଶୋରୀ ପୁତ୍ର କନ୍ୟାମାନଙ୍କୁ ଅବାଧ ମିଳାମିଶାର ସୁବିଧା ଦେଉଥିବା ପ୍ରବୃତ୍ତିକୁ ସେ ପସନ୍ଦ କରୁନଥିଲେ । ଆମେରିକା ଲୋକେ ସେମାନଙ୍କ ପିତା-ମାତାଙ୍କ ସହିତ ନ ରହି ଯେପରି ଗୁରୁଜନମାନଙ୍କ ପ୍ରତି ସମ୍ପୂର୍ଣ୍ଣ ଅବହେଳା ପ୍ରଦର୍ଶନ କରୁଥିଲେ, ସେପରି ତାଙ୍କ ନିଜର ଛୋଟ ପିଲାମାନେ ମଧ ସେମାନଙ୍କୁ ଅସମ୍ମାନ ରୀତିରେ ନାମ ଧରି ଡ଼ାକୁଥିଲେ । ଷୋହଳ ବର୍ଷ ବୟସ ହେଲେ ପିଲାଏ ଘର ଛାଡ଼ି ଅନ୍ୟତ୍ର ରହିବାକୁ ପସନ୍ଦ କରୁଥିଲେ । ଏ ସବୁ ଆମ ପୂର୍ବ ଦେଶୀୟ ପୁରାତନ ସଭ୍ୟତାଠାରୁ ସମ୍ପୂର୍ଣ୍ଣ ପୃଥକ ଥିବାରୁ ଡ଼ାକ୍ତର ସେକ୍‌କୁ ଭଲ ଲାଗୁନଥିଲା ।

ଆମେରିକା ସମାଜ ସମ୍ପୂର୍ଣ୍ଣ ସ୍ୱାର୍ଥପର ହେଲେ ମଧ ସେମାନଙ୍କ ଭିତରେ କର୍ମ କୁଶଳତା ଓ ସାଧୁତା ବିଦ୍ୟମାନ ଥିଲା । ଟେନେସୀ ଭାଲି ଯୋଜନା ଇଞ୍ଜିନିଅରମାନଙ୍କ ସହିତ ମିଶି ଓ ସେମାନଙ୍କ କାର୍ଯ୍ୟକୁ ଦେଖି ମୁଁ ସେମାନଙ୍କ କର୍ମକୁଶଳତା ବିଷୟରେ ଅବଗତ ହୋଇଥିଲି । ଆମେରିକା ଜାତି ଏକ ବ୍ୟବସାୟୀ ଜାତି, କାର୍ଯ୍ୟରେ ଅବହେଳା ଓ ଭେଜାଲ ମିଶାଇବା ତାଙ୍କ ଧର୍ମ ନୁହେଁ ।

ଚିକାମୁଗା ଡ୍ୟାମ ନିର୍ମିତହେବା ପୂର୍ବରୁ ଜଳମଗ୍ନ ହେବାକୁ ଥିବା ଜମିକୁ ଇଞ୍ଜିନିଅରମାନେ ସମ୍ପୂର୍ଣ୍ଣ ଭାବରେ ସମତଳ କରାଇଥିଲେ । ସେହି ଡ୍ୟାମ୍‌ରେ ଥିବା ନଦୀକୁ ଗଭୀର ଓ ସମତଳ କରାଯାଇ ସେଥିରେ ଷ୍ଟିମର ଚାଳନା, ମାଛମରା ପ୍ରଭୃତିର ବ୍ୟବସ୍ଥା କରିଥିଲେ । ଭବିଷ୍ୟତ ଲାଭକୁ ଆଖି ଆଗରେ ରଖି କାର୍ଯ୍ୟ କରିବା ସେମାନଙ୍କର ପ୍ରକୃତି ଥିଲା ।

ଆମ ହୀରାକୁଦ ବନ୍ଧ ନିର୍ମାଣ ବେଳେ କର୍ତ୍ତୃପକ୍ଷ ଭବିଷ୍ୟତ କଥା ନ ବିଚାରି ଗଛ ଓ ମନ୍ଦିର ପ୍ରଭୃତି ଜଳମଗ୍ନ କରାଇବା ଦ୍ୱାରା ସେଥି ନିକଟରେ ପଟୁମାଟି ଜମିବା ସଙ୍ଗେ ସଙ୍ଗେ ସନ୍ତରଣ, ଖେଳ, ମାଛଧରା ପ୍ରଭୃତି ପ୍ରତି ଦୃଷ୍ଟି ଦିଆଯାଇ ନ ଥିଲା । ଆମେରିକାରେ କୌଣସି ଯୋଜନାକୁ ଲାଭକାରୀ କରିବା ପାଇଁ ସଂପୃକ୍ତ ବିଭାଗ ମାନଙ୍କ କାର୍ଯ୍ୟର ସମନ୍ୱୟ ରହିଥାଏ । କିନ୍ତୁ ଆମର ସେସବୁ ପ୍ରତି ଦୃଷ୍ଟି ଦିଆନଯାଇ ଏକ ଦିଗରେ କାର୍ଯ୍ୟ ମାଡ଼ି ଚାଲେ । ଉଦାହରଣ ସ୍ୱରୂପ - ପି.ଡ଼ବ୍ଲିଉ.ଡ଼ି. ସୁନ୍ଦର ଚିକ୍‌ଣ ରାସ୍ତାଟିଏ ନିର୍ମାଣ କରିବା ପରେ ପରେ ଟେଲିଫୋନ ଓ ଜଳ ଯୋଗାଣ ବିଭାଗ ପ୍ରଭୃତି ସେ ରାସ୍ତାକୁ ଖୋଳି କାଟି କାମ ସମାପନ କରି ଖଣ୍ଡିଆ ରଖି ଚାଲିଯାଆନ୍ତି ଓ ଲୋକଙ୍କ ଅସୁବିଧା ବା ରାସ୍ତାର ସୌନ୍ଦର୍ଯ୍ୟ ପ୍ରତି କୌଣସି ଦୃଷ୍ଟି ଦିଅନ୍ତି ନାହିଁ ।

## ନିମ୍ନସ୍ତରର ନାଗରିକ :

ଆମେରିକା ଆସିବା ପଥରେ ମୋ ପ୍ଲାଷ୍ଟିକ ଜିଭଛେଲାଟି ଭାଙ୍ଗିଯାଇ ଥିଲା । ବିଲାତ ଓ ଆମେରିକା ଲୋକେ ଜିଭଛେଲା ବ୍ୟବହାର ନକରି ଟୁଥବ୍ରସକୁ ଜିଭରେ ଘଷି ଜିଭ ସଫା କରୁଥିବାରୁ ମୁଁ ଲଣ୍ଡନ, ନିଉୟର୍କ ପ୍ରଭୃତି ସ୍ଥାନରେ ଜିଭଛେଲା ଖୋଜି କୌଣସି ଦୋକାନରେ ପାଉନଥିଲି । କାମ ନ ଥିଲା ବେଳେ ଛୁଟି ସମୟରେ ହଷ୍ଟେଲରେ ଏକାକୀ ବସି ରହିବାକୁ ଭଲ ଲାଗୁ ନ ଥିବାରୁ ଆମ ହସ୍‌ପିଟାଲର ଅଳ୍ପ ଦୂରରେ ଥିବା ଟେନେସୀ ନଦୀ କୂଳକୁ ମୁଁ ଭ୍ରମଣରେ ଯିବା ପାଇଁ ସ୍ଥିର କଲି । ରାସ୍ତା ଓ ନଦୀକୂଳ ଭିତରର ଜଙ୍ଗଲିଆ ସ୍ଥାନରେ ବାଘ ନଳ ଗଛ ଦେଖି ସେ ଗଛର ପାତିଆରେ ଜିଭ ଛେଲା କାମ ଚଳିବ ଭାବି ମୁଁ ନ ଦୀ କୂଳକୁ ରାସ୍ତା ଖୋଜିବା ବେଳେ ସେହି ନଦୀ କୂଳରେ ବାସ କରୁଥିବା 'ମୁନି' ପରିବାର ସଙ୍ଗେ ସମ୍ପର୍କ ସ୍ଥାପନ କରିଥିଲି । ସେ ପରିବାରର ବୃଦ୍ଧ ଜର୍ଜ ମୁନୀଙ୍କର ନଦୀ କୂଳରେ ଗୋଟିଏ 'ଆମୋଦଗୃହ' ବା ହଟ୍‌ଡଗ୍ ଓ ଛୋଟ ଦୋକାନ ଥିଲା । ମୋ କାମ ସରିଲେ ପ୍ରାୟ ଚାରିଟା ପାଞ୍ଚଟା ବେଳକୁ ନଦୀ କୂଳକୁ ବୁଲିଗଲା ବେଳେ ତାଙ୍କ ସଙ୍ଗେ ଦେଖାହୁଏ । ତାଙ୍କର ରକ୍ତଚାପ ଓ ଅଣ୍ଟାଧରା ବେମାରି ପ୍ରଭୃତି ଥିବାରୁ ଓ ଔଷଧ କିଣିବା ତାଙ୍କ ପକ୍ଷରେ କଷ୍ଟକର ଥିବାରୁ ମୁଁ ହସ୍‌ପିଟାଲରୁ ଯୋଗାଡ଼ କରି ତାଙ୍କୁ ଔଷଧ ଦିଏ । ତେଣୁ ସେ ମୋ ପ୍ରତି କୃତଜ୍ଞ ଥାଇ ମୋତେ ଆଦର କରନ୍ତି ।

ସେହି ବୁଢ଼ା-ବୁଢ଼ୀ ଛୋଟ ଦୋକାନ ଘରଟିରେ ରହୁଥାଆନ୍ତି । କିନ୍ତୁ ତାଙ୍କର ପୌତ୍ର ଜୁନିଅର ମୁନି ପୁବ୍ ନଦୀ କୂଳର ପାଣି ଉପରେ ଡ଼ଙ୍ଗାଘରଟିଏ କରି ଏକାକୀ ରହୁଥିଲା । ସେ ଟେନେସୀ ନଦୀରୁ ଗୋଟିଏ ମାଇଲ ଲିଜ ନେଇ ସକାଳୁ ନିଜ ମୋଟର ବୋଟରେ ଯାଇ ନଦୀର ଏପଟ ସେପଟ ପର୍ଯ୍ୟନ୍ତ ଲମ୍ବା ସୂତାଟାର ଗୋଟିଏ ମୁଣ୍ଡ ନଦୀ କୂଳର ପଥର ଖଣ୍ଡରେ ବାନ୍ଧି ଅନ୍ୟ ମୁଣ୍ଡଟି ବଡ଼ ଫମ୍ପା ବୋତଲରେ ବାନ୍ଧି ଭସାଇ ଦେଉଥିଲା । ସେ ସୂତା ଦେହରେ ଟିକିଏ ଟିକିଏ ବ୍ୟବଧାନରେ ବନିସୀ କଣ୍ଟାରେ ଚିଙ୍ଗୁଡ଼ି ବା ଛୋଟ ମାଛ ଗୁଛି ଓହଳାଇ ଦେଉଥିଲା । ବେଳବୁଡ଼ିଲା ବେଳକୁ ତା'ର ମୋଟର ବୋଟରେ ଯାଇ କଣ୍ଟାରେ ଲାଗିଥିବା ମାଛ ସବୁ ଆଣି ତା'ର ଅଯତ୍ନରେ ପଡ଼ିଥିବା ମୋଟର ଗାଡ଼ିଟିରେ ବଜାରକୁ ନେଇ ବିକ୍ରୀ କରୁଥିଲା । ପାଣିରୁ ଆଦାୟ ଅର୍ଥକୁ ସେ 'ବିଅର ମଦର' ପାଣିରେ ପରିଣତ କରି ଦିନ ରାତି ପିଉଥିଲା । ସେ ସବୁବେଳେ ବିଅର ପିଇ ପିଇ ଏକ ଅମଣିଷରେ ପରିଣତ ହୋଇଯାଇଥିଲା । ସବୁ ସମୟରେ ନିଶାରେ ବୁଡ଼ି ରହିଥିବାରୁ ତା'ର କଥା ବଡ଼ ଅସ୍ପଷ୍ଟ ଥିଲା ।

ସେସବୁ ସତ୍ତ୍ୱେ ପୁବ୍ ଏକ ସ୍ନେହୀ ମଣିଷ ଥିଲା । ମୁଁ ନଦୀ କୂଳକୁ ଯିବା ଆସିବା ଭିତରେ ସେ ମୋ ପ୍ରତି ଆକୃଷ୍ଟ ହୋଇଥିଲା । ସେ ଦିନେ ମୋ ହାତ ଧରି ଟାଣି ଟାଣି ତା' ମଟର ବୋଟକୁ ନେଲା ଓ ମାଛଧରା ଦେଖିବାକୁ ଅନୁରୋଧ କଲା । ମୁଁ ଅପରାହ୍ନର ଅସ୍ତଗାମୀ ସୂର୍ଯ୍ୟର ଢ଼ଳଢ଼ଳ ପ୍ରତିବିମ୍ବ ନଦୀ ବକ୍ଷରେ ଓ ଅନ୍ୟାନ୍ୟ ପ୍ରାକୃତିକ ଦୃଶ୍ୟ ସବୁ ଦେଖିବାର ଲୋଭ ସମ୍ବରଣ କରି ନ ପାରି ତା' ସଙ୍ଗେ ଗଲି ।

ପୁବ୍‌ର ମୁଖରୁ ସବୁବେଳେ ମଦ୍ୟ ଗନ୍ଧ ବାହାରୁଥିବାରୁ ଓ ତା' କଥା ବୁଝି ହେଉନଥିବାରୁ ମୁଁ ସେ ଡ଼ଙ୍ଗାରେ ତା'ଠାରୁ ଦୂରେଇ ହୋଇ ଡ଼ଙ୍ଗାର ଅନ୍ୟ ମୁଣ୍ଡରେ ବସି ପ୍ରାକୃତିକ ଦୃଶ୍ୟ ଦେଖିଲି । ସେ ଦିନ ପରେ ବହୁଥର ମୁଁ ତା' ସଙ୍ଗେ ଯାଇ ମୋର ଭାରାକ୍ରାନ୍ତ ମନକୁ ଭୁଲାଇବା ପାଇଁ ନୌକା ଭ୍ରମଣ ବେଳେ ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ଅନେକ କବିତା ରଚନା କରିଅଛି ।

**ନବୀନ ଯକ୍ଷ :**

ହେ କବି ପ୍ରବର !
ଅର୍ଘ୍ୟ ଆଜି ଘେନି ଏହି ପ୍ରବାସୀ ପାନ୍ଥର
ବହୁ ଯୁଗ ତଳେ, କେଉଁ ଅନାଦୃତ କୋଣେ
ତୁମେ ତ କହିଲ
ବିରହୀ ଯକ୍ଷର ହୃଦ ଦ୍ୱାରେ
ନାଚିବାର ବେଦନାର ଶର
ତୁମ ଯକ୍ଷ ଡାକି ବାରିଦରେ ଘେନିବାକୁ

ତା'ର ଘନ ବୁକେ ପ୍ରିୟାପାଇଁ ବାର୍ତ୍ତା
ଦୂରଦେଶ ହିମାଳୟ ପାହାଡ଼ ଉହାଡ଼ୁ
ଏକାକୀ ସେ ବନେ,
ଯେ ବେଦନା ଉଠେ
ତାର ସେ ତରୁଣ ମନେ,
ହେ କବି ଅମର !
ସେହି ଯକ୍ଷ ଭୋଗୁଥିଲା ଅଭିଶାପ ଦାଉ
ଭାବୁଥିଲା ବସି
ଦେଖିବ କେବେ ସେ- ପୁଣି ତା' ହୃଦ ମାନସୀ
ନ ଥିଲା ତ ପେଟ ଚିନ୍ତା
ଫେରି ପ୍ରିୟା ପାଶେ ଭାବିବାକୁ ଆଉ
ଜ୍ଞାନ ଅଭିଳାଷ
ଉନ୍ନତ ଜୀବନ ଆଶା ଅତୀବ ଉତ୍କଟ
ଜ୍ଞାନାର୍ଜନେ ଆସି
ପ୍ରିୟ ଜନଠାରୁ ଦୂରେ
ସେ ରହେ ଭରଷି
ସେ ନବୀନ ଯକ୍ଷ
ଆପେ ଆପେ ବରିଅଛି
ନିର୍ବାସନ ଦୁଃଖ
କର୍ତ୍ତବ୍ୟ ମଝିରେ ମିଳିଲେ ସମୟ
କେବେ ଭାବିବାକୁ ବସି
କେତେ ବ୍ୟର୍ଥ ଚିନ୍ତା
ବ୍ୟୋମଯାନ ଚିଠିଦେହୁ
ଦେଶ ଦୁରବସ୍ଥା
ଗୋଟି ଗୋଟି ଆସି
ନିର୍ବାସିତ ମନ ତାର
ଆପେ ଯାଏ ଲସି
ହେ ଅମର କବେ !
ମରଦେହେ ଆସି, ଥରେ ଦେଖିଯାଅ ଏବେ
ତୁମ ଯକ୍ଷ ପାଇଁ
ସେ ପ୍ରେମ ପିପାସା ପ୍ରହେଳିକା ଭବେ ।

## ମୁନି ଜୁନିଅର ବା ପୁତ୍‌ :

କାହିଁକି କେଜାଣି ପୁତ୍‌ (ଜର୍ଜ ମୁନି ଜୁନିଅର) ମୋ ପ୍ରତି ଆକୃଷ୍ଟ ହୋଇଥିଲା । ତା’ ମନରେ କୌଣସି ଏକ ବଡ଼ ଧକ୍‌କା ବାଜିଥିବାରୁ ସେ ଏକ ମଦ୍ୟପରେ ପରିଣତ ହୋଇଥିବା ପରି ମୋତେ ଲାଗିଲା । ମୁଁ ତା’ ବିଷୟରେ ଅନୁସନ୍ଧାନ କରି ଜାଣିଲି ପୂର୍ବରୁ ସେ ଜଣେ ମେଳାପୀ ଓ ଉଦାର ହୃଦୟ ଲୋକ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ସ୍ତ୍ରୀ ଓ ତା’ର ଓ ନବଜାତ କନ୍ୟାକୁ ଛାଡ଼ି ଯୁଦ୍ଧରେ ଯୋଗଦେଇ ତାକୁ ୟୁରୋପର ରଣାଙ୍ଗନକୁ ଯିବାକୁ ପଡ଼ିଥିଲା । ଯୁଦ୍ଧ ପରେ କିଛିକାଳ ସେ ନିରୁଦ୍ଦିଷ୍ଟ ହୋଇ ତା’ର ପତ୍ତା ନ ମିଳିବାରୁ ତା’ର ସ୍ତ୍ରୀ ଅପେକ୍ଷା କରି କରି ଶେଷରେ ସେ ମୃତ ବୋଲି ଭାବି ଅନ୍ୟତ୍ର ବିବାହ କରିଥିଲେ । ସେ ଦେଶକୁ ଫେରିବା ପରେ ତାହା ଶୁଣି ବ୍ୟଥିତ ହୋଇଥିଲା । ତା’ର ପିତାମାତାଙ୍କ ପରାମର୍ଶରେ ଅନ୍ୟ ସ୍ଥାନରେ ଥରକୁ ଥର ବିବାହ କରିଥିଲା, କିନ୍ତୁ ତା’ର ମାନସିକ ଅବସ୍ଥା ଓ ମଦ୍ୟପାନ ଯୋଗୁଁ ସେସବୁ ସ୍ଥାୟୀ ହୋଇନଥିଲା ।

ଦିନେ ମୁଁ ହସପିଟାଲରୁ ଫେରିବା ସମୟରେ ଗୋଟିଏ ରୋଗୀ ଦେଖିଯିବା ପାଇଁ ମୋତେ ପୁତ୍‌ ଅନୁରୋଧ କଲା । ମୁଁ ବାଧ ହୋଇ ତା’ ସଙ୍ଗେ ଯାଇ ଏକ ଦରିଦ୍ର ବସ୍ତି ଅଞ୍ଚଳରେ ପହଞ୍ଚିଲି । ରୋଗୀଣୀଟି ଅପରିଷ୍କାର ଘରଟିର ଖଟିଆଟି ଉପରେ ପଡ଼ିରହିଥିଲା । ତା’ ଦେହରେ ଜ୍ୱର ଥିଲା ଓ ଗାଲ ଫୁଲିଥିଲା । ମୁଁ ତାକୁ ପରୀକ୍ଷା କରି ଔଷଧ ବତାଇ ଦେଲି । ସେ ସ୍ତ୍ରୀ ଲୋକର ଇତିହାସ ଶୁଣି ମୁଁ ଅବାକ ହେଲି । ପୁତ ଯୁଦ୍ଧରୁ ଫେରିବା ପରେ ସେହି ସ୍ତ୍ରୀ ଲୋକଟିକୁ ବିବାହ କରିଥିଲା, କିନ୍ତୁ ତାକୁ ଛାଡ଼ି ଦେବାରୁ ସେ ପୁତ୍‌ର ଅନ୍ୟ ଏକ ବନ୍ଧୁଙ୍କୁ ପୁନର୍ବିବାହ କରିଥିଲା । ସେ ଦମ୍ପତ୍ତି ଦୁଃଖେ କଷ୍ଟେ ଚଳି ଯାଉଥିଲେ । ଦୁଇଟି ଝିଆଙ୍କୁ ଛାଡ଼ି ସେ ଲୋକର ହଠାତ୍‌ ମୃତ୍ୟୁ ଘଟିବାରୁ ଘରର ସମସ୍ତ ପୋଷଣ ଭାର ସେ ସ୍ତ୍ରୀ ଲୋକ ଉପରେ ପଡ଼ିଲା । ସେ ମୂଲିଆ ଭଳି ଠିକା କାମ କରି ତା’ ପରିବାର ଚଳାଏ । ସେ ରୋଗରେ ପଡ଼ିଲେ ତା’ ପିଲାଏ ଉପାସରେ ରହନ୍ତି । ଆମେରିକାରେ ସମସ୍ତେ ସ୍ୱଚ୍ଛଳ ବୋଲି ମୋର ଆଗରୁ ଯେ ଧାରଣା ଥିଲା ତା’ ବଦଳିଗଲା । ସେ ସ୍ତ୍ରୀଲୋକ ମୋର ଫିଜ୍‌ କେତେ ବୋଲି ପଚାରିବାରେ ମୁଁ ଜଣେ ଛାତ୍ର, ମୋର କିଛି ଫିଜ ନାହିଁ ଓ ହସପିଟାଲରୁ କିଛି ଔଷଧ ସଂଗ୍ରହ କରି ପଠାଇବି ବୋଲି କହିଲି ।

ଆମେ ଫେରିଲାବେଳେ ମୋତେ ଖୁସି କରିବା ପାଇଁ କୃତଜ୍ଞତା ଜଣାଇବାକୁ ପୁତ୍‌ ତା’ ଗାଡ଼ିଟି ନେଇ ରେଷ୍ଟୁରାଣ୍ଟଟିର ପାଖରେ ରଖି ମୋତେ ନେଇ ସେ ଘର ଭିତରେ ପଶିଲା । ସେ ଅନ୍ଧାରୁଆ ଘରର ମଦ ଗନ୍ଧରେ ମୋ ନାକ ଫାଟି ଯାଉଥିଲା । ମିଞ୍ଜି ମିଞ୍ଜି ଆଲୁଅରେ ଯୋଡ଼ି ଯୋଡ଼ି ହୋଇ ମାତାଲ ପୁରୁଷ ଓ ସ୍ତ୍ରୀ ନାଚୁଥିଲେ । ପୁତ୍‌ର

ଇଙ୍ଗିତରେ ମୋତେ ଦେଖି ବେଞ୍ଚ ଉପରେ ବସିଥିବା ସ୍ତ୍ରୀ ଲୋକଟିଏ ଠିଆ ହୋଇ ପଡ଼ିଲା । ପୁବ୍ ମୋତେ କହିଲା ଏ ଭାରି ସୁନ୍ଦର, ତମେ ଏହାର ସଙ୍ଗେ ନାଚ, ସେତେବେଳକୁ ସେଠାରେ ବୁନ୍ଧି ହୋଇ ମଦ ଗନ୍ଧରେ ମୋତେ ବାନ୍ତି ଲାଗୁଥିଲା । ମୁଁ ନାଚ ଜାଣେ ନାହିଁ କହି ସେ ସ୍ତ୍ରୀ ଲୋକକୁ ଧନ୍ୟବାଦ ଦେଇ ଏକ ମୁହାଁ ହୋଇ ବାହାରକୁ ବାହାରି ଆସିଲି ।

ଆଉ ଦିନେ ପୁବ୍ ମାତାଲ ହୋଇ ଛିଣ୍ଡା ମଇଳା ଜାମା ପିନ୍ଧି ଆମ ହଷ୍ଟେଲ ଡ୍ରଇଁରୁମକୁ ଆସି ମୋତେ ଖୋଜି ବିଲିଆର୍ଡ଼ ଟେବୁଲ ନିକଟକୁ ଯାଇ ଅନ୍ୟମାନଙ୍କୁ ବିରକ୍ତ କରିବାରୁ ମୁଁ ନାହିଁ କହି ସେମାନେ ତାକୁ ବିଦାୟ କରିଦେଲେ । ମୁଁ ଆସିବାରୁ ମୋର ଜଣେ ଡାକ୍ତର ବନ୍ଧୁ ମୋତେ କହିଲେ ''ତୁମକୁ ଏ ଦେଶରେ ଆଉ ସାଙ୍ଗ ମିଳିଲେ ନାହିଁ, ଏପରି ଗୋଟାଏ ଅସଭ୍ୟ ମଦୁଆକୁ ତୁମେ ସଭ୍ୟ ଦେଶରେ କେଉଁଠୁ ପାଇଲ ।''

ପରେ ମୋର ପୁବ୍ ସଙ୍ଗେ ଦେଖା ହେବାରୁ ମୁଁ ତାକୁ ମୋ ହଷ୍ଟେଲକୁ ଯିବାକୁ ବାରଣ କରିବା ସଙ୍ଗେ ସଙ୍ଗେ ମଦ ନ ଛାଡ଼ିଲେ କୌଣସି ସମ୍ପର୍କ ରଖିବି ନାହିଁ ବୋଲି କହିଲି । ସେ କହିଲା, ''କିପରି ମୁଁ ମଦ ଛାଡ଼ିବି ? ସେ କ'ଣ ମୋତେ ଛାଡ଼ିବ ?'' ମୁଁ କହିଲି ମନ ଦୃଢ଼ କରି ତୁ ଏକାଥରକେ ପୂରା ଛାଡ଼ିଦେ, ତେବେ ଛାଡ଼ ହୋଇଯିବ । ସେହିଦିନଠାରୁ ମୁଁ ନଦୀ କୂଳକୁ ଯିବା ମଧ୍ୟ ଛାଡ଼ି ଦେଇଥିଲି । କେତେ ଦିନ ପରେ ଦିନେ ସ୍ନାୟୁରୋଗ ବିଭାଗରେ କାର୍ଯ୍ୟ କରୁଥିବା ମୋର ଜଣେ ବନ୍ଧୁ କହିଲେ, ତାଙ୍କ ୱାର୍ଡ଼ର ଗୋଟିଏ ରୋଗୀ 'ଡାକ୍ତର ଦାସ' 'ଡାକ୍ତର ଦାସ' ବୋଲି ପ୍ରଳାପ କରୁଛି । ବୋଧହୁଏ ସେ ତୁମକୁ ଖୋଜୁଛି ।

ମୁଁ ହସପିଟାଲରେ ସେ ୱାର୍ଡ଼କୁ ଯାଇ ପୁବ୍‌କୁ ଦେଖିଲି ଯେ ମଦ ଛାଡ଼ି 'ଡେଲିରିଅମଟ୍ରିମାନସ'ର ଲକ୍ଷଣ ଯୋଗୁ ସେ ସେଠାରେ ଚିକିତ୍ସିତ ହେଉଥିଲା । ମୋତେ ଦେଖି ତା'ର ଆଖି ଛଳଛଳ ହୋଇଗଲା । ମୋ ବନ୍ଧୁତ୍ୱକୁ ବଡ଼ କରି ସେ ମୋ କଥାରେ ମଦ ଛାଡ଼ି ଦେଇଥିଲା ।

**ମୋର ଚିନ୍ତା :**

ଏହିପରି ଚାଟାନୁଗାରେ ବର୍ଷଟି ମୋର ଆଗେଇ ଚାଲିଲା । କଲିକତା ଉଧାରେ ଶୁଝିବା ମୁଁ ମୋର ପ୍ରଥମ କର୍ତ୍ତବ୍ୟ ବୋଲି ମନେ କରୁଥିଲି । ସେଥିପାଇଁ କୌଣସି ବାଜେ ଖର୍ଚ୍ଚରେ ଅର୍ଥ ଖର୍ଚ୍ଚ ନ କରି ମୋ ଷ୍ଟାଇପେଣ୍ଡ ଟଙ୍କା ମୁଁ ଜମାଇ ରଖୁଥିଲି । ପ୍ରାୟ ୬୦୦ ଡଲାର ବା ୩୦୦୦ ଟଙ୍କା ଜମା ରଖିବା ପରେ ମୁଁ କଲିକତାର ଧାର ଦେଇଥିବା ଭଦ୍ରବ୍ୟକ୍ତିଙ୍କୁ ଜଣାଇଲି । ସେ ଉତ୍ତରରେ ଲେଖିଲେ, ''ସେ ଟଙ୍କା ତୁମେ ଏତେ ସହଜରେ ଫେରାଇ

ପାରିବ ନାହିଁ । ସେ ଟଙ୍କା ପୂଜ୍ୟ ପଣ୍ଡିତଜୀଙ୍କ ସେବାରେ ଲାଗିବା ପାଇଁ ଦିଆଯାଇଛି । ତୁମେ ଯଦି ଅର୍ଥ ଲୋଭରେ ଆମେରିକାରେ ରହି ନ ଯାଇ, ଦେଶକୁ ଫେରି ପଣ୍ଡିତ ନୀଳକଣ୍ଠ ଜୀବିତ ଥିବା ପର୍ଯ୍ୟନ୍ତ ତାଙ୍କର ଯତ୍ନ ନେଇ ସେବା କରିପାରିବ ତେବେ ଯାଇ ତୁମର ସେ ଋଣ ଶୁଝିବ । ଅର୍ଥ ଦେଇ ତାହା ଶୁଝାଯାଇ ପାରିବ ନାହିଁ । ମହାପୁରୁଷ ନୀଳକଣ୍ଠ ନିଜ ସ୍ୱାର୍ଥ ପାଇଁ କାହାଠାରୁ କିଛି ଗ୍ରହଣ କରୁନଥିଲେ । ମୁଁ ତାଙ୍କର ଜଣେ ଗୁଣମୁଗ୍ଧ ଭକ୍ତ ଭାବରେ ଥରେ ତୁମର ମାତାଙ୍କ ପାଇଁ ଏକ ହୀରାର ହାର ଉପହାର ଦେବାକୁ ଚାହିଁବାରୁ ସେ ଅଳ୍ପ ହସି କରି କହିଥିଲେ ହୀରା ହାର ଅପେକ୍ଷା ମୋ ସହଧର୍ମିଣୀଙ୍କ ବେକ ଓ ହାତର କନାଧଡ଼ିର ମହତ୍ୱ ବେଶୀ । ସେ କୌଣସି ଅଳଙ୍କାର ନ ପିନ୍ଧି ତୁମପରି ଧନୀ ଲୋକଙ୍କ ଠାରୁ ଯେଉଁ ସମ୍ମାନ ପାଉଛନ୍ତି, ସୁନା ହୀରା ହାର ପିନ୍ଧିଲେ ତାଙ୍କୁ ସେ ସମ୍ମାନ ମିଳିବ ନାହିଁ- ଏହା କହି ସେ ସେହି ହାର ଗ୍ରହଣକୁ ପ୍ରତ୍ୟାଖାନ କରିଥିଲେ ।'' ମହାନୁଭବ ନୀଳକଣ୍ଠଙ୍କ ଭକ୍ତ ସେହି ଭଦ୍ରବ୍ୟକ୍ତିଙ୍କ ଉତ୍ତରରେ ମୋ ଆଖି ଛଳଛଳ ହୋଇଗଲା ।

ମୁଁ ବର୍ଷକ ଟ୍ରେନିଂ ପରେ ଦେଶକୁ ଫେରି ଆସିବି ବୋଲି କହି ଆସିଥିଲି । କିନ୍ତୁ ବିନା ଡ଼ିଗ୍ରୀରେ ସେଠାରେ ଟ୍ରେନିଂ ସାର୍ଟିଫିକେଟ ଖଣ୍ଡି ଧରି ଗଲେ କୌଣସି ପ୍ରକାର ଲାଭ ଦେବାର ଆଶା ନଥିଲା । ମୁଁ ଯେଉଁ ଟ୍ରେନିଂ ନେଲି, ପରେ ସେ ହସ୍ପିଟାଲର ବିଭାଗୀୟ ମୁଖ୍ୟଙ୍କଠାରୁ ସାର୍ଟିଫିକେଟଟିଏ ମିଳୁଥିଲା । ତିନି ଚାରିବର୍ଷ ଟ୍ରେନିଂ ପରେ ସେଠା ଲୋକଙ୍କୁ ଆମେରିକାନ୍ ବୋର୍ଡ଼ ପରୀକ୍ଷା ଦେଇ ବିଶେଷଜ୍ଞ ହେବାର ସୁବିଧା ଥିଲା । ଆମେରିକୀୟ ନାଗରିକମାନଙ୍କ ଛଡ଼ା ଅନ୍ୟମାନଙ୍କୁ ସେହି ପରୀକ୍ଷା ଦେବାକୁ ଅନୁମତି ମିଳୁନଥିଲା, କାରଣ ସେମାନେ ସେଠାରେ ପ୍ରାକ୍‌ଟିସ୍ କରିବା ବାରଣ ଥିଲା ।

ମୁଁ ସେ ସମ୍ବନ୍ଧରେ ମୋ ବିଭାଗୀୟ ମୁଖ୍ୟଙ୍କୁ କହିବାରୁ ସେ ମୋ ଅସୁବିଧା ବୁଝିନପାରି କହିଲେ 'ତୁମେ ତ ଏଠାରୁ ଟ୍ରେନିଂ ସାର୍ଟିଫିକେଟ ପାଇବ, ଆଉ ଅଧିକା କ'ଣ ଦରକାର ? ଭାରତରେ ଚାଲୁ ରହିଥିବା ଇଂରେଜ ଶିକ୍ଷା ପ୍ରଣାଳୀ ଓ ଆମେରିକା ପ୍ରଣାଳୀ ଭିତରେ ଥିବା ଆଭିମୁଖ୍ୟରେ ଆକାଶ ପାତାଳ ପ୍ରଭେଦ ଥିବା କଥା ତାଙ୍କୁ ବୁଝାଇବା, 'କାଲା ଆଗରେ ମୃଦଙ୍ଗ ବୋବାଇବା' ପରି ମନେହେଲା । ସେ ମୋ କଥା କିଛି ନବୁଝି ମୋ ଉପରେ ବିରକ୍ତ ଭାବ ପ୍ରକାଶ କଲେ । ତାଙ୍କ ସାର୍ଟିଫିକେଟକୁ ମୁଁ ନ୍ୟୁନ ମନେ କରୁଛି ବୋଲି ବୋଧହୁଏ ସେ ଭାବିଲେ ।

ମୁଁ ସେଠାରେ ବର୍ଷକର ଟ୍ରେନିଂ ପରେ ଅନ୍ୟ ଏକ ବିଶ୍ୱବିଦ୍ୟାଳୟ ମେଡ଼ିକାଲ କଲେଜ ହସପିଟାଲରେ ଟ୍ରେନିଂର ସୁବିଧା ପାଇଲେ ତାହା ସହିତ ପୋଷ୍ଟ ଗ୍ରାଜୁଏଟ ଡ଼ିଗ୍ରୀ କୋର୍ସ

ନେଇ ପାଥୋଲଜିର ଅନ୍ୟ ଅଂଶ ମାନଙ୍କରେ ତାଲିମ ହାସଲ କରିବି ଭାବି ବହୁ ଅନୁଷ୍ଠାନ ସହିତ ଲେଖା ଲେଖି କଲି ।

ଏସବୁ କାରଣରୁ ବର୍ଷକ ଟ୍ରେନିଂ ପରେ ଭାରତକୁ ଫେରିବାର ସମ୍ଭାବନା ନ ଥିଲା । ମୁଁ ବରାବର ଘରର ସମସ୍ତଙ୍କଠାରୁ ଚିଠି ଓ ମଝିରେ ମଝିରେ ମୋ ପିଲାର ଛବି ପାଉଥିଲି । ସମସ୍ତେ ମୁଁ ଫେରିବା ପାଇଁ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଥିବା ପରି ଘର ଚିଠିମାନଙ୍କରୁ ଜଣା ପଡୁଥିଲା । ମୁଁ ମୋ ପିଲା କଥା ଭାବିଲା ବେଳେ ମୋ ମନରେ କିମ୍ଭୂତକିମାକାର ଭାବ ଜାଗ୍ରତ ହେଉଥିଲା । ମୁଁ ଆଦୌ ଦେଖିନଥିବା ସେ କ୍ରମ ବର୍ଦ୍ଧମାନ ପିଲାଟି ମୋତେ ନୂଆ ନୂଆ ଲାଗେ । ମୋର ଭାବନାଗୁଡ଼ିକୁ ଜବରଦସ୍ତି ଚାପି ରଖିବାକୁ ମୁଁ ଚେଷ୍ଟା କରେ । ମୁଁ ଭାବେ ମୁଁ ତ ନିଶ୍ଚୟ ଫେରିବି, କିନ୍ତୁ ଆଖି ଦୃଶିଆ ଡ଼ିଗ୍ରୀଟିଏ ଧରି ନଗଲେ ମୁଁ ଫେଲ ହୋଇ ଡ଼ିଗ୍ରୀ ନ ପାଇ ଆସିଛି ବୋଲି ଲୋକେ ସନ୍ଦେହ କରିବେ । ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବାରୁ ବିଶେଷଜ୍ଞ ଉପାଧି ପାଇଁ ବିଲାତ ଯାଇଥିବା କେତେକ ଓଡ଼ିଆ ଡ଼ାକ୍ତର ଡ଼ିଗ୍ରୀ ପାଇଁ ସମୟ ନ ପାଇ କେବଳ ଡ଼ିପ୍ଲୋମା ନେଇ ଆସିଥିବାରୁ ସେମାନେ ଡ଼ିଗ୍ରୀ ପରୀକ୍ଷାରେ ଫେଲ ହୋଇ ଆସିଛନ୍ତି ବୋଲି ପ୍ରଚାର ହୋଇଥିଲା ।

ଆମେରିକାର ସବୁ ମେଡ଼ିକାଲ କଲେଜ ହସ୍‌ପିଟାଲରେ ବୋର୍ଡ଼ ଟ୍ରେନିଂର ସୁବିଧା ଥିଲା, କିନ୍ତୁ ଡ଼ିଗ୍ରୀ କୋର୍ସର ସୁବିଧା ନ ଥିଲା । କେତେକ ମେଡ଼ିକାଲ କଲେଜରେ ବିଶ୍ୱବିଦ୍ୟାଳୟ ଶିକ୍ଷକ ପାଇଁ ତାଲିମ୍ ଦେବାକୁ ବର୍ଷେ ଦୁଇବର୍ଷରେ ଜଣେ ଲେଖାଏଁ କେତେକ ବିଭାଗରେ ଡ଼ିଗ୍ରୀ କୋର୍ସ ପାଇଁ ଛାତ୍ର ଗ୍ରହଣ କରିବାର ଅନୁମତି ଦେଉଥାଆନ୍ତି । ସେଠାରେ ପ୍ରଫେସରମାନେ ସାଧାରଣତଃ ସେପରି ଟ୍ରେନିଂ ପାଇଁ ତାଙ୍କ କଲେଜ ଛାତ୍ରମାନଙ୍କ ମଧ୍ୟରୁ ଜଣକୁ ବାଛି ଥାଆନ୍ତି ।

ମୁଁ ମେଡ଼ିକାଲ କଲେଜ ତାଲିକା ଦେଖି ବହୁ ସ୍ଥାନକୁ ଦରଖାସ୍ତ କରିଥିଲି । ଅଧିକାଂଶ ସ୍ଥାନରୁ ନାସ୍ତିବାଣୀ ଶୁଣିଲି । ଚିକାଗୋ ପରି କେତେକ ସ୍ଥାନରେ ସେପରି ଡ଼ିଗ୍ରୀ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା, କିନ୍ତୁ ତାହା ବଡ଼ ବ୍ୟୟସାପେକ୍ଷ ଥିଲା । ସେଥିରେ ନାମ ଲେଖାଇଲେ ହାତରୁ ପଇସା ଦେଇ ନିଜ ଖର୍ଚ୍ଚରେ ରହି ପଢ଼ିବାର ଥିବାରୁ ସେଥିରେ ନାମ ଲେଖାଇବା ମୋ ପକ୍ଷରେ ସମ୍ଭବପର ନ ଥିଲା । ସେପରି ଏକ ଅନୁଷ୍ଠାନରେ ମୋର କେତେ ମାସ ପରେ ଆମେରିକା ଆସିଥିବା ବନ୍ଧୁ ଡାକ୍ତର ରାଜକିଶୋର ପରିଡ଼ା ନାମ ଲେଖାଇଥିଲେ । କାରଣ ତାଙ୍କୁ ସେହି ଅନୁଷ୍ଠାନର ନିକଟରେ ଥିବା ଗୋଟିଏ ହସ୍‌ପିଟାଲରେ ଷ୍ଟାଇପେଣ୍ଡ ସହିତ ବୋର୍ଡ଼ ଟ୍ରେନିଂର ସୁବିଧା ମିଳିଥିଲା ।

ମୋର ବନ୍ଧୁ ଉଦୟ ନାଥ ଦାଶ ନିଉୟର୍କରୁ ଆସି ଆଲାବାମାର ବରମିଙ୍ଗହାମ୍ ମେଡ଼ିକାଲ କଲେଜ ହସପିଟାଲରେ ବୋର୍ଡ଼ ଟ୍ରେନିଂ ନେଉଥିଲେ । ସେଠାରେ

ପାଥୋଲଜିରେ ଆଗରୁ ପ୍ରତିବର୍ଷ ଡ଼ିଗ୍ରୀ ପାଇଁ ଜଣେ ଛାତ୍ର ନିଆ ହେଉଥିବାରୁ କର୍ତ୍ତୃପକ୍ଷଙ୍କୁ ଦେବାପାଇଁ ମୁଁ ଦରଖାସ୍ତଟିଏ ଉଦୟଙ୍କ ପାଖକୁ ପଠାଇଲି ।

ସେଠାରେ ପ୍ରଫେସର ଡକ୍ଟର ବେକର ମୋତେ ଲେଖିଲେ ବର୍ତ୍ତମାନ ମୁଁ ଏ ସ୍ଥାନ ଛାଡ଼ି ଆମେରିକାନ ବୋର୍ଡ଼ରେ ଯୋଗ ଦେବାପାଇଁ ଚାଲିଯାଉଛି । ମୁଁ ପାଥୋଲଜିରେ ପ୍ରତିବର୍ଷ ଜଣେ ଛାତ୍ର ଗ୍ରହଣ କରୁଥିଲି । ମୋ ସ୍ଥାନରେ ବିଶିଷ୍ଟ ପାଥୋଲଜିଷ୍ଟ ଡାକ୍ତର ଜେ.ଏଫ.ଏ. ମ୍ୟାକ ମାନସ ବିଭାଗୀୟ ମୁଖ୍ୟ ହୋଇ ଆସୁଛନ୍ତି । ମୁଁ ଆଶାକରେ ସେ ସେଠାରେ ଡ଼ିଗ୍ରୀ ତାଲିକାକୁ ଚାଲୁ ରଖିବେ । ତୁମେ ତାଙ୍କୁ ଲେଖିପାର । ମୁଁ ସେ ଚିଠିଟିର କପି ଦେଇ ପ୍ରଫେସର ମ୍ୟାକ ମାନସଙ୍କ ନିକଟକୁ ଲେଖିଲି ।

ମୋର ଚାଟାନୁଗାର ବର୍ଷକ ଟ୍ରେନିଂ ସରିଲା । ମୁଁ ଡାକ୍ତର ଆଡାମସଙ୍କ ଠାରୁ ସାର୍ଟିଫିକେଟ ଓ ସୁପାରିଶ ପତ୍ର ସଂଗ୍ରହ କରି ଅନ୍ୟଠାକୁ ଯିବାପାଇଁ ପ୍ରସ୍ତୁତ ହୋଇ ରହିଲି ।



# ସ୍ନାତକୋତ୍ତର ଡ଼ିଗ୍ରୀ ଓ ଘର ଲେଉଟାଣି

## ଆମେରିକାର ବର୍ମିଙ୍ଗହାମ୍ ମେଡ଼ିକାଲ ସେଣ୍ଟର :

ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣ ରାଜ୍ୟ ଟେନେସୀର ଆହୁରି ଦକ୍ଷିଣକୁ ଆଲାବାମା ପ୍ରଦେଶ ଅବସ୍ଥିତ । ଯୁକ୍ତରାଷ୍ଟ୍ରର ଦକ୍ଷିଣ ରାଜ୍ୟଗୁଡ଼ିକ କୃଷି ପ୍ରଧାନ ହୋଇଥିଲେ ହେଁ ଆଲାବାମା ରାଜଧାନୀ ବରମିଙ୍ଗହାମ ସହରଟି ଆମେରିକାର ଦ୍ୱିତୀୟ ଶିଳ୍ପ ବା ଲୌହ ନଗରୀ ରୂପେ ଗଢ଼ି ଉଠିଥିଲା । ସେ ସମୟରେ ସେ ନଗରୀର ଚାରିପଟେ ନଅଟି ବଡ଼ବଡ଼ ଲୁହା କାରଖାନାର ଉଚ୍ଚ ଚିମିନିମାନ ବାଷ୍ପ ଓ ଅଗ୍ନି ଉଦ୍‌ଗୀରଣ କରି ଚାଲିଥିଲେ । ଏବେ ପ୍ରଦୂଷଣ ଦୂର କରିବା ପାଇଁ ସେ କାରଖାନା ସବୁକୁ ଆଧୁନିକିକରଣ କରାଯାଇଛି । ଆଉ ଚିମିନି ଧୂଆଁ ଦେଖାଯାଉ ନାହିଁ ।

ସେହି ସମୃଦ୍ଧିଶାଳୀ ନଗରୀରେ ଏକ ବୃହତ ଚିକିତ୍ସାକେନ୍ଦ୍ର ରହିଥିଲା । ସେହି ଚିକିତ୍ସା ଶିକ୍ଷା ଅନୁଷ୍ଠାନଟି ଟସ୍କଲୁସା ନଗରୀରେ ରହିଥିବା ଆଲବାମା ବିଶ୍ୱବିଦ୍ୟାଳୟର ପରିସରଭୁକ୍ତ ଥିଲା । ଏବେ ସେହି କେନ୍ଦ୍ରଟି ଏକ ସ୍ୱତନ୍ତ୍ର ଚିକିତ୍ସା ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଛି ଓ ତାହା ଏକ ଶ୍ରେଷ୍ଠ ହୃଦ୍‌ରୋଗ ଓ ବହୁମୂତ୍ର ଗବେଷଣା କେନ୍ଦ୍ର ରୂପେ ପୃଥିବୀରେ ସୁନାମ ଅର୍ଜନ କରିଛି ।

ମୁଁ ସେଠାରେ ଯୋଗ ଦେବା ବେଳକୁ ସେଠାରେ ଚିକିତ୍ସା ବିଦ୍ୟାରେ ବହୁ ସୁନାମଧନ୍ୟ ଗବେଷକ ଶିକ୍ଷକ ରହିଥିଲେ । ସେହି ବର୍ଷର ଆମେରିକାର ସର୍ବଶ୍ରେଷ୍ଠ ଚିକିତ୍ସକ ରୂପେ ଆମେରିକା ସରକାରଙ୍କ ଦ୍ୱାରା ସମ୍ମାନିତ ହୋଇଥିବା ପ୍ରଫେସର ଟି. ହାରିସନ (ଯାହାଙ୍କ ଲିଖିତ ଭେଷଜ ପୁସ୍ତକ ଏବେ ବି ବହୁଦେଶରେ ପାଠ୍ୟ ପୁସ୍ତକ ଭାବରେ ଚଳେ) ସେଠାର ଭେଷଜ ବିଭାଗର ମୁଖ୍ୟ ଅଧାପକ ଥିଲେ । ବହୁମୂତ୍ର ରୋଗରେ ରକ୍ତ ଶର୍କରା ପରୀକ୍ଷାର ଉଦ୍ଭାବକ ଡ଼କ୍ଟର ନ୍ୟୁ ସେଠାର ବାଇଓକେମେଷ୍ଟ୍ରୀର ମୁଖ୍ୟ ଅଧାପକ ଥିଲେ । ପାଥୋଲଜି ମୁଖ୍ୟ ଡ଼ଃ ବେକର କେନ୍ଦ୍ର ପରୀକ୍ଷା ସଂସ୍ଥାରେ ଯୋଗ ଦେଇଥିବାରୁ ସ୍ୱନାମଧନ୍ୟ ଡା.ମ୍ୟାକମାନସ ପାଥୋଲଜି ବିଭାଗର ମୁଖ୍ୟ ଭାବରେ ନିଯୁକ୍ତି ପାଇ ସାରିଥିଲେ ।

ସେ ସେଠାରେ ଯୋଗ ଦେବା ପୂର୍ବରୁ ମୋ ଚିଠିଟି ପାଇ ତା'ର ଉତ୍ତରରେ ମୁଁ ବରମିଙ୍ଗହାମ୍ ଆସି ସେ ଯୋଗଦେବାର ପରଦିନ ତାଙ୍କୁ ଭେଟିବାକୁ ନିର୍ଦ୍ଦେଶ ଦେଇଥିଲେ । ନିର୍ଦ୍ଦିଷ୍ଟ ଦିନ ମୁଁ ମୋର ସମସ୍ତ ସାର୍ଟିଫିକେଟ, ସୁପାରିଶ ପତ୍ର ଓ ଜିନିଷପତ୍ର ଧରି ତାଙ୍କ ନିକଟରେ ପହଞ୍ଚିଗଲି ।

ମ୍ୟାକମାନସ ମୋ ଇଣ୍ଟରଭିଉ ନେବାପରେ, ତିନିମାସ ପରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହେଉଥିବାରୁ ଜୁନ୍‌ରେ ଆସି ସେଥିରେ ଯୋଗଦେବା ପାଇଁ ନିର୍ଦ୍ଦେଶ ଦେଲେ । ତାହା ଶୁଣି ମୁଁ ହତଭମ୍ବ ହୋଇଗଲି । ମୁଁ ମ୍ୟାକମାନସଙ୍କୁ କହିଲି ମୁଁ ମୋର ବର୍ଷକ ତାଲିମ୍ ପୂର୍ଣ୍ଣକରି ପୂର୍ବସ୍ଥାନ ଛାଡ଼ି ଆସିବାରୁ ମାତ୍ର ତିନିମାସ ପାଇଁ ଆଉ କେଉଁଠି ରହିବାର ସ୍ଥାନ ମିଳିବ ନାହିଁ । ତେଣୁ ଆପଣ ମୋତେ ଦୟାକରି ଏଠାରେ ସ୍ଥାନଦେଲେ ମୋର ସୁବିଧା ହେବ ଓ ଏଠାରେ ରହି ଆପଣଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ କଲେ ଆପଣ ମୋର ଯୋଗ୍ୟତା ଜାଣିପାରିବା ସଙ୍ଗେ ସଙ୍ଗେ ମୁଁ ଆଗୁଆ ପଢ଼ାପଢ଼ି କରିପାରିବି । ତେଣୁ ସେହି ମେଡ଼ିକାଲ କଲେଜର ଜେଫରସନ ହସ୍‌ପିଟାଲରେ ମୋତେ ଦ୍ୱିତୀୟ ବାର୍ଷିକ ପାଥୋଲୋଜି ତାଲିମ ପାଇଁ ଏକ ଭତ୍ତାଯୁକ୍ତ ସ୍ଥାନ କରାଇଦେବା ପାଇଁ ଅନୁରୋଧ କଲି । ମ୍ୟାକମାନସ କେବଳ ଅତି ବିଦ୍ୱାନ ନୁହନ୍ତି ସେ ଜଣେ ଅତି ହୃଦୟବାନ ବ୍ୟକ୍ତି । ମୋ ଅବସ୍ଥା ଜାଣି ସେ ଦୟାପରବଶ ହୋଇ ହସ୍‌ପିଟାଲ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ନିଜେ ଅନୁରୋଧ କରି ମୋତେ ସେଠାରେ ଦ୍ୱିତୀୟ ବାର୍ଷିକ ତାଲିମ ପାଇଁ ନିଯୁକ୍ତ କରାଇଲେ । ମୋତେ ରହିବା ଓ ଖାଇବା ସଙ୍ଗେ ସଙ୍ଗେ ପୂର୍ବ ସ୍ଥାନଠାରୁ କମ୍ ହେଲେ ମଧ କିଛି ଭତ୍ତା ମିଳିଲା ।

## ସେଠାରେ କାର୍ଯ୍ୟାରମ୍ଭ :

ସେହି ୧୯ ତାଲା ବିଶିଷ୍ଟ ହସ୍‌ପିଟାଲ କୋଠାଟି ଏକ ସ୍ୱୟଂ ସମ୍ପୂର୍ଣ୍ଣ ଅନୁଷ୍ଠାନ । ତା'ର ପ୍ରଥମ ତାଲାରେ ହସ୍‌ପିଟାଲର କାର୍ଯ୍ୟାଳୟ ଓ ନିତ୍ୟ ଆବଶ୍ୟକୀୟ ପଦାର୍ଥମାନଙ୍କର ଦୋକାନ ଓ ଟେଲିଫୋନ ଏକ୍ସଚେଞ୍ଜ ପ୍ରଭୃତି ରହିଥିଲା । ଦ୍ୱିତୀୟ ତାଲାରେ ରୋଷେଇ ଘର ଓ ଅନ୍ୟ ବଡ଼ ବଡ଼ ଡ଼ାଇନିଙ୍ଗ ହଲ ସବୁ ରହିଥିଲା । ଚତୁର୍ଥ ତାଲାରେ ପାଥୋଲଜି ବିଭାଗ ରହିଥିଲା । ଅଠର ତାଲାରେ ନର୍ସ ଓ ଲେଡ଼ି ଡ଼ାକ୍ତର ଏବଂ ଛାତ୍ରୀ ମାନଙ୍କ ରହିବାର ବ୍ୟବସ୍ଥା ରହିଥିଲା । ୧୯ ତାଲାରେ ସ୍ନାତକୋତ୍ତର ଛାତ୍ରମାନଙ୍କ ପାଇଁ କୋଠରୀମାନ ରହିଥିଲା । ଅନ୍ୟ ତାଲା ମାନଙ୍କରେ ହସ୍‌ପିଟାଲର ବିଭିନ୍ନ ଓ୍ୱାର୍ଡ଼ର ରୋଗ ଶଯ୍ୟା, ଅପରେସନ ଥିଏଟର, ଗବେଷଣା କେନ୍ଦ୍ର ସବୁ ରହିଥିଲା । ସେହି କୋଠାର ସାମନା ସଡ଼କ ଆରପଟେ କଲେଜ କୋଠାଟି ରହିଥିଲା । ସେଥିରେ ନନ୍ କ୍ଲିନିକାଲ ଏବଂ କଲେଜ ଡ଼ିନ ବା ସର୍ବୋଚ୍ଚ ଅଧକ୍ଷଙ୍କ ଅଫିସ ରହିଥିଲା । ସେ କୋଠାକୁ ଏକ ଭୂମିତଳ ସୁଡ଼ଙ୍ଗ ହସପିଟାଲ କୋଠା ସହିତ ସଂଯୁକ୍ତ କରିଥିଲା ।

ସେହି ହସପିଟାଲର ପାଥୋଲଜି ରେସିଡ଼େଣ୍ଟ ତାଲିମ ପଦ୍ଧତିରେ ଶବ ବ୍ୟବଚ୍ଛେଦ ଓ ପେଶୀ ବ୍ୟବଚ୍ଛେଦ ପରେ ରୋଗ ନିର୍ଣ୍ଣୟ ପାଇଁ, କାଚ ସ୍ଲାଇଡ଼ ପ୍ରସ୍ତୁତି ଓ ପରୀକ୍ଷା ଏବଂ ମେଡ଼ିକାଲ କଲେଜ ସ୍ନାତକ ଛାତ୍ରମାନଙ୍କୁ ଶିକ୍ଷାଦାନ କରିବା ଅନ୍ତର୍ଭୁକ୍ତ ଥିଲା । ମୁଁ

ସେସବୁ କାର୍ଯ୍ୟ କରିବା । ସଙ୍ଗେ ସଙ୍ଗେ ପ୍ରଫେସର ମ୍ୟାକ୍‌ମାନସ ମୋତେ କେତେକ ଗବେଷଣାରେ ଯୋଗ ଦେବାର ମଧ ସୁଯୋଗ ଦେଇଥିଲେ । ଡ଼ାକ୍ତର ବିଙ୍ଗ ନାମକ ଜଣେ ଜର୍ମାନ ଡ଼ାକ୍ତର ହୃତପିଣ୍ଡ ଓ ରକ୍ତ ସଞ୍ଚାଳନ ଉପରେ ଗବେଷଣା କରୁଥିଲେ । ସେ କୁକୁରର ଶିରା ବା ରକ୍ତନଳୀ ଭିତରକୁ ତୈଳ ପଦାର୍ଥ ଇଞ୍ଜେକ୍‌ସନ ଦେଇ ସେହି ତୈଳବିନ୍ଦୁର ଶରୀରର ବିଭିନ୍ନ ଯନ୍ତ୍ର ଉପରେ ପ୍ରଭାବ ନିରୂପଣ କରିବା ପାଇଁ ସେ ତେଲ ବିନ୍ଦୁର ଗତିପଥ ଉପରେ ଗବେଷଣା କରୁଥିଲେ । ସେଥିପାଇଁ ସେହି କୁକୁରର ଶବ ବ୍ୟବଚ୍ଛେଦ କରି ମାଂସପେଶୀ ଓ ରକ୍ତନଳୀର ସୂକ୍ଷ୍ମ ଅଂଶ ସବୁକୁ ସ୍ଲାଇଡ଼ କରି ତୈଳ ପରୀକ୍ଷା କରାଯାଉଥିବା ସ୍ୱତନ୍ତ୍ର ରଙ୍ଗ ବା ଷ୍ଟେନ ଦେଇ ତୈଳର ଗତିପଥ ଅନୁଧ୍ୟାନ କରିବା ଭାର ମୋତେ ଅର୍ପଣ କରାଯାଇଥିଲା ।

ତିନିମାସ ପରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଛାତ୍ର ଭାବେ ଯୋଗ ଦେବା ପରେ ମୋର କାର୍ଯ୍ୟର ପରିସର ଆହୁରି ବଢ଼ିଯାଇଥିଲା । ପାଥୋଲଜିରେ ସ୍ନାତକୋତ୍ତର ଡ଼ିଗ୍ରୀ ପାଇଁ ମୋତେ ପାଥୋଲଜି ଓ ବ୍ୟାକ୍‌ଟ୍ରିଓଲଜିକୁ ପ୍ରଧାନ ବିଷୟ ଓ କ୍ଲିନିକାଲ ପାଥୋଲଜିକୁ ସହକାରୀ ବିଷୟ ଭାବେ ନେବାକୁ ପଡ଼ିଲା । ସେଥିପାଇଁ ସେ ସବୁ ବିଷୟରେ ନିର୍ଦ୍ଦିଷ୍ଟ କ୍ଲାସରେ ଯୋଗ ଦେଇ ପଢ଼ାପଢ଼ି କରି ସାପ୍ତାହିକ ପରୀକ୍ଷା ସବୁ ଦେବାକୁ ପଡୁଥିଲା । ତା' ସଙ୍ଗେ ସଙ୍ଗେ ଡ଼ିଗ୍ରୀ ପାଠ୍ୟର ପାଠ୍ୟକ୍ରମରେ ଦୁଇ ବର୍ଷ ରେସିଡ଼େନସି ତାଲିମ ସହିତ ଏକ ଗବେଷଣାମୂଳକ ସନ୍ଦର୍ଭ ମଧ ପ୍ରୟୋଜନ ଥିଲା ।

ମୋର ସେହି ଗବେଷଣାର ବିଷୟବସ୍ତୁ ଥିଲା ଶରୀରର ବିଭିନ୍ନ ଫୁଲା ରୋଗରେ ମସ୍ତିଷ୍କ ଓ ତା ସହିତ ସଂପୃକ୍ତ ଥିବା ଅନ୍ତଃସ୍ରାବୀ ଗ୍ରନ୍ଥି ପିଟ୍ୟୁଟାରୀ-ଗ୍ରନ୍ଥି ରସର ପ୍ରସା ନିବାରକ ଗୁଣ ସମ୍ବନ୍ଧରେ ନୂତନ ରାସାୟନିକ ଷ୍ଟେନ ପଦ୍ଧତିରେ ଅନୁଧ୍ୟାନ ଓ ଗବେଷଣା କରିବା । ସେଥିପାଇଁ ଶରୀର ଫୁଲିଥିବା ଓ ପରିସ୍ରା ସ୍ୱଚ୍ଛତା ଜନିତ ରୋଗରେ ମୃତ୍ୟୁ ହୋଇଥିବା ପ୍ରାୟ ହଜାରେ ରୋଗୀଙ୍କର ଶରୀରର ସୁରକ୍ଷିତ ଅଂଶ ଓ ସେମାନଙ୍କ ରୋଗ ଓ ଚିକିତ୍ସାର ରେକର୍ଡ଼ ସବୁ ଅନୁଧ୍ୟାନ କରିବାକୁ ପଡ଼ିଲା । ମୃତ ରୋଗୀଙ୍କ ଶରୀରରୁ ସୁରକ୍ଷିତ ହୋଇଥିବା ମସ୍ତିଷ୍କ, ହୃତପିଣ୍ଡ, ଯକୃତ, ବୃକକ୍ ପ୍ରଭୃତିର ପେଶୀ ନେଇ ସ୍ଲାଇଡ଼ କରି ସେହି ଅନ୍ତଃସ୍ରାବୀ ରସର ପରିମାଣ ନିରୂପଣ ପାଇଁ ଗୋମରୀ ନାମକ ସ୍ୱତନ୍ତ୍ର ଷ୍ଟେନ ବା ରଙ୍ଗ ଦେଇ ପରୀକ୍ଷା କରିବାକୁ ମୋତେ ପଡ଼ିଥିଲା ।

ଆମ ହସ୍‌ପିଟାଲଟି ଏକ ବଡ଼ ହସ୍‌ପିଟାଲ ଥିବାରୁ ସେଠାରେ ସାଂଘାତିକ ରୋଗୀଙ୍କ ମୃତ୍ୟୁ ସଂଖ୍ୟା ମଧ କମ ନ ଥିଲା । ହସ୍‌ପିଟାଲର ସେହି ଶବମାନଙ୍କୁ ବ୍ୟବଚ୍ଛେଦ ଦ୍ୱାରା ମୃତ୍ୟୁବରଣର କାରଣ ନିର୍ଣ୍ଣୟ ପାଇଁ ଆମ ବିଭାଗକୁ ପଠାଯାଉଥିଲା । ସେ ଶବର ପରିମାଣ ଏତେ ଅଧିକ ଥିଲା ଯେ ଆମପରି ରେସିଡ଼େଣ୍ଟମାନଙ୍କୁ ଦିନେ ଦିନେ ପାଞ୍ଚ ସାତଟା ଶବ ମଧ ବ୍ୟବଚ୍ଛେଦ କରିବାକୁ ପଡୁଥିଲା । ଆମ ରେସିଡ଼େଣ୍ଟଙ୍କ ଭିତରେ ମୁଁ

କେବଳ ସ୍ନାତକୋତ୍ତର ଡ଼ିଗ୍ରୀର ଛାତ୍ର ଥିବାରୁ ମୁଁ ପ୍ରତିଦିନ ଶବ ବ୍ୟବଚ୍ଛେଦ କାର୍ଯ୍ୟ ସେହି ଦିନ ସମାପ୍ତ କରି ନ ପାରି ସମୟ ପାଇଲେ କରିବା ପାଇଁ ରଖି ଦେଉଥିଲି ଓ ସେଥିପାଇଁ କର୍ତ୍ତୃପକ୍ଷଙ୍କଠାରୁ ସୁବିଧା ପାଉଥିଲି । ସେଥିରେ ଈର୍ଷାପରାୟଣ ହୋଇ ଡ଼ିଗ୍ରୀ ସୁବିଧା ପାଇ ନ ଥିବା ଛାତ୍ରମାନେ ବିଭାଗୀୟ ମୁଖ୍ୟଙ୍କ ନିକଟରେ ମୋ କାର୍ଯ୍ୟ ବିରୁଦ୍ଧରେ ଫେରାଦ ହୋଇଥିଲେ । ସ୍ନାତକୋତ୍ତର ଡ଼ିଗ୍ରୀ ପାଇଁ ଜଣେ ମାତ୍ର ଛାତ୍ର ନିଆଯାଉଥିବାରୁ ମୁଁ ଏକମାତ୍ର ଡ଼ିଗ୍ରୀ ଛାତ୍ର ଥିଲି ।

ଆମେରିକା ବୈଜ୍ଞାନିକମାନେ ତାଙ୍କ ନିକଟରେ ତାଲିମ ନେଉଥିବା ଛାତ୍ରମାନଙ୍କଠାରୁ ଭଲ ଭାବରେ କାମ ଆଦାୟ କରି ପାରନ୍ତି । ତେଣୁ କିଏ କ'ଣ କରୁଛି ତା'ଉପରେ ଦୃଷ୍ଟି ରଖିଥାଆନ୍ତି । ମୋ ପ୍ରଫେସର ମ୍ୟାକମାନସ ଜଣେ ବିଶିଷ୍ଟ ଗବେଷକ ଭାବରେ ମୋ କାର୍ଯ୍ୟ ବିଷୟରେ ମୋ ସାଥୀଙ୍କଠାରୁ ଅଭିଯୋଗ ପାଇ ଦିନେ ରାତି ଦୁଇଟା ବେଳେ ମୋ କାର୍ଯ୍ୟସ୍ଥଳୀରେ ପହଞ୍ଚିଗଲେ । ମୋତେ କାର୍ଯ୍ୟବ୍ୟସ୍ତ ଦେଖି ମୋ କାନ୍ଧରେ ହାତ ମାରି କହିଲେ, ଏତେ କଠିନ ପରିଶ୍ରମ କରିବା ଉଚିତ୍ ନୁହେଁ, ବହୁତ ରାତି ହେଲାଣି, ତୁମେ ନ ଶୋଇ ଶରୀରକୁ କଷ୍ଟ ଦେବା ଉଚିତ ନୁହେଁ । ମୁଁ ହସିକରି ଉତ୍ତର ଦେଲି ଏ କୋଠାରେ କ'ଣ ଦିନରାତି ହୁଏ ? ସୂର୍ଯ୍ୟ ଦେଖିବାକୁ ମିଳନ୍ତିକି ? ମୋତେ ଯେତେବେଳେ ନିଦଲାଗେ ମୁଁ ତାକୁ ରାତି ଭାବି କିଛି ସମୟ ଶୋଇପଡ଼େ । ବାସ୍ତବିକ୍ ସେ କୋଠା ସର୍ବଦା ବିଜୁଳି ଆଲୋକରେ ଆଲୋକିତ ହୋଇଥାଏ । କାର୍ଯ୍ୟବ୍ୟସ୍ତ ରହି ଦିନ ଦିନ ଧରି ବାହାରକୁ ଯାଇ ନ ପାରି ସୂର୍ଯ୍ୟାଲୋକ ଦେଖିବାର ସୁବିଧା ପାଇନଥାଏ ।

ମ୍ୟାକ୍‌ମାନସ, ମୋ କାର୍ଯ୍ୟନିଷ୍ଠା ଯୋଗୁଁ ମୋ ଉପରେ ସନ୍ତୁଷ୍ଟ ଥିବାରୁ ମୋତେ ନାନା ଭାବରେ ସାହାଯ୍ୟ କରୁଥିଲେ । ମୁଁ ସ୍ତ୍ରୀ ପିଲାଙ୍କୁ ଦେଶରେ ଛାଡ଼ି ଆସିଛି, ଅଭାବୀ ଲୋକ ବୋଲି ଧାରଣା ଥିବାରୁ ମୋର ମୁହଁ ଶୁଖି ଥିବାର ଦେଖିଲେ, 'କ'ଣ ଘରୁ ଚିଠି ଆସିଛି ?' କହି ତାଙ୍କ ହାତ ପାଣ୍ଠିରୁ ମୋ ଗବେଷଣା ପାଇଁ ମୋ ନିକଟକୁ ଚେକ୍ ପଠାଇ ଦେଉଥିଲେ ।

ସେଠାର ବିଶ୍ୱବିଦ୍ୟାଳୟମାନଙ୍କରେ ସନ୍ଦର୍ଭ ଗବେଷଣା ପାଇଁ ଇଂରେଜି ଛଡ଼ା ଆଉ ଦୁଇଟି ଇଉରୋପୀୟ ଭାଷାରେ ପରୀକ୍ଷା ଦେଇ ସାର୍ଟିଫିକେଟ ହାସଲ କରିବା ପ୍ରୟୋଜନ ଥିଲା । ସେଥିରୁ ଅବ୍ୟାହତି ମିଳିବା ପାଇଁ ସେ ମୋ ଅନୁରୋଧରେ ଇଉରୋପୀୟାନ ଭାଷା ସ୍ଥାନରେ ଇଣ୍ଡୋ-ଇରୋପୀୟାନ ଭାଷାକୁ ସ୍ୱୀକୃତି ଦିଆଇ ବିଶ୍ୱବିଦ୍ୟାଳୟ ଦ୍ୱାରା ମୋର ଓଡ଼ିଆ ଓ ସଂସ୍କୃତ ଭାଷାକୁ ଗୃହୀତ କରାଇ ନେଇଥିଲେ ।

ସେଠାରେ ଛାତ୍ରମାନଙ୍କୁ ଶିକ୍ଷା ଦେବାପାଇଁ, ସେଠାରେ ବାହାରର ବିଶେଷଜ୍ଞମାନେ ମଧ ଯୋଗ ଦିଅନ୍ତି । ରେସିଡ଼େଣ୍ଟ ଓ ଅନ୍ୟ ଡ଼ାକ୍ତରମାନେ ଛାତ୍ରମାନଙ୍କୁ ଦଳ ଦଳ କରି ବସାଇ ସ୍ପେସିମେନ ଓ ସ୍ଲାଇଡ଼ ପରୀକ୍ଷା କରିବାକୁ ଦେଇ ରୋଗ ବିଷୟରେ ଆଲୋଚନା

କରନ୍ତି । ବେଳେ ବେଳେ ଅନ୍ୟ ଦେଶର ବଡ଼ ବିଶେଷଜ୍ଞମାନେ ଭିଜିଟିଙ୍ଗ୍ ପ୍ରଫେସର ଭାବେ ଯୋଗ ଦେଇ ଶିକ୍ଷା ଓ ଗବେଷଣାରେ ଭାଗ ନିଅନ୍ତି । କାନାଡ଼ାର ବିଶ୍ୱବିଖ୍ୟାତ ପାଥୋଲଜି ପ୍ରଫେସର ଉଇଲିଅମ ବଏଡ୍ (ଯାହାଙ୍କ ପାଥୋଲଜି ପୁସ୍ତକ ପୃଥିବୀ ସାରା ପାଠ୍ୟ ପୁସ୍ତକର ସ୍ଥାନ ପାଇଥିଲା) ଏବଂ ବିଲାତର ବିଖ୍ୟାତ ସାଇଟୋ ପାଥୋଲଜିଷ୍ଟ ପିଅରର୍ସ, ଆମ ବିଭାଗରେ ଭିଜିଟିଙ୍ଗ ପ୍ରଫେସର ଭାବେ ଯୋଗ ଦେଇଥିଲେ ।

ସାଧାରଣତଃ ରେସିଡ଼େଣ୍ଟମାନେ କଲେଜ ଛାତ୍ରଙ୍କ ପ୍ରାକ୍ଟିକାଲ କ୍ଲାସରେ ଯୋଗ ଦେଉଥିଲେ, କିନ୍ତୁ ମୁଁ ପାଥୋଲଜି ଶିକ୍ଷକ ହେବା ପାଇଁ ତାଲିମ ପାଉଥିବାରୁ ପ୍ରଫେସର ମ୍ୟାକମାନସ ମୋତେ ପିଲାଙ୍କୁ କ୍ଲାସରେ ପାଥୋଲଜି ପଢ଼ାଇବା ପାଇଁ ସୁଯୋଗ ଦେଉଥିଲେ । ସେପରି କ୍ଲାସରେ ବାହାରର ପାଥୋଲଜିଷ୍ଟମାନେ ମଧ ଯୋଗ ଦେଉଥିଲେ । ମୋର ଆମେରିକାନ 'ଉଚ୍ଚାରଣରେ' ଦଖଲ ନ ଥିବାରୁ ମୁଁ ବଡ଼ ସନ୍ତର୍ପଣରେ ସେ କ୍ଲାସର ସମ୍ମୁଖୀନ ହେଉଥିଲି ।

ନୂତନ ରୋଗର ସନ୍ଧାନ :

ଶବ ବ୍ୟବଚ୍ଛେଦ ଓ ପେଶୀ ପରୀକ୍ଷା ପରେ ଆମ ବିଭାଗରେ ରୋଗ ନିର୍ଣ୍ଣୟ ସମ୍ବନ୍ଧରେ ବିଷଦ ଆଲୋଚନା ସଭା ସବୁ ହେବା ସଙ୍ଗେ ସଙ୍ଗେ ସପ୍ତାହରେ ଥରେ ଭେଷଜ, ଶୈଲ୍ୟ, ଶିଶୁରୋଗ ପ୍ରଭୃତି ଅନ୍ୟ ବିଭାଗର ଅଧାପକ ଗବେଷକ ଓ ସ୍ନାତକୋତ୍ତର ଛାତ୍ରମାନଙ୍କୁ ନେଇ ଏକ ମିଶ୍ରିତ ଆଲୋଚନା ସଭା ବା କ୍ଲିନିକୋ ପାଥୋଲଜିକାଲ କନଫରେନ୍ସ ଅନୁଷ୍ଠିତ ହେଉଥିଲା ।

ଭେଷଜ ବିଭାଗ ଗୋଟିଏ ରୋଗୀକୁ ପ୍ରଫେସର ହାରିସନ ଯକ୍ଷ୍ମାର ଲକ୍ଷଣ ସବୁ ଥିବାରୁ ଯକ୍ଷ୍ମା ଔଷଧ ଦେଲେ ମଧ ଚିକିତ୍ସାରେ ଅକୃତକାର୍ଯ୍ୟ ହୋଇଥିଲେ । ସେ ରୋଗୀର ଫୁସ୍‌ଫୁସ୍‌ର ପେଶୀ, ରକ୍ତ, ମଳମୂତ୍ର ପ୍ରଭୃତିରୁ ଯକ୍ଷ୍ମାର ଜୀବାଣୁ ନ ବାହାରିବାରୁ ତାହା ଏକ ନୂତନ ଧରଣର ଔଷଧ ମାନୁଆ- ଯକ୍ଷ୍ମାରୋଗ ବୋଲି ଧରି ନିଆଯାଇଥିଲା ।

ସେ ରୋଗୀର ମୃତ୍ୟୁ ପରେ ମୁଁ ତା'ର ଶବ ବ୍ୟବଚ୍ଛେଦ କରି ଯକ୍ଷ୍ମା ରୋଗରେ ଲସିକାଗ୍ରନ୍ଥି ପ୍ରଭୃତିରେ ଯେପରି କ୍ଷୟ ଓ ପରିବର୍ତ୍ତନ ହୋଇଥାଏ ତାହା ଦେଖିଲି, କିନ୍ତୁ ଶରୀରର କୌଣସି ଅଂଶରେ ଯକ୍ଷ୍ମା ଜୀବାଣୁର ସନ୍ଧାନ ପାଇଲି ନାହିଁ । ଗତାନୁଗତିକ ପଦ୍ଧତିରେ ସ୍ଲାଇଡ୍ ସବୁ ଷ୍ଟେନ ହୁଏ, ସେଥିରେ ଯକ୍ଷ୍ମା ଜୀବାଣୁର ସନ୍ଧାନ ମିଳିବା କଥା । କିନ୍ତୁ ସେଥିରେ ନ ମିଳିବାରୁ ନୂଆ ନୂଆ ଷ୍ଟେନରେ ତାହା ଷ୍ଟେନ କରିବାକୁ ଭାବିଲି । ମ୍ୟାକମାନସ ଜଣେ ବିଶ୍ୱବିଖ୍ୟାତ ରାସାୟନିକ ପେଶୀ ପରୀକ୍ଷା ବିଶେଷଜ୍ଞ । ଶରୀର ଶ୍ୱେତସାର ପଲିସାକରାଇଡ୍‌କୁ ଚିହ୍ନଟ କରିବା ପାଇଁ ସେ ଯେଉଁ ପି:ଏ:ଏସ: ଷ୍ଟେନ ଉଦ୍ଭାବନ କରିଥିଲେ ତାହାକୁ ମ୍ୟାକମାନସ ଷ୍ଟେନ କୁହାଯାଏ । ଜୀବାଣୁମାନଙ୍କ

ଶରୀର ପୁଷ୍ଟିସାର ବା ପ୍ରୋଟିନ୍‌ରେ ଗଠିତ ହୋଇଥିବାରୁ ସାଧାରଣ ଷ୍ଟେନରେ ସେମାନଙ୍କୁ ଦେଖିହୁଏ । ତାହା ନ ଦିଶିବାରୁ ମୁଁ ସ୍ଲାଇଡ଼ ଗୁଡ଼ିଏ କରି ଶ୍ୱେତସାର ପାଇଁ ସେଗୁଡ଼ିକ ମ୍ୟାକମାନସ ଷ୍ଟେନରେ ରଙ୍ଗ କରାଇଲି । ଗ୍ରନ୍ଥିରେ ଶ୍ୱେତସାର ନ ଥିଲେ ମଧ ରୋଗାଗ୍ରନ୍ଥିର କ୍ଷୟ ହୋଇଥିବା ଅଂଶରେ ମୁଁ ଛୋଟ ଛୋଟ ଗୋଲ ଗୋଲ ବିନ୍ଦୁ ସବୁ ଦେଖିବାକୁ ପାଇଲି । କେତେକ ଫଙ୍ଗସ ଅଣୁ ବା ଫିମ୍ପିଙ୍କ ଭିତରେ ଶ୍ୱେତସାର ଥିବାରୁ ସେମାନେ ସେହି ଷ୍ଟେନରେ ଦେଖାଯାଆନ୍ତି ।

ମୁଁ ରଙ୍ଗ କରିଥିବା ସ୍ଲାଇଡ଼ ଗୁଡ଼ିକ ନେଇ ମ୍ୟାକ୍‌ମାନସଙ୍କୁ ଦେଖାଇଲି । ସେ ତାହା ଦେଖି ନାଚି ଉଠିଲେ । ମୋତେ ଜଣେ ଆବିଷ୍କାରକ କହି ମୋ ପିଠି ଥାପୁଡ଼ାଇଲେ । ସେହି ଗୋଲ ଗୋଲ ବିନ୍ଦୁଗୁଡ଼ିକ ବ୍ଲାଷ୍ଟୋମାଇକୋସିସ ନାମକ ଫିମ୍ପି । ସେମାନେ ଶରୀର ଚମଡ଼ା ଉପରେ ଯାଦୁଭଳି ଏକ ଘା' କରିବାର ଜଣାଥିଲା, କିନ୍ତୁ ଶରୀର ଭିତରକୁ ପଶି ଗ୍ରନ୍ଥି ଓ ଫୁସ୍‌ଫୁସ୍‌ରେ ଯକ୍ଷ୍ମାଜୀବାଣୁ ପରି କ୍ଷତ ଉପୁଜାଇବା ଜଣା ନ ଥିଲା । ମୁଁ ମ୍ୟାକ୍‌ମାନସଙ୍କ ଆଦେଶରେ ସେ କଥା ଗୋପନ ରଖି କ୍ଲିନିକୋ ପାଥୋଲଜିକାଲ କନଫରେନ୍‌ସ ପାଇ ସ୍ଲାଇଡ଼ ଓ ସିନେମା ସ୍ଲାଇଡ଼ ପ୍ରଭୃତି ପ୍ରସ୍ତୁତ କଲି ।

ସେହି କନଫରେନ୍‌ସ ଦିନ ଭେଷଜ ବିଭାଗ ମୁଖ୍ୟ ଡାକ୍ତର ହାରିସନ ସେ ରୋଗୀର ରୋଗ ବିଷୟରେ ମନ୍ତବ୍ୟ ଦେଇ ତାହା ଏକ ନୂତନ ଧରଣର ଔଷଧ ମାନୁଥିବା ଅଦୃଶ୍ୟ ପରିବର୍ତ୍ତନଶୀଳ ଯକ୍ଷ୍ମା ଜୀବାଣୁ ଜନିତ ରୋଗ ବୋଲି ଦୃଢ଼ ଭାବରେ ଘୋଷଣା କଲେ । ଅନ୍ୟ ବିଭାଗର ଅଧ୍ୟାପକମାନେ ମଧ ଆଲୋଚନାରେ ଭାଗନେଇ ସେହି ମନ୍ତବ୍ୟକୁ ଅନୁମୋଦନ କଲେ । ସେମାନଙ୍କ ମନ୍ତବ୍ୟ ପରେ ଦୀର୍ଘକାୟ ମ୍ୟାକମାନସ ଅଳ୍ପ ହସି ମୁଣ୍ଡ ହଲାଇ ମୋର ସିନେମା ସ୍ଲାଇଡ଼ ସବୁ ପର୍ଦ୍ଦାରେ ପକାଇ ଦେଖାଇବା ପାଇଁ ମୋତେ ନିର୍ଦ୍ଦେଶ ଦେଲେ । ମୁଁ ମୋର କ୍ଷୁଦ୍ର ବକ୍ତବ୍ୟ ଶେଷ କରି ପେଶୀ ଭିତରେ ଥିବା ବ୍ଲାଷ୍ଟୋମାଇକୋସିସ୍ ଫଙ୍ଗସ ବା ଫିମ୍ପିର ଉପସ୍ଥିତି ଛବିରେ ଦେଖାଇବା ପରେ, ସେଠାରେ ଥିବା ସବୁ ଡାକ୍ତରମାନେ ସ୍ତମ୍ଭୀଭୂତ ହୋଇଗଲେ । ହାରିସନ ଠିଆ ହୋଇଯାଇ କହିଲେ "ତୁମେ ଭାରତରୁ ଆଣ୍ଠା ଏକ ସାପୁଆ କେଳା ଆଣି ଠିଆ କରାଇଦେଇ ଯେ ସେ ଆମ ସମସ୍ତଙ୍କୁ ସର୍ପଦଂଶନରେ ଆଘାତ କରାଇ ନିର୍ବାକ କରାଇ ଦେଲା ।" ଏହା କହି ବୃଦ୍ଧ ହାରିସନ ହସି ହସି ତାଙ୍କ ସ୍ଥାନରୁ ମୋ ନିକଟକୁ ଆସି ମୋ ସଙ୍ଗେ ହାତ ମିଳାଇ ମୋତେ ଅଭିବାଦନ ଜଣାଇଲେ ।

**ସେଠାରେ ପଢ଼ା ସାଥୀ :**

ଆମ ଦେଶରେ ପିତା ମାତାଙ୍କ ସାହାଯ୍ୟରେ ଧାରାବାହିକ ଭାବରେ ପାଠପଢ଼ି ଶେଷ କରିବା ସେ ଦେଶରେ ସମସ୍ତଙ୍କ ପକ୍ଷରେ ସମ୍ଭବ ହୁଏନାହିଁ । ମାଟ୍ରିକ ପର୍ଯ୍ୟନ୍ତ ପଢ଼ିବା

ବାଧତାମୂଳକ ଥାଏ । ତା' ପରେ ନିଜ ଉଦ୍ୟମରେ ଓ ରୋଜଗାର କରି ପଢ଼ିବାକୁ ହୁଏ । ତେଣୁ କିଛିକାଳ ଚାକିରି କରି ଅର୍ଥ ସଞ୍ଚୟ କରି ଛାତ୍ରମାନେ ଗୋଟା ଗୋଟା କରି କୋର୍ସ ନିଅନ୍ତି । ତେଣୁ ପାଠ ସଂପୂର୍ଣ୍ଣ କରିବା ପାଇଁ ସେମାନଙ୍କୁ ବହୁ ବର୍ଷ ଲାଗେ । ତେଣୁ ମୋ ସଙ୍ଗେ ତାଲିମ୍ ନେଉଥିବା ସେଠାରେ ଡାକ୍ତରମାନେ ମୋ ଠାରୁ ବୟସରେ ବଡ଼ ଥିଲେ ।

ପାଥୋଲଜି ବା ରୋଗ ନିର୍ଣ୍ଣୟ ଓ କ୍ୟାନସର ରିସର୍ଚ୍ଚ ଉପରେ ସବୁ ବିଭାଗ ଗୁରୁତ୍ୱ ଦେଉଥିବାରୁ, ସ୍ତ୍ରୀ ରୋଗ ବିଭାଗ, ଶୈଲ୍ୟ ବିଭାଗ ଓ ଭେଷଜ ବିଭାଗରେ ଛାତ୍ରମାନେ ମଧ୍ୟ ତାଙ୍କ ତାଲିମ ଭିତରେ ଛଅ ମାସ ପାଇଁ ପାଥୋଲଜି ବିଭାଗରେ ତାଲିମ ନେଇଥାଆନ୍ତି । ମୋର ସାଥୀମାନଙ୍କ ଭିତରେ ଅନ୍ୟ ଦେଶମାନଙ୍କରୁ ଆସିଥିବା ଛାତ୍ରମାନେ ମଧ୍ୟ ରହିଥିଲେ ।

ପୂର୍ବ ଭୂଖଣ୍ଡର ଛାତ୍ରମାନେ ନିଜକୁ ଏକ ସଂସ୍କୃତିର ଲୋକ ବୋଲି ଭାବୁଥିଲେ । ଡକ୍ଟର କ୍ୱାଙ୍ଗ ନାମକ ଜଣେ ଚାଇନାବାସୀ ସାଥୀରେ ପିଲାପିଲି ଧରି ସେ ସହରରେ ରହୁଥିଲେ । ସେ ତାଙ୍କ ଘରେ ଭୋଜନ କରିବା ପାଇଁ ମୋତେ ନିମନ୍ତ୍ରଣ କରିଥିଲେ । ଭାରତବାସୀ ଚାଇନାବାସୀଙ୍କ ପରି କାଠି ଦୁଇଖଣ୍ଡର ସାହାଯ୍ୟରେ ଖାଆନ୍ତି ବୋଲି ତାଙ୍କ ଧାରଣା ଥିଲା । ମୁଁ ତାଙ୍କ ପରିବାରଙ୍କ ସଙ୍ଗେ ଖାଇ ବସିବାବେଳେ ସେ ମୋ ଖାଦ୍ୟପାତ୍ର ନିକଟରେ ଦୁଇଟି କାଠି ରଖି ଦେଇଥିଲେ । ମୁଁ କାଠିରେ ଖାଇବା ନ ଜାଣିଥିବାରୁ ଥଟ୍ଟାରେ କହିଲି "କାଠିତ ଅଛି ଡ୍ରମ (ବାଜା) କାହିଁ ?" ସେ ମୋ ଅସୁବିଧା ଜାଣିପାରି ମୋତେ ଚାମଚ ପ୍ରଭୃତି ଯୋଗାଇ ଦେଲେ । ମୁଁ ମଧ୍ୟ କାଠିରେ ଖାଇ ଜାଣି ନ ଥିବାରୁ କ୍ଷମା ମାଗିଲି ।

ଅନ୍ୟମାନଙ୍କ ଭିତରେ ଇଙ୍ଗାବୋର୍ଡ଼ ଜନସନ ନାମକ ଜଣେ ଜର୍ମାନ ମହିଳା ଡାକ୍ତର ପ୍ରଥମ ବାର୍ଷିକୀ ରେସିଡ଼େନ୍ସ ଟ୍ରେନିଙ୍ଗ ନେଉଥିଲେ । ସେ ବଡ଼ ଗମ୍ଭୀର ଓ ଉଦାସ ଥିଲେ ଓ ଯୁଦ୍ଧ ପରେ ବିଜୟୀ ଆମେରିକା ଦେଶକୁ ଆସିଥିବାରୁ ବଡ଼ ସନ୍ତର୍ପଣରେ ଚଳୁଥିବା ପରି ଜଣାପଡୁଥିଲେ । କାର୍ଯ୍ୟ କରିବା ପାଇଁ ତାଙ୍କର ଆଗ୍ରହ ଥିଲା । ବେଳେବେଳେ ଶବ ବ୍ୟବଚ୍ଛେଦ ପରେ ପରେ ମୋତେ ଅନ୍ୟ କ୍ଲାସରେ ଯୋଗ ଦେବାକୁ ପଡ଼ିଲେ ମୋତେ ସେ ଟେବୁଲ ପ୍ରଭୃତି ସଫା କରିବାକୁ ସମୟ ମିଳେନାହିଁ । ସେ ମୋର ଅନୁରୋଧ ରକ୍ଷାକରି ମୋତେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି ।

ସେହି ଲେଡ଼ି ଡାକ୍ତର ବିଶ୍ୱଯୁଦ୍ଧ ପରେ ପରେ ଜର୍ମାନ ଦୁଇଭାଗ ହେବାରୁ, ରୁଷିଆ ଭାଗରେ ପଡ଼ିଥିବା ପୂର୍ବ ଜର୍ମାନୀରୁ ଆମେରିକାକୁ ପଳାଇ ଆସିଥିଲେ । ପୂର୍ବ ଜର୍ମାନୀରେ କମ୍ୟୁନିଷ୍ଟଙ୍କ କ୍ରୁର ଶାସନ ଯୋଗୁଁ ସେଠାର ଥିଲାବାଲା ଓ ବୁଦ୍ଧିଜୀବୀଙ୍କ ଉପରେ ଆକ୍ରମଣ

ଆରମ୍ଭ ହୋଇ ଯାଇଥିଲା, ଇଙ୍ଗାବୋର୍ଡ଼ ମେଡ଼ିକାଲ ପାଠ ଶେଷକରି ତାଲିମ୍ ପାଇଁ ଅପେକ୍ଷା କରୁଥିବା ବେଳେ ତାଙ୍କର ସ୍ୱଚ୍ଛଳ ପିତାମାତା କମ୍ୟୁନିଷ୍ଟ ସରକାରଙ୍କ ଅତ୍ୟାଚାରର ଶୀକାର ହୋଇ ପ୍ରାଣ ହରାଇଥିଲେ । ଇଙ୍ଗାବୋର୍ଡ଼ ଆତ୍ମଗୋପନ କରି ରହିଥିବା ସମୟରେ ଜଣେ ଆମେରିକୀୟ ସାଧାରଣ ସୈନ୍ୟ ଜନସନଙ୍କର ସାହାଯ୍ୟ ଭିକ୍ଷା କରି ତାଙ୍କ ପତ୍ନୀ ଭାବରେ ଆମେରିକା ଚାଲି ଆସିଥିଲେ ।

ତାଙ୍କର ତାଲିମ ଶେଷ ହୋଇ ନ ଥିବାରୁ ତାଙ୍କ ନିକଟରେ ଡ଼ିଗ୍ରୀ ସାର୍ଟିଫିକେଟ ନ ଥିଲା । ତେଣୁ ଡାକ୍ତରୀ ପ୍ରାକ୍ଟିସ୍ କରିବା ଅସମ୍ଭବ ଥିଲା । ସେ ବର୍ମିଙ୍ଗହାମ ସହରର ଗୋଟିଏ ଔଷଧ ଦୋକାନକୁ ଔଷଧ କିଣିବାକୁ ଯାଇ ସେ ଔଷଧ ସମ୍ବନ୍ଧରେ ଆଲୋଚନା କଲାବେଳେ ଦୋକାନୀ ତାଙ୍କୁ ଜଣେ ଡାକ୍ତର ବୋଲି ଜାଣିପାରିଲେ । ଦୋକାନୀଟି ଜଣେ ଉଦାର ଆମେରିକାନ ବ୍ୟକ୍ତି ଥିଲେ । ଆମେରିକାନମାନେ, ରୁଷ କମ୍ୟୁନିଷ୍ଟଙ୍କ ପରି ପ୍ରତିହିଂସା ପରାୟଣ ନୁହନ୍ତି ଓ ସେ ଜର୍ମାନୀର ପୂର୍ବ ନାଗରିକ ହୋଇଥିଲେ ମଧ୍ୟ ସେତେବେଳେ ଆମେରିକା ନାଗରିକ ହୋଇ ଯାଇଥିବାରୁ ଇଙ୍ଗାବୋର୍ଡ ସେଠାରେ ସହାନୁଭୂତିସୂଚକ ବ୍ୟବହାର ପାଇବେ ବୋଲି ଜଣାଇ ଦେଇଥିଲେ ।

ସେ ଦୋକାନୀଙ୍କର ସେଠାରେ ମେଡ଼ିକାଲ ସେଣ୍ଟରର ଜଣେ ଦୁଇଜଣ କର୍ମକର୍ତ୍ତାଙ୍କ ସହିତ ପରିଚୟ ଥିଲା । ସେ ପରଦିନ ସେ ଲେଡ଼ି ଡକ୍ଟରଙ୍କୁ ସଙ୍ଗରେ ନେଇ ସେହି ହସ୍‌ପିଟାଲର କର୍ମକର୍ତ୍ତାଙ୍କ ସହିତ ସାକ୍ଷାତ କରାଇ ଦେଇଥିଲେ ।

ସେ ସେଠାରେ ସୁବିଧା ପାଇ ଏକ ବର୍ଷ ଇଣ୍ଟର୍ଣସିପ ସାରିବା ପରେ ସେଶାଲିଷ୍ଟ ହେବା ପାଇଁ ପ୍ରଥମ ବାର୍ଷିକ ପାଥୋଲଜି ରେସିଡେଣ୍ଟସିପ୍ ତାଲିମ୍ ନେଉଥିଲେ । ସେ ସମୟରେ ସେ ତାଙ୍କ ଛଳନା ବିବାହ ବନ୍ଧନରୁ ନିଜକୁ ମୁକ୍ତ କରି ସ୍ୱାଧୀନ ଜୀବନ ଯାପନ କରିବାକୁ ସମର୍ଥ ହୋଇ ହସପିଟାଲର ଲେଡ଼ି ରେସିଡେଣ୍ଟ ହଷ୍ଟେଲରେ ରହୁଥିଲେ ।

ମୁଁ ଭାରତକୁ ଫେରିବା ପରେ ମଧ୍ୟ ସେ ମୋତେ ଚିଠିପତ୍ର ଦେଉଥିଲେ । ସେ ପାଥୋଲଜି ଟ୍ରେନିଙ୍ଗ ଶେଷ କଲାପରେ ସାଇକାଟ୍ରିକ ଟ୍ରେନିଙ୍ଗ ନେଇ ସେଥିରେ ବିଶେଷଜ୍ଞ ହୋଇ ସେଠାରେ ଭେଟେରନ ହସପିଟାଲରେ ନିଯୁକ୍ତି ପାଇଥିଲେ । ସେ ହସପିଟାଲରେ ସାଇକାଟ୍ରିକ ଡାକ୍ତର ଭାବେ କାର୍ଯ୍ୟ କରୁଥିବା ଜଣେ ଗ୍ରୀକ୍ ଡାକ୍ତରଙ୍କୁ ବିବାହ କରିଥିଲେ । ସେମାନଙ୍କର ସନ୍ତାନ ନାହିଁ । ସେମାନେ କାର୍ଯ୍ୟରୁ ଅବ୍ୟାହତି ନେଲା ପରେ ସେହି ନଗରୀରେ ନିଜ ଗୃହରେ ବସବାସ କରି ରହୁଛନ୍ତି ।

ମୁଁ ୩୭ ବର୍ଷ ପରେ ପୁଣି ଆମେରିକା ଯାଇଥିଲା ବେଳେ ତାଙ୍କ ନିମନ୍ତ୍ରଣ ରକ୍ଷା କରି ମୋର ଜ୍ୟେଷ୍ଠାକନ୍ୟା (କାନାଡ଼ା ନିବାସୀ ସୁମିତ୍ରା) ଓ ସହଧର୍ମିଣୀଙ୍କ ସହିତ ତାଙ୍କ ଘରକୁ ଯାଇଥିଲି । ତାଙ୍କର ସ୍ୱାମୀ ଜଣେ ବଡ଼ ମେଳାପୀ ଲୋକ । ମୁଁ ଆମେରିକାରେ

ପହଞ୍ଚିବା ପରେ ପରେ ଭାରତରେ ସୁମିତ୍ରା ଜନ୍ମ ହୋଇଥିଲା, ଇଙ୍ଗାବୋର୍ଡ୍ ତା'ର ଶୈଶବର ଫଟୋ ଆଗରୁ ଦେଖିଥିଲେ । ତାକୁ ଦେଖି ବଡ଼ ଖୁସି ହେଲେ । ହସି ହସି ମୋ ସହଧର୍ମିଣୀଙ୍କୁ କହିଲେ, "ବିକ୍ରମ ବଡ଼ ଦୁଷ୍ଟ ଲୋକ, ତାଙ୍କ ଦେଶରେ ସ୍ତ୍ରୀଲୋକମାନେ ଘର ସଫାସଫି କରନ୍ତି, ତାହା ପୁରୁଷଙ୍କ କାର୍ଯ୍ୟ ନୁହେଁ କହି ମୋତେ ବହୁତ ଖଟାଇ ଶବ ବ୍ୟବଚ୍ଛେଦ ଗୃହ ପ୍ରଭୃତି ସଫା କରାଇଛନ୍ତି ।" ମୁଁ ବଡ଼ ଚାଟ ଭାବରେ ତାଙ୍କ ପ୍ରତି କିପରି ହାକିମ୍ କରୁଥିଲି ତାହା ସମସ୍ତଙ୍କ ସାମନାରେ ବର୍ଣ୍ଣନା କଲାବେଳେ ଆମ ଭିତରେ ଖୁବ୍ ହସ ସୃଷ୍ଟି ହୋଇଥିଲା ।

**ପିତାଙ୍କ ଅସୁସ୍ଥତା ସମ୍ବାଦ :**

ମୁଁ ମେଡ଼ିକାଲ କଲେଜରେ ପ୍ରବେଶ କରିବାର ଅବ୍ୟବହିତ ପୂର୍ବରୁ ପିତାଙ୍କର ବହୁମୂତ୍ର ରୋଗ ଆରମ୍ଭ ହୋଇଥିଲା । ମୁଁ ବରାବର ତାଙ୍କ ସ୍ୱାସ୍ଥ୍ୟର ଯତ୍ନ ନେଉଥିଲି । ବିନା ଔଷଧରେ କେବଳ ଖାଦ୍ୟ ନିୟନ୍ତ୍ରଣ ଯୋଗୁଁ ତାଙ୍କର ବହୁମୂତ୍ର ରୋଗ ଆୟତ୍ତାଧୀନ ହୋଇ ରହିଥିଲା । ମୁଁ ଆମେରିକା ଆସିବା ପରେ ନିୟନ୍ତ୍ରଣର ଅଭାବରୁ ଉପସର୍ଗ ସବୁ ବାହାରି ପାରେ ବୋଲି ମୁଁ ଆତଙ୍କିତ ଥିଲି । ମୁଁ ଆମେରିକା ଆସିବା ବେଳେ କଲିକତାର ଯେଉଁ ଭଦ୍ରଲୋକ ମୋର ବାଟଖର୍ଚ୍ଚ ପାଇଁ ଟଙ୍କା ଧାର ଦେଇଥିଲେ, ସେ ମୋ ପିତାଙ୍କର ଜଣେ ବଡ଼ ଭକ୍ତ ଥିଲେ । ମୁଁ ଆମେରିକାରୁ ତାଙ୍କ ଟଙ୍କା ଫେରାଇ ଦେବାପାଇଁ ଲେଖିବାରୁ, ସେ ଲେଖିଥିଲେ ସେ ଟଙ୍କା ଫେରାଇ ଦେଲେ ପରିଶୋଧ ହେବନାହିଁ । ମୋର ପିତା ରୋଗଗ୍ରସ୍ତ, ତେଣୁ ମୁଁ ଅର୍ଥ ଲୋଭରେ ଆମେରିକାରେ ଅଟକି ନ ଯାଇ ଶୀଘ୍ର ଘରକୁ ଫେରି ତାଙ୍କ ସ୍ୱାସ୍ଥ୍ୟର ଯତ୍ନ ନେଇ ସେବା କଲେ ସେ ଋଣ ପରିଶୋଧ ହେବ ।

ମୁଁ ପାଠ ଶେଷ କରି ଶୀଘ୍ର କିପରି ଭାରତ ଫେରିବି ସେଥିପାଇଁ ଉଦ୍‌ବିଗ୍ନ ଥିଲି । ଘରୁ କାହାଠାରୁ କେତେଦିନ ଧରି ଚିଠିପତ୍ର କିଛି ଆସିନଥିଲା, ହଠାତ୍ ମୁଁ ଆର.ଏସ୍.ଏସ୍.ର ତତ୍‌କାଳୀନ ସଂଘ ଚାଳକ ଗୁରୁଜୀ ବୋଲଡ୍ୟାଲକରଙ୍କ ଚିଠି ପାଇଲି । ସେ ଲେଖିଥିଲେ "ମୋ ପିତାଙ୍କର ଷ୍ଟ୍ରୋକ ହୋଇ ପକ୍ଷାଘାତ ହୋଇଥିବାର ଖବର ଖବରକାଗଜରୁ ପଢ଼ି ସେ ଖବର ନେଇଥିଲେ । ମୋର ପିତା କବିରାଜି ଚିକିତ୍ସାରେ ରହି ଭଲ ହେବା ଆଡ଼କୁ ଆସୁଛନ୍ତି ।"

ସେ ଚିଠି ପଢ଼ି ମୋ ମନରେ କେତେ କ'ଣ ଚିନ୍ତା ପ୍ରବେଶ କଲା । ମୋର ପିତାଙ୍କର ପ୍ରଗତିବାଦୀ ବୈଜ୍ଞାନିକ ଚିନ୍ତାଧାରା ଯୋଗୁଁ ସେ ଆଧୁନିକ ଚିକିତ୍ସା ପ୍ରତି ଆକୃଷ୍ଟ ଥିଲେ । ତାଙ୍କର ଯେ କୌଣସି ରୋଗ ପାଇଁ ଡାକ୍ତର ପରାମର୍ଶ କରିବା ତାଙ୍କର ଅଭ୍ୟାସ । ତାଙ୍କୁ ଡାକ୍ତରୀ ଚିକିତ୍ସାରେ ରଖା ନ ଯାଇ କବିରାଜି ଚିକିତ୍ସା କାହିଁକି କରାଯାଉଛି ମୁଁ

ବୁଝିପାରିଲି ନାହିଁ । ମୁଁ ଆମେରିକା ଆସିବା ପରେ ତାଙ୍କର ଚିକିତ୍ସାର ଅବ୍ୟବସ୍ଥା ଯୋଗୁଁ ରୋଗ ବଢ଼ିଯାଇ ବ୍ରେନ୍‌ଷ୍ଟ୍ରୋକ୍ ହୋଇଥିବାର ମୋର ଧାରଣା ହେଲା । ତେଣୁ ଏ ସମୟରେ ତାଙ୍କ ନିକଟରେ ମୋର ଉପସ୍ଥିତି ନିତାନ୍ତ ପ୍ରୟୋଜନ ମନେକରି ମୁଁ ଆମେରିକା ପାଠ ଛାଡ଼ି ଯଥାଶୀଘ୍ର ଦେଶକୁ ଫେରିବା ପାଇଁ ସଜବାଜ ହେବାକୁ ଲାଗିଲି ।

**ପ୍ରଫେସରଙ୍କ ସହୃଦୟତା :**

ସେ କଥା ଶୁଣି ପ୍ରଫେସର ମ୍ୟାକମାନସ ମୋତେ ଡକାଇ କହିଲେ, ''ମୋର ଗୋଟିଏ ସାଧାରଣ ଅନୁରୋଧ ରକ୍ଷା କରିବ ? ତୁମେ ପ୍ରଥମେ ପିତାଙ୍କର ସ୍ୱାସ୍ଥ୍ୟର ପ୍ରକୃତ ଅବସ୍ଥା ବୁଝିବା ପାଇଁ ଗୋଟିଏ ରିପ୍ଲାଇପେଡ୍ କେବଲ ବା ଟେଲିଗ୍ରାମ ଘରକୁ ପଠାଅ, ତା'ର ଉତ୍ତର ଆସିବା ପରେ ତୁମେ ଧୀର ଚିତ୍ତରେ ଦେଶକୁ ଫେରିବା କଥା ସ୍ଥିର କରିବ ।''

ମୁଁ ଟେଲିଗ୍ରାମ କଲି । ତିନିଦିନ ପରେ ଉତ୍ତର ଆସିଲା, ''ପିତାଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ଘଟିଛି, ଉଦବେଗର କୌଣସି କାରଣ ନାହିଁ । ସେ ପୂର୍ବପରି ବିଧାନସଭାର ସଦସ୍ୟ ଭାବରେ ଯୋଗଦେଉ ଅଛନ୍ତି ।'' ତାହା ଜାଣି ଆପାତତଃ ମୁଁ ଆଶ୍ୱସ୍ତି ବୋଧ କଲି । ପ୍ରଫେସର ମ୍ୟାକମାନସ ଟେଲିଗ୍ରାମଟି ପଢ଼ିସାରି ମୋତେ କହିଲେ, ''ମୁଁ ଏ ଟେଲିଗ୍ରାମକୁ ଅପେକ୍ଷା କରୁଥିଲି । ମୋତେ ତିନି ରାତି ହେଲା ନିଦ ହୋଇନି କିମ୍ବା ମୁଁ ଭଲରେ ଖାଇ ପାରିନାହିଁ । ମୁଁ ତୁମ ଭବିଷ୍ୟତ କଥା ଚିନ୍ତା କରୁଥିଲି । ତୁମ ପରି ଜଣେ ଅଭାବଗ୍ରସ୍ତ ଛାତ୍ର ଦେଶକୁ ଗଲେ ସଙ୍ଗେ ସଙ୍ଗେ ଫେରିଆସିବାର ସମ୍ଭାବନା କ୍ଷୀଣ । ଡ଼ିଗ୍ରୀ ନ ଥାଇ ଦେଶକୁ ଗଲେ ତୁମର ସମସ୍ତ ପରିଶ୍ରମ ପଣ୍ଡହେବ । ଆଉ ଅଳ୍ପ କେତୋଟା ମାସରେ ତୁମ ପାଠ ସରିବ । ସେତେବେଳେ ତୁମେ ଡ଼ିଗ୍ରୀଧରି ଦେଶକୁ ଫେରିପାରିବ ।''

''ତୁମେ ଖବର ପାଇଁ ହଠାତ୍ ବିବ୍ରତ ହୋଇପଡ଼ିବା ସ୍ୱାଭାବିକ । ଯେତେ ବଡ଼ ବିଜ୍ଞାନୀଛାତ୍ର ହେଲେ ମଧ୍ୟ ନିଜ ଲୋକର ଦୁଃସମ୍ବାଦରେ ବୈଜ୍ଞାନିକ ବିଶ୍ଳେଷଣ ନକରି ମନର ଭାରସାମ୍ୟ ହରାଇବା ମଧ୍ୟ ସ୍ୱାଭାବିକ । ତୁମେ ଜଣେ ରୋଗନିର୍ଣ୍ଣୟକାରୀ ଛାତ୍ର । ତୁମେ ଭଲ କରି ଜାଣ ଯେ ବ୍ରେନଷ୍ଟ୍ରୋକ ଏଭଳି ଏକ ଘଟଣା ଯାହା ମସ୍ତିଷ୍କରେ ଘନଘନ ଆଘାତ କରି ଅଳ୍ପ ସମୟରେ ପ୍ରାଣହାନୀ ଘଟାଇପାରେ । ବେଳେ ବେଳେ କିଛି ସମୟ ଛାଡ଼ି ଛାଡ଼ି ତାହା ଘଟିପାରେ କିମ୍ବା ଥରେ ଘଟିଲେ ପୁଣି ବହୁବର୍ଷ ଏପରି କି ୧୦, ୨୦ ବର୍ଷ ଆଉ ଘଟି ନ ପାରେ । (ମୋର ପିତା ସେ ଦୁର୍ଘଟଣା ପରେ ଆଉ ୧୪ ବର୍ଷ ବଞ୍ଚି ରହିଥିଲେ ଓ ତାହା ଭିତରେ ବିଶ୍ୱବିଦ୍ୟାଳୟ ପ୍ରୋଚାନସେଲର, ସାହିତ୍ୟ ଏକାଡ଼େମୀ ସଭାପତି, ବିଧାନ ସଭା ବାଚସ୍ପତି ପ୍ରଭୃତିର କାର୍ଯ୍ୟ ସୁଚାରୁରୂପେ ଚଳାଇଥିଲେ ।)

## ଶିକ୍ଷକ ମ୍ୟାକମାନସ :

ମ୍ୟାକମାନସଙ୍କ ଶିକ୍ଷାଦାନ କେବଳ ଆମ କଲେଜର ପରିସର ଭିତରେ ଆବଦ୍ଧ ନ ଥିଲା । ସେ ଜଣେ ବୃକକ୍ ଓ ହିଷ୍ଟୋକେମେଷ୍ଟ୍ରୀ ବିଶେଷଜ୍ଞ ଭାବରେ ଆମେରିକାର ଅନ୍ୟ ଶିକ୍ଷା ଅନୁଷ୍ଠାନମାନଙ୍କୁ ଯାଇ ଶିକ୍ଷାଦାନ ଓ ଗବେଷଣା କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲେ । ସେହି ମହାନୁଭବ ବିରାଟ ବୈଜ୍ଞାନିକ, ପିତୃପ୍ରତିମ ମ୍ୟାକମାନସଙ୍କ ସହାନୁଭୂତି, ଅନାବିଳ ସ୍ନେହ ପରୀକ୍ଷା ଶେଷ ପର୍ଯ୍ୟନ୍ତ ମୋତେ ସେଠାରେ ଟାଣି ରଖିଥିଲା । ମୁଁ ପିତାଙ୍କ କଥା ଓ ଘର କଥା ଭୁଲିବାକୁ ଚେଷ୍ଟାକରି ପଢ଼ାପଢ଼ିରେ ଲାଗି ରହିବାକୁ ଚେଷ୍ଟା କଲି ।

ମ୍ୟାକମାନସ ତାଙ୍କ ଅନୁପସ୍ଥିତି ସମୟରେ ମଧ ତାଙ୍କ ବିଭାଗରେ ଚାଲିଥିବା ଶିକ୍ଷା ଓ ଗବେଷଣା ପ୍ରତି ଦୃଷ୍ଟି ରଖିଥିଲେ । ତେଣୁ ଆମ ବିଭାଗରେ ତାଙ୍କ ଅନୁପସ୍ଥିତି ସମୟରେ କିପରି କାର୍ଯ୍ୟ ଓ ଗବେଷଣା ଚାଲିଥିଲା ତାହା ଜାଣିବା ପାଇଁ ଛୁଟି ଦିନରେ ମାସକେ ଥରେ ଦୁଇଥର ଆମ ବିଭାଗର ରେସିଡେଣ୍ଟ ଡାକ୍ତର ଓ ଅନ୍ୟ ଶିକ୍ଷକମାନଙ୍କୁ ନିଜ ଘରକୁ ଭୋଜି ପାଇଁ ଡକାଇ ସେସବୁର ଆଲୋଚନା କରିବା ସଙ୍ଗେ ସଙ୍ଗେ ସେ ବୁଲି ଆସିଥିବା ଅନ୍ୟ ଗବେଷଣା କେନ୍ଦ୍ରମାନଙ୍କରେ କି ଗବେଷଣା ହେଉଛି ଓ ସେମାନଙ୍କର ଅଗ୍ରଗତି ବିଷୟରେ ଆମକୁ ଅବଗତ କରାଉଥିଲେ ।

## ବୈଜ୍ଞାନିକ ଦୃଷ୍ଟିକୋଣ :

ଆମେରିକା ଆଧୁନିକ ବିଜ୍ଞାନରେ ଶୀର୍ଷ ସ୍ଥାନ ଅଧିକାର କରିଛି, ତା'ର କାରଣ କେବଳ ଗବେଷଣା କେନ୍ଦ୍ରମାନଙ୍କର ପ୍ରତିଷ୍ଠା ଯୋଗୁଁ ନୁହେଁ । ସେ ଦେଶର ଲୋକମାନେ ମଧ ସେମାନଙ୍କ ଜୀବନରେ ବିଜ୍ଞାନକୁ ଅତି ଉଚ୍ଚସ୍ଥାନ ଦେଉଥିଲେ । ସେମାନେ ବୈଜ୍ଞାନିକ ପଦ୍ଧତିର ଏଲୋପାଥିକ ଚିକିତ୍ସା ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି । ଆମର କାହାର ଦେହ ଖରାପ ହେଲେ ତା'ର ଗୁରୁତ୍ୱ ଉପଲବ୍ଧି ନ କରି ଲୋକେ ଠୁଣ୍ଣୁକାଠୁଣ୍ଣୁକି ଠାରୁ ଆରମ୍ଭ କରି ଅନ୍ୟ ଚିକିତ୍ସାସବୁ କରିସାରି ସେ ସବୁରେ ସେ ରୋଗ ଭଲ ନ ହେଲେ ଶେଷ ମୁହୂର୍ତ୍ତରେ ରୋଗୀକୁ ଡାକ୍ତରଖାନାକୁ ଆଣିଥାଆନ୍ତି । ଡାକ୍ତରୀ ଚିକିତ୍ସା ବ୍ୟୟବହୁଳ ହୋଇଥିବାରୁ ଅନେକଙ୍କର ଇଚ୍ଛା ଥିଲେ ମଧ ତାହା କରାଇବାପାଇଁ ପଶ୍ଚାତ୍ପଦ ହୁଅନ୍ତି ।

ତା' ଛଡ଼ା ବୈଜ୍ଞାନିକ ଦୃଷ୍ଟି ନ ଥିବାରୁ ସେ କୌଣସି ରୋଗକୁ ଶୀଘ୍ର ଭଲ କରାଇବା ବ୍ୟାକୁଳତା ଯୋଗୁଁ ଚିକିତ୍ସକମାନଙ୍କ ନିକଟରେ ଅଯଥା ଇଞ୍ଜେକ୍ସନ ଓ ପରୀକ୍ଷା ପାଇଁ ଜିଦ୍ ଧରନ୍ତି । ସେ ଦେଶରେ ପିଲାର ରୋଗ ହେଲେ ତାକୁ ଡାକ୍ତର ନିକଟକୁ ନେଇ ପରୀକ୍ଷାନିରୀକ୍ଷା କରାଇ ରୋଗୀ ପ୍ରତି ଦୃଷ୍ଟି ରଖିବାକୁ ଡାକ୍ତରଙ୍କୁ ଅନୁରୋଧ କରନ୍ତି ।

ଟିକିଏ କଥାରେ ହଠାତ୍ ଔଷଧ ଦେଇ ପିଲାର ରୋଗ ନିବାରଣ ଶକ୍ତିକୁ ନଷ୍ଟ କରାଇଦିଅନ୍ତି ନାହିଁ ।

**ଆତ୍ମୀୟର ଶବ ବ୍ୟବଚ୍ଛେଦ :**

ସେ ଲୋକଙ୍କର ବୈଜ୍ଞାନିକ ଦୃଷ୍ଟିକୋଣ ଓ ମାନବିକତା ଦୃଷ୍ଟିରୁ, ରୋଗୀଟିର ମୃତ୍ୟୁ ଘଟିଲେ, ତାହାର ମୃତ୍ୟୁର କାରଣ ଜାଣିବା ପାଇଁ ଚେଷ୍ଟା କରନ୍ତି । ଦରକାର ମନେ କଲେ ସେଥିପାଇଁ ପଇସା ଖର୍ଚ୍ଚ କରି ରୋଗୀର ଶବ ବ୍ୟବଚ୍ଛେଦ କରାନ୍ତି ।

**ଦୃଷ୍ଟାନ୍ତ ସ୍ୱରୂପ :**

ଥରେ ଗୋଟିଏ ଦମ୍ପତି ପ୍ରାୟ ତିନିଶହ ମାଇଲ ଦୂର ଗ୍ରାମରୁ ତାଙ୍କ ବାରବର୍ଷୀୟ ମୃତ ପୁତ୍ରର ଶବକୁ ଘେନି ଆସି ଆମ ହସପିଟାଲରେ ତା'ର ଶବ ବ୍ୟବଚ୍ଛେଦ କରାଇବା ପାଇଁ ଫିସ୍ ଦାଖଲ କଲେ । ସେହି ରାତ୍ରୀରେ ମୁଁ ଶବ ବ୍ୟବଚ୍ଛେଦ ଦାୟିତ୍ୱରେ ଥିବାରୁ ମୋତେ ସେଥିପାଇଁ ଡାକରା ଆସିଲା ।

ସେ ଶବ ସାଥୀରେ ତା'ର ପିତାମାତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲି । ସେମାନେ ମୋତେ ବିବ୍ରତ ହେବାର ଦେଖି କହିଲେ, ଆପଣ ଭାରତ ପରି ଏକ ପୁରାତନ ରକ୍ଷଣଶୀଳ ଦେଶର ଲୋକ, ତେଣୁ ପିତାମାତା ତାଙ୍କର ଏକମାତ୍ର ପୁତ୍ରର ଶବକୁ ଧୈର୍ଯ୍ୟର ସହିତ ସାଥୀରେ ଧରି ତାର ଶବ ବ୍ୟବଚ୍ଛେଦ ପାଇଁ ଆଗ୍ରହ ପ୍ରକାଶ କରୁଥିବା ଦେଖି ବିବ୍ରତ ହୋଇ ପଡୁଛନ୍ତି; କିନ୍ତୁ ଭାବି ଦେଖନ୍ତୁ, ଆମର ପୁତ୍ରଟି ଆମ ପାଇଁ ଯେପରି ଅତ୍ୟନ୍ତ ପ୍ରିୟ ଥିଲା ଆମ ସହରର ଅନ୍ୟ ପିତା ମାତାମାନଙ୍କର ପିଲାମାନେ ମଧ୍ୟ ସେହିପରି ପ୍ରିୟ ଅଟନ୍ତି । ଏବେ ଆମ ଅଞ୍ଚଳରେ ଏକ ଅଜଣା ରୋଗରେ ଆକ୍ରାନ୍ତ ହୋଇ ପିଲାମାନେ ପ୍ରାଣ ହରାଉଛନ୍ତି । ଆମ ପିଲା ତ ଆଉ ଲେଉଟିବ ନାହିଁ, କିନ୍ତୁ ବ୍ୟବଚ୍ଛେଦ ଦ୍ୱାରା ତା'ର ରୋଗ ଜଣା ପଡ଼ିଲେ, ଅନ୍ୟମାନଙ୍କ ପିଲାମାନେ ହୁଏତ ଉପଯୁକ୍ତ ଚିକିତ୍ସା ପାଇ ମୃତ୍ୟୁମୁଖରୁ ବର୍ତ୍ତିଯିବେ । ସେଥିପାଇଁ ମାନବିକତା ଦୃଷ୍ଟିରୁ ଆମେ ହାତରୁ ପଇସା ଖର୍ଚ୍ଚ କରି ଏଠାକୁ ଆଣିଛୁ । ଆପଣ ଶୀଘ୍ର ପରୀକ୍ଷା ସମାପନ କରି ତା'ର ମୃତ୍ୟୁର କାରଣ ଜଣାଇଲେ ଆମେ ଉପକୃତ ହେବୁ । ବିଜ୍ଞାନ ଓ ସମାଜ ପ୍ରତି ସେମାନଙ୍କ ଦାୟିତ୍ୱବୋଧ ମୋତେ ଅଭିଭୂତ କରି ପକାଇଲା ।

**ସେଠାର ଛାତ୍ର :**

ଆମ କଲେଜର ସାଧାରଣ ଛାତ୍ରମାନେ ମଧ୍ୟ ଗବେଷଣା ପ୍ରତି ଆକୃଷ୍ଟ ହୋଇଥାଆନ୍ତି । ସେମାନେ ଆସି ବେଳେବେଳେ ଶବ ବ୍ୟବଚ୍ଛେଦ ଓ ଗବେଷଣାରେ ଭାଗ ନିଅନ୍ତି । ସେମାନଙ୍କ ଭିତରେ ଅନେକ ବୟସ୍କ ଛାତ୍ର ମଧ୍ୟ ନିଜ ପରିଶ୍ରମରେ ଅର୍ଥ

ଯୋଗାଡ଼ କରି ସାମୟିକ ଶିକ୍ଷା ନେଇ ବହୁବର୍ଷରେ ମେଡ଼ିକାଲ ପାଠ ଶେଷ କରିବାକୁ ଉଦ୍ୟମ କରୁଥାଆନ୍ତି ।

ସେହି ମେଡ଼ିକାଲ କଲେଜର ଉପର ଶ୍ରେଣୀରେ ପଢୁଥିବା ରିବ୍ ଟିଡ୍‌ୱେଲ ନାମକ ବୟସ୍କ ଛାତ୍ରଟିଏ ବେଳେ ବେଳେ ମୋ ନିକଟକୁ ପାଠ ବୁଝିବା ପାଇଁ ଆସୁଥିଲା । ସେ ତା'ର ସ୍ତ୍ରୀ ପିଲା ନେଇ କଲେଜ ନିକଟରେ ଏକ ଛୋଟ ଭଡ଼ା ଘରେ ରହୁଥିଲା । ସେ ଗରିବ ଭାବରେ ଚଳୁଥିଲା । ଦିନେ ସେ ଶସ୍ତା ସାର୍ଟଟିଏ ପିନ୍ଧି ଆସିଥିଲା । ମୁଁ ପଚାରିବାରେ ସେ କହିଲା, ସେ ସାର୍ଟଟି ବଜାରରୁ ଶସ୍ତା କନା ଆଣି ତା'ର ସ୍ତ୍ରୀ ଘରେ ସିଲେଇ ମେସିନରେ ତିଆରି କରିଛନ୍ତି ।

ତାହା ଶୁଣି ତା' ଜୀବନ ବୃତ୍ତାନ୍ତ ଶୁଣିବା ପାଇଁ ମୋ ମନରେ କୌତୁହଳ ଜାଗ୍ରତ ହେଲା । ତାକୁ ପଚାରି ମୁଁ ଜାଣିଲି ସେ ଗୋଟିଏ ସ୍ୱଚ୍ଛଳ ପରିବାରର ପିଲା । ସେ ପିଲାଦିନେ ପଢ଼ାପଢ଼ିରେ ମନ ନ ଦେଇ ଛେଲ୍‌ରା-ବନ୍ଧୁକଟିଏ ଧରି ଚଢ଼େଇ ମାରି ଶିଖିବା ଓ ଖେଳାବୁଲାରେ ସମୟ କଟାଉଥିଲା । ସେଠାରେ ଷୋହଳ ବର୍ଷ ପର୍ଯ୍ୟନ୍ତ ପିତାମାତାଙ୍କ ନିକଟରେ ରହି ମାଟ୍ରିକ ପାଶ୍ ପର୍ଯ୍ୟନ୍ତ ବାଧତାମୂଳକ ଭାବେ ସ୍କୁଲରେ ପଢ଼ନ୍ତି । ସେ ସ୍କୁଲକୁ ନ ଯାଇ ଖେଳାବୁଲା କରିବାରୁ ସ୍କୁଲ କର୍ତ୍ତୃପକ୍ଷ ତା ପିତାମାତାଙ୍କ ନିକଟରେ ଅଭିଯୋଗ କଲେ ।

ଦିନେ ତା'ର ପିତା ତାକୁ ଡକାଇ ଗୋଟିଏ ଡଲାର ଧରାଇ ଦେଇ ଘରୁ ବାହାରି ଯିବାପାଇଁ ନିର୍ଦ୍ଦେଶ ଦେଲେ । ସେ କହିଲେ "ତୁମେ ଜଣେ ଉପଯୁକ୍ତ ଆମେରିକାନ ନାଗରିକ ହେବାର ବାଟ ଧରୁନାହଁ, ତେଣୁ ତୁମକୁ ଦଶ, ବାର ବର୍ଷ ହେଲେ ମଧ ତୁମ ପାଇଁ ମୋ ଘରେ ଆଉ ସ୍ଥାନ ନାହିଁ । ଘରୁ ବହିଷ୍କୃତ ହୋଇ ସେ କ'ଣ କରିବ ଭାବି ପାରିଲା ନାହିଁ । ପାଠ ପୂରା ବନ୍ଦ କରିଦେଲେ ସରକାରୀ ନିୟମ ଅନୁସାରେ ତାକୁ କାରାଦଣ୍ଡ ଭୋଗ କରିବାକୁ ପଡ଼ିବ । ତେଣୁ ସେ ଗୋଟିଏ ଜଣାଶୁଣା କଫି ଦୋକାନରେ ସାହାଯ୍ୟକାରୀ ଭାବେ ଚାକିରି କରି ସେଠାରେ ରହିବା ଖାଇବାର ସୁବିଧା ପାଇ କଷ୍ଟେମଷ୍ଟେ ଚଳି ନିୟମିତ ସ୍କୁଲକୁ ଯିବାକୁ ବାଧ ହୋଇଥିଲା ।

ଆସ୍ତେ ଆସ୍ତେ ତା' ମନରେ ପରିବର୍ତ୍ତନ ଆସିଲା । ଉପର କ୍ଲାସକୁ ଯିବା ସଙ୍ଗେ ସଙ୍ଗେ ତା'ର ଖର୍ଚ୍ଚ ବଢ଼ିବାରୁ ସେ ତା' ରୋଜଗାରରୁ କିଛି କିଛି ସଞ୍ଚୟ କରି, ଖାଦ୍ୟ ପଦାର୍ଥର ସ୍ୱୟଂଚାଳିତ ମେସିନଟିଏ ଭଡ଼ା ନେଇ ରାସ୍ତାର ଗୋଟିଏ ସ୍ଥାନରେ ବସାଇଲା । ସେଥିରେ ପଇସା ଗଳାଇଲେ ଆପେ ଆପେ ସେ ଖାଦ୍ୟପୁଡ଼ିଆ ବାହାରି ଆସେ । ରିବ୍ ସପ୍ତାହରେ ଥରେ ସେ ମେସିନରେ ଖାଦ୍ୟ ପୁଡ଼ିଆ ସବୁ ଭର୍ତ୍ତିକରି, ପଇସା ଘେନିଆସେ । ସେହି ପଇସା ସଞ୍ଚି ସଞ୍ଚି ସେ ମାଟ୍ରିକ ପରେ, ଆଇ.ଏସ୍.ସି.ରେ ନାମ

ଲେଖାଇ ପାରିଲା । ଆଇ.ଏସ୍.ସି ପରେ ସେ ମେଡ଼ିକାଲ କଲେଜରେ ପଢ଼ିବା ପାଇଁ ସ୍ଥାନ ପାଇଲା । ମେଡ଼ିକାଲ ପାଠ ବ୍ୟୟ ବହୁଳ, ସେଥିପାଇଁ ତା'ର ସମ୍ବଳ ନଥିଲା । ସେହି ସମୟରେ ତାର ସାଥୀ ଝିଅଟିଏ ତାକୁ ସାହାଯ୍ୟ କରିବାକୁ ଆଗେଇ ଆସିଲା । ସେ କିରାଣୀ ଚାକିରିଟିଏ କରି ତାକୁ ତା' ପଢ଼ାରେ ସାହାଯ୍ୟ କରିବାକୁ ଆଗ୍ରହ ପ୍ରକାଶ କରିବାରୁ ସେ ଦୁହିଁଙ୍କର ବିବାହ ହୋଇଥିଲା । ମେଡ଼ିକାଲ ପାଠର ଦୁଇବର୍ଷ ପାଠ ତା'ର ପୂର୍ବ ସଞ୍ଚିତ ଟଙ୍କା ଓ ସ୍ତ୍ରୀ ରୋଜଗାରରେ ଚଳିଗଲା, କିନ୍ତୁ ଦୁଇ ବର୍ଷ ପରେ ତାଙ୍କର ଗୋଟିଏ ସନ୍ତାନ ହେବାରୁ ଘର ଚଳାଇବା ପାଇଁ ମେଡ଼ିକାଲ ପାଠ ସହିତ ଅଧିକ ପରିଶ୍ରମ କରି ଅର୍ଥ ଅର୍ଜନ କରିବା ଦରକାର ପଡ଼ିଲା । ସେ ଦେଶରେ କୌଣସି କାର୍ଯ୍ୟକୁ ନିଚ୍ଚ ଦୃଷ୍ଟିରେ ଦେଖାଯାଏ ନାହିଁ । ରିବ୍ ସନ୍ଧ୍ୟା ଓ ସକାଳେ ଆମ କଲେଜର ଫାର୍ମାକୋଲଜି ବିଭାଗର ଜୀବଜନ୍ତୁଙ୍କ ତତ୍ତ୍ୱ ନେଇ ଗୃହାଳ ସଫା ପ୍ରଭୃତି କାର୍ଯ୍ୟଦ୍ୱାରା କିଛି ରୋଜଗାର ମଧ୍ୟ କରେ । ମୁଁ ରିବ୍ ସଙ୍ଗେ ତା' ଘରକୁ ଯାଇ ତାର ସୁଖୀ ପରିବାରଟିକୁ ଦେଖି ଆସିଥିଲି । ତା'ର ପିତାମାତାଙ୍କ କଥା ପଚାରିବାରୁ ପିତାମାତା ସ୍ୱଚ୍ଛଳ ଓ ଧନୀ ଜୀବନଯାପନ କରୁଥିବା କହି ତାଙ୍କ ଯୋଗୁଁ ସେ ନିଜ ଗୋଡ଼ରେ ଠିଆ ହୋଇ ମଣିଷ ହୋଇ ପାରିଲା ବୋଲି ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଥିଲା । ସେ ସେମାନଙ୍କ ପ୍ରତି ଆଦୌ ବିମୁଖ ନ ଥିଲା । ତାହା ଶୁଣି ମୋର ଫକୀରମୋହନଙ୍କ ଡାକମୁନ୍‌ସୀ କଥା ମନେପଡ଼ିଲା । ଆମର କେତେ ଯେ ବାପାମା' ପିଲାଙ୍କୁ ମଣିଷ କରିବାକୁ ଯାଇ ସର୍ବସ୍ୱାନ୍ତ ହୋଇ ଶେଷ ଜୀବନରେ ସନ୍ତାନଙ୍କଠାରୁ ଦୁର୍ବ୍ୟବହାର ପାଉଛନ୍ତି, ତା'ର କଳନା ନାହିଁ ।

### ଘରବାହୁଡ଼ା ମନ :

ମୋର ପାଠ ସରିଆସିଲା । ଗବେଷଣା ଉପରେ ଲେଖା ସନ୍ଦର୍ଭ ମଧ୍ୟ ପ୍ରସ୍ତୁତ ହୋଇଗଲା । ମୋର ଆସିଷ୍ଟାଣ୍ଟ ପ୍ରଫେସର ଡକ୍ଟର ରବର୍ଟ ମାଓରୀ ମୋତେ କହିଥିଲେ, 'ତୁମେ ଏ ଯେ ନୂତନ ପ୍ରକାରର ଗବେଷଣା ଆରମ୍ଭ କରିଛ, ତାହା ଅନୁଧ୍ୟାନ କଲେ ସେଥିରୁ ଆଉ ବହୁ ନୂତନ ତଥ୍ୟ ବାହାରିବ । ଜୀବନ ସାରା ତୁମେ ସେଥିରେ ଲାଗି ରହିଲେ, ଜଣେ ଉଚ୍ଚ ବୈଜ୍ଞାନିକର ସ୍ଥାନ ଲାଭ କରି ପାରିବ ।' କିନ୍ତୁ ଭାରତ ଫେରି ତାଙ୍କ କଥା ରକ୍ଷା କରି ସେପରି ଗବେଷଣା କରିପାରିବାର ସୁବିଧା ସୁଯୋଗ ମିଳିଲା ନାହିଁ । ମୁଁ ପ୍ରଫେସର ପଦରୁ ଅବ୍ୟାହତି ନେବାର କେତେବର୍ଷ ପରେ ପୁଣି ଆମେରିକା ଯାଇଥିଲି । ମୋର ବହୁ ଶିକ୍ଷା ଗୁରୁଙ୍କର ତିରୋଧାନ ଘଟି ସାରିଥିଲା । କିନ୍ତୁ ଡକ୍ଟର ମାଉରୀ ତଥାପି ତାଙ୍କ ଶିକ୍ଷକ ପଦରେ ରହି ଗବେଷଣା ରତ ଥିଲେ । ସେ ମୋ କଥା ଶୁଣି କହିଲେ, 'ତୁମେ ଏତେ ଶୀଘ୍ର କିପରି କାର୍ଯ୍ୟରୁ ଅବ୍ୟାହତି ନେଲ ? ତୁମ ପୁରୁଣା ଗବେଷଣା କେତେ ଦୂର ଯାଇଛି ?' ସେ ଦେଶରେ ପ୍ରଫେସରଙ୍କ ବାଧ୍ୟତାମୂଳକ

ଅବ୍ୟାହତି ନାହିଁ, ଅତି ବୃଦ୍ଧ ହୋଇ କାର୍ଯ୍ୟ କରିବା ପାଇଁ ଅକ୍ଷମ ହେଲେ ସେମାନେ ଆପେ ଆପେ ଅବ୍ୟାହତି ନେଇଥାଆନ୍ତି । ମୋ ପକ୍ଷରେ ଆମ ପରିସ୍ଥିତି ତାଙ୍କୁ ବୁଝାଇବା ସହଜ ନଥିବାରୁ ମୁଁ ନିରବ ରହିଥିଲି ।

ମୁଁ ଆମେରିକାରେ ସ୍ନାତକୋତ୍ତର ପରୀକ୍ଷା ଦେଇ ସାରି ଦେଶକୁ ଫେରିବାକୁ ଉଦ୍ୟତ ହେଲାବେଳେ 'ଭାରତରୁ ବୁଦ୍ଧି ସବୁ ବିଦେଶକୁ ବୋହିଯାଉଛି' ବୋଲି ଏକ ରାଜନୈତିକ ହୋ ହଲ୍ଲା ଉଠୁଥିଲା । ବିଦେଶରେ ତାଲିମ ପାଉଥିବା ଛାତ୍ରମାନେ ସେଠାରେ ରହିନଯାଇ ଭାରତ ଫେରି ଆସିଲେ ସେମାନଙ୍କୁ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦିଆଯିବ ବୋଲି ଶାସକ ଓ ମନ୍ତ୍ରୀମାନେ ପ୍ରଚାର କରୁଥିଲେ । ତେଣୁ ମୁଁ ଫେରିବା ପୂର୍ବରୁ ଓଡ଼ିଶାର ସ୍ୱାସ୍ଥ୍ୟ ବିଭାଗର ବରିଷ୍ଠ ମନ୍ତ୍ରୀଙ୍କୁ ମୋ ଫେରୁଥିବା ବିଷୟ ଜଣାଇବାରୁ ମୁଁ ଫେରିବା ସଙ୍ଗେ ସଙ୍ଗେ ମୋତେ ବିଶେଷ ସୁବିଧା ସୁଯୋଗ ମିଳିବ ବୋଲି ସେ ଜଣାଇଥିଲେ । ପରୀକ୍ଷା ସରିଥିଲା, ପରୀକ୍ଷାରେ ମୋର ଭଲ ହୋଇଥିବାର ଧାରଣା ମଧ୍ୟ ହୋଇଥିଲା । ତେଣୁ ମୁଁ ପରୀକ୍ଷା ଫଳ ବାହାରିବାକୁ ଅପେକ୍ଷା ନ କରି ଦେଶକୁ ଫେରିବା ପାଇଁ ବାହାରି ପଡ଼ିଲି । ମୋ ପରୀକ୍ଷା ସରିବା ସଙ୍ଗେ ସଙ୍ଗେ କେତେକ ଡାକ୍ତରୀ ଅନୁଷ୍ଠାନରୁ ପ୍ରଚୁର ଅର୍ଥର ଦରମାରେ ସେମାନଙ୍କ ଅନୁଷ୍ଠାନରେ ଯୋଗଦେବା ପାଇଁ ଡାକରା ଆସିଲା । ଆମେରିକା ଯାଇଥିବା ଆମ ତିନି ବନ୍ଧୁଙ୍କ ଭିତରୁ ଉଦୟନାଥ ଦାସ ବରମିଙ୍ଗହାମ ଅନୁଷ୍ଠାନରେ ମୋ ସଙ୍ଗେ ଏକାଠି ରହୁଥିଲେ । ତାଙ୍କର ଆଉ ବର୍ଷେ ପଢ଼ି ଡ଼ିଗ୍ରୀ ହାସଲ କରିବାକୁ ଥିବାରୁ ମୁଁ ଅନ୍ତତଃ ଆଉ ବର୍ଷେ ସେଠାରେ ରହି କିଛି ରୋଜଗାର କରିସାରି ତାଙ୍କ ସଙ୍ଗେ ଏକାଠି ଫେରିବା ପାଇଁ ପ୍ରବର୍ତ୍ତାଇଲେ । ମୁଁ ଆଉ ରହିପାରିବା ସମ୍ଭବ ନୁହେଁ ବୋଲି ତାଙ୍କୁ ବୁଝାଇବାରେ ସେ ଅଶ୍ରୁଳ ନୟନରେ ମୋତେ ବିଦାୟ ଦେଲେ । (ଅବଶ୍ୟ ପରେ ସେ ଫେରି ନ ଆସି ଆମେରିକାରେ ଡାକ୍ତରୀ କରି ରହିଗଲେ ।)

ନିୟୁୟର୍କ ପୋର୍ଟରୁ ମୁଁ ଠିକ୍ କରିଥିବା ଜାହାଜଟି ଛାଡ଼ିବାକୁ ଡ଼େରିଥିଲା । ତେଣୁ ମୋ ଜିନିଷପତ୍ର ସବୁ ଗୋଟିଏ କମ୍ପାନୀ ଜରିଆରେ ନିୟୁୟର୍କ ପୋର୍ଟକୁ ପଠାଇଦେଇ ବରମିଙ୍ଗହାମ୍‌ଠାରୁ ନିୟୁୟର୍କ ଭିତରେ ଥିବା ମୋର ଜଣାଶୁଣା ବନ୍ଧୁମାନଙ୍କୁ ସାକ୍ଷାତ କରି ସେମାନଙ୍କଠାରୁ ବିଦାୟ ଘେନି ଯିବାକୁ ସ୍ଥିର କଲି । ଚାଟାନୁଗ, ୱାଶିଂଟନ, ଫିଲାଡେଲଫିଆ ପ୍ରଭୃତି ସହରରେ ରହି ନିୟୁୟର୍କରେ ଆସି ପହଞ୍ଚିଲି । ସେଠାରେ ମୋର ଅନ୍ୟ ବନ୍ଧୁ ଗାନ୍ଧି ଆଦିତ୍ୟ ନାରାୟଣ ବର୍ମନ (ଏ ଆଡ଼ିସନ ବର୍ମନ) ତାଙ୍କ ଆମେରିକାନ ସହଧର୍ମିଣୀଙ୍କ ସହିତ ମୋତେ ଦେଖାକଲେ ।

**ପୁଣି ଜଳଯାତ୍ରୀ:**

ଶିକ୍ଷକ ଓ ଛାତ୍ରମାନଙ୍କୁ ଗ୍ରୀଷ୍ମାବକାଶରେ ଆମେରିକାରୁ ୟୁରୋପକୁ ଆଣୁଥିବା 'ସେଭେନ ସି' ନାମକ ଯାତ୍ରୀବାହୀ ଜାହାଜରେ ମୁଁ ଟିକେଟ କରିଥିଲି । ମୁଁ କ୍ୟାବିନ

ମେରୀରେ ଗଲାବେଳକୁ ଯେଉଁ ବାଟକୁ ପାଞ୍ଚଦିନ ଲାଗିଥିଲା ସେଥିରେ ଧୀରେ ଧୀରେ ଆସିବାକୁ ଦଶଦିନ ଲାଗିଲା । ଥରେ ଦେଶକୁ ଫେରିଗଲେ ପୁଣି ଆସି ୟୁରୋପର ଦେଶମାନଙ୍କୁ ଦେଖିବା ସମ୍ଭବ ନ ଥିବାରୁ, ଅନେକ ଦେଶର ବନ୍ଦରରେ ରହି ରହି ଆସୁଥିବା ଏକ ମାଲବୋଝେଇ ଜାହାଜର ସନ୍ଧାନ ନେଇଥିଲି । ସେହି 'ଟ୍ରିଟନ' ନାମକ ଜାହାଜଟି ନରୱେରୁ ବାହାରି ବମ୍ବେ ଦେଇ ସିଂଘାପୁର ଯାତ୍ରା କରିବାର ଥିଲା । ସେଥିରେ ଯାତ୍ରୀମାନଙ୍କ ପାଇଁ ଦଶ ବାରଟି ସିଟ୍ ରହିଥିଲା । ମୁଁ ବିଲାତରେ ପହଞ୍ଚିବା ପରେ ହଲାଣ୍ଡ ଯାତ୍ରା କରି ନରୱେରୁ ଆସୁଥିବା ସେ ଜାହାଜଟି ଧରିଲି । ତାହା ହଲାଣ୍ଡରେ ୭ ଦିନ ରହୁଥିବାରୁ, ମୁଁ ସେଥିରେ ମୋ ଜିନିଷପତ୍ର ରଖାଇ ରଟରଡ଼ାମ ସହରରେ ଗୋଟିଏ ହୋଟେଲରେ ରହି ୭ଦିନ କାଳ ସେ ଦେଶକୁ ବୁଲି ଦେଖିଲି । ସେ ସହରଟି ସମୁଦ୍ର ପତନଠାରୁ ତଳେ ଥିବାରୁ ସେଥିରେ ୭୫୦ଟି କେନାଲ ରହିଛି । ସେହି କେନାଲର ଜଳପଥରେ ସହରର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇହୁଏ । ଗ୍ରୀଷ୍ମଋତୁରେ ସେ ଦେଶର ବିଲମାନଙ୍କରେ ବହୁ ପ୍ରକାର ଫୁଲ ଚାଷ ହୋଇ ସମଗ୍ର ଦେଶଟି ଅତି ସୁନ୍ଦର ଦେଖାଯାଏ । ସେହି ଦେଶର ବନ୍ଦରମାନଙ୍କରୁ ଜାହାଜ ଦ୍ୱାରା ଫୁଲ ସବୁ ଅନ୍ୟ ଦେଶକୁ ରପ୍ତାନୀ ହୁଏ ।

ଆମ ଜାହାଜଟିରେ ଖୁବ୍ କମ୍ ଯାତ୍ରୀ ଥିବାରୁ ଯାତ୍ରୀବାହୀ ଜାହାଜଙ୍କ ପରି ସେଥିରେ କେହି ନିଯୁକ୍ତ ଡାକ୍ତର ନ ଥିଲେ । ମୁଁ ସେ ଜାହାଜର ଅବୈତନିକ ଡ଼ାକ୍ତର ହୋଇଗଲି । କାପ୍‌ଟେନ୍‌ଙ୍କ ସଙ୍ଗେ ମୋର ବନ୍ଧୁତା ବଢ଼ିଲା । ଜାହାଜଟି ମାଲ କାରବାର ପାଇଁ ଅନ୍ୟ ବନ୍ଦରରେ ରହିଲାବେଳେ ସେଠାରେ ବଡ଼ ବଡ଼ ବ୍ୟବସାୟୀଙ୍କୁ ମୁଁ ସେ ଜାହାଜର ଡ଼ାକ୍ତର ବୋଲି କାପଟେନ୍ ଚିହ୍ନାଇ ଦେବାରେ ସେମାନେ ଆଦରକରି ମୋତେ ଗାଡ଼ିରେ ନେଇ ଭଲ ହୋଟେଲରେ ରଖାଇ, ନାନା ଦର୍ଶନୀୟ ସ୍ଥାନ ବୁଲାଇ ଜାହାଜ ଛାଡ଼ିଲା ବେଳକୁ ଆଣି ଜାହାଜରେ ପହଞ୍ଚାଇ ଦେଇଯାଆନ୍ତି । ଯେଉଁ ଭୂମଧ୍ୟ ସାଗରୀୟ ଫଳ ପ୍ରଭୃତି କାପ୍‌ଟେନ୍‌ଙ୍କ ପାଖକୁ ଭେଟି ଆସେ, ସେଥିରେ ମଧ୍ୟ ମୋତେ କିଛି ଉପହାର ମିଳେ । ବେଲଜିଅମ, ପର୍ତ୍ତୁଗାଲ, ଫ୍ରାନ୍‌ସର ମାର୍ସାଲିସ (ଜାହାଜରୁ ଡେଇପଡ଼ି ସମୁଦ୍ରରେ ପହଁରି ପହଁରି ପୋଲିସ ଗୋଡ଼ାଇବା ସତ୍ତ୍ୱେ ବୀର ବିପ୍ଳବୀ ସଭରକର ମାର୍ସାଲିସରେ ପହଞ୍ଚି ଫ୍ରେଞ୍ଚ ପୋଲିସଙ୍କ ପାଖରେ ଆତ୍ମସମର୍ପଣ କରିଥିଲେ ।) ଇଟାଲିର ଜେନୋଆ, ଆଲେକ୍‌ଜେଣ୍ଡ୍ରିଅସ, କାଇରୋ ପ୍ରଭୃତିରେ ରହି ରହି ପ୍ରାୟ ମାସକ ପରେ ମୁଁ ବମ୍ବେ ବନ୍ଦର ନିକଟରେ ପହଞ୍ଚିଲି ।

**ବମ୍ବେ ଅନୁଭୂତି :**

ସେ ଜାହାଜରୁ ଗୋଟିଏ ବଡ଼ ମୋଟର ଲଞ୍ଚ ଯୋଗେ ମୁଁ ଓ ଅନ୍ୟ କେତେ ଜଣ ଯାତ୍ରୀ ବମ୍ବେ ବନ୍ଦରକୁ ଆସିଲୁ । ମୋ ଆମେରିକା ରହଣିର ସମସ୍ତ ଜିନିଷପତ୍ର

ବହୁତଗୁଡ଼ିଏ ବାକ୍ସରେ ମୁଁ ସାଙ୍ଗରେ ଆଣିଥିବାରୁ କଷ୍ଟମ ପାଶ୍ କରି ବାହାରକୁ ଆସୁ ଆସୁ ଡେରି ହେଲା । ମୁଁ ଏତେଗୁଡ଼ାଏ ଜିନିଷ ସଙ୍ଗରେ ନେଇ ଭଲରେ ଭଲରେ କଟକରେ କିପରି ପହଞ୍ଚିବି ତାହା ମୋର ଚିନ୍ତା ହେଲା । ଆମେରିକାରେ ମାସକ ଆଗରୁ ମୁଁ ଗୋଟିଏ କମ୍ପାନୀ ଦ୍ୱାରା ମୋ ଜିନିଷପତ୍ର ସବୁ ଚାବି ସହିତ ଜାହାଜରେ ରଖାଯିବା ପାଇଁ ନିୟୁୟର୍କ ପଠାଇ ଦେଇଥିଲି । ତାହା ଜାହାଜର ଷ୍ଟୋର ରୁମରେ ଗଚ୍ଛିତ ଥିବାର ଜାହାଜ କର୍ତ୍ତୃପକ୍ଷଙ୍କଠାରୁ ଶୁଣିଲି । ସେଥିରୁ କାଳେ କଅଣ ହଜିହାଜି ଯାଇଥିବ ବୋଲି କହିବାରୁ କର୍ତ୍ତୃପକ୍ଷ କହିଲେ ଆଗରୁ କେବେ ସେପରି ହୋଇନାହିଁ । ତୁମ ଜିନିଷର ଯଦି ସେପରି କିଛି ଘଟେ ତେବେ ତୁମ ନାମ ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୋଇ ରହିବ । ଜାହାଜ ଚାଲିବାର କିଛି ଦିନ ପରେ ସେ ଷ୍ଟୋର ଖୋଲିଲା ମୁଁ ଦେଖିଲି ମୋ ବାକ୍ସ ସବୁ ସଜା ହୋଇରହିଛି ଓ ତା' ଦେହରେ ଚାବିଗୁଡ଼ିକ ଓହଳିଛି । କିନ୍ତୁ ଭାରତରେ ତାହା ହେବା ସମ୍ଭବ ନ ଥିଲା । ମୁଁ ମୋ ଜିନିଷତକ କେରଳ ଯାଇଥିବା ମୋର ଜଣେ ନରଉଏବାସୀ ସାଥୀଙ୍କୁ ଜଗାଇ ଦେଇ ସେଠାର ବଜାରରୁ ଯାଇ ମୋର ଡ଼ଲାର ଚେକକୁ ଟଙ୍କାରେ ଭଙ୍ଗାଇ ଆଣିଲି । ବନ୍ଧୁଙ୍କଠାରୁ ବିଦାୟ ନେଇ ଟାକ୍ସିରେ ଜିନିଷପତ୍ର ଲଦି ରେଲୱେ ଷ୍ଟେସନକୁ ଯାଇ କଟକ ଉଦ୍ଦେଶ୍ୟରେ ଜିନିଷପତ୍ର ସବୁ ଗୁଡ୍‌ସ ଟ୍ରେନରେ ବୁକ୍ କରିଦେଲି । ମୁଁ ମୋ ପାଇଁ ଫାଷ୍ଟକ୍ଲାସ ଟିକଟଟିଏ କାଟି ରିଜରଭେସନ କାଉଣ୍ଟରରେ ଗାଡ଼ିରେ ମୋର ସ୍ଥାନ ରିଜରଭେସନ ପାଇଁ ଟିକେଟଟି ଦାଖଲି କଲି । ବହୁ ସମୟ ଠିଆ ହେବା ପରେ ମୁଁ ସେ ରେଳ କର୍ମଚାରୀଙ୍କୁ ମୋ ଟିକଟ ମାଗିବାରୁ ସେ କହିଲେ କି ଟିକେଟ ? ଆପଣ କୌଣସି ଟିକେଟ ମୋତେ ଦେଇ ନାହାନ୍ତି । ପ୍ରମାଣ ନ ଥିବାରୁ ମୁଁ ମନ ମାରି ସେଠାରୁ ଆସି ପକେଟ ଦରାଣ୍ଡିଲି । ଫାଷ୍ଟକ୍ଲାସ ଟିକଟ ପାଇଁ ମୋ ପାଖରେ ଆଉ ପଇସା ନ ଥିଲା । ମୁଁ ବାଧ୍ୟ ହୋଇ ଥାର୍ଡ଼ କ୍ଲାସ ଟିକେଟଟିଏ କରି ଗାଡ଼ିରେ ଉଠି କଲିକତା ଅଭିମୁଖେ ଯାତ୍ରା କଲି ।



# ବିଦେଶ-ଶିକ୍ଷା ପରେ

**ସ୍ୱଗ୍ରାମକୁ ଗମନ :**

ମୁଁ କଲିକତାରୁ ଏକସ୍‌ପ୍ରେସ ଯୋଗେ କଟକ ବାହାରିଥିଲି କିନ୍ତୁ ବାଲେଶ୍ୱର ଷ୍ଟେସନରେ ମୋର ସହଧର୍ମିଣୀଙ୍କ ବଡ଼ ଭାଇ ଡେପୁଟି ସତ୍ୟାନନ୍ଦ ମିଶ୍ର ମୋତେ ଅଟକାଇନେଲେ । ତାଙ୍କ ଘରେ ମୋ ଶାଶୁ ମଧ ରହୁଥିଲେ, ମୁଁ ସେମାନଙ୍କ ଗହଣରେ କିଛି ସମୟ ରହି ସନ୍ଧ୍ୟାରେ ମାଡ୍ରାସ ମେଲ୍‌ରେ ଉଠିଲି ।

ମୋର ଶ୍ୱଶୁର ଶ୍ରୀ ନରସିଂହ ରଥ, ଦେଢ଼ଶାଶୁ, ମୋ ସହଧର୍ମିଣୀ ଓ ପିଲାକୁ ଆମ ଗ୍ରାମରୁ ତାଙ୍କ କଟକ ଘରକୁ ଅଣାଇ ମୋତେ ଅପେକ୍ଷା କରିଥିଲେ । ମୁଁ ଦିନରେ ପହଁଚିବି ମନେ କରି ମୋତେ ଥଟ୍ଟା କରିବା ପାଇଁ ମୋ ପିଲା ସାଙ୍ଗର ଆଉ ଗୁଡ଼ିଏ ସମବୟସ୍କ ପିଲା ଆଣି ମୁଁ ମୋ ପିଲାକୁ ଚିହ୍ନିପାରିବି କି ନାହିଁ ପରୀକ୍ଷା କରିବାକୁ ପ୍ରସ୍ତୁତ ଥିଲେ । ମୁଁ ମଧ ରାତ୍ରିରେ ଆସି ପହଞ୍ଚିବାରୁ ତାଙ୍କର ସେ ଯୋଜନା ଫେଲ ମାରିଥିଲା । ମୋ ଝିଅ ମଧ ଶୋଇ ପଡ଼ିଥିଲା । କଟକ ରେଳ ଷ୍ଟେସନରେ ରେଭେନ୍‌ସା କଲେଜରେ ପଢୁଥିବା ମୋର ସାନ ଶ୍ୟାଳକ ଶ୍ରୀ ଶଚ୍ଚିଦାନନ୍ଦ ମିଶ୍ର ମୋତେ ସ୍ୱାଗତ ଜଣାଇଥିଲେ । ମୁଁ ଶ୍ୱଶୁରଙ୍କ ଘରେ ପହଞ୍ଚିବା ସଙ୍ଗେ ସଙ୍ଗେ ମୋ ଝିଅ ନିଦରୁ ଉଠାହୋଇ ଆସିଲା । ନନା ଆସିଛି ବୋଲି କହିବାରୁ ସେ ମୋ କାଖକୁ ଡେଇଁପଡ଼ି ନନା କାଇଁ ବୋଲି ପଚାରିଲା । ନନା କ'ଣ ବୋଲି ମୁଁ ପଚାରିବାରୁ ସେ କାନ୍ଥରେ ଟଙ୍ଗା ହୋଇଥିବା ମୋ ଫଟୋକୁ ଦେଖାଇ ନନା ବୋଲି ଦେଖାଇଲା । ମୁଁ ସେପରି ଗୋଟିଏ ଫଟୋ ଆଣିଥିବି ବୋଲି ସେ ବିଚାରିଥିଲା କାରଣ ସେ ପର୍ଯ୍ୟନ୍ତ ସେ ମୋତେ ସ୍ୱଶରୀରରେ ଦେଖିବାର ସୁଯୋଗ ପାଇନଥିଲା ।

ପରଦିନ ପିଲାପିଲିଙ୍କୁ ଧରି ଟ୍ରେନରେ ମୁଁ ଗ୍ରାମକୁ ଯାତ୍ରା କଲି । ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇଲି । ସେଠାରୁ ଆମ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ପ୍ରାୟ ଦୁଇ ମାଇଲ । ମୁଁ ମୋ ସହଧର୍ମିଣୀ ଓ ପିଲାଙ୍କୁ ଶଗଡ଼ରେ ବସାଇ ଦେଇ ଚାଲି ଚାଲି ଯାଉଥିବାବେଳେ ବାଟରେ ମୋର ଚିହ୍ନା ପରିଚିତ ଲୋକଙ୍କ ମଧରୁ କେତେକ ମୋତେ ଦେଖି ମୋ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ନିରୀକ୍ଷଣ କରୁଥିଲେ । ମୁଁ ସେ ଅଞ୍ଚଳର ପ୍ରଥମ ଆମେରିକା ଫେରନ୍ତା ଡାକ୍ତର । ଆଜିକାଲି ପରି କଳାକାର, ବ୍ୟବସାୟୀ ଓ ସାଧାରଣ ଲୋକମାନେ ବିଲାତ ଆମେରିକା ଯିବା ଆସିବା କରିବା ସାଧାରଣ ନ ଥିଲା । ଆମ ଗ୍ରାମ ନିକଟରେ ଓଡ଼ିଶାର ପ୍ରଥମ ବାରିଷ୍ଟର ବିଶ୍ୱନାଥ ମିଶ୍ର ବିଲାତରୁ ବାରିଷ୍ଟରୀ ପାଶ୍ କରି ଆସି ଧର୍ମ ନଷ୍ଟ ପାଇଁ

ପ୍ରାୟଶ୍ଚିତ କରିଥିଲେ । ଅବଶ୍ୟ ମୋ ବେଳକୁ ଆଉ ପ୍ରାୟଶ୍ଚିତ କରିବା ପ୍ରୟୋଜନ ନ ଥିଲା ।

ମୁଁ ବରଷକ ପାଇଁ କହି ଆମେରିକା ଯାଇଥିଲି । ମୋର ଡେରି ହେବାରୁ ମୁଁ କୌଣସି ବିଦେଶୀ ମହିଳାର ପାଲରେ ପଡ଼ି ସେଠାରେ ରହିଗଲି ବୋଲି ଗୁଜବ ମଧ ପ୍ରଚାରିତ ହୋଇଥିଲା । ମୁଁ ଆମ ଗ୍ରାମ ମୁଣ୍ଡରେ ପହଞ୍ଚିଲା ବେଳକୁ ଜଣେ ବୃଦ୍ଧ ଦଉଡ଼ିଆସି ମୋତେ କୁଣ୍ଢାଇ ପକାଇ ବାଷ୍ପ ଗଦ୍ ଗଦ୍ କଣ୍ଠରେ କହିଲେ ''ବାପା ! ତୋତେ ଆଉ ଦେଖି ପାରିବି ବୋଲି ମୋର ଆଶା ନ ଥିଲା । ମୁଁ ଘରେ ପହଞ୍ଚିଲା ବେଳକୁ ମୋର ପିତା ଓ ଗ୍ରାମର କେତେକ ଲୋକ ମୋତେ ଅପେକ୍ଷା କରି ରହିଥିଲେ । ସେମାନଙ୍କ ସଙ୍ଗେ ଆଳାପ ଭିତରେ ଆମ ହରଚଣ୍ଡୀଙ୍କ ସେବକ ଭରତ ମହାପାତ୍ରେ ଆମେରିକା କେଉଁଠି ଓ ତାହା କେତେ ଦୂର ବୋଲି ପଚାରିବା ସଙ୍ଗେ ସଙ୍ଗେ ତାଙ୍କର ଭୌଗୋଳିକ ଜ୍ଞାନର ସ୍ୱଳ୍ପତା ଦୃଷ୍ଟିରୁ ଦିଲ୍ଲୀର କେତେ ଷ୍ଟେସନ ଆଗରୁ ଆମେରିକା ପଡ଼େ ବୋଲି ପଚାରିବାରୁ ସେଠାରେ ହସ ବୃଷ୍ଟି ହେଲା ।

**କ୍ଷମତା ରାଜନୀତି ପ୍ରତ୍ୟାଖ୍ୟାନ :**

ମୁଁ ଆମେରିକା ଯିବାର ଅବ୍ୟବହିତ ପୂର୍ବରୁ ପିତାଙ୍କର ନିର୍ବାଚନ ପ୍ରଚାରରେ ଯୋଗଦେଇ ଏକ କର୍ମୀ ସଙ୍ଗଠନ ଗଢ଼ିଥିଲି । ମୋର ଗ୍ରାମରେ ରହଣୀ ଭିତରେ ସେହି କର୍ମୀ ସଂଗଠନର ଏକ ବୈଠକ ଆମ ଘରେ ବସିଲା । ମୁଁ ଆମେରିକାରେ ଥିବାବେଳେ ପିତାଙ୍କର ପକ୍ଷାଘାତ ହୋଇଥିବାରୁ ଆସନ୍ତା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ପାଇଁ ମୁଁ ସେ ସଂଗଠନର ଭାରନେବା ପାଇଁ ପ୍ରତିନିଧିମାନେ ପିତାଙ୍କ ଅନୁମୋଦନରେ ମୋତେ ଅନୁରୋଧ କଲେ । ମୋର ରାଜନୀତିରେ ଯୋଗ ଦେବାର ଆକାଂକ୍ଷା ନ ଥିଲା । କ୍ଷମତା ରାଜନୀତି ପ୍ରତି ମୋର ବିତୃଷ୍ଣା ଥିଲା । ମୁଁ ସେମାନଙ୍କୁ କହିଲି ନିର୍ବାଚନରେ ପିତାଙ୍କ ପରି ଜଣେ ତୃଙ୍ଗ ଦେଶସେବୀଙ୍କୁ ସାହାଯ୍ୟ କରିବା ଓ ନିଜେ ନିର୍ବାଚନ ଲଢ଼ିବାରେ ବହୁ ପ୍ରଭେଦ ରହିଛି । କ୍ଷମତା ରାଜନୀତିର ତିକ୍ତତା ମୋତେ ଅଜଣା ନାହିଁ । ଦେଶ ମୁକ୍ତି ପାଇଁ ଲଢ଼େଇ-ରାଜନୀତିରେ ତ୍ୟାଗ ରହିଥିଲା, କିନ୍ତୁ କ୍ଷମତା ରାଜନୀତି, ଭୋଗ, ସ୍ୱାର୍ଥରେ ଜଡ଼ିତ ହୋଇ ପଡ଼ିଛି । ମୁଁ ତା'ଠାରୁ ଦୂରରେ ରହିବା ପାଇଁ ପ୍ରଥମ ସ୍ୱାଧୀନତା ଦିବସଠାରୁ ଶପଥ ନେଇଥିଲି । ରୋଗୀସେବା ଓ ଚିକିତ୍ସାବିଦ୍ୟାର ଅଧିକ ଜ୍ଞାନାର୍ଜନ ପାଇଁ ଆମେରିକା ଯାଇଥିଲି । ବର୍ତ୍ତମାନ ଡାକ୍ତରୀ ବିଦ୍ୟାରେ ଶିକ୍ଷାଦାନ କରିବା ମୁଁ ମୋର କର୍ତ୍ତବ୍ୟ ବୋଲି ମନେ କରୁଛି । ତା'ପରେ ମୋର ଆବିଳ ରାଜନୀତିରେ ପ୍ରବେଶର ପ୍ରଶ୍ନ ଉଠୁନାହିଁ । ଆପଣଙ୍କ ସାହଚର୍ଯ୍ୟରେ ହୁଏତ ମୁଁ ନିର୍ବାଚିତ ହୋଇ ମନ୍ତ୍ରୀ ହୋଇପାରିବି । କିନ୍ତୁ ଦଳ ନୀତିରେ ବିରୋଧିଦଳମାନେ ମୋର କୁତ୍ସାରଚନା କରିବେ ।

ମୁଁ କ୍ଷମତା ରାଜନୀତିରେ ନ ପଶି ରୋଗୀ ସେବା ଓ ଅଧ୍ୟାପନାରେ ସୁନାମ ଅର୍ଜନ କରିବା ସଙ୍ଗେ ସଙ୍ଗେ ଯଥେଷ୍ଟ ଅର୍ଥୋପାର୍ଜନ କରି ସୁଖ ସମୃଦ୍ଧିରେ ଜୀବନଯାପନ କରିପାରିବି । ଲୋକେ ମୋର ପ୍ରଶଂସା କରି କହିବେ ଅମୁକ ବାବୁ ଜଣେ ଭଲ ନାମଜାଦା ଡାକ୍ତର । କିନ୍ତୁ ରାଜନୀତିରେ ପଶିଲେ ମୁଁ ଜଣେ ଦୁର୍ନୀତିଗ୍ରସ୍ତ ଲୋକ ବୋଲି ପ୍ରଚାର କରିବାକୁ ଅନ୍ୟମାନେ ପଶ୍ଚାତ୍‌ପଦ ହେବେନାହିଁ ।

ମୋର ସେପରି ଦୃଢ଼ ମନୋଭାବ ଦେଖି ସେହି କର୍ମୀମାନେ ମୁଁ ନାସ୍ତିବାଣୀ ଶୁଣାଇବା କଥା ମୋର ପିତାଙ୍କୁ ଜଣାଇଲେ । ମୋର ପିତା ବୃଦ୍ଧ ଓ ରୁଗ୍‌ଣ ହୋଇଯାଇଥିଲେ, ତାଙ୍କର କେତେକ ଅପୂର୍ଣ୍ଣ ରାଜନୈତିକ କାର୍ଯ୍ୟ ମୋ ଦ୍ୱାରା କରାଇବାକୁ ଆଶାପୋଷଣ କରିଥିଲେ । ତାଙ୍କର ସେ ସାଂଗଠନିକ କାର୍ଯ୍ୟ ଉପରେ ପୂର୍ଣ୍ଣ ଆସ୍ଥା ଥିଲା । ଗତ ନିର୍ବାଚନରେ ତାଙ୍କ ସାଥୀ ଶ୍ରୀଗଙ୍ଗାଧର ଦାଶ ଚୌଧୁରୀ ହାରିଯିବା ଶୁଣି ସେ ପ୍ରକାଶ କରିଥିଲେ, ଚୌଧୁରୀଙ୍କର ବିକ୍ରମ ପରି ପୁଅଟିଏ ଥିଲେ ସେ ହାରିନଥାନ୍ତେ । ମୁଁ ଆମେରିକାରୁ ଫେରି କଟକ କିମ୍ବା ସାକ୍ଷୀଗୋପାଳରେ ଚିକିତ୍ସା କେନ୍ଦ୍ର ଖୋଲିବା ସଙ୍ଗେ ସଙ୍ଗେ ରାଜନୈତିକ ବିରୋଧକୁ ସମ୍ମୁଖୀନ କରି ଲୋକ ପ୍ରତିନିଧି ଦାୟିତ୍ୱ ତୁଲାଇପାରିବି ବୋଲି ତାଙ୍କର ମୋ ଉପରେ ଆସ୍ଥା ଥିଲା । ସେଥିରୁ ମୁଁ ପଛଘୁଞ୍ଚା ଦେବାଟା ସେ ପସନ୍ଦ କରିନଥିଲେ । ସେ ମୋତେ ଡକାଇ କହିଲେ, 'ମୁଁ ଦେଖୁଛି, ଆଜିକାଲିର ଯୁବକ ମାତ୍ରେ ଗୋଟିଏ ଚାକିରି ବା ନିର୍ଭରଶୀଳ ରୋଜଗାରର ପନ୍ଥା ନ ଧରିଲେ ତାଙ୍କର ସଂସାରରେ ଚଳି ଲୋକସେବା କରିବା ପାଇଁ ଦମ୍ଭ ନାହିଁ । ସେଥିପାଇଁ ତୁ ମେଡ଼ିକାଲ କଲେଜରେ ସରକାରୀ ଚାକିରିଟିଏ କରିବା ପାଇଁ ହୁଏତ ବ୍ୟାକୁଳ । ମୋର ଚାକିରି ବା ରୋଜଗାରର କୌଣସି ନିର୍ଦ୍ଦିଷ୍ଟ ପନ୍ଥା ନ ଥାଇ ମଧ୍ୟ ମୁଁ ଅର୍ଥାନଟନକୁ ଖାତିର ନ କରି ଲୋକସେବା କରି ଆସିଛି ।'

ମୁଁ ତାଙ୍କ କଥା ଶୁଣିଲାବେଳେ ଲୋକସେବାରେ ତାଙ୍କ ପରି ବିରାଟ ଦେଶସେବୀ ଓ ବ୍ୟକ୍ତିତ୍ୱ କିପରି ସ୍ୱାର୍ଥାନ୍ୱେଷୀଙ୍କ ଶରବ୍ୟ ହୋଇଥିଲେ ସେ ସମ୍ବନ୍ଧରେ ଭାଷାକୋଷ ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଉକ୍ତିଟି ମନେ ପଡ଼ିଗଲା । ଭାରତର ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ମୁଁ ପୁରୀରୁ କଟକ ଆସୁଥିବା ବେଳେ ଏକା ଟ୍ରେନ୍ ଡ଼ବାରେ ପ୍ରହରାଜଙ୍କ ସହିତ ଆସିବାର ସୁଯୋଗ ପାଇଥିଲି । ସେ ମୋର ପରିଚୟ ପାଇବା ସଙ୍ଗେ ସଙ୍ଗେ ମୋର ପିତା ପଣ୍ଡିତ ନୀଳକଣ୍ଠଙ୍କ ଖବର ପଚାରି ସାରି କହି ପକାଇଲେ 'ନିର୍ଭୀକ ନୀଳକଣ୍ଠର ଚତୁର୍ଦିଗରେ ସ୍ୱାର୍ଥାନ୍ୱେଷୀ ଶତ୍ରୁ ଘେରି ଗଲେଣି । ସେ ଜଣେ ମହାନ କର୍ମୀ ପୁରୁଷ ଯେ କୌଣସି ବିରୋଧକୁ ଭ୍ରୂକ୍ଷେପ ନ କରି ଚାଲିଥାଏ, ବର୍ତ୍ତମାନ ତାକୁ ଲୋକେ ନ ଚିହ୍ନିଲେ ମଧ୍ୟ ଭବିଷ୍ୟତରେ ଚିହ୍ନିବେ ।' ମୁଁ ଭାବିଲି, ନୀଳକଣ୍ଠ ବନବିଦ୍ୟାଳୟର ପ୍ରଧାନ କାଣ୍ଡାରି ଥିଲେ ତାହା ରହିଲା ନାହିଁ । ଓଡ଼ିଶା କଂଗ୍ରେସର କର୍ଣ୍ଣଧାର ରୂପେ ୧୯୩୭ରେ

ନୂତନ ଓଡ଼ିଶାର ନିର୍ବାଚନ ଭାର ନେଇ ନିଃସ୍ୱକଂଗ୍ରେସକୁ ଧନୀ ବିରୋଧୀ ଦଳଙ୍କର ସମ୍ମୁଖୀନ କରାଇ, ଜୟଯୁକ୍ତ କରାଇ ପ୍ରାଦେଶିକ ଶାସନ କଂଗ୍ରେସ ହାତରେ ଦେଲେ. କିନ୍ତୁ ସ୍ୱାର୍ଥାନ୍ୱେଷୀଙ୍କ ଚକ୍ରାନ୍ତରେ କଂଗ୍ରେସ ସଭାପତି ପଦରୁ ବିତାଡ଼ିତ ହେଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଗଠନ ପାଇଁ ବେସରକାରୀ କମିଟିର ସଭାପତି ହୋଇ ତାଙ୍କ ରିପୋର୍ଟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗଢ଼ାହେଲା । ସେ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ାଇ ଓଡ଼ିଶାରେ ଶିକ୍ଷାର ନବ ଜାଗରଣ ଅଣାଇଲେ । ସେ ସବୁରୁ ଫାଇଦା ଅନ୍ୟମାନେ ଉଠାଇଲେ । ନୀଳକଣ୍ଠ ଭାବରେ ବିଷତକ କେବଳ ସେ ପାନ କଲେ । ତଥାପି ତାଙ୍କର ଯୁବ ସୁଲଭ ମନ ଦେଶକର୍ମରେ ଆଗେଇ ଯିବାକୁ ସର୍ବଦା ତତ୍ପର ଥିଲା ।

ପିତା ମୋ ଶିକ୍ଷକତାର ବିରୋଧ କରିବାରୁ, ମୋ ପାଟିରୁ ବାହାରି ପଡ଼ିଲା, ଆପଣ ତ ଶିକ୍ଷକତାରେ ଜୀବନ ଆରମ୍ଭ କରି ମଣିଷ ଗଢୁଥିଲେ, ମୁଁ ଶିକ୍ଷକତା କରି ଡାକ୍ତର ଗଢ଼ିବାରେ ଆପଣ କାହିଁକି ଆପତ୍ତି କରୁଛନ୍ତି ? ସେ ମୋ କଥା ଶୁଣି ଅଗ୍ନିଶର୍ମା ହୋଇଯାଇ କହିଲେ, 'କାହାକୁ କାହା ସଙ୍ଗେ ତୁଳନା କରୁଛୁ । ହଉ ଯା' ଚାକିରି କର । ଆମ ଚଉଦ ପୁରୁଷରେ କେହି ଚାକିରି କରିନାହିଁ, ଯଦି ତୁ ଚାକିରି କରିବାକୁ ଚାହୁଁ ତେବେ ଏହିକ୍ଷଣି ଘରୁ ଚାଲିଯା ।'

ମୁଁ ତାହା ଶୁଣି ନମ୍ର ଭାବରେ କହିଲି, ଆପଣଙ୍କ ପଛରେ ଦେଶ ପାଇଁ ଏତେ ତ୍ୟାଗ ଥାଇ ମଧ ଆପଣ ଏବର କ୍ଷମତା ରାଜନୀତିରେ ପାରି ଉଠୁ ନାହାନ୍ତି । ଚକ୍ରାନ୍ତକାରୀ କ୍ଷମତାଲିପ୍ସୁ ରାଜନୈତିକମାନେ ପଛରୁ ଛୁରୀ ମାରି ଆପଣଙ୍କୁ ଅସ୍ତବ୍ୟସ୍ତ କରି ପକାଉଛନ୍ତି । ଆପଣଙ୍କ ଦେଶଭକ୍ତି ଆଉ ବିରାଟ ତ୍ୟାଗ ଓ ମହାନ୍ ବ୍ୟକ୍ତିତ୍ୱ ଯୋଗୁଁ ଆପଣ ସେ ସମସ୍ତ ବିରୋଧକୁ ସମ୍ମୁଖୀନ କରି ମଧ ଠିଆହୋଇ ରହି ପାରୁଛନ୍ତି । ମୋ ଭଳି ଜଣେ ଅନଭିଜ୍ଞ ବ୍ୟକ୍ତିକୁ ସେମାନେ ମୁହୂର୍ତ୍ତକେ ଫୁଙ୍କି ଉଡ଼ାଇ ଦେବେ । ହଉ ମୁଁ ଯାଉଛି । କିନ୍ତୁ ଯାହା କରିବାକୁ ଯାଉଛି ତାହା ମୋ ପକ୍ଷରେ କରଣୀୟ ବୋଲି ହୁଏତ ପରେ ଆପଣ ଅନୁମୋଦନ କରିବେ ।

**କଟକ ଆଗମନ :**

ମୋର ବିବାହର ୭/୮ ବର୍ଷ ପରେ ଗ୍ରାମରୁ ମୋ ସହଧର୍ମିଣୀ, ଛୋଟପିଲା ଓ ଖଣ୍ଡେ ଦୁଇଖଣ୍ଡ ବାକ୍ସ ଧରି ମୁଁ କଟକ ଚାଲି ଆସିଲି । ଚାକିରି ନାହିଁ, ରୋଜଗାର ନାହିଁ, ପାଖରେ ପଇସା ନାହିଁ, ମୁଣ୍ଡ ଗୁଞ୍ଜିବାକୁ କଟକରେ ନିଜ ଘର ଖଣ୍ଡିଏ ବି ନାହିଁ । ମୋ ପୂର୍ବର ଡ଼ାକ୍ତରୀ ଦୋକାନଟିକୁ ମୋ ଅନୁପସ୍ଥିତିରେ ଜଣେ ପ୍ରକାଶକ ବହି ଜମାକରି ରଖିବାକୁ ଭଡ଼ା ନେଇ ବହି ଲଦି ମୋ ଟେବୁଲଟି ମଧ ଫଟାଇ ଦେଇଛନ୍ତି । ଜିନିଷପତ୍ର ସବୁ ଛିନିଛତ୍ର ହୋଇଯାଇଛି ।

ମୋ ଅନୁରୋଧରେ ପ୍ରକାଶକ ମୋ କ୍ଲିନିକ୍‌ଟିକୁ ଛାଡ଼ିଲେ । ବିନୋଦବିହାରୀରେ ଗୋଟିଏ ଅତି ପୁରୁଣା ଛୋଟ ଘରର ଗୋଟିଏ ମଠ କୋଠରୀ ପରି ଅନ୍ଧକାର କୋଠରୀ ଥିବା ଘର ମାସକୁ ଟ ୫୫ ଙ୍କାରେ ଭଡ଼ା ନେଇ ମୋ ପରିବାର ରହିବାର ବ୍ୟବସ୍ଥା କଲି । ସେହି ଜୀର୍ଣ୍ଣ କୋଠା ଘରର ଛାତ ଦବି ଥିଲା । ଦାଣ୍ଡଘରର ଅଗଣାପଟକୁ କାନ୍ଥ ନ ଥିଲା । ଅଗଣାଟି ଗହୀର ଥିଲା ଓ ସେହିବାଟେ ପଡ଼ୋଶୀଙ୍କ ନଳାପାଣି ସବୁ ବାହାରକୁ ଯାଉଥିଲା । ବାଉଁଶତାଟି ଓ କିରୋସିନିପଟା ସାହାଯ୍ୟରେ ମୁଁ ଦାଣ୍ଡଘରର କାନ୍ଥ ଓ ଉପର ତାଲା ଖୋଲି ଛୋଟ କୋଠରୀର ଜୀର୍ଣ୍ଣ ସଂସ୍କାର କରାଇଲି ।

ଆମେରିକାର ୧୯ ତାଲା ପ୍ରାସାଦର ସମ୍ଭୋଗ ଛାଡ଼ି ଆସି ସେ ଘରେ ରହିବା, ଉଠା ପାଇଖାନାରେ ଗୋଡ଼ଜାକି ପାଇଖାନା ଯିବା, ପ୍ରତିଦିନର ଖାଇବା ଯୋଗାଡ଼ କରିବା ଅତି କଷ୍ଟକର ଥିଲା । ଭେଲୋର ପରି କେତେକ ସ୍ଥାନରୁ ଚାକିରି ପାଇଁ ମୋତେ ଡ଼ାକରା ଆସିଥିଲା । କଟକ ଛାଡ଼ି ଯାଇଥିଲେ ଭଲ ରୋଜଗାରର ଆଶା ଥିଲା, କିନ୍ତୁ ମୁଁ କଟକରେ ରହି ପିତାଙ୍କ ଶରୀରର ତତ୍ତ୍ୱ ନେବାର ପ୍ରତିଜ୍ଞା କରି ଥିବାରୁ ସେ ସବୁ ପ୍ରତ୍ୟାଖାନ କରିବାକୁ ବାଧ ହୋଇଥିଲି ।

ମୋର ସେପରି ପରିସ୍ଥିତିରେ ରହଣି ଯୋଗୁଁ ଦେହ ଖରାପ ହେଲା । ଆମେରିକାରେ ଚଉକି, ଟେବୁଲ ଓ କମୋଡ଼ ଅଭ୍ୟାସ ଯୋଗୁ ଆଣ୍ଠୁ ବଙ୍କା କରିବା ଅଭ୍ୟାସ ଛାଡ଼ି ଯାଇଥିବାରୁ ଦୁଇ ଆଣ୍ଠୁରେ ଆରଥ୍ରାଇଟିସ୍ ହୋଇଥିବା ଜଣା ପଡ଼ିଲା । ନିୟମିତ ସାଇକେଲ୍ କଲେ ତାହା ଆରୋଗ୍ୟ ହୋଇଯିବ ବୋଲି ଜାଣି ମୁଁ ସାଇକେଲ୍‌ଟିଏ କିଣିଲି ।

ସରକାରୀ ନାଲିଫିତା ଟପି ଶୀଘ୍ର ଚାକିରି ମିଳିବାର ସମ୍ଭାବନା ନ ଥିଲା । ମୋର ପୁରୁଣା କ୍ଲିନିକ୍‌ଟି ସଙ୍ଗେ ସଙ୍ଗେ ଆରମ୍ଭ କରିବା ମଧ ସମ୍ଭବ ନ ଥିଲା । ତେଣୁ ଜଣେ ବନ୍ଧୁଙ୍କ ପ୍ରରୋଚନାରେ ବାଧ ହୋଇ ମୁଁ ରାଣୀହାଟର ଜେନେରାଲ ଫାର୍ମାସୀ ନାମକ ଡ଼ାକ୍ତରୀ ଦୋକାନରେ ବସି ପରାମର୍ଶ ଦେବି ବୋଲି ସ୍ଥିର କଲି । ଆଣ୍ଠୁ କାଟୁଥିଲେ ମଧ ଦିନକେ ଦୁଇଥର ବିନୋଦବିହାରୀରୁ ରାଣୀହାଟକୁ ସାଇକେଲ ଚଳାଇ ଯିବା ଆସିବା କଲି । ସେପରି ଯିବା ଆସିବାରେ ମୋ ଅର୍ଶ ରୋଗ ବାହାରି ପଡ଼ିବା ହିଁ ସାର ହେଲା, ଆର୍ଥିକ ଲାଭ ବିଶେଷ ଦେଖାଗଲା ନାହିଁ । ସେ ଦୋକାନର ଅଧିକାରୀଙ୍କ ବ୍ୟବହାରରେ ରୋଗୀମାନେ ମୋ ନିକଟରେ ଆସି ପହଞ୍ଚିବାରେ ବାଧା ଘଟିଲା ।

ମୁଁ ଆମେରିକାରୁ ଫେରିବା ପରେ ମୋର ପୁରୁଣା ବନ୍ଧୁ ଓ ରୋଗୀମାନେ ମୋତେ ସ୍ୱାଗତ ଜଣାଇଥିଲେ । ମୋର ବନ୍ଧୁ ବିଶିଷ୍ଟ ଔପନ୍ୟାସିକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ପିଲାମାନଙ୍କର ଚିକିତ୍ସା ଭାର ମୁଁ ଆଗରୁ ନେଇଥିଲି । ମୁଁ ଫେରିବା ପରେ ସେ ମୋତେ

ଅଭିନନ୍ଦନ କରି ଏକ ବଡ଼ ବନ୍ଧୁମିଳନର ବ୍ୟବସ୍ଥା କରିଥିଲେ, ବହୁ ବିଶିଷ୍ଟ ଆଇନଜୀବୀ ଡ଼ାକ୍ତର ଓ ବୁଦ୍ଧିଜୀବୀ ସେଥିରେ ଯୋଗ ଦେଇଥିଲେ । ମୋର ଭବିଷ୍ୟତ ସ୍ୱାସ୍ଥ୍ୟସେବା ନେଇ ସେ ସଭାରେ ଆଲୋଚନା ହୋଇଥିଲା । ସେ ସମୟରେ ଓଡ଼ିଶାରେ ଗୋଟିଏ ମାତ୍ର ମେଡ଼ିକାଲ କଲେଜ ଥିଲା । ସେଥିରେ ମଧ ବିଶେଷଜ୍ଞ ତାଲିମର ବ୍ୟବସ୍ଥା ନ ଥିଲା । ତେଣୁ ଏବ ପରି ଚିକିତ୍ସାକୁ ଏକ ଲାଭଜନକ ଗୋଷ୍ଠି ସଂସ୍ଥାରେ ପରିଣତ କରାଯାଇ ନ ଥିଲା । ତେଣୁ କଟକରେ ଗୋଟିଏ ହେଲେ ଘରୋଇ ନର୍ସିଂହୋମ ନ ଥିଲା । ସାଂଘାତିକ ରୋଗୀମାନଙ୍କୁ ବଡ଼ ଡ଼ାକ୍ତରଖାନା ଉପରେ ହିଁ ସଂପୂର୍ଣ୍ଣ ନିର୍ଭର କରିବାକୁ ପଡୁଥିଲା, ଆଧୁନିକ ପଦ୍ଧତିରେ ଚିକିତ୍ସା କରିବା ପାଇଁ ହସ୍‌ପିଟାଲ ବାହାରେ ଅକ୍‌ସିଜେନ ସିଲିଣ୍ଡରଟାଏ ମଧ ମିଳୁ ନଥିଲା ।

ମୁଁ ଆମେରିକାରୁ ଫେରିବା ପୂର୍ବରୁ ମନ୍ତ୍ରୀଙ୍କଠାରୁ ମେଡ଼ିକାଲ କଲେଜରେ ସ୍ଥାନ ପାଇବା ପାଇଁ ଯେଉଁ ପ୍ରତିଶ୍ରୁତି ପାଇଥିଲି ତାହା ପ୍ରତିଶ୍ରୁତିରେ ହିଁ ରହିଯାଇଥିଲା । ମୋର ଦରଖାସ୍ତ ସବୁ ନାଲିଫିତା ଭିତରେ ଲୀନ ହୋଇଗଲା ପରି ଲାଗିଲା । ମନ୍ତ୍ରୀ ଓ କର୍ମକର୍ତ୍ତାଙ୍କ ସହିତ ସାକ୍ଷାତ କରିବା ମଧ ସୁବିଧାଜନକ ନ ଥିଲା । ମୋର ପିତା ବିଧାନସଭାର ସଦସ୍ୟ ଥାଇ ଭୁବନେଶ୍ୱରରେ ରହୁଥିବାରୁ ମୁଁ ତାଙ୍କ କ୍ୱାଟରକୁ ଯାଇ ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଦପ୍ତରକୁ ଫୋନ କରିବାକୁ ଚେଷ୍ଟାକଲି । ତାହା ଜାଣିପାରି ପିତା ମୋତେ କହିଲେ- 'ତୋତେ ଲାଜ ଲାଗୁନି, ତୁ ଚାକିରି ପାଇଁ ମୋ ଫୋନରୁ ମନ୍ତ୍ରୀଙ୍କୁ ଫୋନ କରିବାକୁ ଚେଷ୍ଟା କରୁଛୁ ?' ତା'ପରେ ମୁଁ ମନ ମାରି କଟକ ଚାଲିଆସି ମୋ ପୁରୁଣା କ୍ଲିନିକ୍‌ସର ପୁନରୁଦ୍ଧାର କରି ଘରୋଇ ଚିକିତ୍ସା କରିବାକୁ ସ୍ଥିର କଲି ।

**ଘରୋଇ ଚିକିତ୍ସା :**

ମୋର ଅନୁପସ୍ଥିତିରେ ସେଠାର ଘରୋଇ ଚିକିତ୍ସାର ଅବସ୍ଥା ବଦଳି ଯାଇଥିଲା । ଏହାଭିତରେ ସେ ବଜାରର ଆଖପାଖରେ ବମ୍ବେରୁ ଆନୀତ ଜଣେ ମାରୁଆଡ଼ି ଡ଼ାକ୍ତର ଓ କଣ୍ଡେନସ କୋର୍ସରେ ପାଶ୍ କରିଥିବା ଦୁଇ ତିନିଜଣ ଡ଼ାକ୍ତର ସେମାନଙ୍କ କ୍ଲିନିକ୍‌ସ ଖୋଲି ପ୍ରାକ୍‌ଟିସ୍ ଆରମ୍ଭ କଲାବେଳେ ସେଠାରେ ଏକାକୀ ଘରୋଇ ଚିକିତ୍ସା ଆରମ୍ଭ କରିବା ଯେତେ ସୁବିଧାଜନକ ହୋଇଥିଲା, ଆମେରିକାରୁ ସ୍ପେସିଆଲିଷ୍ଟ ହୋଇ ଫେରିବା ପରେ ତାହା ଘଟିଲା ନାହିଁ । ମୁଁ ପୁଣି ସେଠାରେ ପ୍ରାକ୍‌ଟିସ୍ କରିବା ଦ୍ୱାରା ମୋର ପତିଦ୍ୱନ୍ଦ୍ୱୀମାନଙ୍କ ବ୍ୟବସାୟରେ ବାଧା ପଡ଼ିବା ଆଶଙ୍କା କରି ସେମାନେ ମୋ ବିରୁଦ୍ଧରେ କେତେକ ଗୁଜବ ପ୍ରଚାର କରିବା ଆରମ୍ଭ କରିଦେଲେ । ମୁଁ ପାଥୋଲଜି ପଢି ଆସିଛି, ସାଧାରଣ ଚିକିତ୍ସା କରୁ ନାହିଁ । ସେ ପ୍ରଚାରର ଫଳ ଅବଶ୍ୟ ଭଲ ହୋଇଥିଲା । ରୋଗ ନିର୍ଣ୍ଣୟ ପାଇଁ ମୋ ପରାମର୍ଶ ନେବାକୁ କେତେକ ଲୋକ ଆଗେଇ ଆସିଥିଲେ ।

**ବନ୍ଧୁଙ୍କ ଘରେ ଚିକିତ୍ସା :**

ସେହି ସମୟରେ ମୋର ସ୍କୁଲ ସାଥୀ ବିଶିଷ୍ଟ କ୍ରୀଡ଼ାବିତ୍ ଶ୍ରୀ ଶୈଳେନ ରାଏଙ୍କର ଚାରୋଟି ସନ୍ତାନ ଭୀଷଣ ଜ୍ୱର ଓ ଅନ୍ୟ ଉପସର୍ଗ ମାନଙ୍କରେ ପୀଡ଼ିତ ଥିଲେ । ସେ ପିଲାଙ୍କ ରୋଗ ସମ୍ବନ୍ଧରେ ଦୁଇଜଣ ଡ଼ାକ୍ତରଙ୍କ ମତଭେଦ ହେବାରୁ ରୋଗ ନିର୍ଣ୍ଣୟ ପାଇଁ ସେ ମୋର ଦ୍ୱାରସ୍ଥ ହେଲେ । ଦୁଇ ଡ଼ାକ୍ତରଙ୍କ ମତଭେଦ ଓ ବଚସା ଯୋଗୁଁ ସେ ବଡ଼ ବିବ୍ରତ ହୋଇ ପଡ଼ିଥିଲେ, ତେଣୁ ମୋତେ ଦେଖିବା ସଙ୍ଗେ ସଙ୍ଗେ କୁଣ୍ଢାଇ ପକାଇ ମୋ ପିଲାଙ୍କୁ ବଞ୍ଚାଅ କହି କାନ୍ଦି ଉଠିଲେ ଓ ପିଲାଙ୍କୁ ଦେଖିବାକୁ ମୋତେ ଟାଣିକରି ତାଙ୍କ ଘରକୁ ନେଇଗଲେ ।

ଚାରୋଟିଙ୍କ ଭିତରୁ ତିନୋଟିଙ୍କ ଦେହରେ ଟାଇଫଏଡ଼ ଜ୍ୱରର ସ୍ପଷ୍ଟ ଲକ୍ଷଣ ଦେଖାଯାଉଥିଲା । ଦ୍ୱିତୀୟ ପୁତ୍ର ଚନ୍ଦନ ଟାଇଫଏଡ଼ର ଶେଷ ପର୍ଯ୍ୟାୟରେ ପହଞ୍ଚି ହାତ ମୁଠା ମୁଠା କରି ପ୍ରଳାପ ଆରମ୍ଭ କରି ଦେଇଥିଲା । ତାଙ୍କର ଘରୋଇ ଚିକିତ୍ସକ ତାହା ଟାଇଫଏଡ଼ ନୁହେଁ ବୋଲି ଜିଦ୍ ଧରିଥିଲେ, ଦ୍ୱିତୀୟ ଡ଼ାକ୍ତର ଜଣେ ଆନାଟେମି ଲେକ୍‌ଚରର ଥିଲେ,ସେ ଟାଇଫଏଡ଼ ବୋଲି କହିବାରୁ ସେମାନଙ୍କ ଭିତରେ ବଚସା ହୋଇଥିଲା । ଘରୋଇ ଚିକିତ୍ସକ ରକ୍ତ ପରୀକ୍ଷା ପ୍ରଭୃତି କରି ରୋଗ ନିର୍ଣ୍ଣୟ କରିବା ପାଇଁ ଜିଦ୍ ଧରିଲେ । ମୁଁ କହିଲି, ରକ୍ତ ପ୍ରଭୃତି ଦେଇ ପରୀକ୍ଷା କରି ରିପୋର୍ଟ ଆଣି ବିଚାର କରିବା ପାଇଁ ଆଉ ବେଳ ନାହିଁ । ଆପଣ ଟାଇଫଏଡ଼ ଔଷଧ କ୍ଲୋରୋମାଇସେଟିନ ସଙ୍ଗେ ସଙ୍ଗେ ପ୍ରୟୋଗ କରନ୍ତୁ । ସେ ଚିକିତ୍ସକ ବଡ଼ ଜିଦ୍‌ଖୋର ଲୋକ, ବହୁ କଷ୍ଟରେ ବହୁ ବର୍ଷରେ ଏମ.ବି.ବି.ଏସ. ପାଶ୍ କରିଥିଲେ ମଧ୍ୟ ତାଙ୍କ ମନରେ ପ୍ରୌଢ଼ି କମ୍ ନ ଥିଲା । ସେ କହିଲେ- 'ଏ ରୋଗ ବିକଲାଇ ହୋଇପାରେ ରିପୋର୍ଟ ନ ଦେଖି ମୁଁ କିପରି ଟାଇଫଏଡ଼ ଚିକିତ୍ସା ଆରମ୍ଭ କରିବି ?ମୁଁ କହିଲି ଟାଇଫଏଡ଼ ଓ ବିକଲାଇ ଦୁଇ ରୋଗ ପାଇଁ କ୍ଲୋରମାଇସେଟିନ ଗୋଟିଏ ଔଷଧ ତେଣୁ ତାହା ଦେବାରେ ଆପତ୍ତି କ'ଣ ? ତଥାପି ଔଷଧ ନ ଲେଖିବାକୁ ସେ ଜିଦ୍ ଧରିବାରୁ ମୁଁ କହିଲି ମୁଁ ଜଣେ ରୋଗ ନିର୍ଣ୍ଣୟ ବିଶେଷଜ୍ଞ, ମୁଁ ରକ୍ତ ପରୀକ୍ଷା କରି କି ଆଉ କଅଣ କରି ରୋଗ ନିର୍ଣ୍ଣୟ କଲି ତାହା ମୋର ଦାୟୀତ୍ୱ । ମୋ କହିବା ଅନୁସାରେ ତୁମେ ଔଷଧ ଲେଖିବାକୁ ବାଧ୍ୟ । ମୋ କଡ଼ା କଥାରେ ସେ ଔଷଧ ଲେଖିଦେଇ ଆଉ ଆସିବେ ନାହିଁ କହି ତମ୍ ତମ୍ ହୋଇ ଚାଲିଗଲେ । ତେଣୁ ସମସ୍ତ ଚିକିତ୍ସା ଦାୟୀତ୍ୱ ମୋ ଉପରେ ପଡ଼ିଲା । ଦିନ ରାତି ବହୁବାର ରୋଗୀମାନଙ୍କ ନିକଟକୁ ଦଉଡ଼ି ଦଉଡ଼ି ସେମାନଙ୍କୁ ଚିକିତ୍ସା କରିବାକୁ ପଡ଼ିଲା । ଭାଗ୍ୟକୁ ସେମାନେ ସମସ୍ତେ ଆରୋଗ୍ୟ ହୋଇଗଲେ । ପରେ ଦିନେ ସେହି ପୂର୍ବତନ ଚିକିତ୍ସକଙ୍କ ସଙ୍ଗେ ଦେଖା ହେବାରୁ ସେ ରୋଗୀମାନଙ୍କ

ଭିତରୁ କେତେଜଣ ବଞ୍ଚିଲେ ବୋଲି ସେ ମୋତେ ପ୍ରଶ୍ନ କଲେ । ମୋ ପାଟିରୁ ବାହାରି ପଡ଼ିଲା ତୁମ ଦୁର୍ଭାଗ୍ୟକୁ ସମସ୍ତେ ବଞ୍ଚିଗଲେ ।

ତାହା ଦ୍ୱାରା ଶୈଳେନ ବାବୁଙ୍କ ସଙ୍ଗେ ମୋର ଘନିଷ୍ଠତା ବଢ଼ିଲା । ମୋର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ସେ ମୋତେ ନାନା ଭାବରେ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସେ 'ନିଉଗ୍ରେଟ' ଇନ୍‌ସୁଅରନ୍‌ସ ନାମକ ଏକ ପ୍ରାଇଭେଟ କମ୍ପାନୀର ଓଡ଼ିଶା ଶାଖାର ମ୍ୟାନେଜର ଥିଲେ । ସେ ମୋତେ ସେ କମ୍ପାନୀର ଡ଼ାକ୍ତର ନିଯୁକ୍ତ କରାଇ ପ୍ରପୋଜାଲମାନଙ୍କରେ ଡ଼ାକ୍ତରୀ ଯାଞ୍ଚ କରାଇବାର ସୁବିଧା ଦେଲେ । ଫିଜିକାଲ ଟ୍ରେନିଙ୍ଗ କଲେଜ ପ୍ରିନିସିପାଲଙ୍କ ସହିତ ତାଙ୍କର ବନ୍ଧୁତା ଥିଲା ଓ ସେ ଜଣେ ବହୁମୂତ୍ର ରୋଗୀ ଥିଲେ । ଶୈଳେନ ତାଙ୍କ ସଙ୍ଗେ ମୋର ପରିଚୟ କରାଇ ଦେବାରେ ସେ କଲେଜରେ ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟ ବିଜ୍ଞାନ ପଢ଼ାଇବା ପାଇଁ ମୋତେ ସାମୟିକ ଶିକ୍ଷକତା କରି ଭତ୍ତା ପାଇବାର ସୁବିଧା ମିଳିଲା ।

## ଅନ୍ୟପ୍ରକାର ଚିକିତ୍ସା ଅନୁଭୂତି :

ମଧୁବିଦ୍ୟାପୀଠ ନିକଟରେ କଳିଙ୍ଗ ଟିଉବସ୍ ଷ୍ଟୋର ଅଫିସର ସଙ୍ଗୀତଜ୍ଞ ରାଧାଗୋବିନ୍ଦ ପଟ୍ଟନାୟକ ଓ ତାଙ୍କ ଘରର ପଛପଟ ରାସ୍ତାକୁ ଲାଗି ମାଜିଷ୍ଟ୍ରେଟ କିଶୋର ଦାସ ରହୁଥିଲେ । ଏକା ସମୟରେ ରାଧାବାବୁ ଓ କିଶୋର ବାବୁଙ୍କ ନାତି କେଳୁ (ପରେ ଡ଼ାକ୍ତର) ଟାଇଫଏଡ଼ ରୋଗରେ ଆକ୍ରାନ୍ତ ହେଲେ । ମୂଳରୁ ମୁଁ ସେମାନଙ୍କ ରକ୍ତ ପ୍ରଭୃତି ପରୀକ୍ଷା କରି ଚିକିତ୍ସା ଭାର ନେଇଥିଲି । କ୍ଲୋରୋମାଇସେଟିନ ପରି ଆଣ୍ଟିବାଓଟିକ ଦୁଇ ଧାରୁଆ ଛୁରୀ । ତେଣୁ ତାକୁ ଜଗିରଖି ଦରକାର ଅନୁଯାୟୀ ଦେବା ମୋର ମତ ଥିଲା । ମୁଁ ସେ ଦୁହିଁଙ୍କ ପ୍ରତି ସେ ଔଷଧ ବ୍ୟବହାର ନ କରି କେବଳ ସରଳ ପୁଷ୍ଟିକର ଖାଦ୍ୟ ଓ ଭିଟାମିନ୍ ପ୍ରଭୃତି ଦେଇ ରୋଗ ସଙ୍ଗେ ଯୁଦ୍ଧ କରି ସେମାନଙ୍କର ଆରୋଗ୍ୟ ହେବାର ଶକ୍ତି ବଢ଼ାଇବାରେ ଲାଗିଲି । ଟାଇଫଏଡ଼ ରୋଗର ସମୟ କାଳ ସୀମିତ, ତେଣୁ ସେ ସମୟ ଟପିଗଲେ ଆପେ ଆପେ ସେ ରୋଗ ଆରୋଗ୍ୟ ହେବାର ସମ୍ଭାବନା । ଆଣ୍ଟିବାଓଟିକର ଅଯଥା ଓ ଅନିୟମିତ ପ୍ରଯୋଗରେ ସେ ଜୀବାଣୁମାନେ ଔଷଧ-ମାତୃଆ ହୋଇଯାଆନ୍ତି ।

କୋମଳ ପୁଷ୍ଟିକର ଖାଦ୍ୟ ଓ ବିଶ୍ରାମ ଯୋଗୁ ୧୪ ଦିନରେ ସେମାନଙ୍କ ରୋଗର ଉପଶମ ହେଲା । ରୋଗର ପ୍ରକୋପ କମି ଭଲ ଲାଗିବାରୁ ରାଧାବାବୁ ମୋ ପରାମର୍ଶକୁ ଖାତର ନ କରି ସେ ପୂର୍ବଦିନର ପିଠା, ଖେଚୁଡ଼ି, ସାଧାରଣ ତରକାରୀ, ଭଜା ପ୍ରଭୃତି ଭୋଜନ କରି ପୂର୍ଣ୍ଣ ବିଶ୍ରାମ ବଦଳରେ ରିକ୍‌ସାରେ ସିନେମା ଦେଖିବା ପାଇଁ ଚାଲିଗଲେ । ସେଥିରେ ତାଙ୍କ ଭିତରେ ଥିବା ଟାଇଫଏଡ଼ ଜୀବାଣୁମାନେ ନିଷ୍କ୍ରିୟ ଅବସ୍ଥାରୁ ହଠାତ

ଜୋରରେ ସକ୍ରୀୟ ହୋଇ ଉଠିଲେ । ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ଧାରଣ କଲା, ନାକରୁ ରକ୍ତ ପଡ଼ିଲା ଓ ଜ୍ୱର ବହୁତ ବଢ଼ିଗଲା । ମୁଁ ଯାଇ ତାହା ଦେଖି ହତ୍‌ବାକ୍ ହୋଇଗଲି । ସଙ୍ଗେ ସଙ୍ଗେ ହାଇଡ୍ରୋଜ୍‌ର କ୍ଲୋରୋମାଇସେଟିନ ଦେଇ ଚିକିତ୍ସା ଆରମ୍ଭ କଲି । ପୂର୍ବରୁ ଶରୀରର ଜୀବାଣୁମାନେ କ୍ଲୋରୋମାଇସେଟିନ ସହିତ ପରିଚିତ ନ ଥିବାରୁ ସେ ଔଷଧ ଭଲ କାମ ଦେଲା ଓ ଅଳ୍ପଦିନରେ ରାଧାବାବୁ ପୁଣି ଆରୋଗ୍ୟ ଲାଭ କଲେ । କିଶୋର ବାବୁ ତାଙ୍କ ନାତିକୁ ମୋ ପରାମର୍ଶ ଅନୁସାରେ ଜଗି ରଖିଥିବାରୁ ତାଙ୍କର ରୋଗ ଲେଉଟି ନ ଥିଲା ।

## ଅବିବେକୀତାରୁ ଯମଦ୍ୱାର :

ଦିନେ ମୁଁ ମୋ କ୍ଲିନିକ୍‌ସରେ ବସିଥିବା ସମୟରେ କଟକ ଜିଲ୍ଲା ଜାରକା ନିକଟସ୍ଥ ଗୋପାଳପୁର ଗ୍ରାମର ଦଳେ ଲୋକ ଗୋଟିଏ ରୋଗୀକୁ ଟେକାଟେକି କରି ସଙ୍ଗରେ ଆଣି ମୋ ସାମନାରେ ଥୋଇଦେଲେ । ସେ ରୋଗୀଟିର ନାମ ଚତୁର୍ଭୁଜ ପଣ୍ଡା । ତା'ର ବଡ଼ ଭାଇ କୈଳାସ ପଣ୍ଡା ମୋ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯାଇ କହିଲେ, 'ଆପଣ ଜଣେ ଆମେରିକା ଫେରନ୍ତା ସିଦ୍ଧହସ୍ତ ଡ଼ାକ୍ତର ଶୁଣି ଏହି ସାଂଘାତିକ ରୋଗୀକୁ ସଙ୍ଗରେ ଘେନି ଆପଣଙ୍କ ନିକଟକୁ ଆସିଛୁ, ଆପଣ ଆମର ଶେଷ ଆଶା । ଆପଣ ଭଲ ନ କଲେ ରୋଗୀର ମୃତ୍ୟୁ ସୁନିଶ୍ଚିତ । ଆମେ କଟକ ଓ କଲିକତାର ବହୁ ଡ଼ାକ୍ତର ଓ ମୁର୍ଶିଦାବାଦ (ବଙ୍ଗଳା)ର ଜଣେ ନାମଜାଦା ଡ଼ାକ୍ତରଙ୍କ ଅଧିନରେ ଚିକିତ୍ସା କରି ନିରାଶ ହୋଇଛୁ । କେହି ରୋଗ ଚିହ୍ନିପାରିଲେନି, ମଳୁ ଏବେ କତରା ଧରିଲାଣି, ଆମେ ନିରୁପାୟ ହୋଇ ଆପଣଙ୍କ ନିକଟକୁ ଆସିଛୁ, ଆପଣ ଆମକୁ ରକ୍ଷା କରନ୍ତୁ ।'

ମୁଁ ସେ ରୋଗୀର ପାଖକୁ ଗଲି । ରୋଗୀଟି ନିସ୍ତେଜ ହୋଇ ପଡ଼ି ରହିଥିଲା । ନାଡ଼ି ଚିପି ଦେଖିଲି ତାହା ଖୁବ୍ ମନ୍ଥର ହୋଇ ଆସିଥିଲା । ସେ ମୋତେ ଚାହିଁବାପାଇଁ ଧୀରେ ଧୀରେ ଆଖି ଫିଟାଇଲା, ଆଖିରେ ତେଜ ନ ଥିଲା । ମୁହଁ ଶେତା ଦିଶୁଥିଲା ଓ ଫୁଲିଥିଲା । ଆଖିପତା ମଧ୍ୟ ଫୁଲିଥିଲା, ଆଖିରୁ ରକ୍ତଶୂନ୍ୟତା ବାରି ହୋଇଯାଉଥିଲା । ଦେହ ହାତ ଗୋଡ଼ ସବୁଥିରେ ପାଣି ଜମି ଫୁଲିଥିଲା । ମଝିରେ ମଝିରେ ରୋଗୀଟି ଖୁଁ ଖୁଁ ହୋଇ କାଶୁଥିଲା ।

ମୁଁ ଷ୍ଟେଥୋ, ରକ୍ତଚାପ ଯନ୍ତ୍ର ପ୍ରଭୃତିରେ ରୋଗୀକୁ ପରୀକ୍ଷା କଲି । ମଳ,ମୁତ୍ର ଓ ରକ୍ତ ନେଇ ପରୀକ୍ଷା କଲି । ଛାତି ପରୀକ୍ଷାରୁ ହୃତପିଣ୍ଡର ଗୋଟିଏ ଅଂଶର ବୃଦ୍ଧି, ଫୁସ୍‌ଫୁସ୍ ଆବରଣରେ ପାଣି ଜମିଥିବା ଜଣାପଡ଼ିଲା । ରକ୍ତଚାପ ଖୁବ କମ୍ ଥିଲା । ଯକୃତର ବୃଦ୍ଧି ଘଟିଥିଲା । ରକ୍ତ ପରୀକ୍ଷାରୁ ରକ୍ତହାନୀ, ପରିସ୍ରା ପରୀକ୍ଷାରୁ ଆଲବୁମିନ୍ ଓ ମଳରୁ ଆମେବିକ ଡ଼ିସେଣ୍ଟ୍ରି ଓ ହୁକଓ୍ୱାର୍ମ ପ୍ରଭୃତି କୃମିର ଅଣ୍ଡା ମିଳିଲା ।

ସେପରି ରୋଗୀର ହସ୍‌ପିଟାଲ ଆଡ଼ିମିଶନ ନିତାନ୍ତ ଜରୁରୀ ଥିଲେ ମଧ୍ୟ ରୋଗୀର ଲୋକେ ତାକୁ ହସ୍‌ପିଟାଲକୁ ନେବାପାଇଁ ବିମୁଖ ଥିଲେ । ମୁଁ ସେପରି ରୋଗୀଟିଏ କେଉଁଠି ରଖି କି ଚିକିତ୍ସା କରିପାରିବି ଭାବି ପ୍ରଥମେ ଇତଃସ୍ତତଃ ହେଲି । ହୃତ୍‌ପିଣ୍ଡ, ଯକୃତ, ବୃକକ୍, ଫୁସ୍‌ଫୁସ୍ ସବୁ ଥିରେ କିଛିକିଛି ଦୋଷ ରହିଛି, ଶରୀର ଫୁଲି ରହିଛି । ରକ୍ତରେ ହେମଗ୍ଲୋବିନର ନିତାନ୍ତ ଅଭାବ ଓ ନିଶ୍ୱାସ ଘନଘନ ଚାଲୁଥିବାର ଦେଖି ମୁଁ ରୋଗୀର ଚକିତ୍ସା ମୋ ପକ୍ଷରେ ସମ୍ଭବ ହେବ ନାହିଁ ବୋଲି ରୋଗୀର ଲୋକଙ୍କୁ ଜଣାଇ ଦେଲି ଓ ମୁଁ ବୃଥାରେ ଦୋଷ ମୁଣ୍ଡାଇବି ନାହିଁ ବୋଲି କହିଲି ।

ମୋ ନାସ୍ତିବାଣୀ ଶୁଣି ରୋଗୀର ବଡ଼ଭାଇ କୈଳାସ ପଣ୍ଡା କାନ୍ଦି ପକାଇ କହିଲେ, ଆଜ୍ଞା ଆମେ ଗତ ଦଶ ବର୍ଷ ହେଲା ଚେଷ୍ଟା କରି ଆସୁଛୁ, ତାହାର ଗ୍ରହ ଖରାପ ପଡ଼ିଛି ଏଥିରେ କାହାର କ'ଣ ଚାରାଅଛି । ୨୨ବର୍ଷରେ ଦଶା କଟିବ ବୋଲି ଆମେ ଭାବିଥିଲୁ ଏବେ ତାକୁ ଛବିଶ ବର୍ଷ ବୟସ ହେଲାଣି କିନ୍ତୁ ତା' ଦଶା ନ କଟି ସେ ଏପରି ଅବସ୍ଥାକୁ ଆସିଲାଣି । ତା' ଭାଗ୍ୟରେ ଯାହା ଥିବ ଆମେ ଆପଣଙ୍କୁ କାହିଁକି ଦୋଷ ଦେବୁ ?

ରୋଗୀଟିର ବୟସ ୨୬ ବର୍ଷ ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ସେ ୧୦-୧୨ ବର୍ଷ ପିଲାଟି ପରି ଦିଶୁଥିଲା, ନିଶ ଦାଢ଼ି ପ୍ରଭୃତି କିଛି ଉଠି ନ ଥିଲା । ତା'ର ରୋଗ ଯେପରିକି ତା'ର ବୟସକୁ ମଧ୍ୟ ବାନ୍ଧି ଦେଇଥିଲା । ସେ ଏତେଗୁଡ଼ିଏ ରୋଗଧରି ଏ ପର୍ଯ୍ୟନ୍ତ ସେପଟକୁ ନ ଯାଇ ଏ ପୁରରେ କିପରି ରହିପାରିଛି ବୋଲି ମୁଁ ଭାବିବାକୁ ଲାଗିଲି ।

ମୁଁ ମୋର ଭାବନାକୁ ଅଟକାଇ ନ ପାରି ରୋଗୀର ବଡ଼ଭାଇ କୈଳାସକୁ କହିଲି, ଆପଣଙ୍କ କଥାବାର୍ତ୍ତା ଓ ଏ ରୋଗୀର ଅବସ୍ଥାକୁ ଦେଖି ମୁଁ ବୁଝୁଚି, ଆପଣମାନେ ଏ ରୋଗୀର ଚିକିତ୍ସା ପାଇଁ କୌଣସି ନିର୍ଦ୍ଦିଷ୍ଟ ଡ଼ାକ୍ତର ବା ବୈଦ୍ୟର ପରାମର୍ଶ ଉପରେ ନିର୍ଭର କରିନାହାନ୍ତି । ଆପଣଙ୍କ ରୋଗୀଟି ଅନେକଗୁଡ଼ିଏ ସାଧାରଣ ଆରୋଗ୍ୟ ହେବା ଭଳି ରୋଗରେ ଆକ୍ରାନ୍ତ ହୋଇଛି । ଗୋଟିଏ ରୋଗର ପ୍ରକୋପ ବେଳେ ଆପଣ ଯେଉଁ ଚିକିତ୍ସକଙ୍କ ପରାମର୍ଶ ନେଇଛନ୍ତି, ସେହି ରୋଗର ଲକ୍ଷଣ ଦେଖି ତାହା ଭଲ କଲାବେଳକୁ ହୁଏତ ଆଉ ଗୋଟିଏ ରୋଗର ପ୍ରକାଶ ପାଇବାରୁ ସେ ଚିକିତ୍ସକକୁ ଚିକିତ୍ସାର ଆଉ ସୁଯୋଗ ନ ଦେଇ ଚିକିତ୍ସକ ବଦଳାଇ ଦେଇଛନ୍ତି । ଏହିପରି ଚିକିତ୍ସକ ବଦଳାଇ କୌଣସି ଚିକିତ୍ସକ ନିକଟରେ ସଂପୂର୍ଣ୍ଣ ଚିକିତ୍ସା ନ କରିବା ଫଳରେ ଆପଣମାନେ ରୋଗୀକୁ ଯମଦ୍ୱାରକୁ ଟାଣି ନେବାରେ ଲାଗିଛନ୍ତି ।

ମୋ କଥା ଶୁଣି ସେମାନେ ସ୍ତମ୍ଭୀଭୂତ ହୋଇଯାଇ ଏକ ସ୍ୱରରେ କହିଲେ, ଆମେ ଆଉ ଚିକିତ୍ସକ ବଦଳାଇବୁ ନାହିଁ । ଆପଣଙ୍କ ଉପରେ ଆମର ସଂପୂର୍ଣ୍ଣ ବିଶ୍ୱାସ । ଆମକୁ

ଆଗରୁ ଏକଥା କେହି କହି ନ ଥିଲେ । ଆପଣଙ୍କ ହାତ ଲାଗିଲେ ନିଶ୍ଚୟ ଏ ରୋଗୀ ଭଲ ହୋଇଯିବ ।

ମୁଁ ସେ ରୋଗୀକୁ ଫେରାଇ ଦେବି ବୋଲି ପ୍ରାୟ ଠିକ କରିସାରିଥିଲି, କାରଣ ରୋଗୀ ମର ମର ଅବସ୍ଥାରେ ଥିଲା । ମୁଁ କୌଣସି ହସ୍‌ପିଟାଲ ସହିତ ସମ୍ପୃକ୍ତ ନ ଥିଲି । ଚିକିତ୍ସାର ଆଧୁନିକ ସୁବିଧା ମଧ ମୋ ନିକଟରେ ନଥିଲା । ତେଣୁ ସେ ହତ୍ୟା ଶଗଡ଼ ମୁଣ୍ଡାଇ ମୋ ଚିକିତ୍ସାର ପ୍ରାରମ୍ଭରେ ବୃଥା ବଦନାମ୍ ମୁଣ୍ଡାଇବାକୁ ମୁଁ ଚାହୁଁ ନ ଥିଲି । ହଠାତ୍ ମୋ ଆଖି ସେ ରୋଗୀର ଛଳଛଳ ଲୋତକ ପୂର୍ଣ୍ଣ ଆଖି ଉପରେ ପଡ଼ିଗଲା । ମୋ ଦ୍ୱାରା ଚିକିତ୍ସିତ ହେବା ପାଇଁ ତା'ର ବ୍ୟାକୁଳତା ତା' ମୁହଁରୁ ଫୁଟି ବାହାରୁଥିଲା । ସେଥିରେ ମୋ ମନରେ ପରିବର୍ତ୍ତନ ଆସିଲା । ମୁଁ ମନରେ ସାହସ ବାନ୍ଧି ସେ ରୋଗୀର ଚିକିତ୍ସା ଭାର ନେବାକୁ ପ୍ରସ୍ତୁତ ହୋଇଗଲି ।

ସେ ରୋଗୀର ଶରୀରଟି ଗୋଟିଏ କଣା ମାଠିଆ ସଙ୍ଗେ ସମାନ । ସେଥିରେ ଥିବା ଅସଂଖ୍ୟ କଣାକୁ ଏକା ବେଳକେ ବନ୍ଦ କରିବା ସମ୍ଭବ ନ ଥିଲା । କାଳ ସହିଲେ ଗୋଟିଏ ପରେ ଗୋଟିଏ ରୋଗର ଚିକିତ୍ସା କରିବା କଥା । ତେଣୁ ମୁଁ ସେ ରୋଗୀର ଲୋକଙ୍କୁ କହିଲି 'ମୋର ହସ୍‌ପିଟାଲ ନାହିଁ, ଆପଣ ମୋ କ୍ଲିନିକ୍‌ସ ପାଖ ଆଖରେ ଗୋଟିଏ ଘର ଭଡ଼ା ନେଇ ରୋଗୀଟିକୁ ରଖାନ୍ତୁ । ମୁଁ ବରାବର ତା' ଉପରେ ଆଖି ରଖିବି । ମୋ କଥା ଅନୁସାରେ ଯଦି ଠିକ୍ ଭାବେ ଚିକିତ୍ସା ପାଇଁ ଅନ୍ତତଃ ତିନିମାସ କାଳ ମିଳିବ ବା ରୋଗୀ ସମ୍ଭାଳି ପାରିବ ତା' ହେଲେ ମୋ ଚିକିତ୍ସା କାମ ଦେଇପାରେ ।'

ମୋ କଥା ଅନୁସାରେ ରୋଗୀ ଚତୁର୍ଭୁଜକୁ ମୋ ଗଳି ମୁଣ୍ଡରେ ଗୋଟିଏ ଘର ଭଡ଼ା ନେଇ ସେମାନେ ରଖାଇଲେ । ତାର ହୁକଓ୍ୱାର୍ମ ପାଇଁ ପ୍ରଥମେ ଚିକିତ୍ସା ଆରମ୍ଭ କରି, ରକ୍ତହୀନତା ପ୍ରଭୃତି ପାଇଁ ଔଷଧ ଦେଲି । ଆମେବିକ ଡ଼ିସେଣ୍ଟ୍ରି, ଯକୃତର ଆମୋନିକ ଘା, ଦେହଫୁଲା ପ୍ରଭୃତି ଗୋଟି ଗୋଟି କରି ଆରୋଗ୍ୟ କରିବା ଭିତରେ ଫୁସ୍‌ଫୁସ୍ ପରଦାରେ ରୋଗ ଓ ପାଣି ଜମିବା, ହୃତ୍‌ପିଣ୍ଡ, ବୃକକ୍ ପ୍ରଭୃତି ପାଇଁ ଅନୁସନ୍ଧାନ ଜରୁରୀ ହେବାରୁ ମୁଁ ସେ ରୋଗୀକୁ ଡ଼ାକ୍ତରଖାନାରେ ଭର୍ତ୍ତିକରି ବିଶେଷଜ୍ଞମାନଙ୍କ ପରାମର୍ଶ ମଧ ନେଇଥିଲି । ସେ ଯାହା ହେଉ ଭଗବାନଙ୍କ କୃପାରୁ ତିନି ଚାରି ମାସ ପରେ ସେ ରୋଗୀର ରୋଗ ସବୁ ଉପଶମ ହୋଇଗଲା ।

ତା'ର ଚିକିତ୍ସା ଭିତରେ ତା'ର ବୃଦ୍ଧ ପିତାମାତା ମଧ ମୋ ନିକଟକୁ ଆସି କୃତଜ୍ଞତା ଜଣାଇ ଯାଉଥିଲେ । ତାଙ୍କ ଗ୍ରାମର କେତେକ ଗୁଣିଆ ଓ ଅପଗଣ୍ଡ ବୈଦ୍ୟ ସେ ରୋଗୀ କଦାପି ବଞ୍ଚିବ ନାହିଁ ବୋଲି ପ୍ରଚାର ଚଳାଇଥିଲେ । ଗ୍ରାମର ଜ୍ୟୋତିଷ ସେ ଅଳ୍ପାୟୁଷ ଓ ଶୀଘ୍ର ଚାଲିଯିବ ବୋଲି ଗଣନା କରିଥିଲେ । ତେଣୁ ଚତୁର୍ଭୁଜ ପ୍ରକୃତରେ ବଞ୍ଚି ରହିଚି

କି ନାହିଁ ଦେଖିବାକୁ ତା'ର ଗ୍ରାମର କେତେକ ଲୋକ ତାକୁ ଦେଖିବାକୁ କଟକ ଆସୁଥିଲେ ।

ସେ ଅତି ଦୁର୍ବଳ ଥିବାରୁ ତାକୁ ଆଉ ମାସେ ଖଣ୍ଡେ କଟକରେ ରଖାଇ ବର୍ଷକ ପାଇଁ ଟନିକ୍ ପ୍ରଭୃତିର ବ୍ୟବସ୍ଥା ଦେଇ ଗ୍ରାମକୁ ଯିବାକୁ ଅନୁମତି ଦେଲି । ସେହି ସାଂଘାତିକ ରୋଗୀ ଭଲ ହୋଇ ଘରକୁ ଫେରିବାରୁ ସେ ଅଞ୍ଚଳରୁ ବହୁ ରୋଗୀ ମୋ ନିକଟକୁ ଆସିବାକୁ ଲାଗିଲେ । ଚତୁର୍ଭୁଜର ଲୋକେ ମଧ୍ୟ ମଝିରେ ମଝିରେ ମୋ ନିକଟକୁ ଆସି ତା' ପାଇଁ ଔଷଧ ବ୍ୟବସ୍ଥା ନେଇଯାଉଥିଲେ ।

## ହାକୁଟି ରୋଗ :

ଚତୁର୍ଭୁଜ ଗ୍ରାମକୁ ଫେରିବାର କେତେ ମାସ ପରେ ହଠାତ୍ ଗୋଟିଏ ଯୁବତୀ ରୋଗୀକୁ ସଙ୍ଗରେ ଧରି ଚତୁର୍ଭୁଜ ଓ ତା'ର ଲୋକେ ମୋ ନିକଟରେ ଆସି ପହଞ୍ଚିଲେ । ସେହି ଅବଗୁଣ୍ଠିତା ହୃଷ୍ଟପୁଷ୍ଟ ଯୁବତୀଟି ଅନବରତ ହାକୁଟି ମାରିବାରେ ଲାଗିଥିଲା । ସେ ହାକୁଟି ବହୁ ଦୂରକୁ ଶୁଭୁଥିଲା ।

ସେ ରୋଗୀଣୀଟିର ବିଷୟ ବୁଝି ଜାଣିଲି, ବହୁ ବର୍ଷ ତଳେ ଚତୁର୍ଭୁଜ ସଙ୍ଗେ ସେହି ଯୁବତୀଟିର ବାଲ୍ୟ ବିବାହ ହୋଇଥିଲା । ଚତୁର୍ଭୁଜର ବେମାରୀ ଲାଗି ରହୁଥିବାରୁ ସେ ବହୁକାଳରୁ ଗୃହଯୋଗ୍ୟା ହୋଇଥିଲେ ମଧ୍ୟ ବହୁଦିନ ଧରି ଶାଶୁ ଘରକୁ ଆସିବା ପାଇଁ ଅପେକ୍ଷା କରି ବାପ ଘରେ ରହିଥିଲା ।

ଚତୁର୍ଭୁଜ ରୋଗରୁ ଆରୋଗ୍ୟ ଲାଭ କରି ଗ୍ରାମକୁ ଯିବା ପରେ ପରେ ତା'ର ବାପ ମା' ତାକୁ ପୁହାଣୀ କରି ଶାଶୁ ଘରକୁ ପଠାଇ ଦେବାରୁ ସେମାନଙ୍କ ଆଶୀର୍ବାଦ ଘର ବା ପୁନର୍ବିବାହ ଉତ୍ସବ ଅନୁଷ୍ଠିତ ହୋଇଯାଇଥିଲା । ସେ କଥା ଶୁଣି, ସେ ସ୍ତ୍ରୀଲୋକର ମାନସିକ ଅବସ୍ଥା ଜନିତ ସେହି ରୋଗର କାରଣ ମୋତେ ଜଳ ଜଳ ଦିଶିଗଲା । ରୋଗ ଭୋଗି ଭୋଗି ଚତୁର୍ଭୁଜର ସ୍ନାୟବିକ ଦୁର୍ବଳତା ଯୋଗୁ ପୁରୁଷତ୍ୱ ଆସି ନ ଥିଲା, ତା'ର ନିଶଦାଢ଼ି ମଧ୍ୟ ଉଠି ନ ଥିଲା । ବାସରରାତିରେ ଝିଅଟି ଚତୁର୍ଭୁଜ ନଂପୁସକ ମନେ କରି ନିରାଶ ହୋଇ ତା'ର ମସ୍ତିଷ୍କର ଭାରସାମ୍ୟ ହରାଇ ଅପସ୍ମାର ବା ହିଷ୍ଟିଆ ରୋଗର ଶୀକାର ହୋଇ ପଡ଼ିଲା । ସେହି ରୋଗର ଏକ ଉପସର୍ଗ ରୂପେ ହେକୁଟି ମରା ଆରମ୍ଭ ହୋଇ ଯାଇଥିଲା ।

ଲୋକଙ୍କଠାରେ ବିଶେଷତଃ ଯୁବକ ଯୁବତୀଙ୍କ ମନରେ ବୃଥା ଭୟ ବା ନୈରାଶ୍ୟ ପ୍ରଭୃତି ଜାତ ହେଲେ ମାନସିକ ଭାରସାମ୍ୟରେ ବ୍ୟାଘାତ ଘଟି ସେପରି ରୋଗ ଜାତ ହୋଇଥାଏ । ଭୂତ ଲାଗିବା, ବୀର ପେଶା ହୋଇ ଅଦ୍ଭୁତ କର୍ମ ସବୁ କରିବା, ବାନ୍ତି

କରିବା, ହାକୁଟି ମାରିବା, ବାତ ମାରିବା, ବୃଥାରେ ହସିବା ବା କାନ୍ଦିବା ପ୍ରଭୃତି ସେ ରୋଗର ଲକ୍ଷଣ ଭାବେ ପ୍ରକାଶ ପାଇଥାଏ । ସେ ରୋଗ ଏକ ମନସ୍ତାତ୍ତ୍ୱିକ ରୋଗ ହୋଇଥିବାରୁ, ତାହା ମାରାତ୍ମକ ରୋଗ ନ ହେଲେ ମଧ କେବଳ ଔଷଧରେ ତାହା ଭଲ କରିବା ସମ୍ଭବ ନୁହେଁ । ସେପରି ରୋଗୀମାନଙ୍କର ଶାରୀରିକ ବ୍ୟାଧି ନଥାଇ ମଧ ସେମାନେ ବିଭିନ୍ନ ରୋଗ ଥିଲା ଭଳି ଆଚରଣ କରନ୍ତି ଓ ବେଳେ ବେଳେ ଆତ୍ମହତ୍ୟା କରିଥାଆନ୍ତି ।

ମୁଁ ଜାଣିବାରେ ଜଣେ ହୃଷ୍ଟପୁଷ୍ଟ ଯୁବକ ଘରେ କଳି କରି ଗ୍ରାମରୁ କଟକ ବାହାରି ଆସିଥିଲା । ସେ ଦିନେ ତା' ଚିରା ଜାମାକୁ ଛୁଞ୍ଚିଟିରେ ସିଲାଇ କରୁଥିବା ବେଳେ ତାହା ତା ଆଙ୍ଗୁଠିରେ ଫୋଡ଼ି ହୋଇ ଭାଙ୍ଗିଗଲା । ଛୁଞ୍ଚିର ଅଗଟି ବୋଧ ହୁଏ ତଳେ ପଡ଼ି ହଜିଗଲା, କିନ୍ତୁ ସେ ଯୁବକ ଭାବିଲା ତାହା ତା' ଆଙ୍ଗୁଠି ଭିତରେ ପଶି ଶରୀର ଭିତରକୁ ଚାଲି ଯାଉଛି । ସେ ତା'ର ପରିବାରରେ ଉପୁଜିଥିବା କୌଣସି ଅବାଞ୍ଛିତ ପରିସ୍ଥିତି ଯୋଗୁ ଅତ୍ୟନ୍ତ ଚିନ୍ତିତ ଥାଇ ମାନସିକ ଭାରସାମ୍ୟ ହରାଇବା ଅବସ୍ଥାରେ ଥିଲା । ସେହି ସାମାନ୍ୟ ଛୁଞ୍ଚିଫୋଡ଼ା ଘଟଣାରେ ସେ ପାଗଳ ପରି ହୋଇଗଲା । ତା'ର ଧାରଣା ହେଲା ଛୁଞ୍ଚିର ସେହି ଅଂଶଟା ତା' ଶରୀର ଭିତରେ ପଶି ଏପଟ ସେପଟ ହେଉଛି । ତାହା ତା'ର ମାଂସପେଶୀମାନଙ୍କୁ ଫୋଡ଼ି ଫୋଡ଼ି ଦେଉଥିବା ପରି ସେ କଷ୍ଟ ଅନୁଭବ କଲା । ଆଙ୍ଗୁଠି ଅଗରୁ ଛୁଞ୍ଚିଟା ହାତ ବାଟ ଦେଇ କାନ୍ଧ ପର୍ଯ୍ୟନ୍ତ ଯିବା ଆସିବା କରୁଥିବା ଅନୁଭବ କରି, ହେଇ ଗଲା, ହେଇ ଅଇଲା ବୋଲି ଚିତ୍କାର ଛାଡ଼ିବାକୁ ଲାଗିଲା । ଆଙ୍ଗୁଠି ଅଗରୁ କାନ୍ଧକୁ ବାଟ ନାହିଁ ବୋଲି ଯେତେ ବୁଝାଇଲେ ସିଏ ବୁଝିଲା ନାହିଁ । ହେଇ ଆଙ୍ଗୁଠିକୁ ଫେରିଛି କହି ଆଙ୍ଗୁଠି ମୂଳକୁ ଦଉଡ଼ିରେ ବାନ୍ଧିଦେଇ ଗୋଟିଏ ଦାଡ଼ୁଆ କଟୁରୀରେ ଆଙ୍ଗୁଠି ମୂଳକୁ ଚୋଟେ ଦେଲା । ଚେଙ୍ଗମାଛ ପରି ଆଙ୍ଗୁଠିଟା ତଳେ ପଡ଼ିଯାଇ ଡ଼େଇଁ ଡ଼େଇଁ ନିସ୍ତବ୍ଧ ହୋଇଗଲା । ଯା ପରେ ପରେ ଆରେ ଖସିଗଲା କହି କଟଟିକୁ ହାଣି ଅଲଗା କରିଦେଲା । ସେଥିଯୋଗୁଁ ଅଜସ୍ର ରକ୍ତସ୍ରାବ ହୋଇ ଅଚେତ ହୋଇ ପଡ଼ିଥିବା ଅବସ୍ଥାରେ ଲୋକେ ତାକୁ ଧରାଧରି କରି ହସ୍‌ପିଟାଲକୁ ଆଣି ସେଠାରେ ପହଞ୍ଚାଇଲା ବେଳକୁ ତା'ର ପ୍ରାଣବାୟୁ ଉଡ଼ି ଯାଇଥିଲା ।

ମୋର ସେ କଥା ମନେ ପଡ଼ିବାରୁ ମୁଁ ଚତୁର୍ଭୁଜ ସ୍ତ୍ରୀର ଚିକିତ୍ସା ଭାର ହାତକୁ ନେବା ଠିକ୍ ହେବ ନାହିଁ ଭାବି ମୋତେ ନ ପଚାରି କାହିଁକି ପୁନର୍ବିବାହ କଲ କହି ଅନ୍ୟଠାରେ ମାନସିକ ଚିକିତ୍ସା କରିବାକୁ ମୋ ପାଖରୁ ବିଦା କରିଦେଲି । ସେମାନେ ଜଣଙ୍କ ପରେ ଜଣେ ବହୁ ଚିକିତ୍ସକଙ୍କୁ ଦେଖାଇ ରୋଗ ଭଲ ନ ହେବାରୁ, ଚତୁର୍ଭୁଜ ନିଜେ ତା' ସ୍ତ୍ରୀକୁ ନେଇ ଆସି ପୁଣି ମୋ ଗୋଡ଼ ତଳେ ପଡ଼ିଲା । ମୋତେ ଏ ବିପଦରୁ ରକ୍ଷା କରନ୍ତୁ ବୋଲି କାନ୍ଦିଲା । ମୁଁ ତାକୁ କହିଲି ତୋର ସମ୍ପୂର୍ଣ୍ଣ ଚିକିତ୍ସା ସରି ନାହିଁ, ତୋ ଶରୀର

ସାଧାରଣ ଅବସ୍ଥାକୁ ଆସିବାକୁ ଆଉ ଅନ୍ତତଃ ଏକ ବର୍ଷ ଲାଗିବ । ସେ ପର୍ଯ୍ୟନ୍ତ ସଞ୍ଜତ ଭାବରେ ରହି ବର୍ଷେ ପର୍ଯ୍ୟନ୍ତ ପୁଷ୍ଟିକର ଖାଦ୍ୟ ଓ ଔଷଧ ସେବନ କରିବାକୁ ମୁଁ ନିର୍ଦ୍ଦେଶ ଦେଇଥିଲି । ମୋ କଥା ନ ମାନି ଯେଉଁମାନେ ବୋହୂକୁ ଘରକୁ ଆଣିଲେ ସେମାନେ ସମ୍ଭାଳନ୍ତୁ । ମୁଁ କ'ଣ କରିବି ? ତା' ସ୍ତ୍ରୀ ନିରାଶ ହେଲା ଭଳି ମୋ ମୁହଁକୁ ଚାହିଁ ଭୋ-କରି କାନ୍ଦି ଉଠିଲା ।

ମୁଁ ତାକୁ କହିଲି- 'ମା' ! ତୋର କିଛି ଦୋଷ ନାହିଁ, କିନ୍ତୁ ଏମାନେ ତ ମୋ କଥା ମାନିଲେ ନାହିଁ । ତୁମେ କ'ଣ ମୋ କଥା ମାନି ଚଳିପାରିବ ? ତୁମେ ଶୁଣିଥିବ ଯମଦୂତମାନେ ତୁମ ସ୍ୱାମୀକୁ ଧରି ଘେନି ଯାଉଥିଲେ । ଚତୁର୍ଭୁଜର ଭାଗ୍ୟ ବଳରୁ ତାକୁ ଛାଡ଼ି ଯାଇଛନ୍ତି । ତାକୁ ବର୍ଷକ ପାଇଁ ସ୍ତ୍ରୀ ସଙ୍ଗ ଓ କଠୋର ପରିଶ୍ରମ ମନା, ସେ ସବୁର ବିରୁଦ୍ଧାଚରଣ ହେଲେ ଯମଦୂତମାନେ ଫେରି ଆସି ଘେନି ଯାଇ ପାରନ୍ତି । ତା'ହେଲେ ତୁମକୁ ବୈଧବ୍ୟ ଯୋଗ ଭୋଗ କରିବାକୁ ପଡ଼ିବ ।'

ବୈଧବ୍ୟ କଥା ଶୁଣିବା କ୍ଷଣି ତା'ର ହାକୁଟି ଠକ୍ କରି ବନ୍ଦ ହୋଇଗଲା ଓ ସେ ବ୍ୟାକୁଳ ହୋଇ ଉଠିଲା । ମୁଁ ଦେଖିଲି ମୋ କଥା ଇଲେକଟ୍ରିକ୍ ସକ୍ ପରି କାମ ଦେଉଛି । ମୁଁ ମନସ୍ତତ୍ତ୍ୱବିତ୍ ନ ହେଲେ ମଧ ସେହି ଭିତ୍ତିରେ ମାନସିକ ଚିକିତ୍ସା କରିବାକୁ ଚତୁର୍ଭୁଜ ସ୍ତ୍ରୀକୁ କହିଲି, 'ତୁମେ ଯଦି ତୁମ ସ୍ୱାମୀ ପୁରୁଷତ୍ୱ ଫେରିପାଇ ବଂଚି ରହିବାକୁ ଇଛା କର ତେବେ ତୁମକୁ ଏକ କଠୋର ବ୍ରତ ଆଚରଣ କରିବାକୁ ପଡ଼ିବ । ତୁମେ ତୁମ ଇଷ୍ଟ ଦେବତାଙ୍କୁ ସ୍ମରଣ କରି ଦିନକୁ ଥରେ ମାତ୍ର ହବିଷାନ୍ନ ଖାଇବ । ବର୍ଷଟି ଯାକ ସ୍ୱାମୀଙ୍କ ସଙ୍ଗେ ସହବାସ ପାଇଁ ଇଛା ପ୍ରକାଶ ନ କରି ଦୂରେଇ ରହି ତାଙ୍କର ଯତ୍ନ ନେବାକୁ ଚେଷ୍ଟା କରିବ । ତାଙ୍କର ମଙ୍ଗଳ କାମନା କରି ଇଷ୍ଟଦେବଙ୍କୁ ସ୍ମରଣ କରି ବର୍ଷେ କାଳ ବ୍ରତ ପାଳନ କଲେ ବ୍ରତ ଉଦ୍ୟାପନ ପରେ ସ୍ୱାମୀଙ୍କ ସଙ୍ଗେ ମିଶିଲେ ତୁମର ଏକ ପୁତ୍ର ଜାତ ହେବ । ତା'ର ବିଶ୍ୱାସ ହେବାପାଇଁ ମୁଁ ଯୋଗାଡ଼ କରିଥିବା ଡ଼େଉଁରିଆଟିଏ ତା' ହାତରେ ବାନ୍ଧିବାକୁ ଦେଇ ତାହା ମନ୍ତୁରା ଡ଼େଉଁରିଆ ବୋଲି କହିଲି ଓ ସେ ଡ଼େଉଁରିଆକୁ ବ୍ରତ ସମୟତକ ହାତରୁ ନ ଫିଟାଇବାକୁ ନର୍ଦ୍ଦେଶ ଦେଲି । ମାନସିକ ଚିକିତ୍ସାରେ ରୋଗୀ ମନରେ ଦୃଢ଼ ବିଶ୍ୱାସ ଜନ୍ମେଇବା ହିଁ ପ୍ରଧାନ ।

ବିଚରା ନୀରିହା ବାଳିକାଟି ମୋ କଥାରେ ପୂର୍ଣ୍ଣ ବିଶ୍ୱାସ କରି ଧବଳେଶ୍ୱରଙ୍କଠାରେ ମାନସିକ ରଖି ବ୍ରତ ପାଳନ କଲା । ତା'ର ବ୍ରତ ପୂର୍ଣ୍ଣ ହେଲାବେଳକୁ ଚତୁର୍ଭୁଜ ମଧ ପୂର୍ଣ୍ଣ ସ୍ୱାସ୍ଥ୍ୟ ଫେରିପାଇଥିଲା । ବ୍ରତ ଉଦ୍ୟାପନ କରି ସେମାନେ ଦାଂପତ୍ୟ ଜୀବନ ଆରମ୍ଭ କରିବାର ବର୍ଷକ ପରେ ସତକୁ ସତ ସେମାନଙ୍କର ଏକ ପୁତ୍ର ସନ୍ତାନ ଜାତ ହେଲା । ପରେ ପରେ ସେମାନେ ଅନ୍ୟ କେତେକ ସନ୍ତାନର ପିତାମାତା ହେଲେ ।

ପ୍ରାୟ ଅଠେଇଶ ବର୍ଷ ପରେ ସେମାନଙ୍କ ଜ୍ୟେଷ୍ଠ ପୁତ୍ରର ବିବାହକୁ ସେମାନେ ଆମକୁ ନିମନ୍ତ୍ରଣ କରି ଜବରଦସ୍ତି ତାଙ୍କ ଗ୍ରାମ ଜାରକା ନିକଟସ୍ଥ ଗୋପାଳପୁର ଘେନି ଯାଇଥିଲେ । ଚତୁର୍ଭୁଜ ଚିକିତ୍ସାପରେ ସେ ଅଞ୍ଚଳରୁ ବହୁ ରୋଗୀ ମୋର ଚିକିତ୍ସାଧିନ ହୋଇଥିଲେ ମଧ ସେ ଗ୍ରାମ ଦେଖି ନ ଥିଲି । ଚତୁର୍ଭୁଜର ଚିକିତ୍ସା ବେଳେ ତା'ର ପିତାମାତା ମୋତେ ସାକ୍ଷାତ କରିଥିଲେ । ଚତୁର୍ଭୁଜର ପିତା ବହୁକାଳୁ ସ୍ୱର୍ଗାରୋହଣ କରିଥିଲେ ମଧ ତାର ୧୦୬ ବର୍ଷର ମାତା ମୋତେ ଆଉଥରେ ଦେଖିବା ପାଇଁ ବ୍ୟାକୁଳ ଥିଲେ । ମୁଁ ତାଙ୍କ ପୁତ୍ରକୁ ଯମଠାରୁ ଛଡ଼ାଇ ଆଣିଥିଲି ବୋଲି ସେ ମୋତେ ଦେବତା ଜ୍ଞାନ କରୁଥିଲେ । ମୁଁ ସେଠାକୁ ଯିବାର ଦିନେ ଦୁଇଦିନ ପୂର୍ବରୁ ସେ ନିର୍ବାକ ହୋଇ ପଡ଼ି ରହିଥିଲେ । ଡ଼ାକ୍ତର ବାବୁ ଆସିଥିବା ଶୁଣି କର ଲେଉଟାଇ ଆଖି ଫିଟାଇ ମୋତେ ଚାହିଁଲେ ଓ ଆଖି ଛଳ ଛଳ କରି ଅସ୍ପଷ୍ଟ ଭାଷାରେ କଣ କହିଲେ । ତାଙ୍କ ମୁଖମଣ୍ଡଳରେ ଏକ ସନ୍ତୋଷ ଭାବ ଖେଳିଗଲା ପରି ମନେ ହେଲା । ଚତୁର୍ଭୁଜ ଘରେ ସମ୍ବର୍ଦ୍ଧିତ ହୋଇ ମୁଁ କଟକ ଫେରିବା ପରେ ପରେ ସେ ବୃଦ୍ଧା ଆଖି ମୁଦିଲେ । ଚତୁର୍ଭୁଜ ଜାରକା ବଜାରରେ ଏକ ଲୁଗା ଦୋକାନ କରି ରହିଛି । ଏବେ ସେମାନେ ମୋତେ ପିତୃତୁଲ୍ୟ ସମ୍ମାନ କରନ୍ତି ।

**ଛଳନା ରୋଗ :**

ହିଷ୍ଟିରିଆ ରୋଗ ମାନସିକ ଭାରସାମ୍ୟ ହରାଇବା ଯୋଗୁଁ ହୋଇଥାଏ, କିନ୍ତୁ ସମୟ ସମୟରେ ନିଜର ସୁବିଧା ପାଇଁ କେହି କେହି ରୋଗର ଛଳନା କରିଥାଆନ୍ତି । ମନୁଷ୍ୟ ମଧ ଅଭିନୟ ପ୍ରିୟ । ମଣିଷ ସହଜରେ ଜୀବଜନ୍ତୁଙ୍କ ସ୍ୱର ଅନୁକରଣ କରିପାରେ ଓ କେତେକ ରୋଗର ଲକ୍ଷଣ ଅନୁକରଣ କରି ଛଳନା ମଧ କରିପାରେ ।

ଥରେ  ଜଣେ ଭଦ୍ରଲୋକ ବ୍ୟତିବ୍ୟସ୍ତ ହୋଇ ମୋତେ ତାଙ୍କ ଘରକୁ ଡ଼ାକିନେବାକୁ ଆସି କହିଲେ- 'ତାଙ୍କ ଚାକର ଟୋକାଟା ଅଗଣା କୂଅ ଚାନ୍ଦିନୀ ଉପରେ ବାସନ ମାଜିବା ବେଳେ ହଠାତ୍ ସେଠାରେ ପଡ଼ିଯାଇ ଗଁ ଗଁ ଶବ୍ଦ କଲା । ଶବ୍ଦ ଶୁଣି ତା' ପାଖକୁ ଗଲା ବେଳକୁ ସେ ଅଚେତ ହେଲା ପରି ପଡ଼ିରହିଛି ଓ ତା'ର ପାଟିର କଣରୁ ଫେଣ ଭଚି ନାଳ ଗଡ଼ୁଛି । ତାକୁ ସାପ ମାରିଥିବ ଭାବି ତା'ର ଶରୀରରୁ ସବୁ ଅଂଶ ଖୋଜି ଦେଖିଲୁ କିନ୍ତୁ କୌଣସି କ୍ଷତ ଚିହ୍ନ ଦେଖିଲୁ ନାହିଁ ।

ମୁଁ ଯାଇ ତାଙ୍କ ଘରେ ପହଞ୍ଚିଲା ବେଳକୁ ସାହିଯାକ ଲୋକ ସେଠାରେ ରୁଣ୍ଡ ହୋଇ କିଏ କେତେ ମନ୍ତବ୍ୟ ଦେବାରେ ଲାଗିଛନ୍ତି । କିଏ କହୁଛି ସେ ବିଷ ଖାଇଛି । ଅନ୍ୟ କେହି ତୁନି ତୁନି କରି କହୁଛି ଗୃହସ୍ୱାମୀଙ୍କ ଅତ୍ୟଧିକ ମାଡ଼ର ଏ ଫଳ । ମୁଁ ସେ ସମସ୍ତଙ୍କୁ ସେଠାରୁ ଚାଲିଯିବାକୁ କହି ଚାକରଟାକୁ ଭଲ କରି ପରୀକ୍ଷା କରିବା ପରେ ହଠାତ୍ ତା' ଦେହରୁ ପୁଳାଏ ଭଲକରି ଚିମୁଟି ଦେଲି । ସେ ହଠାତ୍ ଚମକି ପଡ଼ିଲା ପରି ଆଖି

ମେଲା କରି ମୋତେ ଦେଖିବା କ୍ଷଣି ପୁଣି ଆଖି ମୁଦି ପଡ଼ି ରହିଲା ଆଉ ଟିମୁଟା କାମଦେଲା ନାହିଁ । ମୁହଁରେ ପାଣି ମାରି ହଲଚଲ କଲେ ମଧ୍ୟ ସେ ନିର୍ଜୀବ ପରି ପଡ଼ିରହିଲା । ଆମ୍ବୁଲାନ୍ସ ଆସିଯାଇଥିଲା । ମୁଁ ତାକୁ ଆମ୍ବୁଲାନ୍ସରେ ଧରି ଆଶୁ ଚିକିତ୍ସାଳୟକୁ ଆଣି ସେଠାର ପୁରୁଣା ବେହେରାକୁ କହିଲି ଏ ରୋଗୀ ବିଷ ଖାଇଛି । ଶୀଘ୍ର ଷ୍ଟମାକ ଟିଉବ୍ ଆଣି ତା' ପାଟିରେ ଭର୍ତ୍ତିକରି ପେଟ ସଫା କର । ମୋ ଇଙ୍ଗିତରେ ଜଡ଼ାତେଲ ଜୁଡୁବୁଡୁ ମୋଟା ରବର ନଳୀଟିଏ ଆଣି ବେହେରାମାନେ ତାକୁ ମାଡ଼ିବସି ତା ପାଟି ମେଲାକରି ସେ ଟିଉବ୍‌ଟା ପୂରାଇଲା ବେଳକୁ ସେ ଛାଟିପିଟି ହୋଇ ହାତରେ ନଳୀଟାକୁ ପାଟିରୁ ଆଡ଼େଇଦେଇ କହିଲା- ବାବୁ, ମୋତେ ଛାଡ଼ିଦିଅ, ମୁଁ ବାସନ ମାଜିବି ଆଉ କୁଅ ମୂଳେ ଆଉ କରି ଶୋଇବିନି ।

ଏପରି ସବୁ ଘଟଣା ଯୋଗୁ ମୋର ଲୋକ ସଂପର୍କ ବଢ଼ିବା ଆରମ୍ଭ କଲା ଓ ଘରୋଇ ଚିକିତ୍ସା ପ୍ରତି ମନ ବଳିଲା ।



# ଘରୋଇ ଚିକିତ୍ସା ଅଭିଜ୍ଞତା

**ଅବାଞ୍ଛିତ ପ୍ରଲୋଭନ:**

ମୁଁ ପୁଣି ମୋର କ୍ଲିନିକ୍‌ସ ଆରମ୍ଭ କଲାବେଳେ ମୋର ଦୟନୀୟ ଆର୍ଥିକ ପରସ୍ଥିତିରେ ମୋତେ ସାହାଯ୍ୟ କରିବାକୁ ଜଣେ ପଡ଼ୋଶୀ ଆଇନ ବ୍ୟବସାୟୀ ଆଗେଇ ଆସିଥିଲେ । ତାଙ୍କ ନିକଟକୁ ମାଲିମୋକଦ୍ଦମା ପାଇଁ ଦେହଖରାପ ବୋଲି ସାର୍ଟିଫିକେଟ ଦେଲେ ସେ ତାଙ୍କର କ୍ଲାଏଣ୍ଟଙ୍କଠାରୁ ମୋ ଫିଜ ଆଦାୟ କରାଇଦେବେ ଓ ତା'ଦ୍ୱାରା ମୁଁ ସହଜରେ ଦୁଇ ପଇସା ରୋଜଗାର କରିପାରିବି ବୋଲି ପ୍ରସ୍ତାବ ଦେଲେ । ସେପରି ମିଛ ସାର୍ଟିଫିକେଟ ଦେଇ ରୋଜଗାର କରିବା ନୀତିବିରୁଦ୍ଧ ମନେକରି ମୁଁ ସେ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲି ।

**ଉପସ୍ଥାନ ସାର୍ଟିଫିକେଟରେ ହଟହଟା :**

ମିଥ୍ୟା ସାର୍ଟିଫିକେଟ ସମ୍ବନ୍ଧରେ ମୋର କଲେଜ ବେଳର ଘଟଣାଟି ମନେ ପଡ଼ିଥିଲା । ଉପସ୍ଥାନ କମିଗଲେ ପରୀକ୍ଷାରୁ ବଞ୍ଚିତ ହେବାକୁ ଥିବାରୁ ପରୀକ୍ଷା ପୂର୍ବରୁ ଦେହଖରାପ ଯୋଗୁଁ ସେ ଛାତ୍ର କଲେଜକୁ ଆସିପାରି ନ ଥିଲେ ବୋଲି ଡାକ୍ତରୀ ସାର୍ଟିଫିକେଟ ସବୁ ଦାଖଲ କରିଥାଆନ୍ତି । କଟକର ଜଣେ ରାଜନୈତିକ ଡାକ୍ତର ପିଲାଙ୍କୁ ସାହାଯ୍ୟ କରିବା ପାଇଁ ଅକାତରରେ ସେପରି ସାର୍ଟିଫିକେଟ୍ ଦେଇଥାଆନ୍ତି । ପରୀକ୍ଷା ପାଇଁ ଯାଞ୍ଚ ବେଳେ ଜଣେ ଛାତ୍ରଙ୍କର ସେପରି ଗୋଟିଏ ସାର୍ଟିଫିକେଟ ଅଫିସ ଫାଇଲରେ ନ ମିଳିବାରୁ କ୍ଲର୍କ ସେ ଛାତ୍ରଙ୍କୁ କହିଲେ । ସେ ଛାତ୍ର ଧାଇଁଯାଇ ପୁଣି ଦୁଇଟଙ୍କା ଦେଇ ସେ ଡାକ୍ତରଙ୍କଠାରୁ ସାର୍ଟିଫିକେଟ୍ ଘେନି ଆସିଲେ । ଅଫିସରେ ପୂର୍ବ ସାର୍ଟିଫିକେଟ୍‌ଟି ମିଳିଯିବାରୁ ହେଡ଼ କ୍ଲର୍କ ଦୁଇଟିଯାକ ସାର୍ଟିଫିକେଟ କଲେଜ ଅଧକ୍ଷ ପରିଜା ସାହେବଙ୍କ ନିକଟରେ ଉପସ୍ଥାପିତ କରିଥିଲେ । ପ୍ରଥମଟିଏରେ ଯେଉଁ ସମୟ ପାଇଁ ସେ ନିମୋନିଆ ରୋଗ ଭୋଗୁଥିବା କଥା ଲେଖା ହୋଇଥିଲା ସେଥିପାଇଁ ଦ୍ୱିତୀୟ ସାର୍ଟିଫିକେଟରେ ଟାଇଫଏଡ଼ ଦର୍ଶାଯାଇଥିଲା । ତାହା ଦେଖି ସେ ଦୁଇଟିଯାକ ଦରଖାସ୍ତ ମିଳୁନାହିଁ ଦର୍ଶାଇ ଆଉ ଗୋଟିଏ ସାର୍ଟିଫିକେଟ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ । ସେ ଡାକ୍ତର କୌଣସି ରେକର୍ଡ଼ ରଖୁନଥିଲେ । ସେ ପୁଣି ଦୁଇଟି ଟଙ୍କାରେ ସେ ସମୟରେ ସେ ଛାତ୍ର ହଇଜା ଓ ମେଲେରିଆ ଭୋଗୁଥିଲେ ବୋଲି ଲେଖିଦେଲେ । ସେ ତିନୋଟିଯାକ ଡାକ୍ତର ସାର୍ଟିଫିକେଟ୍ ନୋଟିସ ବୋର୍ଡ଼ରେ ଲଗାଯାଇ ତା' ତଳେ ଲେଖାଯାଇଥିଲା ଯେ ଏପରି

ଅସାଧୁ ଡାକ୍ତରଙ୍କ ସାର୍ଟିଫିକେଟ ଚଳିବ ନାହିଁ । ମିଥ୍ୟା ସାର୍ଟିଫିକେଟ୍ ଦେଲେ ଛାତ୍ର ଦଣ୍ଡନୀୟ ହେବେ । ସେହି ଡାକ୍ତର ଜଣେ ଜଣାଶୁଣା ବିଧାନସଭା ସଦସ୍ୟ ଓ ନେତୃସ୍ଥାନୀୟ ବ୍ୟକ୍ତି ଥିବାରୁ ସେଥିପାଇଁ ବହୁ ଭାବରେ ହଟହଟା ଓ ଅପମାନିତ ହୋଇଥିଲେ ।

**ଜବରଦସ୍ତି ସାର୍ଟିଫିକେଟ :**

ବେଳେବେଳେ ମୋହମତ ଏଡ଼ି ନ ପାରି ଅହେତୁକ ଭାବରେ ମଣିଷ ବିପଦରେ ପଡ଼ିଯାଇଥାଏ । ମୋର ପିତା ଜଣେ ତୁଙ୍ଗ ରାଜନୈତିକ ନେତା ଥିବାରୁ କେତେକ ରାଜନୈତିକ ବ୍ୟକ୍ତି ମୋ ଉପରେ ତାଙ୍କର ଦାବି ସାବ୍ୟସ୍ତ କରି ଫାଇଦା ଉଠାଇଥିଲେ । ସେ ସମୟରେ ପିତାଙ୍କର ଜଣେ ସହକର୍ମୀ ନେତା ଗୁଡ଼ିଏ ମାଲିମୋକଦ୍ଦମାରେ ଜଡ଼ିତ ହୋଇ ପଡ଼ିଥିଲେ । କଚେରୀରେ କୌଣସି କୌଣସି ମୋକଦ୍ଦମାରେ ମହଲତ ନେବା ପାଇଁ ତାଙ୍କର ଡାକ୍ତରୀ ସାର୍ଟିଫିକେଟ ଦରକାର ପଡୁଥିଲା । ଦିନେ ମୁଁ ମୋର କ୍ଲିନିକ୍‌ସକୁ ଯିବାବେଳେ ଗୋଟିଏ ଲୁଗା ଦୋକାନରେ ସେ ବସିଥିଲେ । ମୋତେ ଦେଖିବା କ୍ଷଣି ପାଖକୁ ଡାକିଲେ । ତାଙ୍କର ରକ୍ତଚାପ ବୃଦ୍ଧି ରୋଗ ଯୋଗୁଁ ସେ ଓଦା ଗାମୁଛାଟିଏ ମୁଣ୍ଡ ଉପରେ ରଖିଥିଲେ । ପୂର୍ବଦିନ ଖବରକାଗଜରେ ରକ୍ତଚାପ ଜନିତ ରୋଗରେ ସେ ଅସୁସ୍ଥ ଥିବାର ମୁଁ ଖବର କାଗଜରୁ ପଢ଼ିଥିଲି । ମୁଁ ତାଙ୍କ ନିକଟକୁ ଯାଇ ସେ କିପରି ଅଛନ୍ତି ପଚାରୁ ପଚାରୁ ସେ ମୋ ହାତ ଧରି ଟାଣିନେଇ ସେହିଠାରେ ଖଣ୍ଡିଏ ସାର୍ଟିଫିକେଟ ଲେଖି ଦେବା ପାଇଁ ଅନୁରୋଧ କରି ମୋ ବ୍ୟାଗ୍‌ରୁ ମୋ ପ୍ୟାଡ଼ ବାହାର କରି ସେଥିରେ ଲେଖି ଦେବା ପାଇଁ ଜବରଦସ୍ତି କଲେ । ମୁଁ ସେ ପରିସ୍ଥିତିରେ ଦୋକାନର ଅନ୍ୟମାନଙ୍କ ସାମ୍ନାରେ ତାଙ୍କ କଥା ଭାଙ୍ଗି ନ ପାରି ସାର୍ଟିଫିକେଟ ଲେଖିଦେଲି ।

ସେହି ସାର୍ଟିଫିକେଟକୁ ନେଇ କଚେରୀରେ ହୁଲସ୍ଥୁଲ ପଡ଼ିଥିବା କଥା ମୁଁ ଜାଣି ନ ଥିଲି । ତା'ର କେତେଦିନ ପରେ ମୋର ପୁତୁରାଙ୍କ ବ୍ରତ ଘର ଦିନ ମୁଁ ମୋର ପିତା ଓ ଅନ୍ୟ କେତେକ ଗୁରୁଜନଙ୍କ ସହିତ ଏକାଠି ବସିଥିବା ସମୟରେ କଟକର ବିଶିଷ୍ଟ ଆଡଭୋକେଟ ରାୟ ବାହାଦୂର ଚିନ୍ତାମଣି ଆଚାର୍ଯ୍ୟ ସେଠାରେ ପହଞ୍ଚିବା କ୍ଷଣି ମୋ ମୁହଁକୁ ଚାହିଁ ବଡ଼ ପାଟିରେ କହିଲେ- "ହଇରେ ଡାକ୍ତର, ତୁ ଝୁଟା ସାର୍ଟିଫିକେଟ ଦେଉଛୁ । ଏବେ ତୋ ଚିକିତ୍ସା ଲାଇସେନସ୍ ବାତିଲ ହୋଇଥା'ନ୍ତା । ତୁ ଅଳ୍ପକେ ଖସିଗଲୁ । ପ୍ରଧାନ ବିଚାରପତି ଲିଙ୍ଗରାଜ ପାଣିଗ୍ରାହୀ ତୋ ପିତାଙ୍କ ବନ୍ଧୁ ହୋଇଥିବାରୁ କୋହଳ ବିଚାର କରି ତୋପରି ଉଚ୍ଚ ଡ଼ିଗ୍ରୀଧାରୀ ଡାକ୍ତରର ଦୋଷ ନାହିଁ ରୋଗୀର ଦୋଷ ବୋଲି ତୋତେ ନିର୍ଦ୍ଦୋଷରେ ଖଲାସ ଦେଲେ ।

ମୁଁ କି ସାର୍ଟିଫିକେଟ କାହାକୁ ଦେଇଥିଲି ବୋଲି ପଚାରିବାରେ ଚିନ୍ତାମଣୀ ବାବୁ କହିଲେ, ତୁ ଅମୁକ ନେତାଙ୍କୁ ସାର୍ଟିଫିକେଟ ଦେବା କଥା କଅଣ ଏତେ ଶୀଘ୍ର ଭୁଲିଗଲୁ ?

ସେ ବ୍ୟକ୍ତିଙ୍କର କଚେରୀରେ ଦୁଇଟି ମୋକଦ୍ଦମା ସେ'ଦିନ ଥିଲା । ତାଙ୍କ ବିରୁଦ୍ଧରେ ଯାଉଥିବା ମୋକଦ୍ଦମା ମହଲତ ନେବା ପାଇଁ ସେ ତୋ ସାର୍ଟିଫିକେଟଟି ଦାଖଲ କରି ଅନ୍ୟ ଏକ କୋର୍ଟରେ ଥିବା ତାଙ୍କ ସପକ୍ଷରେ ଯାଉଥିବା ମୋକଦ୍ଦମାରେ ହାଜର ହୋଇଗଲେ । ସେ ନେତାଙ୍କ ନାମ ପ୍ରକାଶ ହେବା ସଙ୍ଗେ ସଙ୍ଗେ ମୋର ପିତା ହସି ପକାଇ କହିଲେ ''ବିକ୍ରମ କଣ ସାର୍ଟିଫିକେଟ ନ ଦେବାଯାଏ ସେ ଲୋକର ଡର ସହିଥିବ । ତା' କଥାକୁ ବିକ୍ରମର ଭାଙ୍ଗିବା ଶକ୍ତି କେଉଁଠୁ ଆସିବ ? ତା'ପରେ ସେ'ତ ପ୍ରକୃତ ଅସୁସ୍ଥ ଥିଲା ।''

## ଚିକିତ୍ସାଧୀନ ରୋଗୀକୁ ସାର୍ଟିଫିକେଟ୍ :

ମୁଁ ସେ ଘଟଣାରେ ବଡ଼ ଅପ୍ରତିଭ ହୋଇଥିଲେ ମଧ ମୁଁ ଚିକିତ୍ସା କରୁଥିବା ମୋ ନିଜ ରୋଗୀକୁ ଡାକ୍ତର ଏଟିକେଟ ବା ଶୃଙ୍ଖଳା ଅନୁସାରେ ଛୁଟି ପାଇଁ ସାର୍ଟିଫିକେଟ ଦେବାକୁ ବାଧ ହେଉଥିଲି । ଅବଶ୍ୟ ନିଜ ଲୋକଙ୍କୁ ମଧ ଉପସ୍ଥାନ ପ୍ରଭୃତି ପାଇଁ ସାର୍ଟିଫିକେଟ ଦେଉନଥିଲି । ସେଥିପାଇଁ କେତେକ ଲୋକଙ୍କଠାରେ ମୁଁ ଅପ୍ରିୟ ହୋଇଥିଲି ।

ସେଟଲମେଣ୍ଟ ଅଫିସର ଜଣେ କିରାଣୀଙ୍କର ଦେହ ଖରାପ ଥିବାରୁ ସେ ମୋର ଚିକିସାଧିନ ରହିଥିଲେ । ମୁଁ ତାଙ୍କୁ ପୂର୍ଣ୍ଣ ବିଶ୍ରାମ ନେବା ପାଇଁ ପରାମର୍ଶ ଦେଇଥିଲି । ସେ ଆରୋଗ୍ୟ ହେବା ପରେ ମୋ ପରାମର୍ଶ ଲେଖା କାଗଜକୁ ତାଙ୍କ ଅଫିସରେ ଦାଖଲ କରି ଛୁଟି ମାଗିଥିଲେ । ସେ ଅଫିସର ସର୍ବୋଚ୍ଚ କର୍ତ୍ତା ଜଣେ ଆଇ.ଏ.ଏସ ଅଫିସର ଥିଲେ । ସେ ନିୟମକୁ ଖୁଣ୍ଟି କାଣ୍ଡି କରି ଦେଖି ତାଙ୍କ କର୍ମଚାରୀଙ୍କ ଉପରେ ହାକିମ ଜାହିର କରୁଥିଲେ । ସେ ସମୟରେ କୌଣସି ସରକାରୀ ସ୍ୱାସ୍ଥ୍ୟ ବିଶେଷଜ୍ଞ କୌଣସି ଅଫିସରୁ ରିକ୍ୟୁଜିସନ ପାଇଲେ ସେ ବିଭାଗର ରୋଗୀଙ୍କୁ ଦେଖିବାର ଏକ ସରକାରୀ ବିଜ୍ଞପ୍ତି ରହିଥିଲା ।

ମୁଁ ଜଣେ ବିଶେଷଜ୍ଞ ଥିବାରୁ ଓ ନିକଟରେ ମେଡ଼ିକାଲ କଲେଜରେ ଯୋଗ ଦେଇଥିବାରୁ ତାଙ୍କ ଆଖି ମୋ ଉପରେ ପଡ଼ିଲା । ମୁଁ ଜଣେ ବିଶେଷଜ୍ଞ ହୋଇ ତାଙ୍କ ବିନା ନିବେଦନରେ ତାଙ୍କ ବିଭାଗର କର୍ମଚାରୀଙ୍କୁ ଚିକିତ୍ସା କରି ସାର୍ଟିଫିକେଟ ଦେଇଥିବାରୁ ମୋତେ ଶୃଙ୍ଖଳାଭଙ୍ଗ ଅପରାଧରେ ଦୋଷି କରି ଶାସ୍ତି ବିଧାନ କରିବା ପାଇଁ ଆମ ହସ୍‌ପିଟାଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟକୁ ଏକ ନୋଟିସ ପଠାଇଲେ । ଆମ କଲେଜର ନିଦାନ ବିଭାଗ ସହିତ ହସ୍‌ପିଟାଲରେ ସୁପରିନ୍‌ଟେଣ୍ଡେଣ୍ଟଙ୍କର କୌଣସି କର୍ତ୍ତୃତ୍ୱ ନ ଥିବାରୁ ସେ ତାହା ଆମ ପ୍ରିନ୍‌ସିପାଲଙ୍କ ନିକଟକୁ ପଠାଇ ଦେଲେ । ପ୍ରିନ୍‌ସିପାଲ ମୋତେ ସଫେଇ ମାଗିବାରୁ ସାଧାରଣ ଚିକିତ୍ସା ବେଳେ କେବଳ ବ୍ୟକ୍ତିର ନାମ, ବୟସ, ଘର ଓ ପିଲାଙ୍କ ନାମ ବିଚାରକୁ ନିଆଯାଇଥାଏ । ତାଙ୍କ ଚାକିରି ଠିକଣା ପ୍ରଭୃତି ବିଚାରକୁ ନିଆଯିବାର

ଆବଶ୍ୟକତା ନ ଥାଏ । ରୋଗୀ ଦେଖିବା ମାତ୍ରେ ଡାକ୍ତରର ତାକୁ ଚିକିତ୍ସା କରିବା ଧର୍ମ । ଉକ୍ତ ଅଫିସର ଯଦି ତାଙ୍କ କର୍ମଚାରୀଙ୍କୁ କେହି ଚିକିତ୍ସକ ଚିକିତ୍ସା କରିବା ନ ଚାହାନ୍ତି ତେବେ ସେ ସମସ୍ତ କର୍ମଚାରୀଙ୍କ ମୁଣ୍ଡରେ ଅଫିସ ଛାପ ମାରି ବାହାରକୁ ଛାଡ଼ନ୍ତୁ, ତା'ହେଲେ ସେପରି କର୍ମଚାରୀ ରୋଗରେ ଅଚେତ ହୋଇ ପଡ଼ିଥିଲେ ମଧ ଡାକ୍ତର ତାଙ୍କ ଚିକିତ୍ସା ପାଇଁ ଅଫିସରଙ୍କ ଅନୁମୋଦନକୁ ଅପେକ୍ଷା କରିବେ । ଜଣେ ବି.ଏ. ପାଶ କରି ଆଇ.ଏ.ଏସ୍ ଅଫିସର ମୋ ସମ୍ବନ୍ଧରେ ଏପରି ଅଭିଯୋଗ କରିଥିବା ଯୋଗୁଁ ସ୍ୱାସ୍ଥ୍ୟ କର୍ତ୍ତୃପକ୍ଷ ତାଙ୍କ ବିରୁଦ୍ଧରେ ମାନହାନୀ ମୋକଦ୍ଦମା କରିବା ଉଚିତ । ସେତିକିରେ ମୁଁ ସେ ପ୍ରଭାବଶାଳୀ ପ୍ରତିହିଂସାପ୍ରିୟ ଅଫିସରଙ୍କ କବଳରୁ ରକ୍ଷା ପାଇଥିଲି ।

**ଭେଜାଲ ରୋଗୀ :**

ସମାଜରେ ବହୁ ପ୍ରକାର ଲୋକ ଦେଖାଯାଆନ୍ତି । ଓକିଲଙ୍କ ଚାରିପଟେ ଅନେକ ଗ୍ରାମୀୟ ମିଥ୍ୟା ସାକ୍ଷୀ ଦେଉଥିବା ଟାଉଟର ମଧ ଘେରି ରହିଥାଆନ୍ତି । ସେମାନଙ୍କ ପ୍ରତ୍ୟୁତ୍ପନ୍ନମତିତା ବିଷୟରେ ମୁଁ ବହୁ ଗଳ୍ପ ଶୁଣିଥିଲି । ଗୋଟିଏ ଚୋରି ମୋକଦ୍ଦମାରେ ଜଣେ ମିଥ୍ୟା ସାକ୍ଷୀ ସେ ଚୋରକୁ ସ୍କୁଲଘରର ରଡ଼ ଭାଙ୍ଗି ଝରକା ବାଟେ ଖସି ପଳାଉଥିବାର ଦେଖିଛନ୍ତି ବୋଲି କହିବାରେ ଅପରପକ୍ଷର ଲୋକ ସେ ସ୍କୁଲ ଝରକାରେ ଆଦୌ ରଡ଼ ନ ଥିବା ଜାଣି ସେ ଝରକାରେ କେତେଟା ରଡ଼ ଥିଲା ବୋଲି ପଚାରିଲେ । ସାକ୍ଷୀ ସଙ୍ଗେ ସଙ୍ଗେ ଓକିଲଙ୍କୁ କହିଲେ ଆପଣ ତଳକୁ ମୁଣ୍ଡ ପୋତି ଏ ଘର ଛାତରେ କେତେଟା କଡ଼ି ଅଛି କୁହନ୍ତୁ । ସେତିକିରେ ତାଙ୍କ ସାକ୍ଷ ସତ ବୋଲି ପ୍ରମାଣିତ ହେଲା ।

ସେହିଭଳି ଜଣେ ଅତି ଚତୁର ଝୁଟା ସାକ୍ଷୀ ମୋର ଛୋଟ ପୁତୁରାକୁ ସଙ୍ଗରେ ଧରି ମୋ ପାଖରେ ପହଞ୍ଚିଲେ । ତାଙ୍କର ଦୁଇ କାନରେ ଦୁଇଟି ସୁନା ନୋଳି, ମୁଣ୍ଡରେ ଘିଅ ମାଳିସ ହୋଇଥିବା ବେକାଏ ବାଳର ଚୁଟି, ପିନ୍ଧା ସାଧାରଣ ଲୁଗା ଓ କାନ୍ଧରେ ଗାମୁଛା । ସେ ତାଙ୍କ ଦୁଇ କଳରୁ ବାହାରି ଆସୁଥିବା ପାନପିକକୁ ଗାମୁଛାରେ ପୋଛି ପୋଛି ତାଙ୍କ ବକ୍ତବ୍ୟ ଆରମ୍ଭ କରିଦେଲେ । ମୋକଦ୍ଦମାରେ ଯଦି ହାରିବ ତେବେ ଆପଣଙ୍କ ଭାଇଙ୍କ ଭଳି ବଡ଼ ଓକିଲ ଦେଇ ହାରିବ । ମରିବ ଯଦି ଆପଣଙ୍କ ଭଳି ବଡ଼ ଡାକ୍ତର ହାତରେ ମରିବ । ତା'ପରେ ମୋର ବହୁ ପ୍ରଶସ୍ତି କରିସାରି ନିଜର ପେଟକୁ ଚିପି ଯନ୍ତ୍ରଣାରେ ଗଡ଼ିବାର ଅଭିନୟ କରି ନିଜର ବିକୃତ ମୁଖ ଦେଖାଇ କାନ୍ଦ କାନ୍ଦ ହୋଇ କହିଲେ- 'ଆଜ୍ଞା, ପେଟରେ ଭାରି କଷ୍ଟ, କିଛି ଖାଇ ହେଉନାହିଁ । ଯାହା କିଛି ପେଟକୁ ଗଲେ ଖାଦ୍ୟ ନଳୀର ଦୁଇପଟେ ବାହାରକୁ ବାହାରି ପଡୁଛି । ଯନ୍ତ୍ରଣା ସହି ହେଉନାହିଁ, ଆପଣ ଭଲ ନ କଲେ ଆଉ କେହି କରିପାରିବେ ନାହିଁ ।

ତାଙ୍କ କଥା ଶୁଣି ମୁଁ ତାଙ୍କୁ ମୋର ପରୀକ୍ଷା ଟେବୁଲ ଉପରେ ଶୋଇବାକୁ ନିର୍ଦ୍ଦେଶ ଦେଇ ତାଙ୍କୁ ପରୀକ୍ଷା କରିବାକୁ ମୋ ଯନ୍ତ୍ରପାତି ପ୍ରସ୍ତୁତ କଲି । ସେ ପରୀକ୍ଷା ଟେବୁଲ

ପାଖକୁ ନ ଯାଇ ହଠାତ୍ ହସ ହସ ମୁହଁରେ କହିଲେ- 'ଆଜ୍ଞା ମୁଁ କାହିଁକି ଆପଣଙ୍କ ଟେବୁଲ ଉପରେ ଶୋଇବି ମୋର କଅଣ ହୋଇଛି ଯେ ? ରୋଗୀ ଯେ, ସେ କ'ଣ ଆସିଛି କି ? ମୋ ଗ୍ରାମର ଜଣେ ସ୍ତ୍ରୀ ଲୋକଠାରେ ସେପରି ଲକ୍ଷଣ ସବୁ ଦେଖାଯାଉଥିବାରୁ ମୁଁ ତାହା ଆପଣଙ୍କ ଆଗରେ ବର୍ଣ୍ଣନା କଲି । ଆପଣ ଅମୃତ ହସ୍ତା, ଆପଣ ଔଷଧ ଲେଖିଦେଲେ, ପାନକେ ତା'ର ସବୁ ରୋଗ ଛାଡ଼ିଯିବ । ଆପଣ ଦୟାକରି ଔଷଧ ଲେଖି ଦିଅନ୍ତୁ । ମୁଁ ଜାଣିଲି ଯେ ସେଥରକ ମୋକଦ୍ଦମାଖୋରଙ୍କ ଠାରୁ ପଇସା ନ ପାଇ କୌଣସି ନିରିହ ରୋଗୀକୁ ବଡ଼ ଡାକ୍ତରଙ୍କଠାରୁ ଔଷଧ ଆଣି ତୋତେ ଭଲ କରିଦେବି କହି ତା' ପଇସାରେ କଟକ ଆସିଥିଲା ।

**ସନ୍ତାନ ପିପାସା :**

ଜୀବ ମାତ୍ରେ ସନ୍ତାନ ଶରୀରରେ ତା'ର ବଂଶ ପରମ୍ପରାର ସନ୍ତକ ଛାଡ଼ିଯାଏ । ତେଣୁ ସେ ଜୀବଟିର ମୃତ୍ୟୁରେ ତା'ର ବଂଶ ପରମ୍ପରା ଲୋପ ହୁଏ ନାହିଁ । ମନୁଷ୍ୟ ସନ୍ତାନଟିଏ ଲାଭ ପାଇଁ ଯୁଗ ଯୁଗ ଧରି ଭଗବାନଙ୍କ ନିକଟରେ ଅଳି କରି ଆସିଛି । ସେଥିପାଇଁ, କାଠ ପଥରର ଠାକୁର, ପର୍ବତ, ନଦୀ ପୁଷ୍କରିଣୀ ଠାରୁ ସାଗର ପର୍ଯ୍ୟନ୍ତ ସମସ୍ତଙ୍କୁ ଠାକୁର ଠାକୁରାଣୀ ରୂପ ଦେଇ ପୂଜା କରି ସନ୍ତାନ ପାଇଁ ପ୍ରାର୍ଥନା କରି ଆସିଛି ।

ଯୁଗ ବଦଳିଛି, ଜନସଂଖ୍ୟା ବୃଦ୍ଧି ଓ ଖାଦ୍ୟ ଅନାଟନ ଦୃଷ୍ଟିରୁ ବର୍ତ୍ତମାନ ଜନ୍ମ ନିୟନ୍ତ୍ରଣ ଓ ଜନ୍ମ ନିରୋଧ ପାଇଁ ଆମ ଦେଶରେ ଆନ୍ଦୋଳନ ଚାଲିଛି । ବିଶେଷତଃ ଶିକ୍ଷିତ ସଂପ୍ରଦାୟ ଓ ଥିଲାବାଲାମାନେ ବଂଶବୃଦ୍ଧିକୁ ଅଟକାଇବା ପାଇଁ ପ୍ରଯତ୍ନ କରିବାରେ ଲାଗିଛନ୍ତି ।

ବିଜ୍ଞାନର ପ୍ରଗତିରୁ ଶିଶୁ ମୃତ୍ୟୁସଂଖ୍ୟା ହ୍ରାସ ଘଟିବାରୁ ଗୋଟିଏ ଦୁଇଟି ସନ୍ତାନ ଯଥେଷ୍ଟ ଓ ସେମାନେ ବଞ୍ଚି ରହିବେ ବୋଲି ଲୋକଙ୍କ ବିଶ୍ୱାସ ଜନ୍ମିଛି । ଆଗ କାଳରେ ଶିଶୁ ମୃତ୍ୟୁ ସଂଖ୍ୟା ଏତେ ଅଧିକ ଥିଲା ଯେ ଲୋକେ ଅଠରଟି ସନ୍ତାନ ଜନ୍ମ କଲେ ମଧ ସେଥିରୁ ଗୋଟିଏ ବଞ୍ଚାଇ ପାରୁନଥିଲେ । ଏବେ ଶିଶୁ ଚିକିତ୍ସା ଓ ଜନ୍ମ ନିରୋଧ କାନ୍ଧକୁ କାନ୍ଧ ମିଳାଇ ଚାଲିବାକୁ ଚେଷ୍ଟା କରୁଛନ୍ତି ।

ତଥାପି ଆମ ସଂସ୍କୃତିରେ ବଂଶ ପରମ୍ପରା ଧରି ରଖିବାକୁ ଅନ୍ତତଃ ଗୋଟିଏ ସନ୍ତାନ ଦରକାର ମନେ କରି ବହୁ ବନ୍ଧ୍ୟା ସ୍ତ୍ରୀ ପୁରୁଷ ବ୍ୟାକୁଳ ହୋଇ ପଡ଼ନ୍ତି । ଏପରିକି ସ୍ତ୍ରୀକୁ ବନ୍ଧ୍ୟା ବୋଲି ଦୋଷ ଦେଇ ନିଜର ଦୋଷକୁ ଘୋଡ଼ାଇ ବହୁବାର ବିବାହ କରନ୍ତି । ଗଞ୍ଜାମରେ ପୁରୁଷ ବନ୍ଧ୍ୟାତ୍ୱ ବେଶୀ । ସେଠାରେ କେତେକ କୁମୁଟି ଓ ଗଉଡ଼ ପ୍ରଭୃତି ବହୁ ବିବାହ କରିବାର ମୁଁ ଜାଣେ । ବ୍ରହ୍ମପୁରରେ ଆମ ଘରେ କ୍ଷୀର ଦେଉଥିବା ତେଲେଙ୍ଗା ଗଉଡ଼ଟି ଗୋଟିକ ପରେ ଗୋଟିଏ ତିନୋଟି ବିବାହ କରି ସନ୍ତାନ ନ ପାଇ ନିରାଶ

ହୋଇଥିଲା । ସେ ତାର ପ୍ରଥମ ସ୍ତ୍ରୀକୁ 'ସୁଧାର' ଓ ଦ୍ୱିତୀୟ ସ୍ତ୍ରୀକୁ 'ଖଇବି' (ସମସ୍ତଙ୍କ ସଙ୍ଗେ କଳି କରେ) ଓ ତୃତୀୟଟିକୁ 'ଟହଟ ଚମ୍ପା' ଆଖ୍ୟା ଦେଇଥିଲା । ପ୍ରଥମ ତା' ସଙ୍ଗେ ଗାଈ ଦୋହିଁବାକୁ ଆସୁଥିଲା । ଦ୍ୱିତୀୟ ଘର କାମ ଓ ରୋଷେଇବାସ କରୁଥିଲା ଓ ତୃତୀୟ ଗାଈ ନେଇ ବେଶବାସ ହୋଇ ଗୋଠକୁ ଯାଉଥିଲା ।

ଘରୋଇ ଚିକିତ୍ସାରେ ବନ୍ଧ୍ୟା ରୋଗୀ ଚିକିତ୍ସା କରିବାର ଭାର ଅନେକ ଥର ନେବାକୁ ପଡ଼ିଛି । ଏ ରୋଗ ସାଧାରଣ ଯକ୍ଷ୍ମା, କୁଷ୍ଠରୋଗ ପ୍ରଭୃତି ପରି ନୁହେଁ । ବନ୍ଧ୍ୟା ସ୍ତ୍ରୀଲୋକମାନେ ଅନେକ ସମୟରେ ମସ୍ତିଷ୍କର ଭାରସାମ୍ୟ ହରାଇ ମାନସିକ ରୋଗ ଭୋଗ କରନ୍ତି । ମଫସଲ ଓ ଦୂରଦୂରାନ୍ତର କେତେକ ଡାକ୍ତର ସେପରି ବନ୍ଧ୍ୟାତ୍ୱର କାରଣ ନିରୂପଣ କରିବା ପାଇଁ ସେ ଦମ୍ପତିଙ୍କୁ ମୋ ଭଳି ରୋଗ ନିର୍ଣ୍ଣୟକାରୀ ବିଶେଷଜ୍ଞଙ୍କ ନିକଟକୁ ପ୍ରେରଣ କରୁଥିଲେ । ସେପରି କେତେକ ଦମ୍ପତିଙ୍କର ରୋଗ ନିର୍ଣ୍ଣୟ ଓ ଚିକିତ୍ସା ହେବା ପରେ ସେମାନେ ବନ୍ଧ୍ୟାତ୍ୱରୁ ମୁକ୍ତି ପାଉଥିଲେ । ପୁରୁଷମାନଙ୍କର ବିଭିନ୍ନ ରୋଗରୁ ଶୁକ୍ରହୀନତା ଓ ସ୍ତ୍ରୀମାନଙ୍କର ଜରାୟୁ ଦୋଷରୁ ସାଧାରଣତଃ ବନ୍ଧ୍ୟାତ୍ୱ ଦୋଷ ଦେଖାଯାଇଥାଏ । ମୋଦ୍ୱାରା ଚିହ୍ନିତ ଓ ଉପକୃତ ରୋଗୀମାନେ ସନ୍ତାନ ଲାଭ କରି ମୋତେ ନାନା ଭାବରେ କୃତଜ୍ଞତା ଜଣାନ୍ତି ।

### କୃତଜ୍ଞତାର ସ୍ମୃତି :

ଥରେ ମୁଁ କେତେକ ଓକିଲଙ୍କ ସଙ୍ଗେ ମୋର ଭାଇ ଅଶୋକ ଦାସ ଆଡ଼ଭୋକେଟଙ୍କ ଗାଡ଼ିରେ ନୟାଗଡ଼ ବୁଲି ଯାଇଥିଲି । ନୟାଗଡ଼ ସହରରେ ବିଭିନ୍ନ ବନ୍ଧୁଙ୍କ ଦୁଆରେ କିଛି ସମୟ ଗାଡ଼ି ରଖି କିଛି ସମୟ କଥାବାର୍ତ୍ତା କରି ମୋଟରରେ ଯାଉଥିବା ସମୟରେ ଜଣେ ଲୋକ ଗୋଟିଏ ମାଠିଆ ମୁଣ୍ଡରେ ମୁଣ୍ଡାଇ ଆମ ଗାଡ଼ି ପଛେ ପଛେ ଦଉଡୁଥିବାର ଦେଖିଲୁ । ସେ ଲୋକକୁ ଚିହ୍ନିଲା ଚିହ୍ନିଲା ପରି ମନେହେଉଥିବାରୁ ମୁଁ ଗାଡ଼ି ରଖାଇଲି । ସେ ଗାଡ଼ି ନିକଟରେ ପହଞ୍ଚିବା କ୍ଷଣି ମୁଣ୍ଡରୁ ଗୁଡ଼ ହାଣ୍ଡିଟି ଓହ୍ଲାଇ ମୋ ପାଖରେ ରଖିଦେଇ କହିଲା, ଆଜ୍ଞା ମୋତେ ଚିହ୍ନିପାରୁ ନାହାନ୍ତି ? ଆର ସାଲରେ ଏଠାର ଡାକ୍ତର ଆପଣଙ୍କ ବନ୍ଧୁ ଆଦାମବାବୁ (ନୟାଗଡ଼ର ସ୍ୱନାମଧନ୍ୟ ଚିକିତ୍ସକ ସ୍ୱର୍ଗତ ଡାକ୍ତର ମିର୍ଜା ଆଦାମ ଅଲ୍ଲିବେଗ) ଆମ ଚିକିତ୍ସା ପାଇଁ ଆପଣଙ୍କ ପାଖକୁ କଟକ ପଠାଇଥିଲେ । ଆପଣଙ୍କ ଚିକିତ୍ସା ପରେ ନିକଟରେ ଆମର ପୁଅଟିଏ ହୋଇଛି । ପୁଅ ହେଲେ ଆମର କଅଣ ଗୁଡ଼ ବଣ୍ଟାଯାଏ । ଆପଣଙ୍କୁ କଅଣ ଦେବି ବୋଲି ଆଦାମବାବୁଙ୍କୁ ପଚାରିବାରୁ ସେ କହିଲେ ତୁମ ଡାକ୍ତର ସାହେବ ନୟାଗଡ଼ ଆସୁଛନ୍ତି, ତୁମେ ତାଙ୍କୁ ଗୁଡ଼ ଦେଇପାରିବ । କାଲି ମୁଁ ବାଘମାରି ଯାଇ ଏ ଭଲଗୁଡ଼ ମାର୍କେଟରୁ ଆଣିଥିଲି । ଆପଣଙ୍କୁ ଗାଡ଼ିରେ ଆଗକୁ ଯାଉଥିବାର ଆଦାମବାବୁଙ୍କଠାରୁ ଶୁଣି ଆପଣଙ୍କ ମଟର ପଛେ ପଛେ ଦଉଡ଼ିଛି । ଆପଣ ଅନୁଗ୍ରହ କରି ଏହା ଗ୍ରହଣ କରି ମୋ ପୁଅକୁ ଆଶୀର୍ବାଦ କରନ୍ତୁ ।

ସାମାନ୍ୟ ଗୁଡ଼ ମାଠିଏଟାଏ ଦେଖି ମୋର କେତେକ ଓକିଲ ସାଥୀ ନାକ ଟେକିଲେ । ମୋ ସାଙ୍ଗ ଆଦାମ୍‌ର ଏପରି ହାସ୍ୟାସ୍ପଦ ବଦମାସୀ ବୁଦ୍ଧି ଜାଣିପାରିଲି । ମୁଁ ସେ ଲୋକକୁ ଗାଡ଼ି ପଛରେ ଗୁଡ଼ ହାଣ୍ଡିଟା ରଖିବାକୁ ନିର୍ଦ୍ଦେଶ ଦେଇ ବିଦାୟ କରିଦେଲି । ସେ ଗୁଡ଼ ମାଠିଆଟି ଦେବାରେ ସେ ଲୋକର ଯେଉଁ ଆନ୍ତରିକ କୃତଜ୍ଞତା ପ୍ରକାଶ ପାଉଥିଲା ତାହା ଭୁଲିବାର ନୁହେଁ ।

ଚିକିତ୍ସକ ଜୀବନରେ ସବୁଠାରୁ ଯେ ଏପରି କୃତଜ୍ଞତା ମିଳେ ତା' ନୁହେଁ । ଇନସ୍ୟୁରାନ୍‌ସ କମ୍ପାନୀର କଟକ ଅଫିସର ପିଅନଟିଏ ତା'ର ସ୍ତ୍ରୀକୁ ମୋ ନିକଟରେ ଚିକିତ୍ସା କରାଉଥିଲା । ବହୁ ବର୍ଷ ପରେ ସେ ଦିନେ ଆସି କହିଲା ମୋ ଚିକିତ୍ସାରେ ତା'ର ଯେଉଁ ପୁଅ ହୋଇଥିଲା ତା'ର ବ୍ରତଘରକୁ ମୁଁ ଯେପରି ନିଶ୍ଚୟ ଯିବି । ସେ ବର୍ତ୍ତମାନ ପିଅନରୁ କ୍ଲର୍କକୁ ପ୍ରମୋଶନ ପାଇଛି, ଘର କରିଛି ଓ ଦୁଇ ତିନିଟା ଟେମ୍ପୋ ରଖି ବ୍ୟବସାୟ କରିଛି । ତା'ର ଘର ଶଙ୍କରପୁର ଗଳି ଭିତରେ ହୋଇଥିବାରୁ ସେ ବାଦାମବାଡ଼ି ଅରୁଣୋଦୟ ମାର୍କେଟ ପାଖରେ ମୋତେ ଅପେକ୍ଷା କରୁଥିବ, ସପରିବାରରେ ମୋତେ ତା' ଘରକୁ ଘେନିଯିବ । ମୁଁ ସେଠାରେ ବହୁ ସମୟ ଠିଆ ହୋଇ ହୋଇ ତା' ଘରର କୌଣସି ସନ୍ଧାନ ନପାଇ ଘରକୁ ଫେରି ରୋଷେଇ କରାଇଲି । ପରେ ତାର ବନ୍ଧୁଙ୍କଠାରୁ ଶୁଣିଲି ମୁଁ ଫେରିଯିବାର ଶୁଣି "ହ କେତେ କିଏ ଫେରି ଯାଇଥିବେ ? ସତରେ କ'ଣ ସେ ଆସିଥାଆନ୍ତେ ?" ବୋଲି କହିଲା ।

## ଜନ୍ମ ନିରୋଧ ବିଭ୍ରାଟ :

ବୈଜ୍ଞାନିକ ଉଦ୍ଭାବନ ଉପରେ ନିର୍ଭରଶୀଳ ହେଲେ ବେଳେବେଳେ ଅସୁବିଧାରେ ପଡ଼ିବା ଅବଶ୍ୟମ୍ଭାବି । ବର୍ତ୍ତମାନ ଦୀପ ଲଣ୍ଠନ ଛାଡ଼ି ଲୋକେ ବିଜୁଳି ଉପରେ ନିର୍ଭର କରି ଘନ ଘନ ବିଜୁଳିକାଟ୍ ଦ୍ୱାରା ଅକଥନୀୟ ଯନ୍ତ୍ରଣା ଭୋଗ କରିବାକୁ ବାଧ ହେଉଛନ୍ତି । ସେହିପରି ଜନ୍ମ ନିରୋଧର ଆଶ୍ରୟ ନେଇ ପୂର୍ବ ସନ୍ତାନଟିର ମୃତ୍ୟୁ ଯୋଗୁଁ ପୁଣି ସନ୍ତାନ ଜାତ ହେଲେ ପରିବାରରେ ଓ ଦମ୍ପତିଙ୍କ ଭିତରେ ମନୋମାଳିନ୍ୟ ଦେଖାଯାଇ ତାଙ୍କ ସଂସାର ଛାରଖାର ହୋଇଯାଇଛି ।

## ଚିକିତ୍ସକ ଓ ରୋଗୀଙ୍କ ପୂଣ୍ୟ ସମ୍ପର୍କ :

ଆମ୍ଭ ଦେଶରେ ବୈଦ୍ୟକୁ ଦେବତା ବୋଲି କୁହାଯାଉଥିଲା । ରୋଗୀ ସଙ୍ଗେ ଚିକିତ୍ସକର ଏକ ନିବିଡ଼ ଦାୟୀତ୍ୱପୂର୍ଣ୍ଣ ସମ୍ପର୍କ ରହିଥିଲା । ଏବେ ବସ୍ତୁବାଦର ପ୍ରଭାବରେ ଚିକିତ୍ସାକୁ ଏକ ଖାଉଟି ସାମଗ୍ରୀ ସଙ୍ଗେ ସମାନ କରାଗଲାଣି । ଏବେ ବ୍ୟବସାୟିକ ଭିତ୍ତିରେ ଚିକିତ୍ସା ଚାଲିଲାଣି । ସେଥିପାଇଁ ମାଲିମୋକଦ୍ଦମା ମଧ୍ୟ ଆରମ୍ଭ ହୋଇଗଲାଣି ।

କିନ୍ତୁ ତିରିଶ ଚାଳିଶ ବର୍ଷ ତଳେ ସେପରି ଅବସ୍ଥା ସୃଷ୍ଟି ହୋଇ ନ ଥିଲା । ରୋଗୀ ତା'ର ଚିକିତ୍ସକ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ଥିଲା ।

ସେ ସମୟରେ କଟକ ବାଙ୍କାବଜାରରେ ଥିବା ଏକ ଇଂରାଜୀ ମିଡ଼ିଅମ ସ୍କୁଲର ଶିକ୍ଷୟିତ୍ରୀ ମିସେସ୍ ମାସି ରକ୍ତଚାପ ଓ ଅନ୍ୟ ରୋଗ ପାଇଁ ସାମୟିକ ଭାବରେ ମୋର ପରାମର୍ଶ ନେଇ ଚିକିତ୍ସିତ ହେଉଥିଲେ । ଦିନେ ରାତ୍ରିରେ ମୋର ପେଟ ଗୋଳମାଳ ହୋଇ ମୁଁ ଘନ ଘନ ପାଇଖାନାକୁ ଦୌଡ଼ୁଥିଲି । ସେହି ସମୟରେ ମିସେସ ମାସିଙ୍କ କନିଷ୍ଠ ପୁତ୍ର (ପରେ ବଙ୍ଗଳା ଯୁଦ୍ଧ ବେଳେ ପାଇଲଟ ଭାବେ ପାରଦର୍ଶିତା ଦେଖାଇ ରାଷ୍ଟ୍ରପତି ପଦକ ପାଇଥିବା) ମୋ ଗେଟ୍ ପାଖରେ ଆସି ଡ଼ାକିଲେ । ମୋତେ ଦେଖି କହିଲେ- 'ଡାକ୍ତରବାବୁ ମୋ ମାଆଙ୍କ ହଠାତ୍ ଦେହ ଅବଶ ହୋଇ ଆସିଛି, ଆପଣଙ୍କୁ ସଙ୍ଗେ ସଙ୍ଗେ ଘେନିଯିବା ପାଇଁ ମାଆ ମୋତେ ପଠାଇଛନ୍ତି ।'

ମୋର ଦେହ ଖରାପ ଓ ଘନ ଘନ ଝାଡ଼ା ଯିବାକୁ ପଡୁଥିବା ଦର୍ଶାଇ, ତାଙ୍କ ମାତା ରକ୍ତଚାପ ପେସେଣ୍ଟ ହୋଇଥିବାରୁ, ହାର୍ଟ ଆଟାକ୍ ହେବାର ସମ୍ଭାବନା ଥିବାରୁ ସେପରି ରୋଗୀକୁ ସଙ୍ଗେ ସଙ୍ଗେ ବଡ଼ ଡାକ୍ତରଖାନାକୁ ନେବାର ବ୍ୟବସ୍ଥା କରିବାକୁ କହିଲି । ସେଥିରେ ସେ ରାଜି ନ ହୋଇ ମୁଁ ଯିବା ପାଇଁ ଜିଦ୍ ଧରିବାରୁ ପଡ଼ିଶାଘର ଲେଡ଼ି ଡାକ୍ତରଙ୍କୁ ତାଙ୍କ ସହିତ ଯିବାପାଇଁ ଅନୁରୋଧ କରି ମୁଁ ଫୋନ କରି ଦେଉଛି ବୋଲି ପ୍ରସ୍ତାବ ଦେବାରେ ସେ ବାଳକ ମୋ କଥାରେ କାନ ନ ଦେଇ କହିଲେ ମୋ ମାଆଙ୍କର ଆପଣଙ୍କ ଉପରେ ହିଁ ବିଶ୍ୱାସ । ମାଆ କହିଛନ୍ତି ଆପଣ ହିଁ କେବଳ ତାଙ୍କୁ ଭଲ କରିପାରିବେ ନ ହେଲେ ସେ ନିଶ୍ଚୟ ମରିଯିବେ । ଆପଣ କଣ ସେ ମରିଯିବା ଚାହାନ୍ତି, କହି ଭୋ ଭୋ କାନ୍ଦିବାକୁ ଲାଗିଲେ ।

ମୁଁ ସେଥିରେ ବିଚଳିତ ହୋଇ ଝାଡ଼ା ନିରୋଧ ପାଇଁ ଆଠଟି ସଲ୍‌ଫା ଗୁଆନଡ଼ିନ ବଟିକା ଏକ ସଙ୍ଗେ ଗିଳିଦେଇ ସେ ବାଳକ ସଙ୍ଗେ ବାହାରି ପଡ଼ିଲି । ରୋଗିଣୀଟି ଦେହରୁ ପ୍ରଚୁର ଝାଳ ବୋହି ସେ ଅଚେତ ହେଲାପରି ପଡ଼ିଥିଲେ । ଆମ ପଦଧ୍ୱନୀ ଶୁଣିବା ମାତ୍ରକେ ତାଙ୍କ ପାଟିରୁ ବାହାରି ପଡ଼ିଲା କ'ଣ ଆମ ଡାକ୍ତରବାବୁ ଆସିଲେ ? ମୋତେ ଦେଖିବା କ୍ଷଣି ସେ ପ୍ରଫୁଲ୍ଲ ଦେଖାଗଲେ । ମୋତେ ଥରକୁ ଥର ତାଙ୍କ ରକ୍ତଚାପ ପରୀକ୍ଷା କରି ଔଷଧ ଦେଇ ରାତିସାରା ତାଙ୍କୁ ଜଗି ରହିବାକୁ ପଡ଼ିଲା । ମୋର ଝାଡ଼ା ଯିବା ଆପେ ଆପେ ବନ୍ଦ ହୋଇଗଲା । ସକାଳକୁ ରୋଗିଣୀ ଝାଡ଼ିଝୁଡ଼ି ହୋଇ ଉଠିବସିଲେ ।

**ଯମପୁରରୁ ଲେଉଟାଣି:**

ବେଳେବେଳେ ସାମାନ୍ୟ ବେମାରୀ ହୋଇଥିବା ରୋଗୀ ଚିକିତ୍ସା କରୁ କରୁ ଯମାଳୟ ଗମନ କରିପାରେ । ଅନ୍ୟ ସମୟରେ ଆଶା ଛାଡ଼ିଥିବା ସାଂଘାତିକ ବେମାରି ଭୋଗୁଥିବା ଲୋକ ହଠାତ୍ ଆରୋଗ୍ୟ ଲାଭ କରେ ।

ମୁଁ ଆମେରିକାରୁ ଫେରିବା ପରେ ପରେ ଜଣେ ହୃଦ୍‌ରୋଗୀ ବୃଦ୍ଧଙ୍କ ପାଇଁ ରାତ୍ରୀ ଡାକରା ପାଇ ତାଙ୍କ ଚିକିତ୍ସା ଭାର ନେଇଥିଲି । ସେ ବୃଦ୍ଧଙ୍କର ପୁତ୍ର ରାଓବାବୁ ପୂର୍ତ୍ତ ବିଭାଗର ଜଣେ ସହକାରୀ ଇଞ୍ଜିନିୟର ଥିଲେ । ସେ ପରିବାର, ମୋ ଚିକିତ୍ସା ପ୍ରତି ଏତେ ଆକୃଷ୍ଟ ହୋଇ ପଡ଼ିଥିଲେ ଯେ ତାଙ୍କ ଘରେ ଯେ କେହି କୌଣସି ରୋଗର ସମ୍ମୁଖୀନ ହେଲେ ମୋର ପରାମର୍ଶ ପାଇଁ ଧାଇଁ ଆସୁଥିଲେ । ଏପରିକି ତାଙ୍କ ଘରର କୌଣସି ପିଲାର ଖେଳୁ ଖେଳୁ ପଡ଼ିଯାଇ ହାଡ଼ ଭାଙ୍ଗିଗଲେ ତା'ର ଭଲ ହେବା ଦାୟୀତ୍ୱ ମୋ ଉପରେ ପଡୁଥିଲା ।

ଥରେ ମୁଁ କୌଣସି ଏକ କାର୍ଯ୍ୟରେ କେତେ ଦିନ ପାଇଁ କଟକ ବାହାରକୁ ଯାଇଥିଲି, ସେ ସମୟରେ ସେ ପରିବାର କିଲ୍ଲା ଭିତର ସରକାରୀ କ୍ୱାଟରରେ ରହୁଥିଲେ । ସେ ଇଞ୍ଜିନିୟରଙ୍କ ବୃଦ୍ଧା ମାତାଙ୍କର ଦେହ ଖରାପ ହେବାରୁ ସେ ମୋତେ ନ ପାଇ ବାଧ ହୋଇ ଅନ୍ୟ ଡାକ୍ତର ପରାମର୍ଶ କରିଥିଲେ, କିନ୍ତୁ ରୋଗିଣୀ ଆରୋଗ୍ୟ ନ ହୋଇ ଦିନକୁ ଦିନ ତାଙ୍କ ଅବସ୍ଥା ସାଂଘାତିକ ହେବାରୁ ବୁଢ଼ୀର ଆଶା ଛାଡ଼ି ସେମାନେ ଆନ୍ଧ୍ରର ତାଙ୍କ ଆତ୍ମୀୟ ସ୍ୱଜନଙ୍କ ନିକଟକୁ ତା'ର ବାର୍ତ୍ତା ପ୍ରେରଣ କରି ସାରିଥିଲେ ।

ମୁଁ କଟକ ଫେରିବା ସଙ୍ଗେ ସଙ୍ଗେ ସେ ଖବର ପାଇ ତାଙ୍କ ଘରକୁ ଗଲି । ବୁଢ଼ୀ ଦେହରେ କ୍ରମାଗତ ଅତ୍ୟଧିକ ତାପ ରହି ସେ ପ୍ରାୟ ସଂଜ୍ଞାହୀନ ହୋଇ ପଡ଼ି ରହିଥିଲେ । ସେ କଥା କହିପାରୁ ନଥିଲେ, ଆଖି ବନ୍ଦ ଥିଲା, ଅଣଚାଶ ପବନ ଉଠିଲା ପରି ନିଶ୍ୱାସ ପ୍ରଶ୍ୱାସ ଚାଲିଥିଲା । ମୁଁ ରୋଗିଣୀର ସେପରି ଅବସ୍ଥା ଦେଖି ନାକବାଟେ ଅକ୍‌ସିଜେନ ଦେବା ନିତାନ୍ତ ପ୍ରୟୋଜନ ଭାବି, ରୋଗିଣୀକୁ ସଙ୍ଗେ ସଙ୍ଗେ ହସ୍‌ପିଟାଲକୁ ଘେନିଯିବା ପାଇଁ ପରାମର୍ଶ ଦେଲି । ମୁଁ ପହଞ୍ଚିବା ପରେ ସେ ପରିବାର ମନରେ କିଞ୍ଚିତ ଆଶାର ଉଦ୍ରେକ ହୋଇଥିଲା କିନ୍ତୁ ମୋ ନିର୍ଦ୍ଦେଶ ଶୁଣି ସେ ବାପ ପୁଅ ଦୁହେଁ ଯାକ ଏକାବେଳକେ କହି ଉଠିଲେ 'ଆପଣ ନିଜେ ଚିକିତ୍ସା ଭାର ନ ନେଇ ହସ୍‌ପିଟାଲକୁ ପଠାଇବାକୁ କାହିଁକି କହୁଛନ୍ତି ?' ମୁଁ କହିଲି- ରୋଗିଣୀର ବଞ୍ଚି ରହିବା ପାଇଁ ଅକ୍‌ସିଜେନ ସିଲିଣ୍ଡର ହସ୍‌ପିଟାଲ ଛଡ଼ା ବାହାରେ କେଉଁଠି ମିଳୁନାହିଁ । ତେଣୁ ହସ୍‌ପିଟାଲର ସାହାଯ୍ୟ ନେବା ନିତାନ୍ତ ଦରକାର । ମୋ କଥାକୁ ଗୁରୁତ୍ୱ ନ ଦେଇ ସେମାନେ 'ଆପଣଙ୍କ ହାତରେ ଭଲ ନ ହେଲେ ସେ ଭଲ ହୋଇ ପାରିବନି । ତା'ପରେ ରୋଗୀର ଯେଉଁ ଅବସ୍ଥା ତାକୁ ନେଇ ହସ୍‌ପିଟାଲରେ ପହଞ୍ଚାଉ ପହଞ୍ଚାଉ ତା'ର ପ୍ରାଣବାୟୁ ଉଡ଼ି ଯାଇଥିବ । ଆପଣ ଯେଉଁ ଔଷଧପତ୍ର ଦରକାର କରୁଛନ୍ତି, ଯେତେ ପଇସା ପଡ଼ିଲେ ଆମେ ତା'ର ଖର୍ଚ୍ଚ ବହନ କରିବାକୁ ପ୍ରସ୍ତୁତ ଅଛୁ ଆପଣ ଚେଷ୍ଟା କଲେ ସବୁ ଔଷଧ ମିଳିବ । ଆପଣ ଆମକୁ ନିରାଶ କରନ୍ତୁ ନାହିଁ-' ଏହା କହି ସେ ଇଞ୍ଜିନିୟର ଭୋ ଭୋ କାନ୍ଦି ପକାଇ କହିଲେ, 'ଡାକ୍ତରବାବୁ ଖୋଲି କରି କହନ୍ତୁ ମୋ ମାଆ କ'ଣ ଆଉ ସଂଜ୍ଞା ଫେରି

ପାଇବେ ନାହିଁ ? ଆଉ ବଞ୍ଚିବେ ନାହିଁ ?' ସେଥିରେ ମୁଁ ତାଙ୍କ ହାତ ଧରି କହିଲି, ତୁମ ମାଆ ନ ବଞ୍ଚିବେ କାହିଁକି ? ସବୁ ତ ଭଗବାନଙ୍କ ହାତରେ । ଡାକ୍ତରଖାନାରେ ବେଶୀ ସୁବିଧା ହୋଇ ଥାଆନ୍ତା ବୋଲି ମୁଁ ପ୍ରସ୍ତାବ ଦେଇଥିଲି । ହଉ ଆପଣ ଧୈର୍ଯ୍ୟ ଧରନ୍ତୁ ମୁଁ ଚେଷ୍ଟା କରେ ।

ଅକ୍ସିଜେନ ଅଭାବରୁ କ'ଣ କରିବାକୁ ହେବ ଚିନ୍ତା କରିବା ପରେ ମସ୍ତିଷର ଉତ୍ତେଜନା କମାଇ ନିଶ୍ୱାସ ସ୍ୱାଭାବିକ କରିବା ପାଇଁ ମୁଁ ଲର୍ଗାଟାଇଲ ଇଞ୍ଜେକ୍ସନ ଟିଏ ଦେଲି । ମୋ ବିଚାରରେ ତାହା "ନଇ ବଢ଼ିକୁ ଦିଅଁଙ୍କ ରାଣ" ପରି ଥିଲା । ତଥାପି ରୋଗୀର ଲୋକଙ୍କୁ ହଠାତ୍ ନିରାଶ ନ କରିବା ପାଇଁ କହିଲି, ଦେଢ଼ ଘଣ୍ଟା ଭିତରେ ରୋଗିଣୀର ଭଲ ଅବସ୍ଥା ଆଡ଼କୁ ଆସିବାର ସମ୍ଭାବନା ଅଛି । ମୁଁ ବର୍ତ୍ତମାନ ଯାଉଛି, ଆପଣମାନେ ମୋତେ ଦେଢ଼ ଘଣ୍ଟା ପରେ ଖବର ଦେବେ ।

ମୁଁ ଘରେ ପହଞ୍ଚିବାର ଦୁଇ ତିନି ଘଣ୍ଟା ପର୍ଯ୍ୟନ୍ତ କିଛି ଖବର ନ ଆସିବାରୁ ମୋ ପଛେ ପଛେ ବୁଢ଼ୀ ସ୍ୱର୍ଗପୁରକୁ ଚାଲିଯାଇଛି ଭାବି କଣ୍ଡୋଲେନ୍ସ ଜଣାଇ ଦୁଃଖ ପ୍ରକାଶ କରିବା ପାଇଁ ସେଠାରେ ଯାଇ ପହଞ୍ଚିଲି । ସେଠାରେ କାନ୍ଦ ଗୋଳ ଲାଗିଥିବ ବୋଲି ମୁଁ ବଡ଼ ସନ୍ତର୍ପଣରେ ଘର ଭିତରକୁ ଗୋଡ଼ ବଢ଼ାଇଲି । ଘର ଲୋକ ହସ ହସ ମୁହଁରେ ଆସି ମୋତେ ସ୍ୱାଗତ କରିବା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ମୁଁ ରୋଗିଣୀ ନିକଟରେ ପହଞ୍ଚିବା କ୍ଷଣି ସେ ହାତ ଉଠାଇ ମୋତେ ନମସ୍କାର କରିବାକୁ ଚେଷ୍ଟା କଲେ । ମୁଁ ବୁଢ଼ୀର ମୂଳ ରୋଗ ଓ ଉପସର୍ଗ ମାନଙ୍କ ପାଇଁ ଔଷଧ ଦେଇ ଜୋରସୋର୍‌ରେ ଚିକିତ୍ସାରେ ଲାଗି ପଡ଼ିଲି । ଦୁଇ ଚାରିଦିନରେ ବୁଢ଼ୀ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଗଲେ ।

ସେ ଘଟଣାର କେତେକାଳ ପରେ ସେ ଇଞ୍ଜିନିୟର୍‌ଙ୍କର ପଦୋନ୍ନତି ହୋଇ ରାଉରକେଲା ବଦଳି ହୋଇଯିବାର ଆଦେଶ ଆସିଲା । ସେ ପରିବାର ଚିକିତ୍ସା ପାଇଁ ମୋ ଉପରେ ଏତେ ନିର୍ଭରଶୀଳ ହୋଇ ପଡ଼ିଥିଲେ ଯେ ସେ ବଦଳି ଆଦେଶରେ ଖୁସି ହେବା ପରିବର୍ତ୍ତେ ତାଙ୍କ ବୃଦ୍ଧ ପିତା ପୂରା ଭାଙ୍ଗି ପଡ଼ିଥିଲେ । ମୋତେ ଛାଡ଼ି କଟକରୁ ରାଉରକେଲା ଯିବାର ବିରହ ବେଦନାରେ ସେ ମର୍ମାହତ ହୋଇ ମୋତେ ଜାକି ପକାଇ ଭୋ ଭୋ ହୋଇ କାନ୍ଦି ଉଠିଲେ । ସେ ବାଷ୍ପ ଗଦ୍ ଗଦ୍ କଣ୍ଠରେ କହିଲେ, ଡାକ୍ତରବାବୁ ଆପଣଙ୍କଠାରୁ ଦୂରକୁ ଚାଲିଗଲେ ଆମକୁ ଆଉ କିଏ ବଞ୍ଚାଇ ରଖିପାରିବ ? ଆମେ ଆଉ ବେଶୀ ଦିନ ବଞ୍ଚି ରହି ପାରିବୁ ନାହିଁ ।

ସତକୁ ସତ ରାଉରକେଲା ଯିବାର ଅଳ୍ପ ଦିନ ପରେ ବୃଦ୍ଧ ଇହଲୀଳା ସମ୍ବରଣ କଲେ । ଗୋଟିଏ ବର୍ଷ ନ ପୂରୁଣୁ ତାଙ୍କ ପୁତ୍ର ଉଦୀୟମାନ ଇଞ୍ଜିନିୟର ଗୋଟିଏ କନଫରେନ୍ସରେ ବସି ଆଲୋଚନା କରୁଥିବା ସମୟରେ ହୃତପିଣ୍ଡ ଚାଳନା ହଠାତ

ବନ୍ଦ ହୋଇଯାଇ ଚଉକିରୁ ଟେବୁଲ ଉପରକୁ ଟଳି ପଡ଼ିଲେ ଓ ସଙ୍ଗେ ସଙ୍ଗେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା । ପରେ ବୁଢ଼ୀ ମୋତେ ଖବର ଦେଲେ, ଡାକ୍ତର ବାବୁଙ୍କୁ କହିବ ଏହି କଥା ଦେଖିବାକୁ କ'ଣ ସେ ମୋତେ ଯମ ମୁହଁରୁ ଛଡ଼ାଇ ଆଣିଥିଲେ ? ଯମ ମୋତେ ନ ନେଇ ମୋ ସ୍ୱାମୀ ଓ ଭେଣ୍ଡା ପୁଅକୁ ଘେନି ଚାଲିଗଲେ । ମୁଁ ଭାବିଲି ଭଗବାନଙ୍କ ହାତରେ ମନୁଷ୍ୟ ଏକ କ୍ରୀଡ଼ନକ । ଡାକ୍ତର ଏକ ନିମିତ୍ତ ମାତ୍ର । ଡାକ୍ତର ନିର୍ବିକାର ଭାବେ ନିଜ ବୁଦ୍ଧି ଖଟାଇ ନିଜର କର୍ତ୍ତବ୍ୟ କରିଯିବା ଉଚିତ ।

## ମୁଠିଏ ଗ୍ରାସ ଖଣ୍ଡିଏ ବାସ :

ଶାସ୍ତ୍ରରେ ଅଛି ନିଜ ଲୋକଙ୍କ ପାଖରେ ଘର କରି ରହି ଯେଉଁ ଲୋକ ଶାଗ ଓ ଭାତ ମୁଠିଏ ଖାଇ ନିରୋଗ ଜୀବନ ଯାପନ କରିପାରେ ସେ ହିଁ ସୁଖି । ମୁଁ ସେହି ନୀତି ଅବଲମ୍ବନ କରି ବହୁ ରୋଜଗାର ପଛାକୁ ଜଳାଞ୍ଜଳି ଦେଇ ଦେଶକୁ ଫେରି ପ୍ରଥମ ପ୍ରଥମରୁ ମୋ ଘର ଖର୍ଚ୍ଚ ପାଇଁ ଦିନକୁ ପାଞ୍ଚ ଦଶ ଟଙ୍କା ଜୁଟିଗଲେ ମୁଁ ଆଶ୍ୱସ୍ତ ହେଉଥିଲି । ଉଠା ପାଇଖାନା ଟିଣ ରୋଷେଇ ଘରଠାରୁ ସଂକୀର୍ଣ୍ଣ ଶୋଇବା ଘର ପ୍ରଭୃତିରୁ ଉଦ୍ଧାର ପାଇବା ପାଇଁ ନିଜର ଛୋଟିଆ ଘରଟିଏ ତିଆରି କରିବା ମୋର ପ୍ରୟୋଜନ ପଡ଼ିଲା ।

ସେଥିପାଇଁ ଅର୍ଥ ସଂଗ୍ରହ କରିବାକୁ ମୋତେ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଲା । କ୍ଲିନିକ୍‌ସରେ ନାନା ପ୍ରକାର ରୋଗୀଙ୍କ ଭିଡ଼ ଆସ୍ତେ ଆସ୍ତେ ଜମିବା ସଙ୍ଗେ ମୋତେ କେତେଗୁଡ଼ିଏ ଘରର ଘରୋଇ ଚିକିତ୍ସକ ଭାର ନେବାକୁ ପଡ଼ିଲା । ସାତ ମାସ ଅପେକ୍ଷା ପରେ ମେଡ଼ିକାଲ କଲେଜର ପାଥୋଲଜି ମିଉଜିଅମର କ୍ୟୁରେଟର ଚାକିରିଟି ମିଳିବା ପରେ ଦଶଟାରୁ ପାଞ୍ଚଟା ପର୍ଯ୍ୟନ୍ତ ସେଠାରେ ବାନ୍ଧି ହୋଇ ରହିବାକୁ ପଡ଼ିଲା । ମୁଁ ଏପରି କାର୍ଯ୍ୟବ୍ୟସ୍ତ ରହୁଥିଲି ଯେ ମୋର ସେତେବେଳର ଏକମାତ୍ର ସନ୍ତାନ ବଡ଼ ଝିଅ ମୋତେ ସପ୍ତାହରେ ଥରେ (ରବିବାର ଦିନ ୧୨ଟା ବେଳେ) ଦେଖିବାକୁ ପାଉଥିଲା । ମୁଁ ସକାଳେ ଘର ଛାଡ଼ି ଗଲାବେଳକୁ ସେ ନିଦରୁ ଉଠି ନ ଥାଏ, ମୁଁ ରାତିରେ ଫେରିଲାବେଳକୁ ସେ ଶୋଇପଡ଼ିଥାଏ ।

ମୋ କ୍ଲିନିକ୍‌ସଟି ସହର ମଝି ବାଙ୍କାବଜାରରେ ଥିବାରୁ ବହୁ ଶୁଭାକାଂକ୍ଷୀ କବି, ଅଧାପକ, ଓକିଲ, ମୋହରୀର ଓ ରାଜନୈତିକ ବ୍ୟକ୍ତି ଏବଂ ସରକାରୀ ଅଫିସର ଆସି ଜୁଟୁଥିଲେ । ସେହି ସମୟରେ ପୂର୍ବତନ ବିଚାରପତି ସ୍ୱର୍ଗତ ହରିହର ମହାପାତ୍ରଙ୍କ ନାମଜାଦା ମୋହରୀର ହରେକୃଷ୍ଣ ସାମନ୍ତରାଏଙ୍କ ଗାଲରେ କ୍ୟାନସର ହେବାରୁ ସେ କଲିକତାର ଚିତ୍ତରଞ୍ଜନ କ୍ୟାନସର ହସ୍‌ପିଟାଲରେ ଚିକିତ୍ସିତ ହୋଇ ଫେରିଆସି ମୋ ତତ୍ତ୍ୱାବଧାନରେ ଥିଲେ । ସୁଖର କଥା ଯେ ରେଡ଼ିଅମ ଆଲୁଅ ଦ୍ୱାରା ତାଙ୍କ ଗାଲର କିଛି ଅଂଶ ପୋଡ଼ି ଯାଇଥିଲେ ମଧ୍ୟ ସେ ରୋଗ ଭଲ ହୋଇ ସେ ଆଉ ୪୩ ବର୍ଷ ସୁସ୍ଥ ଭାବରେ ବଞ୍ଚି ରହିପାରିଥିଲେ । ମୋ ଚାକିରି ଜୀବନର ପ୍ରାକ୍ କାଳରେ ଦିନେ ହରେକୃଷ୍ଣ

ମୋତେ କହିଲେ ''ଆପଣ ମୋର ଏତେ ଉପକାର କରୁଛନ୍ତି, ମୁଁ ଆପଣଙ୍କ ବାସସ୍ଥାନ ପାଇଁ କଟକରେ ଖଣ୍ଡିଏ ଜାଗା ସୁବିଧାରେ କିଣାଇ ଦେବା ପାଇଁ ଚେଷ୍ଟା କରୁଛି । ତା'ହେଲେ ଆପଣ ଭଡ଼ାଘରେ ରହିବା ହିନସ୍ତାରୁ ରକ୍ଷା ପାଇବେ । ସେ ଜେଲରୋଡ଼ର ଗୋଟିଏ ଖାଲୁଆ ପରିତ୍ୟକ୍ତ ଜମି ଠିକ୍ କରାଇ ତା'ର ମାଲିକ ଜଣେ ମୁସଲମାନ ବ୍ୟକ୍ତି ମେଦିନୀପୁରରେ ରହୁଥିବାରୁ ମୋ ଠାରୁ କୋଡ଼ିଏଟି ଟଙ୍କା ନେଇ ଜଣେ ଲୋକକୁ ଅନୁଗୁଳ ପଠାଇ ମାଲିକଙ୍କ ମାମୁଙ୍କ ଦ୍ୱାରା ମାଲିକ ନିକଟକୁ ଖବର ପଠାଇ ତାଙ୍କୁ ଡକାଇ ଆଣିଲେ । ସେ ଜମିଟି ପାଇଁ ଚୁକ୍ତି ହେବା ପରେ କେତେକ ଲୋକ ସେ ଜମି ପ୍ରତି ଲୋଭ କରି ଚୁକ୍ତି ରଦ୍ଦ ପାଇଁ ମାଲିକକୁ ଧରି ମୋତେ ନୋଟିସ୍‌ ଦିଆଇଲେ । ସେଥିରେ କୃତକାର୍ଯ୍ୟ ନ ହେବାରୁ ମୋତେ ଧମକ ଦେବା ପାଇଁ ଜଣେ ଗୁଣ୍ଡା ପଠାଇଲେ । ସେ ମୁସଲମାନ ଲୋକଟି ଡେଙ୍ଗା ହୃଷ୍ଟପୁଷ୍ଟ ଓ ବଡ଼ ବଡ଼ ନିଶ ରଖିଥିଲା । ମୁଁ କ୍ଲିନିକ୍‌ସରେ ବସିଥିବା ସମୟରେ ସେ ଆସି ନାଲି ଆଖି ଦେଖାଇ ନିଶ ମୋଡ଼ି ଧମକାଇଲା ଭଳି ମୋତେ କହିଲା ''ଆପଣ ସେ ଜମିନ୍ କେଣ୍ଡୁଛ ? ସେ ଜମିନ୍ କଥା କହିବ । ସେ ଜମିନ୍‌ରେ ହାମର ଭାଗ ଅଛି ତୁମେ ତାକୁ ନବାକୁ ଚାହିଁଲେ ରକ୍ତ ନଈ ବହିଯିବ । ତୁମେ ହାମର ଡାକ୍ତର ବାବୁ ଅଛି, ତେଣୁ ତୁମ ଭଲ ପାଇଁ କହିଲା ତୁମେ ଟା ପାଖକୁ ଯାଅନାହିଁ ।'' ଏପରି କହିସାରି ଦୁଇ ତିନି ଥର ନିଶ ମୋଡ଼ି ସେ ଚାଲିଯିବାକୁ ଉଦ୍ୟମ କଲାବେଳେ ସେ ଛୋଟେଇ ଛୋଟେଇ ଚାଲୁଥିବାର ଦେଖି ମୁଁ ପଚାରିଲି ''ମୁନସି ତୁମେ କାହିଁକି ଛୋଟାଉଛ ?'' ସେ କହିଲା ''ବାବୁ ହମର ଗୋଡ଼ରେ ଗୋଟାଏ ବଏଲ (ବଥ) ବାହାରିଛି ।'' ମୁଁ କହିଲି ''ମୁଁ ତୁମର ଡାକ୍ତର ବୋଲି ତୁମେ ମୋ ଭଲ ପାଇଁ ଚେତାଇ ଦେବାକୁ ଆସିଛ, ତମ ରୋଗ କଥା ନ କହି କିପରି ଫେରିଯାଉଛ ?'' ସାଧାରଣତଃ ଗୁଣ୍ଡା ମଡୁଆ ଶ୍ରେଣୀୟ ଲୋକମାନେ ବଡ଼ ଦୁର୍ଦ୍ଦାନ୍ତ ହୋଇଥିଲେ ମଧ୍ୟ ସେମାନେ ସରଳ ପ୍ରକୃତିର ଲୋକ । ଟିକିଏ ସହାନୁଭୂତି ବା କଅଁଳିଆ କଥାରେ ସେମାନଙ୍କୁ ନିଜର କରି ହୁଏ । ମୋ କଥାରେ ସେ ବୁଲିପଡ଼ି ଛୋଟେଇ ଛୋଟେଇ ମୋ ନିକଟକୁ ଆସି ତାଙ୍କ ଗୋଡ଼ର ବଥଟାକୁ ଦେଖାଇଲା । ମୁଁ ସେ ଗଣ୍ଡପୂଜିଆ ବଥଟାକୁ ପରୀକ୍ଷା କରି ଦେଖିସାରିବା ପରେ ତାକୁ ଗୋଟିଏ ଅଣ୍ଟିବାଉଟିକ ମଲମ ଦେଲି । ସେ ବଥକୁ ଆଗ ଉଷୁମ ପାଣିରେ ବୋରିକ ପାଉଡ଼ର ମିଶାଇ ସେକ ଦେବାକୁ ହେବ କହି ମୋ ପାଖରେ ସେ ପାଉଡ଼ର ନ ଥିବାରୁ ତାକୁ ଅନ୍ୟ ଦୋକାନରୁ ତୁଳା ବାଣ୍ଡେଜ ସହିତ କିଣି ନେବାକୁ ଅଳ୍ପ କିଛି ଟଙ୍କା ବଢ଼ାଇଦେଲି । ସେକ ଦେବା ପରେ ତୁଳାରେ ପୋଛି ତା' ଦେହରେ ସେ ମଲମଟିକୁ ଦିନରେ ୩, ୪ ଥର ଲଗାଇବା ପାଇଁ କହିଲି ।

ମୋ ସେକ ଶବ୍ଦ ଶୁଣି ସେ ବଲବଲ କରି ମୋ ମୁହଁକୁ ଚାହିଁବାରୁ ମୋର ପୂର୍ବ କଥା ମନେ ପଡ଼ିଗଲା । ଗୋଟିଏ ମୁସଲମାନ ବୁଢ଼ୀକୁ ନିମୋନିଆ ଧରିଥିଲା । ମୁଁ ତା' ପାଇଁ

ଔଷଧ ଓ ଇଞ୍ଜେକ୍ସନର ବ୍ୟବସ୍ଥା କରିସାରି ବୁଢ଼ୀର ଛାତିରେ ଉଷୁମ ପାଣି ସେକ ଦେବାକୁ କହିଲି । ସେ ଲୋକେ ମୋ କଥାରେ ଚମକି ପଡ଼ି ମୋତେ କହିଲେ "ଆଜ୍ଞା ଆଇ ବୋଲି କ'ଣ ବୁଢ଼ୀକୁ ଆପଣ ଥଟ୍ଟା କରୁଛନ୍ତି । ସେ ରୋଗୀକୁ ସେକିଦେଲେ ସେ କ'ଣ ବଞ୍ଚିବ ।" ସେ'ଦିନ ମୁଁ ଜାଣିଲି ସେମାନଙ୍କ କଟକୀ ଭାଷାରେ ସେକି ଦେବା ଅର୍ଥ ବାଡ଼ି ଧରି ପିଟି ଦେବା ।

ମୁଁ ସେ ଲୋକକୁ ସେକ ଦେବା କଥା ବୁଝାଇବା ପରେ ସେ ଖୁସିରେ ସେଠାରୁ ଚାଲିଗଲା । ଚାରିଦିନ ପରେ ସେ ଲୋକଟି ଫେରିଆସି ତାର ବଥ ଭଲ ହୋଇଯାଇଥିବାରୁ ମୋତେ କୃତଜ୍ଞତା ଜଣାଇ କହିଲା "ବାବୁ, ଲୁନ୍ ଖାଇଲେ ଗୁନ୍ ଗାଇବା କଥା, ଆପଣଙ୍କ ସେ ଜମିନ୍ ଉପରେ ଜଣେ ମ୍ୟାରୁଆଡ଼ିକା ଆଖି ପଡ଼ିଛି । ସେ ମୋତେ ପଇସା ଦେଇ, ସେ ଜମିନ ଆପଣ ଛାଡ଼ିଦେଲେ ସେ ଲେବ ବୋଲି ପଠାଥା । ମୁଁ ମୋ କାମ ସାରିଦେଇଛି । ମୁଁ ଅବି କହୁଛି ସେ ଜମିନ୍ ସୋନା ଅଛି, କୋଇ୍ ଗଣ୍ଡଗୋଳ ନେହିଁ । ତାକୁ ତମ ପରି ଉପକାରୀ ଡକ୍ଟର ବାବୁ ନ ନେଇ ସେ ଲୋଭି ମାରୁଆଡ଼ିଟା କାହେକୁ ଲବ । ଆପଣ ଲିଅ ମୁଁ ପଛରେ ଅଛି ।"

ସେ ଘଟଣାର କିଛି ଦିନ ପରେ ମୋର ଜଣାଶୁଣା ଜଣେ ବଙ୍ଗାଳି ନାମଜାଦା କ୍ରିମିନାଲ ଓକିଲ ମୁଁ ନ ଥିବା ବେଳେ ତାଙ୍କ ଘୋଡ଼ା ଗାଡ଼ିରେ ମୋ କ୍ଲିନିକସକୁ ଆସି ମୋ ସଙ୍ଗେ ତାଙ୍କର ଜରୁରୀ କାମ ଅଛି ବୋଲି ମୋତେ କହିବାକୁ ମୋର ଆସିଷ୍ଟାଣ୍ଟକୁ କହି ଯାଇଥିଲେ । ମୁଁ ସନ୍ଧ୍ୟାରେ ତାଙ୍କ ଘରେ ପହଞ୍ଚିବାରେ ସେ ସୌଜନ୍ୟତା ସହିତ କହିଲେ "ଆପଣ କଷ୍ଟ କରି କାହିଁକି ଆସିଲେ ଖବର ଦେଇଥିଲେ ମୁଁ ପୁଣି ଆପଣଙ୍କ ପାଖକୁ ଯାଇଥାଆନ୍ତି ।" ମୋତେ ଖୋଜୁଥିବାର କାରଣ ପଚାରିବାରୁ ସେ କହିଲେ "ଏ ଅଞ୍ଚଳର ଜମିବାଡ଼ି ସମ୍ବନ୍ଧରେ ମୋତେ ସବୁ ଜଣା । ଆପଣ ଯେଉଁ ମୁସଲମାନ ଜମି କିଣିବାକୁ ବସିଛନ୍ତି ଆପଣ ମୋର ଜଣାଶୁଣା, ମୋତେ ଆଗରୁ ଟିକିଏ ପଚାରିବାର ଥିଲା । ସେ ଜମିଟା ବଡ଼ ଗଣ୍ଡଗୋଳିଆ, ତାହା ବହୁସ୍ଥାନରେ ବନ୍ଧା ପଡ଼ିଛି । ତାକୁ ଆପଣଙ୍କ ଭଳି ଜଣେ ସାଧାସିଧା ଡାକ୍ତରଙ୍କ ପକ୍ଷରେ ନେବା ଉଚିତ ହେବନାହିଁ ।"

ସେ ଜମିରୁ ଅଧେ ମୋ ପୂର୍ବତନ ସହପାଠୀ (ପରେ ଆଡ଼ଭୋକେଟ ଜେନେରାଲ) ଶ୍ରୀ ଗଙ୍ଗାଧର ରଥ କିଣିଥିଲେ । ସେ ଜମିରେ କୌଣସି ଗଣ୍ଡଗୋଳ ନ ଥିବା କଥା ସେ ମୋତେ ଜଣାଇ କାଗଜପତ୍ର ସବୁ ଦେଖାଇଥିଲେ । ତେଣୁ ତାଙ୍କ କଥାରେ ଅଭିସନ୍ଧି ଥିବା ଜାଣିପାରି ତାଙ୍କ ସଙ୍ଗେ ଯୁକ୍ତି ନ କରି କହିଲି "ଆପଣ ଯାହା କହୁଛନ୍ତି ମୋର ବଡ଼ ଭାଇ ଆଡ଼ଭୋକେଟ ଅଶୋକ ଦାସ ମଧ୍ୟ ସେହି କଥା କହୁଛନ୍ତି । ମୁଁ ମାଲିମୋକଦ୍ଦମାରେ ପଶିବାକୁ ଚାହେଁ ନାହିଁ କିନ୍ତୁ ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ସାରିଲିଣି ।

ଆପଣ ଅନୁଗ୍ରହ କରି ଅନ୍ୟ ଗ୍ରାହକ (ଯେ କି ମାଲିମୋକଦ୍ଦମା ପାଇଁ ପ୍ରସ୍ତୁତ) ଯୋଗାଡ଼ କରି ମୁଁ ମୋ ଟଙ୍କା କିପରି ଫେରିପାଇବି ତା'ର ବ୍ୟବସ୍ଥା କରନ୍ତୁ । ଅଶୋକ ବାବୁ ସେତେବେଳକୁ ଜଣେ ନାମଜାଦା ଓକିଲ । ତେଣୁ ତାଙ୍କ ନାମଟା ବ୍ୟବହାର କରିବା ବହୁତ କାମ ଦେଲା । ଦିନେ ଦୁଇଦିନ ପରେ ସେ ଓକିଲ ମୋତେ ଖବର ଦେଲେ । ତାଙ୍କର ଯେଉଁ ମହକିଲ ସେ ଜାଗା ନେଇ ଗଡ଼ିଆ ପୋତାଇ ସିନେମା ଘର କରିବାକୁ ଚାହିଁଥିଲା, ଅଶୋକ ବାବୁ ନାହିଁ କରୁଥିବା ଶୁଣି ସେ ପଛେଇ ଗଲା । ବର୍ତ୍ତମାନ ଆପଣ ବୁଝିସୁଝି ଯାହା କରିବାର କରନ୍ତୁ ।

ସେତିକିରେ ମଧ ଅନ୍ୟ ଗ୍ରାହକମାନେ ନିରବ ହେଲେ ନାହିଁ । ସେମାନଙ୍କ ଭିତରୁ ଜଣେ ସେ ଜମି ମାଲିକଙ୍କୁ ଶିଖାଇ ମୁଁ ଫେରାଇ ଦେଲେ ସେ ବେଶୀ ମୂଲ୍ୟରେ ତାଙ୍କଠାରୁ ସେ ଜମି କିଣିବ କହି, ମୁଁ ମୋ ଜମା ଟଙ୍କା ଫେରାଇ ନେଇ ସେ ଜମି ଛାଡ଼ି ଦେବାକୁ ଓକିଲ ନୋଟିସ ପଠାଇଲା । ମୁଁ ମୋର ଓକିଲ ବନ୍ଧୁ ବିପିନ ବିହାରୀ ମହାନ୍ତିଙ୍କ ଜରିଆରେ ପାଲଟା ନୋଟିସ ପଠାଇ ସେ ମୋତେ ଦଖଲ ଦେଇ ସାରିଥିଲେ ମଧ ଅତି ଖାଲୁଆ ଜମି ପାଇଁ ବେଶୀ ଜରସମନ ଲେଖାଇ ନେଇଥିବାରୁ ମୂଲ୍ୟ କମାଇ ଜମିକୁ ଶୀଘ୍ର ରେଜେଷ୍ଟ୍ରି କରି ଦିଅନ୍ତୁ ବୋଲି ଜଣାଇଲି ।

ମୋ ଚିଠି ପାଇ ଜମି ମାଲିକ ଶୀଘ୍ର ମୋ ନାମରେ ରେଜେଷ୍ଟ୍ରି କରିଦେବା ପାଇଁ ରାଜି ହୋଇଗଲେ । ସେ ଖାଲୁଆ ଜମିଟାର ଦାମ୍ ଖୁବ୍ କମ ଥିଲେ ମଧ ମୋ ପାଖରେ ସେତିକି ଟଙ୍କା ମଧ ନ ଥିଲା ।

ଆମେରିକାରେ ଛାତ୍ର ଭତ୍ତା ପାଇ ମୁଁ ପଢୁଥିଲି । ସେଠାରେ ଭତ୍ତା ଉପରେ ମଧ ଇନକମ୍ ଟ୍ୟାକ୍ସ ପଡ଼େ, ପରିବାର ସଙ୍ଗରେ ନ ଥିଲେ ପରିବାର ପାଇଁ ରିହାତି ମଧ ମିଳେନାହିଁ । ପାଠସାରି ଦେଶକୁ ଫେରିବା ବେଳକୁ ଇନକମ୍ ଟ୍ୟାକ୍ସ ବାକିନଥିବା ସାର୍ଟିଫିକେଟଟିଏ ଦରକାର ହୁଏ । ସେଥିପାଇଁ ମୁଁ ଆମେରିକାର ବରମିଙ୍ଗହାମ ସହରର ଇନକମ୍ ଟ୍ୟାକ୍ସ ଅଫିସକୁ ଯାଇଥିଲି । ସେ ଅଫିସ ଦୁଆରେ ଲେଖାଥିଲା "ଅଳ୍ପ ଟିକିଏ ହସନ୍ତୁ । ମୁଚୁକି ହସ ଉପରେ ଟିକସ ପଡ଼େନାହିଁ ।" ମୁଁ ଅଫିସ ଭିତରକୁ ଯାଇ ଅଫିସରଙ୍କୁ ମୋ ଦରଖାସ୍ତ ଓ କାଗଜପତ୍ର ଦେଇ ସେଠାରେ ବସି ରହିଲି । ଅଫିସର ମୋ କାଗଜପତ୍ର ନେଇ ମୁଣ୍ଡ ପୋତି ତାଙ୍କ କାର୍ଯ୍ୟରେ ଲାଗିଗଲେ । ମୋତେ ବସି ବସି ବିରକ୍ତି ଲାଗିବାରୁ ମୁଁ ଅଫିସରଙ୍କ ସଙ୍ଗେ ଆଳାପ ଜମାଇବା ପାଇଁ ତାଙ୍କୁ ଶୁଭିବା ଭଳି ପାଟିରେ କହିଲି । ଏଇଟା ଗୋଟାଏ ଅଜବ ଅଫିସ, ଏଠାରେ ହସିବାକୁ ଲେଖାଯାଇଛି, ମାତ୍ର କେଉଁ ଟିକସ ଦାତା ଏଠାକୁ ଆସି ହସି ପାରିବ ? ମୋ କଥା ଶୁଣି ସେ ଅଫିସର ଉପରକୁ ମୁହଁ ଟେକି ମୋତେ ଚାହିଁ କହିଲେ, "ଆପଣ ବର୍ତ୍ତମାନ ଖୁସିରେ ହସିବେ ।

ଆପଣ ବିବାହିତ କିନ୍ତୁ ଆପଣଙ୍କ ସ୍ତ୍ରୀଙ୍କ ପାଇଁ ଛାଡୁଥିବା ଟିକସ ଆପଣ ନକାଟି ପଏଠ କରି ଦେଇଛନ୍ତି । ସ୍ତ୍ରୀ ଯେଉଁଠି ଥାଆନ୍ତୁ, ଛାଡ଼ପତ୍ର ଦେଇ ନ ଥିଲେ ତାଙ୍କ ପାଇଁ ଟିକସ ଛାଡ଼ ମିଳେ । ଆପଣ ସେତକ ଫେରି ପାଇବେ ।''

ମୁଁ କହିଲି, ମୁଁ ତ ଦିନେ ଦୁଇଦିନ ଭିତରେ ଏ ଦେଶ ଛାଡ଼ି ଭାରତକୁ ଫେରିଯାଉଛି । ସଙ୍ଗେ ସଙ୍ଗେ ତ ଫେରସ୍ତ ମୁଦ୍ରା ମିଳୁନାହିଁ, ମୋର କ'ଣ ଲାଭ ହେବ ? ସେ କହିଲେ ଆପଣ ଆପଣଙ୍କ ଦେଶର ବ୍ୟାଙ୍କ ଠିକଣା ଛାଡ଼ି ଯାଆନ୍ତୁ, ଆପଣଙ୍କ ପ୍ରାପ୍ୟ ଆପେ ଆପେ ଯାଇ ଆପଣଙ୍କ ବ୍ୟାଙ୍କ ଖାତାରେ ଜମା ହୋଇଯିବ । ଆମ ଦେଶରେ ସରକାରରେ ଜମା ଟଙ୍କା ତ ରୁକୁଣା ରଥ । ସେ କ'ଣ ସହଜରେ ଫେରେ ? ସେଥିପାଇଁ ଦଉଡ଼ା ଦଉଡ଼ି ଅଣ୍ଟାଗୁଞ୍ଜା ପ୍ରଭୃତିର ଦରକାର ପଡ଼େ । ତଥାପି ତାଙ୍କ କଥା ରକ୍ଷା କରି ମୁଁ ତାଙ୍କୁ ମୋର କଟକ ଇମ୍ପେରିଆଲ ବ୍ୟାଙ୍କର ସେଭିଙ୍ଗସ୍ ବ୍ୟାଙ୍କ ଆକାଉଣ୍ଟର ନମ୍ବର ଦେଇ ଆସିଥିଲି । ଆମେରିକାବାସୀ, ବ୍ୟବସାୟୀ ଜାତି ସେମାନେ ନେଇ ଜାଣନ୍ତି, ଦେଇ ଜାଣନ୍ତି । ମୋର ସେ ବାବଦରେ ଚାରି ପାଞ୍ଚ ହଜାର ଟଙ୍କା ଆସି ମୋ କଟକ ବ୍ୟାଙ୍କ ଖାତାରେ ଜମା ହୋଇ ଯାଇଥିଲା । ମୋ ନୂଆ ଚାକିରିର ଦରମା ବାବଦକୁ ସରକାରଙ୍କଠାରେ ବାକିଥିବା ୧୫ ଶହ ଟଙ୍କା ପାଇଁ ଭାଇଙ୍କ ଠାରୁ ୧୫ ଶହ ଟଙ୍କା ଧାର ଆଣି ସେଥିରେ ସେ ଜମିଟି ମୋ ନାମରେ କବଲା କରିନେଲି । ଭାଗ୍ୟରେ ଥିଲେ ଜମି ମିଳେ ବୋଲି ଶୁଣିଥିଲି, କିନ୍ତୁ ତାହା ଦେହେ ନିଭେଇଲି ।

କବଲା ଜମି ସାଢ଼େ ଦଶଗୁଣ୍ଠ ଥିଲେ ମଧ ରୟତି ଓ ଜବର ଦଖଲ ଜମି ଯାଇ ମୋ ହାତକୁ ପାଞ୍ଚ ଛଅ ଗୁଣ୍ଠ ଜମି ଆସିଲା । ମୁଁ ସେତିକିରେ ସନ୍ତୁଷ୍ଟ ହେଲି । କିନ୍ତୁ ହଠାତ୍ ଘର ନ କଲେ ସେ ଜମି ସମ୍ପୂର୍ଣ୍ଣ ଜବର ଦଖଲ ହୋଇଯିବାର ସମ୍ଭାବନା ଥିଲା । ସେ ଖାଲୁଆ ଓ ଖାତ ଜମିକୁ ପୋତି ସମାନ କରି ସେଥିରେ ଘର ତିଆରି କରିବାକୁ ସମ୍ବଳ ନ ଥିଲା ।

ସେ ସମୟରେ ସବୁଦିନ ବହୁ ବିଶିଷ୍ଟ ଲୋକ ମୋ କ୍ଲିନିକ୍‌ସକୁ ଆସୁଥିଲେ । କିଏ ରକ୍ତ ଚାପ ଦେଖାଇବା ପାଇଁ, କିଏ ଡାକ୍ତରୀ ପରାମର୍ଶ ପାଇଁ ଓ କେହି କେହି ଦୁଃଖସୁଖ ହେବା ପାଇଁ ମଧ ଆସୁଥିଲେ । ଅରକ୍ଷିତକୁ ଦଇବ ସାହାପରି ସେମାନଙ୍କ ଭିତରୁ କେହି କେହି ମୋ ଘର ତୋଳା ପାଇଁ ସାହାଯ୍ୟ କରିବାକୁ ଆପେ ଆପେ ଆଗେଇ ଆସିଥିଲେ ।

କଟକର ତତ୍କାଳୀନ ଆଡିସ୍‌ନାଲ ମାଜିଷ୍ଟ୍ରେଟ ଶ୍ରୀ ରାମଚନ୍ଦ୍ର ପାତ୍ର ସେ ଜାଗାଟି ଚାରିପଟେ ଅନ୍ତତଃ ହତାଟିଏ ବୁଲାଇନେବା ପାଇଁ ମୋତେ ପରାମର୍ଶ ଦେଲେ । ସେତେବେଳେ ମୋ ସରକାରୀ ଦରମା ଦୁଇଶହ ଭିତରେ ଥିବାରୁ ମୁଁ ନିମ୍ନ କର୍ମଚାରୀ

ଗୃହ ନିର୍ମାଣ ସଂସ୍ଥାକୁ ଦରଖାସ୍ତ କରି ମୁଁ ସେହି ଋଣ ପାଇ ପାରିଲି । ମୁଁ ସେହି ଦରଖାସ୍ତ କରିବାକୁ କଚେରୀକୁ ଯାଉଥିବା ଦିନ ମୋର ପୂଜ୍ୟ ଗୁରୁ ରେଭେନ୍ସା କଲେଜର ପୂର୍ବତନ ପଦାର୍ଥ ବିଜ୍ଞାନ ପ୍ରଧାପକ ଶ୍ରୀ ନାରାୟଣ ମିଶ୍ର ମୋ ଦରଖାସ୍ତଟି ମୋ ହାତରୁ ନେଇ ତା' ଦେହରେ ନିଜେ ରଖିଥିବା ଷ୍ଟାମ୍ପ ଲଗାଇ ମୋତେ ଫେରାଇ ଦେଇ କହିଲେ ''ତୁମ ଘର ତୋଳା ପାଇଁ ମୋର ଏତିକି ମାତ୍ର ସାହାଯ୍ୟ, ମୁଁ ତୁମର ଶୁଭ କାମନା କରୁଛି ।'' ତାହାକୁ ମୁଁ ସେହି ଉଦାରଚେତା ସ୍ନେହୀ ଗୁରୁଙ୍କର ଆଶୀର୍ବାଦ ରୂପେ ଗ୍ରହଣ କରିଥିଲି ।

ଘରତୋଳାର ପ୍ରଥମ ପଦକ୍ଷେପ ଭାବରେ ସେ ପୂର୍ବରୁ କିଣିଥିବା ଗାଡ଼ିଆଟାକୁ ପୋତି ତା' ଚାରିପଟେ ପାଚେରୀଟିଏ କରିବା ନିତାନ୍ତ ପ୍ରୟୋଜନ ଥିଲା । ମୁଁ ସେ କଥା ଚିନ୍ତା କରିବାବେଳେ ମୋ ଚିକିତ୍ସାଧୀନ ଥିବା ଆସିଷ୍ଟାଣ୍ଟ ଇଞ୍ଜିନିୟର ସେଥିପାଇଁ ଏକ ବାଟ ବତାଇଲେ । ସେତେବେଳେ ପୁରୁଣା ହାଇକୋର୍ଟର ଚୂନଛାତ ଭଙ୍ଗାଯାଇ ସିମେଣ୍ଟ ଛାତ ତିଆରି ହୋଇଥିବାରୁ ସେଠାରେ ଛାତ ଉପରର ବିରାଟ ମଲବା ଗଦା ଜମା ହୋଇ ରହିଥିଲା । ତତ୍କାଳୀନ ପ୍ରଧାନ ବିଚାରପତି ସେ ସ୍ତୂପକୁ ଶୀଘ୍ର କଣ୍ଟ୍ରାକ୍ଟରଙ୍କ ଦ୍ୱାରା ଉଠାଇ ନେବା ପାଇଁ ପୂର୍ତ୍ତ ବିଭାଗକୁ ଘନ ଘନ ତାଗିଦ୍ କରୁଥିଲେ । ସେଥିପାଇଁ ଟେଣ୍ଡର ମାଗି ସେ ଟଙ୍କା ସାଙ୍କସନ ପାଇଁ ପୂର୍ତ୍ତ ବିଭାଗ ଅର୍ଥ ବିଭାଗକୁ ଲେଖିବାରେ ବିଳମ୍ବ ଘଟୁଥିଲା । ମୁଁ ତାହା ବିନା ପଇସାରେ ଉଠାଇ ନେବି ବୋଲି ଦରଖାସ୍ତ କରିବାରୁ ଶ୍ରୀ ରାଓ ସେ ଦରଖାସ୍ତ ନେଇ ମଞ୍ଜୁର କରାଇ ଆଣିବା ସଙ୍ଗେ ସଙ୍ଗେ, ସେଠାରୁ ମୋ ଜାଗାକୁ ବୋହି ଆଣିବା ପାଇଁ ଥରକୁ ଦଶ ଟଙ୍କାରେ ଗୋଟିଏ ଟ୍ରକ ଠିକ୍ କରିଦେଲେ । ମୁଁ ପ୍ରାୟ ଶହେ ଟ୍ରକ ସେହି ଗୋଡ଼ି ଚୂନ ମଲବା ଆଣି ସେ ଗାତରେ ପକାଇଦେଲି । ସେ ମଲବା ଦେହରୁ ବାହାରିଥିବା ବଡ଼ ବଡ଼ ଚୂନ ଗୋଡ଼ିର ମୁଣ୍ଡା ସବୁ ଗଡ଼ିଆର ବନ୍ଧ ରୂପେ ବ୍ୟବହାର କରି ଗଡ଼ିଆର ଖୋଲାଥିବା ଦୁଇପଟେ ଦୁଇଟି ବନ୍ଧ ତିଆରି କରିଦେଲି । ତା'ପରେ ସେହି ମୂଲ୍ୟରେ ଆଉ ଶହେ ଟ୍ରକ କାଠଯୋଡ଼ି ବାଲି ଆଣି ସେ ସ୍ଥାନକୁ ଟିକିଏ ଉଚ୍ଚ ଓ ସମତଳ କରିଦେଲି ।

ମୋର ରୋଗୀ ଓ ବନ୍ଧୁଙ୍କ ସଦିଚ୍ଛାକୁ ମୁଁ ଅର୍ଥୋପାର୍ଜନଠାରୁ ଅଧିକ ଗୁରୁତ୍ୱ ଦେଉଥିବାରୁ ସେମାନଙ୍କ ଭିତରୁ ଅନେକ ମୋ ଘର ତୋଳା ପାଇଁ ମୋତେ ନାନା ଭାବରେ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ସେ ସମୟରେ ଜିନିଷପତ୍ର ଅତ୍ୟନ୍ତ ଶସ୍ତା ଥିଲା । ସିମେଣ୍ଟ ବସ୍ତାକୁ ପାଞ୍ଚ, ଛଅ ଟଙ୍କା, ଫାଷ୍ଟକ୍ଲାସ ଇଟା ହଜାରକୁ ପଚାଶ ଟଙ୍କା, ବାଲି ଟ୍ରକକୁ ଦଶ ଟଙ୍କା, ମିସ୍ତ୍ରୀ ମଜୁରୀ ଚାରି ଟଙ୍କା, କୁଲି ମଜୁରୀ ଏକ ଟଙ୍କା । ମୁଁ ମାରୁଆଡ଼ି ପଟି ନିକଟରେ ମୋ କ୍ଲିନିକ୍ସ କରିଥିବାରୁ ବ୍ୟବସାୟୀମାନଙ୍କର ମୋ ପ୍ରତି ଯଥେଷ୍ଟ ସମ୍ମାନ ଥିଲା । ଇଟା, ସିମେଣ୍ଟ, ଲୁହା, କାଠ ପ୍ରଭୃତି ଜିନିଷ

ବ୍ୟବସାୟୀମାନେ ମତେ ଆଗତୁରା ଯୋଗାଇ ଦେଉଥିଲେ । ତେଣୁ ଜମି କିଣିବାର ବର୍ଷେ ଦୁଇବର୍ଷ ଭିତରେ ମୁଁ ଏକତାଲା ଘରଟିଏ କରି ଭଡ଼ା ଘରୁ ୧୯୫୯ ଶେଷ ଭାଗରେ ମୋ ନିଜ ଘରକୁ ଚାଲି ଆସି ପାରିଥିଲି ।

ମୁଁ ମେଡ଼ିକାଲ କଲେଜର ନନ୍‌କ୍ଲିନିକାଲ ବିଭାଗ ପାଥୋଲଜିରେ କାମ କରୁଥିବାରୁ କଚେରୀକୁ ଗଲାଭଳି ଖରାବେଳେ ୧୦ରୁ ୫ କଲେଜ ଯାଏ । ସକାଳ, ସନ୍ଧ୍ୟା ଓ ରାତିରେ ମୋ କ୍ଲିନିକ୍‌ସରେ ଘରୋଇ ଚିକିତ୍ସା କରେ । ମୁଁ ଓତପ୍ରୋତ ଭାବରେ ଘରୋଇ ଚିକିତ୍ସାରେ ଜଡ଼ିତ ଥିବାରୁ କଟକର ଅନେକ ଲୋକ ମୁଁ ଚାକିରି କରୁଥିବା କଥା ଜାଣି ନଥିଲେ । ମୁଁ ଜଣେ ପୂରା ଘରୋଇ ଚିକିତ୍ସକ ବୋଲି ଧରି ନେଉଥିଲେ ।

୧୯୬୮ ମସିହାରେ ମୁଁ ବ୍ରହ୍ମପୁର ମେଡ଼ିକାଲ କଲେଜକୁ ପ୍ରଫେସର ଭାବେ ବଦଳି ହୋଇଯିବା ବେଳେ ମୋର ବନ୍ଧୁ ପୂର୍ବତନ କେନ୍ଦ୍ରମନ୍ତ୍ରୀ ବିଜୁଧେନ୍ଦ୍ର ମିଶ୍ର ଶୁଭେଚ୍ଛା ଜଣାଇବା ସମୟରେ ବିଶିଷ୍ଟ କଣ୍ଟ୍ରାକ୍ଟର ଶ୍ରୀ ଗୋକୁଳି କାନୁନ୍‌ଗୋ ସେଠାରେ ଉପସ୍ଥିତ ଥିଲେ । ମୁଁ ତାଙ୍କ ଶ୍ୱଶୁର ଘରର ଚିକିତ୍ସା ଦାୟିତ୍ୱରେ ଥିବାରୁ ସେ ମୋତେ ଜଣେ ଘରୋଇ ଚିକିତ୍ସକ ବୋଲି ମନେ କରିଥିଲେ । ସେ ମୋ ବଦଳି କଥା ଶୁଣି କହି ପକାଇଲେ, ଘରୋଇ ଚିକିତ୍ସକଙ୍କର କ'ଣ ବଦଳି ହୁଏ ?



# ଗୋଲାମି ରାଜ୍ୟର ଅନୁଭୂତି

**ପ୍ରଶାସନର ଡୋରି :**

ଅତି ପିଲାଦିନେ ବାନରସେନାଙ୍କ କଣ୍ଠରେ ଶୁଣିଥିଲି 'ଚାକିରି ଝିକମାରୀ ଏ ଜୀବନେ ନାହିଁ କରି ।' ଦେଶ ସ୍ୱାଧୀନ ହେବା ପରେ ସରକାରୀ ଚାକିରି ଅବସ୍ଥାରେ ପରିବର୍ତ୍ତନ ଘଟିଥିବ ବୋଲି ମୋର ଆଶା ଥିଲା । କିନ୍ତୁ ଭାରତ ସ୍ୱାଧୀନ ହେବାପରେ ନିର୍ବାଚନ ବାଟେ ବହୁ କ୍ଷମତା ପିପାସୁ ଅବାଞ୍ଛିତ ସ୍ୱାର୍ଥାନ୍ୱେଷୀଙ୍କ ହାତକୁ ଶାସନ ଦଣ୍ଡ ଚାଲିଆସିଲା । ସେମାନେ କର୍ମଚାରୀଙ୍କଠାରୁ ମଧ୍ୟ ଅଭିନବ ଉପାୟରେ ଅର୍ଥ ଆଦାୟର ପନ୍ଥା ସବୁ ଉଦ୍ଭାବନ କଲେ । ନିଯୁକ୍ତି, ପଦୋନ୍ନତି ଓ ବଦଳି କ୍ଷେତ୍ରରେ ବ୍ୟକ୍ତିବିଶେଷଙ୍କ ପାଇଁ ନୀତି ନିୟମର ଅଦଳବଦଳ ଚାଲିଲା । ଶାସନର ସ୍ତରେ ସ୍ତରେ ଦୁର୍ନୀତି ବ୍ୟାପିବାକୁ ଲାଗିଲା ।

ଭାରତର ସ୍ୱାଧୀନତା ପୂର୍ବରୁ ପ୍ରଶାସକମାନଙ୍କୁ ତାଲିମ ପାଇଁ ବିଲାତ ପଠାଯାଉଥିଲାପରି ଡାକ୍ତରମାନଙ୍କୁ ମଧ୍ୟ ସ୍ନାତକୋତ୍ତର ଶିକ୍ଷା ପାଇଁ ବିଲାତ ପଠାଯାଉଥିଲା । ବିଲାତ ଡ଼ିଗ୍ରୀ ପ୍ରାପ୍ତ ଡାକ୍ତରମାନେ ସ୍ୱାସ୍ଥ୍ୟ ବିଭାଗର ବଡ଼ ବଡ଼ ପଦବୀରେ ରହିଥିଲେ । ଦେଶର ସ୍ୱାସ୍ଥ୍ୟ ଶିକ୍ଷା ନିୟନ୍ତ୍ରଣକାରୀ ଇଣ୍ଡିଆନ ମେଡ଼ିକାଲ କାଉନସିଲରେ ସେହିମାନଙ୍କର ଅଖଣ୍ଡ ପ୍ରତିପତ୍ତି ରହିଥିଲା । ଭାରତ ସ୍ୱାଧୀନ ହେବାପରେ ଡାକ୍ତରମାନେ ଅନ୍ୟାନ୍ୟ ଦେଶ ମାନଙ୍କରୁ ତାଲିମ୍ ପାଇ ଆସିଲେ । ବ୍ରିଟିଶ୍ ତାଲିମପ୍ରାପ୍ତ ବ୍ୟକ୍ତିମାନେ ସେ ସବୁ ଦେଶର ଡ଼ିଗ୍ରୀମାନଙ୍କୁ ତାଚ୍ଛଲ୍ୟ କରି ନ୍ୟୁନ ଚକ୍ଷୁରେ ଦେଖୁଥିଲେ । ପରବର୍ତ୍ତୀ କାଳରେ ଭାରତର ମେଡ଼ିକାଲ କଲେଜ ସଂଖ୍ୟା ବୃଦ୍ଧି ଘଟିଲା, ସେଥିରେ ସ୍ନାତକୋତ୍ତର ଶିକ୍ଷାର ବ୍ୟବସ୍ଥା ରହିଲା । ତଥାପି ସ୍ୱାସ୍ଥ୍ୟ ସେବା ଓ ଶିକ୍ଷାର ପରିଚାଳକ ଇଣ୍ଡିଆନ ମେଡ଼ିକାଲ କାଉନସିଲ ପୁରୁଣା ବିଲାତ ଫେରନ୍ତା ଡାକ୍ତରମାନଙ୍କ ତତ୍ତ୍ୱାବଧାନରେ ରହିଥିଲା । ପୂର୍ବରୁ ସେହି କାଉନସିଲ ବିଲାତ ମେଡ଼ିକାଲ କାଉନସିଲର ଏକ ଶାଖା ରୂପେ ରହିଥିଲା ଏବଂ ଅନ୍ୟ ସୁସଭ୍ୟ ଦେଶମାନଙ୍କର ଉନ୍ନତି ମେଡ଼ିକାଲ ଶିକ୍ଷା ସଂସ୍ଥା ସହିତ ତା'ର କୌଣସି ସମ୍ବନ୍ଧ ନ ଥିଲା । ଏପରିକି ଆମେରିକା, ଜାପାନ, ଜର୍ମାନ, ଫ୍ରାନ୍ସ ପ୍ରଭୃତିର ବିଶ୍ୱବିଦ୍ୟାଳୟମାନଙ୍କ ସହିତ ଭାରତର ବିଶ୍ୱବିଦ୍ୟାଳୟମାନଙ୍କର ଆଦାନ ପ୍ରଦାନର ବ୍ୟବସ୍ଥା ନ ଥିଲା ।

**ମୋ ଚାକିରି :**

ମନ୍ତ୍ରୀଙ୍କ ପୂର୍ବ ଘୋଷଣାକୁ ଅପେକ୍ଷା କରି ପ୍ରାୟ ସାତ ମାସ ଅତିବାହିତ ହେବାପରେ ମେଡ଼ିକାଲ କଲେଜର ପାଥୋଲଜି କ୍ୟୁରେଟର (ଲେକଚରର) ଡ଼ିପ୍ଲୋମା ପାଇଁ ଛୁଟିରେ

ଯାଇଥିବାରୁ ତାଙ୍କ ସ୍ଥାନ ପାଇଁ ଅସ୍ଥାୟୀ ନିଯୁକ୍ତି ନିମନ୍ତେ ଓଡ଼ିଶା ପବ୍ଲିକ ସର୍‌ଭିସ କମିଶନ ବିଜ୍ଞାପନ ଦେଲେ । ସେଥିରେ ପୂର୍ବରୁ ସାଧାରଣ ଏମ.ବି.ବି.ଏସ୍ ଥିଲେ ମଧ ମୁଁ କଲେଜରେ ପଶିବା ପାଇଁ ଇଣ୍ଟରଭିଉ ଦେଇ ସେ ଚାକିରିଟି ପାଇଲି । ଶିକ୍ଷା ବିଭାଗରେ ମୋ ଡ଼ିଗ୍ରୀ ପରି ଆମେରିକାନ ଡ଼ିଗ୍ରୀ ପାଇ ଆସିଥିବା ବ୍ୟକ୍ତିମାନେ ଅଧିକା କେତୋଟି ଇନ୍‌କ୍ରୀମେଣ୍ଟ ପାଉଥିବାରୁ ମୁଁ ତାହା ପାଇବି ବୋଲି ଆଶା କରିଥିଲି, କିନ୍ତୁ ମୋର ଦରଖାସ୍ତ ସତ୍ତ୍ୱେ ତାହା ମୋତେ ମିଳିଲା ନାହିଁ । ମୁଁ ସେହି ଗ୍ରେଡ଼ ୱାନ ପୋଷ୍ଟରେ ୨୦୦ ଟଙ୍କା ଦରମା ଓ ଶିକ୍ଷା ଭତ୍ତା ୧୦୦ ଟଙ୍କାରେ ମାତ୍ର ନିଯୁକ୍ତି ପାଇଲି । ପୂର୍ବତନ କ୍ୟୁରେଟର ଫେରି ଆସିବାର ଅବ୍ୟବହିତ ପୂର୍ବରୁ ଆଉ ଗୋଟିଏ ଲେକଚରର ପୋଷ୍ଟ ପାଥୋଲଜି ବିଭାଗରେ ଖାଲି ପଡ଼ିବାରୁ ପବ୍ଲିକ ସର୍ଭିସ କମିଶନ ନିୟମ ଅନୁସାରେ ମୁଁ ସେଥିରେ ଯୋଗଦେଲି ।

ମୁଁ ନଅ ମାସ ସେ ଆସିଷ୍ଟାଣ୍ଟ ସର୍ଜନ ଗ୍ରେଡ଼ ୱାନ ପୋଷ୍ଟରେ ମନୋନୀତ ହୋଇ ରହିବା ପରେ ମୁଖ୍ୟମନ୍ତ୍ରୀ (ମୁଁ ଆମେରିକା ଯିବାବେଳେ ମୋର ସରକାରୀ ସାହାଯ୍ୟ ଯେ ବନ୍ଦ କରିଦେଇଥିଲେ) ତାଙ୍କର କ୍ୟାବିନେଟର ଏକ ନିର୍ଦ୍ଦେଶନାମା ମୋତେ ଜଣାଇ ଦିଆଗଲା । ତାହା ଅନୁସାରେ ଯେତେ ଯୋଗ୍ୟ ହେଲେ ମଧ କୌଣସି ଡକ୍ଟର ଗ୍ରେଡ଼ ୱାନ ଚାକିରିରେ ସିଧାସଳଖ ପ୍ରବେଶ କରି ପାରିବେ ନାହିଁ । ସେମାନଙ୍କ ପୂର୍ବ ପି.ଏସ୍.ସି. ସୁପାରିଶ ମଧ କାମରେ ଲାଗିବ ନାହିଁ । ସେମାନଙ୍କୁ ଗ୍ରେଡ଼ ଟୁ ପୋଷ୍ଟ ପାଇଁ ପୁଣି ପି.ଏସ୍.ସି.ରେ ଇଣ୍ଟରଭିଉ ଦେବାକୁ ପଡ଼ିବ ।

ସେହି ପରୱାନା ଦ୍ୱାରା ଶିକ୍ଷକ ଭାବେ ଯୋଗ ଦେଇଥିବା ଓଡ଼ିଶା ମେଡ଼ିକାଲ କଲେଜର ପ୍ରଥମ ଆମେରିକା ସ୍ନାତକ ଡ଼ିଗ୍ରୀଧାରୀ ଛାତ୍ର (ମୁଁ) ଏବଂ ପ୍ରଥମ ଏଫ.ଆର.ସି.ଏସ୍. ଡ଼ିଗ୍ରୀଧାରୀ ମୋର ପୂର୍ବତନ ସହପାଠୀ ଡାକ୍ତର ମଧୁସୂଦନ ଖାଡ଼ଙ୍ଗା ଆମେ ଦୁଇଜଣ ମାତ୍ର ବଛା ହେଲାପରି ସେ ଚକ୍ରାନ୍ତର ଶିକାର ହେଲୁ ।

ମୋର ସଙ୍ଗୀ ଖାଡ଼ଙ୍ଗାଙ୍କର ବିଲାତ ଡ଼ିଗ୍ରୀ ଥିବାରୁ ସେ ତାଙ୍କ ପଦ ହରାଇଲେ ମଧ ବିହାର ଚାଲିଯାଇ ତାଙ୍କର କେତେକ ଶୁଭାକାଂକ୍ଷୀଙ୍କ ସାହାଯ୍ୟରେ ନୂଆ ଦରଭଙ୍ଗା ମେଡ଼ିକାଲ କଲେଜରେ ଶିକ୍ଷକ ଚାକିରିଟିଏ ପାଇଲେ ଓ ପରେ ମହତାବଙ୍କ ମୁଖ୍ୟମନ୍ତ୍ରୀ ସମୟରେ ସେଠାରୁ ଆସି ସିଧା ସହକାରୀ ଅଧାପକ ପଦରେ ନିଯୁକ୍ତ ହୋଇପାରିଲେ ।

ମୁଁ ଉପାୟ ନ ଦେଖି ଗ୍ରେଡ଼ ଟୁ ପୋଷ୍ଟ ପାଇଁ ପି.ଏସ୍.ସି.ରେ ପୁଣି ଇଣ୍ଟରଭିଉ ଦେଇ ମେଡ଼ିକାଲ କଲେଜ ପାଥୋଲଜି ଆଉଟଡ଼ୋରରେ ସହକାରୀ କ୍ଲିନିକାଲ ପାଥୋଲାଜିଷ୍ଟ ପୋଷ୍ଟରେ ଅବସ୍ଥାପିତ ହେଲି । ମୋ ଦରମା ୩୦୦ ଟଙ୍କାରୁ ୧୭୫ ଟଙ୍କାକୁ କମି ଆସିଲା । ସେପରି ଅଣଶିକ୍ଷକ ପଦରେ କିଛିକାଳ କାର୍ଯ୍ୟ କଲାପରେ

ପୁଣି ଏକ ଲେକଚରର (ଡେମୋନଷ୍ଟ୍ରେଟର) ପଦ ଖାଲି ହେବାରୁ ସେଥିପାଇଁ ଦରଖାସ୍ତକରି ପି.ଏସ୍.ସି. ସୁପାରିଶରେ ପ୍ରମୋସନରେ ମୁଁ ସେ ପଦ ପାଇଲି ।

**ବିଭାଗୀୟ ଚକ୍ରାନ୍ତର ଶିକାର :**

ସେ ଘଟଣାବଳୀରେ ମୋ ମନ ଏତେ ଖରାପ ହୋଇଥିଲା ଯେ ମୁଁ ଓଡ଼ିଶାରେ ରହି ପିତାଙ୍କର ସେବା କରିବା ଠିକ୍ କରିଥିଲେ ମଧ ଓଡ଼ିଶା ବାହାରକୁ ଚାଲିଯିବା ପାଇଁ ସ୍ଥିର କରି (ବଡ଼ ବଡ଼ ପୋଷ୍ଟ ପାଇଁ) ଇଉନିଅନ ପବ୍ଲିକ ସର୍ଭିସ କମିଶନ ଓ ଅନ୍ୟ ସର୍ବଭାରତୀୟ ସଂସ୍ଥାମାନଙ୍କୁ ବିଶେଷଜ୍ଞ ପଦପାଇଁ ଦରଖାସ୍ତ କରିବାକୁ ଲାଗିଲି । ଇଣ୍ଟରଭିଉ ଦେଇ କେତେକ ସଂସ୍ଥାର ନିଯୁକ୍ତିପତ୍ର ପାଇଲେ ମଧ ପିତାଙ୍କୁ ଛାଡ଼ି ଯିବା ପାଇଁ ମନ ଡାକୁ ନ ଥିଲା । ଶେଷରେ ମୁଁ କେନ୍ଦ୍ର ସରକାରଙ୍କ ଦ୍ୱାରା ଏନ.ସି.ଡି.ସି. (କୋଲ ଇଣ୍ଡିଆ) ଆସନସୋଲ ହସପିଟାଲ ଚିଫ୍ ପାଥୋଲଜିଷ୍ଟ ପଦରେ ମନୋନୀତ ହେଲି । ମୁଁ ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରି କରୁଥିବାରୁ ମୋତେ ଲିଅନରେ ଛଡ଼ାଯାଇ ସେ ପଦରେ ଯୋଗଦେବାକୁ ଅନୁମତି ଦେବା ପାଇଁ ଓଡ଼ିଶା ସରକାରଙ୍କୁ ଚିଠି ଆସିଲା । ସେ ସମୟରେ ମିଃ ବାରେନ ନାମକ ଜଣେ ନିରପେକ୍ଷ ଆଇ.ଏ.ଏସ୍ ସ୍ୱାସ୍ଥ୍ୟ ସଚିବ ଥିଲେ । ଯୋଗ୍ୟ ଓଡ଼ିଆମାନେ ଅନ୍ୟତ୍ର ଯିବାକୁ ସେ ପସନ୍ଦ ନ କରି ସେମାନଙ୍କୁ ଉପଯୁକ୍ତ ପଦ ଦେଇ ଓଡ଼ିଶାରେ ରଖାଇବା ସପକ୍ଷରେ ଥିଲେ । ସେ ଅନୁସନ୍ଧାନ କରି କଟକ ମେଡ଼ିକାଲ କଲେଜରେ ଗୋଟିଏ ନୂଆ ସହକାରୀ ଜୁରିସ ପ୍ରଫେସର ପଦ ଖୋଲାଯିବା ପାଇଁ ସୁପାରିଶ୍ ହୋଇ ପଡ଼ିରହିଥିବା ଫାଇଲଟି ଦେଖିଲେ । ସେ ପଦଟି ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି ଯେ ପାଥୋଲଜି ଡ଼ିଗ୍ରୀ ପାଇଁ ପଢ଼ିବାକୁ ଯାଇଥିଲେ ତାଙ୍କ ପାଇଁ ଅପେକ୍ଷା କରୁଥିଲା । ମିଃ ବାରେନ ସେହି ପୋଷ୍ଟଟି ମୋତେ ଦେଇ ଓଡ଼ିଶାରେ ରଖାଇବା ପାଇଁ ସୁପାରିଶ କଲେ । ମୁଁ ସେ ପୋଷ୍ଟ ଗ୍ରହଣ କରିବାକୁ ଚାହେଁ କି ନାହିଁ ବୋଲି ମୋ ନିକଟକୁ ସରକାରରୁ ଚିଠି ଆସିଲା । ମୁଁ ସଙ୍ଗେ ସଙ୍ଗେ ସେ ପୋଷ୍ଟରେ ନିଯୁକ୍ତ ହେଲେ ତାହା ଗ୍ରହଣ କରିବାକୁ ମୋର ଆପତ୍ତି ନାହିଁ ବୋଲି ଜଣାଇଲି । କର୍ମକର୍ତ୍ତାମାନେ ସଙ୍ଗେ ସଙ୍ଗେ କେନ୍ଦ୍ର ସରକାରଙ୍କୁ ଜଣାଇଲେ ଯେ ମୋର ଓଡ଼ିଶା ସରକାରଙ୍କ ଏକ ପୋଷ୍ଟ ଗ୍ରହଣ କରିବାକୁ ମନ ଥିବାରୁ ମୋର ତାଙ୍କ ପୋଷ୍ଟରେ ଯୋଗଦେବାର ଇଚ୍ଛା ନାହିଁ । ତାଦ୍ୱାରା ମୋ ଅଜାଣତରେ ମୋର ସେ ପୋଷ୍ଟଟି ଚାଲିଗଲା । ତା' ପରେ ପରେ ଓଡ଼ିଶାର ସେ ନୂତନ ସହକାରୀ ପଦ ପାଇଁ ପି.ଏସ୍.ସି. ଇଣ୍ଟରଭିଉକୁ ଯିବାକୁ ମୋତେ ଓ ଆମ ବିଭାଗର ଜଣେ ପୁରାତନ ସହକାରୀ ଅଧ୍ୟାପକଙ୍କୁ ନିର୍ଦ୍ଦେଶ ଆସିଲା, ଯାହାଫଳରେ ମୁଁ ଦୁଇଟି ଯାକ ପଦ ହରାଇ ପୂର୍ବପରି ପଡ଼ି ରହିଲି ।

ମୋ ଠାରୁ ପାଠ ଓ ବୟସରେ କନିଷ୍ଠ ଥିବା ଜଣେ ବ୍ୟକ୍ତି ମୋ ବିରୁଦ୍ଧରେ ଚାଲିଥିବା ବିଲାତ ଫେରନ୍ତା ଚକ୍ରାନ୍ତକାରୀଙ୍କ ସହଯୋଗରେ ଆଉ ଗୋଟିଏ ନୂଆ ଆସିଷ୍ଟାଣ୍ଟ

ପ୍ରଫେସର ପଦ ଖାଲି ପଡ଼ିବାରେ ତାଙ୍କର ଯୋଗ୍ୟତା ନ ଥିଲେ ମଧ୍ୟ ଏକ ଡ଼ିପ୍ଲୋମା ବଳରେ ସେ ସେହି ପଦ ଅଧିକାର କରିପାରିଥିଲେ । ସେମାନେ ଇଣ୍ଡିଆନ ମେଡ଼ିକାଲ କାଉନସିଲକୁ ଲେଖାଲେଖି କରାଇ ମୋ ଆମେରିକାନ ଡ଼ିଗ୍ରୀ ସହିତ ଇଣ୍ଡିଆନ ମେଡ଼ିକାଲ କାଉନସିଲ ଡ଼ିଗ୍ରୀର ସମ୍ବନ୍ଧ ନ ଥିବାରୁ ତାହା ଉଚ୍ଚ ଶିକ୍ଷକପଦ ପାଇଁ ଉପଯୁକ୍ତ ନୁହେଁ ବୋଲି ମତ ସଂଗ୍ରହ କରିଥିଲେ ଓ ମୁଁ ଗୋଟିଏ ଆସିଷ୍ଟାଣ୍ଟ ପ୍ରଫେସର ପାଇଁ ପି.ଏସ୍.ସି.କୁ ଆଗରୁ ଡାକରା ପାଇ ଯାଇଥିଲେ ମଧ୍ୟ ମୋ ଦରଖାସ୍ତକୁ ପି.ଏସ୍.ସି.କୁ ନ ପଠାଇ ଚାପି ରଖି ଦିଆଯାଇଥିଲା ।

## ମୋ ଯୋଗ୍ୟତାର ବିଚାର :

ସେ ସମୟରେ ପାଟନା ମେଡ଼ିକାଲ କଲେଜର ପୂର୍ବତନ ପ୍ରାଧ୍ୟାପକ ମୋର ପୂର୍ବତନ ପରୀକ୍ଷକ ବାସୁଦେବ ନାରାୟଣ କଟକ ଆସିଥିଲେ । ସେ ଆଇ.ଏମ୍.ସି.ର ଉପସଭାପତି ଓ କାକିନାଡ଼ା ମେଡ଼ିକାଲ କଲେଜର ଅଧ୍ୟକ୍ଷ ଥିଲେ । ମୁଁ ବହୁଦିନ ଧରି ଡେମୋନ୍‌ଷ୍ଟ୍ରେଟର ପଦରେ ପଡ଼ି ରହିଥିବା ଜାଣି ମୋ ଯୋଗ୍ୟତା ଦୃଷ୍ଟିରୁ ତାଙ୍କ କାକିନାଡ଼ା କଲେଜକୁ ରିଡ଼ର କରି ନେବା ପାଇଁ ପ୍ରସ୍ତାବ ଦେଲେ । ସହକାରୀ ପ୍ରଫେସର ପଦଠାରୁ ରିଡ଼ର ପୋଷ୍ଟ ବଡ଼ ହେଲେ ମଧ୍ୟ ମୁଁ କହିଲି "ନିଜ ରାଜ୍ୟରେ ସହକାରୀ ଅଧ୍ୟାପକ ପଦ ପାଇଁ ଯୋଗ୍ୟ ନ ହୋଇ ଅନ୍ୟ ରାଜ୍ୟକୁ ବଡ଼ ପଦ ପାଇଁ ପଳାଇବା କାପୁରୁଷର ଲକ୍ଷଣ ହେବ । ମୋର ନ୍ୟାଯ୍ୟ ଦାବି ପାଇଁ ଆପଣ ମେଡ଼ିକାଲ କାଉନସିଲରେ ବିଚାର କରିପାରିଲେ ମୁଁ ଉପକୃତ ହେବି ।" ସେ ମୋ କଥା ମେଡ଼ିକାଲ କାଉନସିଲରେ ପକାଇ ମୋ ଯୋଗ୍ୟତା ଓ ଅଭିଜ୍ଞତା ଦୃଷ୍ଟିରୁ ମୋତେ ସହକାରୀ ପ୍ରଫେସର କରାଯିବା ପାଇଁ ସୁପାରିଶ୍ କରାଇଲେ । ନିୟମ ଅନୁସାରେ ସହକାରୀ ପ୍ରଫେସର ହେଲେ ଅଭିଜ୍ଞତା ବୃଦ୍ଧି ଅନୁସାରେ ଜଣେ ପ୍ରଫେସର ପାଇଁ ଯୋଗ୍ୟ ହେବାର କଥା, କିନ୍ତୁ ମୋ ସମ୍ବନ୍ଧରେ ସିଦ୍ଧାନ୍ତକୁ ମେଡ଼ିକାଲ କାଉନସିଲ ଏକଜିକ୍ୟୁଟିଭ କମିଟିର ଓଡ଼ିଶା ସଦସ୍ୟ ଆମ ଡ଼ିରେକ୍ଟର କୌଶଳରେ ବଦଳାଇ ସହକାରୀ ପ୍ରଫେସର ପର୍ଯ୍ୟନ୍ତ ଯୋଗ୍ୟ ବୋଲି ଲେଖାଇନେଲେ ।

ସେ ଯାହାହେଉ ତା' ଫଳରେ ସେହି ସହକାରୀ ପଦ ପାଇଁ ମୁଁ ମଧ୍ୟ ପି.ଏସ.ସି.ରୁ ଡାକରା ପାଇଲି, ଅସ୍ଥାୟୀ ନିଯୁକ୍ତି ପାଇଥିବା ଡାକ୍ତର ଓ ମୁଁ ଦୁହେଁ, ଉପଯୁକ୍ତ ବିବେଚିତ ହେଲୁ କିନ୍ତୁ ସେ ସେହି ପଦରେ ଥିବା ଦର୍ଶାଇ ସରକାର ତାଙ୍କୁ ସେ ପଦରେ ନିଯୁକ୍ତି ଦେଲେ । ପରେ ଆଉ ଗୋଟିଏ ସେପରି ପଦ ଖାଲି ହେବାରୁ ମୁଁ ତାହା ପାଇଲି ।

## ଉପାଧିର ମୂଲ୍ୟାୟନ :

ସେ ପଦରେ ବହୁଦିନ ରହିଲେ ମଧ୍ୟ ଆଇ.ଏମ୍.ସି.ଙ୍କ ସୁପାରିଶରେ ମୋ ନାମ ପଛରେ ଅଙ୍କୁଶ ଲାଗିଥିବାରୁ ଅଧ୍ୟାପକ ପଦ ପାଇଁ ମୁଁ ଯୋଗ୍ୟ ହୋଇପାରିଲି ନାହିଁ ।

ଥରେ ଆଇ.ଏମ.ସି.ର ସଭାପତି ଡାକ୍ତର ପଟେଲ ଭୁବନେଶ୍ୱର ଆସିଥିବା ବେଳେ ମୁଁ ମୋର କେତେକ ଅଧ୍ୟାପକଙ୍କୁ ନେଇ ତାଙ୍କୁ ଦେଖା କରିବାରେ ସେ ସେମାନଙ୍କୁ କହିଲେ 'ସବୁ ତୁମ ଡିରେକ୍ଟରଙ୍କ ହାତରେ, ସେ କାଉନ୍‌ସିଲର ଜଣେ ବରିଷ୍ଠ ସଦସ୍ୟ । ତୁମେ ତାଙ୍କୁ କହ ।' ଅବଶ୍ୟ ତାଙ୍କୁ କହି କିଛି ଲାଭ ହେବାର ନ ଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟକୁ ଆନ୍ତଃ ବିଶ୍ୱବିଦ୍ୟାଳୟର ଏକ ନିର୍ଦ୍ଦେଶ ଆସିଲା । ଉକ୍ତ ବିଶ୍ୱବିଦ୍ୟାଳୟମାନଙ୍କର ଯେଉଁ ପୂର୍ବତନ ଛାତ୍ରମାନେ ଅନ୍ୟ ସ୍ଥାନର ସ୍ନାତକୋତ୍ତର ଡ଼ିଗ୍ରୀ ଆଣିଛନ୍ତି, ତାଙ୍କର ଡ଼ିଗ୍ରୀକୁ ଭାରତୀୟ ବିଶ୍ୱବିଦ୍ୟାଳୟଙ୍କ ଡ଼ିଗ୍ରୀ ସହିତ ମୂଲ୍ୟାୟନ କରାଯାଇ ତା'ର ସ୍ଥାନ ନିରୂପଣ କରାଯାଉ । ସେଥିପାଇଁ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦରଖାସ୍ତ କଲି । ମୋର ଆମେରିକା ବିଶ୍ୱବିଦ୍ୟାଳୟରୁ ମୋ ଡ଼ିଗ୍ରୀ ସମ୍ପର୍କରେ ତଥ୍ୟସବୁ ଅଣାଯାଇ ଆମ ଡ଼ିଗ୍ରୀର କୋର୍ସ ସଙ୍ଗେ ସମାସ୍କନ୍ଧ ବୋଲି ନିଷ୍ପତ୍ତି ନିଆଗଲା । ତଥାପି ନୂଆ ସମ୍ବଲପୁର ମେଡ଼ିକାଲ କଲେଜ ପ୍ରଫେସର ପଦ ପାଇଁ ମୋର ବିଚାର କରାନଯିବାରୁ ମୁଁ ଭାରତ ସରକାରଙ୍କ ପଣ୍ଡିଚେରୀ ମେଡ଼ିକାଲ କଲେଜର ପ୍ରଫେସର ପଦ ପାଇଁ ଇଉ.ପି.ଏସ.ସି. ଇଣ୍ଟରଭିଉରେ ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲି ।

ମୁଁ ସରକାରଙ୍କ ବିଚାର ବିରୋଧରେ ବିବ୍ରତ ନ ହୋଇ ମୋ ଅଭିଯୋଗ ସମ୍ବନ୍ଧରେ ଗୋଟିଏ ଗୋଟିଏ ଦରଖାସ୍ତ ସରକାରଙ୍କୁ ପଠାଇ ନିରବ ରହୁଥିଲି । ବହୁ ମୁଖ୍ୟମନ୍ତ୍ରୀ ମଧ ମୋ ଅଭିଯୋଗ ଦରଖାସ୍ତ ସବୁ ସେପରି ପକାଇ ରଖିଥିଲେ । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ମୋ ଅନୁରୋଧରେ ବହୁଦିନୁ ହତାଦରରେ ସଚିବାଳୟରେ ପଡ଼ିରହିଥିବା ଦରଖାସ୍ତ ସବୁ ବର୍ଷେକାଳ ବିଚାର କରି ମୋ ପ୍ରତି ଅନ୍ୟାୟ ହୋଇଥିବା ମତ ଦେଲେ ଓ ବ୍ରହ୍ମପୁର ମେଡ଼ିକାଲ କଲେଜରେ ଖୋଲା ଯାଇଥିବା ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ ପଦରେ ମୋତେ ତୁରନ୍ତ ନିଯୁକ୍ତି ଦିଆଯିବା ପାଇଁ ନିର୍ଦ୍ଦେଶ ଦେଲେ ।

କିଛି ମାସ ପୂର୍ବରୁ ମୋ ପିତାଙ୍କ ବିୟୋଗ ଘଟି ସାରିଥିଲା । ତେଣୁ ମୋର କଟକ ଛାଡ଼ି ବ୍ରହ୍ମପୁର ଯିବାର ଅସୁବିଧା ନ ଥିଲା । ମୁଁ ସେଠାରେ ଯୋଗ ଦେଉ ଦେଉ, ଯେଉଁମାନଙ୍କର ଯୋଗ୍ୟତା ନ ଥାଇ ସେ ପଦପାଇଁ ଦୃଷ୍ଟି ରହିଥିଲା ସେହି ନ୍ୟସ୍ତ- ସ୍ୱାର୍ଥ ବ୍ୟକ୍ତି ଓ ସେମାନଙ୍କ ଶୁଭାକାଂକ୍ଷୀମାନେ ମୋତେ ସେ ପଦରେ ରଖାଇ ନ ଦେବା ପାଇଁ ଜୋରସୋର୍‌ରେ ଲାଗିପଡ଼ିଲେ ।

**ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଡାକରା :**

ମୋ ନିଯୁକ୍ତି ବିରୁଦ୍ଧରେ ବିଧାନସଭାରେ ପ୍ରଶ୍ନ, ମୋକଦ୍ଦମା ଓ ବୁର୍ଲା ହାଉସ୍ ସର୍ଜନଙ୍କ ଆନ୍ଦୋଳନ ପ୍ରଭୃତି ସୃଷ୍ଟି କରାଗଲା । ତା' ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟ ବିଭାଗର ବିଲାତ

ଫେରନ୍ତା ନିର୍ଦ୍ଦେଶକ, ଆଇ.ଏମ.ସି. ସଦସ୍ୟ ଭାବରେ ସେ ପର୍ଯ୍ୟନ୍ତ ମୋର ଡ଼ିଗ୍ରୀ ଆଇ.ଏମ୍.ସି. ଦ୍ୱାରା ସ୍ୱୀକୃତ ହୋଇ ନ ଥିବା କାରଣ ଦର୍ଶାଇ ମୁଁ ବ୍ରହ୍ମପୁର ମେଡ଼ିକାଲ କଲେଜର ନିଦାନ ବିଭାଗମୁଖ୍ୟ ହେଲେ ସେ ବିଭାଗ ଡ଼ିଗ୍ରୀ ପାଇଁ ଆଇ.ଏମ.ସି. ଦ୍ୱାରା ସ୍ୱୀକୃତି ପାଇ ପାରିବ ନାହିଁ ବୋଲି ଦର୍ଶାଇ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ନିକଟକୁ ତାଙ୍କ ମତାମତ ପଠାଇଲେ ।

ସେ ସମୟରେ କୋରାପୁଟ-ଜୟପୁର ଅଞ୍ଚଳର ଶ୍ରୀ ରାମଶେଷେୟା ଓଡ଼ିଶାର ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ । ତାଙ୍କ ନିର୍ଦ୍ଦେଶରେ ତାଙ୍କ ସହିତ ସାକ୍ଷାତ କରିବାପାଇଁ ଡାକରା ପାଇ ମୁଁ ଭୁବନେଶ୍ୱର ଯାଇ ତାଙ୍କୁ ଦେଖାକଲି । ଅତି ଦରକାର ନ ପଡ଼ିଲେ ମୁଁ ସ୍ୱାସ୍ଥ୍ୟ ନିର୍ଦ୍ଦେଶାଳୟ, ସଚିବାଳୟ ବା ମନ୍ତ୍ରୀଙ୍କ ନିକଟକୁ ଯାଉନଥିଲି । ତେଣୁ ସେମାନଙ୍କ ସହିତ ମୋର ପରିଚୟ ନ ଥିଲା ।

ମୋତେ ଦେଖିବା କ୍ଷଣି ସ୍ୱାସ୍ଥ୍ୟମନ୍ତ୍ରୀ ମହୋଦୟ ମୋର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ତନ୍ନତନ୍ନ କରି ନିରୀକ୍ଷଣ କରିବା ପରେ ଆସନ ଗ୍ରହଣ ପାଇଁ ମୋତେ ନିର୍ଦ୍ଦେଶ ଦେଲେ । ତା'ପରେ ହସି ହସି କହିଲେ ''କାହିଁ ତୁମେ ଜଣେ ଉଗ୍ର-କଳିହା ବା ବିବଦମାନ ବ୍ୟକ୍ତି ପରି ତ ଜଣାଯାଉନାହଁ । ତୁମର ଏତେ ବିରୋଧି ବ୍ୟକ୍ତି ଥିବାର ଜାଣି ତୁମେ ଅତ୍ୟନ୍ତ କଳହ ପରାୟଣ, ବଦରାଗୀ, ଅପ୍ରିୟବାଦୀ ବ୍ୟକ୍ତି ହୋଇଥିବ ବୋଲି ବିଚାରି ତୁମକୁ ଦେଖିବାକୁ ଡକାଇଥିଲି । ଏତେ ଲୋକ ତୁମର ଶତ୍ରୁତା କରିବାର କାରଣ କ'ଣ ?''

ମୁଁ କହିଲି ବେଙ୍ଗଟାଏ କୂଅରେ ପଡ଼ିଲେ ସମସ୍ତେ ଟେକାଟାଏ ଲେଖାଏଁ ପକାନ୍ତି । ମୋର ସବୁଠାରୁ ବଡ଼ ଦୁର୍ଭାଗ୍ୟ ଯେ ମୁଁ ଏକାକୀ ଆମେରିକାନ ଡ଼ିଗ୍ରୀଟିଏ ଧରି ବିଲାତ ଡ଼ିଗ୍ରୀଧାରୀ ଅଧ୍ୟୁଷିତ ସ୍ଥାନକୁ ଶିକ୍ଷକତା ଚାକିରି ପାଇଁ ଫେରି ଆସିଥିଲି । ସେ କହିଲେ ''ତୁମ ବିଦାୟୀ ଡ଼ିରେକ୍ଟର ତାଙ୍କର ବିଦାୟର ଠିକ ପୂର୍ବରୁ ତୁମେ ମୁଖ୍ୟ ହୋଇ ରହିଲେ ତୁମ ବିଭାଗ ସ୍ୱୀକୃତି ପାଇବ ନାହିଁ ବୋଲି ଜଣାଇଛନ୍ତି । ଏପରି ପରିସ୍ଥିତିରେ କ'ଣ କରାଯିବ ?'' ମୁଁ କହିଲି ବ୍ୟକ୍ତିର ଡ଼ିଗ୍ରୀ ଓ ଅନୁଷ୍ଠାନର ସ୍ୱୀକୃତି ପୃଥକ । କଟକ ମେଡ଼ିକାଲ କଲେଜର ପ୍ରସୂତି ବିଭାଗର ପ୍ରାଧ୍ୟାପିକାଙ୍କ ବିଲାତ ଡ଼ିପ୍ଲୋମା, ଚକ୍ଷୁ ବିଭାଗର ପ୍ରଧାପକଙ୍କ ବିଲାତ ଡ଼ିପ୍ଲୋମା ସବୁ ଆଇ.ଏମ.ସି. ଅନୁମୋଦନ କରି ନାହାନ୍ତି, କିନ୍ତୁ ସେମାନଙ୍କ ଦ୍ୱାରା ପରିଚାଳିତ ବିଭାଗ ସବୁ ଡ଼ିଗ୍ରୀ ଓ ସ୍ନାତକୋତ୍ତର ଡ଼ିଗ୍ରୀ ପାଇଁ ମଧ୍ୟ ଆଇ.ଏମ.ସି. ପରିଦର୍ଶନ ପରେ ସ୍ୱୀକୃତି ପାଇଛନ୍ତି । ମୋର ସ୍ନାତକୋତ୍ତର ଉପାଧିର ବିଶ୍ୱବିଦ୍ୟାଳୟ କମିଟି ଦ୍ୱାରା ସୁପାରିଶକୁ ଆଇ.ଏମ.ସି. ଗ୍ରହଣ କରନ୍ତୁ ବା ନ କରନ୍ତୁ, ମୋ ପାଥୋଲଜି ବିଭାଗ ଶିକ୍ଷା ଓ ତାଲିମ ପ୍ରଭୃତି ଦୃଷ୍ଟିରୁ ଉପଯୁକ୍ତ ହୋଇପାରିଲେ ତା'ର ଆଇ.ଏମ.ସି. ପରିଦର୍ଶକଙ୍କ ସ୍ୱୀକୃତି ପାଇବାରେ ବାଧା ଉପୁଜିବାରେ କୌଣସି କାରଣ ନାହିଁ । ମୋ ଯୁକ୍ତିରେ ବୋଧହୁଏ ମନ୍ତ୍ରୀ ମହୋଦୟ ସନ୍ତୁଷ୍ଟ ହୋଇଥିଲେ । ତଥାପି ମୋର ବିରୋଧୀଙ୍କ

ଉଦ୍ୟମ ଯୋଗୁ ଓଡ଼ିଶା ପି.ଏସ.ସିର ଅନୁମୋଦନ ଡେରି ହେବାରୁ ମୋତେ ବେତନ ପାଇବାରେ ବହୁତ ଡେରି ହେଉଥିଲା । ମୁଁ ବିଭାଗୀୟ କାର୍ଯ୍ୟରେ ମନଯୋଗ ଦେବା ଦ୍ୱାରା ମୋର କ୍ଲିନିକ୍ସ ରୋଜଗାରରେ ମଧ ବାଧା ପଡୁଥିଲା । ତେଣୁ ମୁଁ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇଥିଲି ।

**ବିଭାଗୀୟ ଶାସନ :**

ବ୍ରିଟିଶ ଅମଳରେ ସ୍ୱାସ୍ଥ୍ୟ ଓ ଶିକ୍ଷା ବିଭାଗଙ୍କ ସ୍ଥାନ ଅନ୍ୟ ବିଭାଗମାନଙ୍କଠାରୁ ସ୍ୱତନ୍ତ୍ର ଓ ସମ୍ମାନସ୍ପଦ ଥିଲା । ଶରୀର ଦାୟୀତ୍ୱ ନେଉଥିବା ଡାକ୍ତର ଓ ମାନସିକ ବୃଦ୍ଧିର ଦାୟୀତ୍ୱ ନେଉଥିବା ଶିକ୍ଷକମାନଙ୍କ ସ୍ଥାନ ସମାଜରେ ଉଚ୍ଚ ସ୍ଥାନରେ ରହିଥିଲା । ଏବେ ବିଦେଶୀ ଢଙ୍ଗର ପ୍ରବାହରେ ଦେଶର ସାମାଜିକ ଶୃଙ୍ଖଳା ଭାଙ୍ଗି ପଡ଼ିବା ସଙ୍ଗେ ସଙ୍ଗେ ପୁରାତନ ନୀତି ନିୟମ ସବୁ ଚାଲୁ ରଖାଯିବା ସମ୍ଭବ ହେଉନାହିଁ । ସବୁ ବିଭାଗରେ ଦୁର୍ନୀତି, ନୀତିରେ ପରିଣତ ହୋଇଛି । ସରକାରୀ ଡାକ୍ତରଖାନାମାନଙ୍କ କାନ୍ଥରେ ଲେଖାଯାଇଥିବା 'ଉତ୍କୋଚ ଗ୍ରହଣ ଦଣ୍ଡନୀୟ' ଏବେ ଅକାମି ହୋଇପଡ଼ିଛି । ମାନବିକତାର ଯେତିକି ଚିତ୍କାର ଶୁଭୁଛି ସେତିକି ପାଶବିକତା ବଢୁଚି । ଅସହାୟ ରୋଗୀ ଚିତ୍କାର କରି ଚାଲିଥିଲେ ମଧ କର୍ମଚାରୀ ପଇସା ନ ପାଇଲେ ତା' ପାଖକୁ ପରିଶ୍ରା ନଳୀଟା ବଢ଼ାଇ ହେଉନାହିଁ । ବର୍ତ୍ତମାନ ଗଣତନ୍ତ୍ର ଭୋଟ ଯୁଗରେ କର୍ମଚାରୀଙ୍କ ଇଉନିଅନ ଓ ସଂଘମାନଙ୍କ ରାଜନୈତିକ ଘଣ୍ଟ ଘୋଡ଼ିଆରେ ଦୁର୍ନୀତିକୁ ରୋକିବା ଅସମ୍ଭବ ହୋଇପଡୁଛି । କର୍ତ୍ତବ୍ୟ, ଜ୍ଞାନ, ଦୟା, ଦଣ୍ଡ, ଭୟ ସବୁ ଲୋପ ପାଇବାକୁ ବସିଛି । ତଳିଆ କର୍ମଚାରୀ ଓ ଡାକ୍ତରମାନଙ୍କ କାର୍ଯ୍ୟରେ ଯେଉଁ ସମନ୍ୱୟ ଓ ଘନିଷ୍ଠତା ଥିଲା ତା' ଆଉ ନାହିଁ । କର୍ମଚାରୀମାନେ ତାଙ୍କ କର୍ତ୍ତବ୍ୟରେ ହେଳା କରୁନଥିଲେ । ବିପଦଆପଦ ସମୟରେ ବିଭାଗୀୟ ମୁଖ୍ୟମାନେ ସେମାନଙ୍କୁ ଅକାତରରେ ସାହାଯ୍ୟ କରୁଥିଲେ । ଥରେ ଜଣେ କର୍ମଚାରୀର ଘର ପୋଡ଼ିଗଲା, ସେ କରଜ ପାଇଁ ବିଭାଗୀୟ ମୁଖ୍ୟଙ୍କ ଦ୍ୱାରସ୍ଥ ହେଲା । ସେ ସଙ୍ଗେ ସଙ୍ଗେ ତାଙ୍କୁ ଦରକାର ଅନୁଯାୟୀ କିଛି ଟଙ୍କା ଦେଲେ । ସେ ଆସ୍ତେ ଆସ୍ତେ କରି ତାହା ଶୁଝିବେ ବୋଲି କହିଥିଲା । ସେ ମାସର ଦରମା ପାଇବା ପରେ ସେ କିଛି ଟଙ୍କା ଆଣି ପ୍ରଫେସରଙ୍କ ନିକଟରେ ଥୋଇବାରୁ ପ୍ରଫେସର ରାଗିକରି କହିଲେ "ତୋ ପିଲାଙ୍କ ପେଟରୁ କାଟି କରଜ ଶୁଝିବାକୁ ଆସିଛୁ ? ତୁ ମୋତେ ଚିହ୍ନିନୁ, ତୋ ବ୍ୟବହାର ଓ ସାଧୁତା ଯୋଗୁ ତୋର ସବୁ କରଜ ଶୁଝି ଯାଇଛି । ଟଙ୍କା ଫେରାଇ ନେ ।

**ମେଡ଼ିକାଲ କର୍ମଚାରୀ ହାଥୀ :**

ଭାରତ ସ୍ୱାଧୀନ ହେବାର ୧୨, ୧୪ ବର୍ଷ ପରର ଗୋଟିଏ ଘଟଣା ମନେ ପଡୁଛି । ସେ ସମୟରେ ରୋଗୀ ରହୁଥିବା ୱାର୍ଡ଼ମାନଙ୍କରେ ସେବାକାରୀମାନଙ୍କ ଦୁର୍ନୀତିପୂର୍ଣ୍ଣ

ରୋଜଗାର ପନ୍ଥା ଢ଼ଙ୍କ ମେଲାଉଥାଏ । ପାଥୋଲଜି ବିଭାଗର ୩ୟ ୪ର୍ଥ ଶ୍ରେଣୀ କର୍ମଚାରୀମାନଙ୍କର ରୋଗୀମାନଙ୍କ ସଙ୍ଗେ ସିଧାସଳଖ ସମ୍ପର୍କ ନ ଥିବାରୁ ସେପରି ରୋଜଗାର ସୁବିଧା ନ ଥାଏ । ସେହି ସମୟରେ ହାଥୀ ନାମକ ଏକ ଅଣ୍ଟ ଉଚର ସାଧାରଣ ସ୍ୱାସ୍ଥ୍ୟର ୪ର୍ଥ ଶ୍ରେଣୀ ଯୁବ କର୍ମଚାରୀଟିଏ ରୋଗୀଥିବା ୱାର୍ଡ଼ ପ୍ରତି ଆକୃଷ୍ଟ ହୋଇ ସେଠାକୁ ବଦଳି ହୋଇଯିବା ପାଇଁ ଏକ ଅଭିନବ ପନ୍ଥା ଗ୍ରହଣ କଲା ।

ଦିନେ ଆମ ପାଥୋଲଜି ପ୍ରାକ୍ଟିକାଲ ହଲ୍‌ରେ ପିଲାଙ୍କ ପରୀକ୍ଷା ଚାଲିଥିବା ବେଳେ, ବମ୍ବେର ଜଣେ ପରୀକ୍ଷକ, ଆମ ପ୍ରଫେସର ଓ ଆମେ କେତେକ ଶିକ୍ଷକ ସେଠାରେ ଉପସ୍ଥିତ ଥିଲୁ । ହାଥୀ ନିର୍ବିକାର ଭାବେ ସେ ହଲ୍ ଭିତରକୁ ପଶିଆସି ପିଲାଙ୍କ ସାମନାରେ ପରୀକ୍ଷା ପାଇଁ ଥୁଆ ହୋଇଥିବା ଆଲକହଲ ସବୁ ସେଠାରେ କାଚ ପାତ୍ରରେ ଢ଼ାଳି ଢକ୍ ଢକ୍ କରି ପିଇବାକୁ ଲାଗିଲା । ପ୍ରଫେସର ତାହା ଦେଖି ସେ ହଲ୍‌ର ତତ୍ତ୍ୱାବଧାରକ ମୋଟା ଓ ବୟସ୍କ ଶଶି ବାବୁଙ୍କ ଆଡ଼କୁ ହାତଠାରି ହାଥୀକୁ ହଲରୁ ବାହାରକୁ ଘେନି ଯିବା ପାଇଁ ନିର୍ଦ୍ଦେଶ ଦେଲେ । ଶଶିବାବୁ ହାଥୀର ହାତଧରି ତାକୁ ବାରଣ୍ଡାକୁ ନେବାକୁ ଚେଷ୍ଟା କଲାକ୍ଷଣି ତାକୁ ସେ ଏପରି ଏକ ଧକ୍କା ମାଇଲା ଯେ ତତ୍ତ୍ୱାବଧାରକ ସେ ବାରଣ୍ଡାରେ ଫୁଟବଲ ପରି ଗଡ଼ିବାକୁ ଲାଗିଲେ । ତା'ପରେ ହାଥୀ ଉଗ୍ରମୂର୍ତ୍ତି ଧରି ବାରଣ୍ଡାରେ ଥିବା ଶିକ୍ଷକମାନଙ୍କ ସାଇକେଲ ସବୁ ଟେକି ପିଣ୍ଡାତଳକୁ ଫିଙ୍ଗିବାକୁ ଲାଗିଲା । ସେ ଗହଳ ଶୁଣି ସେ ବିଭାଗର କର୍ମଚାରୀମାନେ ଜମା ହୋଇଯିବାରୁ ହାଥୀ କାନ୍ଥା ଉପରେ ପିନ୍ଧିଥିବା ଲୁଗାକୁ ଫିଙ୍ଗି ଦେଇ ଅଣ୍ଟାରୁ ଛୁରିଟିଏ କାଢ଼ି ହାତରେ ବୁଲାଇ ବୁଲାଇ ତାଣ୍ଡବ ନୃତ୍ୟ କରିବାକୁ ଲାଗିଲା । ଆମ ବିଭାଗର ଜଣେ ଅଟୋଟ ସାହସୀ ଲାବ୍‌ରେଟୋରୀ ଆସିଷ୍ଟାଣ୍ଟ ଶ୍ରୀ ଶଚୀନ ଅଧିକାରୀ ତାକୁ ପଛରୁ ଧରିନେଇ କାବୁ କରି ପକାଇଲେ । ତା'ଠାରୁ ଛୁରୀ ଛଡ଼ାଇ ନିଆଯାଇ ପ୍ରିନ୍‌ସିପାଲଙ୍କୁ ଖବର ଦିଆଗଲା । ପୋଲିସ ଆସି ତାକୁ ମାତାଲ ସାବ୍ୟସ୍ତ କରି ଥାନାକୁ ଘେନିଗଲେ । ସେ ହାଜତରେ ରହିଲା ଏବଂ କଲେଜ କର୍ତ୍ତୃପକ୍ଷ ତାକୁ ସସ୍‌ପେଣ୍ଡ କରିବା ପରେ କେତେମାସ ପର୍ଯ୍ୟନ୍ତ ତାକୁ ଆମେ ଦେଖି ନ ଥିଲୁ ।

ହଠାତ୍ ଦିନେ ସେ ଗୋଟିଏ ନୂଆ ସାଇକେଲରେ ଚଢ଼ି ହାତର ନୂଆ ଘଡ଼ିଟାକୁ ଦେଖାଇ ଦେଖାଇ ଆମ ପାଥୋଲଜି କୋଠା ଚାରିପଟେ ସାଇକଲ ଘଣ୍ଟି ବଜାଇ ବୁଲିବାକୁ ଲାଗିଲା । ତାକୁ ଦେଖି ଆମ ବିଭାଗରେ ଜଣେ ଦୁଇଜଣ ଲୋକ କୌତୁହଳ ବଶତଃ ତା' ନିକଟକୁ ଗଲେ । ସେମାନଙ୍କୁ ଦେଖି ଆମ ବିଭାଗୀୟ କର୍ତ୍ତୃପକ୍ଷଙ୍କ ଉଦ୍ଦେଶ୍ୟରେ ଗାଳି ବର୍ଷଣ କରୁ କରୁ ସେ କହିଲା "ତୁମେ ସବୁ ମୋର କଅଣ କରି ପକାଇଲ । ଆମ ୟୁନିଅନ ସଭାପତି ବାହାର ଲୋକ ହେଲେ ମଧ ଆମେ କ'ଣ ମିଛରେ ତାକୁ ଆମ ଦରମାରୁ କିଛି ଦେଇ ରଖିଛୁ । ତାଙ୍କ ଯୋଗୁଁ ମୁଁ ମୋର ସସପେଣ୍ଡ ସମୟର

ସବୁ ଦରମା ଏକାଠି ପାଇ ଏ ସାଇକେଲ ଓ ଘଣ୍ଟା ପ୍ରଭୃତି କିଣିଛି । ବର୍ତ୍ତମାନ ମୁଁ ମେଡ଼ିସିନ ବିଭାଗକୁ ବଦଳି ହୋଇ ୱାଡ଼ରୁ ବେଶ ଦୁଇ ପଇସା ଅଧିକା ରୋଜଗାର କରୁଛି ।'' ଅବଶ୍ୟ ତା'ର ଯୋଜନା କାର୍ଯ୍ୟକାରୀ ହେଲେ ମଧ ଅତ୍ୟଧିକ ମଦ୍ୟପାନ ଯୋଗୁ କିଛିଦିନ ପରେ ସେ ତା' କାର୍ଯ୍ୟ କରିନପାରି ସୁବିଧାରେ ପଇସା ରୋଜଗାର ପାଇଁ ସେ ଚୋରା ଗଞ୍ଜେଇ ପ୍ରଭୃତି କାରବାରରେ ଲିପ୍ତ ହୋଇଥିବାର ଆମେ ଖବର ପାଇଲୁ । ସ୍ୱାଧୀନତା ପରେ ହରିଜନମାନଙ୍କ ଶିକ୍ଷାର ଉନ୍ନତି ଓ ଦାୟିତ୍ୱପୂର୍ଣ୍ଣ ଜୀବନ ଧାରଣ ନୀତି ଶିକ୍ଷା ଉପରେ ଜୋର ନ ଦେଇ ହଠାତ୍ ସେମାନଙ୍କ ଆର୍ଥିକ ଉନ୍ନତି ପାଇଁ ନେତାମାନେ ଭୋଟ ପ୍ରାପ୍ତି ପାଇଁ ସେମାନଙ୍କୁ ପ୍ରଲୋଭନ ଦେଖାଇବା ଦ୍ୱାରା ସେମାନଙ୍କର ଅବନତି ଘଟିବାରେ ଲାଗିଛି ଓ ସେମାନେ ସାମାଜିକ ସଂଘର୍ଷର ସମ୍ମୁଖୀନ ହେଉଛନ୍ତି ।

**ବିପନ୍ନ ଜୁଲିଆ :**

ଆମ ବିଭାଗର ୪ର୍ଥ ଶ୍ରେଣୀ କର୍ମଚାରୀ ଜୁଲିଆ ଏକ ପାଞ୍ଚ ହାତିଆ ମଣିଷ । ବଡ଼ ଅନୁଗତ ଓ ପରିଶ୍ରମୀ । ସେ କାହାର କଥାକୁ ତଳେ ପକାଇଦିଏ ନାହିଁ । ହସ ହସ ମୁହଁ । ଜୁଲିଆର ଏକ ରୋଜଗାରୀ ସଂସାର । ଦୁଇ ପୁଅ, ସ୍ତ୍ରୀ ଓ ବୋହୂ ସମସ୍ତେ ବେଶ୍ କିଛି ରୋଜଗାର କରନ୍ତି । ମେଡ଼ିକାଲ କଲେଜ କାମ ସଙ୍ଗେ ମ୍ୟୁନିସିପାଲିଟି କାମ ପ୍ରଭୃତିରୁ ୧୯୭୫-୭୬ ମସିହାରେ ମଧ ତା' ଘରକୁ ତିନି ଚାରି ହଜାରରୁ ବେଶୀ ଟଙ୍କା ଆସେ । ସେମାନେ ସମସ୍ତେ ଜୁଲିଆର ସରକାରୀ କ୍ୱାଟରରେ ଏକାଠି ରହନ୍ତି ।

ବାହାରକୁ ତା ପରିବାରଟି ଏକ ସ୍ୱଚ୍ଛଳ ପରିବାର ପରି ମନେ ହେଉଥାଏ । ସେମାନଙ୍କ ପୋଷାକପତ୍ର ଓ ସିନେମା ଦେଖା ପ୍ରଭୃତି ଢ଼ଙ୍ଗରୁ ସେମାନଙ୍କର ଅଭାବ ଥିଲାପରି ମନେହୁଏ ନାହିଁ, କିନ୍ତୁ ମାସର ଦ୍ୱିତୀୟ ତୃତୀୟ ସପ୍ତାହ ବେଳକୁ ଜୁଲିଆ ଚାରି ପାଞ୍ଚ ଟଙ୍କା ପାଇଁ ଅଫିସବାବୁ ଓ ଲାବ୍‌ରେଟୋରୀ ଟେକନିସିଆନମାନଙ୍କ ନିକଟରେ ହାତ ପତାଏ । ସେମାନେ ମାସକୁ ମାତ୍ର କେତେ ଶହ ଟଙ୍କା ଦରମା ପାଆନ୍ତି, ସେଥିରେ ସେମାନେ ଘର ଭଡ଼ା ଦିଅନ୍ତି, ପିଲାଙ୍କୁ ପାଠ ପଢ଼ାନ୍ତି ଓ ଘର ଚଳାନ୍ତି । ତେଣୁ ଜୁଲିଆ ପରିବାର ଏତେ ଗୁଡ଼ିଏ ଟଙ୍କା ପାଉଥିଲେ ମଧ ତାକୁ କାହିଁକି ଅଣ୍ଟୁନାହିଁ ବୋଲି ବୁଝିବାରେ ନିଶା ଓ ମଉଜ ମଜଲିସ୍ ତା'ର ପ୍ରଧାନ କାରଣ ବୋଲି ଜାଣିବାକୁ ପାଇଲି । ଜୁଲିଆ ଗୋଟିଏ ସଉକିଆ ମେହେନ୍ତର ଦଳର ସଦସ୍ୟ । ସେ ସଦସ୍ୟମାନେ ଦରମା ପାଇବାପରେ ଜଣ ଜଣ କରି ଦିନେ ଦିନେ ମଉଜିଆ ଖର୍ଚ୍ଚ ଚଳାନ୍ତି । ମଉଜ ପାଇଁ ଗୋଟିଏ ଘୁଷୁରୀ, ଭୋଜି ସାମଗ୍ରୀ ଓ ପ୍ରଚୁର ମଦ୍ୟ କିଣାଯାଏ । ମଉଜ ପାଇଁ ଟଙ୍କା ଦେଇସାରି ଜୁଲିଆ ପ୍ରତି ମାସରେ ସେଥିରୁ ବଳକା କିଛି ଟଙ୍କା ଘର ଖର୍ଚ୍ଚ ବାବଦକୁ ଦିଏ ।

ଦିନେ କୁଲିଆ କାନ୍ଦି କାନ୍ଦି ଆସି ମୋ ଗୋଡ଼ ଧରି ପକାଇ କହିଲା - ''ସାର୍ ଡ଼ିପାର୍ଟମେଣ୍ଟ ମୋଟର ଗ୍ୟାରେଜରୁ ଗୋଟିକରେ ରହିବା ପାଇଁ ମୋତେ ଦିଅନ୍ତୁ । ମୋର ରହିବା ପାଇଁ ଆଉ ସ୍ଥାନ ନାହିଁ ।'' ମୁଁ ତା' ଦୁଃଖର କାରଣ ବୁଝି ଜାଣିଲି, ସେ ମାସକର ତା'ର ସମସ୍ତ ଟଙ୍କା ସେ ପିଆପିଇରେ ଖର୍ଚ୍ଚ କରି ଘର ଖର୍ଚ୍ଚ ପାଇଁ କିଛି ଟଙ୍କା ସ୍ତ୍ରୀକୁ ଦେଇ ନ ଥିଲା । ସେହିଯୋଗୁଁ ସେ'ଦିନ ତା' ଘରଟି ଏକ ଯୁଦ୍ଧ କ୍ଷେତ୍ରରେ ପରିଣତ ହୋଇ ଯାଇଥିଲା । ତା'ର ଭାର୍ଯ୍ୟା କାଳୀକା ମୂର୍ତ୍ତି ଧରି, କୁଲିଆକୁ କାବୁକରି ମାଡ଼ି ବସିବାକୁ ବଡ଼ ପୁଅକୁ ନିର୍ଦ୍ଦେଶ ଦେଲା । ସାନପୁଅ ସେଥିରେ ଉତ୍ସାହିତ ହୋଇ କୁଲିଆ ଉପରେ ଚଟି ପ୍ରହାର କଲା । ଘରର ସମସ୍ତେ କୁଲିଆକୁ ଠେଲି ଠେଲି ନେଇ ଘରୁ ବାହାର କରି ଦେଇଥିଲେ ।

ସରକାରଙ୍କ ଭ୍ରମାତ୍ମକ ନୀତିରୁ ହରିଜନମାନେ ଦାୟୀତ୍ୱବାନ ଜୀବନ ଧାରଣ ନୀତି ଅନୁସରଣ ନ କରି ଉପଯୁକ୍ତ ଶିକ୍ଷା ଅଭାବରୁ ସେମାନଙ୍କର ସାମାଜିକ ଅବନତି ଘଟି ଚାଲିଛି ।

### ବ୍ରହ୍ମପୁର ମେଡ଼ିକାଲ କଲେଜରେ ଯୋଗଦାନ :

ମହାଭାରତ ଯୁଦ୍ଧରେ ଅଭିମନ୍ୟୁ ଏକାକୀ ଶତ୍ରୁ ବ୍ୟୁହରେ ପଶିଗଲା ଭଳି ନିଦାନ ବିଭାଗ ମୁଖ୍ୟ ରୂପେ ବ୍ରହ୍ମପୁର ବଦଳି ହୋଇ ଆସି ମୋତେ ସେହିପରି ଲାଗିଲା । ସେ ବିଭାଗରେ ମୋର ଛାତ୍ର ଶ୍ରେଣୀୟ ଦୁଇଜଣ ସହକାରୀ ପ୍ରଫେସର ମୋର ନିଯୁକ୍ତି ନ ହେଲେ ସେମାନଙ୍କ ଭିତରୁ ଜଣେ ପ୍ରଫେସର ହେବ ବୋଲି ଟାକି ବସିଥିଲେ । ଡାଇରେକ୍ଟର ଆଉ ଏମ.ସି ସଦସ୍ୟ ଥାଇ ମୋ ନିଯୁକ୍ତିର ବିରୋଧ କରୁଥିବାରୁ ସେ କଲେଜର ତାଙ୍କ ଅନୁଗତ କର୍ମକର୍ତ୍ତାମାନେ ସେଠାରେ ମୋର ସ୍ଥିତିକୁ ସହ୍ୟ କରିବା ସମ୍ଭବ ନ ଥିଲା ।

ସେ ବିଭାଗରେ ଆଗରୁ କେହି ପ୍ରଫେସର ନିଯୁକ୍ତ ହୋଇ ନ ଥିବାରୁ କର୍ମଚାରୀମାନଙ୍କ ମଧ୍ୟରେ ଅରାଜକତା ବିରାଜମାନ କରୁଥିଲା । ଆମ ବିଭାଗଟି ସିଟି-ହସପିଟାଲର ପୁରୁଣା କୋଠାରୁ ସ୍ଥାନାନ୍ତରୀତ ହୋଇ ନୂଆ କଲେଜ କୋଠାକୁ ଆସିଥିବାରୁ ବହୁ ଜିନିଷରେ ହେରଫେର ହୋଇଥିଲା । ସେ ବିଭାଗର ଘରଗୁଡ଼ିକର କାମ ସରି ନଥିବାରୁ କେତୋଟି ମାତ୍ର କୋଠରୀରେ କାମ ଚଳାଇବାକୁ ପଡୁଥିଲା ।

### ଅଫିସ ପିଅନ ରଙ୍ଗ :

ମୁଁ ସେଠାରେ ଯୋଗ ଦେବା ପରେ ସହରର ବିଶିଷ୍ଟ ଲୋକମାନେ ମୋ ଅଫିସ ସମ୍ପର୍କରେ ଆସୁଥିଲେ । ଦିନେ ସେପରି କେତେକ ଲୋକଙ୍କ ପାଇଁ ଚା' ଆଣିଦେବାକୁ

ରଙ୍କୁ ଆଦେଶ ଦେଲି । ମୁଁ ବହୁ ସମୟ ଅପେକ୍ଷା କଲେ ମଧ ଚା' ନ ଆସିବାରୁ ସେମାନେ ତାଙ୍କ କାର୍ଯ୍ୟରେ ଚାଲିଗଲେ । ମୁଁ ରଙ୍କକୁ ଡକାଇ ପଚାରିଲି ଚା ଦୋକାନୀ କ'ଣ ଆଗୁଆ ପଇସା ନ ପାଇ ଚାହା ଦେଲା ନାହିଁ ? ତୁମେ ଆସି ମୋ ଠାରୁ ପଇସା ନେଇଗଲ ନାହିଁ ? ରଙ୍କ କହିଲା- ''ଆଜ୍ଞା ମୁଁ ଆପଣଙ୍କର ପରସନାଲ ପିଅନ ନୁହେଁ, ମୁଁ ଅଫିସ ପିଅନ, ମୋର ଏ କାମ ନୁହେଁ, ତେଣୁ ମୁଁ ଚା' ଆଣିବାକୁ ଯାଇନାହିଁ । ଆପଣଙ୍କ ନିଜ କାମ କରିବାକୁ ପିଅନ ଦରକାର ଥିଲେ ଆପଣ କର୍ତ୍ତୃପକ୍ଷଙ୍କୁ ଜଣାନ୍ତୁ ।'' ମୁଁ ହସିକରି କହିଲି ମୋର ଭୁଲ ହୋଇଗଲା, ହଉ ତୁମେ ମୋ ଅଫିସ ଦୁଆର ପୋନ ନିକଟରେ ବସି ରହି ଅଫିସ କାମରେ ଦରକାର ହେଲେ ମୁଁ କଲିଙ୍ଗ ବେଲ ବଜାଇବା କ୍ଷଣି ମୋ ନିକଟକୁ ଆସି ଅଫିସ ଆଦେଶ ପାଳନ କରିବ ।

ରଙ୍କ କଲେଜର ୪ର୍ଥ ଶ୍ରେଣୀ କର୍ମଚାରୀ ସଂଘର ସମ୍ପାଦକ । ସେ ବରାବର କଲେଜ ସାରା ବୁଲି ବୁଲି ୪ର୍ଥ ଶ୍ରେଣୀ କର୍ମଚାରୀଙ୍କ ଅଭିଯୋଗ ସଂଗ୍ରହ କରିବାରେ ବ୍ୟସ୍ତ ଥାଏ । ଗୋଟିଏ ସ୍ଥାନରେ ବସି ରହିବା ତା' ପକ୍ଷରେ ଅସୁବିଧା ଥିଲା । ମୁଁ ମଧ ତା' ଉପରେ ଲକ୍ଷ୍ୟ ରଖି ଅଫିସ କାମରେ ପଠାପଠି କରି ଶୀଘ୍ର ଫେରି ଆସିବାକୁ ନିର୍ଦ୍ଦେଶ ଦେବାରେ ଲାଗିଲି । ରଙ୍କ ମୋ ଉପରେ ରକ୍ତ ଚାଉଳ ଚୋବାଇ ମୁହଁ ଫଁ ଫଁ କରି ରହିଥାଏ ।

ମୁଁ ଶୁଣିଲି ମୁଁ ସେଠାରେ ଦାୟିତ୍ୱ ନେବା ପୂର୍ବରୁ ମୋ ବିଭାଗର କେତେକ ଅଫିସର ୪ର୍ଥ ଶ୍ରେଣୀ କର୍ମଚାରୀମାନଙ୍କୁ ନିଜର ବ୍ୟକ୍ତିଗତ କାର୍ଯ୍ୟରେ ଲଗାଇ କାହାକୁ ସଉଦା ଓ ଅଣ୍ଡା ପାଇଁ, କାହାକୁ ନିଜ ପିଲାଙ୍କୁ ସ୍କୁଲକୁ ନେବାକୁ ଓ ଘର କାମ କରିବାକୁ ଅଫିସ ସମୟରେ ନିର୍ଦ୍ଦେଶ ଦେବାରେ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କ ମଧରେ ଗୁଞ୍ଜରଣ ସୃଷ୍ଟି ହୋଇ ସେମାନେ ୟୁନିଅନ୍ ଗଢ଼ି ଅଫିସରଙ୍କ ବ୍ୟକ୍ତିଗତ କାର୍ଯ୍ୟ କରିବା ବାରଣ କରିଦେଇଥିଲେ ।

ରଙ୍କ ଥରେ ମୋ ନିକଟକୁ ଆସି ଆମ ଅଫିସବାବୁ ତା'ର ଔଷଧ ବିଲ୍ ସବୁ ପ୍ରିନସିପାଲଙ୍କ ଅଫିସକୁ ନ ପଠାଇ ଆମ ଅଫିସରେ ଅଟକାଇ ରଖିଥିବାରୁ ସେ ଟଙ୍କା ପାଇପାରୁ ନାହିଁ ବୋଲି ଅଭିଯୋଗ କଲା । ତାହା ଶୁଣି ମୁଁ କହିଲି ସେ ସବୁ ଅଫିସିଆଲ କାର୍ଯ୍ୟ । ତୁମର ଅସୁବିଧା ହେଉଥିଲେ ତୁମେ ମୋ ଅନୁମତି ନେଇ ଏ ଅଫିସ ବିରୁଦ୍ଧରେ କର୍ତ୍ତୃପକ୍ଷଙ୍କ ନିକଟରେ ଦରଖାସ୍ତ କରିପାର ।

ମୁଁ ରଙ୍କକୁ ସେପରି କହିଲେ ମଧ ରଙ୍କର ସ୍ତ୍ରୀ ବେମାର ହୋଇ ହସପିଟାଲରେ ପଡ଼ିଛି ଓ ସେଥିପାଇଁ ତା'ର ଔଷଧ ବିଲ ଟଙ୍କା ପାଇବା ଦରକାର ଶୁଣି ମୁଁ ତା' ପ୍ରତି ସଂବେଦନଶୀଳ ହୋଇ ତା' ସ୍ତ୍ରୀର ଅବସ୍ଥା ଦେଖିବାକୁ ହସପିଟାଲକୁ ଗଲି । ସେଠାରେ ତା'ର ଚିକିତ୍ସା କିପରି ଭଲ ହେବ ଓ ଔଷଧ ପାଇଁ ଟଙ୍କା ଦରକାର ଥିଲେ ମୋ' ଠାରୁ

ଘେନିଯିବାକୁ ବ୍ୟବସ୍ଥା କଲି । ରଙ୍କର ଚାକିରି ଅଳ୍ପ ଦିନର, ତା'ର ସ୍ୱଭାବ ଚରିତ୍ର ମଧ ଖରାପ ନୁହଁ, ସେ ୟୁନିଅନ ଆଦେଶ ପାଳନ କରି ମୋତେ ସେପରି କହିଥିଲା ।

ରଙ୍କ ତା' ସ୍ତ୍ରୀ ବେଡ଼ ନିକଟରୁ ମୋ ପଛେ ପଛେ ଆଖି ଛଳ ଛଳ କରି ପାଛୋଟି ନେବାକୁ ଆସିଲା । ମୁଁ ତାକୁ କହିଲି- ମୁଁ ଅଫିସିଆଲ ଡିଉଟିରେ ତୁମ ସ୍ତ୍ରୀକୁ ଦେଖିବାକୁ ଆସିନାହିଁ । ଜଣେ କର୍ମଚାରୀ କେବଳ ଅଫିସ ଲୋକ ନୁହେଁ, ସେ ମଧ ଏକ ସାମାଜିକ ବ୍ୟକ୍ତି, ତେଣୁ ଆମ୍ଭମାନଙ୍କର ପ୍ରତ୍ୟେକର ପ୍ରତ୍ୟେକ ପ୍ରତି ସାମାଜିକ କର୍ତ୍ତବ୍ୟ ମଧ ରହିଛି । ତୁମ ସ୍ତ୍ରୀ କିପରି ଶୀଘ୍ର ଆରୋଗ୍ୟ ହେବ ତାହା ମଧ ଦେଖିବା ମୋର କର୍ତ୍ତବ୍ୟ । ତୁମର ସ୍ତ୍ରୀଙ୍କ ଚିକିତ୍ସା ପାଇଁ ଯାହା ଯେତେବେଳେ ଦରକାର ହେବ ତୁମେ ମୋତେ ବିମ୍ୱା ଆମ ଘରକୁ ଯାଇ ମାଆକୁ କହିଲେ ଆମେ ତୁମକୁ ଯଥାସାଧ ସାହାଯ୍ୟ କରିବୁ ।

ରଙ୍କ ଅଫିସ ଚାବି ମୋ ବସାକୁ ନିଆଅଣା କରେ । ଆମ ଘରର ବ୍ୟବହାରରେ ତାର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଲା । ସେ ଆମ ପରିବାରର ଜଣେ ସଦସ୍ୟ ହୋଇଗଲା । ମୋ ପ୍ରତି ତା'ର ବିଶ୍ୱସ୍ତତା ଏତେ ବଢ଼ି ଯାଇଥିଲା ଯେ ତାକୁ ଅନ୍ୟମାନେ ପ୍ରଫେସରଙ୍କ ଜଗୁଆଳ ଆଲସେସିଆନ ଡଗ ନାମ ଦେଇଥିଲେ ।

**କାନ୍ଦୁରା ଲକ୍ଷ୍ମଣ :**

ଗୋଟିଏ ବିଭାଗରେ ନାନା ପ୍ରକାର ଲୋକ ଥାଆନ୍ତି । ସୁଇପର ଲକ୍ଷ୍ମଣର କାନ୍ଦ କାନ୍ଦ ମୁହଁ ଦେଖି ମୁଁ ତାକୁ ଏକ ସାଧୁ ଓ ନିରୀହ ଲୋକ ବୋଲି ଭାବିଥିଲି, କିନ୍ତୁ ଅନ୍ୟ ଲୋକଙ୍କୁ ଚାକିରି ଦିଆଇ ଦବ କହି ଟଙ୍କା ନେଇ ଠକିବାକୁ ସେ ଏକ ବ୍ୟବସାୟରେ ପରିଣତ କରିଥିଲା ।

କେତେଦିନ ଧରି ମୋ ଅଫିସ୍ ଝରକା ଆରପଟେ ବୁଲୁଥିବା ଗୋଟିଏ ମଫସଲି ଲୋକକୁ ଦେଖି ମୁଁ ଅଫିସକୁ ଡକାଇଲି । ସେ ମହୁରୀଗଡ଼ ଆଦିବାସୀ ଅଞ୍ଚଳର ଗୋଟିଏ ପାଣ, ତାକୁ ବସଷ୍ଟାଣ୍ଡରେ ଦେଖି ଲକ୍ଷ୍ମଣ ତା' ସହିତ ମୈତ୍ର ବସି ମୋତେ କହି ଆମ ବିଭାଗରେ ତା'ର ଚାକିରିଟିଏ କରିଦେବ ବୋଲି କହିବାରୁ ସେ ତା'ର ସମ୍ପତ୍ତି ସବୁ ବିକି ଲକ୍ଷ୍ମଣକୁ ଦେବାରେ ଲାଗିଛି, କିନ୍ତୁ ମୋ ସଙ୍ଗେ ସାକ୍ଷାତ କରାଇ ନ ଦେବାରୁ ସେ ମୋ ସାକ୍ଷାତ ପାଇଁ ଝରକା ଆର ପଟେ ବୁଲୁଥିଲା । ମୁଁ ଲକ୍ଷ୍ମଣକୁ ଡାକି ପଚାରିବାରେ ସେ କହିଲା ହଁ ସେ ମୋ ସଙ୍ଗେ ମୈତ୍ର ବସିଛି, ତା' ସଙ୍ଗେ ମୋର ଦିଆ ନିଆ ଚାଲେ. ଚାକିରି କଥା କି ଆପଣଙ୍କ କଥା ମୁଁ ତାକୁ କିଛି କହିନାହିଁ । ମୁଁ ଲକ୍ଷ୍ମଣକୁ ପଚାରିଲି ତୁ ତାକୁ କେବେ କଅଣ ଦେଇଛୁ ? ସେଥିରେ ସେ ନିରବ ରହିବାରୁ ମୈତ୍ର ଟଙ୍କାତକ ଶୀଘ୍ର ତାକୁ ଫେରାଇଦେବାକୁ ନିର୍ଦ୍ଦେଶ ଦେଇ ମୁଁ ଦୁହିଁଙ୍କୁ ବିଦା କରିଦେଲି ।

## ଆଦିବାସୀ ଷ୍ଟୋରକିପର (ଭଣ୍ଡାର ରକ୍ଷକ):

ସରକାରଙ୍କ ହରିଜନ ଆଦିବାସୀ ସଂରକ୍ଷଣ ନୀତିରୁ ଯୋଗ୍ୟତା ପ୍ରତି ଦୃଷ୍ଟି ଦିଆ ନ ଯାଇ ନିଯୁକ୍ତି ଯୋଗୁଁ କି ବିଭ୍ରାଟ ଘଟେ ତା'ର ଏକ ଉଦାହରଣ । ଶ୍ରୀ ରାଉଳ ମୋ ବିଭାଗର 'ଷ୍ଟୋର କିପର' ଭାବରେ ନିଯୁକ୍ତ ଥିଲେ । ସେ କିପରି ବି.ଏ. ସାର୍ଟିଫିକେଟ ହାସଲ କରିଥିଲେ ତାହା ତାଙ୍କୁ ଜଣା, କିନ୍ତୁ ସାଧାରଣ ହିସାବ ପତ୍ରରେ ମଧ ସେ ପାରଙ୍ଗମ ନ ଥିଲେ । ପ୍ରତିବର୍ଷ ପ୍ରତି ବିଭାଗକୁ ମିସେଲେନିଅସ ପଦାର୍ଥ ଭାବରେ ସାବୁନ, ସୋଡ଼ା, ତଉଲିଆ, ଫିନାଇଲ ପ୍ରଭୃତି ପରି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସବୁ କଣ୍ଟ୍ରାକ୍ଟରଙ୍କ ଦ୍ୱାରା ଯୋଗାଇ ଦିଆଯାଇଥାଏ ଓ ତା'ର ହିସାବ ଷ୍ଟୋର କିପର ରଖନ୍ତି । ବଳକା ପଦାର୍ଥ ଥିଲେ ତାହା ବିଭାଗରେ ବାଣ୍ଟିଦିଆଯାଏ କିମ୍ବା କଣ୍ଟ୍ରାକ୍ଟରକୁ ଜଣାଇ କମ୍ ଦ୍ରବ୍ୟ ରଖାଯାଏ । ଆମ ଷ୍ଟୋରକିପରଙ୍କ ହିସାବରେ ଖର୍ଚ୍ଚ ସବୁ ମୁଣ୍ଡାମୁଣ୍ଡି ହୋଇଗଲା । କିନ୍ତୁ ଷ୍ଟୋରରେ ଗୁଡ଼ିଏ ଜିନିଷ ବଳି ପଡ଼ିଲା । ସେ ସେହି ଜିନିଷଗୁଡ଼ିକ ପଶୁପାଳନ କର୍ମଚାରୀଙ୍କ ସାହାଯ୍ୟରେ ପଶୁଶାଳାକୁ ନେଇ କଣ୍ଟ୍ରାକ୍ଟରଙ୍କୁ ସାକ୍ଷାତ କରି ସେସବୁ ଘେନିଯାଇ ତାଙ୍କୁ ସେଥିପାଇଁ କିଛି ଦାମ ଦେବାକୁ ଅନୁରୋଧ କଲେ । ସେ କଣ୍ଟ୍ରାକ୍ଟର ଜଣେ ଭଦ୍ରଲୋକ । ସେ ଗୁପ୍ତରେ ମୋତେ ସେକଥା ଜଣାଇବାରୁ ମୁଁ ଷ୍ଟୋରକିପରଙ୍କ ହିସାବ ଯାଞ୍ଚ କରି ସେଥିରେ ଭୁଲ ଥିବାରୁ ବଳକା ଜିନିଷ କୁଆଡ଼େ ଗଲା ବୋଲି ପଚାରିବା ସଙ୍ଗେ ସଙ୍ଗେ ପଶୁଶାଳାରୁ ସେ ଜିନିଷ ସବୁ ଜବତ କରାଇ ନେଲି । 'ଷ୍ଟୋରକିପର' ନିରୀହ ଆଦିବାସୀ ସେ ମୋ ଗୋଡ଼ ତଳେ ପଡ଼ିଯାଇ ସବୁ ମାନିଯାଇ କାଗଜରେ ଲେଖିଦେଲେ । ମୁଁ ସେ କାଗଜ ରଖି ମଧ କର୍ତ୍ତୃପକ୍ଷଙ୍କୁ ଜଣାଇ ଶାସ୍ତିବିଧାନ ନ କରିବାରୁ ଅଧକ୍ଷ ସେ ଖବର ପାଇ ମୋତେ ଡକାଇଲେ ଓ ତା'ର ଦଣ୍ଡ ପାଇଁ ମୁଁ କାହିଁକି ତାଙ୍କୁ ଜଣାଇଲି ନାହିଁ ବୋଲି ପଚାରିଲେ ।

ମୁଁ ତାଙ୍କୁ କହିଲି ମୋର ଯାହା କରିବା କଥା ମୁଁ କରିଛି । ତାର ଏକ ଦରଖାସ୍ତ ଉପରେ ସୁପାରିଶ କରି ଅନ୍ୟ ଚାକିରି ପାଇଁ ପଠାଇଦେଇଛି । ସେ ଶୀଘ୍ର ଚାଲିଯିବ । ସେ ଆଦିବାସୀ ଲୋକ ତା' ଉପରେ କୌଣସି ଦଣ୍ଡବିଧାନ କରାଇଥିଲେ ଆପଣ ଓ ମୁଁ ଦୁହେଁ ବିପଦରେ ପଡ଼ି ସସପେଣ୍ଡ୍ ହୋଇଥାଆନ୍ତେ । ମନ୍ତ୍ରୀ ଆଦିବାସୀ ସଂଘ ଓ ଅନ୍ୟ ନେତାମାନେ ଆମଦ୍ୱାରା ଜବରଦସ୍ତି ଲେଖାଯାଇଛି ବୋଲି ଅଭିଯୋଗ କରି ଓଲଟି ଆଦିବାସୀ ଉପରେ ଅତ୍ୟାଚାର ନାମରେ ଆମକୁ ଦୋଷି କରିଥାଆନ୍ତେ ।

## ବିଭାଗୀୟ ଶୃଙ୍ଖଳା :

ମୋ ବିଭାଗରେ ଶିକ୍ଷକ ଓ ଅଫିସରଙ୍କ ଛଡ଼ା ପଚାଶରୁ ଅଧିକ ୩ୟ, ୪ର୍ଥ ଶ୍ରେଣୀ କର୍ମଚାରୀ ଥାଆନ୍ତି । ୩ୟ ଶ୍ରେଣୀ କର୍ମଚାରୀ ଲାବ୍‌ରେଟୋରୀ ଆସିଷ୍ଟାଣ୍ଟମାନେ

ବି.ଏସ୍.ସି. ପାଶ କରି ବା ଲାବରୋଟରୀ ଟ୍ରେନିଙ୍ଗରେ ତାଲିମ ନେଇ ନୂଆକରି ଯୋଗ ଦେଇଥାଆନ୍ତି । ସେମାନଙ୍କର ପାଠ ନିଶା ଛାଡ଼ି ନ ଥାଏ ଓ ସେମାନେ ସାନ୍ଧ୍ୟ କଲେଜରେ ବା ଘରୋଇ ଭାବରେ ପଢୁଥାଆନ୍ତି । ଅନ୍ୟ ପୁରୁଣା ମେଡ଼ିକାଲ କଲେଜର ଲାବ୍‌ରେଟୋରୀମାନଙ୍କରେ ଲୁଚାଇ କରି ପରୀକ୍ଷା କରାଇ ଲୋକଙ୍କଠାରୁ ପଇସା ନେବା ଦୁର୍ନୀତି ସେ ନୂଆ କଲେଜକୁ ବ୍ୟାପି ନ ଥାଏ । ତାହା କିପରି ନ ହେବ ମୁଁ ସେଥିପ୍ରତି ଦୃଷ୍ଟି ରଖି ସେମାନଙ୍କୁ ଆଲୋଚନାର ସୁବିଧା ଦେବା ପାଇଁ ମେଡ଼ିକାଲ ଛାତ୍ରଙ୍କ ସେମିନାର ପରି ଆଲୋଚନା ସଭା ସବୁ ଆରମ୍ଭ କରିଥିଲି । ସେଥିରେ ସେମାନେ ଉପେନ୍ଦ୍ର ଭଞ୍ଜ ସାହିତ୍ୟଠାରୁ ଆଇନଷ୍ଟାଇନଙ୍କ ବିଜ୍ଞାନ ପର୍ଯ୍ୟନ୍ତ ସବୁ ବିଷୟ ଆଲୋଚନା କରୁଥିଲେ । ସେ ସମୟରେ ଜଣେ ସ୍ୱାସ୍ଥ୍ୟ ନିର୍ଦ୍ଦେଶକ (ପୂର୍ବତନ ପାଥୋଲଜି ପ୍ରଫେସର) ପରିଦର୍ଶନ କରି ଆସିଥିଲା ସମୟରେ ମୋ ବିଭାଗର ଲାବ୍‌ରେଟୋରୀ ଆସିଷ୍ଟାଣ୍ଟମାନେ ତାଙ୍କ ଦରମା ବୃଦ୍ଧି ପାଇଁ ଦାବି ଉପସ୍ଥାପନ କରିଥିଲେ । ତାହା ଶୁଣି ସେ ନିର୍ଦ୍ଦେଶକ କହିଲେ "ତୁମର ତ ଉପୁରି ଯଥେଷ୍ଟ ଥିବ, ଦରମା ବଢ଼ିବା କ'ଣ ଦରକାର ।" ତାହାର ଜବାବ୍ ଦେଇ ଘରୋଇ ଭାବରେ ଏମ୍.ଏ ଓ ଓକିଲାତି ପଢୁଥିବା ମୋର ଜଣେ ଲାବ୍‌ରେଟୋରୀ ଆସିଷ୍ଟାଣ୍ଡ ହାତ ହଲାଇ କହିଲେ, ଉପୁରି କ'ଣ ? ଦରମା ଛଡ଼ା ଆମେ ଅନ୍ୟାୟ ଉପାୟରେ କଣା ପଇସାଟିଏ ମଧ ଛୁଉଁନାହୁଁ । ଆମେ ଅବୈଧ ରୋଜଗାର କରୁନାହୁଁ । ସେଥିରେ ଆଶ୍ଚର୍ଯ୍ୟ ହୋଇ ନିର୍ଦ୍ଦେଶକ ମୋ ମୁହଁକୁ ଚାହିଁଲେ । ମୁଁ ତାହା ସତ୍ ବୋଲି କହିବାରେ ସେ ବିସ୍ମିତ ହୋଇ ଯାଇଥିଲେ ।

**ନାଇଡୁଙ୍କ ଉଚ୍ଚଶିକ୍ଷା :**

ସରକାରୀ ଚାକିରିରେ କର୍ତ୍ତୃପକ୍ଷଙ୍କ କାନକୁହାମାନଙ୍କ ଯୋଗୁଁ ପଦପଦକେ ବାଧା ଉପୁଜେ । ମୁଁ ଟେକନିସିଆନମାନଙ୍କୁ ପାଠ ପଢ଼ିବାକୁ ଉତ୍ସାହିତ କରୁଥିବାରୁ ମୋର ସଂଗ୍ରହାଳୟର ଦକ୍ଷ ଓ ସାଧୁ ଟେକନିସିଆନ କାମ ନଥିଲାବେଳେ ଖଲ୍ଲିକୋଟ କଲେଜରେ ବି.ଏସ.ସି. ପଢ଼ିବା ପାଇଁ ନାମ ଲେଖାଇଥିଲେ । ମେଡ଼ିକାଲ କଲେଜର ଦୈନିକ କାର୍ଯ୍ୟ ସମୟରେ ଶ୍ରୀ ରାଓ ଖଲ୍ଲିକୋଟ କଲେଜର ପ୍ରାକ୍‌ଟିକାଲ କ୍ଲାସରେ କିପରି ଯୋଗ ଦେଉଛନ୍ତି ଓ ସେଥିପାଇଁ ବିଭାଗୀୟ ମୁଖ୍ୟ କାହିଁକି ଦୃଢ଼ ପଦକ୍ଷେପ ନେଉନାହାନ୍ତି ବୋଲି କାରଣ ଦର୍ଶାଇବାକୁ କଲେଜ ଅଧକ୍ଷଙ୍କଠାରୁ ମୋ ନିକଟକୁ ଏକ କଡ଼ା ଚିଠି ଆସିଲା । ଅଧକ୍ଷ ମୋର ମତ ନ ନେଇ ରାଓର ପାଠ ବନ୍ଦ କରି ତାକୁ ଅନ୍ୟ ବିଭାଗକୁ ବଦଳି କରିଦେଲେ । ମୋ ବିଭାଗୀୟ ମିଉଜିଅମ୍ ତାଙ୍କ କୋପ ଦୃଷ୍ଟିରେ ପଡ଼ି ମିଉଜିଅମ୍‌ର ଚିତ୍ରକର ଓ ଫଟୋଗ୍ରାଫର ପୋଷ୍ଟକୁ ମଧ ମୋ ବିଭାଗରୁ ଉଠାଇନେଇ ଅନ୍ୟ ବିଭଗ ସହିତ ଯୋଡ଼ି ଦିଆଗଲା ।

ମୁଁ ମୋ ବିଭାଗକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଅବିଚଳିତ ଭାବେ ଲାଗି ରହିଥିଲି । ମୋ ନିଦାନ ବିଭାଗ ଶିକ୍ଷାରେ ଉଚ୍ଚସ୍ଥାନ ଲାଭ କରି କିପରି ଆଇ.ଏମ୍.ସି.ର ଥରୁଟିଏ ଲେଖାଏଁ ପରିଦର୍ଶନରେ ଏମ.ବି.ବି.ଏସ୍. ଓ ଏମ୍.ଡ଼ି. ଡ଼ିଗ୍ରୀପାଇଁ ସ୍ୱୀକୃତି ପାଇବ ତାହା ମୋର ଏକମାତ୍ର ଚିନ୍ତା ଥିଲା । କ୍ଲାସ ଓ ସେମିନାର ଶିକ୍ଷା ସଙ୍ଗେ ସଂଗ୍ରହାଳୟ ଶିକ୍ଷାକୁ ମୁଁ ବେଶୀ ଗୁରୁତ୍ୱ ଦେଉଥିଲି । ସାରା ଭାରତର ବହୁ ମେଡ଼ିକାଲ କଲେଜମାନଙ୍କରୁ ଶିକ୍ଷାପଯୋଗୀ ସ୍ପେସିମେନ ସବୁ ମଗାଇଥିଲି । ଏକ ବଡ଼ କୋଠରୀରେ କାଚଦିଆ ର୍‍ୟାକମାନଙ୍କ ଉପରେ ରୋଗୀର ରୋଗଗ୍ରସ୍ତ ମାଂସପେଶୀ ସବୁ କାଚ ଜାରରେ ରାସାୟନିକ ଜଳରେ ରଖାଇଥିଲି । ପ୍ରତ୍ୟେକ ସ୍ପେସିମେନ ଏକପଟେ ରୋଗର ମାଇକ୍ରୋସ୍କପିକ ପେଶୀ ଚିତ୍ର ରଖାଇ ଥିଲି । ଛାତ୍ରମାନେ ବହି ଧରି ଆସି ସେ ର୍‍ୟାକ ସାମନାରେ ଟୁଲରେ ବସି ର୍‍ୟାକ୍‌ସଂଲଗ୍ନ ବେଞ୍ଚରେ ବହି ରଖି ପଢୁଥିଲେ । ତାହାଦ୍ୱାରା ଛାତ୍ରମାନେ ଦେଖି ଶିଖିବା ବା ଭିଜୁଆଲ ପାଠର ସୁବିଧା ପାଉଥିଲେ ।

**ବିଭାଗୀୟ ଷ୍ଟୋର ବିଭ୍ରାଟ :**

ମୁଁ ସେଠାରେ ବିଭାଗୀୟ ମୁଖ୍ୟ ଭାବରେ ଯୋଗ ଦେବା ପୂର୍ବରୁ ଦୁଇଜଣ ସହକାରୀ ଅଧ୍ୟାପକ ସେ ବିଭାଗର ସର୍ବେସର୍ବା ଥିଲେ । ଯେଉଁ ସହକାରୀ ଅଧ୍ୟାପକ ଷ୍ଟୋର ଦାୟିତ୍ୱରେ ଥିଲେ, ମୁଁ ଯୋଗ ଦେବା ପରେ ପରେ ସେ ବଦଳି ହୋଇଯିବାବେଳେ ଷ୍ଟୋରର ଦାୟିତ୍ୱ ଅନ୍ୟ ସହକାରୀ ଅଧ୍ୟାପକଙ୍କ ଦାୟିତ୍ୱରେ ଛାଡ଼ି ଯାଇଥିଲେ । ସେମାନଙ୍କ ସମୟରେ ସେ ଷ୍ଟୋର ସିଟି ହସପିଟାଲରୁ ନୂଆ କଲେଜ କୋଠାକୁ ଆସିଥିଲା । ବହୁ ଜିନିଷପତ୍ର ନ ଥିଲା କି ହିସାବ ଠିକ୍ ନ ଥିଲା । ଦାୟିତ୍ୱରେ ଥିବା ସହକାରୀଙ୍କୁ ମୁଁ ଯେତେ କହିଲେ ମଧ ଷ୍ଟୋରର ଅବ୍ୟବସ୍ଥାକୁ ସେ ସଜାଡ଼ିବା ପାଇଁ ଆଦୌ ଚେଷ୍ଟା କଲେ ନାହିଁ । ଶେଷରେ ସେ ମୋ ମୁଣ୍ଡରେ ଅଠାବୋଳି ଖସିଯିବା ପାଇଁ ଉଦ୍ୟତ ହେଲେ । ତାଙ୍କୁ ରିଲିଭ କରିଦେବା ପାଇଁ ଅଧକ୍ଷ ଆଦେଶ ପଠାଇବାରୁ ଅନ୍ୟ ଜଣେ ଶିକ୍ଷକଙ୍କୁ ଷ୍ଟୋର ଚାର୍ଜ ବୁଝାଇ ଦେବା ପାଇଁ ମୁଁ ତାଙ୍କୁ ନିର୍ଦ୍ଦେଶ ଦେଲି । ସେ ତା' ନ କରି ଷ୍ଟୋର ଖାତାରୁ ତାଙ୍କ ଚାର୍ଜ ଦିଆନିଆ ଫର୍ଦ୍ଦଟି ଚିରି ହରଣଚାଳ କରି ସେ ଚାର୍ଜ ନେଇ ନାହାନ୍ତି ଓ ମୋ ଅନୁରୋଧରେ ଷ୍ଟୋରର ଦୈନନ୍ଦିନ ନିଆଅଣା କାର୍ଯ୍ୟ କେବଳ ବୁଝୁଥିଲେ ବୋଲି ଆଳ ଦେଖାଇ ଚାର୍ଜ ଦେଲେ ନାହିଁ । ଶେଷରେ ଅଧକ୍ଷ କହିଛନ୍ତି ବୋଲି କହି ଷ୍ଟୋର, ଚାବି ମୁଠାଟା ଆଣି ମୋ ସାମ୍ନାରେ ଟେବୁଲ ଉପରେ ଫିଙ୍ଗି ଚାଲିଗଲେ । ମୁଁ ସେ ଚାବି ପ୍ରିନସିପାଲଙ୍କ ନିକଟକୁ ପଠାଇଦେଲି । ଚାର୍ଜ ଦେଉଥିବା ପୂର୍ବତନ ସହକାରୀ ଅଧ୍ୟାପକଙ୍କ ନିକଟକୁ (କଟକ) ଲୋକ ପଠାଇ ସେ କାହାକୁ ଚାର୍ଜ ଦେଇଛନ୍ତି ବୋଲି ପଚାରିବାରୁ ସେ ଅନ୍ୟ ସହକାରୀ ଅଧ୍ୟାପକଙ୍କୁ ଚାର୍ଜ ଦେଇଛନ୍ତି ବୋଲି ଉତ୍ତର ପାଇଲି । ତା'ର ସୁରାକ ପାଇ, ସେମାନେ କଟକଯାଏ ଚାର୍ଜରେ ଥିବା

ପୂର୍ବ ସହକାରୀ ଅଧ୍ୟାପକ, ମୋତେ ଷ୍ଟୋର ଚାବି ଦେଇଥିବା କଥା ତାଙ୍କଠାରୁ ଲେଖାଇ ଆଣିଲେ ।

ଅଧ୍ୟକ୍ଷ ଷ୍ଟୋର ଚାର୍ଜ ମୋ ମୁଣ୍ଡରେ ଲଦା ହେବା ସମର୍ଥନ କରୁଥିବାରୁ ମୁଁ ମହାବିପଦରେ ପଡ଼ିଲି । ଷ୍ଟୋରରେ ଲକ୍ଷ ଲକ୍ଷ ଟଙ୍କାର ଯନ୍ତ୍ରପାତି ଓ ଆସବାବପତ୍ରର ଅଭାବ ରହିଥିଲା । ଆଗରୁ ମୁଁ ସେ କଥା ଜଣାଇଥିବାରୁ ଅଧ୍ୟକ୍ଷ ମୋତେ କହିଥିଲେ "ଷ୍ଟୋର ଏପଟ ସେପଟ ହେବାବେଳେ ସେଗୁଡ଼ିକ ଭାଙ୍ଗି ହଜି ଯାଇଛି । ତା'ର ହିସାବ କରି ସେସବୁ ନଷ୍ଟ ଲିଷ୍ଟରେ ଲେଖି ଉପରୁ ସାଙ୍କସନ କରି ଆଣିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ସେଥିଯୋଗୁଁ ଭାରପ୍ରାପ୍ତ ଅଫିସରଙ୍କୁ ସେ ଲିଷ୍ଟ କରିବା ପାଇଁ ମୁଁ ବରାବର ଲଗାଇଥିଲି । ମାତ୍ର ଲିଷ୍ଟ ହୋଇନଥିଲା । ସେସବୁ ଜିନିଷର କୌଣସି ବ୍ୟବସ୍ଥା ନ କରି ସେସବୁ ଅଛି ବୋଲି ମୋ ମୁଣ୍ଡରେ ଅଧ୍ୟକ୍ଷ ଲଦି ଦେବାକୁ ବସିବାରୁ ମୁଁ ବିବ୍ରତ ହୋଇ ପଡ଼ିଲି । ବିନା ଦୋଷରେ ଲକ୍ଷ ଲକ୍ଷ ଟଙ୍କା ତୋଷରପାତ ପାଇଁ ମୋତେ ଦଣ୍ଡିତ ହେବାକୁ ପଡ଼ିବ ଜାଣି ଆତ୍ମରକ୍ଷା ପାଇଁ ମୁଁ ଅଧ୍ୟକ୍ଷଙ୍କ କାର୍ଯ୍ୟରେ ତୀବ୍ର ପ୍ରତିବାଦ କରିବାର ସ୍ଥିର କଲି ।

ଅଧ୍ୟକ୍ଷ ତାଙ୍କ କାର୍ଯ୍ୟାଳୟକୁ ମୋତେ ଓ ସେ ସହକାରୀ ଅଧ୍ୟାପକଙ୍କୁ ଓ ଅନ୍ୟ ବିଭାଗ ମୁଖ୍ୟ ଅଧ୍ୟାପକମାନଙ୍କୁ ଡକାଇ ଏକ ସଭା କଲେ । ଷ୍ଟୋର ଚାବି କଥା ଉଠାଇବାରୁ ପୂର୍ବେ ଦାୟିତ୍ୱରେ ଥିବା ଅଫିସର ଏ ଅଫିସରଙ୍କୁ ଚାର୍ଜ ଦେଇଛନ୍ତି ବୋଲି ଚିଠିଟି ମୁଁ ଦେଖାଇବାରେ ଅଧ୍ୟକ୍ଷ କହିଲେ ସେ ତୁମକୁ ଚାବି ଦେଇଯାଇଛନ୍ତି ବୋଲି ମଧ ଲେଖିଦେଇଛନ୍ତି । ମୁଁ କହିଲି ତାହାର କିଛି ଅର୍ଥ ନାହିଁ । ସମସ୍ତ କଲେଜର ଚାବି କଲେଜ ଛୁଟି ସମୟରେ ଆପଣଙ୍କ ପାଖରେ ରହେ । ମୋ ବିଭାଗର ସମସ୍ତ କୋଠରୀର ଚାବି ମୋ ଅଫିସରେ ରହେ । ତା' ଦ୍ୱାରା ଚାର୍ଜ ଦିଆନିଆ ହୁଏନାହିଁ ।

ତା'ପରେ ସେ ଅନ୍ୟ ବିଭାଗର ମୁଖ୍ୟ ପ୍ରଫେସରମାନଙ୍କୁ ସେମାନେ ତାଙ୍କ ଷ୍ଟୋର ଚାର୍ଜରେ ଅଛନ୍ତି କି ନାହିଁ ଓ ସେଥିପାଇଁ ଦାୟୀ କି ନୁହନ୍ତି ବୋଲି ପ୍ରଶ୍ନ କରିବାରୁ ସେମାନେ ଦାୟୀ ବୋଲି ସମ୍ମତି ଦେଲେ । ମୁଁ ସେପରି ପ୍ରଶ୍ନର ପ୍ରତିବାଦ କରି କହିଲି ଯେଉଁ ଯେଉଁ ବିଭାଗରେ ମୁଖ୍ୟ ଅଧ୍ୟାପକ ନିଯୁକ୍ତି ହୋଇ ନ'ଥାନ୍ତି ସେ ବିଭାଗର ଷ୍ଟୋର ଅଧ୍ୟକ୍ଷଙ୍କ କର୍ତ୍ତୃତ୍ୱରେ ଥାଏ । ତେଣୁ ନୂତନ ବିଭାଗୀୟ ମୁଖ୍ୟଙ୍କୁ ସେ ବିଭାଗର ଦାୟୀତ୍ୱ ଦେବା ସଙ୍ଗେ ଷ୍ଟୋର ବା ଭଣ୍ଡାରର ଚାର୍ଜ ବୁଝାଇବା ଅଧ୍ୟକ୍ଷଙ୍କ କର୍ତ୍ତବ୍ୟ । ତେଣୁ ମୋ ବିଭାଗର ଭଣ୍ଡାର ପାଇଁ ଅଧ୍ୟକ୍ଷ ହିଁ ଦାୟୀ । ସେ ତା'ର ଯାଞ୍ଚ ଓ ହିସାବ କରାଇ ଯାହା ଅଛି ତା'ର ଚାର୍ଜ ମୋତେ ଦେଲେ ମୁଁ ସେ ଦାୟୀତ୍ୱ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ଏଥିରେ ଯଦି ଅଧ୍ୟକ୍ଷ ରାଜି ନ ହୁଅନ୍ତି ତେବେ ସମସ୍ତ ଘଟଣା ଉପରିସ୍ଥ କର୍ମକର୍ତ୍ତାଙ୍କ ସାମନାରେ

ଉପସ୍ଥାପିତ ହେଉ, ସେମାନଙ୍କଠାରୁ ନିର୍ଦ୍ଦେଶ ପାଇଲେ ମୁଁ ସହକାରୀ ଅଧ୍ୟାପକଙ୍କୁ ରିଲିଭ କରିଦେବି ।

ଅଧ୍ୟକ୍ଷ ନିରୁପାୟ ହୋଇ ଏକ ଯାଞ୍ଚ କମିଟି ବସାଇ ସବୁ ଠିକ୍ ଠାକ୍ କରାଇଲେ । ଯେଉଁକି ଜିନିଷ ଭଣ୍ଡାରରେ ଥିଲା ସେତକର ଚାର୍ଜ ଦେବା ପାଇଁ ସହକାରୀ ଅଧ୍ୟାପକଙ୍କୁ ନିର୍ଦ୍ଦେଶ ଦେଲେ ଓ ନ ଥିବା ଜିନିଷର ନିଜେ ଦାୟିତ୍ୱ ନେଇ ସେଗୁଡ଼ିକ ନଷ୍ଟ ହୋଇଛି ବୋଲି ସୁପାରିଶ୍ କଲେ । ଚାର୍ଜ ଦେବା ପରେ ସହକାରୀ ଅଧ୍ୟାପକ ରିଲିଭ ହୋଇ ଛୁଟି ନେଇ ତାଲିମ ପାଇଁ ବିଲାତ ଗଲେ । ମୁଁ ଘୋର ବିପତ୍ତିରୁ ରକ୍ଷା ପାଇଲି, କିନ୍ତୁ ଅଧ୍ୟକ୍ଷଙ୍କ କୋପ ଦୃଷ୍ଟିରୁ ନିସ୍ତାର ପାଇଲି ନାହିଁ ।

ସେପରି ବାଧାବିଘ୍ନ ସତ୍ତ୍ୱେ ବ୍ରହ୍ମପୁର ମେଡ଼ିକାଲ କଲେଜର ପାଥୋଲଜି ବିଭାଗର ପ୍ରତିଷ୍ଠାତା- ଅଧ୍ୟାପକ ଭାବେ ତାର ସଙ୍ଗଠନ ଓ ପାଠ୍ୟକ୍ରମ ଦୃଷ୍ଟିରୁ ମାନ ବଢ଼ାଇ ଗୋଟିଏ ଗୋଟିଏ ଥର ଆଇ.ଏମ୍.ସି. ପରିଦର୍ଶନରେ ଏମ୍.ବି.ବି.ଏସ୍. ଓ ଏମ.ଡ଼ି. ପାଠ୍ୟକ୍ରମ ପାଇଁ ସ୍ୱୀକୃତି ହାସଲ କରିପାରିଥିଲି । ଅନ୍ୟ ଦୁଇଟି ମେଡ଼ିକାଲ କଲେଜର ସେ ବିଭାଗକୁ ସ୍ୱୀକୃତି ଅଣାଇବା ପାଇଁ ବହୁଥର ପରିଦର୍ଶନ ଦରକାର ହୋଇଥିଲା ।



# ବିଜ୍ଞବ୍ୟକ୍ତିଙ୍କ ସାନ୍ନିଧ ଓ ସାହିତ୍ୟ ସାଧନା

ଆମ ବିଭାଗର ଜଞ୍ଜାଳ ନେଇ ଅତ୍ୟନ୍ତ କାର୍ଯ୍ୟବ୍ୟସ୍ତ ରହୁଥିଲେ ମଧ ମୋର ସାଥୀ ଚାକିରିଆମାନଙ୍କର ଅବହାଓ୍ୱା ମୋତେ ସୁଖକର ଲାଗୁନଥିବାରୁ ସମୟ ମିଳିଲେ ବାହାରର ଅନ୍ୟମାନଙ୍କ ସଙ୍ଗେ ମୁଁ ସଂପର୍କ ରଖିବାକୁ ଇଚ୍ଛା କରୁଥିଲି । ବିଶ୍ୱବିଦ୍ୟାଳୟରେ ବହୁ ବିଜ୍ଞ ବ୍ୟକ୍ତି ଥାଆନ୍ତି । ମୁଁ ଗୋଟିଏ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଅଧ୍ୟାପକ, ହୋଇଥିବାରୁ ବିଶ୍ୱବିଦ୍ୟାଳୟର ନିୟମ ଅନୁସାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସିନେଟ ସଦସ୍ୟ ହୋଇଥିଲି, ତେଣୁ ସେଠାର ପ୍ରବୀଣ ଅଧ୍ୟାପକ, ଗବେଷକ ଓ ବୁଦ୍ଧିଜୀବୀଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିବାର ସୁଯୋଗ ମିଳିଲା ।

ବିଶ୍ୱବିଦ୍ୟାଳୟମାନେ ସିନେଟ ଦ୍ୱାରା ନିର୍ବାଚନ କରାଇ ଆଇ.ଏମ୍.ସି.କୁ ଜଣେ ପ୍ରତିନିଧି ପଠାଇ ଥାଆନ୍ତି । ପୂର୍ବରୁ ମେଡ଼ିକାଲ କଲେଜ ଅଧକ୍ଷ ପ୍ରତିନିଧି ଥିଲେ । ତାଙ୍କର ବଦଳି ହେବାପରେ ଯିଏ ତାଙ୍କର ସ୍ଥାନରେ ଆସିଥିଲେ ସେ ତାଙ୍କ ପୂର୍ବସ୍ଥାନକୁ ଫେରିଯିବାକୁ ତତ୍ପର ଥିବାରୁ ଅଧିକାଂଶ ସମୟ ବ୍ରହ୍ମପୁରରୁ ଅନୁପସ୍ଥିତ ରହୁଥିଲେ । ତାଙ୍କ ସ୍ଥାନରେ କାମ ଚଳାଉଥିବା ଅଧକ୍ଷ ଠିକ୍ ପୂର୍ବରୁ ବିଶ୍ୱବିଦ୍ୟାଳୟର ଗୋଟିଏ ପଦ ପାଇଁ ପ୍ରତିଦ୍ୱନ୍ଦିତା କରି ଫେଲ୍ ହୋଇଥିଲେ । ଯେ କୌଣସି ପ୍ରଫେସର ଆଇ.ଏମ୍.ସି ପାଇଁ ପ୍ରତିଦ୍ୱନ୍ଦିତା କରିବାରେ ବାଧା ନ ଥିବାରୁ ଓ ମୁଁ ଆଇ.ଏମ୍.ସି. କାର୍ଯ୍ୟାବଳୀ ସହିତ ପରିଚିତ ଥିବାରୁ ମୋତେ ସେ ପଦ ପାଇଁ ଛିଡ଼ାହେବାକୁ ଅନୁରୋଧ କଲେ । ମୁଁ ବିଶ୍ୱବିଦ୍ୟାଳୟର ପ୍ରଫେସର ଓ ଅନ୍ୟ ସଦସ୍ୟମାନଙ୍କୁ ତାହା କହିବାରୁ ସେମାନେ ଆନନ୍ଦ ପ୍ରକାଶ କଲେ । କିନ୍ତୁ ହଠାତ୍ କାର୍ଯ୍ୟକାରୀ ଅଧକ୍ଷ ମତ ବଦଳାଇ ମୋତେ ସେଥିରୁ ଓହରାଇ ନିଜେ ପୁଣି ପ୍ରତିଦ୍ୱନ୍ଦିତା ପାଇଁ ସ୍ଥିର କରି, ବାହାରେ ଥିବା ସ୍ଥାୟୀ ଅଧକ୍ଷ ନିଜେ ଠିଆହେବେ ବୋଲି ତାଙ୍କୁ ଜଣାଇଥିବାରୁ ମୁଁ ସେ ନିର୍ବାଚନରୁ ଓହରିଯିବା ପାଇଁ ଦୁଇଜଣ ପ୍ରଫେସରଙ୍କ ହାତରେ ଖବର ଦେଲେ । ମୁଁ ଅନ୍ତୁଆରେ ପଡ଼ିଲି । ମୁଁ ସେମାନଙ୍କୁ କହିଲି ବର୍ତ୍ତମାନ ମୁଁ ଓହରି ଯିବା ସମ୍ଭବ ନୁହେଁ । ଯଦି ସ୍ଥାୟୀ ଅଧକ୍ଷ ଚାହାନ୍ତି ତେବେ ମୁଁ ନିର୍ବାଚିତ ହେବା ପରେ ତାଙ୍କ ପାଇଁ ଇସ୍ତଫା ଦେଇଦେବି ।

ଗଛ ଉପରକୁ ଚଢାଇ ମୂଳ କୁଠାରଘାତ କଲାଭଳି କାର୍ଯ୍ୟକାରୀ ଅଧକ୍ଷ ସିନେଟ ସଭାଦିନ ନିଜେ ନ ଯାଇ ତାଙ୍କ ନିଜ ନାମ ପ୍ରସ୍ତାବ କରିବା ପାଇଁ କେତେଜଣ ବରିଷ୍ଠ ଅଧ୍ୟାପକ ଓ ଅଧ୍ୟାପିକାଙ୍କୁ ପଠାଇଲେ । ସଭା ଆରମ୍ଭ ହେଲା । କୁଳପତି ଗୋରାଚାନ୍ଦ

ରଥ ନିର୍ବାଚନ ଘୋଷଣା କରିବା ସଙ୍ଗେ ସଙ୍ଗେ ମୋ ନାମ ପ୍ରସ୍ତାବ କରିବାକୁ ବହୁ ବ୍ୟକ୍ତି ଏକାବେଳକେ ଠିଆ ହୋଇଗଲେ । କୁଳପତି ଜଣ ଜଣ କରି ଠିଆ ହୋଇ ପ୍ରସ୍ତାବ ଆଣିବାକୁ କହିବାରୁ ସେ ସମସ୍ତେ କେବଳ ମୋ ନାମ ପ୍ରସ୍ତାବ କରୁଥିବା ଦେଖି, କାମଚଳା ଅଧକ୍ଷଙ୍କ ଲୋକେ ଧରା ନ ପଡ଼ିବା ପାଇଁ ତୁନି ହୋଇଗଲେ । ମୁଁ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତ ହୋଇଗଲି ।

ସେ ଘଟଣା ପରେ ବିଶ୍ୱବିଦ୍ୟାଳୟର ପ୍ରବୀଣ ଅଧ୍ୟାପକମାନଙ୍କ ସଙ୍ଗେ ମୋର ବନ୍ଧୁତା ବଢ଼ିଲା । ସେଠାର ଓଡ଼ିଆ ବିଭାଗର ପ୍ରଫେସର ଗବେଷକ ବେଣୀ ମାଧବ ପାଢ଼ୀ, କାହ୍ନୁଚରଣ ମିଶ୍ର, ସୀତାକାନ୍ତ ମହାପାତ୍ର ପ୍ରଭୃତି ସେମାନଙ୍କ ଗବେଷଣାରେ ପୂର୍ବରୁ ମୋ ପିତା ନୀଳକଣ୍ଠଙ୍କ ସହିତ ସମ୍ପୃକ୍ତ ଥିଲେ । ସେମାନଙ୍କ ସାନ୍ନିଧ ପାଇ ସାହିତ୍ୟ ଆଲୋଚନା ପ୍ରଭୃତିରେ ମୋର ମନ ବଳିଲା ।

**ପୁସ୍ତକ ପ୍ରକାଶନର ଉଦ୍ୟମ :**

ମେଡ଼ିକାଲ କଲେଜରେ ପଢ଼ିବା ପୂର୍ବରୁ ମୁଁ ପତ୍ର ପତ୍ରିକାକୁ ଲେଖା ଦେଉଥିଲି । ମେଡ଼ିକାଲ ପଢ଼ା ବେଳେ ମଧ ସବୁ ସନ୍ଧ୍ୟାରେ ନବ ଭାରତ ପ୍ରେସକୁ ଯାଇ ପିତାଙ୍କ ନିକଟରେ ବସି ଲେଖାଲେଖି କରିବା ସହିତ ସେଠାକୁ ଆସୁଥିବା ବିଜ୍ଞ ସାହିତ୍ୟିକମାନଙ୍କ ଆଲୋଚନାରେ ଯୋଗ ଦେବାର ସୁଯୋଗ ପାଉଥିଲି । ମୁଁ ମେଡ଼ିକାଲ କଲେଜରୁ ପାଶ୍ କରି ଘରୋଇ ଚିକିତ୍ସା ଆରମ୍ଭ କଲାବେଳେ କଟକର ନିଉ ଷ୍ଟୁଡେଣ୍ଟ ଷ୍ଟୋର ମୋର ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟ ବିଜ୍ଞାନ ନାମକ ଦୁଇଟି ପୁସ୍ତକ ପ୍ରକାଶ କରିଥିଲେ । ବିଜ୍ଞାନକୁ ସାଧାରଣ ଲୋକ ଓ ପିଲାଙ୍କ ଭିତରେ ପ୍ରସାର କରାଇବା ପାଇଁ ମୁଁ ଦୁଇ ତିନିଟି ପୁସ୍ତକ ରଚନା କରିଥିଲି । କିନ୍ତୁ ମୁଁ ଉଚ୍ଚ ଶିକ୍ଷା ପାଇଁ ଆମେରିକା ଚାଲିଯିବାରୁ ସେସବୁ ଅପ୍ରକାଶିତ ରହିଥିଲା ।

ଆମେରିକାରୁ ଫେରି ଚାକିରିର ଦୌରାତ୍ମ୍ୟ ଓ ଚିକିତ୍ସା ବ୍ୟବସାୟର ଜଞ୍ଜାଳ ଭିତରେ ଆବଦ୍ଧ ରହି ଧାରାବାହିକ ଲେଖାଲେଖିରେ ମନୋନିବେଶ କରିବା ସମ୍ଭବ ନ ଥିଲା । ଅବଶ୍ୟ ସାମୟିକ କବିତା ଲେଖା ମୋର କେବେ ବନ୍ଦ ନ ଥିଲା । ସ୍କୁଲପଢ଼ା, କଲେଜ ପଢ଼ା, ଆମେରିକା ପଢ଼ା ସବୁ ଭିତରେ ଯେତେବେଳେ ଯେଉଁ କବିତା ମନକୁ ଆସେ ମୁଁ ତାହା କାଗଜ ଟୁକୁରା ଉପରେ ଲେଖି ପକାଏ । ଏପରିକି, ପରୀକ୍ଷା ହଲଠାରୁ ରେଳଯାତ୍ରା ଡାଇନିଙ୍ଗ୍‌ହଲ ଯେଉଁଠାରେ ଥାଏ କବିତାଟିଏ ମନକୁ ଆସିଲେ ତାକୁ ଲେଖି ଅନ୍ୟମାନଙ୍କୁ ପଢ଼ି ଶୁଣାଇ ଫିଙ୍ଗିଦିଏ । ସେତିକିରେ ମୋତେ ସନ୍ତୋଷ ମିଳେ । ତାହାଛଡ଼ା ତତ୍କାଳୀନ ଶ୍ରେଷ୍ଠ ବ୍ୟଙ୍ଗ ପତ୍ରିକା 'ନିଆଁ ଖୁଣ୍ଟା'ରେ ବିନା ନାମରେ ମୋର ଅସଂଖ୍ୟ କବିତା ପ୍ରକାଶ ପାଇଥିଲା ।

ମୁଁ କେତେକ ବହି ପ୍ରକାଶ କରିବାକୁ ଉଦ୍ୟମ କଲାବେଳେ ସରକାରୀ ନିୟମ ଅନୁସାରେ ସରକାରଙ୍କ ବିନା ଅନୁମତିରେ କୌଣସି ବହି ଲେଖି ପ୍ରକାଶ କରାଇବା ବାରଣ ଥିବା ମୋତେ ଜଣେ ଡାକ୍ତର ବନ୍ଧୁ ଚେତାଇ ଦେଇଥିଲେ । ସେ ନିଜେ ତାଙ୍କ ଅନୁବାଦ ବହିପାଇଁ ଅନୁମତି ନେଇଛନ୍ତି ବୋଲି କହିଲେ । ପୂର୍ବରୁ ଲେଖା ହୋଇ ପଡ଼ିଥିବା ମୋର ଦୁଇଟି ପାଣ୍ଡୁଲିପି 'ରସଗୋଲା ବାହାଘର' ଓ 'ଟିଣ୍ଟିଣିଆ ଭୂତ'ର ପାଣ୍ଡୁଲିପି ପ୍ରକାଶନର ଅନୁମତି ପାଇଁ ମୁଁ ସରକାରଙ୍କ ସ୍ୱାସ୍ଥ୍ୟ ଦପ୍ତରକୁ ପଠାଇଲି । କିନ୍ତୁ ସରକାରୀ ଦପ୍ତରରେ ତାହା କେଉଁଠି ଛପିଗଲା ମୁଁ ଲେଖି ଲେଖି ତା'ର ଉତ୍ତର ପାଇଲି ନାହିଁ । ଆଇନକୁ ସମ୍ମାନ ଦେଖାଇ ଚଳିବା ପାଇଁ ଚେଷ୍ଟା କରି ମୁଁ ଅସୁବିଧାର ସମ୍ମୁଖୀନ ହେଲି । କିନ୍ତୁ ଅଧିକାଂଶ ଲୋକ ସେପରି ଆଇନକୁ ଖାତିର କରୁନଥିଲେ । ଶିକ୍ଷା ବିଭାଗର ଶିକ୍ଷକମାନେ ଇଚ୍ଛା ଅନୁସାରେ ଗଦା ଗଦା ପୁସ୍ତକ ପ୍ରକାଶନ କରାଉଥିଲେ । ତେଣୁ ପୁରୁଣାକାଳିଆ ନୀତିରେ ନିୟମ ଶୃଙ୍ଖଳା ମାନି ଚଳିବା ଲୋକ ଏ ଯୁଗରେ କେବଳ ଲୋକହସା ହୁଅନ୍ତି ବୋଲି ଜାଣିପାରିଲି । କିନ୍ତୁ ମୋ ପରି ଜଣେ ଆଦର୍ଶବାଦୀ ଲୋକ ପକ୍ଷରେ ସେପରି କରିବା ସମ୍ଭବ ନ ଥିବାରୁ ମୁଁ ବେଳେବେଳେ କ୍ଷୁବ୍ଧ ହୋଇ ନୈରାଶ୍ୟଜନକ କବିତାଟିଏ ଲେଖି ଦେଉଥିଲି । ମୁଁ ଲେଖିଥିବା ସେପରି ଗୋଟିଏ କବିତାର ନାମ 'ହେ ଲେମ୍ବୁ' । ସେ ସମୟରେ ମୋର ଘର ବଗିଚାରେ ପ୍ରାୟ ପାଏ ଓଜନର ଗୋଟିଏ ବିରାଟ ଗଙ୍ଗାକୃଳିଆ ଲେମ୍ବୁ ଫଳିଥିଲା । ସେତେବେଳେ ନାନା କାରଣରୁ ମୋର ମାନସିକ ଅବସ୍ଥା ବଡ଼ ଦୟନୀୟ ଥିଲା । ସେହି ଲେଖାର କିଛି ଅଂଶ ଏଠାରେ ଦେଉଛି ।

## 'ହେ ଲେମ୍ବୁ'

ଈଷତ୍ ହରିତବର୍ଣ୍ଣା ହେ ସୁଡ଼ୌଳ ଲେମ୍ବୁ
କିଏ ନ ଚାଖିଛି ତବ ଅନ୍ତରର ଅମ୍ବୁ
ହେ ସେବକ ଅତି ଦାନୀ ଆହେ ମହା ଭଦ୍ର
ତୁମର ନାମ ସ୍ମରଣେ ଜିହ୍ୱା ହୁଏ ଆର୍ଦ୍ର
ତୁମରି ଭକତ ସର୍ବେ ଭିତରେ ଭିତରେ
ଘୃଣାବାକ୍ୟ ଭରା କିନ୍ତୁ ସବୁରି ଜିହ୍ୱାରେ
ତୁମ ନାମେ କେତେ ଗାଳି କେତେ ପରିହାସ
ତୁମକୁ ଲଭିବା ଅର୍ଥ 'ହେଲା ସର୍ବନାଶ'
ଦୁଃଖରେ କିଏ କରିଲେ ମୁଖ ବିଡ଼ମ୍ବନା
ତୁମକୁ ଆଘ୍ରାଣ କଲା ବୋଲି ହୁଏ ଘେନା
ମୋର ପକ୍ଷେ ତୁମ୍ଭେ କିନ୍ତୁ ଅଟ ଦେବାଶିଷ

ବିରାଟ ରୂପରେ ତୁମେ କରିଛ ପ୍ରବେଶ
ଘର ବଗିଚାରେ ତୁମେ ଦିଶ ଢଳ ଢଳ
ମନ ବଗିଚାରେ ପୁଣି ତୁମେ ହିଁ ପ୍ରବଳ
ସରକାରୀ ଫାଇଲରେ ତୁମରି ବାସନା
କାର୍ଯ୍ୟାଳୟେ ତୁମ୍ଭେ ବି ତ ନୁହଁ ହେ ବିମନା
ତୁମକୁ ଲଭଇ ମୁହିଁ ଘରେ ଓ ବାହାରେ
ତୁମେ ମୋର ପ୍ରିୟ ସାଥୀ ସରକାର ଘରେ
ଶୁଭାକାଂକ୍ଷୀ ଭାଇ ବନ୍ଧୁ ଅବା ପ୍ରିୟ ସାଥୀ
ଦେଉଛନ୍ତି ମୋତେ ଏବେ ତୁମ୍ଭକୁ ହିଁ ଭେଟି
ଦେଶଦଶ ସେବା ଏବେ ହେଲାଣି କଠିନ
ତୁମରି ଆଘ୍ରାଣେ ଏବେ କଟେ ମୋର ଦିନ
ତୁମରି ବାସନା ଏବେ ଚଉଦିଗେ ଭରେ
ସବୁ ଛାଡ଼ି ଦିନରାତି ତୁମକୁ ହିଁ ସ୍ମରେ
ତୁମେ ମୋର ପିଛା ଧରି କର କଇବଲ
ତୁମେ ହିଁ ହୋଇଲ ମୋର ଜୀବନ ସମ୍ବଳ ।

ସରକାରୀ ନାଲିଫିତାରେ ବାନ୍ଧି ହୋଇ ମୋତେ ରୁନ୍ଧି ଲାଗୁଥିଲା । ମାନସିକ ଅଶାନ୍ତି କୋଳରୁ ସାହିତ୍ୟ ଚର୍ଚ୍ଚା ହିଁ ମୋତେ ଶାନ୍ତି ଆଡ଼କୁ ଟାଣି ନେଉଥିଲା । ସେ ସମୟରେ କଟକ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ଅନ୍ୟ ବିଜ୍ଞ ବ୍ୟକ୍ତିମାନେ ପରୀକ୍ଷା ଓ ସେମିନାରରେ ଯୋଗ ଦେବାପାଇଁ ବ୍ରହ୍ମପୁର ଆସୁଥିଲେ । ସେମାନଙ୍କ ଭିତରୁ କବି ଲୋକରତ୍ନ କୁଞ୍ଜବିହାରୀ ଦାଶ ଓ କବି ରାଧାମୋହନ ଗଡ଼ନାୟକ ପ୍ରଭୃତି ବ୍ରହ୍ମପୁର ଆସିଲେ ମୋ ଘରେ ରହୁଥିଲେ । ସେମାନଙ୍କ ସଙ୍ଗେ ମୋର ବହୁଦିନରୁ ପରିଚୟ ଥିଲା । କୁଞ୍ଜ ବାବୁ କଲିକତାରେ ପଢ଼ିଲାବେଳୁ କଟକ ଆସିଲେ ମୋ ପିତା ନୀଳକଣ୍ଠଙ୍କ ନବଭାରତ ପ୍ରେସରେ ରହୁଥିଲେ । ସେ ଶାନ୍ତିନିକେତନରେ ଥାଆନ୍ତୁ, କଟକରେ ଥାଆନ୍ତୁ ବା କାଶ୍ମୀର କି ଆମେରିକା ଭ୍ରମଣରେ ଯାଇ ଥାଆନ୍ତୁ, ସବୁ ସମୟରେ ସେ ସମ୍ପର୍କ ରଖିଥିଲେ । ଦୂରରେ ଥିବାବେଳେ ପତ୍ରାଳାପ କରି ତାଙ୍କ ଦୁଃଖ ସୁଖ ମୋତେ ଜଣାଉଥିଲେ ଓ ମୋ ସୁଖଦୁଃଖରେ ଭାଗି ହେବାକୁ ଚାହୁଁଥିଲେ ।

**ସାହିତ୍ୟିକ ଜୀବନ :**

କୁଞ୍ଜବାବୁଙ୍କ ସଙ୍ଗେ ଦେଖା ହେବା କ୍ଷଣି ସେ ମୋ ସହିତ ସାହିତ୍ୟ ଆଲୋଚନା ଆରମ୍ଭ କରି ଦେଉଥିଲେ, ମୋତେ ଲେଖାଲେଖି କରିବା ପାଇଁ ଉତ୍ସାହିତ କରୁଥିଲେ ।

ମୁଁ ତାଙ୍କ ଦ୍ୱାରା ଉତ୍ସାହିତ ହୋଇ କେତେଗୁଡ଼ିଏ ଗଳ୍ପ ଲେଖି ତାଙ୍କୁ ଦେଖାଇଥିଲି । ସେ ତାହା ପଢ଼ି ଆନନ୍ଦିତ ହୋଇ ସେହି ପାଣ୍ଡୁଲିପି ଉପରେ ଉପୋଦ୍‌ଘାତଟିଏ ଲେଖିଥିଲେ । ସେ ପୁସ୍ତକଟି 'ସାତ ତିରିକ୍ ସତର' ନାମରେ ପରେ ଆତ୍ମପ୍ରକାଶ କରିଥିଲା ।

ମୋର ସେ ପୁସ୍ତକ ସମ୍ବନ୍ଧରେ ତାଙ୍କର ମତ ଥିଲା-

''ଏହି ସତ୍ୟମୂଳକ କ୍ଷୁଦ୍ର ଗଳ୍ପ । ସେଗୁଡ଼ିକର ଜନ୍ମ ରୋଗୀ ଚିକିତ୍ସାର ମଧ୍ୟେ ମଧ୍ୟେ ବିକ୍ରମଙ୍କର ବାଣୀପୂଜା । ନାଡ଼ି ଟିପୁଟିପୁ, ଛାତି ପରଖି ପରଖି ସେ ଜୀବନ ନାଟିକା ପରଖି ଥାଆନ୍ତି । ବାଲ୍ୟ ଜୀବନର ଚିତ୍ରଣର ସ୍ମୃତି ହିଁ ତାଙ୍କର ସମ୍ବଳ । ସେ ତାଙ୍କ ବିବିଧ ପ୍ରୟାସରେ ଉତ୍ତୀର୍ଣ୍ଣ ହୋଇଛନ୍ତି ।''

୧୯୭୫ ମସିହାରେ ମୁଁ ବ୍ରହ୍ମପୁରରୁ ଜୀବାଣୁ ବିଭାଗର ପ୍ରାଧାପକ ଭାବେ କଟକ ବଦଳି ହୋଇ ଆସିଲି ଓ ୧୯୭୯ରେ ସରକାରୀ କାର୍ଯ୍ୟରୁ ଅବ୍ୟାହତି ନେଇ ଲେଖାଲେଖିରେ ଲାଗିଲି । ପ୍ରଥମ ଗଳ୍ପ ପୁସ୍ତକ ଭାବରେ ୧୯୭୬ରେ 'ସାତ ତିରିକି ସତର' ବ୍ରହ୍ମପୁରର ଦାସ ବ୍ରଦର୍ସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ସେଥିରେ (୧)ସାତ ତିରିକି ସତର, (୨)ହୁକୁମରେ ବିଶ୍ୱାସ, (୩)ଗାଁ ମଜଲିସ୍ (୪)ଅପର୍ଣ୍ଣର ଅପ୍ରୀତି (୫)ଭାଇ ବୋହୂଟି ବେକରେ ବନ୍ଧା, (୬)ଆମେରିକାରେ ମାଙ୍କଡ଼ାମୀ (୭)ବିଖ୍ୟାତ ଆନନ୍ଦ ଗୁଣ୍ଡି (୮)ଅଦଭୁତ ବାବା ପ୍ରଭୃତି ଗଳ୍ପଗୁଡ଼ିକ ସନ୍ନିବେଶିତ ଥିଲା ।

କୁଞ୍ଜବାବୁଙ୍କ ଭାଷାରେ- ''ଜୀବନର ଆଲେଖ୍ୟ ଅଙ୍କନରେ ଏହି ସଞ୍ଚୟନ ଏକ ଦୃଢ଼ ପଦକ୍ଷେପ, ସ୍ୱାତନ୍ତ୍ର୍ୟ ଚିହ୍ନିତ, ଏହା ଅନୁଭୂତିରେ ଯେପରି ଜୀବନ୍ତ, ହାସ୍ୟ ରସରେ ସେପରି ଉଜ୍ଜ୍ୱଳ ଓ ବ୍ୟଙ୍ଗରେ ସେପରି ଶାଣିତ, ବିକ୍ରମ ଯେ ସୁରସିକ ଏହା ପ୍ରମାଣ ପଦେ ପଦେ ।''

ଦ୍ୱିତୀୟ ଗଳ୍ପ ପୁସ୍ତକ- 'ଅଖଇରିଆ କଡ଼ା' ପ୍ରକାଶକ : ସାଥୀ ପ୍ରକାଶନୀ କଟକ ୧୯୮୧ । ଏ ଗଳ୍ପ ସଞ୍ଚୟନରେ (୧)ପ୍ରେମ ପରୀକ୍ଷା, (୨)ସନ୍ଦେହ ମୋଚନ (୩)ଦୋଷ କାହାର (୪)ଇତିହାସ (୫)ବାଲିଭୂତ (୬)ବିଜୁଳି ଝଲକ (୭)ରେଜେଷ୍ଟ୍ରି (୮)ଅଖଇରିଆ କଡ଼ା ପ୍ରଭୃତି ଆଠଟି ଗଳ୍ପ ରହିଛି ।

ନାନା ପତ୍ରପତ୍ରିକାରେ ମଧ୍ୟ ଭିନ୍ନ ଭିନ୍ନ ଧରଣର ଗଳ୍ପ ସବୁ ପ୍ରକାଶ ପାଇଛି ।

ସାମାଜିକ-୧-ବଂଶଦୋଷ, ୨-ଗୋଲକଧନ୍ଦା, ୩-ଦୁଇ, ୪-କାଟହାଣ୍ଡି, ୫-ଖାଲି ଭୁଇ, ୬-ମାଙ୍କଡ଼ଚିଡ଼

ମାନସିକ-୧-ମମତାର ମୃଗତୃଷ୍ଣା, ୨-କ୍ରୁଦ୍ଧ, ୩-ସାହାଜାହାନ, ୪-ବଡ଼ଦାଣ୍ଡ, ୫-ବଟୀଘର

ଐତିହାସିକ-୧-ଇତିହାସ, ୨-ଆତ୍ମପ୍ରତ୍ୟୟ, ୩-ସଂଗ୍ରାମୀ ଭଉଣୀ ।

ପୌରାଣିକ-୧-ମନ୍ଥରାର ପ୍ରତିହିଂସା, ୨-ଜରତାର ପ୍ରଜ୍ଞା, ୩-ଯକ୍ଷୀଣୀ ତାଡ଼କା ।

ବ୍ୟଙ୍ଗ-୧-ଯମ ଯନ୍ତ୍ରଣା, ୨-ମରାଳର ମୃତ୍ୟୁ, ୩-ଗଣେଶଙ୍କ ମୂଷାଚୋରି, ୪-ମହାଦେବଙ୍କ ଷଣ୍ଢ, ୫-ଜନ୍ମତିଥି

ଲୋକରତ୍ନ କୁଞ୍ଜ ବିହାରୀ ଦାଶଙ୍କ ପ୍ରେରଣା ଯୋଗୁଁ ମୋର ଗଳ୍ପ ଲେଖା ଯେପରି ରୂପ ନେଇ ଚାଲିଲା, ଓଡ଼ିଶାର ବିଶିଷ୍ଟ ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କ ପ୍ରୋତ୍ସାହନରୁ ମୋର ପ୍ରଥମ ଉପନ୍ୟାସ ଆତ୍ମପ୍ରକାଶ କରି ଉପନ୍ୟାସ ଲେଖା ଆଗେଇ ପାରିଥିଲା ।

ଉପନ୍ୟାସ-୧-'ମଣିମା ଡ଼ିହ', ଗ୍ରନ୍ଥମନ୍ଦିର ୧୯୮୧ । ଏହି ଉପନ୍ୟାସଟି ମୋର ବାଲ୍ୟସ୍ମୃତି ଉପରେ ଆଧାରିତ ଓ ଗବେଷଣା ଆଶ୍ରିତ । ସତ୍ୟବାଦୀ ମନ୍ଦିର ପ୍ରତିଷ୍ଠାତା ରାଜବଂଶର ଏହା ଶେଷ ସ୍ମୃତି । ୧୯୩୦/୩୧ ଆନ୍ଦୋଳନର ଘନଘଟା ବେଳେ ମୋର ନଅଦଶ ବର୍ଷର ବାଳୁତ ମନ ଉପରେ ଛାପ ପକାଇଥିଲା ଏକ ଧୀର ଶାନ୍ତ ବୃଦ୍ଧ ବ୍ୟକ୍ତିଙ୍କ ପ୍ରତିଭା । ଆନ୍ଦୋଳନର ଚଞ୍ଚଳତା ଭିତରେ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ସାଧାରଣ ବସ୍ତ୍ରଟିଏ ପରିଧାନ କରି ପାଛୁଡ଼ାଟିଏ କାନ୍ଧରେ ପକାଇ ଘଡ଼ିବାନ୍ଧି ହାତଟିକୁ ପିଠିପଟେ ରଖି ଅଳ୍ପ ଲଙ୍ଘି ମନ୍ଥର ଗତିରେ ସତ୍ୟବାଦୀ ବଜାର ଦେଇ ପୋଷ୍ଟ ଅଫିସ ଆଡ଼କୁ ଗତି କରି ଯାଉଥିବା ବୃଦ୍ଧଙ୍କୁ ସେତେବେଳେ କୌତୁହଳବଶତଃ ମୁଁ ଲକ୍ଷ୍ୟ କରୁଥିଲି । ତାଙ୍କୁ କେହି କେହି ମଣିମା ଓଳିଗି କହି ସମ୍ମାନ ଦେଖାଇଲେ ସେ ହାତ ଟେକି ଆଶୀର୍ବାଦ କରୁଥିଲେ ।

ସାକ୍ଷୀଗୋପାଳ ଚନ୍ଦନପୋଖରୀ ଉପରେ ଯେଉଁଠାରେ ମୋ ମାତା ପ୍ରଭୃତି ଅସହଯୋଗ ସଂଗ୍ରାମରେ ଝାସ ଦେଇଥିବା ନାରୀ କର୍ମୀମାନେ ଡ଼େରା ପକାଇଥିଲେ ତା'ର ଅନତିଦୂରରେ ଥିଲା ସେହି ମଣିମାଙ୍କ ଉଆସ (ରାଜପ୍ରାସାଦ) । ତାହା ଥିଲା ପାଚେରୀ ଘେରା ଟାଳ ବଙ୍ଗଳା । କୌତୁହଳ ଯୋଗୁଁ ମୁଁ ଓ ମୋ ତଳ ଭଉଣୀ ସେ ପାଚେରୀ ଭିତରକୁ ଖେଳିବାକୁ ଯାଇ ରାଜାଙ୍କ ରାଣୀ ଓ ପୋଇଲିଙ୍କ ଆଦର ପାଇଥିଲୁ ଓ ସେଠାରେ ପୋଷା ଯାଇଥିବା ଶୁଆ, ଶାରୀ, ବଣି, ପାରା, ହଂସ ଓ ନେଉଳ ପ୍ରଭୃତିଙ୍କୁ ଦେଖି ଖୁସିରେ ଖେଳିବାର ସୁଯୋଗ ପାଇଥିଲୁ ।

ସେ ଘଟଣାର ପଚାଶ ବର୍ଷ ପରେ, ଜନମାନବ ଶୂନ୍ୟ ସେହି ଉଆସର ଡିହଟି ଉପରେ ଗୋରୁ ଚରୁଥିବାର ଦେଖି ମୁଁ ମୋର ପୂର୍ବ ସ୍ମୃତିକୁ ଖୋଜି ବୁଲୁଥିଲି । ସେହି ସ୍ମୃତିରେ ପ୍ରତୀତି ମିଶି 'ମଣିମା ଡିହ' ଉପନ୍ୟାସ ରୂପନେଲା ।

'ମଣିମା ଡିହ' ପାଣ୍ଡୁଲିପିଟି ପଢ଼ି ତା'ର ମୁଖବନ୍ଧରେ ବିଶିଷ୍ଟ ଔପନ୍ୟାସିକ କାହ୍ନୁଚରଣ ମହାନ୍ତି ମନ୍ତବ୍ୟରେ ଲେଖିଥିଲେ ''ଓଡ଼ିଆ ଉପନ୍ୟାସର ଜନ୍ମଦାତା

ବ୍ୟାସକବି ଫକୀରମୋହନଙ୍କର ଖଣ୍ଡିଏ ଅଛପା ପାଣ୍ଡୁଲିପି ପଢୁଛି କି ? କାହ୍ନୁବାବୁ ସେ ଉପନ୍ୟାସଟିରେ ଉଦ୍‌ବୁଦ୍ଧ ହୋଇ ମୋତେ ଆଶୀର୍ବାଦ ଶୁଣାଇ କହିଥିଲେ । ''ଫକୀରମୋହନଙ୍କ ପରି କାର୍ଯ୍ୟରୁ ଅବସର ଗ୍ରହଣ ପରେ ଆପଣ ଉପନ୍ୟାସ ଲେଖାରେ ହାତ ଦେଇଛନ୍ତି । ଆପଣ ସେଥିରେ ଯଶସ୍ବୀ ହୁଅନ୍ତୁ ।''

ଦ୍ୱିତୀୟ ଉପନ୍ୟାସ-'ବୁଦ୍ଧଖୋଲର ମାୟା'-ପ୍ରକାଶକ ନିଉ ଷ୍ଟୁଡ଼େଣ୍ଟ ଷ୍ଟୋର, କଟକ-୧୯୮୫

କଳିଙ୍ଗର ସାଧବ ପୁଅ ଓ ସୁଦୂର ଆମେରିକା ଅଞ୍ଚଳରେ ରହିଥିବା ଓଡ଼ିଆ ସଂସ୍କୃତିର ପଦଚିହ୍ନକୁ ଆଧାର କରି ଏ ଉପନ୍ୟାସଟି ଲେଖା ଯାଇଛି । ସେଥିରେ ମୋର କଲେଜିଏଟ ସ୍କୁଲ ଛାତ୍ରାବାସର ଅନୁଭୂତି, ଦକ୍ଷିଣ ଓଡ଼ିଶା ଭ୍ରମଣର ସ୍ମୃତି ଓ ଓଡ଼ିଶାର ପୁରାତନ ଚାରୁକଳାର ପର୍ଯ୍ୟବେକ୍ଷଣ ପ୍ରଭୃତି ପରିବେଶିତ ହୋଇଛି । ଉତ୍କଳର ପ୍ରାଚୀନ ଓ ନବୀନ ଭାବଧାରାର ସମନ୍ୱୟ ଓ ହାସ୍ୟରସରେ ଏହା ଶାଣିତ ।

ଏ ପୁସ୍ତକର ମୁଖବନ୍ଧରେ କଥାକାର ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି- ''କେବଳ ମନୋରଞ୍ଜନ ନୁହେଁ, ଲୋକଶିକ୍ଷା ଓ ଲୋକ ଜାଗରଣ, ନିଜର ଐତିହ୍ୟ ସଂସ୍କୃତି ସଂପର୍କରେ ସଚେତନ ହେବା ପାଇଁ ଆହ୍ୱାନ ଠକ୍କର ଦାସଙ୍କ ରଚନାରେ ଅତିସୋଚାର ।'' x x ଆଜି ସାହିତ୍ୟରୁ ହାସ୍ୟରସ ବିଦାୟ ନେଇଛି । ହାସ୍ୟରସ ନାମରେ ଯାହା ପ୍ରାୟତଃ ଦୃଷ୍ଟିରେ ପଡୁଛି ସେ ସବୁ କୁତୁ କୁତୁ କରି ହସାଇବାର ଉଦ୍ୟମ । x x ଚରିତ୍ର ଓ ଘଟଣାର ବିଶିଷ୍ଟତା ସଂସ୍ଥାପନ ରୀତି ମଧରେ ହିଁ ହାସ୍ୟରସ ବିକଶିତ ହୋଇଥାଏ । ଏଥିପାଇଁ ଏକ ବିଶିଷ୍ଟ ଦୃଷ୍ଟିଭଙ୍ଗୀର ପ୍ରୟୋଜନ । x ଠକ୍କର ଦାସଙ୍କ ଉପନ୍ୟାସରେ ବହୁ ସ୍ଥାନରେ ସେପରି ହାସ୍ୟରସ ପରିବେଷିତ ହୋଇଥିବାରୁ ସେ ସବୁ ସୁଖପାଠ୍ୟ ହୋଇ ପାରିଛି ।''

ଗୋଟିଏ ମେସର ବର୍ଣ୍ଣନା ପ୍ରସଙ୍ଗରେ x x ଜଣେ ଅନାଡ଼ି (ବାରିକ) ହାତରେ ରାଜକୁମାରଙ୍କ କାଉଖୁମ୍ପା କେଶ କର୍ତ୍ତନ ଘଟଣା ପ୍ରଭୃତିର ପରିଣତି ପରି ଘଟଣା ଯେପରି ବାସ୍ତବ ସେପରି ହାସ୍ୟୋଦ୍ଦିପକ x x ରାଜକୁମାର ଶରମ ମିଜାଜରେ ଭାତ ଥାଳି ପାଖରେ ବସିବାବେଳେ ଖଣ୍ଡେ ପୋଚରା ଆଳୁ ପାଟିରେ ପଡ଼ିଯିବାରୁ କ୍ରୋଧରେ ଥାଳି ଗିନା ସବୁ ଫିଙ୍ଗି ଦେଇଛନ୍ତି x x ଭାତମାନେ ଆହତ ସୈନିକମାନଙ୍କ ପରି ଥାଳିରୁ ଡେଇଁ ଚାରିପଟେ ଗଡୁଥିଲେ, ତରକାରୀ, ଡ଼ାଲି ଗିନା ପ୍ରଭୃତି ଛତ୍ରଭଙ୍ଗ ଆହତ ଅଶ୍ୱପରି ଆଣ୍ଠୁ ମାଡ଼ି କାନ୍ଥ ନିକଟରେ ପଡ଼ିଥିଲେ ଓ ସେମାନଙ୍କ ସବାର ତରକାରୀ ପତ୍ର ସବୁ କାନ୍ଥ ବାଡ଼ରୁ ତଳକୁ ଓହ୍ଲାଇବାକୁ ଚେଷ୍ଟା କରୁଥିଲେ । x x ସାମାଟଳ ବାବୁଙ୍କ ନିର୍ବାଚନ ପ୍ରଚାର ପ୍ରଭୃତି ଅତ୍ୟନ୍ତ ବାସ୍ତବ । ମାତ୍ର ତାହାକୁ ପର୍ଯ୍ୟବେକ୍ଷଣ କରିବା ଦୃଷ୍ଟିଭଙ୍ଗୀ ଓ ବର୍ଣ୍ଣନା ଏହାକୁ ଶୁଦ୍ଧ ହାସ୍ୟରସରେ ନିର୍ବିତ କରି ପାରିଅଛି ।''

ତୃତୀୟ ଉପନ୍ୟାସ-ଅଲିଭା ଇତିହାସ-ପ୍ରକାଶକ ଗ୍ରନ୍ଥ ମନ୍ଦିର, କଟକ-୧୯୮୬ ।

ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟର ସମାଜର ରୂପରେଖ ଏଥିରେ ଅଙ୍କିତ ହୋଇଛି । ସେ ସମୟର ବିଭିନ୍ନ ପିଢ଼ିର ଲୋକଙ୍କ ଧମନୀରେ କି ପ୍ରକାର ସ୍ପନ୍ଦନ ଖେଳୁଥିଲା ଓ ତାହା ସେମାନଙ୍କ ସଂଗ୍ରାମୀ ଜୀବନର କାର୍ଯ୍ୟକୁ କିପରି ନିୟନ୍ତ୍ରଣ କରୁଥିଲା ତାହା ହିଁ ଏ ଉପନ୍ୟାସର ବିଷୟବସ୍ତୁ ।

ବିପ୍ଳବୀ କବି ଶ୍ରୀ ମନମୋହନ ମିଶ୍ର ତା'ର ମୁଖବନ୍ଧରେ ଲେଖିଛନ୍ତି- "ଏହି ଉପନ୍ୟାସର ପୃଷ୍ଠା ଉଜ୍ଜ୍ୱଳ ଭାବରେ ବିଗତ ଭାରତୀୟ ସ୍ୱାଧୀନତା କାହାଣୀକୁ ଉପସ୍ଥାପିତ କରିଛି । ବିକ୍ରମଙ୍କ ବାଲ୍ୟକାଳ, କୈଶୋର ଓ ପ୍ରଥମ ଯୌବନ ପ୍ରତ୍ୟକ୍ଷ ସ୍ୱାଧୀନତା ସଂଗ୍ରାମ ଭିତରେ ହିଁ ଗଢ଼ିଉଠିଥିଲା । ବାରମ୍ବାର ସେହି ସଂଗ୍ରାମର ନିଆଁ ଝାସ ତାଙ୍କ ଦେହରେ ଲାଗିଛି । x x x ଏହି ବହି 'ଅଲିଭା ଇତିହାସ' ବୈଜ୍ଞାନିକ ରଚନା ଓ ସତ୍ୟ ସନ୍ଧାନ ଉପରେ ଆଧାରିତ ହୋଇଛି । x x x ଲେଖକ ଯେଉଁ ରଙ୍ଗ ଭୂମିରେ ତାଙ୍କର ନାୟକଙ୍କୁ ଅତିକ୍ରମ କରାଇଛନ୍ତି, ସେହି ସମସ୍ତ ରଙ୍ଗଭୂମି ସହିତ ପରିଚୟ ଏକାନ୍ତ ନିବିଡ଼ । ବିଶେଷତଃ ଆସାମର ଚାହା ବଗିଚାର ଶ୍ରମିକ ମୂଳକ । x x ସେହି ଦୁନିଆକୁ ସେତେବେଳେ ପ୍ରତ୍ୟକ୍ଷ ନ କରି ମଧ ଶ୍ରଦ୍ଧେୟ ବିକ୍ରମ ଯେ କିପରି ତାହାର ଏପରି ବାସ୍ତବ ଜ୍ୱଳନ୍ତ ଚିତ୍ର ଦେଇ ପାରିଲେ ତାହା ମୋତେ ବିସ୍ମିତ କରିଛି । x x ମହାକବି କାଳିଦାସ କେବେ ଆକାଶରୁ ପୃଥିବୀକୁ ଦେଖି ନ ଥିଲେ । ତଥାପି ପୁଷ୍ପକ ବିମାନରେ ଉଡ଼ିଗଲା ବେଳେ ସୀତାଙ୍କୁ ସେତୁବନ୍ଧ ରାମେଶ୍ୱର ଦେଖାଇଥିଲାବେଳେ ଶ୍ରୀରାମ ଯାହା କହିଛନ୍ତି x x କାଳିଦାସଙ୍କର 'ପୁଷ୍ପକ ବିମାନ ଆରୋହଣ' ଥିଲା କବିର କଳ୍ପନା ନେତ୍ରର ଅବଲୋକନ । ତେଣୁ କାଳିଦାସ କବି, ସାହିତ୍ୟିକ । ସେହି କାରଣରୁ ଡାକ୍ତର ବିକ୍ରମ ଦାସଙ୍କ ବର୍ଣ୍ଣନା ରାଜି ସାହିତ୍ୟ ରାଜ୍ୟରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିଛି ।

୪ର୍ଥ ଉପନ୍ୟାସ-ଭଲେ ବିରାଜୋଜୀ-କଟକ ଷ୍ଟୁଡ଼େଣ୍ଟ ଷ୍ଟୋର ୧୯୮୬

ଜଗନ୍ନାଥ ସଂସ୍କୃତି ଓ ଧର୍ମର ଭାରତ ସାରା ପ୍ରଚାର ଓ ପ୍ରସାର ପାଇଁ ଜଗନ୍ନାଥ ପୀଠର ଅବୈତନିକ ଯାତ୍ରୀ ଗୁମାସ୍ତାଙ୍କର ଆତ୍ମନିଯୁକ୍ତି ଓ ବିପଦପୂର୍ଣ୍ଣ ଜୀବନର ଏକ କରୁଣ ବାସ୍ତବ ଚିତ୍ର ଏଥିରେ ସନ୍ନିବେଶିତ । ଅନ୍ୟ ସବୁ ଧର୍ମର ପ୍ରଚାର ପାଇଁ ବେତନଭୋଗୀ ଧର୍ମଯାଜକ ଓ ମୁଲ୍ଲା ପ୍ରଭୃତି ରହିଛନ୍ତି । ହିନ୍ଦୁଧର୍ମର ପ୍ରଚାର ଓ ପ୍ରସାର ପାଇଁ ସେପରି କୌଣସି ବ୍ୟବସ୍ଥା ନାହିଁ । ପୁରୀକୁ ଜଗନ୍ନାଥ ଦର୍ଶନ ପାଇଁ ଆସୁଥିବା ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଯାତ୍ରୀମାନେ ଜଣେ ନିର୍ଦ୍ଦିଷ୍ଟ ପଣ୍ଡାଙ୍କର ଆତିଥ୍ୟ ଗ୍ରହଣ କରିଥାଆନ୍ତି । ସେହି ପଣ୍ଡାଙ୍କ ଖାତାରେ ବଂଶ ପରମ୍ପରା ଅନୁସାରେ ସେ ଅଞ୍ଚଳର ଲୋକଙ୍କ ନାମ

ଥାଏ । ସେ ଅଞ୍ଚଳକୁ ଯାଇ ସେଠାର ଲୋକଙ୍କୁ ଆକୃଷ୍ଟ କରାଇ ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଅଣାଇ ଥାଆନ୍ତି । ସେମାନଙ୍କ ଜଗନ୍ନାଥ ମାହାତ୍ମ୍ୟ ପ୍ରଚାର ଦ୍ୱାରା ପ୍ରତି ବର୍ଷ ଲକ୍ଷ ଲକ୍ଷ ଲୋକ ଭାରତର ବିଭିନ୍ନ ପ୍ରାନ୍ତରୁ ପୁରୀ ଆସିଥାଆନ୍ତି । ଯାତ୍ରୀ ଗୁମାସ୍ତାମାନେ ଯାତ୍ରୀଙ୍କୁ ସାଙ୍ଗରେ ଆଣି ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେଇ ଜଗନ୍ନାଥ ଦର୍ଶନ କରାଇ ସେମାନଙ୍କୁ ଫେରାଇ ନିଅନ୍ତି । ଏହାକୁ ଯାତ୍ରୀ ଗୁମାସ୍ତାମାନେ ଏକ ଧର୍ମ କାର୍ଯ୍ୟ ବୋଲି ମନେ କରନ୍ତି । ସେହି ଯାତ୍ରୀମାନଙ୍କର ଜଗନ୍ନାଥଙ୍କଠାରେ ସମର୍ପଣ ଆଟିକା ବା ଭୋଗର ଅର୍ଥ ଲାଳସା ନଥାଏ । ସେମାନେ ଅଳ୍ପକେ ସନ୍ତୁଷ୍ଟ ଥାଆନ୍ତି, କେତେକ ଯାତ୍ରୀ ଗୁମାସ୍ତାଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବାର ଅନୁଭୂତିରୁ ହିଁ ଏ ଉପନ୍ୟାସଟି ଆତ୍ମପ୍ରକାଶ କରିଛି ।

୫ମ ଉପନ୍ୟାସ-'ନିର୍ବାସିତ ଗଜପତି'- ପ୍ରକାଶକ କଟକ ଷ୍ଟୁଡେଣ୍ଟ ଷ୍ଟୋର ।

ସ୍ୱାର୍ଥାନ୍ୱେଷୀ ବ୍ରିଟିଶ ରାଜ କୌଶଳରେ ଠାକୁର ରାଜାଙ୍କ ଆସନକୁ କ୍ଷୁର୍ଣ୍ଣ କରି ଜଗନ୍ନାଥ ମନ୍ଦିରର ଶାସନ ହାତକୁ ନେଇ ଭବିଷ୍ୟତର ବିଦ୍ରୋହକୁ ସମ୍ପୂର୍ଣ୍ଣ ରୂପେ ଦୂରେଇ ଦେବା ପାଇଁ କରିଥିବା ଷଡ଼ଯନ୍ତ୍ରର ଏହା ଏକ ଚିତ୍ର । ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଭାବରେ ଖ୍ୟାତ ଗଜପତି ବଂଶର କିଶୋର ଦାୟାଦ ୩ୟ ଦିବ୍ୟସିଂହ ଦେବଙ୍କ ଦେଶପ୍ରାଣତା ଓ କ୍ରମବିର୍ଦ୍ଧିଷ୍ଣୁ ଆଧିପତ୍ୟରେ ଅସ୍ଥିର ହୋଇ ଇଂରେଜ ସରକାର ଗଜପତିଙ୍କୁ ନିଃଶେଷ କରି ଦେବା ପରେ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ସୃଷ୍ଟି କରିଥିଲେ । ଏକ ଘୃଣ୍ୟ ଚକ୍ରାନ୍ତରେ ଗଜପତିଙ୍କ ଉପରେ ଏକ ବ୍ରହ୍ମହତ୍ୟା ଦୋଷ ଆରୋପ କରି ଧର୍ମଦ୍ରୋହୀ ନରହତ୍ୟାକାରୀ ଦୋଷରେ ତାଙ୍କ ଅନୁଗାମୀ ଗୋରା ବିଚାରପତିଙ୍କ ଦ୍ୱାରା ବିଚାର କରାଇ ଆଜୀବନ ଜେଲ ଦଣ୍ଡ ଦେଇ କଳାପାଣି ବା ଆଣ୍ଡାମାନ କାରାଗାରକୁ ପ୍ରେରଣ କରିଥିଲେ । ଏହି ପୁସ୍ତକରେ ପ୍ରକୃତ ଐତିହାସିକ ସତ୍ୟକୁ ଉଦ୍‌ଘାଟନ କରି ସେ କଳଙ୍କିତ ମିଥ୍ୟା ଇତିହାସକୁ ପୋଛି ଦିଆଯିବା ପାଇଁ ଉଦ୍ୟମ କରାଯାଇଛି ।

ଏ ପୁସ୍ତକର ଏକ ଦୀର୍ଘ ମୁଖବନ୍ଧରେ ବିଶିଷ୍ଟ ଇତିହାସ ଗବେଷକ ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି- ''ପୁସ୍ତକଟି ଆରମ୍ଭ କଲେ ଶେଷ ନ କରି ଛାଡ଼ି ହୁଏନାହିଁ । ତାହା କେବଳ ଅତି କରୁଣ ରସର ଅବତାରଣା ଯୋଗୁଁ ନୁହେଁ, ଓଡ଼ିଶାର ଏକ ମର୍ମନ୍ତୁଦ ଜାତୀୟ ସମସ୍ୟା ଏହି ପୁସ୍ତକର ଛତ୍ରେ ଛତ୍ରେ ପ୍ରକାଶିତ ହୋଇଥିବାରୁ ଏହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି । ଓଡ଼ିଶାର ଜାତୀୟ ଦେବତା ଶ୍ରୀ ଜଗନ୍ନାଥ ଓ ତାଙ୍କ ପ୍ରତିନିଧି ଠାକୁର ରାଜାଙ୍କୁ ଲୋକ ଚକ୍ଷୁରେ ହୀନ କରି ଚିତ୍ରିତ କରିବା ପାଇଁ ବିଦେଶୀ ଓ ବିଧର୍ମୀ ସରକାର ଯେଉଁ ଷଡ଼ଯନ୍ତ୍ର କରିଥିଲେ ସେହି ଐତିହାସିକ ଚକ୍ରାନ୍ତର ଏକ ନଗ୍ନ ଚିତ୍ର ଏହି ପୁସ୍ତକରେ ପ୍ରଦର୍ଶନ କରି ଶ୍ରଦ୍ଧେୟ ବିକ୍ରମଦାସ ଧନ୍ୟବାଦାର୍ହ ହୋଇ ଅଛନ୍ତି ।

୬ଷ୍ଠ ଉପନ୍ୟାସ-'ଅକଲ ଗୁଡୁମ୍'- ସାଥୀ ପ୍ରକାଶିନୀ-୧୯୯୦

ଆଧୁନିକ ଯୁଗର ସାମାଜିକ ଉଚ୍ଛୃଙ୍ଖଳତା ଓ ଯୁବସମାଜ ଉପରେ ତାହାର ପ୍ରଭାବର ଏକ ବାସ୍ତବ ଚିତ୍ର କ୍ଷୁଦ୍ର ଉପନ୍ୟାସର ପୃଷ୍ଠା ମଣ୍ଡନ କରିଛି ।

୭ମ 'ସ୍ୱପ୍ନର ପାଞ୍ଚାଳୀ'-ପ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୯୧, କଟକ

''ଯାହାନାହିଁ ଭାରତେ ତାହାନାହିଁ ଭାରତେ'' । ଏହି ଉକ୍ତିର ସତ୍ୟତାକୁ ଦର୍ଶାଇ ମହାଭାରତ ବର୍ଣ୍ଣିତ ପଞ୍ଚସ୍ୱାମୀ ଥିବା ଦ୍ରୌପଦୀ ବା ପାଞ୍ଚାଳିଙ୍କ ସହିତ ଏ ଯୁଗ ପର୍ଯ୍ୟନ୍ତ ଭାରତୀୟ ସମାଜରେ ରହିଥିବା ବହୁବିବାହ ପ୍ରଥାର ତୁଳନା କରାଯାଇ ଭାରତ ବିଭାଜନ ସମୟର ଏକ କରୁଣ କାହାଣୀ ଏ ଉପନ୍ୟାସରେ ବର୍ଣ୍ଣନା କରାଯାଇଛି ।

୭ମ ଉପନ୍ୟାସ-ତିନିପିଢ଼ିର ହୋଟେଲ-କଟକ ଷ୍ଟୁଡେଣ୍ଟସ ଷ୍ଟୋର, ୧୯୯୨

ଗୋଟିଏ ଓଡ଼ିଆ ପାଚକ ବଂଶର ତିନି ପୁରୁଷ ଧରି କଲିକତାରେ ରହିଥିବା ଏକ ହୋଟେଲ ବ୍ୟବସାୟ ଓ ତତ୍‌ସଂଲଗ୍ନ ଜୀବନଧାରାର ଚିତ୍ର ଏହି ଉପନ୍ୟାସରେ ପ୍ରତିଫଳିତ । ଜୀବନ ଧାରଣ ପାଇଁ ପୂର୍ବରୁ ବିଦେଶରେ ପାଚକ କାର୍ଯ୍ୟ କରୁଥିବା ଜଣେ ସାଧୁ ଓଡ଼ିଆ ବ୍ୟକ୍ତି ପରେ କଲିକତାର ମଧ୍ୟସ୍ଥଳରେ କ୍ଷୁଦ୍ର ହୋଟେଲଟିଏ କରିବାକୁ ସମର୍ଥ ହୋଇଥିଲେ । ତାହା ମୁସଲମାନ ଅଧ୍ୟୁଷିତ ଅଞ୍ଚଳ ଥିବାରୁ ଭାରତ ବିଭାଜନ ପୂର୍ବ ଦଙ୍ଗାବେଳେ ସେ ଆକ୍ରମିତ ହୋଇ ହୋଟେଲ ଜଗି ରହିଥିବା ବୃଦ୍ଧା ସେବାକାରିଣୀଙ୍କୁ ମଧ୍ୟ ନିର୍ମମ ଭାବେ ହତ୍ୟା କରାଯାଇଥିଲା । ସେପରି ବହୁ ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ ଗତି କରି କଲିକତାରେ ଥିବା ଓଡ଼ିଆମାନେ ବିଧର୍ମୀଙ୍କ ଅତ୍ୟାଚାର, ପଡ଼ୋଶୀଙ୍କ ଈର୍ଷା, ଦ୍ୱେଷ, ହେୟଜ୍ଞାନ ପ୍ରଭୃତିର ସମ୍ମୁଖୀନ ହୋଇ ମଧ୍ୟ କିପରି ସେଠାରେ ଜୀବିକା ନିର୍ବାହ କରି ଚାଲିଥିଲେ ସେହି ସତ୍ୟମୂଳକ ଘଟଣା ଏହି ଉପନ୍ୟାସରେ ରୂପ ନେଇଛି ।

ପୌରାଣିକ ଓ ଐତିହାସିକ ନିବନ୍ଧ :

୧-ଆମ ପାତାଳପୁରୀ-କଟକ ଷ୍ଟୁଡେଣ୍ଟ ଷ୍ଟୋର, ୧୯୮୪ ।

ମୁଖବନ୍ଧ ଲେଖିଛନ୍ତି ଐତିହାସିକ କରୁଣାସାଗର ବେହେରା ।

ଏ ନିବନ୍ଧରେ କଳିଙ୍ଗ ସାଧବ ପୁଅର ଜଳଯାତ୍ରାର ସୁଦୂର ପ୍ରସାରୀ ପ୍ରଭାବର ସୂଚନା ଦିଆଯାଇଛି । ଦକ୍ଷିଣ ଓ ମଧ୍ୟ ଆମେରିକା (ପେରୁ, ମେକ୍ସିକୋ, ବଲେଭିଆ, ଗୁଆତମାଳା) ପ୍ରଭୃତି ଦେଶର ଅତି ପୁରାତନ ମାୟା ଅଜତେକଓ ଇନ୍କା ପ୍ରଭୃତି ବିଲୁପ୍ତ ସଭ୍ୟତାର ଇତିହାସର ଗବେଷଣାରୁ ସେଠାରେ ଓଡ଼ିଆ ସାଧବ ଓ ରାଜପୁତ୍ରମାନେ ଆମ ସଂସ୍କୃତିର କି କି ପଦଚିହ୍ନ ଛାଡ଼ି ଆସିଛନ୍ତି ସେ ସବୁର ସଂକେତ ଏ ପୁସ୍ତିକାରେ ଦିଆଯାଇଛି ।

୨-ଅସୁର ରାମାୟଣ- କେ.କେ. ଏଣ୍ଡ କୋ, ବାଙ୍କାବଜାର, କଟକ ୧୯୮୫

ମାନବର ଆସୁରିକ ପ୍ରବୃତ୍ତିର ବିଶ୍ଳେଷଣ ପାଇଁ ରାମାୟଣର ଅସୁରମାନଙ୍କ ପରିଚୟ ଓ ସେମାନେ ସାଧାରଣ ସାମାଜିକ ବ୍ୟକ୍ତିରୁ, ପରିସ୍ଥିତି ଚାପରେ କିପରି ଆସୁରିକ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଅସାମାଜିକ କୃର ପ୍ରତିହିଂସା ପରାୟଣ ନରଖାଦକରେ ପରିଣତ ହେଲେ ତା'ର ଦୃଷ୍ଟାନ୍ତ ଏ ପୁସ୍ତକରେ ଦିଆଯାଇଛି ।

୩-ଆମ ଗଜପତି ଆମ ଗାଁ-ଗ୍ରନ୍ଥ ମନ୍ଦିର, ୧୯୯୩

ଅଖଣ୍ଡ ଓଡ଼ିଶାର ସ୍ୱାଧୀନ ନରପତି ମୁକୁନ୍ଦଦେବଙ୍କର ବଙ୍ଗ ସୁଲତାନଙ୍କ ସହିତ ଯୁଦ୍ଧ ସମୟରେ ରହସ୍ୟଜନକ ମୃତ୍ୟୁ ଘଟିବା ପରେ ଓଡ଼ିଶାର ସ୍ୱାଧୀନତା ରବି ରସାତଳଗାମୀ ହେଲେ । କଟକ ବାରବାଟୀ ଦୁର୍ଗ ସୁଲତାନଙ୍କ ଅଧିନକୁ ଗଲା । ସେହି ସମୟରେ ସୁଦୂର ରାଜମହେନ୍ଦ୍ରୀ (ଦକ୍ଷିଣ ଓଡ଼ିଶା) କାରାଗାରରେ ବନ୍ଦୀ ହୋଇ ରହିଥିବା ରାଜପୁରୁଷ ବୀର ରମେଇ ରାଉତରା କୌଶଳରେ କାରାମୁକ୍ତ ହୋଇ କେତେକ ପାଇକଙ୍କୁ ସୁସଂଗଠିତ କରି ଚିଲିକା ଠାରୁ କାଠଯୋଡ଼ି ପର୍ଯ୍ୟନ୍ତ ଭୂଖଣ୍ଡକୁ ସ୍ୱାଧୀନ କରି ଏକ ସ୍ୱାଧୀନ ଧର୍ମରାଜ୍ୟ ପ୍ରତିଷ୍ଠା କରି ମୋଗଲ ବାଦଶାହ ଧର୍ମ ନିରପେକ୍ଷ ଆକବରଙ୍କ ଦ୍ୱାରା ସ୍ୱୀକୃତ କରାଇ ନେଇଥିଲେ । ସେହି ରମେଇ ରାଉତରା ଗଜପତି ରାମଚନ୍ଦ୍ର ଦେବ ଭାବରେ ଅଭିଷିକ୍ତ ହୋଇ ପୁରୀ ମନ୍ଦିରର ଖାଲି ପଡ଼ିଥିବା ରତ୍ନ ସିଂହାସନରେ କଳାପାହାଡ଼ର ବିଗ୍ରହ ପୋଡ଼ିରୁ ସଂଗୃହିତ ବ୍ରହ୍ମପିଣ୍ଡକୁ ଅଣାଇ ବିଗ୍ରହ ଗଢ଼ାଇ ଶ୍ରୀମନ୍ଦିରରେ ପୁନଃପ୍ରତିଷ୍ଠା କରିଥିଲେ । ଜଗନ୍ନାଥଙ୍କ ନାମରେ ଧର୍ମ ଶାସନ ଚଳାଇବା ପାଇଁ ଜଗନ୍ନାଥଙ୍କ ପଣ୍ଡିତସଭା ମୁକ୍ତିମଣ୍ଡପକୁ ସୁସଂଗଠିତ କରିଥିଲେ । ସେହି ପଣ୍ଡିତମାନଙ୍କ ପାଇଁ ଶାସନ ଗ୍ରାମ ସବୁ ବସାଇଥିଲେ । ସେ ସବୁ ଧର୍ମକାର୍ଯ୍ୟ ଦ୍ୱାରା ସେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଭାବରେ ପରିଚିତ ହୋଇଥିଲେ । ତାଙ୍କ ସ୍ଥାପିତ ଏକ ଶାସନ ଗ୍ରାମର ବର୍ଣ୍ଣନା ଓ ସେ ଗ୍ରାମର ଐତିହାସିକ ପୁରୁଷ ମାନଙ୍କର ଯୁଗ ସୃଷ୍ଟିକାରୀ ବ୍ୟକ୍ତିତ୍ୱର ଆଭାସ ଏ ପୁସ୍ତକରେ ଦିଆଯାଇଛି ।

୪-ମୁଁ ଦଶରଥ-କଟକ ଷ୍ଟୁଡ଼େଣ୍ଟ ଷ୍ଟୋର, ୧୯୯୪

ଏହା ଔପନାସିକ ରଙ୍ଗରେ ଲେଖାଯାଇଛି । ଏ କାଳର ସମାଜରେ ରାବଣ ପରି ସ୍ୱାର୍ଥାନ୍ଧ ବ୍ୟଭିଚାରୀ ରାଜନୀତିଜ୍ଞ, ମାରିଚ ପରି ତାନ୍ତ୍ରିକ, ସୂପଣଖା ପରି ଦୁଶ୍ଚରିତ୍ରା ରାକ୍ଷସୀ ମାନଙ୍କର ଅଭାବ ନାହିଁ । ପରିସ୍ଥିତିର ଚାପରେ ମନ୍ଥରା ପରି ସେବାକାରିଣୀ ମଧ କୁଟିଳ ରାଜନୀତିର ଆଶ୍ରୟ ନେଇ ପରିବାର ଭିତରେ ବିଭ୍ରାଟ ସୃଷ୍ଟି କରିବାର ଦୃଷ୍ଟାନ୍ତ କମ୍ ନାହିଁ । ଏହି ପୌରାଣିକ ଉପନ୍ୟାସର ନାୟକ ମହାରାଜ ଦଶରଥ ତାଙ୍କ ଦିବ୍ୟଚକ୍ଷୁରେ ରାମାୟଣର ସମସ୍ତ ଘଟଣାବଳୀକୁ ଅବଲୋକନ କରି ତନ୍ନ ତନ୍ନ ଭାବରେ ବ୍ୟାଖ୍ୟା କରି ଚାଲିଛନ୍ତି ।

୫-ମୁଁ ବେଦ ବ୍ୟାସ-କଟକ ଷ୍ଟୁଡ଼େଣ୍ଟ ଷ୍ଟୋର-ମହାଭାରତର ଶ୍ରେଷ୍ଠ ବିନ୍ଧାଣୀ । ବେଦ ଓ ଉପନିଷଦର ପ୍ରଥମ ପ୍ରବକ୍ତା ମହର୍ଷି ବ୍ୟାସଦେବଙ୍କ ବ୍ୟକ୍ତିତ୍ୱ ଉପରେ ଲିଖିତ ।

ଜୀବନୀ :

୧-ମୋ ନନାଙ୍କ ଦେଶ-ଓଡ଼ିଶା ବୁକ୍ ଷ୍ଟୋର, ୧୯୮୩

ମୋର ପିତା ମହାମନୀଷୀ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ କୃତ ଜୀବନୀରେ ତାଙ୍କ ଜୀବନର ବହୁ କଥା ଛାଡ଼ି ଯାଇଛନ୍ତି ଓ କେତେକ ଲେଖିବା ମଧ ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ତେଣୁ ମୁଁ ଜାଣିଥିବା କେତେକ ବିଷୟ 'ମୋ ନନାଙ୍କ ଦେଶ' ପୁସ୍ତକରେ ମୁଁ ସନ୍ନିବେଶିତ କରିବାକୁ ଚେଷ୍ଟା କରିଛି ।

ସେ ପୁସ୍ତକ ଓ ଲେଖନ ସମ୍ବନ୍ଧରେ ମନ୍ତବ୍ୟ ଦେଇ ବିଶିଷ୍ଟ ସାହିତ୍ୟିକ ପଦ୍ମଭୂଷଣ କାଳିନ୍ଦିଚରଣ ପାଣିଗ୍ରାହୀ ଲେଖିଥିଲେ ।

''ଲେଖକ ନନାଙ୍କ ଭିତରେ ଦେଶକୁ ଓ ଦେଶ ଭିତରେ ନନାଙ୍କୁ ଦେଖି ଲେଖିଛନ୍ତି ଏହି ଗ୍ରନ୍ଥ । ବନ୍ଧୁମାନଙ୍କ ଗହଣରେ ବସି ଗପ କଲା ଭଳି ''ମୋ ନନାଙ୍କ ଦେଶ''କୁ ଅବିକଳ ଚିହ୍ନାଇବାରେ ଲେଖନୀକୁ ବିଶ୍ରାମ କାହିଁ ଦେଇ ନାହାନ୍ତି । ଲେଖକଙ୍କ କାନ୍ଧରେ ହାତ ପକାଇ ପାଠକ ବି ଏକାଗ୍ର ଚିତ୍ତରେ ଚାଲିଛି, ସବୁ ଚିତ୍ର ସବୁରି ମୁହଁ ଦେଖି ଦେଖିକା ।

ପାଠକକୁ 'ମୋ ନନାଙ୍କ ଦେଶ'କୁ ବୁଲାଇ ସେ ଏମିତି ନୟାନ୍ତ କରି ପକାଇଛନ୍ତି । ସେ ବିଚରା ଲେଖାକୁ ଛାଡ଼ି ଆଉ କୁଆଡ଼ିକି ଚାହିଁ ପାରେନି । ଭୋକ, ଶୋଷ, ନିଦ ଭୁଲିଗଲା ପରି ଲାଗେ । ସବୁ ଆଗ୍ରହ, ସବୁ ଆନନ୍ଦ, ଅଭାବ, ଉତ୍କଣ୍ଠା ଯୋଗାଇ ଦିଏତ ଏଇ ମହକଭରା ବକୁଳ-ଝୁରାଅନା; ସତ୍ୟ-ଅହିଂସା ହୋଇ ବିରାଜୁଛି ।''

ବହିଟି ବିଷୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ସଦାଶିବ ମିଶ୍ରଙ୍କ ମନ୍ତବ୍ୟ-

''ମୋ ନନାଙ୍କ ଦେଶ'' କାହାଣୀ ନୁହେଁ, ଉପନ୍ୟାସ ନୁହେଁ, ଉପାଖ୍ୟାନ ନୁହେଁ, ମାତ୍ର କାହାଣୀ ଉପନ୍ୟାସ ପରି ଉପଭୋଗ୍ୟ; ପଣ୍ଡିତ ନୀଳକଣ୍ଠଙ୍କ ପୁତ୍ର ଭାବରେ ଲେଖକ ନନାଙ୍କ ସାନ୍ନିଧରେ ବହୁ ଘଟଣା ଦେଖିଛନ୍ତି, ବହୁ ବିଶିଷ୍ଟ ଲୋକଙ୍କୁ ଭେଟିଛନ୍ତି, ବହୁ ପରିସ୍ଥିତି ଲକ୍ଷ୍ୟ କରିଛନ୍ତି । ବହୁ କାର୍ଯ୍ୟକ୍ରମରେ ସହାୟକ ହୋଇଛନ୍ତି । ସେ ସବୁ ବିନ୍ଧାଣୀ ପରି 'ମୋ ନନାଙ୍କ ଦେଶ'ରେ ଖଞ୍ଜି ପାରିଛନ୍ତି ।

୨-ଚିତ୍ରେ ନୀଳକଣ୍ଠ-ନୀଳକଣ୍ଠ ଶତବାର୍ଷିକୀ ପ୍ରକାଶନ-୧୯୮୫

ପଣ୍ଡିତ ନୀଳକଣ୍ଠଙ୍କ ଜୀବନର ପଦଚିହ୍ନ ଓ କାର୍ଯ୍ୟର ସୂଚନା, ଧାରାବାହିକ ଭାବେ ଫଟୋ ଚିତ୍ର ସହିତ ସୂଚାଇ ଦିଆଯାଇଛି ।

୩-ସ୍ୱାଧୀନଚେତା ବିଚାରପତି ଚଗଲା-ଗୋପବନ୍ଧୁ ସାହିତ୍ୟମନ୍ଦିର 'ସମାଜ'-୧୯୮୫

ଦେଶର ବିଭାଜନ ସମ୍ପର୍କିତ ବହୁ ଘଟଣା ସହିତ ଜଡ଼ିତ, ସ୍ୱାଧୀନ ଭାରତର ରାଜନୀତି ସହିତ ସଂପୃକ୍ତ, ବିଚକ୍ଷଣ ବିଚାରପତି ଏମ.ସି. ଚଗଲାଙ୍କ ଜୀବନୀ ଚର୍ଚ୍ଚା ଦ୍ୱାରା ସେ ସବୁ ସମୟର ବହୁ ଐତିହାସିକ ତଥ୍ୟ ଏ ପୁସ୍ତକରେ ଉଦ୍‌ଘାଟିତ ହୋଇଛି ।

୪-ଆଦିଜ୍ୟୋତି ପଣ୍ଡିତ ହରିହର ଦାସ ଶର୍ମା-କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର, ୧୯୯୨

ଓଡ଼ିଶାର ଅତି ବଡ଼ ଦୁର୍ଦ୍ଦିନ ନଅଙ୍କ ଦୁର୍ଭିକ୍ଷ ସମୟରେ, ବିରାଟ ଦିଗ୍‌ବିଜୟୀ ପଣ୍ଡିତ ହରିହର ଦାସ ଶର୍ମା, ନିଜର ଦୂରଦୃଷ୍ଟି ଯୋଗୁଁ ମାତ୍ର ୩୧ ବର୍ଷର ଜୀବନ କାଳ ମଧ୍ୟରେ ମୁମୂର୍ଷୁ ଓଡ଼ିଆ ଜାତିର ପ୍ରାଣ ସଞ୍ଚାର ପାଇଁ ଓଡ଼ିଶାର ଉନ୍ନତି କଳେ ଜଣେ ସଂସ୍କାରକ ଓ ଶିକ୍ଷାବିତ୍ ଭାବରେ, ସମାଜ ଓ ଶିକ୍ଷା କ୍ଷେତ୍ରରେ ଏକ ଯୁଗାନ୍ତକାରୀ ଉଦ୍ୟମର ମୂଳଦୁଆ ପକାଇଥିଲେ । ତାଙ୍କ ବିୟୋଗର ବହୁବର୍ଷ ପରେ ଜନ୍ମଲାଭ କରିଥିବା ସତ୍ୟବାଦୀ-ପଞ୍ଚସଖା ତାଙ୍କର ଶିକ୍ଷା ଓ ସଂସ୍କାରନୀତିକୁ ଆୟୁଧ କରିଥିଲେ । ସେମାନେ ହରିହରଙ୍କ ହାତଗଢ଼ା ତାଙ୍କ ଗ୍ରାମର ଭର୍ଣ୍ଣାକୁଲର ସ୍କୁଲଟିକୁ ନେଇ ବନବିଦ୍ୟାଳୟ ରୂପଦେଇ ତାଙ୍କ ମଣିଷ ଗଢ଼ା କାର୍ଯ୍ୟକୁ ସଂପୂର୍ଣ୍ଣ କରିଥିଲେ । ହରିହରଙ୍କ ଜୀବନୀ ଆଲୋଚନା କରି ତାଙ୍କ ତ୍ୟାଗପୂତ ଦେଶପ୍ରାଣ ଜୀବନ କାହାଣୀର ସୂଚନା ଏହି ପୁସ୍ତିକାରେ ପରିବେଷଣ କରିବାର ଉଦ୍ୟମ ହୋଇଛି ।

୫-ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ :

ପ୍ରକାଶକ-ନୀଳକଣ୍ଠ ସ୍ମୃତି ସମିତି, ଭୁବନେଶ୍ୱର-୧୯୯୩

୬-ଓଡ଼ିଆ ବଜାରର ଅଗ୍ନିଶିଖା ନେତାଜୀ ସୁଭାଷ- ପ୍ରକାଶକ କେ.କେ. ଏଣ୍ଡ କୋ, ବାଙ୍କାବଜାର-୧୯୯୭

ଏ ପୁସ୍ତକ ଦୁଇଟିରେ ନେତାଜୀ ସୁଭାଷଙ୍କର ତାଙ୍କ ଜନ୍ମଭୂମି ଓଡ଼ିଶା ଓ ଓଡ଼ିଶାର ନେତୃବର୍ଗ ସହିତ ସଂପର୍କରେ ଆଲୋଚନା କରାଯାଇଛି ।

ଏ ସବୁ ଜୀବନୀ ଗ୍ରନ୍ଥମାନଙ୍କ ବ୍ୟତୀତ ପ୍ରଚାରକ ଅନନ୍ତ ମିଶ୍ର, ଦେଶ ମିଶ୍ରଣର ଗୁଣ୍ଡୁଚି ମୂଷା ଶ୍ରୀ ବଳରାମ ମହାରଣା, ଆଦି ବିପ୍ଳବୀଣୀ ଶ୍ରୀମତୀ ସରଳା ଦେବୀ ପ୍ରଭୃତି କେତେକ ଜୀବନୀ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଛି ।

**ଭ୍ରମଣ କାହାଣୀ :**

୧-ସେପଟ ଦୁନିଆ-ପ୍ରକାଶକ - ନାଳନ୍ଦା, କଟକ ୧୯୮୧

ସବୁ ଅଭିଜ୍ଞତା ଠାରୁ ଭ୍ରମଣ ଅଭିଜ୍ଞତା ସ୍ୱତନ୍ତ୍ର । 'ଯେ ଦେଶକୁ ଯାଇ, ସେ ଫଳ ଖାଇ' । ବିଭିନ୍ନ ଦେଶର ଭିନ୍ନ ଭିନ୍ନ ଆଚାର ବ୍ୟବହାର, ଚାଲିଚଳଣ ସଂପର୍କରେ ଆସିଲେ ଭିନ୍ନ ସ୍ୱାଦର ଅଭିଜ୍ଞତା ମିଳେ । 'ସେପଟ ଦୁନିଆ' ମୋର ୟୁରୋପ ଆମେରିକା ଭ୍ରମଣର ସ୍ମାରକୀ । ସେ ସବୁ ସ୍ଥାନରେ ଲୋକ ଚରିତ୍ର, ସାମାଜିକ ସ୍ଥିତି ଓ ପ୍ରାକୃତିକ ଦୃଶ୍ୟମାନଙ୍କର ନିଖୁଣ ଚିତ୍ର ଏ ପୁସ୍ତକରେ ଦିଆଯାଇଛି ।

୨-ଚିର ବସନ୍ତର ଦେଶ ମରିସସ- କଟକ ପବ୍ଲିଶିଙ୍ଗ ହାଉସ, ୧୯୯୬

ଏ ପୁସ୍ତିକାର ନିଜର ଅଭିଜ୍ଞତା ଦୃଷ୍ଟିରୁ ଦକ୍ଷିଣ ଗୋଲାର୍ଦ୍ଧର ସେହି ସ୍ୱାଧୀନ ଦ୍ୱୀପ ରାଜ୍ୟଟିର ସ୍ୱର୍ଗୀୟ ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ସଙ୍ଗେ ସଙ୍ଗେ ସାମାଜିକ ଐତିହାସିକ ଓ ସାଂସ୍କୃତିକ ସ୍ଥିତିର ଅବଧାରଣା କରାଯାଇଛି ।

୩, ୪- 'ଏବର ଆମେରିକା' ଓ ପୂର୍ବ ଭୂଖଣ୍ଡକୁ ସ୍ନେହେଲି ତ୍ରିଭୁଜ ଦୁଇଟି ପୁସ୍ତିକା ପ୍ରକାଶନ ଅପେକ୍ଷାରେ କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା, ଶ୍ୟାମ, ହଂକଂ, ସିଂଘାପୁର ପ୍ରଭୃତି ପର୍ଯ୍ୟଟନର ଅଭିଜ୍ଞତା ସେ ସବୁରେ ବର୍ଣ୍ଣିତ ହୋଇଛି ।

**କବିତା :**

ଚଉରାଅଶୀ କବିତା-ପ୍ରକାଶକ ଓଡ଼ିଶା ବୁକ୍ ଷ୍ଟୋର, ୧୯୯୬

ବିଭିନ୍ନ ଭାବନାର ପରିପ୍ରକାଶ ପାଇଁ କବିତା ଏକ ପ୍ରଧାନ ମାଧ୍ୟମ । ଯେତେବେଳେ ଇଚ୍ଛା ହୁଏ, ଯେଉଁଥିରେ ଇଚ୍ଛା ହୁଏ, ଯେଉଁ କାଗଜ ଟୁକୁରା ମିଳିଲେ ତା' ଉପରେ କବିତାଟିଏ ଲେଖିଦେଇ ଟିକିଏ ଆନନ୍ଦ ଉପଭୋଗ କରି ତାକୁ ପକାଇ ଦେବା ମୋର ଅଭ୍ୟାସ । ବିଧିବଦ୍ଧ ଭାବରେ କାବ୍ୟ କବିତା ରଚନା କରିବାର ମୋହ ମୋର ନାହିଁ । ତାତ୍କାଳିକ କବି ଭାବରେ ମୋର କବିତାମାନଙ୍କରୁ କେତେ ପତ୍ରପତ୍ରିକାରେ ମୋ ନାମରେ, ଛଦ୍ମ ନାମରେ ଓ ବିନା ନାମରେ ପ୍ରକାଶିତ ହୋଇଛି ।

ଏ ପୁସ୍ତକର ମୁଖବନ୍ଧରେ, କବି ସଚ୍ଚିଦାନନ୍ଦ ରାଉତରାୟ (ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ) ଲେଖିଛନ୍ତି-

''ତାଙ୍କ କବିତା ଗୁଡ଼ିକ ମାନବଧର୍ମୀ ଏବଂ ତାଙ୍କ ନୈତିକ ଦୃଷ୍ଟିକୋଣର ପରିପ୍ରକାଶ । x x x ଧର୍ମଭିତ୍ତିକ କବିତାଗୁଡ଼ିକ ଯେପରି ସରଳ ଓ ସଂବେଦନଶୀଳ, ସେହିପରି ଏକ ନିର୍ମଳ କଳୁଷହୀନ ଜୀବନର ଭୂୟୋଦର୍ଶନରେ ପ୍ରବୁଦ୍ଧ x x ପ୍ରଚଳିତ ସମାଜ ଅବସ୍ଥାକୁ

ଯେଉଁମାନେ ଭବ୍ୟ ସଂସ୍କାରବାଦ ଦ୍ୱାରା ସୁଧାରିବାର ପକ୍ଷପାତୀ ଲେଖକ ବୋଧହୁଏ ସେହିମାନଙ୍କ ଆଶାବାଦରେ ବିଶ୍ୱାସୀ । x x ଆମ ଦୂଷିତ ଓ ବାଧିତ ସମାଜର ଭ୍ରଷ୍ଟତା ଓ ଭଣ୍ଡାମି ତାଙ୍କ କବିତାର କାଠଗଡ଼ା ଭିତରେ ଭୟତ୍ରସ୍ତ ଆସାମୀ ପରି ଠିଆ ହୋଇଛନ୍ତି । ସେମାନଙ୍କର ବିଚାରକ ଏ ଦେଶର ଗଣ-ଦେବତା । କବି ହିଁ ସେ'ଠି ମୁଖ୍ୟ ଅଭିଯୋକ୍ତା । କବି ବିକ୍ରମ ଦାସ ତାଙ୍କର ସେ ଭୂମିକାଟି ସୁଚାରୁ ରୂପେ ତୁଲାଇ ପାରିଛନ୍ତି ।''

ସ୍ୱର୍ଗତ କବି ଦୁର୍ଗାମାଧବ ମିଶ୍ର ଚଉରାଅଶୀ କବିତା ବହିଟି ପଢ଼ିସାରି ସ୍ୱତଃପ୍ରବୃତ୍ତ ହୋଇ ମୋ ପାଖକୁ ଲେଖିଥିଲେ-

ଚନ୍ଦ୍ରାଲୋକ
ଭୁବନେଶ୍ୱର
୫.୪.୧୯୯୬

ମାନନୀୟେଷୁ,

x ଅଟକି ଗଲି 'କାହିଁଗଲେ ସେ ଦେବତା'ଠାରେ । ବଡ଼ ମର୍ମସ୍ପର୍ଶୀ କବିତାଟି । ଆପଣ ଯେ ଏତେବଡ଼ ମହାତ୍ମାଙ୍କ ପୁତ୍ର ତାହା ପ୍ରମାଣ କରି ଦେଇଛି ବୁଢ଼ୀର କଥାରେ-

ଲୋଡ଼ା ନାହିଁ ମୋର ପଇସା ଚାଉଳ-
ତାଙ୍କରି ଆଶିଷ ମୋହର ଲୋଡ଼ା
ଘେନ ହେ ଏତକ, ଦିଅ ମୋତେ ବାବୁ-
ତାଙ୍କ ପଦେ ଲଗା ଫୁଲର ତୋଡ଼ା,
ପାଇନାହିଁ ସିଏ ଦେଖିବତ ନାହିଁ-
ସେଇ ନୀଳକଣ୍ଠେ ଆଉ ଏ ଦେଶେ
ଯେ ଦେଶେ ଦେବତା, ଯାଇଛନ୍ତି ଚାଲି-
ଚାହିଁଛି କେବଳ ତାହାରି ଆଶେ ।''

ମନେ ପଡ଼ିଗଲା ଗୋଦାବରୀଶ ମିଶ୍ର ଓ ଉତ୍କଳମଣିଙ୍କୁ ନେଇ ସେହି ଦୃଶ୍ୟଟି । ସେ'ଦିନ ସକାଳୁ ସବୁଦିନ ପରି ଗୋଦାବରୀଶ ଓ ଅନ୍ୟ ଶିକ୍ଷକମାନେ ଗୋପବନ୍ଧୁଙ୍କୁ ମୁଣ୍ଡିଆ ମାରି ନିଜ ନିଜ କ୍ଲାସକୁ ଯିବାବେଳେ, ଗୋଦାବରୀଶ ମୁଣ୍ଡିଆ ମାରି ଉଠି ପଡ଼ିଲା ବେଳକୁ ତାଙ୍କୁ ଗୋପବନ୍ଧୁ ବାବୁ କୁଣ୍ଢାଇ ପକାଇ କହିଲେ ''ଗୋଦାବରୀଶ, ତୁମେ ଆଜି କବି ହୋଇଗଲ ।'' ଚକିତ ହୋଇ ଚାହିଁଲେ ଗୋଦାବରୀଶ । ଗୋପବନ୍ଧୁ ତାଙ୍କ ହାତକୁ ବଢ଼ାଇ ଦେଲେ ସେ'ଦିନ ଡାକରେ ଆସିଥିବା ଉତ୍କଳ ସାହିତ୍ୟ ପତ୍ରିକାଟିକୁ ।

ସେଥିରେ ପ୍ରକାଶ ପାଇଥିଲା ତାଙ୍କର କାଳଜୟୀ "କାଳିଜାଇ" କବିତା । ସେହି ପୃଷ୍ଠାଟି ଯେଉଁଠି ଲେଖା ଯାଇଥିଲା-

'ଭଲ କରି ନାଆ ବୁହାରେ ନାଉରୀ ଝିଅକୁ ମାଡୁଛି ଡର ।
ଗଡେ ଗଡଲୋକ ଚାହିଁ ରହିଥିବେ-ଝିଅ ଯିବ ଶାଶୁଘର ।

(ଇତ୍ୟାଦି) ସେହି ଗୋଟିଏ କବିତାରେ ସେ ଏବେ ମଧ ବଞ୍ଚି ଯାଇଛନ୍ତି ଓଡ଼ିଆ ବୁଦ୍ଧିଜୀବୀ, କାବ୍ୟରସ ପିପାସୁ ମାନଙ୍କ ଭିତରେ ।

ଆପଣଙ୍କ ଭିତରର ସ୍ୱର୍ଣ୍ଣକାତର ବ୍ୟକ୍ତିତ୍ୱଟି ଆମେ ସବୁ ଦେଖି ନ ଥିଲୁ । ଅନ୍ତରର ନିଭୃତତମ କୋଣରୁ ଆପଣ ଏଇ ଯେଉଁ କବିତାଟି ଲେଖିଛନ୍ତି ସେଥିପାଇଁ ଆପଣ ବରିଷ୍ଠ କବିମାନଙ୍କର ସମପଂକ୍ତି ହେବାର ଯୋଗ୍ୟତା ହାସଲ କରିଛନ୍ତି । ଏଥିରେ ସନ୍ଦେହ ନାହିଁ । ମୋର ହାର୍ଦ୍ଦିକ ଅଭିନନ୍ଦନ ଗ୍ରହଣ କରିବେ ।

ଆପଣଙ୍କର ସ୍ନେହଭିକ୍ଷୁ
ଦୁର୍ଗାମାଧବ

**ଶିଶୁ ଓ ପୌଢ଼ ବିଜ୍ଞାନ ସାହିତ୍ୟ :**

ସତର ଅଠରଟି କ୍ଷୁଦ୍ର ପୁସ୍ତକ-ବିଭିନ୍ନ ପ୍ରକାଶକ, କଟକ ।

ଛୋଟ ଛୋଟ ଗଳ୍ପର ଦୃଷ୍ଟାନ୍ତ ଦେଇ ସ୍ୱାସ୍ଥ୍ୟ ଓ ଶରୀର ବିଜ୍ଞାନକୁ ସରଳ ଭାଷାରେ ପ୍ରଚାର କରାଇବା ପାଇଁ ଏସବୁ ଲିଖିତ । ସେମାନଙ୍କର ଆକର୍ଷଣୀୟ ନାମ ହେଲା- ରସଗୋଲା ବିଭାଘର, ଟିଣିଟିଣିଆ ଭୂତ, ସେ ଯୁଗ ଓ ଏ ଯୁଗ, ରୋଗରୁ କ୍ଷୟ ଓ ବୃଦ୍ଧି, ଅଦ୍ଭୁତକୋଠା (ଆମ ନିଜ ଘର), ପୋଥିବାଇଗଣ, ମନରଜା, ପାଣିର ସଂସାର, ଅନ୍ଧାରକଣା, ଗୋଳମାଳିଆ ପେଟ, ଆମରି ଶିଶୁ, ମଗଜ ବଳରେ ମଣିଷ ରାଜା, ଆମ ପିଇବା ପାଣି, ରୋଗରୁ ରକ୍ଷା ପାଇବାର ଶକ୍ତି, ଦେଖି ଚିହ୍ନି ବାଟଭୁଲା ପ୍ରଭୃତି । ଗଳ୍ପଛଡ଼ା 'ପିଲାଙ୍କ ସ୍ୱାସ୍ଥ୍ୟଗୀତି' ନାମକ ପିଲାଙ୍କ ପାଇଁ ଏକ କବିତାପୁସ୍ତକ ଓ ଶରୀର ବିଜ୍ଞାନ, ସ୍ୱାସ୍ଥ୍ୟ ବିଜ୍ଞାନ ପ୍ରଭୃତି ପାଠ୍ୟ ପୁସ୍ତକ କଟକର ଜଣାଶୁଣା ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ।

ଐତିହାସିକ ଇଂରାଜୀ ପୁସ୍ତକ Domains of Lord Jagannath:Publisher-B.R. Publication, Delhi ଏହାର ମୁଖବନ୍ଧ ଲେଖିଛନ୍ତି କବି ଶଚି ରାଉତରା, ଉପୋଦ୍‌ଘାତ ଲେଖିଛନ୍ତି ସତ୍ୟ ନାରାୟଣ ରାଜଗୁରୁ । ସେ ସମ୍ବନ୍ଧରେ ରାଜଗୁରୁଙ୍କ ପତ୍ରାଳାପ ।

ପରମ ସ୍ନେହାସ୍ପଦ ଡ଼:ବିକ୍ରମ ବାବୁ, ପୁରୀ

୨୩.୧.୯୨

ମୋର ଆନ୍ତରିକ ଆଶୀର୍ବାଦ ଗ୍ରହଣ କରିବେ । ଆପଣଙ୍କ ପତ୍ରଟି ଯଥା ସମୟରେ ଆୟୁଷ୍ମାନ୍ ସର୍ବେଶ୍ଵରଙ୍କ ଠାରୁ ପାଇଥିଲି । ଲେଖାଟି ଅତି ସୁନ୍ଦର ହୋଇଛି । ସେଥିରେ ଆପଣ ଯେଉଁ ସୂଚନା ଦେଇଛନ୍ତି, ତାହା ବର୍ତ୍ତମାନ ହିନ୍ଦୁ ସମାଜକୁ ଏକ ନୂତନ ଉପାଦାନ ।

ମୁଁ ଏଥିସଙ୍ଗେ ମୋ ମନ୍ତବ୍ୟଟି ସଂକ୍ଷେପରେ ଲେଖି ପଠାଇଲି । ମନୋନୀତ ହେଲେ ଛାପିବେ ।

ଆଶାକରେ ଆପଣ ସର୍ବକୁଶଳରେ ଥିବେ ।

ଆପଣଙ୍କର ଆଶୀର୍ବାଦକ

ଶ୍ରୀ ସତ୍ୟନାରାୟଣ ରାଜଗୁରୁ

ମନ୍ତବ୍ୟ-Foreword

This little book, + + + by Dr. Bikram Das, a medical Professor, is a unique work in the field of cultural history relating to Lord Jagannath and the Thakur Raja of Puri. It describes how the glorious administration of the sixteenth century developed in Purushottamadham and how the Gajapati Rajas were respected by Rajas, Zamindars and people of Orissa, even after they were deprived of power and independence.

\+ + +

I hope this book will enhance the glory of Orissa as also of Hindus with their sense of unity in the modern world.

Sd/- Satyanarayan Rajguru

26.1.1992

ଏ ବହିଟି ପ୍ରକାଶନ ପାଇଁ ଏତେ ସମୟ ଲାଗିଲା ଯେ ରାଜଗୁରୁଙ୍କ ତିରୋଧାନ ସମୟରେ ତା'ର ପ୍ରୁଫ ଦିଲ୍ଲୀରୁ ଆସି ପହଞ୍ଚିଲା । ତେଣୁ ଦୁର୍ଭାଗ୍ୟର ବିଷୟ ଯେ ପ୍ରକାଶିତ ପୁସ୍ତକଟି ତାଙ୍କୁ ଭେଟି ଦେବାରୁ ବଞ୍ଚିତ ହେଲି ।

ପରେ ପ୍ରକାଶିତ ପୁସ୍ତକ - ୧. 'ଲୁହ ଓ ଲହୁର କାଶ୍ମୀର-ଓଡ଼ିଶା ବୁକ୍ ଷ୍ଟୋର'

୨. ଯୁଗାନ୍ତକାରୀ ସତ୍ୟବାଦୀ ଗୁରୁକୁଳ (ତଥ୍ୟସମ୍ବଳିତ) (ଓଡ଼ିଶା ସାହିତ୍ୟ ଏକାଡ଼େମୀ)

ଅପ୍ରକାଶିତ ପାଣ୍ଡୁଲିପି-

୧.ମୁଁ ଅର୍ଜୁନ, କାଳ ପୁରୁଷର କଳିଙ୍ଗ ଲିପି, ମଞ୍ଜି କି ମଞ୍ଜିରୁ ଗଛ ପ୍ରଭୃତି ପ୍ରକାଶିତ ହେବା ଅପେକ୍ଷାରେ ଥିବାବେଳେ, ମଣିମାଡ଼ିହର ଇଂରେଜ ଓ ବଙ୍ଗଳା ଅନୁବାଦ ଓ ଅନ୍ୟ କେତେକ ପୁସ୍ତକ ଅପ୍ରକାଶିତ ହୋଇ ରହିଛି ।

ପ୍ରକାଶନ ଶିଳ୍ପର ମନ୍ଥର ଗତି ଯୋଗୁଁ ପାଠକ ମାନଙ୍କଠାରୁ ଦୂରେଇ ନ ଯିବା ପାଇଁ ମୁଁ ପତ୍ରପତ୍ରିକା ମାନଙ୍କର ଲେଖାମାନ ପ୍ରକାଶ କରିବାରେ ଲାଗିଛି । ସେମାନଙ୍କ ଭିତରେ ଗଳ୍ପ, ପ୍ରବନ୍ଧ, ସ୍ମୃତିଚାରଣ ଓ ଅନ୍ୟାନ୍ୟ ପ୍ରବନ୍ଧ ଓ କବିତା ଅନ୍ତର୍ଭୁକ୍ତ । ମୋ ଲେଖାରେ ମୋତେ ଉତ୍ସାହିତ କରିବାକୁ, ସାହିତ୍ୟ ସଂସଦ, ସହକାର ମକର ମିଳନ, ସାହିତ୍ୟ ଏକାଡ଼େମୀ, ସ୍ୱାଗତିକା, ନୀଳଶୈଳ ପ୍ରଭୃତି ଅନୁଷ୍ଠାନମାନେ ମୋତେ ଉପନ୍ୟାସ, ଗଳ୍ପ ଓ ସମୂହ ଲେଖା ପ୍ରଭୃତି ପାଇଁ ସମ୍ମାନିତ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ମୋର ବହୁ ବନ୍ଧୁ ଶୁଭାକାଂକ୍ଷୀ ଓ ଗୁରୁଜନ ନାନା ଭାବରେ ମୋତେ ଉତ୍ସାହିତ କରି ଆସିଛନ୍ତି ।

ମେଡ଼ିକାଲ କଲେଜ ଛାତ୍ର ଓ ଶିକ୍ଷକ ମାନଙ୍କ ଦ୍ୱାରା ସମ୍ମାନିତ ହେବା ସଙ୍ଗେ ସଙ୍ଗେ ବିଜ୍ଞାନ ସହିତ ସଂପୃକ୍ତ ସଂସ୍ଥାମାନଙ୍କ ଦ୍ୱାରା ମଧ୍ୟ ସମ୍ମାନିତ ହୋଇଛି ।

ସର୍ବୋପରି ସାମାଜିକ ସ୍ତରରେ ଦୁଇ ଦୁଇଥର ଉତ୍କଳ ଦିବସ ସମ୍ମାନ ଓ ମୋର ଜନ୍ମପୀଠ ସତ୍ୟବାଦୀ ସମ୍ମାନ ପ୍ରଭୃତି ପାଇଁ ମୁଁ ଦେଶବାସୀଙ୍କ ପ୍ରତି କୃତଜ୍ଞ ।

କିନ୍ତୁ ଲେଖକର ସବୁଠାରୁ ଆତ୍ମସନ୍ତୋଷ ହେଲା ଯଦି କେହି ତା'ର ଲେଖା ପଢ଼ି ଦୁଇପଦ କହେ କିମ୍ବା ଲେଖେ । ସେଥିପାଇଁ ପଣ୍ଡିତ ନୀଳକଣ୍ଠ 'କୋଣାର୍କେ'ରେ ଲେଖିଯାଇଛନ୍ତି ।

''ଗ୍ରାହକତା ସିନା କବି ସ୍ୱର୍ଗ ସୁଖ
ଆନମୂଲେ କବି ତୋଷଇ କେହି ।''

ମୋ ସାଙ୍ଗରୁ ଅନେକ ଚାଲିଗଲେଣି, କେବେ ହଠାତ୍ ମୋର କଲମ ବନ୍ଦ ହୋଇଯିବ କହି ହେବନି । ବହୁ ଦିନୁ ଆୟକାରୀ କର୍ମପନ୍ଥା ବା ଲକ୍ଷ୍ମୀଙ୍କ ପଥ ଅନୁସରଣ ନ କରି ମୁଁ ମୋର ଜନ୍ମଦାତ୍ରୀ ରୂପୀ (ସରସ୍ୱତୀ ପୂଜା, ମୋର ଜନ୍ମଦିନ) ଦେବୀ ସରସ୍ୱତୀଙ୍କର ଶୁଭ୍ର ପଥ ଅନୁସରଣ କରି ଚାଲିଛି । ତାଙ୍କରି ଆଶୀର୍ବାଦ ମୋର ପାଥେୟ ।



# କାଳର ରୀତି ଓ ଗତି

ଜୀବନ ହିଁ ଗତିଶୀଳ । ଗଡ୍‌ଡାଳିକା ପ୍ରବାହରେ କ୍ଷୁଦ୍ର ଶୀଳାଖଣ୍ଡ ଗଡ଼ି ଚାଲିଲା ଭଳି ସମୟ ପ୍ରବାହରେ ଜୀବନ ଗଡ଼ିଚାଲେ, ସେପରି ଗଡୁ ଗଡୁ କେତେକ ସ୍ମୃତିର ଛାପ ମନୁଷ୍ୟ ମନ ଭିତରେ ଲାଗିଯାଏ । ବେଳେବେଳେ ମନ ଭିତରୁ ତାହା ଉଙ୍କିମାରି ଅତୀତକୁ ଜୀବନ୍ତ କରିଦିଏ ।

ବାସ୍ତବ ଜଗତରେ ମନୁଷ୍ୟ ଗୋଟିଏ ଯାତ୍ରୀ । ପଦଯାତ୍ରା ଛଡ଼ା ତା'ର ଯାତ୍ରାରେ ତାକୁ ବହୁତ ଯାନବାହନର ଆଶ୍ରା ମଧ ନେବାକୁ ହୁଏ । ଜଣେ ବୟସ୍କ ଲୋକ ହିସାବରେ ମୁଁ ମୋର ଦୀର୍ଘ ଜୀବନ ମଧରେ ମୋର ନାନା ସ୍ଥାନ ଭ୍ରମଣର ଅଭିଜ୍ଞତା ରହିଛି । ଆଖପାଖ ସ୍ଥାନ ଠାରୁ ପୃଥିବୀ ଆରପାଖର ବହୁ ଦୂର ଦୂରାନ୍ତ ସ୍ଥାନକୁ ଯିବା ପାଇଁ ମୋତେ ବହୁ ପ୍ରକାର ଯାନବାହନର ଆଶ୍ରା ନେବାକୁ ପଡ଼ିଛି, ସେହି ସ୍ଥାନ ଯାନବାହନଙ୍କ ସହିତ ମୋର ଯେଉଁ ଅଲିଭା ସ୍ମୃତି ଗୁଡ଼ିକ ଗୁନ୍ଥି ହୋଇ ରହିଛନ୍ତି, ସେଗୁଡ଼ିକ ବେଳେ ବେଳେ ମୋ ମାନସପଟରେ ଉଦ୍ଭାସିତ ହୋଇ ଉଠନ୍ତି । ସେମାନଙ୍କୁ ମୁଁ ମନ ଭିତରୁ ଦୂରେଇ ନେଇପାରେ ନାହିଁ । ସେହିମାନଙ୍କ ଭିତରୁ ପିଲାଦିନର ବଳଦଗାଡ଼ି ସଂପର୍କିତ ଛାପ ମୋ ମନରୁ ଲିଭି ନାହିଁ ।

## ସବାରୀ ଓ ବଳଦଗାଡ଼ିର ସ୍ମୃତି

ଯେତେବେଳେ ଉନ୍ନତ ରାସ୍ତାଘାଟ ନ ଥିଲା, ଯାନ୍ତ୍ରିକ ଯାନ ମାନଙ୍କର ପ୍ରଚଳନ ନ ଥିଲା, ସେତେବେଳେ ଯାତାୟତର ପ୍ରଧାନ ସାଥୀ ଥିଲା ବଳଦଗାଡ଼ି । ସେତେବେଳେ ଅବଶ୍ୟ ମଣିଷବୁହା ଗାଡ଼ି ସବାରୀର ପ୍ରଚଳନ ଥିଲା । ଥିଲାବାଲାମାନେ ନ ଥିଲାବାଲା ଗଉଡ଼ଙ୍କ କାନ୍ଧ ଉପର ସବାରୀରେ ବସି ଗନ୍ତବ୍ୟ ସ୍ଥାନକୁ ଯିବାଆସିବା କରୁଥିଲେ ।

ଊନବିଂଶ ଶତାବ୍ଦୀର ମଧ ଭାଗରେ କଟକ ସହର ଖରାଦିନ ଛଡ଼ା ଅନ୍ୟଦିନେ ଏକ କର୍ଦମମୟ ଅଗମ୍ୟ ସ୍ଥାନରେ ପରିଣତ ହୋଇ ଯାଉଥିଲା । ଦୋଳମୁଣ୍ଡାଇର ଏପଟସେପଟ ବାଦାମବାଡ଼ି ସମେତ କୃଷିକ୍ଷେତ୍ର ଓ ସନ୍ତସତିଆ ଜମି ଥିଲା । ସହରର ମଧ ସ୍ଥଳରେ ସ୍ଥାନେ ସ୍ଥାନେ ବାଉଁଶ ଜଙ୍ଗଲ ଓ ଖାତ ଗଡ଼ିଆମାନ ରହିଥିଲା ।

ଲୋକଙ୍କୁ ନବା ଆଣିବା କରିବା ପାଇଁ ରିକ୍ସା ଷ୍ଟାଣ୍ଡପରି ସହରର ବିଭିନ୍ନ ସ୍ଥାନରେ ସବାରୀ ଷ୍ଟାଣ୍ଡ ମାନଙ୍କରେ ଗଉଡ଼ମାନେ ସବାରୀ ଧରି ଯାତ୍ରୀମାନଙ୍କ ପାଇଁ ଅପେକ୍ଷାକରି

ରହୁଥିଲେ । କଟକର ଓକିଲମାନେ ଘରୁ କଚେରୀ ଯିବା ପାଇଁ ସବାରୀ ବ୍ୟବହାର କରୁଥିଲେ । କେତେକ ସ୍କୁଲ ଶିକ୍ଷକ ଓ କର୍ମଚାରୀ ମଧ୍ୟ ସେହି ଯାନ ବ୍ୟବହାର କରୁଥିଲେ ।

ମଫସଲମାନଙ୍କରେ ସାଧାରଣତଃ ଗଉଡ଼ମାନେ ସବାରୀ କାନ୍ଧେଇ ବୋହୂକୁ ଶାଶୁଘରକୁ ନେଉଥିଲେ । ନୂଆ ବୋହୂଟି ସବାରୀର 'ହୁକୁମ ଭାଇରେ ଧୁକୁମ ଧାଇରେ' ପ୍ରଭୃତି ଶବ୍ଦ ଶୁଣି ଶୁଣି ନିରବରେ ଚକ୍ଷୁରୁ ଅଶ୍ରୁ ଗଡ଼ାଇ ସବାରୀ ବାଡ଼କୁ ଧରି ଭାରସାମ୍ୟ ରକ୍ଷା କରୁଥିଲେ ।

ବୋହୂଙ୍କ ଛଡ଼ା ଜମିଦାର, ମହନ୍ତ ଓ ସେମାନଙ୍କ କୋଠ ଗୁମାସ୍ତାମାନେ ବେଳେବେଳେ ସବାରୀରେ ବସି ମଫସଲ ଗସ୍ତ କରୁଥିଲେ । ସ୍କୁଲ ଇନିସ୍‌ପେକ୍ଟର ଓ ଅନ୍ୟ କେତେକ ଅଫିସର ଘୋଡ଼ା କିମ୍ବା ସବାରୀରେ ବସି ମଫସଲ ଗସ୍ତ କରୁଥିଲେ ।

ସାଧାରଣତଃ ଯୁବକମାନେ ସବାରୀରେ ବସୁ ନ ଥିଲେ । କେବଳ ବିବାହ ସମୟରେ କେତେକ ଉଚ୍ଚ ଜାତିର ବର ଓ ବରକନ୍ୟା ଗଉଡ଼ ବୁହା ପାଲିଙ୍କିରେ ବସୁଥିଲେ । ମୁଁ ବାହାବେଳେ ଆମ ଗ୍ରାମରୁ ତିନି ମାଇଲ ଦୂର ମୋ ଶ୍ୱଶୁର ଘରକୁ ପାଲିଙ୍କିରେ ବସି ଯାଇଥିଲି ଓ ବିବାହର ପରଦିନ ସେହି ପାଲିଙ୍କିରେ ବୋହୂ (ସ୍ତ୍ରୀ)କୁ ଧରି ଫେରିଥିଲି । ସବାରୀରେ ବସି ମୁଁ କଟକରେ ଦୋଳ ସମୟରେ ଭେଟ଼ା ଜମିଦାରଙ୍କ ସଙ୍ଗେ ମେଳଣ ସବୁ ରାତିଯାକ ବୁଲିବୁଲି ଦେଖିବାର ସୁଯୋଗ ପାଇଥିଲି ।ସେଥିରେ ଆରାମରେ ବସି ହେଉଥିଲା । କିନ୍ତୁ ପାଲିଙ୍କିରେ ବସିଲା ବେଳକୁ ସବୁବେଳେ ନିଜେ କିମ୍ବା ବୋହୂ ଖସିପଡ଼ିବା ପରି ଲାଗୁଥିଲା । ପାଲିଙ୍କି ମଝିର ଓହଳଟି ମୁଁ ଧରିଥାଏ, ମୋ ସାମନାରେ କିଛି ନ ଧରି ତେର/ଚଉଦ ବର୍ଷର ବୋହୂଟି ବସିଥାଏ, ଖବାଡ଼ବା ରାସ୍ତାରେ ଡ଼ାକଦେଇ ପାଲିଙ୍କି ହଲାଇ ଗଉଡ଼ ମାନେ ଦଉଡୁଥିଲା ବେଳେ ବୋହୂଟି ଫୁଟବଲ ପରି ତଳକୁ ଗଡ଼ିଯିବ ବୋଲି ମୋର ମନେ ହେଉଥାଏ, କିନ୍ତୁ ଲାଜରେ ବିଚ୍ଛରାସ୍ତା ଉପରେ ମୁଁ ତାକୁ ଧରି ପକାଇବାକୁ ସଙ୍କୋଚ ବୋଧ କରୁଥାଏ । ସେତିକି ବେଳେ ବଙ୍ଗଳା ଗୀତଟି ମୋର ମନେ ପଡୁଥାଏ -

''ହାୟ ! ହାୟ! ହାୟ!
ଓ ଆମାର ବର ମଶାୟ ! ପାଲ୍‌କି ଚଢ଼େ ଯାଏ,
ପାଲ୍‌କି ଥେକେ ବଉ ପଡ଼ଲ ହାୟ ; ହାୟ; ହାୟ ''

ରାସ୍ତାଘାଟ ନ ଥିବା ସ୍ଥାନକୁ ବର୍ଷାଦିନେ ଲୋକେ ବାଧ୍ୟ ହୋଇ ସବାରୀ ଓ ଡଙ୍ଗାରେ ଯାତ୍ରା କରୁଥିଲେ ମଧ୍ୟ ଶୀତ ଓ ଖରା ଦିନେ ବିଲ ଓ ଛୋଟ ନଦୀ ନାଳ ଭିତରେ ବାଟ

ଫିଟିଲେ ଶଗଡ଼ ଗାଡ଼ି ବ୍ୟବହାର କରୁଥିଲେ । ପୁରୀର ଜମିଦାର ଓ ମଠ ମହନ୍ତ ମାନଙ୍କର ଏତେ ଉଚ୍ଚା ଉଚ୍ଚା ବଳଦ ଥିଲେ ଯେ ତାଙ୍କ ଗାଡ଼ିର ଦଣ୍ଡା ତଳେ ଘୁଷୁରି ଯାଉଥିଲା ।

ମଧ୍ୟବିତ୍ତ ଚାଷୀମାନେ ମଧ୍ୟ ବଳଦ ରଖି ସେମାନଙ୍କୁ ଶଗଡ଼ ଟାଣିବାରେ ଓ ଚାଷବାସରେ ନିଯୁକ୍ତ କରନ୍ତି । ଆମର ଗୋଟିଏ ଚାଷୀ ଘର, ବଳଦ ଗାଡ଼ି ରହିଥାଏ । ବାଡ଼ିପଟ ଗୁହାଳରେ ଗାଈ ଗୋରୁ ଗୁଡ଼ିଏ ବନ୍ଧା ହୋଇଥାଆନ୍ତି । ଟାଟାର ଜଣେ ବଦାନ୍ୟ ବ୍ୟକ୍ତି ମୋର ପିତାଙ୍କୁ ଗୋଟିଏ ସିନ୍ଧି ଗାଈ ଉପହାର ଦେଇଥିଲେ । ଆମର ସମସ୍ତ ଗାଈ ଯେତେ ଦୁଧ ଦେଉଥିଲେ ସେ ଏକା ତା'ଠାରୁ ବେଶୀ ଦୁଧ ଦେଉଥିଲା ।

ଦିନେ ଘୋରଡ଼ିଆ ମେଳଣରୁ ସେହି ଗାଈ ରଙ୍ଗର କସରିଆ ବଳଦଟିଏ କିଣା ହୋଇ ଆସି ଆଗ ଆମ ଦାଣ୍ଡ ଦୁଆରେ ବନ୍ଧା ହେଲା । ସେ ବଡ଼ ବଳଦଟାକୁ ଦେଖିବାକୁ ତା' ଚାରିଆଡ଼େ ଲୋକ ଜମିଗଲେ । ସେତେବେଳକୁ ଗାଈ ବଳଦର ପ୍ରଭେଦ ଜ୍ଞାନ ହେବାଭଳି ବୟସ ମୋର ହୋଇ ନଥିଲା । ଆମ ବଳିଆ ବଳି ପଧାନ ଡ଼ାଲଟିଏ ନେଇ ଗୁହାଳକୁ ଯାଇ ଦୁଇଓଳି ଦୁଧ ଦୋହିଁ ଆଣେ । ସେ' ଦିନ ଗୁହାଳକୁ ନ ଯାଇ ସେ କସରା ବଳଦଟିକୁ ଆଉଁସିବାରେ ଲାଗିଥାଏ । କ୍ଷୀର ଦୁହାଁ ଡ଼ାଲଟା ଘର ଭିତରେ ଥିବା ମୋର ଆଖିରେ ପଡ଼ିଲା । ବଳିଆ ଗାଈ ଦୁହାଁ ଡ଼ାଲ ନେ ବୋଲି କହି ଡ଼ାଲଟା ଧରି ଦାଣ୍ଡକୁ ଯିବାରୁ, ମତେ ଚାହିଁ ସମସ୍ତେ ହସି ଉଠିଲେ । ଘଟଣା କ'ଣ ବୁଝି ନ ପାରି ମୁଁ ଲାଜରା ହୋଇ ଘର ଭିତରକୁ ଲେଉଟି ଆସିଲି ।

ବଳି ପଧାନ ବା ବଳିଆ ଆମ ରୟତ ଘରର ପିଲା । ମୋ ବଡ଼ ଭାଇଙ୍କୁ ପିଲା ଦିନେ ଧରିବାକୁ ସାତ/ଆଠ ବର୍ଷ ବୟସରେ ଆମ ଘରକୁ ଆସି ରହୁ ରହୁ ଆମ ଘରକୁ ନିଜ ଘର ଓ ଆମକୁ ନିଜ ପିଲା ବିଚାରି, ବୁଢ଼ା ହେବା ପର୍ଯ୍ୟନ୍ତ ଆମ ଘରେ ରହିଯାଇଥିଲା । ଆମ ବଳଦ ଗାଈଙ୍କୁ ମଧ୍ୟ ସେ ପ୍ରାଣ ଦେଇ ସୁଖ ପାଉଥିଲା । ସେମାନଙ୍କ ସେବା କରୁଥିଲା । କସରା ଓ ବଉଳା ବଡ଼ ବଳଦ ଦୁଇଟା କିଣା ହୋଇ ଆସିବା ପରେ ସେ ସେମାନଙ୍କ ସଙ୍ଗେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଗଲା । ବଳଦଙ୍କ ଖାଇବା ପିଇବା ବୁଝିବା, ଯତ୍ନ ନେବା ଓ ସେମାନଙ୍କୁ ତାଲିମ ଦେବାରେ ସେ ଦେହ ମନ ଢ଼ାଳି ଦେଇଥିଲା ।

ସେମାନଙ୍କ ବେକରେ ଘଣ୍ଟିମାଳ ବାନ୍ଧି ସେମାନେ ମୁଣ୍ଡ ହଲାଇ ଶଗଡ଼ ନେଇ ଚାଲିଲା ବେଳେ ଯେଉଁ ରୁଣୁଝୁଣୁ ଶବ୍ଦର ସଙ୍ଗୀତ ସୃଷ୍ଟି ହେଉଥିଲା, ତାକୁ ତାଳ ଦେଇ ବେଳେ ବେଳେ ସେ ତା'ର ମନ ମତାଣିଆ ଛାନ୍ଦରୁ ପଦେ ଗାଇ ଦେଉଥିଲା ।

ଗ୍ରାମରେ ସେହି ବଳଦ ଗାଡ଼ି ଆମ ଯାତାୟାତରେ ପ୍ରଧାନ ସହାୟ ଥିଲା । ସେହି ବଳଦ ଗାଡ଼ିରେ ବସି ତିନି/ଚାରି ମାଇଲ ଦୂରର ମାମୁ ଘରକୁ ଯାଉ । ବିଭିନ୍ନ ମେଳଣ

ଯାତ୍ରା, ପୁରୀର ବାହୁଡ଼ା, ରଥଯାତ୍ରା ଏବଂ ଲୋକନାଥଙ୍କ ସରନ୍ତି ସୋମବାର ଯାତ୍ରାକୁ ଯାଉ । ରେଳରେ ଦୂରକୁ ଯିବା ପାଇଁ ରେଳ ଷ୍ଟେସନକୁ ଯିବା ଆସିବା କରୁ ।

ବଳିଆ ଶଗଡ଼ ଜୁଆଳି ଟେକିଲା କ୍ଷଣି ସେ ବଳଦ ଦୁଇଟା ଆସି ଆପେ ଆପେ କାନ୍ଧ ଲଗାଇ ଦିଅନ୍ତି । ସେମାନଙ୍କୁ ଦଉଡ଼ିରେ ଜୁଆଳି ଦେହରେ ବାନ୍ଧିବାକୁ ପଡ଼େ ନାହିଁ । ଘରୁ ବାହାରି ମୁଣ୍ଡ ହଲାଇ ଘଣ୍ଟିର ମଧୁର ଧ୍ୱନୀ ଉପଭୋଗ କରି ଯାଉ ଯାଉ ପ୍ରଥମେ ସତ୍ୟବାଦୀ ରେଳ ଲାଇନ ଗେଟ ନିକଟରେ ସେମାନେ ଠିଆ ହୋଇ ବଳିଆର ନିର୍ଦ୍ଦେଶକୁ ଅପେକ୍ଷା କରନ୍ତି । ସିଧା ଯିବେ କି ଷ୍ଟେସନ ଆଡ଼କୁ ଯିବେ, ତା'ର ନିର୍ଦ୍ଦେଶ ପାଇବା ସଙ୍ଗେ ସଙ୍ଗେ ସେହି ଦିଗକୁ ଆଗେଇ ଚାଲନ୍ତି । ସିଧା ଯିବାର ହେଲେ ସେମାନେ ଯାଇ ପୁଣି ଅଟକନ୍ତି ପୁରୀ ଜଗନ୍ନାଥ ସଡ଼କ ପାଖରେ । ରାସ୍ତାରେ ଉତ୍ତର କିମ୍ବା ଦକ୍ଷିଣ ଯେଉଁ ଦିଗକୁ ଯିବାକୁ ବଳିଆ ହାତ ମାରି ଅଡ଼େଇ ଦିଏ ସେହି ଦିଗକୁ ଯାଆନ୍ତି ।

ସେତେବେଳେ ଜଗନ୍ନାଥ ସଡ଼କରେ କଟକ ଆଡ଼କୁ ଯିବାକୁ ନଦୀର ପୋଲ ସବୁ ହୋଇ ନ ଥାଏ । ତେଣୁ ମୋଟର ଗାଡ଼ି ଓ ବସ୍ ପ୍ରଭୃତିର ବିଶେଷ ଭିଡ଼ ନଥାଏ । ବଳିଆ ବେଳେ ବେଳେ ଶଗଡ଼ ଉପରେ ନିଶ୍ଚିନ୍ତରେ ଶୋଇଯାଏ, କିନ୍ତୁ ଶଗଡ଼ ଠିକ ବାଟ ଧରି ଚାଲିଥାଏ । ବଳଦ ଦୁଇଟି ନିଜର ବୁଦ୍ଧି ଖର୍ଚ୍ଚ କରି, ଗାଡ଼ି, ଶଗଡ଼, ଗୋରୁ, ଛେଳି, ଘୁଷୁରୀପଲ ପ୍ରଭୃତି ପ୍ରତିବନ୍ଧକ ମାନଙ୍କୁ ଆଡ଼େଇ ଯାଇ ଠିକ୍ ଲକ୍ଷ ସ୍ଥଳରେ ପହଞ୍ଚିଯାଆନ୍ତି ।

ବଳଦ ଦୁଇଟି ଉଚ୍ଚ ଓ ପୃଥୁଳକାୟ । ଦେହ ଏପରି ଚକ୍‌ଚକ୍ କରୁଥାଏ ଯେ ଦେହରୁ ଯେପରିକି ମାଛି ଖସି ପଡ଼ିବେ । ଆମେ ଆମ ଗ୍ରାମର ଅନ୍ୟ ଯାତ୍ରୀ ଶଗଡ଼ ମାନଙ୍କ ସଙ୍ଗେ ଦଳ ବାନ୍ଧି କୌଣସି ମେଳା ମହୋତ୍ସବ ପାଇଁ ଗଲାବେଳେ ଥରେ ଥରେ ଆମ ଶଗଡ଼କୁ ଅନ୍ୟ ସାଥୀ ଶଗଡ଼ଙ୍କ ସହିତ ବଳିଆ ପ୍ରତିଯୋଗିତାରେ ଲଗାଇ ଦିଏ । ତାହା ଅତ୍ୟନ୍ତ ଉପଭୋଗ୍ୟ ହୁଏ । ବେଳେବେଳେ ଅନ୍ୟ ଶଗଡ଼ର ବଡ଼ ବଡ଼ ବଳଦମାନେ ବଳିଆର ଚାଳନା କୌଶଳ ଯୋଗୁଁ ଆମ ଶଗଡ଼ ସଙ୍ଗେ ତାଳ ଦେଇ ଦଉଡ଼ି ନ ପାରି ହାରି ଯାଆନ୍ତି । ବଳଦ ଯୋଡ଼ି ମାରି ଦଉଡ଼ିବା ବେଳେ ଆମେ ସେ ପ୍ରତିଯୋଗିତା ଉପଭୋଗ କରିବା ସଙ୍ଗେ ସଙ୍ଗେ ଖେଳରେ ଖେଳାଳୀକୁ ଉତ୍ସାହିତ କଲାଭଳି ପାଟିତୁଣ୍ଡ କରି ବଳଦଙ୍କୁ ଉତ୍ସାହିତ କରୁଥାଉ ।

ପୂର୍ବ ଜନ୍ମରେ ହୁଏତ କସରା ବଉଳା ଦୁଇଟି ଯାକ ବଳଦ ଥିଲେ ଦୁଇଟି ଭାଇ ଏବଂ ବଳିଆ ଥିଲା ତାଙ୍କ ଅଭିଭାବକ ପିତା । ସେମାନେ ଜାତିସ୍ମର ନ ଥିଲେ କିମ୍ବା ସେମାନଙ୍କର କଥା କହିବାର ଶକ୍ତି ନ ଥିଲା । ତେଣୁ ସେମାନେ ତାଙ୍କ ପୂର୍ବ ଜନ୍ମ କଥା ଜାଣିବା ଦୂରେ

ଥାଉ ସେମାନେ ଏ ଜନ୍ମରେ କେଉଁଠି କାହା ଗୁହାଳରେ ଜନ୍ମ ହୋଇଥିଲେ ଏବଂ ତାଙ୍କ ବାପା-ମା' ବା ପାଳନକର୍ତ୍ତା କିଏ, ତାହା ତାଙ୍କର ଜାଣିବାର ଉପାୟ ନ ଥିଲା ।

ସେମାନେ ଭିନ୍ନ ଭିନ୍ନ ସ୍ଥାନରେ ବାଲ୍ୟ ଜୀବନ କଟାଇ ଶେଷରେ ହାଟମାନଙ୍କରେ ବା ମେଳଣ ପଡ଼ିଆକୁ ନିଆଯାଇ ବିକ୍ରୀ ହୋଇଥିଲେ । ଭିନ୍ନ ଭିନ୍ନ ମାଲିକମାନଙ୍କ ଘରକୁ ଯାଇ ସେମାନଙ୍କ ଗୁହାଳ ଖୁଣ୍ଟରେ ବନ୍ଧା ହେଉଥିଲେ । କେତେକ ମେଳଣ ଓ ହାଟରୁ ଫେରିବା ପରେ ବଳିଆର ସୁପାରିଶ୍‌ରେ କିଣା ହୋଇ ଗୋଟିକ ପରେ ଗୋଟିଏ ଆମ ଗୁହାଳକୁ ଆଗମନ କରିଥିଲେ । ଆମ ଗୁହାଳରେ ପାଖାପାଖି ଖୁଣ୍ଟରେ ବନ୍ଧା ହୋଇ ସେମାନେ ହୁଏତ ପରସ୍ପରକୁ ସ୍ନେହ କରି ଚାଟିବା ଶିଖିଥିଲେ । ଜଣଙ୍କ ଦେହ ଖରାପ ହୋଇ ସେ ନ ଖାଇଲେ ସମବେଦନାରେ ହୁଏତ ଅନ୍ୟ ଜଣକ ଖାଦ୍ୟ ସ୍ପର୍ଶ କରୁନଥିଲା । ସେମାନେ ଶବ୍ଦ ଚାତୁରୀରେ ନିଜର ଅନ୍ତରର ବେଦନା ପ୍ରକାଶ କରି ନ'ପାରିଲେ ମଧ୍ୟ ନିଜ ଚକ୍ଷୁରୁ ଲୋତକ ପାତ କରାଇ ତାହା ପ୍ରକାଶ କରୁଥିଲେ ।

ବଳଦ ଦୁଇଟିର ଦୈନନ୍ଦିନ କାର୍ଯ୍ୟ କିଛି ସହଜସାଧ ନ ଥିଲା । ପଙ୍କ କାଦୁଅ ଘାଣ୍ଟି ଜମିରେ ହଳ ଓ ମଇ ଦେବା ପ୍ରଭୃତି କାର୍ଯ୍ୟ କରିବା, ଧାନ କଳେଇ ଶଗଡ଼ ବିଲରୁ ବୋହି ଆଣିବା, ଖଳାରେ ବେଙ୍ଗଳା ପକାଇବା, ନଡ଼ିଆ ତୋଳା ସ୍ଥାନରୁ ନଡ଼ିଆ ଶଗଡ଼ ଘରକୁ ଆଣିବା ଓ ବେପାରୀପାଖକୁ ନେବା ସେମାନଙ୍କର କାର୍ଯ୍ୟର ଅନ୍ତର୍ଭୁକ୍ତ ଥିଲା । କର୍ତ୍ତବ୍ୟ ପାଳନ ଯେପରିକି ତାଙ୍କର ବ୍ରତ ଥିଲା । କୌଣସି କାମକୁ ସେମାନେ କେତେବେଳେ ପଶ୍ଚାତ୍‌ପଦ ହେଉ ନ ଥିଲେ । ବଳିଆର ଆଦର ସ୍ନେହରେ ଯେପରିକି ସେମାନେ ନିଜର ସମସ୍ତ ଶାରୀରିକ କଷ୍ଟ ଭୁଲି ଯାଉଥିଲେ ।

ଯେବେ କ୍ଳାନ୍ତ ହୋଇ ଖାଇବା ସ୍ଥାନରେ ମୁଣ୍ଡ ଟେକି ଠିଆ ହୋଇ ରହି ଯାଉଥିଲେ, ସେତେବେଳେ ବଳିଆ ଆସି ପିଠିକୁ ଗୋଟେ ହାତରେ ଆଉଁସି ଅନ୍ୟ ହାତରେ ଦାନା ଧରି ତାଙ୍କ ମୁହଁ ପାଖରେ ରଖି ଖୁଆଇଲେ ସୁନା ପିଲାପରି ସେମାନେ ଖିଆ ଆରମ୍ଭ କରି ଦେଉଥିଲେ ।

କସରା ବଉଳାକୁ ବଳିଆ ବେଳେ ବେଳେ କଷ୍ଟ କାମରେ ଲଗାଇଲେ ତାଙ୍କ ପ୍ରତି ମଧ୍ୟ ନିଷ୍ଠୁର ନ ଥିଲା । ବେଳେବେଳେ ପ୍ରତିଯୋଗିତା ପରି କଷ୍ଟ କାମରେ ଲଗାଇଲେ ମଧ୍ୟ ପରେ ପରେ ସେମାନଙ୍କୁ ଯଥେଷ୍ଟ ବିଶ୍ରାମ ଦେଇ ତାଙ୍କର ସେବା କରି ତାଙ୍କୁ ସୁସ୍ଥ କରୁଥିଲା ।

'ସରନ୍ତି ସୋମବାର' ବୈଶାଖ ମାସର ଶେଷ ସୋମବାରଟି ଆମ ପୁରୀ ପାଖ ଆଖର ଶାସନ ଗ୍ରାମ ମାନଙ୍କ ପାଇଁ ଗୋଟିଏ ବଡ଼ ମେଳା ଉତ୍ସବ । ସେଦିନ ସେ ଅଞ୍ଚଳର

ଗ୍ରାମବାସୀମାନେ ପୁରୀ ଯାଇ ସେଠାର ପ୍ରଖ୍ୟାତ 'ଲୋକନାଥ' ମହାଦେବଙ୍କ ବେଢ଼ା ଭିତରେ ଚୁଡ଼ାଘଷା ଭୋଗ ତିଆରି କରନ୍ତି । ଏ ଚୁଡ଼ାଘଷା ସାଧାରଣ ଚୁଡ଼ାଘଷା ଠାରୁ ପୃଥକ । ସେ ଚୁଡ଼ାଘଷାରେ ମଧ ପ୍ରତିଯୋଗିତା ହୁଏ, ଆମ ଗାଁ ଶ୍ରୀରାମଚନ୍ଦ୍ରପୁର ଚୁଡ଼ାଘଷା ସବୁଠାରୁ ଭଲ ହୁଏ ବୋଲି ଡ଼ାକ ପଡ଼ିଥାଏ ।

ଆମ ଗ୍ରାମର ଚୁଡ଼ାଘଷା ପାଇଁ ଭାଗ ମାପ ହେଲା, କଟକୀ ସେରକ ସରୁ ଚୁଡ଼ା ଗୁଣ୍ଡ ପାଇଁ ୮୦ଟା ବଡ଼ ଶୁଖିଲା ନଡ଼ିଆ, କଟକୀ ସେରେ ଗୁଆଘିଅ, ପାଞ୍ଚ ସେର ନବାତ (ଗୁଡ଼ରୁ ହାତ ତିଆରି ଚିନି)ଓ କାଜୁ, ଖିସ୍‌ମିସ, ଲବଙ୍ଗ, ଗୁଜୁରାତି ପ୍ରଭୃତି ମସଲା ।

ନଡ଼ିଆକୁ ସେହି ବେଢ଼ା ଭିତରେ ତାଟ ମାନଙ୍କରେ କୋରି ଚୁଡ଼ା ଗୁଣ୍ଡରେ ମିଶାଇ ଚାରିଜଣ ଭେଣ୍ଡିଆ ଲୋକ ଘଣ୍ଟା ଘଣ୍ଟା ଧରି ଘଷନ୍ତି । ତା'ପରେ ଘିଅ, ଚିନି ଓ ମସଲା ପ୍ରଭୃତି ମଝିରେ ମଝିରେ ମିଶା ଯାଉଥାଏ । ଗୋଟିଏ ଦଳର ହାତ କଅଣ ହୋଇଗଲେ ଆଉ ଦଳେ ଘଷନ୍ତି । ଘଷା ସରିଲା ବେଳକୁ ତାହା ମହନ ଭୋଗ ପରି ମେଞ୍ଚା ମେଞ୍ଚା ହୋଇ ଯାଇଥାଏ । ସେଥିରୁ ଛୋଟ ଚାମଚରେ ଚାମଚାଏ ଖାଇ ଦେଲେ ପେଟ ପୂରିଗଲା ଭଳି ଲାଗେ । ସେହି ସରନ୍ତି ସୋମବାର ମେଳା ମଉଚ୍ଛ ପାଇଁ ଆମେ ଆମ ଶଗଡ଼ରେ ପୁରୀ ବାହାରି ଥାଉ, କେତେ ବାଟ ଗଲାପରେ ଗୋଟାଏ ଘୋଡ଼ା ଗାଡ଼ି ଏକ ବଜାରରୁ ବାହାରି ପୁରୀ ଆଡ଼କୁ ଗତି କରୁଥିବାର ଦେଖାଗଲା । ବଳିଆ ସେହି ଘୋଡ଼ା ଗାଡ଼ି ସଙ୍ଗେ ଆମ ଶଗଡ଼ର ପ୍ରତିଯୋଗିତା ଦୌଡ଼ ଲଗାଇ ଦେଲା । ଘୋଡ଼ା ଗାଡ଼ି ପଛରେ ପଡ଼ିଗଲା । ନିର୍ଦ୍ଦିଷ୍ଟ ସ୍ଥାନରେ ଆମ ଶଗଡ଼ ଆଗ ପହଞ୍ଚିଗଲା । ସେପରି ଦୁଃସାହସିକ କାର୍ଯ୍ୟ ଯୋଗୁଁ ନାଲି ଜଗନ୍ନାଥ ସଡ଼କରେ ବଳଦଙ୍କ ଖୁରାର ନାଲ ଘୋରି ହୋଇ ସରିଗଲା । ସେମାନେ ଛୋଟାଇବାକୁ ଲାଗିଲେ । ଆମେ ଲୋକନାଥଙ୍କ ବାଲି ପଦରରେ ପହଞ୍ଚିଲୁ । ଚୁଡ଼ା ଘଷା ଆରମ୍ଭ ହେଲା । ଆମେ ପିଲାମାନେ ବେଢ଼ା ଆରପଟେ ଥିବା ବାଲିକୁଦ ମାନଙ୍କରେ ଡ଼େଇଁ ବୁଲିଲୁ ଓ ସେଠାରେ ଥିବା ଲଙ୍କାଆମ୍ବ ଗଛ ମାନଙ୍କରୁ ଫଳ ତୋଳି ଖାଇବା ଆରମ୍ଭ କଲୁ ।

ବଳିଆ କିନ୍ତୁ ବଳଦଙ୍କ ପାଖ ଛାଡ଼ିଲା ନାହିଁ । ସେ ଅନୁତାପ କରି ତାଙ୍କ ପାଖରେ ରହି ତାଙ୍କୁ ଆଉଁସିବାକୁ ଲାଗିଲା । ଗରମ ଘିଅ ଆଣି ତାଙ୍କ ପାଦରେ ଓ ଗୋଡ଼ରେ ଘଷି ତାଙ୍କୁ ସୁସ୍ଥ କରାଇବାରେ ଲାଗି ପଡ଼ିଲା । ଭବିଷ୍ୟତରେ ବଳଦଙ୍କୁ ଆଉ ସେପରି ପ୍ରତିଯୋଗିତାରେ ଲଗାଇବ ନାହିଁ ବୋଲି ଠାକୁରଙ୍କ ପାଖରେ ଶପଥ ନେଲା ।

ବଳିଆର ସେହି ବଳଦ ଗାଡ଼ିରେ ବସି ଆମେ ଭାର୍ଗବୀ କୂଳ ସାଗର ସ୍ନାନ ମେଳଣ ଠାରୁ ଆରମ୍ଭ କରି ବହୁ ଯାନିଯାତ୍ରା ଓ ଦର୍ଶନୀୟ ସ୍ଥାନ ଦେଖିବାକୁ ଯାଇଛୁ । ଖରାଦିନେ

ସୁଦୂର କୋଣାର୍କକୁ ବିଲ ବାଟେ ବିଲହିଡ଼ ଡ଼ିଆଁଇ ଶଗଡ଼ ଗୁଳାରେ ଶଗଡ଼ରେ ବସି ଯାଇଛୁ । ସେପରି ଯାତ୍ରାରେ ଅବଶ୍ୟ ବାଟରେ ଦୁଇ ତିନି ସ୍ଥାନରେ ଆମେ ରହି ରହି ବଳଦକୁ ବିଶ୍ରାମ ଦେଇ ଦେଇ ଯାଉ ।

ବାଟରେ ଛାୟାପ୍ରଦ ଆମ୍ବତୋଟା, ନଡ଼ିଆ ମାଳ, ଗହିର ବିଲ ଦେଇ ବିଲୁଆ ଠେକୁଆ ପ୍ରଭୃତି ଦେଖି ଯିବାବେଳେ ବଳିଆ ତା'ର ହଳିଆ ଗୀତ ସବୁ ଆରମ୍ଭ କରିଦିଏ -

ବ୍ରାହ୍ମଣ ବୋହୂ ଆଲୋ ବାଇରେ କଲା ବାଟ-ହ, ଡ଼ି, ଡ଼ି
ରାମ ଯେ ଲଇଖଣ ଗଲେ ମୃଗ ମାରି
ପାପିଷ୍ଠ ରାବଣ ଆସି ସୀତା ନେଲା ହରି ହ, ଡ଼ି, ଡ଼ି

ଶଗଡ଼ରେ ଯିବା ବେଳେ ବଳିଆର ମୋଟା ସ୍ୱରରେ ସେ ବେଆଡ଼ିଆ ସଙ୍ଗୀତରେ ମୁଁ ଯେଉଁ ଆନନ୍ଦ ପାଉଥିଲି ପରେ ଅତି ଦ୍ରୁତଗାମୀ ସୁସଜ୍ଜିତ ଉଡ଼ାଜାହାଜ ଯାନର ଭିଡ଼ିଓ ସଙ୍ଗୀତରେ ସେ ମନ ଫୁଲାଣିଆ ଆନନ୍ଦ ପାଇ ପାରିନାହିଁ । କୋଣାର୍କ ଯାତ୍ରାର ଶେଷ ପର୍ଯ୍ୟାୟରେ କୋଣାର୍କ ନିକଟ ପାଟୋଳିଆ ଗ୍ରାମର ଜଣେ ବନ୍ଧୁଙ୍କ ଘରୁ ବାହାରି ବାଲି ରାସ୍ତାରେ ଶଗଡ଼ ଅଡ଼େଇ ଚାଲିଲା ବେଳେ ଝାଉଁ ଜଙ୍ଗଲର କଳା ନାଲି ହରିଣମାନେ ରାସ୍ତାର ଏ ପଟରୁ ସେପଟକୁ ଡ଼େଇଁ ଯାଉଥିବାର ଦୃଶ୍ୟ ଏବଂ ଦୂରରୁ ବାଳ-ସୂର୍ଯ୍ୟ କିରଣରେ ରଂଜିତ ହୋଇଥିବା ଜୀର୍ଣ୍ଣ କୋଣାର୍କ ମନ୍ଦିର ଚୂଡ଼ାର ଦୃଶ୍ୟ ଭୁଲିବାର ନୁହେଁ ।

କୋଣାର୍କ ମନ୍ଦିର ଥିଲା ଏକ ପରିତ୍ୟକ୍ତ ଭଗ୍ନ ସ୍ତୁପ ପରି । ମନ୍ଦିରର ବେଢ଼ା ପ୍ରାଚୀର ଉପର ପର୍ଯ୍ୟନ୍ତ ବାଲିରେ ପୋତି ହୋଇ ରହିଥାଏ । ଏବେ ଯେଉଁ ନବଗ୍ରହ ମୂର୍ତ୍ତୀ କୋଣାର୍କ ବେଢ଼ାର ଗୋଟିଏ କଣରେ ରହି ପୂଜା ପାଉଛନ୍ତି ସେହି ମୂର୍ତ୍ତୀର ବିରାଟ କଳା ମୁଗୁନି ପଥର ଦୁଇ ଫାଳ ହୋଇ ପ୍ରାଚୀରର ଅନତି ଦୂରେ ପଡ଼ି ରହିଥାଏ । ସେହି ମୂର୍ତ୍ତୀ ବା ପ୍ରସ୍ତର ଖଣ୍ଡି ଏତେ ବିରାଟ ଓ ଓଜନଦାର ଯେ ତାକୁ ତତ୍କାଳିନ ଇଂରେଜ ସରକାର ଦୁଇଫାଳ କରାଇ ମଧ ସେଠାରୁ କଲିକତା ବା ଲଣ୍ଡନ ମିଉଜିଅମ ନେବାକୁ ଚେଷ୍ଟା କରି ବିଫଳ ହୋଇଥିଲେ । ଆମେ ସେହି ପ୍ରାଚୀରର ଅନତି ଦୂରରେ ଥିବା ଗୋଟିଏ ମଠରେ ରହିଲୁ । ସେଠାରେ ଶଗଡ଼ ଫିଟାଇ ଆମେ ସମୁଦ୍ର କୂଳକୁ ଯାଇ କଙ୍କଡ଼ା ଓ ଶଙ୍ଖଙ୍କ ପଛରେ ଗୋଡ଼ାଇ ସାରି ମନ୍ଦିର ବେଢ଼ାକୁ ଆସି ମନ୍ଦିରର କାରୁକାର୍ଯ୍ୟ ସବୁ ଦେଖିଲୁ । ସେତେବେଳକୁ କାରୁକାର୍ଯ୍ୟର ସୌନ୍ଦର୍ଯ୍ୟ ଉପଭୋଗ କରିବା ଭଳି ବୟସ ହୋଇ ନ ଥିବାରୁ ବେଢ଼ା ଭିତରେ ବାଲିଖେଳ ଆମକୁ ବେଶୀ ଭଲ ଲାଗିଥିଲା ।

ଅଳ୍ପ ଦିନ ପରେ ଅସହଯୋଗ ଆନ୍ଦୋଳନ ଓ ଲୁଣ ମରା ଆନ୍ଦୋଳନ ପ୍ରଭୃତି ତୀବ୍ର ଆକାର ଧାରଣ କଲା । ମୋର ପିତା ମନୀଷୀ ନୀଳକଣ୍ଠ, ମାତା ସଂଗ୍ରାମୀ ରାଧାମଣି ଓ ଜ୍ୟେଷ୍ଠ ଭ୍ରାତା ବିପ୍ଳବୀ ଆଡ଼ଭୋକେଟ ଅଶୋକ ଦାସ ସେହି ଆନ୍ଦୋଳନରେ ଯୋଗ

ଦେଇ କାରାବରଣ କରିଥିଲେ । ସ୍କୁଲ ଛାତ୍ର ଅଶୋକ ମୋଠାରୁ ନଅ ବର୍ଷ ବଡ଼ ଥିଲେ, ମୋର ବୟସ ପ୍ରାୟ ନଅ ବର୍ଷ, ମୋ ତଳେ ଆଉ ତିନୋଟି ଭଉଣୀ ଥାଆନ୍ତି । ଆମେ ଅଜାଙ୍କ ତତ୍ତ୍ୱାବଧାନରେ ଥାଉ । ଆମେ ଶଗଡ଼ରେ ପ୍ରାୟ ଆଇ ଗାଆଁ ବୀରପୁରୁଷୋତ୍ତମପୁରକୁ ଯିବା ଆସିବା କରୁ ।

ଆମେ ଥରେ ଆଇ ଗାଁରେ ପହଞ୍ଚିଲା ବେଳକୁ ସେଠାରୁ କିଛି ଦୂର ଶ୍ରୀ ପୁରୁଷୋତ୍ତମପୁରରେ ଗାନ୍ଧି ଲୁଣମରା ସଭା ହେଉଥିଲା । ଆଇ ଗାଁର ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ନାରାୟଣ ମିଶ୍ର ମୋତେ ଆମ ଶଗଡ଼ରେ ନେଇ ସେହି ସଭାକୁ ଗଲେ । ଅସ୍ତରଙ୍ଗ ଲୁଣମରା ସ୍ଥାନରୁ କ୍ଷୁଦ୍ର ଲୁଣ ପୁଡ଼ିଆ ସବୁ ଅଣା ଯାଇଥିଲା । ମୁଁ ଟେବୁଲ ଉପରେ ଠିଆ ହୋଇ ସେ କ୍ଷୁଦ୍ର ଲୁଣ ପୁଡ଼ିଆ ସବୁ ନିଲାମ କଲି । ଲୋକେ ବେଶୀ ବେଶୀ ପଇସା ଦେଇ ସନ୍ତକ ରୂପେ ରଖିବାକୁ ସେ ପୁଡ଼ିଆ ସବୁ ଘେନି ଗଲେ । ସେ ପଇସା କର୍ମୀମାନଙ୍କ ପାଇଁ ଅସ୍ତରଙ୍ଗ ପଠାଗଲା । ପୋଲିସ ସୁରାକ ପାଇ ସେ ସଭା ଭାଙ୍ଗିବାକୁ ଆସିଲା ବେଳକୁ ଆମେ ଶଗଡ଼ରେ ବସି ବଳଦ ଦଉଡ଼ାଇ ମାମୁ ଗାଆଁରେ ଆସି ପହଁଚି ଯାଇଥିଲୁ । ସେ ବଳଦ ସ୍ୱାଧୀନତା ସଂଗ୍ରାମରେ ସେପରି ସାହାଯ୍ୟ କରିବା ପାଇଁ, ଏପର୍ଯ୍ୟନ୍ତ ବଂଚି ରହିଥିଲେ ହୁଏତ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ଦାବି କରି ପାରିଥାଆନ୍ତେ । ଏହିପରି ଭ୍ରମଣ, ମେଳା ମଉଛଠାରୁ ରାଜନୈତିକ ସଭା ସମିତି ମାନଙ୍କରେ ଯୋଗ ଦେବା କାର୍ଯ୍ୟରେ ସେ ବଳଦମାନେ ଆମ୍ଭମାନଙ୍କୁ ଅକୁଣ୍ଠିତ ସାହାଯ୍ୟ କରିଥିଲେ ।

ରାଜନୈତିକ ବନ୍ଦୀ ଭାବରେ ମୋର ପିତା ନୀଳକଣ୍ଠ ପ୍ରମୁଖଙ୍କ ବିଚାର କଲାବେଳେ କାରାଦଣ୍ଡ ସହିତ ସେମାନଙ୍କ ଉପରେ ଜୋରିମାନା ଦଣ୍ଡ ମଧ ଧାର୍ଯ୍ୟ କରା ଯାଇଥାଏ । ଦିନେ ସେହି ଜୋରିମାନା ଟଙ୍କା ଅଦାୟ କରିବା ପାଇଁ ସରକାର ଆମ ଘର କୋରଖ ପାଇଁ କର୍ମଚାରୀଙ୍କ ସହିତ ପୋଲିସ ଦଳକୁ ପଠାଇଲେ ।

ଖାନତଲାସରୁ ସେମାନେ ଟଙ୍କା ପଇସା କିଛି ନ ପାଇ ଆମ ଭାତ ଖିଆ ଥାଳି ଗିନା ପ୍ରଭୃତି ବାସନ ଦୁଇ ଖଣ୍ଡ ଧରି ଗୁହାଳକୁ ଗଲେ । ଗୁହାଳରୁ ଗାଈ ଓ ବଳଦଙ୍କୁ ପଘା ସହିତ ଫିଟାଇ ଆଣି ନିଜ ସଙ୍ଗରେ ଥାନାକୁ ନେଇ ଯିବାକୁ ଉଦ୍ୟତ ହେଲେ ।

ଶଙ୍ଖୁଆ ବଉଳାଙ୍କ ଦେହରେ ବଳିଆ ହାତ ଛଡ଼ା ଆଉ କାହାରି ହାତ ବାଜି ନ ଥିଲା । ପୋଲିସ ତାଙ୍କ ଦେହରେ ହାତ ମାରିବାକୁ ଚେଷ୍ଟା କରିବାରେ ସେମାନେ ଚମକି କରି ଡେ଼ଇଁଲେ । ପୋଲିସ ହାତରୁ ପଘା ଓଟାରି ନେଇ ଡେଇଁ ପଳାଇଲେ । ପୋଲିସମାନେ ତାଙ୍କୁ ଧରିବାକୁ ରାଗରେ ଠେଙ୍ଗା ଘେନି ଗୋଡ଼ାଇଲା ବେଳକୁ ସେଠାରେ ନିରବରେ ଠିଆ ହୋଇ ରହିଥିବା ବଳିଆ ଆଉ ସମ୍ଭାଳି ପାରିଲା ନାହିଁ ।

ମୋ ବଳଦଙ୍କୁ ମାର ନାହିଁ ମାର ନାହିଁ ବୋଲି ପୋଲିସଙ୍କୁ ବିକଳରେ ଅନୁରୋଧ କରି କହିଲା, ତାଙ୍କୁ ମାରଧର କରନାହିଁ, ଯଦି ସାଙ୍ଗରେ ନବା କଥା ମୁଁ ଡାକି ଦଉଛି ସେମାନେ ତୁମ ସଙ୍ଗରେ ଯିବେ । ବଳିଆ ଆ ଆ ବୋଲି ନାଁ ଧରି ଡାକିବା ସଙ୍ଗେ ସଙ୍ଗେ ପଛକୁ ଫେରି ବଳଦ ଦୁଇଟି ଆସି ବଳିଆ ପାଖରେ ଠିଆ ହୋଇଗଲେ । ସେମାନଙ୍କ ପଘା ବଳିଆ ପୋଲିସ ହାତକୁ ବଢ଼ାଇ ଦେବାରେ ସେମାନେ ଆପତ୍ତି କଲେ ନାହିଁ, କିନ୍ତୁ ସେମାନଙ୍କ ଆଖିରୁ ଲୁହ ଗଡୁଥିଲା । ବଳିଆ ଆଖି ମଧ ଛଳ ଛଳ ହୋଇ ଗାମୁଛାରେ ତା'ର ଆଖି ପୋଛିବାକୁ ଲାଗିଲା ।

ଆମେ ପିଲାଏ ସେ ଦୃଶ୍ୟ ଦେଖି ରଡ଼ି ଛାଡ଼ିବାକୁ ଆରମ୍ଭ କଲୁ । କିନ୍ତୁ ଆମ ଅଜା ଆମକୁ ବୁଝାଇସୁଝାଇ ଦେଶ କାମ କଲେ ଏପରି ସହିବାକୁ ପଡ଼େ କହି ଘର ଭିତରକୁ ନେଇଗଲେ ।

ବଳିଆ ଓ ବଳଦଙ୍କ ଆଖିର ଲୁହ ଏ ପର୍ଯ୍ୟନ୍ତ ମୋ ମନରେ ଜୀବନ୍ତ ହୋଇ ରହିଛି । ପରେ ମୁଁ ବୁଝିଲି ସେ କାଳର ଗଞ୍ଜାମର ଅପ୍ରତିଦ୍ୱନ୍ଦୀ ନେତା ମୋ ପିତାଙ୍କର ରାଜନୈତିକ ପଟ୍ଟଶିଷ୍ୟ ଦିବାକର ପଟ୍ଟନାୟକ ଆମ ଘରକୁ ଆସିଲେ ବଳିଆକୁ କାହିଁକି ବଳିବର୍ଦ୍ଧ ବା ବଳଦ ବୋଲି ଡାକୁଥିଲେ । ସେହି ବଳଦ ଓ ବଳିଆ ଏକ ପ୍ରାଣ ହୋଇଥିବା ହୁଏତ ସେ ଅନୁମାନ କରି ପାରିଥିଲେ ।

## ହାତଟଣା ରିକ୍‌ସାର ଅନୁଭୂତି

କଟକ ସହରରେ ମ୍ୟୁନିସିପାଲିଟି ଗଢ଼ାଯାଇ କଚା ରାସ୍ତା ସ୍ଥାନରେ ନାଲି ପକ୍କା ରାସ୍ତା ଓ ରାସ୍ତାର ସ୍ଥାନେ ସ୍ଥାନେ କିରାସିନି ଆଲୁଅ ଖମ୍ବ ବସିବା ପରେ ଯାନବାହାନର ଉନ୍ନତି ଘଟିଲା । ସବାରୀ ସ୍ଥାନରେ ମଣିଷ ହାତ ଟଣା ରିକ୍‌ସା ଏବଂ ସେକେଣ୍ଡ ଓ ଫାଷ୍ଟକ୍ଲାସ ଘୋଡ଼ା ଗାଡ଼ିର ପ୍ରଚଳନ ହେଲା ।

ସେତେବେଳେ ମଧ କଟକ ସହରଟି ପିଚୁ ରାସ୍ତା ଓ ଅଟ୍ଟାଳିକାପୂର୍ଣ୍ଣ ଜନାକୀର୍ଣ୍ଣ ସହର ନ ଥିଲା । ସହର ମଝିରେ ବାଉଁଶ ଜଙ୍ଗଲ, ଧାନବିଲ ଓ ସତସତିଆ ଜଳପୂର୍ଣ୍ଣ ସ୍ଥାନ ସବୁ ପୂର୍ବପରି ରହିଥିଲା । ସହର ଭିତରେ ବହୁ ନିଛାଟିଆ ସ୍ଥାନ ଯୋଗୁଁ ଅସାମାଜିକ ଲୋକ ଓ ଚୋର ଡକାୟତମାନଙ୍କର ସେ ସ୍ଥାନ ସବୁ ଆଡ୍‌ଡାସ୍ଥଳ ହୋଇ ରହିଥିଲା । ଏବର ଜନଗହଳି ବକ୍ସିବଜାର ଓ ଦୋଳମୁଣ୍ଡାଇ ଅଞ୍ଚଳ ଦେଇ ଦିନରେ ମଧ ଚାଲିକରି ବା ରିକ୍‌ସାରେ ଯିବାକୁ ଡର ଲାଗୁଥିଲା । ପଦଚାରୀକୁ ଛୁରା ଦେଖାଇ ତା'ର ସମସ୍ତ ଟଙ୍କା ପଇସା ଲୁଟି ନେବା ଓ ବକ୍ସିବଜାର ମଦ ଖଟି ନିକଟରେ ରିକ୍‌ସାରୁ ବାକ୍ସ ଟେକି ନେଇ ଚମ୍ପଟ ମାରିବା ଘଟଣା ମଧ କମ୍ ନ ଥିଲା । ଅବଶ୍ୟ ଏ ଆଧୁନିକ ବିଳାସପୂର୍ଣ୍ଣ

ଯୁଗରେ ନିଶା ଦୋକାନ ଓ ନିଶାସେବନକାରୀ ଉଚ୍ଛୃଙ୍ଖଳ ଯୁବକ ଯୁବତୀଙ୍କ ସଂଖ୍ୟା ଅତି ବେଶୀ ବଢ଼ି ଯାଇଛି । ତେଣୁ ଲୁଟତରାଜ ଓ ଛୁରୀମରା ପ୍ରଭୃତି ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଉଠିଛି । କଟକ ଓ ଓଡ଼ିଶାର ରାଜଧାନୀ ଆଧୁନିକ ଭୁବନେଶ୍ୱର ସହରରେ ଏସବୁ ଦୈନନ୍ଦିନ ଘଟଣାରେ ପରିଣତ ହୋଇଛି ।

ଏବର ସମୃଦ୍ଧିଶାଳୀ ଆଧୁନିକ ଭୁବନେଶ୍ୱରରେ ସେତେବେଳେ ସର୍ପ, ବ୍ୟାଘ୍ର ଓ ଅନ୍ୟ ବନ୍ୟଜନ୍ତୁଙ୍କ ରାଜତ୍ୱ ଚାଲିଥିଲା । ତାହା ଜଙ୍ଗଲ ସହିତ ସାମିଲ ଏକ ଅପନ୍ତରା ପାହାଡ଼ିଆ ସ୍ଥାନ ଥିଲା । କେବଳ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ନିକଟରେ ପୁରୁଣା ଛୋଟିଆ ସହରଟି ରହିଥିଲା ।

୧୯୩୩-୩୪ରେ ମନ୍ଦିରପୂର୍ଣ୍ଣ ଭୁବନେଶ୍ୱର ଖଣ୍ଡଗିରି ଗୁମ୍ଫା ପ୍ରଭୃତି ଦେଖିବା ପାଇଁ ମୁଁ ମୋର ସତ୍ୟବାଦୀ ସ୍କୁଲ ସହପାଠୀ ଭୁବନେଶ୍ୱର ନିବାସୀ ଅପର୍ଣ୍ଣାଶଙ୍କର ରାୟଙ୍କ ସଙ୍ଗେ ଭୁବନେଶ୍ୱର ଆସିଥିଲି । ଷ୍ଟେସନରେ ଓହ୍ଲାଇ ଶଗଡ଼ ଗାଡ଼ିଟିରେ ବସି ଦେଉଳ ପଛଆଡ଼େ ଥିବା ଅପର୍ଣ୍ଣାଙ୍କ ଘର ଉଦ୍ଦେଶ୍ୟରେ ଆମେ ଯାତ୍ରା କଲୁ ।

ଶଗଡ଼ିଆଟି ଆମଠାରୁ ଦୂରେଇ ରହିଲା ପରି ଆମ ସଙ୍ଗେ ନ ମିଶି ବା କଥାବାର୍ତ୍ତା ନ କରି ନିଜର ମୁହଁଟି ଘୋଡ଼ାଇ ରଖି ଆମ ଆଡ଼କୁ ନ ଚାହିଁ ଗାଡ଼ି ଚଳାଉ ଥାଏ । ମୁଁ ଅପର୍ଣ୍ଣାଙ୍କ ଘର ଦୁଆରେ ଗାଡ଼ିରୁ ଓହ୍ଲାଇଲା ବେଳେ ତା' ମୁହଁରୁ କନାଟା ଖସିପଡ଼ିଲା । ତା ମୁହଁ ଉପରେ ମୋ ଆଖି ପଡ଼ିଲା । ତା'ର ନାକଟା ନ ଥିଲା । ମୁଁ ଚମକି ପଡ଼ିଲି । ଭୁବନେଶ୍ୱର ଷ୍ଟେସନରୁ ସହର ଭିତରକୁ ନବା ଆଣିବା କରୁଥିବା ସେହି ଶଗଡ଼ିଆମାନଙ୍କ ଭିତରେ ଅଧିକାଂଶ କୁଷ୍ଠ ରୋଗୀ ଥିଲେ । ଭୁବନେଶ୍ୱର ମ୍ୟୁନିସିପାଲ୍ଟି ସେ ରୋଗରୁ ଆରୋଗ୍ୟ ହୋଇଥିବା ଲୋକଙ୍କ ଥଇଥାନପାଇଁ ସେମାନଙ୍କୁ ଶଗଡ଼ ଚଳାଇବାର ଅନୁମତି ଦେଇଥିବାର ମୁଁ ବନ୍ଧୁଙ୍କ ଠାରୁ ଶୁଣିଲି । ଭୁବନେଶ୍ୱରବାସୀ ସେମାନଙ୍କ ସଙ୍ଗେ ମିଶିବା ଅଭ୍ୟସ୍ତ ଥିଲେ; କିନ୍ତୁ ମୋତେ କିପରି ଅଡୁଆ ଅଡୁଆ ଲାଗିଲା । ମୁଁ ତା'ପରେ ଭୁବନେଶ୍ୱରରେ ଆଉ ଶଗଡ଼ରେ ନ ବସି ମୋର ବନ୍ଧୁ ନୂଆ ସାଇକେଲ ଶିଖାଳି ହୋଇଥିଲେ ମଧ ତାଙ୍କ ସାଇକେଲ ପଛରେ ବସି ଖଣ୍ଡଗିରି ଗୁମ୍ଫା ପ୍ରଭୃତି ବୁଲି ଦେଖିଲି । ଗ୍ରାମକୁ ଫେରିଲା ବେଳକୁ ସେ ମଧ ମୋତେ ସାଇକେଲ ପଛରେ ବସାଇ ଭୁବନେଶ୍ୱର ରେଳ ଷ୍ଟେସନରେ ଛାଡ଼ି ଦେଇଗଲେ ।

ତା'ପରେ ସତ୍ୟବାଦୀରୁ ମାଇନର୍ ପାଶ କରି ୧୯୩୬ରେ ମୁଁ କଟକ ଆସି ରେଭେନ୍ସା କଲେଜିଏଟ ସ୍କୁଲରେ ନାମ ଲେଖାଇ କଲେଜିଏଟ ସ୍କୁଲ ଛାତ୍ରାବାସରେ ରହିଲି । କଟକରେ ବଳଦ ଗାଡ଼ିଗୁଡ଼ିକ ଏକ- ବଳଦିଆ ଗାଡ଼ି ଥିଲା । ମାଲଗୋଦାମରୁ ଜିନିଷପତ୍ର ବୋହିବା ଓ ମୁନିସିପାଲ୍ଟି ଆବର୍ଜନା ବୋହି ନେବା ସେମାନଙ୍କର କାମ ଥିଲା ।

ସେତେବେଳେ କଟକ ରେଳ ଷ୍ଟେସନରୁ କଚେରୀ ପାଖ ଆମ ଛାତ୍ରାବାସକୁ ଫାଷ୍ଟ କ୍ଲାସ ଘୋଡ଼ାଗାଡ଼ି ଭଡ଼ା ଥାଏ ଆଠ ଅଣା ବା ଏବର ପଚାଶ ପଇସା । ସେକେଣ୍ଡ କ୍ଲାସ ଘୋଡ଼ାଗାଡ଼ି ଭଡ଼ା ଛଅ ଅଣା ବା ଏବର ୩୦/୩୫ ପଇସା । ହାତଟଣା ରିକ୍ସା ଭଡ଼ା ମାତ୍ର ଦୁଇ ଅଣା ବା ଏବର ଦଶ ପଇସା । ଆମେ ଛାତ୍ରମାନେ ପ୍ରାୟ ହାତଟଣା ରିକ୍ସାରେ ଯିବା ଆସିବା କରୁ । ସେତେବେଳେ ରାତିରେ ଷ୍ଟେସନକୁ ଯିବା ପାଇଁ ଏକ ଅଭିନବ ବ୍ୟବସ୍ଥା ଥାଏ । ସେଥିପାଇଁ ତୁମକୁ ରାତିରେ ନିଦରୁ ଉଠାଇ ଗାଡ଼ିକୁ ନେବା ପାଇଁ ଆଗରୁ ଗାଡ଼ିବାଲା ଠିକ୍ କରିବାକୁ ପଡ଼େ । ଗାଡ଼ିବାଲା ତୁମ ଠିକଣା ରଖି ରାତିରେ ତୁମ ରହିବା ସ୍ଥାନକୁ ଯାଇ ଉଠାଇବା ଜବାବ ସହିତ ଗ୍ରାହକକୁ କିଛି ପଇସା ଜମା ଦେଇ ଥାଆନ୍ତି । ଫାଷ୍ଟ କ୍ଲାସ ଘୋଡ଼ାଗାଡ଼ି ବାଲା ଅଣାଏ (ଏବର ପାଞ୍ଚ ପଇସା), ସେକେଣ୍ଡ କ୍ଲାସ ଘୋଡ଼ା ଗାଡ଼ି ବାଲା ଦୁଇ ପଇସା ଓ ହାତଟଣା ରିକ୍ସାବାଲା ଗୋଟିଏ ପଇସା କରି ଦେଇଥାଆନ୍ତି । ପରେ ଭଡ଼ା ସହିତ ସେ ପଇସା ଫେରି ପାଆନ୍ତି ।

ସେତେବେଳେ ଭଲ ରାସ୍ତା ନ ଥିବାରୁ ସାଇକେଲ ରିକ୍ସା ଓ ଅନ୍ୟାନ୍ୟ ଯାନ୍ତ୍ରିକଯାନ କଟକ ସହରରେ ଚାଲିବା ସମ୍ଭବ ନ ଥିଲା । ତେଣୁ କଟକରେ ତେଲେଙ୍ଗା ରିକ୍ସାବାଲା ନ ଥିଲେ । ସେମାନଙ୍କ ସ୍ଥାନରେ ପାଖଆଖ ଗଡ଼ଜାତ ମାନଙ୍କର ଅତ୍ୟାଚାରୀତ ପ୍ରଜାମାନେ କଟକ ପଳାଇ ଆସୁଥିଲେ ।

ରାଜାଙ୍କ ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହୋଇ ଗୃହ ଓ ଜମି ହରାଇ ଯେଉଁ ନିରୀହ ଗଡ଼ଜାତବାସୀ ଜୀବିକା ନିର୍ବାହ ପାଇଁ ସେମାନଙ୍କ ରାଜ୍ୟ ବାହାରକୁ ବାହାରି ଆସୁଥିଲେ, ସେମାନେ ସହରରେ କୁଲିକାମ, ଅନ୍ୟାନ୍ୟ ଶାରୀରିକ ପରିଶ୍ରମ ଓ ହାତଟଣା ରିକ୍ସା ଟାଣି ଚଳୁଥିଲେ । ସେମାନଙ୍କ ଠାରୁ ଗଡ଼ଜାତ ଅତ୍ୟାଚାରର ଲୋମହର୍ଷଣକାରୀ ଅତ୍ୟାଚାର କଥା ଶୁଣିଲେ ପ୍ରାଣ ଥରି ଉଠୁଥିଲା । ଖାଲି ପେଟରେ ବେଠି, ତା' ଉପରେ ଲାଠି ଦୈନନ୍ଦିନ ଘଟଣାରେ ପରିଣତ ହୋଇଥିଲା ।

ଥରେ ମୁଁ ହାତଟଣା ରିକ୍ସାରେ ବସି ଷ୍ଟେସନକୁ ଯାତ୍ରା କରୁଥିଲାବେଳେ ବୃଦ୍ଧଭଳି ଦିଶୁଥିବା ଶୀର୍ଣ୍ଣକାୟ ଗଡ଼ଜାତ ରିକ୍ସା ଚାଳକଟି ତା'ର ଦୁଃଖ ବର୍ଣ୍ଣନା କରି କରି ଚାଲିଥିଲା । ତା' କଥାରୁ ବୁଝିଲି ତା'ର ବୟସ ବେଶୀ ନୁହେଁ । ଖାଦ୍ୟାଭାବ ଓ ଚିନ୍ତା ଭାର ଯୋଗୁଁ ତା' ଉପରକୁ ଅକାଳ ବାର୍ଦ୍ଧକ୍ୟ ଝାମ୍ପ ମାରିଛି । ସେ ଗୋଟିଏ ଗଡ଼ଜାତର ଥିଲାବାଲା ଚାଷୀ ଘରର ପିଲା । ଚାଷବାସ କରି ଖୁସିରେ ଚଳୁଥିଲା; କିନ୍ତୁ ରାଜାଙ୍କ ମଉଜ ମଜଲିସ୍ ପାଇଁ ରାଜ ଗଡାଘରେ ଧନର ଅଭାବ ପଡ଼ିବାରୁ ସେହି ଚାଷୀମାନଙ୍କ ଉପରେ ଚୁଲି ଟିକସ ଠାରୁ ଲଙ୍ଗଳ ଟିକସ ପର୍ଯ୍ୟନ୍ତ ନାନା ଟିକସ ବସି ସେମାନଙ୍କୁ ସର୍ବସ୍ୱାନ୍ତ କରି ଦିଆଗଲା । ରାଜ କର୍ମଚାରୀମାନେ ନାନା ଭାବରେ ତାଙ୍କଠାରୁ ଅର୍ଥ

ଆଦାୟ କରିବାକୁ ଲାଗିଲେ । ସେମାନେ ମଧ ସେ ଅର୍ଥ ସବୁ ରାଜ ଭଣ୍ଡାରକୁ ନ ପଠାଇ ତୋଷରପାତ କରିବାକୁ ଲାଗିଲେ । ସେ କର୍ମଚାରୀଙ୍କ ଦାବୀମତେ ଅର୍ଥ ଯୋଗାଇ ନ ପାରିବାରୁ ଗ୍ରାମ ଦାଣ୍ଡରେ ଗଛରେ ବାନ୍ଧି ସମସ୍ତଙ୍କ ସାମନାରେ ବାଡ଼ିଆବାଡ଼ି କଲେ ।

ସେତେବେଳେ ନୂଆ ନୂଆ ଗୁପ୍ତ ରାଜନୈତିକ ସଂଗଠନ ସବୁ ଗଢ଼ା ଯାଉଥାଏ । ସେହି ସଂଗଠନ ଆଗରେ ନିଜର ଦୁଃଖ ଜଣାଇବା ଓ ତାଙ୍କ ସାହାଯ୍ୟରେ ରାଜଦ୍ୱାରରେ ଗୁହାରି କରାଇବା ପାଇଁ ଯିବାବେଳେ ଜଣେ ଗୁପ୍ତ କର୍ମଚାରୀଙ୍କ ହାବୁଡ଼ରେ ପଡ଼ିଲା । ସେ ତାଠାରୁ ସମସ୍ତ କଥା ଆଦାୟ କରି ନେଇ ରାଜାଙ୍କୁ ଜଣାଇବାରୁ ସେ ଧରା ହୋଇ ରାଜଦ୍ୱାରକୁ ଗଲା । ସେ ରାଜାଙ୍କୁ ଯେତେ କାକୁତି ମିନତି କଲା ରାଜା କିଛି ନ ଶୁଣି ରାଜଦ୍ରୋହୀ ଭାବରେ ତାକୁ କାରାଦଣ୍ଡ ଆଦେଶ ଦେଇ ତା' ଉପରେ ଅକଥନୀୟ ଅତ୍ୟାଚାର କରାଇଲେ । ସେହି କାରାଗାର ଭିତରେ ଖାଦ୍ୟାଭାବ ଓ କଠିନ ଶ୍ରମ ଦଣ୍ଡ ଯୋଗୁ ସେ କଙ୍କାଳ ସାର ହୋଇଗଲା ।

ସେତେବେଳକୁ ରାଜ ଅତ୍ୟାଚାରର ସମ୍ବାଦ କୁହୁଳି କରି ପଲଟିକାଲ୍ ଏଜେଣ୍ଟଙ୍କ କାନକୁ ଗଲା । ସେ ଆସି କାରାଗାରର ବନ୍ଦୀମାନଙ୍କୁ ଦେଖିବେ ବୋଲି ସମ୍ବାଦ ଦେଲେ । ଦଣ୍ଡବିଧିର କୌଣସି ଆଇନ ଅନୁସାରେ ସେହି ରିକ୍ସାବାଲାର ବିଧିବଦ୍ଧ ବିଚାର କରାଯାଇ ନ ଥିଲା କି ଦୋଷୀ ସାବ୍ୟସ୍ତ କରାଯାଇ ନ ଥିଲା । ସେପରି ଲୋକର କାରାଗାର ଭିତରେ ମୃତ୍ୟୁ ହେଲେ ରାଜାଙ୍କୁ ଦୋଷ ଲାଗିବ ଜାଣି ରାତି ରାତି ତାକୁ ଟେକି ନେଇ ରାଜ୍ୟ ସୀମାର ଗୋଟିଏ ଦେଉଳ ବେଢ଼ାରେ ପକାଇ ଦେଇ ଆସିଲେ ।

ସକାଳୁ ଦେଉଳର ସେବକ ତାକୁ ସେପରି ଅବସ୍ଥାରେ ଦେଖି ତା'ର ଦୟା ହେଲା । ସେ ତାକୁ ଘରକୁ ଟେକିନେଇ ଲୁଚାଇକରି ରଖି ଖାଇବା ପିଇବାକୁ ଦେବାରେ ତା' ଦେହରେ ଟିକିଏ ବଳ ପାଇଲା ।

ସେ ତା' ଘରର ଖବର ପଚାରି ଶୁଣିଲା । ତାକୁ ବାନ୍ଧି ନବାର ଶୁଣି ତା' ସ୍ତ୍ରୀ ତା'ର ପିଲା ଦୁଇଟିଙ୍କୁ ଧରି ଆଉ ଗୋଟିଏ ରାଜ୍ୟରେ ଥିବା ତା'ର ବାପ ଘରକୁ ଚାଲି ଯାଇଥିଲା । ରିକ୍ସାବାଲାଟି ଲୁଚି କରି ତା'ର ଘରବାଡ଼ି ଅବସ୍ଥା ଦେଖିବାକୁ କିଛି ଦିନ ପରେ ନିଜ ଗାଁକୁ ଗଲା । ଘର ସ୍ଥାନରେ ଏକ ମାଟି କୂଦ ରହିଥିଲା । ତାକୁ ଧରିନେବା ପରେ ତା' ଘରେ କାହାକୁ ନ ଦେଖି ସେ ଘର ରାଜ- ସରକାର ପୋଡ଼ି ପାଉଁଶ କରିଦେଇ ଥିଲେ ଓ ତା'ର ଜମିବାଡ଼ି ସରକାର ନିଜ ହାତକୁ ନେଇ ଯାଇଥିଲେ ।

ସେ ସେଠାରୁ ଚାଲି ଚାଲି ଯାଇ ତା' ଶ୍ୱଶୁରାଳୟରେ ପହଞ୍ଚିଲା । ସେ ରାଜ୍ୟରେ ମଧ ରାଜ ଅତ୍ୟାଚାର ଚାଲିଥିଲା । ଶ୍ୱଶୁର ଶାଶୁ ନ ଥିଲେ । ପିଲାଙ୍କ ମାମୁଙ୍କ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ମାମୁ ନିଜ ପିଲାଙ୍କ ଖୋରାକ ଯୋଗାଡ଼ କରିପାରୁ ନ ଥିଲେ । ତେଣୁ

ତା'ର ପିଲାମାନେ ଭିକ୍ଷା ବୃତ୍ତି କରି ବୁଲୁଥିଲେ । ସେଥିରେ ମର୍ମାହତ ହୋଇ ପିଲାଙ୍କୁ ଆଶ୍ୱାସନା ଦେଇ ସେ ରୋଜଗାର ପାଇଁ କଟକ ଆସି ରିକ୍‌ସା ଟାଣୁଥିଲା ।

ସେହି ସମୟରେ ଗଡ଼ଜାତମାନଙ୍କରେ ଜନଚେତନାର ଉଦୟ ହୋଇ ଆନ୍ଦୋଳନ କୁହୁଳି କୁହୁଳି ଜଳିବାକୁ ଲାଗିଲା । ୧୯୩୭ ମସିହାରେ ମୋଗଲ ବନ୍ଦୀ ଅଞ୍ଚଳରେ କଂଗ୍ରେସ ପ୍ରାଦେଶିକ ସରକାର ମାନଙ୍କରେ ଭାଗନେବା ସଙ୍ଗେ ସଙ୍ଗେ ଗଡ଼ଜାତ ଆନ୍ଦୋଳନ ଉତ୍ସାହିତ ହୋଇ ତୀବ୍ର ଆକାର ଧାରଣ କରିବାକୁ ଲାଗିଲା । ନେତାମାନେ ଗଡ଼ଜାତ ବାହାରେ ରହି ଗଡ଼ଜାତ ଆନ୍ଦୋଳନକୁ ଅହିଂସା ପଥରେ ପରିଚାଳିତ କରିବାରେ ଅକ୍ଷମ ହେବାରୁ ଠାଏ ଠାଏ ଗଡ଼ଜାତର ଉତ୍ପୀଡ଼ିତ ଜନତା ଅହିଂସା ନୀତି ବର୍ଜନ କରି ଉଚ୍ଛୃଙ୍ଖଳ କାଣ୍ଡମାନ ଘଟାଇବାକୁ ଲାଗିଲେ । ରଣପୁର ରାଜ୍ୟରେ ଇଂରେଜ ଶାସକ ପଲିଟିକାଲ ଏଜେଣ୍ଟ ବେଜଲଗେଟ୍‌କୁ ଜନତା ରାଗରେ ପିଟି ପିଟି ମାରିଦେଲେ । ତା'ପରେ ସରକାରୀ ଦମନଲୀଳା ଉଗ୍ରତର ହେଲା । ରଣପୁରର ରଘୁ ଓ ଦିବାକର ଦଣ୍ଡ ପାଇଲେ । ଇଂରେଜ ସରକାର ଗଡ଼ଜାତ ରାଜାମାନଙ୍କ ସୁରକ୍ଷା ପାଇଁ ସୁଶିକ୍ଷିତ ପ୍ରଚଣ୍ଡ ସେନା ଦଳ ସବୁ ପଠାଇଲେ ।

ଢେଙ୍କାନାଳ ଗଡ଼ଜାତରେ ରାଜାଙ୍କ ଆଦେଶରେ ପ୍ରଜା ଆନ୍ଦୋଳନ ସଭାରେ ନିରୀହ ଜନତା ଉପରେ ଗୁଳି ଚାଲିଲା । ସୈନ୍ୟମାନେ ରାଜ୍ୟସାରା ଖେଦି ଯାଇ ଦମନ ଲୀଳା ଚଳାଇଲେ । ଦଳେ ସୈନ୍ୟ ନଦୀ ପାର ହୋଇ ଆରପଟକୁ ଯିବାପାଇଁ ଡ଼ଙ୍ଗା ଚାଳକ ମାନଙ୍କୁ ନିର୍ଦ୍ଦେଶ ଦେଲେ । ସେମାନେ ରାଜି ନହେବାରୁ ତା' ୧୦.୧୦.୧୯୩୮ ଦିନ ସେମାନଙ୍କ ଉପରେ ଗୁଳି ଚଳାଇ ବାଳକ ବାଜି ରାଉତ ସମେତ ଛଅ ଜଣଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ସେହି ବାଳକ ବାଜି ରାଉତ ଓ ତା'ର ସାଥୀମାନଙ୍କ ଶବସବୁକୁ ଡ଼ାକ୍ତରୀ ପରୀକ୍ଷା ପାଇଁ କଟକ ଅଣାଗଲା ।

ସେହି ଶବସବୁକୁ କଟକ ନଗରୀ ପରିକ୍ରମା କରାଇ ସତ୍କାର ପାଇଁ ଶୋଭାଯାତ୍ରାରେ ନେଲାବେଳେ ଓଡ଼ିଶାର ରାଜନୈତିକ ପରିବେଶ ଗରମ ହୋଇ ଉଠିଥିଲା । ଗଡ଼ଜାତ ମାନଙ୍କରେ ଆନ୍ଦୋଳନ ତୀବ୍ରତର ହୋଇଥିଲା । ତଥାପି ଭାରତ ସ୍ୱାଧୀନତା ଲାଭ କରିବା ପର୍ଯ୍ୟନ୍ତ ରାଜରାଜୁଡ଼ାଙ୍କ ନିଦ୍ରାଭଙ୍ଗ ହୋଇ ନ ଥିଲା ।

ସ୍ୱାଧୀନ ଭାରତର ପ୍ରାକ୍ କାଳରେ ଇଂରେଜ ରକ୍ଷା କବଚ ହରାଇ ବାଧହୋଇ ଗଡ଼ଜାତ ରାଜାମାନେ ସେମାନଙ୍କ ରାଜ୍ୟ ସବୁକୁ ସ୍ୱାଧୀନ ଭାରତରେ ସାମିଲ କରି ଦେଇଥିଲେ । ପରବର୍ତ୍ତୀ କାଳରେ ରାଜା ଜମିଦାର ପ୍ରଭାବ ଦେଶରୁ ଲୋପ ହୋଇଥିଲା । କିନ୍ତୁ ସେହି ପୁରାତନ ରାଜା ଜମିଦାର ବିଡ଼ାଳମାନେ ବୈଷ୍ଣବ ବେଶରେ ରାଜନୀତିରେ ପ୍ରବେଶ କରି ଶାସନ କ୍ଷେତ୍ରରେ ଉଚ୍ଚ ଆସନ ସବୁ ଅଧିକାର କରି ପାରିଥିଲେ ।

ଯେଉଁ ରଣପୁରରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର ଯୋଗୁଁ ବେଜେଲଗେଟଙ୍କର ଜନତା ଦ୍ୱାରା ଜୀବନହାନୀ ଘଟିଥିଲା ଓ ନିରୀହ ସଂଗ୍ରାମୀ କର୍ମୀମାନେ ପ୍ରାଣାନ୍ତକ ନିର୍ଯ୍ୟାତନା ଭୋଗକରିଥିଲେ, ସେହି ରାଜବଂଶ ରାଜମାତା ବସନ୍ତ ମଞ୍ଜରୀ ଓଡ଼ିଶାରେ କଂଗ୍ରେସୀ ମନ୍ତ୍ରୀ ଆସନ ଅଳଂକୃତ କରି ପାରିଥିଲେ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ରାଜାଙ୍କ ଅତ୍ୟାଚାର ଯୋଗୁଁ ଦଶପଲ୍ଲା ରାଜ୍ୟରେ ଏକ ମେଳି ବିଦ୍ରୋହ ମୁଣ୍ଡ ଟେକି ଥିଲା । ସେହି ମେଳିର ପ୍ରଧାନ ନେତା ଗୋବିନ୍ଦ ମିଶ୍ରଙ୍କ ମୁଣ୍ଡ ଉପରେ ଫାସି ପରଓ୍ୱାନା ଝୁଲୁଥିଲା । ସେ ରାଜ୍ୟ ଛାଡ଼ିବାକୁ ବାଧହୋଇ ବାହାରୁ ସଂଗ୍ରାମକୁ ନିୟନ୍ତ୍ରିତ କରିବା ପରେ ମହାତ୍ମାଗାନ୍ଧିଙ୍କ ନିକଟକୁ ଯାଇ ଅହିଂସା ଧର୍ମରେ ଦିକ୍ଷିତ ହୋଇ ସାବରମତି ଆଶ୍ରମରେ ଗାନ୍ଧିଜୀଙ୍କ ଏକ ବିଶ୍ୱସ୍ତ କର୍ମୀ ହୋଇ ରହିଥିଲେ ।

ସ୍ୱାଧୀନ ଭାରତରେ କଂଗ୍ରେସ ଦଳ ଦଶପଲ୍ଲାରୁ ନିର୍ବାଚନରେ ତାଙ୍କୁ ଟିକେଟ ନ ଦେଇ ଦଶପଲ୍ଲା ରାଜାଙ୍କୁ କଂଗ୍ରେସ ପ୍ରତିନିଧି ଭାବେ ବାଛିବା ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦେଇଥିଲେ ।

ଯେଉଁ ଢେଙ୍କାନାଳ ରାଜାଙ୍କ ଅତ୍ୟାଚାରରେ ଦେଶ ଥରହର ହୋଇ ଉଠୁଥିଲା, ଧନୀ ପ୍ରଜା ରିକ୍ସାବାଲାରେ ପରିଣତ ହୋଇ ଥିଲେ, ଯିଏ ପ୍ରତଦିନ ତାଙ୍କ ରାଜ୍ୟରେ ନୂଆ ନୂଆ ଦଣ୍ଡ ଉଦ୍ଭାବନ କରି ନିଜର ମନଖୁସି ପାଇଁ ଲୋକଙ୍କ ଉପରେ ଅତ୍ୟାଚାର କରି ଚାଲିଥିଲେ, ଗୋଟିଏ ମୁଣ୍ଡିଆ ଉପରେ ମୃଦଙ୍ଗ ବା ପିଟୁଣି ଘର ନିର୍ମାଣ କରି ସେଥିରେ ପିଟି ପିଟି ହାତ ଗୋଡ଼ ଚୂନା କରି ପକାଇ ଦେଉଥିଲେ ଏବଂ ରାଜଦ୍ରୋହୀ ଦ୍ୱାହି ଦେଇ ଲୋକଙ୍କୁ ଧରି ନେଇ ତାଙ୍କର ଗୋଟି ଗୋଟି କରି ନିଶ ଉପାଡ଼ି ସେଥିରେ ଲଙ୍କା ପ୍ରଲେପ ଦେଇ ଆନନ୍ଦ ଉପଭୋଗ କରାଯାଉଥିଲା, ଭାରତ ସ୍ୱାଧୀନ ହେବାପରେ ଦଳଗଢ଼ି ସେ ବିଧାନସଭାକୁ ଲୋକପ୍ରତିନିଧି ଭାବରେ ନିର୍ବାଚିତ ହୋଇ ପାରିଥିଲେ । ସେହି ରାଜବଂଶର ଦାୟାଦକୁ କଂଗ୍ରେସ ପକ୍ଷରୁ ନିର୍ବାଚିତ କରାଯାଇ କେନ୍ଦ୍ର ମନ୍ତ୍ରୀ ପଦରେ ଅଧିଷ୍ଠିତ କରାଯାଇଥିଲା ।

ତେଣୁ ଏହି କେତେ ବର୍ଷ ଭିତରେ ବହୁ କଥା ବଦଳି ଯାଇଛି । ଭଲ ଭେଲ, ଶୁଦ୍ଧ ଓ ଭେଜାଲ ପ୍ରଭୃତି ଭିତରେ ପ୍ରଭେଦ ପ୍ରାୟ ଲୋପ ହେବାକୁ ବସିଛି ।

ଘୋଡ଼ାଗାଡ଼ି ଓ ହାତଟଣା ରିକ୍ସା, ସବାରୀ କଟକରୁ ବିଦାୟ ନେଇଛନ୍ତି । ବର୍ତ୍ତମାନ ରିକ୍ସାବାଲାକୁ ଆଉ ଝଳନାଳ ହୋଇ ରିକ୍ସା ଟାଣିବାକୁ ପଡୁନାହିଁ ।

୧୯୩୬ରେ ଯେଉଁ ପଡ଼ୋଶୀ ପ୍ରଦେଶ ସଙ୍ଗେ ଲଢ଼ି ଦୁଇଟି ମାତ୍ର ଜିଲ୍ଲା ଆଣି ଓଡ଼ିଆ ସ୍ୱତନ୍ତ୍ର ପ୍ରଦେଶଟିଏ ପାଇଥିଲା, ସେହି ପଡ଼ୋଶୀ ତେଲଙ୍ଗାମାନେ ଯେ ଆମର ବହୁ

ଅଞ୍ଚଳ ଏବେ ବି ଅଧିକାର କରି ବସିଛନ୍ତି । ସେହିମାନଙ୍କ ପ୍ରରୋଚନାରେ ତେଲଙ୍ଗା ରିକ୍ସାବାଲାମାନେ ଆସି କଟକ ବସ୍ତି ଅଞ୍ଚଳ ସଂପୂର୍ଣ୍ଣ ଅଧିକାର କରିଗଲେଣି ।

ଆଗ ସିଟ୍ ଉପରେ ବସି ସାଇକେଲ ରିକ୍ସା ଚଳାଇଲା ବେଳେ ସେମାନଙ୍କ କଡ଼ା ମିଜାଜ, ଅଭଦ୍ର ବ୍ୟବହାର ଓ ଅବୁଝା ଭାଷା ରିକ୍ସା ଚଢ଼ାଳିମାନଙ୍କ ମନରେ ଭୟ ସଂଚାର କରି ଚାଲିଛି । ବିଭିଷିକା ସେହିମାନଙ୍କ ଯୋଗୁଁ ଘଟୁଛି । ସେମାନେ ଚୋରି ଡ଼କାୟତି କରି ଅବାଧରେ ନିଜ ରାଜ୍ୟକୁ ଖସିଯାଇ ପାରୁଥିବା ଯୋଗୁଁ ଚୋରି ଡ଼କାୟତି ଓ ଦଙ୍ଗାହଙ୍ଗାମାର ସଂଖ୍ୟା ବୃଦ୍ଧିପାଉଛି । ଏସବୁ ଅନୁଭବ କଲାବେଳେ ସେହି ନିରୀହ ଅତ୍ୟାଚାରିତ, ମିଷ୍ଟଭାଷି ସତ ସ୍ୱଭାବର ହାତଟଣା ଓଡ଼ିଆ ରିକ୍ସାବାଲାଙ୍କ କଥା ମନେପଡ଼ିବା ସ୍ୱାଭାବିକ ।

## ସେ କାଳର ସାଇକେଲ ଓ ମୋଟର ଚଢ଼ା

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ବେଳକୁ କଳଯାନ ସାଇକଲ ମୋଟର ଗାଡ଼ି ଓ ପରେ ବସ୍ ସବୁ ଓଡ଼ିଶାରେ ଚଳାଚଳ କଲା । ପ୍ରଥମେ ପୁରୀ ସହରରେ ମାତ୍ର ତିନୋଟି ସାଇକଲ ଥିଲା । ସେ ତିନୋଟିଯାକ ଗୋରା ଶାସକମାନଙ୍କର । କଲେକ୍ଟର, ପୋଲିସ୍ ସାହେବ (ଏସ.ପି) ଓ ସିଭିଲ ସର୍ଜନଙ୍କର କେବଳ ସାଇକଲ ଥିଲା । ଅବଶ୍ୟ ସେ ସାଇକଲ ସବୁ ସିଧା ବିଲାତରୁ ଆସିଥିଲା ।

ବହୁକାଳ ଏପରିକି ସ୍ୱାଧୀନତାର ପ୍ରାକ୍‌କାଳ ପର୍ଯ୍ୟନ୍ତ ଆମ ଦେଶରେ ସେ ସବୁର କଳକାରଖାନା କିଛି ନ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟକୁ ମଧ ସାଧାରଣ ବ୍ରୁଶ୍ ଏବଂ କ୍ଷିଅର ପାତିଆ (ବ୍ଲେଡ଼) ଆମକୁ ବିଦେଶରୁ ଆମଦାନୀ କରିବାକୁ ପଡୁଥିଲା । ବିଲାତରୁ ଆସୁ ଥିବା 'ରାଲେ' ସାଇକଲ ଦାମ ଥିଲା ଷାଠିଏ ଟଙ୍କା । ବି.ଏସ.ଏ ସାଇକଲ ଅଶୀଟଙ୍କା । ଅନ୍ୟ ଦେଶର ସାଇକଲ ମିଳୁନଥିଲା, ହୁଏତ ସେମାନଙ୍କର ଦର ବେଶୀ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଅବ୍ୟବହିତ ପୂର୍ବରୁ ଜାପାନ ଅତି ଶସ୍ତା ଜିନିଷ ସବୁ ତିଆରି କରି ପୃଥିବୀ ବଜାରରେ ତା' ଜିନିଷର ଚାହିଦା ବଢ଼ାଇଲା । ଜାପାନ କିଛିଦିନ ପାଇଁ ଚଉଦ ଟଙ୍କିଆ ସାଇକଲ ଭାରତ ବଜାରକୁ ଛାଡ଼ିଥିଲା ।

କିନ୍ତୁ ବିଶ୍ୱଯୁଦ୍ଧର ଆରମ୍ଭରୁ ଜାପାନ ଜର୍ମାନ ପ୍ରଭୃତି ଅପର ପକ୍ଷର ଦେଶମାନଙ୍କ ସହିତ ଇଂରେଜ ଶାସିତ ଭାରତର ବ୍ୟବସାୟ ବନ୍ଦ ହୋଇଯାଇଥିଲା । ସେଥିରେ ଜାପାନ ସାଇକଲ ଜର୍ମାନ ବ୍ଲେଡ଼ ସବୁ ବନ୍ଦ ହୋଇଗଲା ।

ମୋ ଭାଇନା ମୋଠାରୁ ପ୍ରାୟ ଦଶ ବର୍ଷ ବଡ଼ । ମୁଁ ଲୋଅର ପ୍ରାଇମେରୀ ସ୍କୁଲରେ ପଢ଼ିଲା ବେଳକୁ ସେ କଟକରେ ପଢୁଥିଲେ । ପିତା ତାଙ୍କ ପାଇଁ ରାଲେ ସାଇକଲଟିଏ

କିଣି ଦେଇଥିଲେ । ସେ ଛୁଟିରେ ସାଇକଲଟି ଗାଁକୁ ଆଣୁଥିଲେ । ମୁଁ ଟିକିଏ ବଡ଼ ହେବାରୁ ସତ୍ୟବାଦୀ ମାଇନର ସ୍କୁଲରେ ପଢ଼ିଲି । ସେଥିପାଇଁ ମୋତେ ପ୍ରତିଦିନ ଚାଲିକରି ଦୁଇ ତିନି ମାଇଲ ଯିବା ଆସିବା କରିବାକୁ ପଡ଼େ । ମୁଁ ସାଇକଲ ଚଢ଼ି ଶିଖିଲେ ମୋ ପାଇଁ ସାଇକଲ କିଣାଯାଇ ପାରେ ଭାବି ମୁଁ ସାଇକଲ ଶିଖିବାକୁ ମନ କଲି । କିନ୍ତୁ ଭାଇନାଙ୍କୁ କହି ଶିଖିବା ପାଇଁ ସାଇକଲ ନେବାକୁ ମୋର ସାହସ ନ ଥିଲା ।

ଆମ ଆଗ ଦୁଆରର ଭାଇନାଙ୍କ ସମବୟସ୍କ ଶଶି ଭାଇନା ଶେଷ ଜୀବନ ପର୍ଯ୍ୟନ୍ତ ସାଇକଲ ଚଢ଼ିବା ବିଦ୍ୟା ହାସଲ କରିପାରି ନ ଥିଲେ । ତଥାପି ମଝିରେ ମଝିରେ ଚେଷ୍ଟା କରୁଥିଲେ । ସେ ମୋ କଥା ଜାଣିପାରି କହିଲେ ତୋ ଭାଇନା ନ ଥିଲା ବେଳେ ତୁ ତାଙ୍କ ସାଇକଲଟି ଆଣ । ଆମେ ଦୁହେଁ ଶିଖିବା । ମୁଁ ଟିକିଏ ଟିକିଏ ଜାଣେ, ତେଣୁ ତୋତେ ଶିଖାଇ ଦେବି ।

ମୁଁ ପ୍ରଲୋଭନରେ ପଡ଼ି ସାଇକେଲଟି ନେଲି । ଗାଁ ମୁଣ୍ଡ ତୋଟା ଡେଇଁ ଗୋଟିଏ ପଡ଼ିଆକୁ ଆମେ ଗଲୁ । ଶଶି ଭାଇନା ମୋତେ ସାଇକେଲ ନ ଦେଇ ନିଜେ ଶିଖିବାକୁ ଚେଷ୍ଟାକରି ଗୋଟାଏ ହିଡ଼ରେ ବାଡ଼େଇ ହୋଇ ପଡ଼ିଗଲେ । ସାଇକଲ ଚକା ବଙ୍କା ହୋଇଗଲା । ତାଙ୍କ ଦେହ ହାତ ଖଣ୍ଡିଆ ହୋଇଗଲା । ସେ ସେଠାରେ ମୋତେ ଛାଡ଼ି ଗାଁକୁ ପଳାଇ ଆସିଲେ । ମୁଁ ସେ ସାଇକଲଟାକୁ କୌଣସି ମତେ ଘୋଷାରି ଘୋଷାରି ଆଣିଲା ବେଳେ ଭାଇନାଙ୍କ ଦୃଷ୍ଟି ମୋ ଉପରେ ପଡ଼ିଗଲା । ସେଥିରେ ମୋ ଉପରେ ଉତ୍ତମ ମଧ୍ୟମ ବୃଷ୍ଟି ହୋଇ ମୋ ସାଇକଲ ଶିଖିବା ଆଶା କ୍ଷୀଣ ହୋଇଗଲା । ସେପରି ଶାସ୍ତି ପାଇବାପରେ ମୁଁ ଆଉ ସେ ସାଇକଲ ଛୁଇଁ ନ ଥିଲି ।

୧୯୩୬ ରେ କଟକରେ ପଢ଼ିବାକୁ ଆସି କଲେଜିଏଟ ହଷ୍ଟେଲରେ ଥିଲାବେଳେ ମୋର ଜଣେ ସହପାଠୀ ତାଙ୍କ ସାଇକଲରେ ସନସାଇନ ପଡ଼ିଆରେ ମୋତେ ସାଇକଲ ଶିଖାଇ ଦେଇଥିଲେ । ସେ ବର୍ଷ ଛୁଟିରେ ଗ୍ରାମକୁ ମୁଁ ଓ ଭାଇନା ଦୁହେଁ ଆସିଥିଲୁ । ମୁଁ ସାହସ କରି ସେ ନ ଥିଲାବେଳେ ପୁଣି ତାଙ୍କ ସାଇକଲ ନେଇ ବାଲି ରାସ୍ତାରେ ସତ୍ୟବାଦୀ ବାହାରିଲି ।

ମୋର ଦୁର୍ଯୋଗକୁ ଆମ କୁମ୍ଭାରୁଣୀ ବୁଢ଼ୀ ଗୁଡ଼ିଏ ହାଣ୍ଡି ଆଟିକା ମୁଣ୍ଡାଇ ରାସ୍ତାରେ ଯାଉଥିଲା । ମୁଁ ପଛରୁ ସାଇକଲ ଘଣ୍ଟି ବଜାଇବାରୁ ସେ ଇତସ୍ତତଃ ହୋଇଗଲା । ମୋ ସାଇକଲ ଚକଟି ତା'ର ଦୁଇ ଗୋଡ଼ ଭିତରେ ପଶିଯାଇ ସେ ଚିତ୍‌ପଟାଙ୍ଗ ମାରିଲା । ହାଣ୍ଡି ଆଟିକାଗୁଡ଼ିକ ହାରମୋନିଅମ ବହିର୍ଭୂତ ସ୍ୱର ବିନ୍ୟାସ କରି ସେଠାରେ ଭଗ୍ନ ଶରୀରରେ ଗଡ଼ିବାକୁ ଲାଗିଲେ । ମୋର ସାଇକଲର ସତ୍ୟବାଦୀ ଯାତ୍ରା ସେତିକିରେ ବନ୍ଦ ହେଲା । ମୁଁ ସାଇକଲ ଧରି ଘରକୁ ଫେରି ଯଥା ସ୍ଥାନରେ ସାଇକଲଟି ରଖି ସୁନାପିଲା

ପରି ସେଠାରୁ ଚାଲିଗଲି । କିନ୍ତୁ ସେହି କୁମ୍ଭାରୁଣୀ ବୁଢ଼ୀ ଦୟାରୁ ମୋର ଆଡ୍‌ଭେଞ୍ଚର ଅଛପା ରହିଲା ନାହିଁ । ବୁଢ଼ୀକୁ କିଛି ଅଣ୍ଡାଗୁଞ୍ଜା ଦେଇ ବୁଝାଇ ସୁଝାଇ ମୋର ବୋଉ ବିଦା କରିଦେଲା ।

ସେ ସାଇକଲର ଭାଗ୍ୟ ସେତେ ଭଲ ନ ଥିଲା । ଭାଇନା ରେଭେନ୍‌ସା କଲେଜରେ ପଢ଼ିଲାବେଳେ ତାଙ୍କର ଜଣେ ପଢ଼ାସାଥୀ ସେ ସାଇକଲର ଲୋଭ ସମ୍ବରଣ କରି ନ ପାରି ଫିଟାଫିଟି କରି ଗୋଟିଏ ଯାତ୍ରାଦଳ ସାହାଯ୍ୟରେ ଗଞ୍ଜାମର ନିଜ ଗ୍ରାମକୁ ପଠାଇଲାବେଳେ ଧରା ପଡ଼ିଥିଲେ । ତା'ପରେ ଭାଇନା ଗୋଟିଏ ନୂଆ ସାଇକଲ ମୋ ପାଇଁ କିଣା ହେବା ଦେଖି ସେ ନୂଆ ସାଇକଲଟି ନେଇ ମୋତେ ତାଙ୍କ ପୁରୁଣା ସାଇକଲଟି ହାବୁଡ଼େଇ ଦେଇଥିଲେ । ପରେ ସେ ସାଇକଲଟି ମୁଁ ନବଭାରତ ପ୍ରେସ୍ ସାମନାରେ ଥୋଇଥିବା ବେଳେ ତାହା ଉଭାଇ ଯାଇଥିଲା । ପ୍ରେସ୍‌ର ଚପରାଶି ଉପରେ ସନ୍ଦେହ ହେଲା, କିନ୍ତୁ ସେ ସାଇକଲଟି ଆଉ ମିଳିଲା ନାହିଁ ।

ପ୍ରଥମେ ଭାଇନାଙ୍କର ଯେଉଁ ବନ୍ଧୁ ସେ ସାଇକଲଟି ପ୍ରତି ଲୋଭ କରି କଟକ ଛାଡ଼ି ଚାଲିଯାଇଥିଲେ, ସେ ମାନ୍ଦ୍ରାଜ ପ୍ରଦେଶରେ ବିବାହ କରି ପାଠଶାଠ ପଢ଼ି ଡ଼ାକ୍ତର ହୋଇ ମୁଁ ମେଡ଼ିକାଲ କଲେଜରେ ପଢ଼ିଲା ବେଳକୁ ସେ ସେଠାରେ ଶିକ୍ଷକ ଭାବେ ଯୋଗଦେଲେ । ତାଙ୍କର ଦାରିଦ୍ର୍ୟ ମନୋଭାବ ଥିଲେ ମଧ୍ୟ ଜଣେ ସରଳ ପ୍ରକୃତିର ଲୋକ । ସେ ସେତେବେଳେ ଚାକିରି ଦରମା ସହିତ ଘରୋଇ ଚିକିତ୍ସା କରି ଭଲ ଦୁଇ ପଇସା ମଧ୍ୟ ଅର୍ଜନ କରୁଥାଆନ୍ତି । ସେ ପ୍ରତିଦିନ ଚାଲି ଚାଲି ଧଇଁ ସଇଁ ହୋଇ କଲେଜ ସମୟରେ ଡ଼ିପାର୍ଟମେଣ୍ଟରେ ଆସି ପହଞ୍ଚନ୍ତି ।

ସେହି ଡ଼ିପାର୍ଟମେଣ୍ଟର ପ୍ରଧାନ ଶିକ୍ଷକ ଜଣେ ଅତି ମେଳାପୀ ଓ ବେପରୁଆ ଲୋକ । ସେ ଲଗାମଛଡ଼ା ପଇସା ପତ୍ର ଖର୍ଚ୍ଚ କରନ୍ତି । ଯାହାକୁ ଧାର ଦିଅନ୍ତି ତା'ଠାରୁ ଫେରି ପାଇବାର ଆଶା ରଖନ୍ତି ନାହିଁ କି ଯାହାଠାରୁ ପଇସା ତାଙ୍କ ପକେଟକୁ ଯାଏ ତାହା ଯେଉଁଥିପାଇଁ ଯାଇଥାଉ ସେ ଆଉ ଫେରେନାହିଁ ।

ଯୁଦ୍ଧ ସମୟ । ପ୍ରଧାନଶିକ୍ଷକ ସେହି ମିତବ୍ୟୟୀ ନୂତନ ଶିକ୍ଷକଙ୍କ ପ୍ରତି ଦୃଷ୍ଟି ରଖିଥିଲେ । ପ୍ରଧାନ ଶିକ୍ଷକ ପ୍ରତିଦିନ ନିଜ ମୋଟର ଗାଡ଼ିରେ ଯିବା ଆସିବା କରନ୍ତି । ତାଙ୍କ ସହକାରୀ ଚାଲି କରି ଯିବା ଆସିବା କରିବା ବୋଧହୁଏ ତାଙ୍କୁ ଭଲ ଲାଗିଲା ନାହିଁ ।

ଦିନେ ପ୍ରଧାନ ଶିକ୍ଷକ ସେ ନୂତନ ଶିକ୍ଷକଙ୍କୁ ଡ଼ାକି କହିଲେ -- ହଇଓ, ତୁମେତ ଭଲ ରୋଜଗାର କରୁଛ, ଅନ୍ତତଃ ସାଇକଲରେ ନ ଆସି ସବୁଦିନ ଚାଲିକରି କାହିଁକି

ଯିବା ଆସିବା କରୁଛ ? ନୂତନ ଡ଼ାକ୍ତର ଶିକ୍ଷକ କହିଲେ, 'ସାର, ଏ ଯୁଦ୍ଧ ସମୟରେ ନୂଆ ସାଇକଲଟିଏ କେଉଁଠି ମିଳିବ ? ମିଳିଲେ ମୁଁ ନିଶ୍ଚୟ କିଣିବି ।'

ପ୍ରଧାନ ଶିକ୍ଷକ କହିଲେ ପଇସା ଖର୍ଚ୍ଚ କଲେ କ'ଣ ନ ମିଳିବ ? ଏଠାରେ ନ ମିଳିଲେ କଣ କଲିକତାରେ ମିଳିବ ନାହିଁ ? କଲିକତାରେ ନୂଆ ସାଇକଲ ଯାହାକୁ ଯେତେ । ସେଠାକୁ ସାଇକଲ ସବୁ ପାଣି ଜାହାଜରେ ସିଧା ଆସୁଛି । ଆଜି ରାତିରେ ମୁଁ କଲିକତା ଯାଉଛି । ତୁମେ ଶହେଟି ଟଙ୍କା ବାହାର କର । ମୁଁ ଗୋଟିଏ ଭଲ ସାଇକଲ ତୁମକୁ ଆଣିଦେବାର ବ୍ୟବସ୍ଥା କରିଦେବି ।'

ବିଚରା ନୂଆ ଡ଼ାକ୍ତର ସଙ୍ଗେ ସଙ୍ଗେ ଘରକୁ ଯାଇ ତାଙ୍କ କଷ୍ଟୋପାର୍ଜିତ ଧନରୁ ଶହେଟି ମୁଦ୍ରା ଆଣି ସେହି ଉପରିସ୍ଥ ଶିକ୍ଷକଙ୍କୁ ଦେଇ ସାଇକଲ ପାଇଁ ଚାହିଁ ରହିଲେ । ଉପରିସ୍ଥ ଶିକ୍ଷକ କଲିକତାରୁ ଫେରିଲେ, କିନ୍ତୁ ସାଇକଲର ଦେଖା ନ ଥିଲା । ନୂଆ ଶିକ୍ଷକ ପଚାରିବାରୁ କହିଲେ- 'ସବୁ ନୂଆ ସାଇକଲ ସରି ଯାଇଥିଲା, ଆଉ ଗୋଟିଏ ସାଇକଲ ଆଣୁଥିବା ଜାହାଜ ଶୀଘ୍ର ଆସି କଲିକତାରେ ପହଞ୍ଚିବ । ତୁମର ବ୍ୟସ୍ତ ହେବାର ନାହିଁ । ମୁଁ ଟଙ୍କା ଜମାଦେଇ ଆସିଛି । ତୁମ ଠିକଣାରେ ସାଇକଲ ଆସି ପହଞ୍ଚିଯିବ । ଦିନ ପରେ ଦିନ ଗଡ଼ି ଚାଲିଲା । ଆଜି ଆସିବ କାଲି ଆସିବ କହି ପ୍ରଧାନ ଶିକ୍ଷକ ସମୟ ଗଡ଼ାଇବାକୁ ଲାଗିଲେ । ନୂଆଶିକ୍ଷକ ଗଁ ଗଁ ହୋଇ ସେ କଥା କହି ବୁଲିବା ପ୍ରଧାନ ଶିକ୍ଷକଙ୍କ କାନରେ ପଡ଼ିବାରୁ ସେ ଦିନେ ତାଙ୍କୁ ପାଖକୁ ଡ଼କାଇ କହିଲେ, ହଇଓ ମୁଁ କ'ଣ ତୁମ ସାଇକଲଟା ମୁଣ୍ଡାଇକରି ଆଣିଥାଆନ୍ତି, କହିଡଥିଲି ଅଣାଇବାର ବ୍ୟବସ୍ଥା କରାଇଦେବି । ବିଲାତ କମ୍ପାନୀକୁ ତ ଖବର ପଠାଗଲା । ଜହାଜ ବି ବିଲାତ ବନ୍ଦର ଛାଡ଼ିଲା । କିନ୍ତୁ ତମ କୁକୁ କୁକୁ ଗୁଣରୁ ତୁମେ ସବୁ ହରାଇଲ । କଥାରେ ଅଛି -

ଖଣ୍ଡିଗଣିଆର ମାଇପ ମରେ
ଆଟିକା ପିଟାର ଦିଗୁଣ ସରେ ।

ତୁମ ପାଇଁ ଏହା ଘଟନ୍ତା ନାହିଁ ତ ଆଉ କାହା ପାଇଁ ଘଟନ୍ତା ! ତୁମେ ଧୈର୍ଯ୍ୟ ନ ଧରି ସବୁବେଳେ କେଁ କେଁ ହେଲ । ଏବେ ଅଶୁଭ ଖବର ଆସିଲା । ତୁମେ ଜାଣ କିପରି ଯୁଦ୍ଧର ଘନଘଟା ଲାଗିଛି । ତୁମ ସାଇକଲଟା ଯେଉଁ ପାଣି ଜାହାଜରେ ଆସୁଥିଲା, ତାହା ଜାପାନର ବୁଡ଼ାଜାହାଜର ଟରପେଡ଼ୋ ମାଡ଼ରେ ଅତଳ ସାଗରରେ ବୁଡ଼ିଯାଇଛି । ଦୈବ ଦୁର୍ଘଟଣାକୁ କମ୍ପାନୀ ଦାୟୀ ନୁହନ୍ତି । ପଇସା ତକ ପାଣିରେ ପଡ଼ିଗଲା ବୋଲି ଦୁଃଖ ଲାଗୁଛି । ହେଉ ଏ ସାମାନ୍ୟ ଟଙ୍କା ତ, ଭଗବାନ କଲେ ତୁମେ ଦିନକେ ତାହା ରୋଜଗାର କରିନେବ, ସେଥିପାଇଁ ଆଉ ଶୋଚନା କ'ଣ ? ରାଜା ପୁଅକୁ କି ଖଜା

ଅପୂର୍ବ ! ତୁମେ ବିଚାରିଲେ ତ ମଟର ଗାଡ଼ି କିଣିପାରିବ। କିନ୍ତୁ ସେହି ଶିକ୍ଷକ ଜୀବନରେ ମଟର ଗାଡ଼ି କିଣିପାରି ନ ଥିଲେ ।

**ମୋଟର ଚାଳକ :**

ପରେ ପୁରୀର ଗୋରା ଅଫିସରମାନେ ସାଇକଲ ସ୍ଥାନରେ ମଟରଗାଡ଼ି ରଖିଥିଲେ । ପ୍ରଥମ ଅବସ୍ଥାରେ ପୁରୀରେ ପାଞ୍ଚଟି ମୋଟର ଗାଡ଼ି ଥିଲା । ତିନୋଟି ଗୋରା ଅଫିସରଙ୍କର, ଗୋଟିଏ ଏମାର ମଠ ମହନ୍ତଙ୍କର ଓ ଅନ୍ୟଟି ଜଣେ ନାମଜାଦା ଜମିଦାର ଓକିଲଙ୍କର । ସେ କାଳରେ ଜଣେ ହେଲେ ଓଡ଼ିଆ ଡ୍ରାଇଭିଂ ଶିଖି ନଥିଲେ ତେଣୁ ଗାଡ଼ି ଚଳାଇବା ପାଇଁ ଏମାର ମଠ ମହନ୍ତ କଲିକତାରୁ ଯୋଗାଡ଼ କରି ଡ୍ରାଇଭରଟିଏ ଆଣିଥିଲେ ।

ଏବେ ଉଡ଼ାଜାହାଜ ଚାଳକ ପାଇଲଟମାନଙ୍କୁ ଯେପରି ଉଚ୍ଚ ସମ୍ମାନ ଦିଆଯାଉଛି ସେପରି ସେତେବେଳେ ସେବାକାରୀଙ୍କ ଭିତରେ ଡ୍ରାଇଭରଙ୍କ ସ୍ଥାନ ସବୁଠାରୁ ଉପରେ ଥିଲା । ସେମାନଙ୍କୁ ଡ୍ରାଇଭର ବାବୁ ବୋଲି ସମ୍ବୋଧନ କରାଯାଉଥିଲା ।

ମୋର ମନେଅଛି ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ଆରମ୍ଭରେ ଆମ ସତ୍ୟବାଦୀ ମାଇନର ସ୍କୁଲ ପ୍ରାଇଜକୁ ପୁରୀର ଏମାର ମଠ ମହନ୍ତ ରାମାନୁଜ ଦାସଙ୍କୁ ପୁରୋଧା ଭାବରେ ନିମନ୍ତ୍ରିତ କରାଯାଇଥିଲା । ସେ ତାଙ୍କ ମୋଟର ଗାଡ଼ିରେ ଆସି ପହଞ୍ଚିବା ପରେ ତାଙ୍କୁ ସଭାମଞ୍ଚ ଉପରକୁ ନିଆଗଲା । ତାଙ୍କ ସଙ୍ଗେ ସଙ୍ଗେ ଡ୍ରାଇଭର ବାବୁ ମଧ୍ୟ ସେ ମଞ୍ଚ ଉପରକୁ ଉଠିଲେ । ମହନ୍ତ ମହାରାଜାଙ୍କ ଆସନ ପଛକୁ ଡ୍ରାଇଭର ବାବୁଙ୍କ ପାଇଁ ଆଉ ଗୋଟିଏ ଆସନ ପଡ଼ି ସେଥିରେ ସେ ବସିଲେ । ଆଜିକାଲି ଲାଟ ସାହେବମାନଙ୍କ ସାହାଯ୍ୟକାରୀ ଅଫିସରଙ୍କୁ ଲାଟ ସାହେବଙ୍କ ପଛରେ ସ୍ଥାନ ଦିଆଯାଇ ଥାଏ, କିନ୍ତୁ ସେମାନେ ପ୍ରାୟ ଆସନରେ ନ ବସି ଠିଆହୋଇ ଲାଟଙ୍କ ନିରାପତ୍ତା ପ୍ରତି ଦୃଷ୍ଟି ଦେଇଥାଆନ୍ତି; କିନ୍ତୁ ଆମ ପ୍ରାଇଜ ସଭାରେ ଡ୍ରାଇଭର ବାବୁ ଆରାମରେ ସେ ଚଉକିରେ ବସି ଢୁଳାଇ ପଡ଼ିଥିଲେ । ସଭା ଭଙ୍ଗ ପରେ ମହନ୍ତ ମହାରାଜ ତାଙ୍କୁ ଉଠାଇ ସଙ୍ଗରେ ନେଇ ମଞ୍ଚ ତଳକୁ ଓହ୍ଲାଇଲେ ।

ବିଂଶ ଶତାବ୍ଦୀର ତୃତୀୟ, ଚତୁର୍ଥ ଦଶକରେ ନୂଆ ଛୋଟ ଗାଡ଼ିର ଦାମ୍ ୧୫୦୦-୨୦୦୦ ଟଙ୍କା ଭିତରେ ଥାଏ । କିନ୍ତୁ ଦିଲ୍ଲୀ ପ୍ରଭୃତି ବଡ଼ ସହରରେ ସେକେଣ୍ଡହ୍ୟାଣ୍ଡ ଗାଡ଼ି ସବୁ ଚଳନ୍ତି ଅବସ୍ଥାରେ ମାତ୍ର ୨୦୦ରୁ ୪୦୦ ଟଙ୍କା ଭିତରେ ମିଳୁଥାଏ । କିନ୍ତୁ ଓଡ଼ିଶାରେ ରାସ୍ତାର ଅଭାବ ଓ ଦୁରବସ୍ଥା ଯୋଗୁଁ ବେଶୀ ସଂଖ୍ୟାରେ ଗାଡ଼ି ନ ଥାଏ । କଟକ ସହରରେ ଯେ କେତେ ଖଣ୍ଡି ଗାଡ଼ି ଚଳୁଥାଏ ତା' ଭିତରେ ଭକ୍ତକବି ମଧୁସୂଦନ

ରାଓଙ୍କ ଜ୍ୟେଷ୍ଠ ପୁତ୍ର ସ୍ୱନାମଧନ୍ୟ ଡାକ୍ତର ଜୟନ୍ତ ରାଓଙ୍କ ଗାଡ଼ିଟି ଗୋଟିଏ ଦର୍ଶନୀୟ ପଦାର୍ଥ । ଗାଡ଼ିର ଚକ ଗୁଡ଼ିକ ସାଇକଲ ଚକ ପରି ଷୋଳଦିଆ ଚକ । ଗାଡ଼ିଟା ତକୁ ଏତେ ଉଚ୍ଚା ଯେ ତା' ଭିତର ଦେଇ ଗୋଟିଏ ସାନ ପିଲା ସ୍ୱଚ୍ଛନ୍ଦରେ ଏପଟରୁ ସେପଟକୁ ଚାଲିଯାଇ ପାରିବ । ଗାଡ଼ିର ଉପର ହୁଡ୍‌ଦିଆ ।

ସେପରି ଗାଡ଼ିଗୁଡ଼ିକରେ ଆଜି କାଲି ଗାଡ଼ିମାନଙ୍କର ସୂକ୍ଷ୍ମ ଯନ୍ତ୍ରପାତି ନ ଥାଏ । ଗାଡ଼ିଗୁଡ଼ିକୁ ସହଜରେ ମରାମତି କରିହୁଏ । ଆମ ଗ୍ରାମର ଡେପୁଟି ଦଦେଇ ଗୋପିନାଥ ଦାସ ଗୋଟିଏ ପୁରୁଣା ଗାଡ଼ି କିଣିଥିଲେ । ତାହା ଅନେକ ସମୟରେ ଠେଲା ହୋଇ ଗାଁକୁ ଆସେ ଓ ଆମ ଗାଁର ଦୁଇ ଗୋଡ଼ ଗୋଦର ଥିବା ଦିନା ମାହାରଣା ସେ ଗାଡ଼ିର ଅଂଶ ବିଶେଷକୁ ତା' ବିରାଟ ପାଦରେ ଚାପି ତା'ର କାଠ ମୁଗୁରରେ ପିଟି ଠିକ୍ କରି ଦେଉଥିଲା । ବୀରପ୍ରତାପପୁରର ସେ କାଳର ମାଜିଷ୍ଟ୍ରେଟ ଗାଁ'କୁ ଆସିଲେ ତାଙ୍କ ଗାଁ' କମାର ଗାଡ଼ିକୁ ପିଟି ଓ ଯୋଡ଼ାଯୋଡ଼ି କରି ଠିକ୍ କରିଦେଉଥିଲା । ଅନେକ କାଳ ପର୍ଯ୍ୟନ୍ତ ସେପରି ମଜଭୁତ ଗାଡ଼ି ସବୁ ମିଳୁଥିଲା । ମୋର ସେକେଣ୍ଡ ହ୍ୟାଣ୍ଡ ଫୋର୍ଡ଼ ପ୍ରିଫେକ୍ଟ ଗାଡ଼ିଟିରେ ମୁଁ କୋଣାର୍କ ଯାଇ ଫେରିଲାବେଳେ ତା'ର ସାଇଲେନସର ଭାଙ୍ଗିଯାଇ ବଡ଼ ଶବ୍ଦ ହେବାରୁ ମୁଁ ତାକୁ ନିମାପଡ଼ା ବଜାରର ଗୋଟିଏ ସାଇକଲ ଦୋକାନରେ ଠିକ କରାଇ ପାରିଥିଲି । ଯାଉ ଯାଉ ଗାଡ଼ିର ପେଟ୍ରୋଲ ସରିଗଲେ କିରାସିନି ପକାଇ ଗାଡ଼ି ଚଳାଇ ହେଉଥିଲା ଓ ପରେ ସହଜରେ ଇଞ୍ଜିନରେ କାରବନ ଜଳାକୁ ସଫାକରି ଠିକ୍ କରିଦେଇ ହେଉଥିଲା ।

ପ୍ରତ୍ୟେକ ଗାଡ଼ିକୁ ହାଣ୍ଡଲମାରି ଷ୍ଟାର୍ଟ କରି ହେଉଥିଲା । ଏବେ ଗାଡ଼ିଗୁଡ଼ିକ ସୌଖୀନ ହେବାରୁ ସେଥିରେ ହାଣ୍ଡଲ ମାରିବାର ବ୍ୟବସ୍ଥା ନାହିଁ । ଗାଡ଼ିର କୌଣସି ଯନ୍ତ୍ର ବିଗିଡ଼ିଗଲେ ତା'ର ମରାମତି ପାଇଁ ବହୁ ସମୟ ଓ ଅର୍ଥ ଲାଗୁଛି । ବୈଜ୍ଞାନିକ ଉନ୍ନତିର ସଙ୍ଗେ ସଙ୍ଗେ ମଣିଷ ତା' ଉପରେ ଯେତେ ନିର୍ଭରଶୀଳ ହୋଇପଡୁଛି ସେତେ ଅସୁବିଧାରେ ମଧ ପଡୁଛି ।

ଶୋରିଷ ପୁଡ଼ିଆ ଓ ପୋଲାଙ୍ଗ ବା ଜଡ଼ା ତେଲର ଦୀପ ସ୍ଥାନରେ ଏବେ ବିଜୁଳି ଆଲୁଅ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲେ ମଧ, ଇଲେକଟ୍ରିକ କାଟ ଓ ଯାନ୍ତ୍ରିକ ଗଣ୍ଡଗୋଳ ବେଳେ ଯେଉଁ ଅକଥନୀୟ ଯନ୍ତ୍ରଣା ମିଳୁଛି ତାହା ପ୍ରାୟ ସମସ୍ତେ ଅଙ୍ଗେ ଲିଭାଉଛନ୍ତି । ଅତି ଅସୁବିଧାବେଳେ ମହମବତୀ, ଦୀପ ଓ ଲଣ୍ଠନର ଆଶ୍ରୟ ନେବାକୁ ଲୋକେ ବାଧ ହେଉଛନ୍ତି ।

ବିହାର ଓଡ଼ିଶାରେ ପଡ଼ି ରହିଥିବା ଓଡ଼ିଶା ଡ଼ିଭିଜନ ବଡ଼ ଅବହେଳିତ ଥାଇ ରାସ୍ତାଘାଟର ବିଶେଷ ଉନ୍ନତି ହୋଇ ନ ଥିଲା । କିନ୍ତୁ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସି ଅଧିନରେ

ଥିବା ଗଞ୍ଜାମ ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ଘଟିଥିଲା । ବିଶେଷତଃ ଖଲ୍ଲିକୋଟ ମହାରାଜା ବହୁକାଳ ଗଞ୍ଜାମ ଡିଷ୍ଟ୍ରିକ୍ଟ ବୋର୍ଡ଼ର ସଭାପତି ଥାଇ ସେ ଅଞ୍ଚଳର ରାସ୍ତାମାନଙ୍କରେ ବହୁ ପୋଲ କରାଇ ରାସ୍ତାମାନଙ୍କର ଉନ୍ନତି କରାଇଥିଲେ ।

ପରବର୍ତ୍ତୀ କାଳରେ ସେହି କଥାର ବିଦ୍ରୁପ ପ୍ରଚାର ଯୋଗୁଁ ତାଙ୍କୁ ନିର୍ବାଚନରେ ହାରିବାକୁ ପଡ଼ିଥିଲା । ଖଲ୍ଲିକୋଟ ରାଜା ରାଜ ମିଜାଜର ଲୋକ । ତାଙ୍କ ବିରୁଦ୍ଧରେ କେହି କିଛି କହିଲେ ସେ ମାନହାନୀ ମୋକଦ୍ଦମା କରି ଦେବାର ସମ୍ଭାବନା ଥିଲା । ତେଣୁ ତାଙ୍କ ନିର୍ବାଚନରେ ତାଙ୍କ ପ୍ରତିଦ୍ୱନ୍ଦୀ ଦୋଅର୍ଥୀ ପ୍ରଚାର ଚଳାଇଥିଲେ-

ପଡ଼ିଚି ଧରାରେ ପଡ଼ିଚି ଧରା
ଗଞ୍ଜାମ ରାଇଜ ନଦୀ ପୋଲ କରା ପଡ଼ିଛି ଧରା ।

ଆକ୍ଷରିକ ଅର୍ଥରେ ଏହାର ଅର୍ଥ ବିଶେଷ ଖରାପ ନ ଥିଲେ ମଧ କଦର୍ଥ ଅନୁସାରେ ରାସ୍ତା କରିବା ବାହାନାରେ ଡ଼ିଷ୍ଟ୍ରିକ୍ଟ ବୋର୍ଡ଼ ପାଣ୍ଠିକୁ ପୋଲ କରି ଖାଇଯାଇଛନ୍ତି ବୋଲି ଲୋକଙ୍କୁ ପରୋକ୍ଷରେ ବୁଝାଇ ଦିଆଗଲା । ସେହି ଯୋଗୁଁ ସେ ହାରିଲେ, କିନ୍ତୁ ମାନହାନୀ ମୋକଦ୍ଦମା କରି ପାରିଲେ ନାହିଁ ।

ଯାହାହେଉ ଗଞ୍ଜାମର ଭଲ ପକ୍କା ରାସ୍ତା ଯୋଗୁଁ କେତେକ ପ୍ରାଇଭେଟ କମ୍ପାନୀ ନିଜଭିତରେ ପ୍ରତିଦ୍ୱନ୍ଦ୍ୱିତା କରି ବସ୍ ଚଳାଉ ଥାଆନ୍ତି । ବରହମପୁର ବାରାକ୍ସ ପଡ଼ିଆ ବସ୍ ଷ୍ଟାଣ୍ଡରେ ସେ ପ୍ରତିଯୋଗିତାର ଦୃଶ୍ୟ ଏବେବି ମନରୁ ଲିଭି ଯାଉନାହିଁ ।

ପଣ୍ଡା ବସ୍ ସର୍ଭିସ୍‌ର ଗାଡ଼ିମାନ ଆସ୍କା ଭଞ୍ଜନଗର ପ୍ରଭୃତି ସମସ୍ତ ସ୍ଥାନକୁ ଯାଉଥାଏ । ସେ ସର୍ଭିସ ସଙ୍ଗେ ଅନ୍ୟାନ୍ୟ ସର୍ଭିସମାନେ ପ୍ରତିଦ୍ୱନ୍ଦ୍ୱିତା କରୁଥାଆନ୍ତି ।

ପଣ୍ଡାସର୍ଭିସରେ କ୍ଲିନର ଯାତ୍ରୀମାନଙ୍କୁ ଡାକ ଦିଏ "ବସ ଛାଡ଼ିଲା ଆସ, ଆସ ବଡ଼ ଶସ୍ତା, ଆସିକାକୁ ମାତ୍ର ଆଠଅଣା । ଅନ୍ୟ ଏକ ସର୍ଭିସ ବାଲା ପ୍ରତି-ଡାକ ଦିଏ ଆସ ଆସ ଆମ ବସ୍‌କୁ ଆସ । ମୋଟେ ଛଅଣା । ଆଉ ଜଣେ ଡାକ ଦିଏ ଚାରିଅଣା । ଅନ୍ୟ ବସ୍ ବାଲା ଦୁଇଅଣା, ଏକ ଅଣା ପ୍ରଭୃତି ଚିତ୍କାର କରନ୍ତି । ଶେଷରେ ପଣ୍ଡା ସର୍ଭିସ୍ ବାଲା କହେ କହିଲି ପରା ଆଜି ଭଲଦିନ, ଆସ ଭଡ଼ାନାହିଁ । ଯାହାଇଚ୍ଛା ହେଲେ ଦବ ନ ହେଲେ ନାହିଁ । ପ୍ରତ୍ୟେକ ଯାତ୍ରୀଙ୍କୁ ଖଣ୍ଡିଏ ଲେଖାଁଏ ବିଡ଼ି ମିଳିବ । ଯାତ୍ରୀମାନେ ବିଡ଼ି ଲୋଭରେ ଯାଇ ଗାଡ଼ିରେ ବସିବା ପରେ କ୍ଲିନର କାକୁତି ମିନତି କରି ଯାହା ଭଡ଼ା ଦିଅ କହି ଠିକ୍ ଭଡ଼ାଟା ଅସୁଲ କରିନିଏ । ବିଶ୍ୱଯୁଦ୍ଧ ସମୟରେ ପେଟ୍ରୋଲ ଅଭାବରୁ ସେ ପ୍ରତିଯୋଗିତାରେ କିଛିଦିନ ଭଟ୍ଟା ପଡ଼ିଥିଲା । କିନ୍ତୁ କୋଇଲା ଗ୍ୟାସର ଉଦ୍ଭାବନ ପରେ ପୁଣି ବସ୍ ଚାଲିଲା । ପ୍ରତ୍ୟେକ ବସ ପଛରେ ଗୋଟିଏ କୋଇଲା ସିଲିଣ୍ଡର ରହି

ସେଥିରେ କୋଇଲାକୁ ଜାଳି ତାର ଧୂଆଁନଳୀକୁ ଗାଡ଼ିର ଇଞ୍ଜିନ ସହିତ ସଂଯୋଗ କରି ଇଞ୍ଜିନ ଚଲାଗଲା । ରେଳଗାଡ଼ିର ଇଞ୍ଜିନ ଦୂରରେ ଅଲଗା ଥିବାରୁ ଅନ୍ୟ ଡ଼ିବାର ପାସେଞ୍ଜରଙ୍କୁ ବାଧେ ନାହିଁ ! କିନ୍ତୁ ସେ ପଛର ନିଆଁ ସମୁଦାୟ ବସକୁ ଏପରି ଗରମ କରିଦିଏ ଓ ଇଞ୍ଜିନରୁ ଏପରି ଶବ୍ଦ ସୃଷ୍ଟି ହୁଏ ଯେ ନିହାତି ଦରକାର ନ ପଡ଼ିଲେ ଲୋକେ ସେ ବସରେ ଯାତାୟତ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି । ଶୀତଦିନେ ସେ ବସରେ ବସିଲେ ମଧ ଦେହରୁ ଝାଳ ବୁହେ । ଯୁଦ୍ଧ ପରେ ପରେ ସେ ପ୍ରଥା ଲୋପ ପାଇଥିଲା ।

## ଘୋଡ଼ା ଓ ଘୋଡ଼ାଗାଡ଼ି

ବହୁ ପୁରାକାଳରୁ ମନୁଷ୍ୟମାନେ ଘୋଡ଼ାକୁ ତାଲିମ ଦେଇ ଏକ ଦ୍ରୁତଗାମୀ ବାହନ ଭାବରେ ବ୍ୟବହାର କରି ଆସିଛନ୍ତି । ସବୁ ଦେଶରେ ଆଗେ ଘୋଡ଼ାକୁ ଶ୍ରେଷ୍ଠ ସମ୍ପଦ ବୋଲି ମନେକରାଯାଉଥିଲା । ତେଣୁ କଥାରେ ଅଛି-

ଘୋଡ଼ାଚଢ଼ାଠାରୁ ସମ୍ପଦ ନାହିଁ
ଘରପୋଡ଼ିଠାରୁ ବିପତ୍ତି ନାହିଁ ।

ରାଜାଙ୍କର ସେନା ସେନାପତି ପ୍ରଭୃତି ଘୋଡ଼ା ବ୍ୟବହାର କରୁଥିଲେ । ଧନୀ ବ୍ୟବସାୟୀ ଓ ବଡ଼ ଚାଷିମାନେ ମଧ ଘୋଡ଼ା ଚଢ଼ି ଯିବା ଆସିବା କରୁଥିଲେ ।

ପରବର୍ତ୍ତୀ କାଳରେ ବିଦ୍ୱାନ ଲୋକେ ଧନ ଅର୍ଜନ କରି ଘୋଡ଼ା ରଖି, ଚଢ଼ିବାର ସୁଯୋଗ ପାଇଲେ । ଆମ ପିଲାଦିନେ କଥନୀ ଥିଲା-

ପାଠ ପଢ଼ିବି ପାଠ ପଢ଼ିବି
ମଧୁବାବୁ ସଙ୍ଗେ ଲଢ଼ିବି
କାଳିଆ ଘୋଡ଼ାରେ ଚଢ଼ିବି ।

କିଂବା

ପାଠ ପଢ଼ିଲେ ମୁଁ ଓକିଲ ହେବି
ମଧୁ ବାରିଷ୍ଟର ସଙ୍ଗେ ଲଢ଼ିବି
କାଳିଆ ଗୋଡ଼ାରେ ଚଢ଼ି ବୁଲିବି ।

ମୋର ପିଲାଦିନୁ ଘୋଡ଼ାରେ ଚଢ଼ିବା ପାଇଁ ଭାରି ଇଚ୍ଛା ଥିଲା । କିନ୍ତୁ କଟକ ବା ପୁରୀରେ ଘୋଡ଼ା କେବଳ ଗାଡ଼ି ଟାଣୁଥିଲେ । ଘୋଡ଼ା ଚଢ଼ାଳି ଖୁବ୍ କମ୍ ଥିଲେ ।

ମୁଁ ୧୯୩୬ରେ ଅଷ୍ଟମ ଶ୍ରେଣୀରେ ପାଠ ପଢ଼ିଲାବେଳେ ସବୁବେଳେ ଶରୀର ଖରାପ ହେଉଥିବାରୁ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଜୁଲାଇ ଗ୍ରୀଷ୍ମକାଳୀନ କେନ୍ଦ୍ର ଆସେମ୍ଲି,

ଅଧିବେଶନବେଳେ କେନ୍ଦ୍ର ଆସେମ୍ବ୍ଲି ସଦସ୍ୟ ମୋର ପିତା ନୀଳକଣ୍ଠଙ୍କ ସଙ୍ଗେ ସିମ୍ଲା ଯାଇଥିଲି ।

ହିମାଳୟ କଟି ଦେଶରେ ସିମ୍ଲା ଏକ ମନୋରମ ସହର । ଘରଗୁଡ଼ିକ ବୁଦୁବୁଦିଆ ହୋଇ ପାହାଡ଼ମାନଙ୍କ ଶିଖର ଦେଶରେ ରହିଥାଏ । ସେ ସହରଟିରେ ସିଧା ରାସ୍ତା ନ ଥାଏ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ହେଲେ ଉଠାଣି ଗଡ଼ାଣି ଦେଇ ଯିବା ଆସିବା କରିବାକୁ ପଡ଼େ । ସେପରି ରାସ୍ତାଯୋଗୁଁ ମୋଟର ଗାଡ଼ି ସମସ୍ତ ସ୍ଥାନକୁ ଯାଇପାରେ ନାହିଁ । ହାତଟଣା ରିକ୍ସାଗୁଡ଼ିକର ଆଗରେ ଓ ପଛରେ ଦଣ୍ଡା ଥାଏ । ଆଗରେ ଦୁଇଜଣ ଓ ପଛରେ ଦୁଇଜଣ ରିକ୍ସାଚାଳକ ବହୁ କଷ୍ଟରେ ସେ ରିକ୍ସାକୁ ନେବା ଆଣିବା କରନ୍ତି ।

ରିକ୍ସା ଛଡ଼ା ପାହାଡ଼ିଆ ଘୋଡ଼ାସବୁ ଭଡ଼ାରେ ମିଳନ୍ତି । ଘଣ୍ଟାକୁ ଆଠଅଣା ଛଅ ଅଣାରେ ସେପରି ସୁଶିକ୍ଷିତ ଘୋଡ଼ାସବୁ ମିଳୁଥାଏ । ମୋର ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଏକ୍ସରସାଇଜ କରିବାକୁ ଗୋଟାଏ ଘୋଡ଼ା ଭଡ଼ାକରି ମୋତେ ଘଣ୍ଟାଟିଏ ବୁଲିବାକୁ ହୁଏ । ମୋର ପିତାଙ୍କ ଛଡ଼ା ତାଙ୍କ ପୂର୍ବତନ ସହପାଠୀ ଭୁବନାନନ୍ଦ ଦାସ ଥାଆନ୍ତି ଓଡ଼ିଶାର ଅନ୍ୟତମ କେନ୍ଦ୍ର ଆସେମ୍ବ୍ଲି ସଦସ୍ୟ । ସେ ମୋତେ ଖୁସି ରଖିବା ପାଇଁ ମଜାଳିଆ କଥା କହନ୍ତି । ଦିନେ ମୁଁ ତାଙ୍କ ଘରବାଟ ଦେଇ ଘୋଡ଼ାଚଢ଼ି ଯାଉଥିବାର ଦେଖି ସେ କହିଲେ- ବିକ୍ରମ, ବିକ୍ରମ ! ଓଡ଼ିଶା ଫେରିଲେ ନନାଙ୍କୁ କହିଦବ ସେ ଗାଡ଼ିଟଣା ଘୋଡ଼ାଟିଏ କିଣିଦେବେ । ସେ ଅଠର ନଳାରେ ଦଳ ଚରିବ । ଶସ୍ତା ସୁବିଧାରେ ତୁମେ ଘୋଡ଼ା ପାଇଯିବ । ନ ହେଲେ ଓଡ଼ିଶା ଗଲେ ଘୋଡ଼ାଚଢ଼ା ଭୁଲିଯିବ । ବାସ୍ତବିକ୍ ସେପରି ଘୋଡ଼ା ଓଡ଼ିଶାରେ ମିଳିବା ଅସମ୍ଭବ ଥିଲା ।

ସେ ପାହାଡ଼ିଆ ଘୋଡ଼ା ଏତେ ଶିକ୍ଷିତ ଯେ ଉଠାଣିଆ ଗଡ଼ାଣିଆରେ ସେମାନେ ଗୋଡ଼ ଚିପି ଚିପି ବଡ଼ ସାବଧାନତାର ସହିତ ଚାଲନ୍ତି । ଲମ୍ବା ସିଧା ରାସ୍ତା ଦେଖିଲେ ଯୋଡ଼ ମାରନ୍ତି । କିନ୍ତୁ ସବାର ପ୍ରତି ବଡ଼ ସାବଧାନ ଥାଆନ୍ତି । କେବେ ସବାରକୁ ତଳେ ପକାଇ ଦିଅନ୍ତି ନାହିଁ । ଏପରିକି ଅତି ଅଣ ଓସାରିଆ ପାହାଡ଼ କଡ଼ ରାସ୍ତାରେ ଅତି ସହଜରେ ଚାଲିଯାଇ ପାରନ୍ତି । ହିମାଳୟ ଉପରେ ଥିବା ବଦ୍ରିନାଥ ପ୍ରଭୃତିରେ ଯିବା ଆସିବା ପାଇଁ ସେହିପରି ଘୋଡ଼ାସବୁ ମିଳନ୍ତି । ଲୋକେ ଘୋଡ଼ାରେ ବସି ଖଚର (ଘୋଡ଼ା-ଗଧଙ୍କ ପିଲା) ଉପରେ ଜିନିଷ ଲଦି ପାହାଡ଼ ରାସ୍ତାରେ ଯିବା ଆସିବା କରନ୍ତି । ଖଚର ଗୋଟିଏ ବଡ଼ ସହିଷ୍ଣୁ, ଭାରବାହୀ ପଶୁ । ସେ ବଡ଼ ବଡ଼ ଭାର ବୋହି ଅନାୟସରେ ସେ ସ୍ଥାନମାନଙ୍କରେ ଯିବା ଆସିବା କରିପାରେ ।

ପିଲାମାନଙ୍କ ପାଇଁ ଘୋଡ଼ା ଓ ଘୋଡ଼ାଗାଡ଼ି ଏକ ବିଶେଷ ଆକର୍ଷଣୀୟ ବସ୍ତୁ । ସ୍ୱାମୀ ବିବେକାନନ୍ଦ ବଡ଼ହେଲେ ଏକ ଘୋଡ଼ା ଜଟୁଆନ ହେବେ ବୋଲି ପିଲାଦିନେ

ଆକାଂକ୍ଷା ପ୍ରକାଶ କରିଥିଲେ । ତାଙ୍କ ସମୟରେ କଲିକତା ସହରରେ ଯାତାୟତ ପାଇଁ ଘୋଡ଼ାଗାଡ଼ି ଏକ ପ୍ରଧାନ ଯାନରୂପେ ବ୍ୟବହୃତ ହେଉଥିଲା । ଭଲ ଘୋଡ଼ାଗାଡ଼ି ଓ ପଗଡ଼ି ଡ୍ରେସ୍ ପିନ୍ଧା କଚୁଆନଟିଏ ରଖିବା ସେତେବେଳେ ଏକ ଆଭିଜାତ୍ୟର ଚିହ୍ନ ଥିଲା । ବିବେକାନନ୍ଦ ବା ବାଳକ ନରେନ ଘୋଡ଼ାଗାଡ଼ି ଭିତରେ ବସି ଗଲାବେଳେ ଗାଡ଼ିର ଛାତ ଉପରେ ଚୋଗା ଚପକନ ପିନ୍ଧି ବସିଥିବା କଚୁଆନଟି ଘୋଡ଼ାଙ୍କ ଉପରେ ହାକିମି ଦେଖାଇ ପାଟି ତୁଣ୍ଡ କରି ନିଜର ଗୁରୁତ୍ୱ ସାବ୍ୟସ୍ତ କରୁ ଥିବାରୁ ତାଙ୍କ ମନରେ ସେପରି ଭାବ ଉଦ୍ରେକ ହୋଇଥିଲା ।

କଟକରେ ଏବେବି ବହୁତ ପାଣ ସାହି ରହିଛି । ସେହି ପାଣମାନେ ଘୋଡ଼ାଗାଡ଼ି ଚଳାଉଥିଲେ । ଏବେ ସେମାନଙ୍କ ଭିତରୁ କେହି କେହି ସାଇକେଲ ରିକ୍ସା ଚଳାଉଛନ୍ତି । ସେମାନଙ୍କ ମନରେ କେବେ ହୀନମନ୍ୟତା ନ ଥିଲା । ମୁସଲମାନି ଓଡ଼ିଆରେ ଲେ, ବେ, ପ୍ରଭୃତିର ପ୍ରୟୋଗ କରି ସେମାନେ କଥାବାର୍ତ୍ତା ଦ୍ୱାରା ତାଙ୍କ ମର୍ଯ୍ୟଦା ରକ୍ଷା କରିଥିଲେ । ସେମାନଙ୍କ ପ୍ରତି ସାଧାରଣ ଲୋକଙ୍କର ଖାତିର ଥିଲା ।

ଅନେକ ଓକିଲ ନିଜ ଘୋଡ଼ା ଗାଡ଼ିରେ କଚେରୀ ଯିବାଆସିବା କରୁଥିଲେ । ବଙ୍ଗାଳି ଓକିଲଙ୍କ ଭିତରୁ ଅନେକ ଜମିଦାର ଥିଲେ ଓ ଯିବାଆସିବା ପାଇଁ ଘୋଡ଼ାଗାଡ଼ି ବ୍ୟବହାର କରୁଥିଲେ । ମୋଟ ଉପରେ ଥିଲାବାଲାଙ୍କର ଘୋଡ଼ାଗାଡ଼ି ଥିଲା । ସାଧାରଣ ଲୋକେ ଚାଲିକରି କିମ୍ବା ନୂଆ ବାହାରିଥିବା ସାଇକଲ ଯାନ କିମ୍ବା ହାତଟଣା ରିକ୍ସା ବ୍ୟବହାର କରୁଥିଲେ ।

ଦିଲ୍ଲୀ ଆଗ୍ରା ଓ ବଡ଼ ବଡ଼ ସହରରେ ଗୋଟିକିଆ ଘୋଡ଼ା ଲାଗିଥିବା ଟାଙ୍ଗା ବା ଏକ୍‌କାଗାଡ଼ି ପ୍ରଚଳିତ ଥିଲା । ଗାଡ଼ି ମଝିରେ ଆଗକୁ ପଛକୁ ମୁହଁକରି ଲଗାଲଗି ହୋଇ ଦୁଇଟି ସିଟ୍ ପଡ଼ିଥାଏ । ଆଗ ସିଟ୍‌ରେ ଘୋଡ଼ା ଚାବୁକ ଧରି ଗାଡ଼ିବାଲାଟି ଗାଡ଼ି ଚଳାଏ । ଘୋଡ଼ା ଜୋରରେ ଚାଲିଲାବେଳେ ଖାଲଢ଼ିପ ପଡ଼ିଲେ ଆରୋହୀ ଝୁଙ୍କିପଡ଼ି ରାସ୍ତା ଉପରକୁ ଗଡ଼ି ଯିବାର ଆଶଙ୍କା ଥାଏ ।

ପ୍ରାୟ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ହେଲାଣି ମୁଁ ତାଜମହଲ ଦେଖିବାକୁ ଟ୍ରେନରେ ଆଗ୍ରା ଯାଉଥିଲି । ଆଗ୍ରା ଷ୍ଟେସନରୁ ଟାଙ୍ଗାଟିଏ କରି ବୁଲି ବାହାରିଲି । ମୋ ସାଙ୍ଗରେ ଆଉ ଜଣେ ବଙ୍ଗବାସୀ ସାଥୀ ମଧ ଥାଆନ୍ତି । ଟାଙ୍ଗା ଚାଳକଟି ଗୋଟିଏ ବୃଦ୍ଧ ମୁସଲମାନ । ଗାଡ଼ି ଚାଳନା ସଙ୍ଗେ ସଙ୍ଗେ ସେଠାର ଇତିହାସ କହି ଗାଇଡ୍ କାମ ଚଳାଇ ନେବା ପାଇଁ ବୋଧହୁଏ ତାହାର ଇଚ୍ଛା ଥାଏ । ସେ ଗୋଟିଏ ହାତରେ ଘୋଡ଼ାଲଗାମ ଧରି ଅନ୍ୟ ହାତରେ ଛାଟଟି ହଲାଇଲା ବେଳେ କଅଣଗୁଡ଼ିଏ କହି ଯାଉଥାଏ । ଆମେ ତା'ର

କଥା କିଛି ବୁଝିପାରୁ ନ ଥାଉ । ଆମେ ପଛକୁ ଚାହିଁ ନିଜକୁ ସମ୍ଭାଳି ବସିଥାଉ; କିନ୍ତୁ ମଝିରେ ମଝିରେ ସେ ପଛକୁ ମୁହଁ ବୁଲାଇ ତା' କଥା ଠିକ କି ନୁହେଁ ଆମଠାରୁ ତା'ର ଉତ୍ତର ଆଦାୟ କରିବା ପାଇଁ 'ହେ କି ନେହିଁ' ବୋଲି ଚିତ୍କାରଟାଏ କରି ଆମକୁ ଇତଃସ୍ତତ କରି ପକାଉଥାଏ । ମୁଁ ଓ ମୋର ସାଥୀ କୌଣସି ମତେ ଟାଙ୍ଗାର ସିଟ୍ ବାଡ଼ଟାକୁ ଧରି ତଳକୁ ଖସିପଡ଼ିବାରୁ ରକ୍ଷାପାଇଯାଉ ।

ଗଞ୍ଜାମ ଓ ଦକ୍ଷିଣ ଅଞ୍ଚଳରେ ଝଟକା ନାମକ ଗୋଟିଏ ଘୋଡ଼ାଗାଡ଼ି ପ୍ରଚଳିତ ଥିଲା । ଏବେ ମଧ୍ୟ ତାହା କାଁ ଭାଁ ଦେଖାଯାଏ । ତାହା ଏକ ବଳଦିଆ ଶଗଡ଼ ପରି । ଘୋଡ଼ାର ପଛକୁ ଚାଳକ ବସିଥାଏ । ଆରୋହୀମାନେ ତାଟି ଭିତରେ ବସନ୍ତି । ପଛକୁ ଖସିପଡ଼ିବା ଭୟରେ ଗାଡ଼ି ଜୋରରେ ଚାଲିଲାବେଳେ ଗାଡ଼ି ବତାକୁ ଧରି ବସିବାକୁ ହୁଏ ।

ଝଟକାର ତେଲେଙ୍ଗା ଗାଡ଼ିଚାଳକଙ୍କ ଭିତରୁ ଅନେକ ଗୁଣ୍ଡା ଶ୍ରେଣୀୟ ଅସାମାଜିକ ବ୍ୟକ୍ତି ଥାଆନ୍ତି । ଗଞ୍ଜାମ ଦେଶମିଶ୍ରଣ ଆନ୍ଦୋଳନର ଏକ ମୂଳ ପୀଠ ଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକତ୍ରିତ କରିବା ପାଇଁ ଉତ୍କଳ ସମ୍ମିଳନୀ ଅଧିବେଶନ ପ୍ରଥମେ ଗଞ୍ଜାମରେ ବସିଥିଲା । ସେହି ଜିଲ୍ଲାର ବହୁ ଛାତ୍ର ଆସି ପଞ୍ଚସଖାଙ୍କ ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ସତ୍ୟବାଦୀର ପଞ୍ଚସଖା ଅନେକ ସମୟରେ ଗଞ୍ଜାମ ଅଞ୍ଚଳ ଗସ୍ତ କରୁଥିଲେ ।

ସେମାନଙ୍କୁ ଷ୍ଟେସନରୁ ବସ୍ତି ଅଞ୍ଚଳମାନଙ୍କୁ ଝଟକାରେ ବସି ଯିବାକୁ ପଡୁଥିଲା । ବେଳେବେଳେ ସେମାନେ ଝଟକା ବାଲାଙ୍କ ଦୌରାତ୍ମ୍ୟରେ ଅତିଷ୍ଠ ହୋଇ ପଡୁଥିଲେ । ଥରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ବନ ବିଦ୍ୟାଳୟ କାର୍ଯ୍ୟରେ ବ୍ରହ୍ମପୁର ଯାଇଥିଲେ । ରେଳ ଷ୍ଟେସନରୁ ଓହ୍ଲାଇ ଗୋଟିଏ ଝଟକାବାଲାକୁ ଡାକି ପୂର୍ବ ଯାତ୍ରାରେ ଦେଇଥିବା ଦର ଶୁଣାଇଲେ । ସେ ତାହା ଶୁଣି କ'ଣ କହିଲା ସେମାନେ ବୁଝିପାରିଲେ ନାହିଁ । ସେମାନେ ସେହି ଝଟକାରେ ଆସି ଜଣେ ବନ୍ଧୁଙ୍କ ଘରର ଫାଟକ ନିକଟରେ ଓହ୍ଲାଇଲେ । ନୀଳକଣ୍ଠ ତା'ର ନ୍ୟାଯ୍ୟ ପ୍ରାପ୍ୟ ପଇସା ଯାଚିବାରୁ ଝଟକାବାଲା ତାହା ଗ୍ରହଣ ନ କରି କଟର କଟର ହେଲା । ନୀଳକଣ୍ଠ 'ନେଲେ ନେ ନନେଲେ ନାହିଁ କହି' ପଇସାତକ ସେଠାରେ ଥୋଇଦେଇ ଫାଟକ ଡେଇଁ ଭଦ୍ରଲୋକଙ୍କ ଘର ଭିତରକୁ ଚାଲିଗଲେ ।

ଝଟକାବାଲାର ପ୍ରଚଣ୍ଡ ଗର୍ଜନରେ ଚାହୁଁ ଚାହୁଁ ତା'ର ବହୁ ଗୁଣ୍ଡାଶ୍ରେଣୀୟ ବନ୍ଧୁ ଜମିଯାଇ ପାଟିତୁଣ୍ଡ ଆରମ୍ଭ କରିଦେଲେ । ସେ ଗଣ୍ଡଗୋଳ ଦେଖି ଗୋଦାବରୀଶ ପଛେଇ ଯାଇ ରହି ଯାଇଥିଲେ । ଝଟକାବାଲା ଓ ତା'ର ବନ୍ଧୁମାନେ ନୀଳକଣ୍ଠଙ୍କୁ ଅବୋଧ ତେଲୁଗୁ

ଭାଷାରେ ଧମକାଇ ବକି ଚାଲିଥିଲେ । ଗୋଦାବରୀଶ-ଖମ୍ଭ ଉହାଡ଼ରୁ ସେମାନଙ୍କ ହୁଙ୍କାର ଓ ରକ୍ତଚକ୍ଷୁକୁ ଲକ୍ଷ୍ୟ କରୁଥିଲେ ।

ଝଟକାବାଲାଙ୍କ ତେଲୁଗୁ ଭାଷା ଗୋଦାବରୀଶ ବୁଝିପାରୁ ନ ଥିଲେ । ସେଠାରେ ଜମିଥିବା ଚିହ୍ନାଚିହ୍ନା ଜଣେ ଲୋକଙ୍କ ଉପରେ ତାଙ୍କ ଆଖି ପଡ଼ିବାରୁ ସେ ତାକୁ ହାତଠାରି ପାଖକୁ ଡାକିଲେ । ସେ ଓଡ଼ିଆ ଭଦ୍ରଲୋକ ସେଠାରେ ବାସିନ୍ଦା ହୋଇଥିବାରୁ ତାକୁ ତେଲୁଗୁ ବି ଜଣା ଥିଲା । ଝଟକାବାଲା କ'ଣ କହୁଛନ୍ତି ଓ କାହିଁକି ପାଟି କରୁଛନ୍ତି ବୋଲି ଗୋଦାବରୀଶ ତାଙ୍କୁ ପଚାରିବାରୁ ସେ କହିଲେ, ଝଟକାବାଲା କହୁଛି ଦାଢ଼ିଆ ଗ୍ରାହକ ଯେଉଁ ଟଙ୍କା ଦେଇଛି ତା'ର ତିନିଗୁଣ ନ ଦେଲେ ଆମେ ତାକୁ ଦେଖିନବୁ । ତା' ଦାଢ଼ି ଉପାଡ଼ି ଲଣ୍ଡା କରି ଛାଡ଼ିଦେବୁ ।

ସେ'କଥା ଶୁଣି ଗୋଦାବରୀଶ ଝଟକାବାଲା ଦାବୀ କରୁଥିବା ବାକି ଟଙ୍କା ପକେଟରୁ ବାହାର କରି ସେ ଭଦ୍ରଲୋକଙ୍କ ହାତରେ ଝଟକାବାଲାକୁ ଦେଇ ଦେବାରେ ସେମାନେ ଆଉ ପାଟିତୁଣ୍ଡ ନ କରି ସୁନାପିଲା ପରି ସେଠାରୁ ଚାଲିଗଲେ । ତା' ପରେ ଗୋଦାବରୀଶ ଘର ଭିତରକୁ ପଶିଲେ । ତାକୁ ଦେଖି ନୀଳକଣ୍ଠ କହିଲେ, ତୁ ଏତେବେଳଯାଏ ସେ'ଠି କ'ଣ କରୁଥିଲୁ ? ମୁଁ ଜାଣେ ସେପରି ପାଟି କରି କରି ସେ ଚାଲିଯିବ । ତୁ ନ ଆସିବାରୁ ହୁଏତ ତୋତେ ଦେଖି ସେ ବେଶୀ ପାଟି କରୁଥିଲା । ତୁ ଚାଲିଆସିଥିଲେ ଏ'ଠି ପାଟି ନକରି ଡ଼ରି ଚାଲି ଯାଇଥାନ୍ତା । ଗୋଦାବରୀଶ ବାବୁ ବଡ଼ ନବଳିଆ ଲୋକ । ସେ ଗୋଟିଏ ପଦରେ ଉତ୍ତର ଦେଲେ-- ହଁ ଭାଇନା, ସେ ତୁମ ଦାଢ଼ିକୁ ଦେଖି ଡ଼ରି ଚାଲିଗଲା ।

ଆଉ ଥରେ ଗୋପବନ୍ଧୁ, ନୀଳକଣ୍ଠ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ପାରଳାଖେମୁଣ୍ଡି ଯିବା ଉଦ୍ଦେଶ୍ୟରେ ଭାଇଜାଗ ରେଳ ଷ୍ଟେସନରେ ଓହ୍ଲାଇ ଝଟକା ଧରି ସହର ଭିତରକୁ ଗଲେ । କୃପାସିନ୍ଧୁ ନାସ ଶୁଂଘନ୍ତି, ସେ ନାସଦାନୀଟି ଛାଡ଼ି ଆସିଥିବାରୁ ତାଙ୍କୁ ଛିଙ୍କ ଲାଗୁଥାଏ । ସେ ପଞ୍ଚସଖା ଭିତରେ କନିଷ୍ଠ । ସେମାନଙ୍କ ଭିତରୁ ଅନ୍ୟମାନଙ୍କର କୌଣସି ବଦ ଅଭ୍ୟାସ ନ ଥାଏ, ତେଣୁ ସେ ଲୁଚାଇ ଲୁଚାଇ ନାସ ଶୁଂଘନ୍ତି ।

ଝଟ୍‌କାରୁ ଓହ୍ଲାଇ ସମସ୍ତେ ଆଗେ ଆଗେ ଚାଲିଲେ । କୃପାସିନ୍ଧୁ ପଛେଇ ଯାଇ ତେଲୁଗୁ ଭାଷା ନ ଜାଣିଥିଲେ ମଧ୍ୟ ଠାରଠୁର କରି କେଉଁଠି ନାସ ମିଳିବ ବୋଲି ଝଟକାବାଲାକୁ ପଚାରିଲେ । ସେ ରାସ୍ତା ପାଖରେ ଗୋଟିଏ ଡେଙ୍ଗରାଚି ଦୋକାନ ଆଡ଼କୁ ହାତ ଦେଖାଇ ଦେଲା । କୃପାସିନ୍ଧୁ ସେଠାକୁ ଯାଇ ଦେଖିଲେ ନାସ ପରି ନାଲି ଗୁଣ୍ଡା

ସବୁ ସେଠାରେ ରହିଛି । ସେ ହାତ ଦେଖାଇ କଅଣ ବୋଲି ପଚାରିବାରୁ ଦୋକାନୀ କହିଲା ମଞ୍ଚି ବା ଭଇ, କିନ୍ତୁ ସେ ଭାବିଲେ ଦୋକାନୀ କହୁଛି ତାହା ନାସ । ସେଥିରୁ ମେଞ୍ଚେ ନେଇ ଶୁଂଘ । କୃପାସିନ୍ଧୁ ସଙ୍ଗେ ସଙ୍ଗେ ସେଥିରୁ ଟିକିଏ ନେଇ ନାକରେ ପୂରାଇ ଦେଲେ । ନାକ ପୋଡ଼ିଉଠିଲା, ଆରେ ମାରି ପକାଇଲୁରେ ମାରିପକାଇଲୁରେ କହି ସେ ତଳେ ଗଡ଼ିଲେ । ଦୋକାନୀଟି ତା' ଭାଷାରେ ମିରିପକେଇଲୁ ମିରିପକେଇଲୁ ଅର୍ଥାତ୍ ଲଙ୍କାମାରିଚ ଗୁଣ୍ଡା ଗୁଡ଼ାକ ତୁ କାହିଁକି ନାକରେ ପୂରାଇଲୁ । ସେ ଶବ୍ଦ ଶୁଣି ଆଗକୁ ଆଗେଇ ଯାଇଥିବା ବନ୍ଧୁମାନେ ଦ୍ରୁତ ଗତିରେ କୃପାସିନ୍ଧୁଙ୍କ ପାଖକୁ ଦଉଡ଼ି ଆସି ପାଣି ଆଣି ସେବା ଶୁଶ୍ରୁଷା କରିବାକୁ ଲାଗିଲେ । ସେତିକିବେଳେ ଟିକିଏ ଦୂରରେ ଠିଆ ହୋଇ ସେ ଝଟକାବାଲାଟା ମୁରୁକି ମୁରୁକି ହସି ସେ ଦୃଶ୍ୟ ଉପଭୋଗ କରୁଥିଲା ।

୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ଗଢ଼ା ହେଲା । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମିଶି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୩୬ ଶେଷଆଡ଼କୁ ଓଡ଼ିଶାର ପ୍ରଥମ ନିର୍ବାଚନ ଆରମ୍ଭ ହେଲା । ନିର୍ବାଚନ କ'ଣ ଲୋକଙ୍କୁ ଜଣା ନଥାଏ । ଓଡ଼ିଶାର ପୁରୁଣା ନେତାମାନେ ମଧ ଗଞ୍ଜାମ କୋରାପୁଟର ଜନତାଙ୍କ ସହିତ ବିଶେଷ ଭାବରେ ପରିଚିତ ନଥା'ନ୍ତି । ଇତୁଆ ଜାତୀୟ କଂଗ୍ରେସ ପ୍ରଥମେ ନିର୍ବାଚନରେ ଭାଗ ନେବାପାଇଁ ନିଷ୍ପତ୍ତି ନେଲା ।

ଉତ୍କଳ କଂଗ୍ରେସ ସଭାପତି ପଣ୍ଡିତ ନୀଳକଣ୍ଠ ବହୁ ସ୍ଥାନରେ ପୁରୁଣା କର୍ମୀ ଓ ସଂଗ୍ରାମୀମାନଙ୍କୁ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତାରେ ଅବତୀର୍ଣ୍ଣ କରାଇ ସମସ୍ତଙ୍କ ପାଇଁ ହଳଦିଆ ରଙ୍ଗର ଭୋଟ ବାକ୍ସଟି ନିର୍ବାଚନ ଅଧିକାରୀଙ୍କ ଦ୍ୱାରା ସ୍ୱୀକୃତ କରାଇ ଥାଆନ୍ତି ।

କଂଗ୍ରେସ ପ୍ରାର୍ଥୀଙ୍କର ବାକ୍ସର ରଙ୍ଗ ହଳଦିଆ ଥିଲାବେଳେ ପ୍ରତିଦ୍ୱନ୍ଦ୍ୱୀମାନେ ଅନ୍ୟରଙ୍ଗର ବାକ୍ସ ଠିକ୍ କରିଥାଆନ୍ତି । ଏବର ପ୍ରାର୍ଥୀ ଓ ଚିହ୍ନଦିଆ ଭୋଟ କାଗଜ କିମ୍ବା ମୋହର ଦେଇ ଗୋଟିଏ ମାତ୍ର ବାକ୍ସରେ ସବୁ ପ୍ରାର୍ଥୀଙ୍କ ଭୋଟ କାଗଜ ପକାଇବା ପ୍ରଥା ନ ଥିଲା । ଯେଉଁ ବାକ୍ସରେ ଯେତେ ଭୋଟ କାଗଜ ପଡ଼ିଥାଏ ତାହା ସେହି ରଙ୍ଗ ବାଛିଥିବା ପ୍ରାର୍ଥୀଙ୍କର ହୁଏ ।

ବ୍ରହ୍ମପୁରର ମୋର ଦୂର ସଂପର୍କୀୟ ଜଣେ ଓକିଲ ସେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି କମଳା ରଙ୍ଗର ବାକ୍ସଟିଏ ବାଛିଲେ । ସେ ଆଗରୁ ଗୋଟିଏ ଝଟ୍କାରେ କଚେରୀକୁ ଯିବା ଆସିବା କରୁଥିଲେ । ସେ ଦକ୍ଷ ଓକିଲ ଥିଲେ ମଧ ସରଳ ବିଶ୍ୱାସୀ ଥିଲେ । ସେହି ଝଟକାବାଲାଟି ତାଙ୍କର ବଡ଼ ବିଶ୍ୱସ୍ତ ଥିଲା । ସେତେବେଳେ ଗଞ୍ଜାମର ସୁରେଙ୍ଗି କମଳା ବଡ଼ ଶସ୍ତା ଓ ବିଖ୍ୟାତ ଥିଲା । ଝଟକାବାଲାର ପରାମର୍ଶରେ ଦୁଇଟି ଦାସକାଠିଆ ଗାୟକ ଓ ଝୁଡ଼ି ଝୁଡ଼ି ସୁରେଙ୍ଗି କମଳା ଧରି ଗାଁକୁ ଗାଁ ଯାଇ ଭୋଟ ପ୍ରଚାର କରାଯିବାର ସ୍ଥିର ହେଲା ।

କୌଣସି ଗ୍ରାମ ପଡ଼ିବାକ୍ଷଣି ଗ୍ରାମ ମୁଣ୍ଡରେ ଝଟକାଟି ଅଟକେ । ପ୍ରଥମେ ଦାସକାଠିଆ ଗାୟକ ଦୁଇଟି ଓହ୍ଲାଇ ଯାଇ ଜୋରରେ ତାଙ୍କ ବୟାନ ଆରମ୍ଭ କରିଦିଅନ୍ତି ।

ଜୟ ରାମ ଯେ ରାମ ନବିନ ସୁନ୍ଦର ଘନ ଶ୍ୟାମ ହେ !
ଏହି ଓକିଲ ରଥକୁ କିଏ ସେ ନଜାଣ
ଭୋଟ ପାଇଲେ କରିବେ ସିଏ ଭଲ କାମ
ଜୟ ରାମ ଯେ ରାମ
ତାକୁ ଭୋଟ ଦେଇ ରଖ ଗଞ୍ଜାମ ସୁନାମ
ଜୟ....

ଶୀତ ଦିନ । ଧାନକଟା ସମୟ ହୋଇଥିବାରୁ ଲୋକେ ବିଲବାଡ଼ିକୁ ଯାଇଥାଆନ୍ତି । ଦାସକାଠିଆଙ୍କ ଶବ୍ଦ ଶୁଣି ଗ୍ରାମର ଛୋଟ ପିଲାମାନେ ଆସି ସେଠାରେ ଜମି ଯାଆନ୍ତି ।

ସେମାନଙ୍କୁ ଦେଖିବାକ୍ଷଣି ଓକିଲ ବାବୁ ଅଳ୍ପ ହସି ଝଟକାରୁ ଓହ୍ଲାଇ ସେଠାରେ ଠିଆ ହୋଇ ଯାଇ କହନ୍ତି ''ପିଲାଏ ମୁଁ ସେହି ଓକିଲ । ମୋ ଭୋଟ ବାକ୍ସର ରଙ୍ଗ କମଳା ରଙ୍ଗ । ସେ ଏତିକି କହିଲା ବେଳକୁ ଝଟକାବାଲା ତାଙ୍କ ନିକଟରେ କମଳା ଝୁଡ଼ିଟିଏ ଥୋଇଦେଇ ଝୁଡ଼ିର ମୁହଁ ଖୋଲା କରିଦିଏ । ଓକିଲ ସେଥିରୁ ଗୋଟିଏ ଗୋଟିଏ କମଳା ନେଇ ସେହି ପିଲାମାନଙ୍କୁ ଜଣ ଜଣ କରି ବାଣ୍ଟି ଦେଇ କହନ୍ତି 'ପିଲାଏ ତୁମେ କମଳା ଖାଅ । କିନ୍ତୁ ଚୋପା ନ ପୋପାଡ଼ି ତାକୁ ନେଇ ପିତାମାତାଙ୍କୁ ଦିଅ ଓ କହିବ ସେହି ଚୋପାର ରଙ୍ଗ ଥିବା କମଳା ରଙ୍ଗ ବାକ୍ସରେ ମୋତେ ଭୋଟ ଦେଇ ଜୟଯୁକ୍ତ କଲେ ସେମାନଙ୍କର ମଙ୍ଗଳ ହେବ । ଝଟକା ସେଠାରୁ ଚାଲିଗଲା ପରେ ଅଧିକାଂଶ ପିଲା ସେ ଚୋପାକୁ ଫିଙ୍ଗିଦେଇ ନିଜ ଖେଳରେ ମାତିଯାଆନ୍ତି । ଯେଉଁମାନେ ତାଙ୍କ ପିତାମାତାଙ୍କୁ ନେଇ ଚୋପା ଦେଇ ଓକିଲଙ୍କ କଥା କହନ୍ତି ସେମାନଙ୍କର ଗାଳି ଶୁଣିବା ସାର ହୁଏ । କେହି କେହି ପିତାମାତା ପିଲାଙ୍କ କାନ ମୋଡ଼ିବା ସଙ୍ଗେ ସଙ୍ଗେ ଓକିଲଙ୍କ ଉଦ୍ଦେଶ୍ୟରେ କହନ୍ତି ''ରଇଜଳା ଓକିଲ ଆମ ପାଖକୁ ଅଇଁଠା ଚୋପା ପଠାଇଛି, ଚୋପା ଭୋଟ ପାଇବ ।'' ଏଣେ ଓକିଲ ବାବୁ ଦାସକାଠିଆ ଓ ଝଟକାବାଲାଠାରୁ ନିଜ ପ୍ରଶଂସା ଶୁଣି ନିଶ୍ଚୟ ଜିତିବେ ବୋଲି ବିଚାରୁ ଥାଆନ୍ତି, କିନ୍ତୁ ଭୋଟ ଫଳ ବାହାରିଲା ବେଳକୁ ତାଙ୍କ ଅମାନତ ଟଙ୍କା ମଧ ଉଡ଼ିଯାଇଥିଲା ।

## ରେଲସେବା

ଊନବିଂଶ ଶତାବ୍ଦୀର ଶେଷ ଭାଗ ଆଡ଼କୁ ଇଂରେଜ ସରକାର ତାଙ୍କର ବାଣିଜ୍ୟ କେନ୍ଦ୍ରଗୁଡ଼ିକ ରେଳ ଲାଇନ ଦ୍ୱାରା ସଂଯୋଗ କଲେ । ସେଥିଯୋଗୁଁ କଲିକତା ଓ ମାନ୍ଦ୍ରାଜ

ଦୁଇଟି ପ୍ରଧାନ କେନ୍ଦ୍ରକୁ ରେଳ ଲାଇନ ଦ୍ୱାରା ସଂଯୁକ୍ତ କରାଯାଇଥିଲା । ଭାଗ୍ୟକୁ ତାହା ଅବହେଳିତ ଓଡ଼ିଶାର ଉପକୂଳ ଅଞ୍ଚଳ ଦେଇ ଗତି କରିବାରୁ ସେ ଅଞ୍ଚଳର ଲୋକେ ରେଳ ଯାତ୍ରାର କିଛିଟା ସୁବିଧା ପାଇଲେ । ପୁରୀ ସହରଟି ଜଗନ୍ନାଥଙ୍କ କ୍ଷେତ୍ର ହୋଇଥିବାରୁ ସେଠାରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଯାତ୍ରୀଙ୍କର ସମାଗମ ହେଉଥିଲା । ଇଂରେଜ ସରକାର ଯାତ୍ରୀମାନଙ୍କୁ ଉତ୍ସାହିତ କରି ନିଜର ଯାତ୍ରା ଟିକସ ବୃଦ୍ଧି ପାଇଁ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଖୋର୍ଦ୍ଧାଠାରୁ ଗୋଟିଏ ରେଳ ଲାଇନ ଦ୍ୱାରା ପୁରୀକୁ ସଂଯୋଗ କରିଥିଲେ ।

ଇଂରେଜ ଅମଳରେ ବିଭିନ୍ନ ଗୋରା କମ୍ପାନୀ ରେଳ ଚଳାଚଳର ଦାୟିତ୍ୱରେ ଥିଲେ । ବେଙ୍ଗଲ-ନାଗପୁର ରେଲୱେ ନାମକ ଗୋରା କମ୍ପାନୀ ଏ ଅଞ୍ଚଳର ରେଳପଥର ଅଧିକାରୀ ଥିଲେ । ସେତେବେଳେ ବିଭିନ୍ନ ଶ୍ରେଣୀର ଯାତ୍ରୀମାନଙ୍କ ପାଇଁ ରେଳ ଡ଼ବାରେ ଚାରିପ୍ରକାର ବ୍ୟବସ୍ଥା ଥିଲା । (୧) ଫାଷ୍ଟକ୍ଲାସ- ସେଥିରେ ଭଲ ଗଦି ସହିତ ପଙ୍ଖା କମୋଡ଼ ବାଥରୁମ ପ୍ରଭୃତି ରହିଥିଲା । ତାହା ଆରାମପ୍ରଦ ଓ ସ୍ୱତନ୍ତ୍ର ଥିଲା । ସେଥିରେ ବିଶିଷ୍ଟ ଗୋରା ଅଫିସରମାନେ ଯାତାୟତ କରୁଥିଲେ । (୨) ସେକେଣ୍ଡ କ୍ଲାସ-- ଏହା ଫାଷ୍ଟକ୍ଲାସ ପରି ସଜ୍ଜିତ ଥିଲେ ମଧ୍ୟ ତାହା ଫାଷ୍ଟ କ୍ଲାସଠାରୁ ଟିକିଏ କମ ଆରାମଦାୟକ ଥିଲା । ସେଥିରେ ଧନୀ ରାଜା ଜମିଦାର ଓ ଭାରତୀୟ ବଡ଼ ଅଫିସରମାନେ ଯାତ୍ରା କରୁଥିଲେ । ସେହି ଦୁଇଶ୍ରେଣୀର ଡ଼ବା ସଙ୍ଗେ ଗୋଟିଏ ଛୋଟ ସାଧାରଣ ବା ଥାର୍ଡ଼କ୍ଲାସ ଡ଼ବା ସଂଯୁକ୍ତ ଥିଲା । ତାହାକୁ ସରଭାଣ୍ଟ କ୍ଲାସ କୁହାଯାଉଥିଲା । ବଡ଼ ବଡ଼ିଆଙ୍କ ଚାକର ବାକର ଥାର୍ଡ଼କ୍ଲାସ ଟିକେଟ୍ କରି ସେଥିରେ ଯାତ୍ରା କରୁଥିଲେ । ସେମାନେ ଷ୍ଟେସନ ମାନଙ୍କରେ ସେମାନଙ୍କ ପ୍ରଭୁଙ୍କ ନିକଟକୁ ଯାଇ ସେମାନଙ୍କର ସେବା କରୁଥିଲେ । (୩) ଇଣ୍ଟର କ୍ଲାସ- ସେଥିରେ ଲମ୍ବା ଲମ୍ବା ବେଞ୍ଚ ଉପରେ ଅଳ୍ପ ଗଦି ପଡ଼ିଥିଲା । ସେଥିରେ ଅଫିସର, କିରାଣୀ ଓ ମଧ୍ୟବିତ୍ତ ଶ୍ରେଣୀୟ ଲୋକ ଯିବା ଆସିବା କରୁଥିଲେ ।

(୪) ଥାର୍ଡ଼ କ୍ଲାସ- ଲମ୍ବା ଲମ୍ବା କାଠ ବେଞ୍ଚ ଉପରେ କାଠପାଟିଆ ସବୁ ଦିଆଯାଇଥିଲା । ତାହା ଅନେକ ସମୟରେ ଛାରପୋକମାନଙ୍କର ବାସସ୍ଥଳୀ ଥିଲା । ସେଥିରେ ସାଧାରଣ ଗରିବ ଲୋକ ଯିବା ଆସିବା କରୁଥିଲେ । ବହୁକାଳ ପର୍ଯ୍ୟନ୍ତ ଦେଶୀ ସାଧାରଣ ଶ୍ରେଣୀୟ ଲୋକ ଯିବା ଆସିବା କରୁଥିବା ଗାଡ଼ିରେ ବାଥରୁମ ବା ପାଇଖାନା ସଂଯୋଗ ନ ଥିଲା । ଯାତ୍ରୀକୁ ଏକ ବା ଦୁଇ ଦେଖାଇଲେ କୌଣସି ଷ୍ଟେସନ ପଡ଼ିବା ପର୍ଯ୍ୟନ୍ତ ସେମାନେ ଅପେକ୍ଷା କରୁଥିଲେ । ପ୍ଲାଟଫର୍ମମାନଙ୍କରେ ପୁରୁଷ ଓ ସ୍ତ୍ରୀଙ୍କ ଛବି ଦିଆଯାଇ ସ୍ୱତନ୍ତ୍ର ପାଇଖାନାମାନ ରହିଥିଲା ।

ଏ ସମ୍ବନ୍ଧରେ ତତ୍କାଳୀନ ବଡ଼ଲାଟ ସଭାରେ ଘଟିଥିବା ଏକ ଘଟଣା ଲିପିବଦ୍ଧ ହୋଇରହିଛି । ୧୯୨୪ରେ ପ୍ରଥମେ କେନ୍ଦ୍ର ଆସେମ୍ବ୍ଲି ବା ବଡ଼ଲାଟ ସଭା ଆରମ୍ଭ ହେଲା । ସେଥିରେ ଓଡ଼ିଶା ସବଡ଼ିଭିଜନରୁ ମାତ୍ର ଦୁଇଜଣ ନିର୍ବାଚିତ ପ୍ରତିନିଧି ଗଲେ । ସେମାନଙ୍କ

ଭିତରୁ ପଣ୍ଡିତ ନୀଳକଣ୍ଠ କଂଗ୍ରେସ ସ୍ୱରାଜ୍ୟ ଦଳ ବା ଆସେମ୍ଲି ବିରୋଧ ଦଳର ସାଧାରଣ ସମ୍ପାଦକ ଥିଲେ ।

ସେତେବେଳେ ସେ ସଂସ୍ଥା ପୂରା ବିଲାତି କାଇଦାରେ ଚଳୁଥିଲା । ସଦସ୍ୟମାନଙ୍କ ସିଟ୍ ନିକଟରେ ସିଗାରେଟ ଆସ୍‌ଟ୍ରେ ରଖାଯାଇଥିଲା । ଭାରତୀୟ ସଦସ୍ୟମାନଙ୍କ ଭିତରୁ କେତେଜଣଙ୍କର ପାନ ଅଭ୍ୟାସ ଥିବାରୁ ଓ ପାନପିକ ପକାଇବା ବ୍ୟବସ୍ଥା ନ ଥିବାରୁ ସେମାନେ ଥରକୁ ଥର ଉଠି ବାହାରକୁ ଯାଇ ପିକ ପକାଇ ଆସୁଥିଲେ । ଥରେ ସରଗରମ ଆଲୋଚନା ଚାଲିଥିଲା ବେଳେ ସ୍ୱରାଜ ଦଳର ଜଣେ ପାନଖିଆ ବଙ୍ଗୀୟ ସଦସ୍ୟ ନ ଜାଣିଲା ପରି ଆସଟ୍ରେ ଟା ଟାଣିଆଣି ସେଥିରେ ପାନ ପିକ ପକାଇଦେଲେ । ସେତେବେଳର ଗୋରା ପାର୍ଲାମେଣ୍ଟାରୀ ବିଭାଗ ସଦସ୍ୟ (ମନ୍ତ୍ରୀ) ତାହା ଦେଖି ପକାଇଲେ । ସେ ସେଥିପାଇଁ ବିରୋଧିଦଳର ସଂପାଦକ ନୀଳକଣ୍ଠଙ୍କ ଦୃଷ୍ଟି ଆକର୍ଷଣ କଲେ । ନୀଳକଣ୍ଠ ତାହା ଶୁଣି ଭାରତୀୟ ସଦସ୍ୟମାନଙ୍କ ପାଇଁ ପିକ ଦାନୀର ବ୍ୟବସ୍ଥା କରିବାକୁ କହିଲେ । ସେଥିରେ ମନ୍ତ୍ରୀ ବିଚଳିତ ହେଲା ପରି କହିଲେ ତାହା କିପରି ହୋଇପାରିବ । ସେପରି କଲେ ପରିବେଶ ଦୂଷିତ ହେବ । ନୀଳକଣ୍ଠ ହସିକରି କହିଲେ ଧୂଆଁରେ ହେଉନାହିଁ, ପାନରେ ହେବ ?

ତା'ପରେ ନୀଳକଣ୍ଠ ତାଙ୍କ ଦଳର ସଦସ୍ୟମାନଙ୍କୁ ଇଚ୍ଛା ଅନୁସାରେ ଆସଟ୍ରେରେ ପିକ ପକାଇବା ପାଇଁ ନର୍ଦ୍ଦେଶ ଦେଲେ । ସେ ନିଜେ ବଡ଼ ପିପିଲି ବଟୁଆ ଓ ଗଞ୍ଜାମର ପାଣିଆ ସୁବୁଦ୍ଧି ଗୁଣ୍ଡି ସଙ୍ଗରେ ନେଲେ, ଶ୍ରୀକୃଷ୍ଣ ସିହ୍ନା ବିହାରରୁ ମଘିପାନ ଯୋଗାଇଲେ, ଶ୍ରୀ ପ୍ରକାଶ ବେନାରସ ମସଲା ଆଣିଲେ, ବମ୍ବେର ଜଣେ ସଦସ୍ୟ ପାନ ବାହାର ଯୋଗାଉଲେ । କେନ୍ଦ୍ର ସଭା ଭିତରେ ଯୋର ସୋର ପାନଖିଆ ଚାଲିଲା । ସଦସ୍ୟମାନେ ଆସ୍‌ଟ୍ରେରେ ପିକ ପକାଉ ପକାଉ ସେ ସ୍ଥାନ ମଧ ଅସନା ହେଲା ।

ଗୋରା ମନ୍ତ୍ରୀ ମହାଶୟ ଆଉ ସମ୍ଭାଳି ନ ପାରି ପିକଦାନୀର ବ୍ୟବସ୍ଥା କଲେ ଓ ସହାସ୍ୟ ବଦନରେ କହିଲେ, ବର୍ତ୍ତମାନ ପଣ୍ଡିତ ନୀଳକଣ୍ଠ ଓ ତାଙ୍କ ଦଳର ପାନଖିଆ ସଦସ୍ୟମାନଙ୍କର ଆଉ ଅସୁବିଧା ହେବ ନାହିଁ । ସରକାର ସେମାନଙ୍କ ସୁବିଧା ପାଇଁ ପିକଦାନୀ ଯୋଗାଇ ଦେଇଛନ୍ତି । ସେଥିପାଇଁ ଅବଶ୍ୟ ମାନ୍ୟବର ସଭ୍ୟ ସରକାରଙ୍କୁ ଧନ୍ୟବାଦ ଦେବେ ।

ପଣ୍ଡିତ ନୀଳକଣ୍ଠ କହିଉଠିଲେ ଏହି ଇଂରେଜ ସରକାର ଭାରତବାସୀଙ୍କୁ ଶୋଷଣ କରି ସବୁ ବିଲାତକୁ ନେଇଯାଇ ସେମାନଙ୍କ ସୁବିଧା ପାଇଁ ଯେଉଁ ଅଳ୍ପ ଇଲେକ୍‌ଟ୍ରି ଓ ରେଳଲାଇନ ଏ ଦେଶରେ ପକାଇଛନ୍ତି ସେଥିପାଇଁ ଭୁରି ଭୁରି ପ୍ରଶଂସା ପାଇଛନ୍ତି । ଭାରତରେ ରେଳଗାଡ଼ିର ୫୦ ବର୍ଷପରେ, ସେଥିରେ ଯାଉଥିବା ତଳ ଶ୍ରେଣୀର ଯାତ୍ରୀମାନେ ଯାତ୍ରାବେଳେ ପାଇଖାନା ଦରକାର କରନ୍ତି ବୋଲି ସରକାର ଉପଲବ୍ଧି

କରିଥିଲେ । ଏତେକାଳ ପରେ ଭାରତୀୟ ସଦସ୍ୟମାନେ ପାନ ଖାଆନ୍ତି ବୋଲି ଜାଣି ପାରିଲେ । ସେଥିପାଇଁ ସେ ଧନ୍ୟବାଦ ଚାହୁଁଛନ୍ତି । ତେଣୁ ମୁଁ ତାହା ଦେଉଛି, ମାନ୍ୟବର ମନ୍ତ୍ରୀ ମହୋଦୟ ତାହା ଗ୍ରହଣ କରନ୍ତୁ । (କଣଙ୍କ ପଣସ ଖିଆରୁ ଥାର୍ଡ଼କ୍ଲାସରେ କିପରି ପାଇଖାନା ଖଞ୍ଜାଯାଇଥିଲା, ପରେ ଉଲ୍ଲେଖ କରାଯାଇଛି ।)

ଥାର୍ଡ଼କ୍ଲାସରେ ଯାତ୍ରା କରିବା ଆରାମଦାୟକ ନ ଥିଲେ ମଧ୍ୟ ତାହା ଅର୍ଥସାପେକ୍ଷ ଥିଲା । ମାଇଲକୁ ପଇସାକରୁ କମ୍ ପଡୁଥିଲା । କଟକରୁ କଲିକତାକୁ ଇଣ୍ଟର କ୍ଲାସରେ ପାଞ୍ଚଟଙ୍କା ମାତ୍ର ପଡୁଥିଲା । ସେକେଣ୍ଡ ଓ ଫାଷ୍ଟ କ୍ଲାସର ଭଡ଼ା ତଳକ୍ଲାସ ଭଡ଼ାର ୩/ ୪ ଗୁଣ ଥିଲା ।

କମ୍ପାନୀ ଅମଳରେ ଟିକେଟ୍ ଇନସ୍‌ପେକ୍ଟର ଓ କଲେକ୍ଟରମାନେ ଡ଼ବା ଡ଼ବା ବୁଲି ଟିକେଟ୍ ଯାଞ୍ଚ କରୁଥିଲେ । ସେତେବେଳେ ଓଡ଼ିଆ କୁଲିମାନେ ପଞ୍ଚା ପଞ୍ଚା ହୋଇ ବଙ୍ଗଳାର ଝୋଟକଳ ଓ ଆସାମର ଚା' ବଗିଚାକୁ ଯାଉଥିଲେ । ସେମାନଙ୍କ ଭିତରୁ ଅଧିକାଂଶ ଅଶିକ୍ଷିତ ଓ ଭୟାଳୁ ଥିଲେ । ସେମାନେ ଏକ ସଙ୍ଗେ ଗୋଟିଏ ଡ଼ବାରେ ଚଢ଼ିବାକୁ ଚେଷ୍ଟାକରି ଚଢ଼ି ନ ପାରିଲେ ତର ତରରେ ଅନ୍ୟ ଡ଼ବାରେ ଉଠିଯିବାକୁ ବାଧ ହେଉଥିଲେ । ଗୋଟିଏ ଷ୍ଟେସନ ପଡ଼ିବା ସଙ୍ଗେ ସଙ୍ଗେ ଓହ୍ଲାଇ ଆସି ସାଥୀମାନଙ୍କୁ ଖୋଜୁଥିଲେ । ଏପରି ଖୋଜା ଖୋଜିରେ 'ହେ ହରିଆ ଭାଇ, ହୋ ରାମା ଭାଇ' ପ୍ରଭୃତି ଶବ୍ଦରେ ଷ୍ଟେସନ ଓ ଡ଼ବା ଭିତର ମୁଖରିତ ହୋଇ ଉଠୁଥିଲା । ଅନେକ ସମୟରେ ସେମାନେ ଖୁନ୍ଦା ଖୁନ୍ଦି ହୋଇ ବସିବାଦ୍ୱାରା ବା ଠିଆ ହୋଇ ରହିବା ଦ୍ୱାରା ଅନ୍ୟ ଯାତ୍ରୀଙ୍କର ଶ୍ୱାସରୁଦ୍ଧ ହୋଇଉଠୁଥିଲା ।

ସେପରି ଡ଼ବାରେ ଖଇନି ଖାଉଥିବା ଯାତ୍ରୀଥିଲେ । ସେମାନେ ବାଇଗଣି ଧୂଆଁପତ୍ର ଓ ଚୂନକୁ ଚକଟି ପାଟିରେ ପକାଇବା ପୂର୍ବରୁ ହାତ ଉପରେ ରଖି ଯେଉଁ ତାଳିଟାଏ ମାରି ଦେଉଥିଲେ ସେଥିରୁ ବାହାରି ଆସୁଥିବା କଡ଼ା ଦୁର୍ଗନ୍ଧରେ ମଣିଷ ଅଠାଠିକ ହୋଇ ଯାଉଥିଲା ।

ଏସବୁ ଅସହ୍ୟ ପରିସ୍ଥିତି ସଙ୍ଗକୁ ଟି.ଟି.ଆଇ. ଚା' ଭିତରେ ପଶି ଟିକେଟ୍ ଯାଞ୍ଚ କଲାବେଳକୁ ଦଳାଦଳି ଅବସ୍ଥା ସୃଷ୍ଟି ହେଉଥିଲା । ଅନେକ ବିନା ଟିକେଟ୍ ଯାତ୍ରୀ ବେଞ୍ଚ ତଳେ ପଶିବା, ପରେ ବାଥ୍‌ରୁମରେ ପଶିବା ବା ଛୋଟ ଷ୍ଟେସନରେ ଗାଡ଼ି ରହୁ ରହୁ ଅନ୍ୟ ଗାଡ଼ିକୁ ଚାଲିଯିବା ପ୍ରଭୃତି କାର୍ଯ୍ୟରେ ଅଭ୍ୟସ୍ତ ଥିଲେ ।

କମ୍ପାନୀ ଅମଳରେ ଟିକେଟ କଲେକ୍ଟରମାନେ ନିଜ କାର୍ଯ୍ୟ ପ୍ରତି ସତର୍କ ଥିଲେ । ଖୋଲାଖୋଲି ଭାବରେ ଦୁର୍ନୀତି କରିବାକୁ ସାହସ କରୁନଥିଲେ । ଟିକେଟ କଲେକ୍ଟରଙ୍କ

ବିଷୟରେ ନାନା ଗଳ୍ପ ପ୍ରଚାରିତ ହେଉଥିଲା । ସେତେବେଳେ ଅଳ୍ପ ପାଠୁଆ ଲୋକେ ଟି.ଟି.ଆଇ. ହେଉଥିଲେ । ସେମାନେ ଯେଉଁ ଇଂରେଜୀ କହୁଥିଲେ ତାକୁ ବି.ଏନ୍.ଆର. ଇଙ୍ଗଲିସ ବୋଲି ଥଟ୍ଟା କରାଯାଉଥିଲା ।

ସେ ସମୟରେ କଟକର ଜଣେ ମାନ୍ୟଗଣ୍ୟ ବିଶିଷ୍ଟ ଓକିଲଙ୍କ ପୁତ୍ର ପାଠରେ ଆଗେଇ ନପାରିବାରୁ ପିତାଙ୍କ ଚେଷ୍ଟାରେ ବି.ଏନ୍.ଆର. କମ୍ପାନୀରେ ଟି.ଟି.ଆଇ. ଚାକିରିଟିଏ ପାଇଥିଲେ । ସେ ବେଶୀ ପାଠ ନ ପଢ଼ିଥିଲେ ମଧ୍ୟ ଇଂରେଜ ଠାଣିରେ ଇଂରେଜୀ ଭାଷା କହିବାକୁ ଯାଇ ଭୁଲଭାଲ କରି ସେ ଭାଷା କହୁଥିଲେ । ପ୍ଲାଟଫର୍ମରେ ଥରେ ଜଣେ ଲୋକ ତାଙ୍କୁ ଆସିବାକୁ ଥିବା ଟ୍ରେନ ବିଷୟରେ କ'ଣ ପଚାରିଲା । ସେ ନବୁଝି କ'ଣ ଦୁଇପଦ କହିବାରୁ ଗାଡ଼ି ଲେଟ ଅଛି ବୋଲି ସେ ବୁଝିଲା । କିନ୍ତୁ ସେ ଟ୍ରେନଟି ଶିଘ୍ର ଆସି ପହଞ୍ଚିଗଲା । ଭଦ୍ରଲୋକ ପ୍ଲାଟଫର୍ମକୁ ଆସିଥିବା ଷ୍ଟେସନ ମାଷ୍ଟରଙ୍କୁ କହିଲେ ଆପଣଙ୍କ ଟି.ଟି.ଆଇ. ମୋତେ ଟ୍ରେନ ବିଷୟରେ ଭୁଲ ଖବର ଦେଲେ । ମୁଁ ଷ୍ଟେସନ ବାହାରକୁ ଯାଇଥିଲେ ଟ୍ରେନ ପାଇନଥା'ନ୍ତି । ତାଙ୍କ କଥା ଶୁଣି ଟି.ଟି.ଆଇ. ଭଦ୍ରଲୋକଙ୍କୁ ଚାହିଁ କହିଲେ, "Did I told about the train" ସେହିପରି ଭୁଲ ଇଂରେଜୀ ଶୁଣି ସେଠାରେ ଥବା ସବୁ ଲୋକ ହସି ପକାଇଲେ ।

ଆଉ ଥରେ ସେ ଟିକେଟ କଲେକ୍ଟର ପୁରୀ ଏକ୍ସପ୍ରେସରେ ଆସିଲାବେଳେ ଜଣେ ବିନା ଟିକେଟରେ ଆସିଥିବା ଲୋକକୁ ଲକ୍ଷ୍ୟ କରିଥିଲେ । ସେ ବାଲେଶ୍ୱର ଠାରୁ ଗାଡ଼ିରେ ଉଠିଥିଲା । ସେ କଟକ ଷ୍ଟେସନରେ ଓହ୍ଲାଇବା ସଙ୍ଗେ ସଙ୍ଗେ ତାହାର ବାହାକୁ ଧରି ଅଟକାଇଦେଲେ । ସେ ତାକୁ ଟିକେଟ ମାଗିଲେ । ଟିକେଟ ନ ଥିବାରୁ ଜୋରିମାନା ସହିତ ପଇସା ଦେବାକୁ କହିଲେ । ସେ ପଇସା ନାହିଁ ବୋଲି କହିବାରୁ ଟି.ଟି.ଆଇ. କହିଲେ - "Rising at Balasore, setting at Cuttack. You fellow no ticket, no money come, police, we go." (ବାଲେଶ୍ୱରରେ ଉଦୟ ହୋଇ (ଉଠି) କଟକରେ ଅସ୍ତ ହେଉଛ (ଓହ୍ଲାଉଛ) । ସେ ସେପରି ଇଂରେଜୀ କହି କୌଣସି ମତେ ତାଙ୍କ କାର୍ଯ୍ୟ ସମାପନ କରୁଥିଲେ । ଦିନେ ତାଙ୍କ ବାପା ଟ୍ରେନରେ ଫାଷ୍ଟ କ୍ଲାସରେ ବସି ଯାଉଥିଲେ । ଟିକେଟ ଚେକ୍ କରିବା ପାଇଁ ସେହି ଡ଼ବାରେ ସେ ପଶିଗଲେ । ନିଜ ପର ଭେଦଭାବ ବିଚାର ନ କରି ଅନାସକ୍ତ ଭାବରେ ନିଜ କାର୍ଯ୍ୟ କରିଯିବାକୁ ସେ ଉଚିତ ମନେ କରୁଥିଲେ । ସେ ଟିକେଟ କଲେକ୍ଟର ପୋଷାକ ପରିଧାନ କରିଥିବାରୁ ଅନ୍ୟ ପରିଚୟ ଭୁଲି ଯିବାକୁ ଚେଷ୍ଟା କରୁଥିଲେ । ସେ ପିତାଙ୍କ ମୁହଁ ଆଡ଼କୁ ନ ଚାହିଁ ହାତ ବଢ଼ାଇ ଟିକେଟ ଟିକେଟ ବୋଲି ମାଗିବାକୁ ଲାଗିଲେ । ପିତା ତାଙ୍କୁ କେତେ ପ୍ରଶ୍ନ ପଚାରୁଥିଲେ ଓ ତାଙ୍କର କୁଶଳ ସମାଚାର କଥା ବୁଝିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଟି.ଟି.ଆଇ. ସେ କଥା ଶୁଣି ନ ଶୁଣିଲା ପରି

ହୋଇ ଟିକେଟ ମାଗି ଚାଲିଲେ । ପିତା ବାଧ ହୋଇ ଟିକେଟଟା ବଢ଼ାଇ ଦେଲେ । ଟିକେଟ ଯାଞ୍ଚ କରି ସାରି ପୁତ୍ର ପିତାଙ୍କୁ ନମସ୍କାରଟିଏ କରି ଅନ୍ୟ ଡ଼ବାକୁ ଚାଲିଗଲେ ।

ସାମ୍ରାଜ୍ୟବାଦ ଚାଲୁ ରହିଥିବା ସମୟରେ ସରକାରୀ କର୍ମଚାରୀଙ୍କର ଉପରିସ୍ଥ କର୍ମଚାରୀଙ୍କ ପ୍ରତି ଭୟ ଥିଲା । ଉପରିସ୍ଥ ଅଫିସର ଭୁଲ୍ ବା ଠିକ୍ ଯେଉଁ ଆଦେଶ ଦିଅନ୍ତୁ ତାହା ଅଧୀନସ୍ଥ କର୍ମଚାରୀମାନେ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଚେଷ୍ଟା କରୁଥିଲେ ।

୧୯୪୭ରେ ଭାରତ ସ୍ୱାଧୀନ ହେଲା । ଗଣତନ୍ତ୍ର ବା ଜନତାଙ୍କ ନାମରେ ରାଜତ୍ୱ ଚାଲିଲା । କର୍ମଚାରୀମାନେ ଯିଏ ଯାହା ହାତରେ ଚଉଦ ପା । ତେଣୁ ଆଦେଶ ପାଳନ ଓ କର୍ତ୍ତବ୍ୟ ସାଧନରୁ ଅଙ୍କୁଶ ହୁଗୁଳା ହୋଇପଡ଼ିଲା । ଦୁଇ ଦିନିଆ ନିର୍ବାଚିତ ମନ୍ତ୍ରୀ ବା ଉଚ୍ଚ ଶାସକ ପ୍ରତି ଭୟ ରହିଲା ନାହିଁ । ଦୁର୍ନୀତି ତଳସ୍ତରରୁ ଉପର ସ୍ତର ପର୍ଯ୍ୟନ୍ତ ବ୍ୟାପିଲା ।

ଜନତାଙ୍କୁ ସମ୍ମାନ ଦେଖାଇବା ପାଇଁ ସରକାର ରେଲୱେ ସବୁ ହାତକୁ ନେବା ପରେ ତୃତୀୟ ଓ ଇଣ୍ଟରକ୍ଲାସ ଉଠାଇ ଦେଲେ । ଜନତା ବା ଦ୍ୱିତୀୟ ଶ୍ରେଣୀ ଓ ଉଚ୍ଚ ଶ୍ରେଣୀ ବା ଫାଷ୍ଟକ୍ଲାସ ପ୍ରଚଳନ କରାଗଲା । କିନ୍ତୁ ଚାହୁଁ ଚାହୁଁ ତାହା ନାନା ଶ୍ରେଣୀରେ ପରିଣତ ହୋଇଗଲା । (୧) ଏୟାର କଣ୍ଡିସନ ଫାଷ୍ଟକ୍ଲାସ (୨) ଫାଷ୍ଟକ୍ଲାସ (୩) ଚେୟାରକ୍ଲାସ (୪) ଏୟାର କଣ୍ଡିସନ ସେକେଣ୍ଡ କ୍ଲାସ (୫) ୨ଟାୟାର ସେକେଣ୍ଡ କ୍ଲାସ (୬) ୩ଟାୟାର ସେକେଣ୍ଡ କ୍ଲାସ ଓ (୭) ସାଧାରଣ ସେକେଣ୍ଡ କ୍ଲାସ । ଏପରି ସବୁ ବିଭାଗ ଦ୍ୱାରା ଜନତାଙ୍କୁ କେବଳ ଦରବୃଦ୍ଧିର ସମ୍ମୁଖୀନ ହେବାକୁ ପଡ଼ିଲା ।

ରେଳ ଯାତ୍ରା ବ୍ୟୟସାପକ୍ଷେ ହେବା ସଙ୍ଗେ ସଙ୍ଗେ ବିପଦପୂର୍ଣ୍ଣ ହୋଇପଡ଼ିଲା । ସାଧାରଣ ରେଳଯାତ୍ରାର ମୂଲ୍ୟ ବସଯାତ୍ରାର ମୂଲ୍ୟ ଠାରୁ ବହୁ ଅଧିକ ହୋଇଯାଇଛି । ପେଟ୍ରୋଲ ଦାମ ବଢ଼ି ଚାଲିଲେ ମଧ ତାହା ନିମ୍ନଶ୍ରେଣୀ ରେଳ ଭଡ଼ା ସହିତ ସମକକ୍ଷ ହୋଇ ପାରିନାହିଁ ।

ରେଳ ଯାତ୍ରାରେ ଯାତ୍ରୀମାନଙ୍କୁ ନାନା ପ୍ରକାର ଆରାମ ଯୋଗାଇ ଦିଆଯାଉଥିବାର ପ୍ରଚାର ଥିଲେ ମଧ ଯାତ୍ରୀଙ୍କର ଅସୁବିଧାର ଅନ୍ତ ନାହିଁ । ଚଉକିଆ ଚୋର ବନିଲା ପରି ଓ୍ୟାଚ ଓ୍ୟାଡ଼ ପୋଲିସ ଓ କଣ୍ଡକ୍ଟର ପ୍ରଭୃତିଙ୍କ ସାହାଯ୍ୟରେ ରେଳ ଭିତରେ ଚୋରି ଡ଼କାୟତି ବଢ଼ିଚାଲିଛି ।

## ରେଳଯାତ୍ରାର ହଟହଟା

ଦୂର ଦୂର ସ୍ଥାନ ଦେଖିବା ପାଇଁ ପ୍ରତ୍ୟେକ ମାନବର ଆଗ୍ରହ ଆଦିମ କାଳ ରୁ ରହିଆସିଛି । ସେ ଆଗ୍ରହ ନ ଥିଲେ କାହିଁ ଦୂରରୁ ଆର୍ଯ୍ୟ ଓ ଅନ୍ୟାନ୍ୟ ଜାତିମାନେ

ଭାରତକୁ ଆସିନଥାନ୍ତେ । ହିନ୍ଦୁ ମୁସଲମାନ ସମସ୍ତଙ୍କ ସେହି ଆଗ୍ରହକୁ ରୂପ ଦେବା ପାଇଁ ବିଭିନ୍ନ ସ୍ଥାନରେ ଧର୍ମ ଅନୁଷ୍ଠାନମାନ ରଖାଯାଇଛି । ଚାରିଧାମ ଦର୍ଶନ ପାଇଁ ବାଟ ଘାଟ ରେଳ ମୋଟର କିଛି ନ ଥିଲା ବେଳେ ଲକ୍ଷ ଲକ୍ଷ ଯାତ୍ରୀ ଭାରତର ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ପରିକ୍ରମା କରୁଥିଲେ । ରାସ୍ତା କଷ୍ଟ ଓ ହଇଜା, ବସନ୍ତ ପ୍ରଭୃତି ରୋଗ ଆକ୍ରମଣରେ ବହୁ ସଂଖ୍ୟାରେ ସ୍ୱର୍ଗାଗମନ କରୁଥିଲେ । ଏବେବି ମୁସଲମାନ ହଜ ଯାତ୍ରୀମାନେ ମକ୍କା ମଦିନା ଯିବା ପାଇଁ ବହୁ କଷ୍ଟ ସ୍ୱୀକାର କରି ବେଦ୍‌ଉଇନ ଦସ୍ୟୁ ଓ ରୋଗ ଆକ୍ରମଣର ଶିକାର ହୁଅନ୍ତି । ଆମ ପଡ଼ୋଶୀ ରାଜ୍ୟ ବିହାରର 'ଗୟା'କୁ ଗୟାଶ୍ରାଦ୍ଧ ପାଇଁ ବାହାରିଲେ ଯୋ ଗୟା ସୋ ଗୟା ବୋଲି କଥନୀଟିଏ ଥିଲା ।

ଭାରତରେ ରେଳ ମୋଟରର ସୁବିଧା ପରେ ଯାତ୍ରୀମାନଙ୍କ ଭୟ ଅନେକାଂଶରେ ଉପଶମ ହୋଇଥିଲା । ତଥାପି ଆମ ପିଲାଦିନେ ଏପରି ଲୋକ ଥିଲେ ଯେ'କି କାଠଯୋଡ଼ି ଓ ମହାନଦୀ ରେଳ ପୋଲ ଭାଙ୍ଗି ପଡ଼ିବ ବୋଲି କଟକ ଛାଡ଼ି ବାହାରକୁ ଯାଉନଥିଲେ । ସେମାନଙ୍କ ଭିତରୁ ଟ୍ରେନିଂ ସ୍କୁଲ ଶିକ୍ଷକ ହାରାଧନ ଘୋଷଙ୍କ ନାମ ଅନେକ ଶୁଣିଥିବେ । କଟକର ଜଣେ ବିଶିଷ୍ଟ କବିରାଜଙ୍କ ଗଳାରେ କର୍କଟରୋଗ ଆରମ୍ଭ ହୋଇଥିଲା । ଚିକିତ୍ସକ ଭାବରେ ମୁଁ ଡ଼କରାପାଇ ତାଙ୍କୁ ଦେଖିବାକୁ ଗଲି । ତାଙ୍କ ଭାଇ କଲିକତାରେ ନାମଜାଦା ବ୍ୟବସାୟୀ । ତାଙ୍କ ନିଜ ଘର ଥାଏ । ସେତେବେଳକୁ କଟକରେ କ୍ୟାନସର ହସପିଟାଲ ହୋଇନଥାଏ । ମୁଁ କବିରାଜଙ୍କୁ କଲିକତା ଚିତ୍ତରଞ୍ଜନ କ୍ୟାନସର ହସପିଟାଲକୁ ଯାଇ ଚିକିତ୍ସା କରାଇବା ପାଇଁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ତାଙ୍କ ଦେହରେ ଯେପରିକି ବିଜୁଳି ମାରିଦେଲା । କଲିକତା ନାମ ଶୁଣିଲା ମାତ୍ରେ ସେ ଚିହିଙ୍କି ଉଠି କହିଲେ 'ଆମର ଚିକିତ୍ସା ଦରକାର ନାହିଁ, କଟକ ଛାଡ଼ି ଅନ୍ୟ ଆଡ଼େ ଯିବା ଦରକାର ନାହିଁ' । ମୁଁ ଶୁଣିଲି ମହାନଦୀ ପୋଲ ରେଳଗାଡ଼ି ଚାପରେ ଭାଙ୍ଗି ପଡ଼ିବାର ସମ୍ଭାବନାରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ।

ବର୍ତ୍ତମାନ ଧର୍ମ ଅପେକ୍ଷା ନିଜ ନିଜର ବ୍ୟବସାୟ ପାଇଁ ଯାତ୍ରାର ପ୍ରୟୋଜନ ବେଶି ବଢ଼ିଛି । କମ୍ପାନୀ ଏଜେଣ୍ଟମାନଙ୍କର ଏଠାକୁ ସେଠାକୁ ଯିବା, ଜୀବିକା ନିର୍ବାହର ପ୍ରଧାନ ପନ୍ଥା ହୋଇଛି ।

ବର୍ତ୍ତମାନ କମ୍ପୁଟର ଯୁଗରେ ଟିକେଟ କରିବାର ନିଶ୍ଚିତତା ବଢ଼ିଛି । ଡ଼ିଜେଲ ଓ ଇଲେକ୍‌ଟ୍ରିକ ଇଞ୍ଜିନ ଯୋଗୁଁ କୋଇଲା ଧୂଆଁ ମାଡ଼ରୁ ରକ୍ଷାମିଳୁଛି, ଗାଡ଼ି ଭିତରେ ବିଛଣା ଭଡ଼ାରେ ମିଳୁଛି । ଶୀତତାପ କୋଠରୀର ମଧ୍ୟ ବ୍ୟବସ୍ଥା ହୋଇଛି । ତେଣୁ ଖଣ୍ଡିଏ ଛୋଟ ବ୍ୟାଗ ଧରି ରେଳ ଯାତ୍ରା କରିବା ଅନେକଟା ଆରାମପ୍ରଦ ହୋଇଛି । ଏ ସବୁ ସତ୍ତ୍ୱେ ରେଳଯାତ୍ରାର ଡ଼ର କମିନାହିଁ ବରଂ ଚୋରି, ଡ଼କାୟତି, ଠକାମି ସାଙ୍ଗକୁ ବୋମା ଭୟ,

ଆତତାୟୀ ଭୟ, ଦିନକୁ ଦିନ ବଢ଼ି ଚାଲିଛି । ଗାଡ଼ି ସମୟର ଅନୀୟମିତତା, ରେଳ ରୋକ ପ୍ରଭୃତି ଯୋଗୁଁ ଯାତ୍ରୀମାନଙ୍କର ହଟହଟା ବଢ଼ୁଛି ।

ମୋ ନିଜର ରେଳ ଯାତ୍ରାର ହଟହଟା ସମ୍ବନ୍ଧରେ କେତୋଟି ମାତ୍ର ଉଦାହରଣ ଦେଉଛି । ମୁଁ ମେଡ଼ିକାଲ କଲେଜର ମୁଖ୍ୟ ଅଧ୍ୟାପକ ଥିଲାବେଳେ ବିଭିନ୍ନ କଲେଜର ସ୍ନାତକ ଓ ସ୍ନାତକୋତ୍ତର ପରୀକ୍ଷାର୍ଥୀମାନଙ୍କୁ ପରୀକ୍ଷା କରିବା ପାଇଁ ମୋତେ ଭାରତର ନାନା ସ୍ଥାନକୁ ଯିବାକୁ ପଡ଼ୁଥିଲା ।

ଥରେ ଦରଭଙ୍ଗା ଯିବାପାଇଁ ମୁଁ ବ୍ରହ୍ମପୁରରୁ ଟିକଟ କରି କଲିକତାଠାରୁ ଆଉ ଗୋଟିଏ ଗାଡ଼ି ଧରିବା ପାଇଁ ସେ ଗାଡ଼ିରେ ରିଜରଭେସନ କରିବାକୁ ଟେଲିଗ୍ରାମ ପଠାଇଛି । ହାବଡ଼ା ଷ୍ଟେସନରେ ପହଁଚି ଶୁଣିଲି ସେ ରେଲୱେ ଟେଲିଗ୍ରାମ ପହଁଚି ନାହିଁ, ମୋ ସିଟ୍ ରିଜର୍ଭ ହୋଇନାହିଁ କିମ୍ବା ସେହି ଗାଡ଼ିରେ ଆଉ ସିଟ ମିଳିବା ସମ୍ଭବ ନୁହେଁ । ଅଧାବାଟରୁ ବା ଫେରିଯିବି କିପରି ? ଗାଡ଼ି ଚାଲିଗଲା ମୁଁ ବସି ରହିଲି । ହଠାତ ଏକ ସ୍ପେଶାଲ ଗାଡ଼ି ଦୋଳ ପାଇଁ ସମସ୍ତିପୁର ଯାଉଥିବାର ଘୋଷଣା କରାଗଲା । ସେଥିରେ ଫାଷ୍ଟକ୍ଲାସ, ସେକେଣ୍ଡକ୍ଲାସ ସବୁଥିରେ ରିଜର୍ଭ କରିବା ପାଇଁ ମୁଁ ଚେଷ୍ଟା କରି ବିଫଳ ହେଲି । ମୋ ଜିନିଷ ବୋହି ଆଣିଥିବା କୁଲିଟି ମୋତେ ସହାନୁଭୂତି ଦେଖାଇ କହିଲା, ମୁଁ ଗୋଟିଏ ଡ଼ବା ଭିତରେ ଆଗରୁ ଲୋକ ପଠାଇ ଜାଗା ରଖାଇଛି । ସେ ଗାଡ଼ିଟି ଦୂରରେ ସେଡ଼ରେ ଠିଆ ହୋଇଛି । ସେ ଗାଡ଼ି ଆସି ଷ୍ଟେସନରେ ଲାଗିବା କ୍ଷଣି ମୁଁ ଆପଣଙ୍କୁ ନେଇ ବସାଇ ଦେବି । ଆପଣ ଗୋଟିଏ ସେକେଣ୍ଡକ୍ଲାସ ଟିକଟ କିଣିଆଣନ୍ତୁ । ମଣିଷ ବୁଡ଼ିଗଲାବେଳେ କୁଟାଖିଅକୁ ଆଶ୍ରାକଲା ପରି ମୁଁ ଟିକେଟ କିଣି ସାରି ସେ ତା' କାର୍ଯ୍ୟ ପାଇଁ ଯାହା ଚାର୍ଜ କଲା ତାହା ଦେବାକୁ ରାଜି ହୋଇଗଲି ।

ଗାଡ଼ିଟି ଆସି ପହଞ୍ଚିଲା । ଅଫିସର ଆସି ଡ଼ବାଗୁଡ଼ିକର ଚାବି ଫିଟାଇଲେ । ସେ ଡ଼ବା ଭିତରେ ଆଗରୁ ଜାଗା ସାବ୍ୟସ୍ତ କରିବାକୁ ଯାଇଥିବା କୁଲିମାନେ ଖପ ଖାପ ଡ଼େଇଁପଡ଼ିଲେ । ବାହାରେ ଅପେକ୍ଷା କରୁଥିବା ତାଙ୍କ ସାଥୀ କୁଲିମାନଙ୍କ ସାହାଯ୍ୟରେ ଯାତ୍ରୀମାନେ ଠେକା ହୋଇ ତା' ଭିତରେ ପଶିଲେ। ମୁଁ ମଧ ଠେକା ହୋଇ ସେହି ଡ଼ବାର ଜିନିଷ ପାଇଁ ନିର୍ଦ୍ଦିଷ୍ଟ ଥିବା ଥାକ ଉପରେ ମୋ ଜିନିଷ ପତ୍ର ସହିତ ଥୁଆ ହେଲି । କୁଲି ତାର ପ୍ରାପ୍ୟ ଘେନି ଚାଲିଗଲା । ଚାହୁଁ ଚାହୁଁ ସେ ଡ଼ବା ଠିଆ ହେବା ଲୋକଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇଗଲା । ଉପରୁ ତଳକୁ ଓହ୍ଲାଇ ବାଥରୁମ ଯିବାପାଇଁ ମଧ ବାଟ ରହିଲା ନାହିଁ । ସେ ଉପର ଥାକରେ ମୋର ଦୁଇପଟେ ମଧ ଅନ୍ୟ ଯାତ୍ରୀମାନେ ବସି ମୋ ସ୍ଥାନକୁ ସଙ୍କୁଚିତ କରିବାକୁ ଲାଗିଥିଲେ । ମୁଁ ଟିକିଏ ଶୋଇବାକୁ ଚେଷ୍ଟାକଲେ କାହାର ପାଦ ମୋ ମୁଖମଣ୍ଡଳ ସ୍ପର୍ଶ କଲାଣି ତ କାହାର ମସ୍ତକ ମୋର କୋଳର ଆଶ୍ରୟ

ନେଇଥାଣି । ସେହି ଅବସ୍ଥାରେ ଥାଇ ମୋର ତଥାକଥିତ ଅନ୍ଧକୂପ ହତ୍ୟା କଥା ମନରେ ଜାଗ୍ରତ ହେଲା । ପ୍ରାୟ ୧୬ ଘଣ୍ଟା କାଳ ନ ଖାଇ ନ ପିଇ ପରିଶ୍ରା ଝାଡ଼ା ଚାକି ମୋତେ ସେହି ଅବସ୍ଥାରେ ସେଠାରେ ପଡ଼ି ରହିବାକୁ ପଡ଼ିଲା ।

ସମସ୍ତିପୁର ଷ୍ଟେସନରେ ମୁଁ କୌଣସି ମତେ ଓହ୍ଲାଇ ଗୋଡ଼ ହାତ ସିଧା କରି ବ୍ୟାଗ ଖଣ୍ଡିକ ଧରି ଟିକିଏ ଆଗେଇ ଯାଇ ମୋତେ କାର ଯୋଗେ ନେବାକୁ ସେ କଲେଜର କେହି ଆସିପାରି ଥାଆନ୍ତି ବୋଲି ଅନ୍ୱେଷଣ କଲି । ସେମାନେ ପୂର୍ବ ଗାଡ଼ିକୁ ଆସି ଖାଲି କାର ଧରି ଫେରି ଯାଇଥିଲେ ।

ମୁଁ ବାଧ ହୋଇ ଛୋଟ-ଗଜ ଲାଇନରେ ସମସ୍ତିପୁରଠାରୁ ଦରଭଙ୍ଗା ଯାଉଥିବା ଗାଡ଼ିରେ ଯିବା ପାଇଁ ଫାଷ୍ଟକ୍ଲାସ ଟିକେଟଟିଏ କଲି । ମୁଁ ଗାଡ଼ି ଭିତରେ ବସିବାର କିଛି ସମୟପରେ ଷ୍ଟେସନରେ ଭିଡ଼ ବଢ଼ିଲା । ଲୋକେ ସବୁଡ଼ବା ପୂର୍ଣ୍ଣ କରିସାରି ଟ୍ରେନର ଛାତ ଉପରକୁ ଉଠି ସେଠାରେ ଆସନ ଜମାଇଲେ । ମୋ ଡ଼ବାରେ ୪ଜଣଙ୍କ ପାଇଁ ସ୍ଥାନଥିଲେ ମଧ୍ୟ ପ୍ରାୟ ଦଶ ଜଣ ଯାତ୍ରୀ ଆସି ସେଥିରେ ବସିଗଲେ । ସେମାନେ ଶିକ୍ଷିତ ବ୍ୟକ୍ତିପରି ଜଣା ଯାଉଥିଲେ । ମୁଁ ବୁଝାବୁଝି କରି ଜାଣିଲି ଯେ ସେମାନଙ୍କ ଭିତରେ ଅଧ୍ୟାପକ ଓ ଓକିଲ ପ୍ରଭୃତି ରହିଥିଲେ । ମୁଁ ସେମାନଙ୍କୁ ପଚାରିଲି, ''ମହାଶୟ ଗଣ ! ଏ ଡ଼ବାରେ ତ ମୋଟେ ୪ ଜଣଙ୍କ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ଅଛି । ଏତେ ଲୋକଙ୍କୁ କିପରି ଟିକଟ ମିଳିଲା ?'' ସେମାନଙ୍କ ଭିତରୁ ଜଣେ ମୋତେ ପଚାରିଲା ଆପଣ କ'ଣ ଟିକେଟ କରି ଏ ଡ଼ବାକୁ ଆସିଛନ୍ତି ? ମୁଁ କହିଲି ହଁ, ମୁଁ ଟିକେଟ ଓ ରିଜରଭେସନ ସବୁ କରିଛି । ମୋ କଥା ଶୁଣି ସେମାନେ ଠୋ ଠୋ କରି ହସି ଉଠିଲେ । ଜଣେ ମୋତେ ଚାହିଁ କହିଲା, ଆପଣ ବାହାରର ଜଣେ ଅନଭ୍ୟସ୍ତ ଲୋକ କିମ୍ୱା ଜଣେ ବୋକା ଲୋକ । ଏ ଗାଡ଼ି ବ୍ରିଟିଶ ସରକାରଙ୍କର ନୁହେଁ । ଏ ଗାଡ଼ି ଆମ୍ଭମାନଙ୍କ ପରି ଜନତାଙ୍କର । ଏହି ସମସ୍ତିପୁରର ନେତାମାନେ ଜଣକ ପରେ ଜଣେ ରେଲୱେ କେନ୍ଦ୍ରମନ୍ତ୍ରୀ ହୋଇଆସୁଛନ୍ତି । ତେଣୁ ଗାଡ଼ିଚଢ଼ାରେ ଟିକେଟ ଆମ୍ଭମାନଙ୍କୁ ମାଗନ୍ତି ନାହିଁ । କେବେ କେବେ ବକ୍‌ସିସ୍ ପାଇ ଖୁସିହୋଇ ଚାଲିଯାଆନ୍ତି ।

ଏପରି କଥୋପକଥନ ବେଳେ କେତେଜଣ ସେ ଡ଼ବାରୁ ଆସବାବପତ୍ର ଯୋଗାଡ଼ରେ ଲିପ୍ତ ଥିଲେ । ଜଣେ ବ୍ଲେଡ଼ରେ ସିଟ୍‌ର ନୂଆ ରେକ୍‌ସିନଟି କାଟି ସେଥିରେ ବ୍ୟାଗ୍‌ଟିଏ ବନାଇବେ କହି ହାତରେ ଧରିଲେ । ଅନ୍ୟ ଜଣେ ବାଥ୍‌ରୁମରୁ ପାଣି କଳ, ବଲ୍‌ବ ସବୁ ସଂଗ୍ରହ କରି ସାରିଥିଲେ । ଗାଡ଼ିଟି ଧିମେଇ ଧିମେଇ ଦରଭଙ୍ଗା ଷ୍ଟେସନରେ ପହଞ୍ଚିଲା । ମୁଁ ଷ୍ଟେସନରୁ ପ୍ରିନସ୍‌ପାଲଙ୍କୁ ଫୋନ କରିବାରେ ସେ ତାଙ୍କ ଗାଡ଼ି ନେଇ ଆସି ମୋତେ ସାଥୀରେ ଘେନିଗଲେ । ମୁଁ ତାଙ୍କଠାରୁ ଶୁଣିଲି ଦିନକ ପୂର୍ବରୁ ସମସ୍ତିପୁର ଷ୍ଟେସନରେ

କେନ୍ଦ୍ରମନ୍ତ୍ରୀ (ସମସ୍ତିପୁରବାସୀ) ଲଳିତ ମୋହନ ମିଶ୍ର ମୁଜାଫରପୁର ଲାଇନ ଉଦଘାଟନ କଲାବେଳେ ବୋମାଫୁଟି ପ୍ରାଣ ହରାଇଛନ୍ତି ।

ବିହାରର ଦରଭଙ୍ଗା ଅଞ୍ଚଳରେ କେବଳ ରେଲୱେ ଅରାଜକତା ନ ଥିଲା, ଅନ୍ୟ ସ୍ଥାନମାନଙ୍କୁ ମଧ ତାହା ବ୍ୟାପିଥିଲା । ଥରେ ପାଟନାରୁ କଲିକତା ଆସିବା ପାଇଁ ପାଟନାରୁ କାଲକାମେଲରେ ଯୋଡ଼ା ହେବା ପାଇଁ ଥିବା ସ୍ୱତନ୍ତ୍ର ବଗିଟିରେ ରିଜର୍ଭ କରି ବସିଲି । ସେ ବଗିଟିରେ ୨/୩ଟି ଫାଷ୍ଟକ୍ଲାସ ଡ଼ବା ରହିଥାଏ । ଲୋକ ଭିଡ଼ ଆଦୌ ନ ଥାଏ । ମୁଁ ଏକୁଟିଆ ମୋ ଫାଷ୍ଟକ୍ଲାସ ଡ଼ବାରେ ବସିଥିବାବେଳେ ଅନ୍ୟ ଡ଼ବାରେ ଆଉ ଜଣେ ମାତ୍ର ଯାତ୍ରୀ ରହିଥିଲେ । ସେ ଜଣେ ଅଫିସର ଶ୍ରେଣୀୟ ଲୋକ । ସେ ମୋତେ ପଚାରିଲେ, 'ଆପଣ କ'ଣ ହାବଡ଼ା ଯିବେ ? ମୁଁ ହଁ କରିବାରୁ ସେ କହିଲେ- ମୁଁ ମଧ ଜଣେ ହାବଡ଼ା ଯାତ୍ରୀ । ମୋତେ ସେ ଡ଼ବାରେ ଏକୁଟିଆ ଲାଗୁଛି । ଆପଣଙ୍କର ଯଦି ଆପତ୍ତି ନଥାଏ, ତେବେ ଆମେ ଗୋଟିଏ ଡ଼ବାରେ ଯିବାର ବନ୍ଦୋବସ୍ତ କରିବା ପାଇଁ କଣ୍ଡକ୍ଟରଙ୍କୁ କହିବି । ମୁଁ ତାଙ୍କ ପ୍ରସ୍ତାବରେ ରାଜି ହେବା ପରେ ସେ କଣ୍ଡକ୍ଟର ସହିତ ଆସି ମୋ ଡ଼ବାରେ ବସିଲେ । ଭଦ୍ରଲୋକ ପରୀକ୍ଷା କରି ଦେଖିଲେ ଯେ ଆମ କୋଠରୀର ଦ୍ୱାରଟି ଆମେ ଭିତରୁ ବନ୍ଦକଲେ ମଧ ସହଜରେ ଖୋଲିଯାଉଛି । ସେ କଣ୍ଡକ୍ଟରଙ୍କୁ ସେ କଥା କହିବାରେ କଣ୍ଡକ୍ଟର କହିଲେ କିଛି ଭୟ ନାହିଁ । ମୁଁ ପାଖ ସେକେଣ୍ଡ କ୍ଲାସ ଡ଼ବାରେ ରହିବି । ଆପଣତ ଏ ଡ଼ବାରେ ମୋଟେ ଦୁଇ ଜଣ ଯାତ୍ରୀ । ଆପଣ ସମସ୍ତ ଡ଼ବାର ଚାରୋଟିଯାକ ଦୁଆର ବନ୍ଦ କରି ଦିଅନ୍ତୁ । ଅନ୍ୟ କେଉଁ ଷ୍ଟେସନରେ ଯଦି ଆଉ କେହି ଯାତ୍ରୀ ଆସନ୍ତି, ତେବେ ମୁଁ ଆସି ଡ଼ାକିବି । ଆପଣ ଡ଼ବା ଦୁଆର ଖୋଲିବେ ।

ମେଲ ଗାଡ଼ିଟା ଖୁବ୍ ଡ଼େରିରେ ଆସିଲା । ଆମେ ମଶା ଅଡ଼େଇ ଅଡ଼େଇ ଢୁଳେଇ ପଡ଼ିଥିଲୁ । ଆମ ବଗି ଯାଇ କାଲକା ମେଲରେ ରାତି ଘ ୧/୩୦/୨ଟା ବେଳେ ଲାଗିଲା । ହଠାତ୍ ପାଇଖାନା ଆଡୁ ଗୋଟାଏ ଖଡ୍ ଖଡ୍ ଶବ୍ଦ ଶୁଭିଲା । ମୋ ନିଦଟା ଚାଉଁକରି ଭାଙ୍ଗିଗଲା । ମୁଁ ଆମ ରୁମ୍ ଦୁଆର ଖୋଲି ପାଇଖାନା ଆଡ଼କୁ ଗଲି । ଗାଡ଼ିର ଯେଉଁ ଦୁଆର ସବୁ ଆମେ ଭିତରୁ ବନ୍ଦ କରିଥିଲୁ ସେ ସବୁ ଠିଆ ମେଲା ହୋଇ ରହିଥିବାର ଦେଖିଲି । ଅନ୍ୟ କିଏ କେଉଁଠି ଦେଖାଗଲେ ନାହିଁ । ଗୋଟାଏ ପାଇଖାନା ଦୁଆର ମେଲା ହୋଇ ବଡ଼ କଳା ତିଣ ସୁଟକେଶ୍ ସେଠାରେ ଥୁଆ ହୋଇଥିବାର ଦେଖାଗଲା । ସେସବୁ ଭୌତିକ କାର୍ଯ୍ୟ ବିଚାରି ମୁଁ ପ୍ରଥମେ ଟିକିଏ ଡରିଗଲି । ଗାଡ଼ିଟା ମଧ ଗୋଟିଏ ଷ୍ଟେସନରେ ଖୁବ୍ ଅଳ୍ପ ସମୟ ପାଇଁ ଠିଆହୋଇଗଲା । ମୁଁ ମୋର କୋଠରୀକୁ ଦଉଡ଼ିଯାଇ ସାଥୀ ଯାତ୍ରୀଙ୍କୁ ଉଠାଇ ସଙ୍ଗରେ ପାଇଖାନା ନିକଟକୁ ଆଗେଇଲି । ସେ ସେହି ଟ୍ରଙ୍କଟା ତାଙ୍କ ଟ୍ରଙ୍କ ବୋଲି କହି ଭୋ କରି କାନ୍ଦି ଉଠିଲେ । ଆମେ ଟ୍ରଙ୍କ୍‌ଟା

ଧରାଧରି କରି ଆମ କୋଠରୀକୁ ଆଣିଲୁ । ତାହାର ତାଲା ଭାଙ୍ଗିଥିଲା । ତାହା ଭିତରେ ପ୍ରସ୍ତ ପ୍ରସ୍ତ ଲୁଗା ସନ୍ଧିରେ ଲଫାପାରେ ଅଲଗା କରି ଟଙ୍କା ରଖିଥିଲେ । ସେ ଦେଖିଲେ ଆଉ ଗୋଟିଏ ହେଲେ ଟଙ୍କା ଲଫାପା ନାହିଁ । ସେ ନିରାଶ ହୋଇ ନିଜ ସିଟ୍ ପାଖରେ ରଖିଥିବା ବ୍ୟାଗ୍‌ଟି ଦରାଣ୍ଡିଲେ । ସେଥିରୁ ଘଣ୍ଟା, କଲମ ଓ ମନିବ୍ୟାଗ ଚାଲିଯାଇଛି; କିନ୍ତୁ ତିନୋଟିମାତ୍ର ଟଙ୍କା ଓ ଟିକେଟଟା ପଡ଼ି ରହିଛି । ମୁଁ ତାଙ୍କୁ ଧୈର୍ଯ୍ୟ ଧରିବାକୁ କହି ଭଲ କରି ଟ୍ରଙ୍କଟା ଖୋଜିବାକୁ କହିଲି । ସେ ଭାବି ଭାବି କହିଲେ ମୁଁ କଲିକତାକୁ ଟ୍ରେନିଂ ପାଇଁ ଯାଉଥିବାରୁ ଭିନ୍ନ ଖର୍ଚ୍ଚ ପାଇଁ ଭିନ୍ନ ଲଫାପାରେ ଟଙ୍କା ରଖିଥିଲି । ତା ପରେ ଚମକି ପଡ଼ିଲା ପରି ସେ କହିଲେ ମୁଁ ଠିକ୍ ବାହାରିଲା ବେଳକୁ ମୋ ସ୍ତ୍ରୀ ତାଙ୍କ ପାଇଁ କଲିକତାରୁ ଗୋଟାଏ ଲୁଗା ଆଣିବା ପାଇଁ ତଉଲିଆରେ ଗୁଡ଼ାଇ ଟ୍ରଙ୍କ ଭିତରେ ଗେଞ୍ଜିଦେଇ ଯାଇଥିଲେ । ଆମେ ଦୁହେଁ ପୁଣି ଟ୍ରଙ୍କ ଦେଖିବାରେ ଗୋଟାଏ ମୋଚାମୋଚି ତଉଲିଆ ଭିତରୁ ସେ ଟଙ୍କାତକ ମିଳିଲା ।

ସେ ପର୍ଯ୍ୟନ୍ତ ମୋ ଜିନିଷପତ୍ର ପ୍ରତି ମୁଁ ନଜର ଦେଇନଥିଲି । ମୁଁ ପ୍ୟାଣ୍ଟ ଭିତର ପକେଟରେ ମନିବ୍ୟାଗ୍‌ଟି ରଖି ପେଣ୍ଟ ପିନ୍ଧି ଶୋଇଥିଲି । ମୋ ସୁଟକେଶରେ ପୁରୁଣା ମନିବ୍ୟାଗ୍‌ଟାରେ ମୋର ପୁରୁଣା ଟିକଟ ଓ ଗୋଟିକିଆ ନୂଆ ଟଙ୍କା ପଚାଶଟା ପଡ଼ିଥିଲା । ମୁଁ ସୁଟକେଶ୍‌ଟିକୁ ସିଟ୍ ଉପରେ ନ ରଖି ବେଞ୍ଚ୍ ତଳେ ରଖି ଦେଇଥିଲି । ମୁଁ ଦେଖିଲି ସୁଟକେଶ୍‌ଟା ଟୋଲେଇଲା ଭଳି ମେଲାହୋଇଛି । ଚାବି ଭଙ୍ଗାଯାଇଛି । ମୋ ମନିବ୍ୟାଗ୍ ନାହିଁ, ପୁରୁଣା ଟିକଟଟା ପଡ଼ିଛି ଓ ନାଇଲନ ପେଣ୍ଟଟା କେତେ ଯାଗାରେ ସିଗାରେଟ ଝୁଲପଡ଼ି ପୋଡ଼ି ଯାଇଛି । ସାଥୀ ପୋଲିସରେ ଖବର ଦେବାକଥା ଉଠାଇବାରୁ ମୁଁ ମନାକଲି । ଟଙ୍କା ଗଲା, ପୁଣି ସେହି ଷ୍ଟେସନ ନିକଟ କଚେରୀକୁ ଥର ଥର ହୋଇ ଟଣା ହୋଇ ଆସିବା ବାଧିବ ବୋଲି ମୁଁ କହିଲି ।

ଏହି ସମୟରେ ଷ୍ଟେସନରୁ ୨/୩ଟା ପୋଲିସ ଜଗୁଆଳୀ ଆମ ଡବାରେ ଉଠି କହିଲେ ଆମେ ୧୫ ଘଣ୍ଟା ତଳେ ଆସିଥିଲୁ, ଆପଣମାନେ କାହିଁକି ଦୁଆରସବୁ ଖୋଲି କରି ଶୋଇଥିଲେ । ଆପଣ ନିଘୋଡ଼ ନିଦରେ ଶୋଇଥିବା ଯୋଗୁଁ ଆମେ ନଉଠାଇ ଗଲୁ । ମୁଁ କହିଲି ଭଲକଲେ, ଭାଗ କେତେ ପଡ଼ିଲା ? ସେମାନେ ନ ଜାଣିଲା ହୋଇ ଚାଲିଗଲେ । ଆମକୁ ନିଘୋଡ଼ ନିଦରେ ଶୁଆଇବା ପାଇଁ କିଛି ଧୂଆଁ ନିଶା ସେ ଘରେ ଦିଆଯାଇଥିବା ସମ୍ଭବ । ତା' ନ ହେଲେ ସିଗାରେଟ ଖିଆ ଚୋର ନିର୍ଦ୍ଵନ୍ଦ୍ୱରେ ମୋ ବାକ୍ସ ଖୋଲି ପ୍ୟାଣ୍ଟରେ ସିଗାରେଟ ଝୁଲ ପକାଇ ପାରିନଥା'ନ୍ତା । କଣ୍ଡକ୍ଟର, ଜଗୁଆଳି ସମସ୍ତଙ୍କ ସଲାରେ ଅନ୍ୟ ଏକ କୋଠରୀରେ ହୁଏତ ଗୋଟିଏ ପିଲାକୁ ଲୁଚାଇ କରି ରଖା ଯାଇଥିଲା । ସେ ସେଥିରୁ ଦୁଆର ଫିଟାଇ ଚୋରକୁ ଭିତରକୁ ଆଣିଛି ।

ଏପରି ଯୋଜନାବଦ୍ଧ ଚୋରି ସବୁ ନିତ୍ୟ ନିୟମିତ, ଘଟଣାରେ ପରିଣତ ହେବାକୁ ବସିଲାଣି । ସାଙ୍ଗ ହୋଇ ଗାଡ଼ିରେ ବସି ଚା’ ସଙ୍ଗେ ବିଷ ଦେବା, ବିଷଲଡୁ ଖୁଆଇ ଲୁଟି କରିନେବା ସବୁଦିନ ଖବର କାଗଜରେ ବାହାରୁଛି ।

ଥରେ ତରତରରେ ମୁଁ ଦୂରସ୍ଥାନକୁ ଯିବାକୁ ବ୍ରହ୍ମପୁରରୁ ବାହାରି ପଡ଼ିଲି । ମୋର ଡ଼ିପାର୍ଟମେଣ୍ଟର ଜଣେ ଆଗରୁ ଯାଇ ସେକେଣ୍ଡକ୍ଲାସ ଟିକଟଟାଏ କରି ଆଣିଥିଲା ଓ ସେ ଗାଡ଼ିରେ ଯିବାକୁ ଥିବା କଣ୍ଡକ୍ଟରଙ୍କ ସଙ୍ଗେ ରିଜରଭେସନ ପାଇଁ କଥାକରି ଆସିଥିଲା । ମୁଁ ଷ୍ଟେସନରେ ପହଁଚି ଗାଡ଼ିରେ ଉଠି ରିଜରଭେସନ ପାଇଁ ମୋ ଟିକଟଟି କଣ୍ଡକ୍ଟରଙ୍କୁ ଦେଇଥିଲି । ସେ ଟିକଟ କାଗଜ ଫେରାଇଲା ବେଳକୁ ଗାଡ଼ି ଛାଡ଼ିଦେଲା । ତେଣୁ ମୁଁ ମନିବ୍ୟାଗଟି ପ୍ୟାଣ୍ଟ ପକେଟରେ ରଖି ହାତ ଟେକି ସଙ୍ଗୀମାନଙ୍କୁ ଟା’ ଟା କରିସାରି ଟିକଟ ରଖିବାକୁ ମନିବ୍ୟାଗ ବାହାର କରିବା ପାଇଁ ପକେଟରେ ହାତ ପୂରାଇଲା ବେଳକୁ ଆଉ ମନିବ୍ୟାଗଟି ନ ଥିଲା । ସେଥିରେ ଟିକଟ ରଖି ସାରିଥଲେ ମୋ ଦଫାରଫା ହୋଇ ଯାଇଥାଆନ୍ତା । ମୋର ଅନ୍ୟ ମନିବ୍ୟାଗମାନଙ୍କରେ ଟଙ୍କା ଥିବାରୁ ମୋର ବିଶେଷ ଅସୁବିଧା ହେଲାନାହିଁ ।

ସେହି ସେକେଣ୍ଡ କ୍ଲାସ ଉପର ଥାକରେ ଚଢ଼ି ମୁଁ ଶୋଇଲି । ତଳ ଦୁଇଟି ଥାକର ମଝିରେ ଜଣେ ଭଦ୍ରଲୋକ ଶୋଇଲେ ଓ ତଳ ଥାକରେ ତାଙ୍କ ସ୍ତ୍ରୀ କଅଁଳା ପିଲାଟିକୁ ଧରି ଶୋଇଲେ । ଗାଡ଼ି ଚାଲିଲା । ଡବାରେ ସବୁ ଯାତ୍ରୀ ଶୋଇ ପଡ଼ିଲେ । ସେ ସ୍ତ୍ରୀ ଲୋକର ଚିତ୍କାରରେ ମୋ ନିଦ ଭାଙ୍ଗିଲା । ତାଙ୍କ ବେକରୁ ସୁନା ହାରଟା କିଏ ଛିଡ଼ି ନେଇଗଲା ବୋଲି ସମସ୍ତେ ଚୋର ଚୋର ଧର ଧର ପାଟିକଲେ । ସେ ପାଟିରୁ କାହାର ଚୋରି ଯାଇଛି ଓ କିଏ ଚୋର ଜାଣିବାର ଉପାୟ ନ ଥିଲା । ସାଇଡ ସିଟ୍ ଝରକା ନିକଟରେ ବସିଥିବା ସେ ଡବାର କଣ୍ଡକ୍ଟର କହିଲେ ଗାଡ଼ିରେତ ଆସିଛ ଏତେ ଅଳଙ୍କାର ପିନ୍ଧି କାହିଁକି ଆସିଛ ? ଚୋରି ମାଲ କ’ଣ ଆଉ ଏ ଡବାରେ ଥିବ, ତାହା କେତେ ହାତ ହୋଇ ଡବା ପର ଡବା ଡେଇଁ ଅନେକ ବାଟ ଚାଲିଯିବଣି । ମୋର ମନିବ୍ୟାଗ ଚୋରିଗଲା ବେଳେ ସେ କଣ୍ଡକ୍ଟର ମୋର ଅସାବଧାନତା ବିଷୟରେ ଅସ୍ପଷ୍ଟ ଭାବରେ କିଛି ଉପଦେଶ ମଧ ଦେଇଥିଲେ । ଚୋରି ସହିତ ହୁଏତ ସେ ଓତଃପ୍ରୋତ ଜଡ଼ିତ ଥିଲେ ।

ରେଳ ଯାତ୍ରାରେ ସମୟ ସମୟରେ ଚୋରି ଅପେକ୍ଷା ଚୋରି ହେବା ସମ୍ଭାବନାର କୋକୁଆ ଭୟ ବେଶୀ ହଡସଡ କରେ । ଆଉ ଥରେ ଦରଭଙ୍ଗାରୁ ପରୀକ୍ଷା ସାରି ଦିଲ୍ଲୀ ପବ୍ଲିକ ୟୁନିଅନ ସର୍ଭିସ କାମରେ ମୋର ଦିଲ୍ଲୀ ଯିବାର ଥିଲା । ମୁଜାଫରପୁରରୁ ଆସିଥିବା ମୋର ସହ-ପରୀକ୍ଷକ ଆସାମ ମେଲ ଧରିବା ପାଇଁ ତାଙ୍କ ଗାଡ଼ିରେ ନେଇ ମୁଜାଫରପୁର ରେଳ ଷ୍ଟେସନରେ ପହଁଚାଇଦେଲେ । ମୋର ରିଜରଭେସନ ଥିବା

ଫାଷ୍ଟକ୍ଲାସ ଡବାଟି ସେହି ଗାଡ଼ିର ଶେଷ ମୁଣ୍ଡରେ ଲାଗିଥିଲା । ସେଥିରେ ଦୁଇଜଣ ମାତ୍ର ବସିବାର ବ୍ୟବସ୍ଥା ଥିଲେ ମଧ ମୁଁ ଏକମାତ୍ର ଯାତ୍ରୀ ଥିଲି । ମୋତେ ସେ ଗାଡ଼ିରେ ଛାଡ଼ିଲାବେଳେ ମୋର ସହ-ପରୀକ୍ଷକ ବନ୍ଧୁ କହିଲେ, ଏ ଡବାରେ ଭୀଷଣ ଚୋରି ହୁଏ ଏବଂ ସେ ଜଣେ ଭୁକ୍ତଭୋଗୀ । ସେ ଡ଼ବାଟି ଷ୍ଟେସନର ବହୁ ଦୂରରେ ଲାଗୁଥିବାରୁ ଜିନିଷପତ୍ର ଛାଡ଼ି ସେ କୋଠରୀ ବାହାରକୁ ନ ଯାଇ ସାବଧାନ ରହିବା ପାଇଁ ଚେତାଇ ଦେଇ ଚାଲିଗଲେ ।

ଖରାବେଳେ ଦରଭଙ୍ଗାରୁ ଖାଇ ବାହାରିଥିଲି । ସନ୍ଧ୍ୟାରେ କିଛି ନ ଖାଇ ମୁଜାଫରପୁରରେ ଗାଡ଼ି ଧରିଥିଲି । ଗାଡ଼ି ଚାଲିଲା । ରାତି ଯାଇ ସକାଳ ହେଲା । କୌଣସି ଫେରିବାଲା ବା ଚା'ବାଲା କୌଣସି ଷ୍ଟେସନରେ ଦେଖାଗଲେ ନାହିଁ । କେବଳ ଷ୍ଟେସନ ଆଡୁ ଆସୁଥିବା ଡାକ ଶବ୍ଦ ଶୁଣି ମୋ କ୍ଷୁଧା ବଢ଼ିବାକୁ ଲାଗିଲା । ଗାଡ଼ି ଚାଲିଥାଏ । କେହି ଲୋକ ସେ ପଟକୁ ଆସୁନଥା'ନ୍ତି କିମ୍ବା ସେ ଡବାରୁ ବାହାରି ଯିବାର ଉପାୟ ନ ଥାଏ । ବେଳ ୩ଟା ବେଳକୁ ଗୋଟିଏ ଷ୍ଟେସନରେ ଜଣେ ରେଲୱେ ଉଚ୍ଚ କର୍ମଚାରୀ ମୋ ଡବାରେ ପଶି ଖାଲିଥିବା ସିଟ୍‌ଟିରେ ବସିଲେ । ତାଙ୍କ ସଙ୍ଗେ ରେଲୱେ ପଗଡ଼ି ପିନ୍ଧା ଚପରାଶିଟିଏ ମଧ ଆସିଥିଲା ।

ପୂର୍ବ ଦିନ ଠାରୁ ମୁଁ କିଛି ଖାଇବାକୁ ପାଇନାହିଁ ଜାଣି ସେ ଭଦ୍ରଲୋକ ତାଙ୍କ ଚପରାଶିକୁ ଶୀଘ୍ର ଗୋଟିଏ ମିଲ୍ ଘେନିଆସିବାକୁ ପଠାଇଲେ । ଗାଡ଼ି ଛାଡ଼ିଲାବେଳକୁ ସେ ଖାଇବା ଧରି ଆସିଲା । କାଣ୍ଟିନର ସବୁ ଖାଦ୍ୟ ପ୍ରାୟ ସରିଥିଲା । ସେ ଶୁଖିଲା ଭାତ ପୁଞ୍ଜିଏ ଓ ସ୍ୱଳ୍ପ ଡାଲି ତରକାରି ଆଣିଦେଲା । ମୁଁ ସେଥିରେ କ୍ଷୁଧା ନିବାରଣ କଲି । ସେତେବେଳେ ସେହି ଶୁଖିଲା ଥଣ୍ଡା ଖାଦ୍ୟ ମୋତେ ଯେତେ ସୁଆଦ ଲାଗିଲା, ଅନ୍ୟ ସମୟରେ ଅତି ସୁସ୍ୱାଦୁ ଖାଦ୍ୟ ମଧ ସେତେ ଉପଭୋଗ୍ୟ ହୁଅନ୍ତା ନାହିଁ ।

ଯେତେ ନୂଆ କେନ୍ଦ୍ର ରେଳମନ୍ତ୍ରୀ ଆସନ୍ତି, ଗାଡ଼ି ଠିକ ସମୟରେ ଚଳାଚଳ କରିବା ପାଇଁ ଘୋଷଣା କରନ୍ତି । କିନ୍ତୁ ପରେ ସେ ଯଥା ପୂର୍ବଂ ତଥା ପରଂ ହୋଇଯାଏ । ମୋର ବ୍ରହ୍ମପୁରରୁ କଲିକତା ଯାଇ ସେଠାରୁ ପ୍ଲେନ ଧରି ଆସାମର ଦିବ୍ରୁଗଡ଼ ଯିବାକୁ ଥାଏ । ମୁଁ ମାନ୍ଦ୍ରାଜ ମେଲ୍‌ରେ ଚଢ଼ିଲି । ଗାଡ଼ି ଭୋର ବେଳକୁ କଲିକତାରେ ପହଁଚିବା କଥା । କିନ୍ତୁ ମାଠେଇ ମାଠେଇ ସକାଳ ୭ଟା/୮ଟା ବେଳକୁ କଲିକତାରୁ ଅଳ୍ପ ଦୂର ସାନ୍ତରଗାଛି ଷ୍ଟେସନରେ ଆସି ଠିଆ ହୋଇଗଲା । ଲୋକାଲ ଟ୍ରେନମାନେ ତାକୁ ବାଟ ଛାଡ଼ିଲେ ନାହିଁ । ଆମ ଗାଡ଼ିର କେତେକ ଲୋକ ଆମ ଗାଡ଼ିରୁ ଓହ୍ଲାଇ ଲୋକାଲ ଟ୍ରେନ ଧରି ହାବଡ଼ା ଗଲେ । ମୁଁ କିଛି ସମୟରେ ମେଲ ଗାଡ଼ିରେ ପଡ଼ିରହିବା ପରେ ଗାଡ଼ି ଚାଲିବାର ସମ୍ଭାବନା ନଥିବାରୁ ଓ ମୋର ଏରୋଡ୍ରମରେ ରିପୋର୍ଟିଙ୍ଗ ଟାଇମ ନିକଟେଇ ଆସିଥିବାରୁ

ମୁଁ ଗୋଟିଏ ଲୋକାଲ ଟ୍ରେନରେ ଆସି ହାଉଡ଼ାରେ ପହଞ୍ଚି ସେଠାର ଗୋଟିଏ ଟାକ୍‌ସିକୁ ପ୍ରଲୋଭନ ଦେଖାଇ ମୋତେ ଶୀଘ୍ର ନେଇ ଦମ୍‌ଦମ୍ ଏରୋଡ୍ରମ୍‌ରେ ପହଞ୍ଚିବାକୁ ଅନୁରୋଧ କଲି । ପ୍ଲେନ ଛାଡ଼ିବା ପୂର୍ବରୁ ସେ ମୋତେ ନେଇ ପହଞ୍ଚାଇ ଦେଲା । ମୁଁ ଖୁସିରେ ତାକୁ ବକସିସ୍ ଦେଇ ବିଦା କରିଦେଲି । କାଉଣ୍ଟରକୁ ଯାଇ ବୁଝିଲି ସେ ରିପୋର୍ଟିଙ୍ଗ ଟାଇମ ଭିତରେ ମୁଁ ନ ପହଞ୍ଚିବାରୁ ମୋ ସିଟ୍ ଉଏଟିଙ୍ଗ ଲିଷ୍ଟରେ ଥିବା ଅନ୍ୟ ଜଣେ ଯାତ୍ରୀଙ୍କୁ ଦିଆସରିଛି । ବର୍ତ୍ତମାନ ମୋତେ କଲିକତା ସହରକୁ ଯାଇ ଏସ୍‌ପ୍ଲାନେଡ୍ ଅଫିସରେ ଟିକଟ ଫେରାଇ ସେଥିପାଇଁ କିଛି ପ୍ରାପ୍ୟ ଆଣିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ମୁଁ ସେଠାରେ ଠିଆ ହୋଇ ପ୍ଲେନ ଉପରକୁ ଉଠି ଉଡ଼ିଯିବାର ଦେଖିଲି । କାଉଣ୍ଟର କଥାରେ ନିରୁତ୍ସାହ ହୋଇ ମୁଁ କିଛି କ୍ଷଣ ଠିଆ ହେବାପରେ ସେଠାରେ ପ୍ରଧାନ ଅଫିସରଙ୍କ ଦୁଆର ମୋ ଆଖିରେ ପଡ଼ିଲା । ମୁଁ ବିନା ଅନୁମତିରେ ସେ ଅଫିସରେ ପଶିଯିବାରୁ ଅଫିସର ଟିକିଏ ଅପ୍ରତିଭ ହୋଇଗଲେ । ମୁଁ ସେ ଉଚ୍ଚ ଅଫିସରଙ୍କ ସାମନାରେ ଛୋଟକାଟିଆ ବକ୍ତୃତା ଦେଇ କହିଲି, ଆଜ୍ଞା ଟ୍ରେନ, ପ୍ଲେନ ସବୁତ ସରକାରଙ୍କ ଗାଡ଼ି । ସେ ସବୁଙ୍କ କାର୍ଯ୍ୟକଳାପରେ ଆମର କରିବାର କିଛି ନାହିଁ । ମୁଁ ମଧ୍ୟ ଜଣେ ସରକାରୀ କର୍ମଚାରୀ । ଡିବ୍ରୁଗଡ଼ରେ ପିଲାଙ୍କୁ ପରୀକ୍ଷା କରିବା ପାଇଁ ସରକାରଙ୍କ ନିର୍ଦ୍ଦେଶରେ ବାହାରିଛି । ସରକାରଙ୍କ ଉଦାର ନୀତି ଯୋଗୁଁ ଟ୍ରେନ ଚଳାଚଳ ବାଧାପ୍ରାପ୍ତ ହୋଇ ମୁଁ ଏରୋଡ୍ରମରେ ପହଞ୍ଚିବା ଡେରି ହେଲା । ମୋର ବିନା ଦୋଷରେ ସରକାର କର୍ମଚାରୀମାନେ ମୋତେ ନ ନେଇ ହୁଇସିଲ୍‌ମାରି ଚାଲିଗଲେ । ମୋ କଥା ଶୁଣି ସେ ଅଫିସର ଦୟା ପରବଶ ହୋଇ କହିଲେ- ହଉ ଏବେତ ଯିବା ସମ୍ଭବ ନୁହେଁ । ଆପଣ ଏ'ଠି କେଉଁଠି ବିଶ୍ରାମ କରନ୍ତୁ । କାଲି ସକାଳେ ପ୍ରଥମ ପ୍ଲେନରେ ଡିବ୍ରୁଗଡ଼ ଯିବାର ବନ୍ଦୋବସ୍ତ କରିଦେବି । ମୁଁ ତାଙ୍କ କଥାରେ ପ୍ରୀତ ହୋଇ କଲିକତାରେ ରାତିଟି କଟାଇ ସକାଳୁ ପ୍ଲେନ ଧରି ଡିବ୍ରୁଗଡ଼ ଅଭିମୁଖେ ଯାତ୍ରା କଲି ।

ସେତେବେଳକୁ ଆସାମରେ ବଡ଼ ଏରୋଡ୍ରମର ବ୍ୟବସ୍ଥା ନ ଥିଲା । ତେଣୁ ବଡ଼ ପ୍ଲେନ ସବୁ ଯାଉନଥିଲା । ଅଳ୍ପ ଯାତ୍ରୀବାହୀ ଫକର ଫ୍ରେଣ୍ଡସିପ ପ୍ଲେନ୍ ଗୁଡ଼ିକ ଆକାଶରେ ଅଳ୍ପ ଉଚ୍ଚରେ ଉଡ଼ି ଯାଉଥିଲା । ପ୍ଲେନଟି କେତେବେଳେ ମେଘତଳେ, କେତେବେଳେ ମେଘ ଭିତରେ ବା ମେଘର ଅଳ୍ପ ଉଚ୍ଚରେ ଉଡ଼ିଉଡ଼ି ଯାଉଥିଲା । ଝରକାବାଟେ ତଳକୁ ଚାହିଁବା ବଡ଼ ଉପଭୋଗ୍ୟ ଥିଲା । ବେଳେବେଳେ କଳାଧଳା ମେଘଗୁଡ଼ାକ ବାଘ, କଳା ଭାଲୁ, ଧଳା ଭାଲୁ ଓ ନାନା ଜୀବଜନ୍ତୁର ରୂପନେଇ ଆମ ଆଡ଼କୁ ମାଡ଼ି ଆସିଲା ପରି ଦିଶୁଥିଲା ।

ଖରାପଡ଼ିବା ବେଳେ ତଳକୁ ଚାହିଁଲେ ବିଲ ନଦୀ, ବନ, ପର୍ବତ, ସହର ସବୁ କଣ୍ଢେଇଖେଳ ଘର ପରି ଜଣାପଡୁଥିଲେ । ଟ୍ରେନ ଗୁଡ଼ାକ ସଂବାଳୁଆ ଓ ତେଲୁଣି ପୋକ ପରି ଚାଲୁଥିଲେ । ମୋଟର ଗାଡ଼ିଗୁଡ଼ାକ ଛୋଟ ଖେଳଣା ପରି ଦିଶୁଥିଲେ । ଗୁଆ ନଡ଼ିଆ ଗଛ ଗୁଡ଼ିକ ଛତା ପୋଡା ହେଲାପରି ଜଣାପଡୁଥିଲେ ।

୧୯୫୦ରେ ମୁଁ ଆମେରିକା ଯିବାବେଳେ କଲିକତାରୁ ସେପରି ଗୋଟିଏ ଘରୋଇ ପ୍ଲେନରେ ବମ୍ବେ ଯାଇ ସେଠାରୁ ଯାତ୍ରୀବାହୀ ପାଣିଜାହାଜ ଧରି ଆମେରିକା ଅଭିମୁଖେ ଯାତ୍ରା କରିଥିଲି । ସେତେବେଳେ ସେହି ପ୍ଲେନରୁ ବିଲବାଡ଼ି ଗୁଡ଼ିକ ଛୋଟଛୋଟ ଶାଗ କିଆରୀ ଭଳି ଦେଖାଯାଉଥିବାର ମନେପଡ଼ିଲା ।

ଏବେ ସରକାରୀ ପ୍ଲେନ ସର୍ଭିସ ଜାତୀୟ ଓ ଆର୍ନ୍ତଜାତୀୟ ପ୍ଲେନ ସର୍ଭିସ ଯୋଗୁଁ ବଡ଼ ବଡ଼ ଉଡ଼ାଜାହାଜରେ ବସି ଆକାଶ ବକ୍ଷରେ ହଜାର ହଜାର ମାଇଲ ଉପରେ ଉଡ଼ି ସେ ଦୃଶ୍ୟ ସବୁ ଆଉ ଦେଖି ହେଉନାହିଁ । ଛୋଟ ପ୍ଲେନ ଯେପରି ଏପଟସେପଟ ହୋଇ ଯାତ୍ରୀମାନଙ୍କୁ ହଲାହଲି କରିଦେଉଥିଲା ଆଉ ତା' ନାହିଁ ।

ଆନ୍ତର୍ଜାତିକ ପ୍ଲେନଟି ଏରୋଡ୍ରମର ଉପରତାଲା କୋଠରୀ ସହିତ ସଂଯୁକ୍ତ ହୋଇଯାଉଛି । ଆଉ ବାହାରକୁ ନ ଯାଇ ସିଧା ପ୍ଲେନ ଭିତରେ ପଶି ନିଜ ସିଟକୁ ଯାଇ ହେଉଛି । ପ୍ଲେନଟି ଶହ ଶହ ଲୋକଙ୍କୁ ଧରି ତୀର୍ଯ୍ୟକ୍ ଗତିରେ ଆକାଶ ବକ୍ଷକୁ ଚାଲିଯାଉଛି ଅତି ଉଚ୍ଚରେ ପହଞ୍ଚିବା ପରେ ପ୍ଲେନରେ ହଲଚଲ ନାହିଁ, ତାହା ସ୍ଥିର ଅଛି କି ଚାଲୁଛି ତାହା ଜାଣିହେଉନାହିଁ । କେବଳ ବେଳେବେଳେ ହାଇଜାକ କିମ୍ବା ବୋମା କଥା ମନେପଡ଼ି ଇଷ୍ଟଦେବୀଙ୍କୁ ସ୍ମରଣ କରିବାକୁ ପଡୁଛି ।

ଟ୍ରେନ୍ର ଯାତ୍ରା ମଧ୍ୟ ସେହିପରି ବିପଦସଂକୁଳ ହେବାର ସମ୍ଭାବନା ରହିଛି । ଥରେ ଉତ୍ତର ଭାରତରୁ ଫେରି ମୁଁ ହାବଡ଼ା ଷ୍ଟେସନରେ ପହଞ୍ଚିବା ପରେ ଶୁଣିଲି ବଙ୍ଗଳାରେ ଜୋରସୋର୍ରେ ନକ୍ସଲାଇଟ ଆନ୍ଦୋଳନ ଚାଲିଛି । ଦିନ ଦି'ପହରରେ କଲିକତାରେ ଲୁଟତରାଜ ଓ ନିରୀହ ଲୋକଙ୍କ ସଂହାର ଚାଲିଛି । ଖଡ଼ଗପୁର ପ୍ରଭୃତିରେ ଗଣ୍ଡଗୋଳ ହୋଇ ଓଡ଼ିଶା ଆଡ଼କୁ ଟ୍ରେନ ସବୁ ବନ୍ଦ ହୋଇଯାଇଛି । ଷ୍ଟେସନ ବାହାରକୁ ଯିବାରେ ମଧ୍ୟ ବିପଦ ରହିଛି । ହାବଡ଼ା ଷ୍ଟେସନରେ ୨୬ ଘଣ୍ଟା ବସିରହିବା ପରେ ଗୋଟିଏ ଟ୍ୟାକ୍ସିବାଲା ଆସି କହିଲା, ଆସନ୍ତୁ ମୁଁ ଆପଣଙ୍କୁ ବଙ୍ଗଳା ପାର କରାଇ ଦେଇ ଆସିବି । ମୁଁ ତାହା ସଙ୍ଗେ ବାହାରିବାକୁ ମନ କଲାବେଳକୁ ଅନ୍ୟ ଜଣେ ମୋ କାନ୍ଧରେ ହାତ ମାରିଲେ । ସେ ଭଦ୍ରଲୋକ ସେହି ଅପେକ୍ଷା ଗୃହରେ ମୋ ସଙ୍ଗେ ରହିଥିଲେ । ସେ ଜଣେ ମାନ୍ଦ୍ରାଜୀ ଅଫିସର । ବଡ଼ ମେଳାପି ଲୋକ, ତାଙ୍କ ସଙ୍ଗେ ଗପ ସପରେ ମୋ ସମୟ କଟୁଥିଲା ।

ସେ ମୋତେ ଡାକି ନେଇ କହିଲେ, ଆପଣଙ୍କ ପ୍ରାଣ ପ୍ରତି ଯଦି ଆପଣଙ୍କର ମମତା ଅଛି, ତେବେ ଏପରି କାର୍ଯ୍ୟ କରନ୍ତୁ ନାହିଁ । ମୁଁ ଶୁଣିଛି ଏ ଟାକ୍ସିବାଲାମାନେ ମଧ ନକ୍ସଲାଇଟ ବା ତାଙ୍କ ଲୋକ । ସେମାନେ ଯାତ୍ରୀମାନଙ୍କୁ ଡାକିନେଇ ଅପନ୍ତରା ସ୍ଥାନରେ ଛୁରୀମାରି ପକାଇ ଦେଇ ଜିନିଷପତ୍ର ଧରି ଚାଲିଯାଆନ୍ତି ।

ତାଙ୍କ କଥା ଶୁଣି ମୋ ଦେହ ଶୀତେଇ ଉଠିଲା । ମୁଁ ଅପେକ୍ଷାରତ ଡ୍ରାଇଭର ନିକଟକୁ ଯାଇ ତାକୁ ଏଣୁ ତେଣୁ କହି ଭଲରେ ଭଲରେ ବିଦାୟ କରିଦେଲି । ମୁଁ ୱେଟିଙ୍ଗ ରୁମ ବାଲକୋନି ଉପରକୁ ଯାଇ ଗଙ୍ଗା କୂଳ ଆଡ଼େ ଚାହିଁଲି । ଚାରିଆଡ଼ ନିସ୍ତବ୍‌ଧ । ମିଲିଟାରୀ ପୋଲିସ ପର୍ଯ୍ୟଟରା ମାରୁଛନ୍ତି । ପୂର୍ବରୁ ଛୁରୀମରା ଓ ମାରପିଟ୍ ଯୋଗୁଁ ଗୋଟେ ଗୋଟେ ସ୍ଥାନ ରକ୍ତିମଆଭା ଧାରଣ କରିଛି । ଦୂରରୁ କୋଳାହଳ ସ୍ୱର ଗଙ୍ଗା ପବନରେ ଭାସି ଆସୁଛି ।

ମୁଁ ଦୂରକୁ ଚାହିଁଲି । ଗଙ୍ଗା କୂଳରେ ଷ୍ଟେସନ ଆଡ଼କୁ ମୁହଁକରି କେତେଟା ବସ ଠିଆ ହୋଇ ରହିଛନ୍ତି । ସେଥିରୁ ଗୋଟାକର ସାମନାରେ ବଡ଼ ବଡ଼ ଅକ୍ଷରରେ 'ଭଦ୍ରଖ' ବୋଲି ଲେଖା ହୋଇଥିଲା । ତାକୁ ଦେଖିବା ସଙ୍ଗେ ସଙ୍ଗେ ମୁଁ ମୋ ବ୍ୟାଗ ବିସ୍ତରା ଧରି ସେଠାରୁ ବାହାରି ପଡ଼ିଲି । ଆପଣ କୁଆଡ଼େ ଯାଉଛନ୍ତି ବୋଲି ସେ ସହଯାତ୍ରୀ ପଚାରିଲେ । ମୁଁ ତାଙ୍କୁ କିଛି ନ କହି ଦୋତାଲା ୱେଟିଙ୍ଗ ରୁମରୁ ତଳକୁ ଓହ୍ଲାଇଲି ।

ବାହାରକୁ ବାହାରି ଚାରିଆଡ଼କୁ ଚାହିଁ ଚାହିଁ ଦଉଡ଼ିଲା ଭଳି ସେ ବସ୍ ନିକଟରେ ପହଞ୍ଚିଲି । କଣ୍ଡକ୍ଟର ମୋତେ ଦେଖି କହିଲା, ବାବୁ ବସ ଯିବାକୁ ବହୁତ ଡେରିଅଛି । ଆପଣ ୩, ୪ ଘଣ୍ଟା ପରେ ଆସନ୍ତୁ । ମୁଁ କହିଲି ଯେତେବେଳେ ଯାଉ ଭଦ୍ରଖ ଯିବ ତ ? ସେ ହଁ କରିବାରୁ କବାଟ ଫିଟାଇବାକୁ ମୁଁ ଅନୁରୋଧ କରି ନୋଟଟାଏ ତା ହାତରେ ଗେଞ୍ଜି ଦେବାପରେ ସେ ସୁନାପିଲା ପରି କବାଟଟା ଖୋଲିଦେଲା । ମୁଁ ମୋ ଜିନିଷ ଧରି ତା ଭିତରେ ବସିଗଲି । ଚାରିଆଡ଼େ ମିଲିଟାରୀ ପୋଲିସ ପର୍ଯ୍ୟଟରା ମାରୁଥିବାରୁ ବସ ଉପରେ କିମ୍ବା ମୋ ଉପରେ ଆକ୍ରମଣର ଭୟ ନ ଥିଲା । ଡେରିରେ ବସ୍‌ଟି ଛାଡ଼ି ରାତ୍ର ୧୧ଟା ବେଳକୁ ଭଦ୍ରଖରେ ପହଞ୍ଚିଲା । ସେଠାରୁ କଟକ ଆସୁଥିବା ବସଟିଏ ଧରି ମୁଁ କଟକ ଆସିଲି । ମୋର କୌଣସି ଖବର ନ ପାଇ ବ୍ରହ୍ମପୁରରେ ପିଲାଏ ଛଟପଟ ହେଉଥିବା କଥା ଭାବି ଆଉ କଟକରେ ନ ରହି ଭୋର୍ ବସ୍ ଧରି ବ୍ରହ୍ମପୁରରେ ପହଞ୍ଚି ଦୀର୍ଘ ନିଶ୍ୱାସଟାଏ ଛାଡ଼ିଲି ।

ଓଡ଼ିଶା ବାହାରକୁ ଯିବାକୁ ଆଉ ହାବଡ଼ା ବାଟେ ନ ଯାଇ କଟକରୁ ଯାଉଥିବା ଡାଇରେକ୍ଟ ଟ୍ରେନରେ ଯିବାପାଇଁ ମୁଁ ସ୍ଥିର କଲି । ମୋର 'ଇନ୍ଦୋର' ମେଡ଼ିକାଲ କଲେଜକୁ

ପରୀକ୍ଷକ ଭାବେ ଯିବାର ଥାଏ । ଉତ୍କଳ ଏକ୍ସପ୍ରେସ୍ ସପ୍ତାହରେ ଦି' ଥର ଯାତାୟତ କରେ । ମୋତେ ସେଥିରେ ଯାଇ କଟଣୀଠାରେ ସେଥିରୁ ଓହ୍ଲାଇ ଅନ୍ୟ ଗାଡ଼ି ଧରିବାର କଥା । ମୁଁ ଯେଉଁଦିନ ଯିବାର କଥା, ତା'ର ପୂର୍ବଦିନ ଉତ୍କଳ ଏକ୍ସପ୍ରେସ ବାହାରୁଥିବାରୁ ମୁଁ ବାଧହୋଇ ଦିନକ ପୂର୍ବରୁ ଗାଡ଼ି ଧରି ଜବଲପୁରର ମୋ ପ୍ରଫେସର ବନ୍ଧୁଙ୍କୁ ଚିଠି ଲେଖିଲି । ଜବଲପୁରରେ ଦିନେ ରହି ଇନ୍ଦୋର ଯାତ୍ରାକଲେ ଠିକ୍ ପରୀକ୍ଷା ପୂର୍ବରୁ ମୁଁ ଇନ୍ଦୋରରେ ପହଞ୍ଚି ପାରିବି ବୋଲି ଭାବିଥିଲି ।

ମୁଁ ଉତ୍କଳ ଏକ୍ସପ୍ରେସରେ ଯାତ୍ରା ଆରମ୍ଭ କଲି । ତାହା ଧୀମେଇ ଧୀମେଇ ଚାଲୁ ଚାଲୁ ଅଧା ବାଟରେ ବିଳାସପୁର ଷ୍ଟେସନରେ ପହଞ୍ଚିଲା ବେଳକୁ ବହୁତ ଡେରି ହୋଇ ଯାଇଥିଲା । ଥରେ ଡେରି ହେଲେ ଅନ୍ୟ ଲୋକାଲ ଟ୍ରେନ୍‌କୁ ବାଟ ଛାଡ଼ିବା ପାଇଁ ଦୂରଯାତ୍ରୀ ଗାଡ଼ିକୁ ସେଠାରେ ପଡ଼ି ରହିବାକୁ ପଡ଼େ । ଉତ୍କଳ ଏକ୍ସପ୍ରେସ ପ୍ରାୟ ଗୋଟିଏ ଦିନ ସେ ଷ୍ଟେସନରେ ପଡ଼ିରହିଲା । ପରଦିନ ରାତିରେ ଯାଇ କଟଣୀରେ ପହଞ୍ଚିଲା । କଟଣୀରୁ ଗାଡ଼ି ଧରି ଜବଲପୁର ବାଟେ ଭଂସଭାଲ ଯାଇ ସେଠାରୁ ଅନ୍ୟ ଗାଡ଼ି ଧରି ଇନ୍ଦୋର ଯିବା କଥା । ମୋର ବନ୍ଧୁ ଜବଲପୁର ରେଳଷ୍ଟେସନ ନିକଟରେ ଡାକବଙ୍ଗଳାଟିଏ ରିଜର୍ଭ କରି ଗୋଟିଏ ଦିନ ଅପେକ୍ଷା କରି ଫେରି ଯାଇଥିଲେ । ମୋର ତାଙ୍କ ସଙ୍ଗେ ଆଉ ଦେଖା ହୋଇପାରିଲା ନାହିଁ । କାରଣ ସେଠାରେ ଓହ୍ଲାଇବାକୁ ଆଉ ସମୟ ନ ଥିଲା ।

ମୁଁ କୌଣସି ମତେ ପରୀକ୍ଷା ପୂର୍ବଦିନ ରାତିରେ ଇନ୍ଦୋରରେ ପହଞ୍ଚିଲି । ସେଠାରେ ପ୍ରଫେସର ମୋତେ ଗୋଟିଏ ରେଷ୍ଟୁରାଣ୍ଟରେ ଖୁଆଇ ସର୍କିଟ ହାଉସ (ପୂର୍ବତନ ଗଡ଼ଜାତ ରେସିଡ଼େଣ୍ଟଙ୍କ ଉଆସ)ରେ ରଖାଇଦେଇ ଚାଲିଗଲେ । ଅତି ସୁସଜ୍ଜିତ କୋଠରୀ ଭିତରେ ମୁଁ ଏକାକୀ ଆରାମ ଚଉକିଟିରେ ବସି ପଢ଼ାପଢ଼ି ଆରମ୍ଭ କଲାବେଳକୁ ମୋର ଦକ୍ଷିଣ ପଟ ଛାତିରେ ଯନ୍ତ୍ରଣା ଅନୁଭବ କଲି । ସେ ଜନଶୂନ୍ୟ ବିରାଟ ପ୍ରାସାଦରେ କେଆରଟେକର କେଉଁଠାରେ ରହନ୍ତି, ଫୋନ କେଉଁଠି ଥାଏ ସେସବୁ ମୋତେ ଜଣା ନ ଥିଲା । ଡାକିଲେ କେହି ଶୁଣିବାକୁ ନ ଥିଲେ । ମୁଁ ଭାବିଲି 'ଲିଭିବ ଏଥି ମୋର ଜୀବନ ଦୀପ, ଏ ବାରତା ନ ଯିବ ଜନ ସମୀପ' । କାଲି ଆସି ପ୍ରଫେସର ବାବୁ ଦେଖିଲାବେଳକୁ ମୋର ଶବ ହୁଏତ ତାଙ୍କ ହୋଇ ଯାଇଥିବ । ବିପଦବେଳେ ଧୈର୍ଯ୍ୟ ଧରି ଭାବିବା ଉଚିତ ମନେକରି ମୁଁ ନିରବ ରହିଲି । ମୋର ଗୁରୁ ଅଧ୍ୟାପକ ଡାକ୍ତର ପିଶାରୋଟିଙ୍କ କଥା ମନେପଡ଼ିଲା । ସେ କହିଥିଲେ, ବାମ ଛାତି ହୃତ୍‌ପିଣ୍ଡ ନିକଟରେ ଯେଉଁ ଯନ୍ତ୍ରଣା ହୁଏ, ତାହା ହୃତପିଣ୍ଡ ଯନ୍ତ୍ରଣା ନୁହେଁ । ପେଟ ଗୋଳମାଳ ଥିଲେ ପାକସ୍ଥଳୀ ଯନ୍ତ୍ରଣା ସେଠାରେ ଜଣାପଡ଼େ । ତିନି ଚାରିଦିନ ରେଳଯାତ୍ରାରେ ଖାଦ୍ୟପେୟର ଅବ୍ୟବସ୍ଥା ସାଙ୍ଗକୁ ରେଷ୍ଟୁରାଣ୍ଟର ତେଲିଆ ଖାଦ୍ୟ ଯୋଗୁଁ ମୋର ପେଟଯନ୍ତ୍ରଣା ହେବା ସମ୍ଭବ । ଏହା ବିଚାରି

ମୁଁ ମୋ ବ୍ୟାଗରୁ ହଜମି ବଟିକା ବାହାର କରି ପାଣି ସଙ୍ଗେ ଗିଳିଦେଇ ସେହି ଆରାମ ଚଉକିରେ ବସି ରହିଲି । ସକାଳୁ ମୋ ପ୍ରଫେସର ବନ୍ଧୁ ଆସି ମୋତେ ଉଠାଇଲେ । ତାଙ୍କୁ ସବୁ କଥା କହି ମୋର ଭି.ଆଇ.ପି. ହେବା ଦରକାର ନାହିଁ, ମୋତେ ଅନ୍ୟ ଏକ ଜନମାନବ ଥିବା ସ୍ଥାନକୁ ନେଇଯାଆନ୍ତୁ ବୋଲି ଅନୁରୋଧ କରିବାରେ, ବନ୍ୟ ବିଭାଗର ଗୋଟିଏ ଛୋଟ ଡାକବଙ୍ଗଳାରେ ସେ ମୋତେ ନେଇ ରଖାଇଲେ ।

ଆଉ ଥରେ ମୋର ୧୩, ୧୪ ବର୍ଷ ପୁଅକୁ ସଙ୍ଗରେ ଧରି ପରୀକ୍ଷା ପାଇଁ ମୁଁ ଜବଲପୁର ଯାଇଥିଲି । ପରୀକ୍ଷା ପରେ ମୋର ବନ୍ଧୁ ପ୍ରଫେସର ଦମ୍ପତି ଆମକୁ ଆଣି ଜବଲପୁର ଷ୍ଟେସନରେ କଟଣୀ ଦେଇ ଯାଉଥିବା ଗୋଟିଏ ଗାଡ଼ିରେ ଚଢ଼ାଇ ଦେଇଗଲେ, ଆମେ କଟଣୀ ଯାଇ ଶୁଣିଲୁ ବିଳାସପୁରଠାରେ କ'ଣ ଗାଡ଼ି ଦୁର୍ଘଟଣା ଘଟିଥିବାରୁ ଆଉ କୌଣସି ଗାଡ଼ି ସେ ବାଟେ ଯାଉନାହିଁ । ଉତ୍କଳ ଏକସ୍‌ପ୍ରେସ କ୍ୟାନ୍‌ସଲ୍ ହୋଇ ଯାଇଛି । ଆମେ ଜବଲପୁର ଫେରିଆସିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଆମର ଅନ୍ୟ ଏକସ୍‌ପ୍ରେସରେ ଟିକେଟ୍ କାଟିବାକୁ ସମୟ ମଧ ମିଳିଲା ନାହିଁ । ଜବଲପୁର ଆଡ଼େ ଯାଉଥିବା ଜାନକୀ ଏକସ୍‌ପ୍ରେସ କଟଣୀରେ ପହଞ୍ଚିବା କ୍ଷଣି ଆମେ ସେ ଗାଡ଼ିରେ ଯିବା ପାଇଁ ବହୁ ଚେଷ୍ଟା କଲୁ, ଜାଗା ମିଳିଲା ନାହିଁ । ଶେଷରେ ଗୋଟିଏ ସାଧାରଣ ସେକେଣ୍ଡ କ୍ଲାସରେ ଦୁଆର ମେଲାଥିବା ଦେଖି ବାପ ପୁଅ କୌଣସିମତେ ଆମ ଭାରୀ ବ୍ୟାଗକୁ ଧରି ସେଥିରେ ପଶିଗଲୁ । ସେ ଗାଡ଼ିରେ ପାଇଖାନା ପାଣି ଲିକ୍ କରି ଦୁଆର ନିକଟରେ ଜମା ହୋଇଥିବାରୁ କେହି ସେଠାକୁ ଆସୁନଥିଲେ । ଆମର ବେଡ଼ିଂ ଓ ପୋଷାକ ପତ୍ର ସେ ଅସନା ପାଣିରେ ଓଦା ହୋଇଗଲା । ତଥାପି ଆମେ ଠିଆ ହୋଇକରି ଜବଲପୁର ଷ୍ଟେସନରେ ପହଞ୍ଚିଗଲୁ । ସେଠାରେ ଲୁଗା ବଦଳାଇ ସାଙ୍ଗରେ ଜଳଖିଆ ଖାଇଲୁ ।

ସେହି ସମୟରେ ଜଣେ ଆମକୁ କହିଲେ ଆପଣତ ବ୍ରହ୍ମପୁର ଯିବାର କଥା । ଆପଣ ଏଠାରୁ ବସରେ ରାୟପୁର ଯାଇ ସେଠାରୁ ଟ୍ରେନରେ ବିଜୟନଗର ଯାଇପାରିବେ । ବିଜୟନଗରରୁ ବ୍ରହ୍ମପୁର ଯିବା ଅସୁବିଧା ହେବନାହିଁ । ଏଠାରୁ ଆପଣ ରିକ୍‌ସାରେ ବସଷ୍ଟାଣ୍ଡକୁ ଚାଲିଯାଆନ୍ତୁ । ମୁଁ ତାଙ୍କ କଥାରେ ରିକ୍‌ସା ଧରି ବସଷ୍ଟାଣ୍ଡରେ ପହଞ୍ଚିଲି । ରାୟପୁର ଯିବା ବସ୍‌ରେ ଆଉ ସ୍ଥାନ ନାହିଁ ବୋଲି ଶୁଣିଲି । ଏତେ ରାତିରେ ପ୍ରଫେସର ବନ୍ଧୁଙ୍କୁ ହଇରାଣ ନ କରି ମୁଁ ବସ୍ ଧରି ଚାଲିଯିବି ବୋଲି ସ୍ଥିର କଲି । କିନ୍ତୁ ବସ ଷ୍ଟେସନରେ ଜାଗା ନାହିଁ ଶୁଣି ରାତି ସାଢ଼େ ଗୋଟେ ବେଳେ ଫୋନ କଲି । ସେଠାରୁ ମେଡ଼ିକାଲ କଲେଜ ଆଠମାଇଲ ବାଟ । ପ୍ରଫେସର ବନ୍ଧୁ କହିଲେ ଆମେ ଅନିଦ୍ରା ହୋଇ ଆପଣଙ୍କ ଫୋନକୁ ଅପେକ୍ଷା କରି ରହିଥିଲୁ । ଆପଣମାନେ ଗାଡ଼ି ଚଢ଼ିଲା ବେଳେ ଗୋଟିଏ

ବିରାଡ଼ି ଆପଣଙ୍କ ଆଗରେ ଚାଲିଯାଇଥିଲା । ତେଣୁ ଆପଣଙ୍କ ଯାତ୍ରାରେ ବିଘ୍ନ ହୋଇପାରେ ଭାବି ଆମକୁ ନିଦ ହେଉନଥିଲା ।

ବନ୍ଧୁ ତାଙ୍କ ପତ୍ନୀଙ୍କ ସଙ୍ଗେ ତାଙ୍କ ମୋଟର ଗାଡ଼ିରେ ଆସି ପହଞ୍ଚିଲେ । ତାଙ୍କ ଉଦ୍ୟମରେ ଆମକୁ ବସ୍‌ରେ ସିଟ୍ ମିଳିଲା । ବନ୍ଧୁ ଆମପାଇଁ ସାଥୀରେ ଗରମ କଫି ଆଣିଥିଲେ । ଆମର ନିଅଣ୍ଟ ହୋଇପାରେ ବୋଲି କିଛି ଟଙ୍କା ମଧ ଆଣିଥିଲେ । ଆମକୁ ବସ୍‌ରେ ଚଢ଼ାଇ ସେ ଚାଲିଗଲେ ।

ସେ ପାର୍ବତ୍ୟ ରାସ୍ତାରେ ଧଡ଼ ଧଡ଼ ହୋଇ ବସ୍‌ଟି ଚାଲିବା ପରେ ଆମ ପାଦ ଓଦା ଲାଗିଲା ଓ ଟିକିଏ ପୋଡ଼ିଲା । ଗୋଟିଏ ସ୍ଥାନରେ ବସ୍‌ଟି ଟିକିଏ ରହିଲା । ଫର୍ଚ୍ଚା ହୋଇ ସକାଳର ବାଳ କିରଣ ଗାଡ଼ି ଭିତରେ ପଡ଼ିଲା । ଆମେ ଦେଖିଲୁ ଆମ ସିଟ ପାଖରେ ଗୋଟିଏ ପୁରୁଣା ବ୍ୟାଟେରୀ ଥୁଆ ହୋଇଥିଲା । ତା' ଦେହରୁ ଏସିଡ଼ ପାଣି ଚହଲି ଆମ ଗୋଡ଼ ଓ ଲୁଗାରେ ଲାଗିଥିଲା । ଆମେ କଣ୍ଡକ୍ଟରକୁ କହି ସେଠା ସଫା କରାଇ ବ୍ୟାଟେରୀଟା ଅନ୍ୟ ସ୍ଥାନରେ ରଖାଇଲୁ । ପାଦ ଓ ପେଣ୍ଟତଳ ଧୁଆଇଲୁ । ସେତେବେଳେ ନ ଜଣା ପଡ଼ିଲେ ମଧ ପେଣ୍ଟ ମୋଜା ସବୁ ଏସିଡ଼ରେ ଜଣା ଜଣା ହୋଇ ଯାଇଥିଲା ।

ଆମେ ସନ୍ଧ୍ୟାବେଳକୁ ରାୟପୁର ଷ୍ଟେସନରେ ପହଞ୍ଚି ବିଜୟନଗର ଗାଡ଼ିରେ ଯିବା ପାଇଁ ଟିକେଟ କାଟିଲୁ । ସନ୍ଧ୍ୟା ୭ଟାରେ ଗାଡ଼ି ଆସି ପ୍ଲାଟଫର୍ମରେ ଲାଗିବା କଥା । ଆମେ ତରତର ହୋଇ ବାଥ୍‌ରୁମ୍‌ରେ ନିତ୍ୟକର୍ମ ସାରି ପ୍ଲାଟଫର୍ମକୁ ଆସି ଅପେକ୍ଷା କଲୁ । ଠିକ୍ ୭ଟାରେ ଗାଡ଼ିଟିଏ ପ୍ଲାଟଫର୍ମରେ ଲାଗିବାରୁ ଆମେ କୁଲିଦ୍ୱାରା ଜିନିଷ ନେଇ ଗୋଟିଏ ସିଟିଂ ଡ଼ବାରେ ପଶି ଆମକୁ ସିଟ୍ ଦେବାପାଇଁ ଅନୁରୋଧ କଲୁ । ସେ ସେଥିରେ ରାଜି ହେବା ପରେ ସେ ଗାଡ଼ି କେତେବେଳେ ବିଜୟନଗରରେ ପହଞ୍ଚିବ ପଚାରିବାରେ ସେ ଚମକି ପଡ଼ି କହିଲେ ଏହା ବିଜୟନଗର ଆଡ଼ୁ ଆସିଛି, ଟାଟା ଯାଉଛି । ଆମେ ସେ କଥା ଶୁଣି ବାପ ପୁଅ ବହୁ କଷ୍ଟରେ ଆମ ଜିନିଷ ବୋହି ପୁଣି ପ୍ଲାଟଫର୍ମକୁ ଆସିଲୁ । ଭେରାଘାଟ ନିକଟରୁ ଦୁଇଖଣ୍ଡ ମାର୍ବଲମୁଣ୍ଡା ପୁଅ ସଙ୍ଗରେ ଆଣି ମୋ ବାକ୍‌ସ ଓ ବେଡ଼ିଂରେ ରଖିଥିବାରୁ ତାହା ସେପରି ଓଜନ ହୋଇଥିଲା । ଆମ ଗାଡ଼ି ଲେଟ୍ ଥିଲା । ବହୁ ସମୟ ପରେ ଆମେ ଗାଡ଼ିରେ ଚଢ଼ି ସକାଳେ ଆସି ବିଜୟନଗରରେ ପହଞ୍ଚିଲୁ । ସେଠାରେ ପ୍ଲାଟଫର୍ମରେ ଆମେ ଅପେକ୍ଷା କରୁଥିଲାବେଳେ ମାଡ୍ରାସ ହାବଡ଼ାମେଲ ଆସି ପହଞ୍ଚିଲା । କେଉଁ ଡ଼ବାରେ ଟିକିଏ ହେଲେ ସ୍ଥାନ ନ ଥିଲା । ଗୋଟିଏ ଫାଷ୍ଟକ୍ଲାସରେ ଲଗେଜ ରହିବା ସ୍ଥାନରେ ଆମ ଜିନିଷ ସବୁ ଟେକାଟେକି କରି ରଖିଲୁ । କଣ୍ଡକ୍ଟରକୁ କିଛି ଅଣ୍ଟା ଗୁଞ୍ଜା ଦେଇ ସେହି ଦୁଆର ମୁହଁରେ ଠିଆ ହୋଇ ଯିବା ପାଇଁ ବିଚାରୁଥିଲୁ, ଏହି ସମୟରେ ପୁଅ ବାହାରକୁ ଚାହିଁ ଟିକିଏ ଦୂରରେ ପ୍ଲାଟଫର୍ମରେ ଠିଆ

ହୋଇ କ'ଣ କିଣୁଥିବା ଜଣେ ଚିହ୍ନା ଓକିଲଙ୍କୁ ଦେଖି ପକାଇ ମୋତେ କହିଲା । ମୁଁ ତାଙ୍କ ପାଖକୁ ଯାଇ ବୁଝିଲି ସେ ଓ ମୋର ଜଣେ ଛାତ୍ର ସେ ଗାଡ଼ିରେ ୱାଲଟିଅରରୁ ଫାଷ୍ଟକ୍ଲାସ ଡ଼ବାରେ ଫେରୁଛନ୍ତି । ସେ ମୋ କଥା ଶୁଣି ଆପଣ ଏ ଡ଼ବାକୁ ଆସି ଯାଆନ୍ତୁ ବୋଲି କହିବାରୁ ଆମେ ସେ ଗାଡ଼ିକୁ ଆସିଲୁ । ସେ ଭଦ୍ରଲୋକଙ୍କର ପ୍ରତି ଷ୍ଟେସନରେ ପ୍ଲାଟଫର୍ମକୁ ଓହ୍ଲାଇ ଫେରିବାଲାଙ୍କଠାରୁ କିଛି ଖାଦ୍ୟଦ୍ରବ୍ୟ କିଣି ଖାଇବା ଅଭ୍ୟାସ । ଆମେ ଗାଡ଼ିରେ ବସିବା ପରେ ସେ ମଧ ସେ ଖାଦ୍ୟରୁ ଆମକୁ କିଛି ଖାଇବାକୁ ଦେଲେ । ମୁଁ ତାକୁ ଖାଉ ଖାଉ କହିଲି ଆଜି ଏହି ଖାଦ୍ୟ ଯୋଗୁଁ ଆମକୁ ଯିବାପାଇଁ ସୁବିଧା ମିଳିଲା । ଆପଣଙ୍କର ଖାଦ୍ୟ ଅନ୍ୱେଷଣ ପ୍ରବୃତ୍ତି ନ ଥିଲେ, ଆମେ ଏହି ପ୍ଲାଟଫର୍ମରେ ପଡ଼ିରହି ଥାଆନ୍ତୁ । ମୋ କଥାରେ ହସ ହେଲା, ଗାଡ଼ି ଚାଲିଲା । ଆମେ ଆରାମରେ ଆମ ଯାତ୍ରା ଶେଷ କରି ବରହମ୍ପୁରରେ ଆସି ପହଞ୍ଚି ପାରିଲୁ ।

ଏପରି ବହୁ ଟ୍ରେନ ଯାତ୍ରା ଅଭିଜ୍ଞତା ମୁଁ ଦେହରେ ଲିଭାଇଛି । ଏସବୁ ପ୍ରତିଦିନ ଘଟିଚାଲିଛି । ବହୁ ପାଠକ ମଧ ଏସବୁର ସମ୍ମୁଖୀନ ହୋଇଥିବେ ।

ଏସବୁ କାଳର ଅଙ୍ଗେ ଲିଭାଇଥିବା ହଟହଟା । ବ୍ରିଟିଶ ଅମଳରେ ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀ ଆରମ୍ଭରେ ମଧ ରେଳଯାତ୍ରାରେ ହଟହଟା କିଛି କମ୍ ନ ଥିଲା । ଅଳ୍ପଦିନ ତଳେ ପ୍ରକାଶିତ ସେକାଳର ଗୋଟିଏ ଦରଖାସ୍ତରୁ ଗୋଟିଏ ସତ୍ୟ ଘଟଣା ଜଣାପଡ଼େ । ସେତେବେଳେ ଭାରତୀୟ ଯାତ୍ରୀମାନଙ୍କ ପାଇଁ ଥିବା ଥାର୍ଡ଼ କ୍ଲାସ ଓ ଇଣ୍ଟର କ୍ଲାସ ରେଳଡ଼ବାରେ ପାଇଖାନାର ବନ୍ଦୋବସ୍ତ ନ ଥିଲା । ଗାଡ଼ି ଷ୍ଟେସନରେ ରହିଲେ ଲୋକେ ପ୍ଲାଟଫର୍ମକୁ ଯାଇ ସେଠାରେ ଥିବା ପାଇଖାନା ବ୍ୟବହାର କରୁଥିଲେ । ଅବଶ୍ୟ ସାହେବ ଓ ବଡ଼ଲୋକଙ୍କ ପାଇଁ ଥିବା ଫାଷ୍ଟକ୍ଲାସ ସେକେଣ୍ଡ କ୍ଲାସରେ କମୋଡ଼ ରହିଥିଲା ।

୧୯୦୯ ଖ୍ରୀଷ୍ଟାବ୍ଦରେ ଅଖୀଳ ଚନ୍ଦ୍ର ସେନ ନାମକ ଜଣେ ଅଧା ଇଂରେଜ ପାଠୁଆ ବ୍ୟକ୍ତି ଘରେ ପ୍ରଚୁର ପଣସ ଭୋଜନ ପରେ ପରେ ରେଳ ଯାତ୍ରାରେ ବାହାରିଥିଲେ । ଗାଡ଼ିରେ ଯାତ୍ରା କରିବାର କିଛି ସମୟପରେ ସେ ତାଙ୍କ ପେଟର କଁ କାଁ ଶବ୍ଦ ସହିତ ଝାଡ଼ା ତଲବ ଅନୁଭବ କଲେ । ବଙ୍ଗଳାର ଅହମଦପୁର ଷ୍ଟେସନରେ ରେଳଗାଡ଼ି ଅଟକିବା ସଙ୍ଗେ ସଙ୍ଗେ ଗାଡ଼ିରୁ ଓହ୍ଲାଇ ଷ୍ଟେସନ ପ୍ଲାଟଫର୍ମର ପାଇଖାନାକୁ ଦଉଡ଼ିଲେ । ପରେ ସେ ବଙ୍ଗର ସାହେବଗଞ୍ଜ ରେଲୱେ ଡ଼ିଭିଜନାଲ ଅଫିସରଙ୍କୁ ଦରଖାସ୍ତଟିଏ ଦେଇଥିଲେ ।

ତାଙ୍କ ଦରଖାସ୍ତରେ ସେ ଲେଖିଥିଲେ - ''ମୁଁ ପାଇଖାନାକୁ ଯାଇ ସେ କଦର୍ଯ୍ୟ କାର୍ଯ୍ୟ ଆରମ୍ଭ କରୁ କରୁ ହଠାତ୍ ଗାର୍ଡ଼ ହୁଇସିଲ ମାରି ଛାଡ଼ିବାର ସଙ୍କେତ ଦେଲେ । ମୋ ଗୋଟାଏ ହାତରେ ପାଣି ଲୋଟା ଧରି ଅନ୍ୟ ହାତରେ ଲୁଗାଟାକୁ ଟେକି ଗାଡ଼ି

ଅଟକାଇବା ପାଇଁ ପାଟି କରି କରି ପ୍ଲାଟଫର୍ମକୁ ଦଉଡ଼ି ଆସିଲି । ସେପରି ଦଉଡ଼ିବାବେଳେ ମୁଁ ଝୁଣ୍ଟିକରି ପଡ଼ିଗଲି । ମୋର ଲଜ୍ୟା ପ୍ଲାଟଫର୍ମର ସମସ୍ତ ପୁରୁଷ ଓ ସ୍ତ୍ରୀ ମହିଳାଙ୍କ ସମ୍ମୁଖରେ ଉନ୍ମୁକ୍ତ ହୋଇଗଲା । ତଥାପି ମୋତେ ଛାଡ଼ି ଗାଡ଼ି ପଳାଇଗଲା ++ ଏହା ଅତି ଅନ୍ୟାୟ କଥା । ଯାତ୍ରୀ ପଣସ ଖାଇ ପେଟ ଖରାପରୁ ଗୋବର ତ୍ୟାଗ କରିବାକୁ ଯିବାବେଳେ ପାପିଷ୍ଠ ଗାର୍ଡ଼ ଗାଡ଼ିକୁ ଆଉ ପାଞ୍ଚ ମିନିଟ ମଧ୍ୟ ନ ଅଟକାଇ ଚାଲିଗଲା ।

''ତେଣୁ ସେ ଯୋଗୁଁ ସେହି ଗାର୍ଡ଼କୁ ବଡ଼ ଜୋରିମାନା ଦଣ୍ଡରେ ଦଣ୍ଡିତ କରିବା ପାଇଁ ଯାତ୍ରୀଙ୍କ ତରଫରୁ ହଜୁରକୁ ପ୍ରାର୍ଥନା କରୁଛି । ଆପଣ ନ ବୁଝିଲେ ମୁଁ ପତ୍ର ପତ୍ରିକାରେ ବଡ଼ଧରଣର ରିପୋର୍ଟ ପ୍ରକାଶ କରାଇବି ।''

ସେ ଦରଖାସ୍ତଟି ଅଶୁଦ୍ଧ ଇଂରେଜୀରେ ଲେଖା ଯାଇଥିଲେ ମଧ୍ୟ ରେଲୱେ କର୍ମଚାରୀଙ୍କ ଭିତରେ ଚହଳ ପକାଇ ଦେଇଥିଲା । ଯାତ୍ରୀମାନେ ପଣସ ଖାଇ ହଟହଟା ହେବାରୁ ଉଦ୍ଧାର ପାଇଁ ଷ୍ଟେସନମାନଙ୍କରେ ଅଧିକା ସମୟ ଗାଡ଼ି ଅଟକାଇବାକୁ ଗାର୍ଡ଼ମାନଙ୍କୁ ନିର୍ଦ୍ଦେଶ ଦେବା ଅସମ୍ଭବ ଥିବାରୁ ଉଚ୍ଚ ଇଂରେଜ କର୍ତ୍ତୃପକ୍ଷ ସେ ଦରଖାସ୍ତ ବିଚାର କରି ଥାର୍ଡ଼କ୍ଲାସ ଓ ଇଣ୍ଟରକ୍ଲାସ ଯାତ୍ରୀ ଗାଡ଼ିରେ ପାଇଖାନା ଖଞ୍ଜିବାର ଉଦ୍ୟମ କରିଥିଲେ । ଭାରତରେ ରେଳ ଯାତ୍ରା ଚାଲିବାର ପ୍ରାୟ ପଚାଶ ବର୍ଷ ପରେ ଅଖୀଳ ବାବୁଙ୍କ ହଟହଟା ଯୋଗୁଁ ଯାତ୍ରୀମାନେ ଡ଼ବାଭିତରେ ମଳମୂତ୍ର ତ୍ୟାଗର ସୁବିଧା ପାଇଲେ ।



# ବୁଲାମନ

ଶିଶୁ କାଳରୁ ମନୁଷ୍ୟର ମନ ବାହାର ଜଗତ ସହିତ ପରିଚିତ ହେବାକୁ ଚାହେଁ । ଗୁରୁଣ୍ଡିବା ବା ଠୁକେଇ ଠୁକେଇ ଚାଲିବାର ଶକ୍ତିହେବା ସଙ୍ଗେ ସଙ୍ଗେ ଅନ୍ୟଠି କଅଣ ଅଛି ଦେଖିବା ପାଇଁ ସେ କଥାନମାନି ପଳାଇବାକୁ ଚେଷ୍ଟା କରେ । ବଡ଼ ହେବା ପରେ ମଧ୍ୟ ସେହି ବୁଲିବା ପ୍ରବୃତ୍ତି ରହିଯାଏ, ସୁବିଧା ପାଇଲେ ନିଜ ସ୍ଥାନରୁ ଦୂରେଇ ଯାଇ ଦୂରଦୂରାନ୍ତର ପରିବେଶ, ଜୀବଜନ୍ତୁ ଓ ମନୁଷ୍ୟ ସହିତ ପରିଚିତ ହେବାକୁ ଚେଷ୍ଟାକରେ ।

ମୋର ପାଠ ଆରମ୍ଭରେ ଆମ ଘରଠାରୁ କିଛି ଦୂରରେ ଥିବା ଲୋର ପ୍ରାଇମେରୀ ସ୍କୁଲରେ ପଢ଼ିବା ବେଳେ ମୋତେ ଗାଁ ଚାରିପଟ ମାଳ, ପୋଖରୀ ହୁଡ଼ା ପ୍ରଭୃତିରେ ବୁଲିବାର ସୁବିଧା ମିଳିଥିଲା । ସାଥୀଙ୍କ ସଙ୍ଗେ ବଣିଚୁଆ ଧରି ଆଣି "ଝିଣ୍ଟିକା ମାରି ବଣି ପୋଷିବା"ର ଆକ୍ଷରିକ ଅର୍ଥକୁ କାର୍ଯ୍ୟକରିବା ପାଇଁ ଘାସ ପଡ଼ିଆ ମାନଙ୍କରୁ ଝିଣ୍ଟିକା ଧରି ଆଣି ଜବରଦସ୍ତି ବଣିକୁ ଖୁଆଇ ତାକୁ ଯମାଳୟକୁ ପ୍ରେରଣ କରିବା, ନେଉଳ, ଠେକୁଆ ଛୁଆଙ୍କୁ ଆଣି ଘରେ ପୋଷିବା କାର୍ଯ୍ୟ ସବୁ ମୋର କମ୍ ନ ଥିଲା । ଲୋର ପ୍ରାଇମେରୀ ପାଶ୍ କରି ଦୁଇ ମାଇଲ ଦୂର ସତ୍ୟବାଦୀ ସ୍କୁଲରେ ପଢ଼ିଲା ବେଳକୁ ସେ'ଠା ହଷ୍ଟେଲରେ ରହି ବକୁଳବନର ପରିବେଶ, ସେଠାର ପକ୍ଷୀଙ୍କ କାକଳି ଓ ଜୀବଜନ୍ତୁଙ୍କ ଆଚରଣ ପ୍ରତି ଆକୃଷ୍ଟ ହୋଇ ଛୁଟିବେଳେ ସେ ବନର ଚାରିଆଡ଼େ ଘୂରି ବୁଲିବାର ସୁବିଧା ମିଳିଥିଲା ।

ସତ୍ୟବାଦୀ ମାଇନର ସ୍କୁଲରୁ ପାଶ୍ କରି କଟକ କଲେଜିଏଟ ସ୍କୁଲରେ ୮ମ ଶ୍ରେଣୀରେ ନାମ ଲେଖାଇବା ପରେ ମୋ ଶରୀରର ଅବନତି ଘଟିଲା । ଜଳବାୟୁ ପରିବର୍ତ୍ତନ ପାଇଁ ଡ଼ାକ୍ତର ରାଜକିଶୋର ନନ୍ଦଙ୍କ ସୁପାରିଶ୍ ଯୋଗୁଁ ମୋତେ ମୋ ପିତା ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଙ୍ଗେ ସିମ୍ଲା ଯିବାର ସୁଯୋଗ ମିଳିଲା । ସେ ବଡ଼ଲାଟ ସଭାର ସିମ୍ଲାରେ ବସୁଥିବା ଗ୍ରୀଷ୍ମକାଳୀନ ଅଧିବେଶନରେ ଯୋଗ ଦେବାକୁ ଯାଉଥିଲେ । ମୋର ସାନ ମାମୁଁ, ଶ୍ବାସ ରୋଗରେ ପୀଡ଼ିତ ଥିବାରୁ ସ୍ବାସ୍ଥ୍ୟ ପରିବର୍ତ୍ତନ ପାଇଁ ପିତା ତାଙ୍କୁ ସଙ୍ଗରେ ନେଉଥିଲେ । ତେଣୁ ସେ ମୋତେ ନାହିଁ କରି ନ ପାରି ସଙ୍ଗରେ ନେଲେ । ଆମେ କଟକରୁ କଲିକତା ଦେଇ କାଲକାରେ ପହଞ୍ଚିଲୁ । କାଲକାରେ ଅଣଓସାରିଆ ରେଳ ପଥରେ ହିମାଳୟ ପାହାଡ଼ ସବୁ ଉଠି ସିମ୍ଲା ଅଭିମୁଖେ ଯାତ୍ରା କଲୁ । ଛୋଟ ରେଳଗାଡ଼ିଟି ପାହାଡ଼ ଉପରେ ଚଢ଼ିଲା ବେଳେ ତଳକୁ ଚାହିଁଲେ ଦେହ ଶୀତେଇ ଉଠୁଥିଲା ।

ସିମ୍‌ଲା ସହରର ତଳ ଉପର ହୋଇଥିବା ବୁନ୍ଦବୁନ୍ଦିଆ ଘରସବୁ ହିମ ମୁକୁଟଧାରୀ ହିମାଳୟର କ୍ରୋଡ଼ରେ ଦୋଳାୟମାନ ଥିଲେ । ସେହି ସହର ଭିତରେ ସେତେବେଳେ ମଲ ନାମକ ବଡ଼ ରାସ୍ତାଟିଏ ରହିଥିଲା । ସହରର ଘର ସାମନା ଛୋଟ ଛୋଟ ଅଙ୍କାବଙ୍କା ରାସ୍ତାସବୁ ସେହି ରାସ୍ତାକୁ ସଂଯୋଗ କରୁଥିଲା । ଆମେ ସରକାରୀ କ୍ୱାଟର ନଂ ୧ ୦ ମ୍ବର କାର୍ଟ ରୋଡ଼ରେ ରହିଲୁ । ଉପରେ ଥିବା ରାସ୍ତାକୁ ଆମ ଘର ସାମନା ରାସ୍ତାଟି ସଂଯୋଗ କରୁଥିଲା । ତଳକୁ ରାସ୍ତା ନ ଥିଲା । ମୁଁ ଅନେକ ସମୟରେ ତଳକୁ ଓହ୍ଲାଇ ଚଲା ପଥରେ ବନଜଙ୍ଗଲର ଦୃଶ୍ୟ ଦେଖିବାକୁ ଏକାକୀ ଚାଲିଯାଉଥିଲି । ଦିନେ କିଛିବାଟ ଗଲାବେଳେ ଦୂରର ଏକ ଜଳପ୍ରପାତରୁ ଝରି ଆସୁଥିବା କୁଳୁକୁଳୁ ନାଦିନୀ ଝରଣାଟିଏ ଦେଖିଲି । ସେହି ଝରଣାର ଆର କୂଳରେ ଗୋଟିଏ ଗୋଲିଆ ମୁହଁ ଥିବା ସୁନ୍ଦର ଜୀବଟିଏ ଦେଖିଲି । ସେ ମଧ ମୋତେ ଦେଖି ଲୁଚକାଳି ଖେଳିଲା ପରି ବୁଦାରୁ ବୁଦାକୁ ଯାଇ ମୋ ଆଡ଼କୁ ଚାହୁଁଥିଲା । ତାହା ହିମାଳୟାନ ଫକସ୍ ବୋଲି ଜାଣିବାକୁ ପାଇଲି ।

ଆଉ ଦିନେ ସେପରି ବୁଲିଲା ବେଳେ ଦଳେ ବଣୁଆ ଲୋମଶ କୁକୁରଙ୍କ ହାବୁଡ଼େ ପଡ଼ିଗଲି । ମୁଁ ଧୀର ଭାବରେ ଗୋଟିଏ ଗଛ ମୂଳରେ ଠିଆ ହୋଇଗଲି । ସେମାନେ ମୋତେ ଆକ୍ରମଣ ନ କରି ଦୂରେଇ ଗଲେ ।

ସେହି ଛୁଞ୍ଚି ପରି ମେଞ୍ଚା ମେଞ୍ଚା ପତ୍ର ରହିଥିବା ପାଇନ ଜଙ୍ଗଲ ଭିତରେ ଜନବସତି ସବୁ ରହିଥିଲା । ସେ ପାହାଡ଼ିଆ ଲୋକେ ପଥର ଖଣ୍ଡ ଓ ମାଟିରେ କାନ୍ଥ ତିଆରି କରି ତା' ଉପରେ ବଡ଼ ବଡ଼ ଚଉଡ଼ା ପାତଳା ପଥର ପକାଇ ଘରର ଛାତ କରିଥାଆନ୍ତି । ସେମାନେ ଦିନରେ ଆସି ସିମ୍‌ଲାରେ ମଜୁରୀ କାମ କରନ୍ତି । ଖାଇବାବେଳେ ସଙ୍ଗରେ ଆଣିଥିବା ରୁଟି ସଙ୍ଗେ, (ମୁନ୍ନିମୁନିଆ ପତ୍ର ଠାରୁ ବଡ଼ ବଡ଼) ଆମ୍ବିଳିତି ପତ୍ର ଉପାଡ଼ି ଆଣି ଖାଆନ୍ତି । ତାହା ଖଟା ଲାଗୁଥିବାରୁ ଆଚାରର କାମ କରେ । ସେମାନେ ବଡ଼ ସରଳିଆ ଲୋକ । ସେମାନଙ୍କ ଭିତରୁ ଜଣଙ୍କ ସଙ୍ଗରେ ଯାଇ ମୁଁ ସେମାନଙ୍କ ଘର, ପୋଷା ଛେଳି, ମେଣ୍ଢା ଓ ଚାଲିଚଳଣି ଲକ୍ଷ୍ୟ କରିଥିଲି । ସେଠାର ଜାକୋ ନାମକ ପର୍ବତ ଉପରେ ମନ୍ଦିରଟିଏ ଥିଲା । ସେଥିରେ ବହୁତ ପାତିମାଙ୍କଡ଼ ରହୁଥିଲେ ଏବଂ ଦର୍ଶକ ମାନଙ୍କଠାରୁ ମାଗି ନେଇ ଖାଉଥିଲେ ।

ମୁଁ ଜୁଲାଇ ଅଗଷ୍ଟ ସେପଟେମ୍ବର ତିନିମାସ ସେଠାରେ ଥିବାବେଳେ ଚାରିଆଡ଼େ ବହୁ ପ୍ରକାର ସୁନ୍ଦର ଫୁଲ ଫୁଟିଥିଲା । ରାସ୍ତା ଦୁଇପଟେ ଗୋଲାପ ଗଛ ରହିଥିଲା । ପାଗ ମେଘୁଆ ଥିବାବେଳେ ଜଳକଣାଯୁକ୍ତ ମେଘମାଳା ଘର ଭିତରକୁ ପଶିଆସି ପଶମ ଦ୍ରବ୍ୟ ଓ ଦାଢ଼ି ଉପରେ ମଧ ଜମାଟ ବାନ୍ଧି ମୁକ୍ତାବିନ୍ଦୁ ସୃଷ୍ଟି କରି ଚାଲି ଯାଉଥିଲା ।

ମାଟ୍ରିକ ପରୀକ୍ଷା ବର୍ଷ ମୁଁ ଛାତ୍ର ସତ୍ୟାଗ୍ରହରେ ଯୋଗ ଦେଇ ବନ୍ଦୀ ଭାବରେ ଅନୁଗୁଳ ଜେଲକୁ ନିଆଯାଇଥିଲି । ସେଠାର ଅସହ୍ୟ ଗରମ ସହି ନ ପାରି ଛାଡ଼ ପାଇଲା ପରେ

ରୋଗ ମୁକ୍ତି ପାଇଁ ଗ୍ରାମକୁ ଚାଲିଯାଇଥିଲି । ସେହି ସମୟରେ ନେତାଜୀ ସୁଭାଷ ବୋଷ କଂଗ୍ରେସ ସଭାପତିତ୍ୱ ଛାଡ଼ି ଦେଶକୁ ସଂଗ୍ରାମ ପାଇଁ ପ୍ରସ୍ତୁତ କରିବାକୁ ଆହ୍ୱାନ ଦେଇ ଓଡ଼ିଶା ଗସ୍ତରେ ଆସିଥିଲେ । ମୁଁ ତାଙ୍କ ବକ୍ତୃତାରେ ଅନୁପ୍ରାଣୀତ ହୋଇ ଆଉ ସ୍କୁଲରେ ଯୋଗ ନ ଦେଇ ସ୍ୱାଧୀନତା ସଂଗ୍ରାମର ଗୁପ୍ତ ପ୍ରଚାର ପାଇଁ ଲୋକ ସମ୍ପର୍କ କରିବାକୁ ପଦବ୍ରଜରେ ଗାଁ ଗାଁ ବୁଲିଛି । ସେହି ସମୟରେ ଚିଲିକା କୂଳର ପ୍ରସିଦ୍ଧ ମାଣିକ ପାଟଣା ଗ୍ରାମ ଦେଖିବାକୁ ପାଇଥିଲି ।

ପରବର୍ଷ ନୂଆ ସତ୍ୟବାଦୀ ହାଇସ୍କୁଲରେ ପଢ଼ି ମାଟ୍ରିକ ପରୀକ୍ଷା ଦେବା ପରେ ବମ୍ବେ ଦିଲ୍ଲୀ ପ୍ରଭୃତି ସ୍ଥାନ ପର୍ଯ୍ୟଟନ କରିଥିଲି । ଦିଲ୍ଲୀରୁ ମଥୁରା ବୃନ୍ଦାବନ ଦେଇ ଆଗ୍ରା ଯାଇଥିଲି । ପ୍ରଥମଥର ସେହି ପ୍ରେମ ମନ୍ଦିର ତାଜମହଲକୁ ଚାହିଁ ମୁଁ ଅଭିଭୂତ ହୋଇଥିଲି ।

ତା'ପରେ କଲିକତାର ଇଂରେଜଙ୍କ ଗଢ଼ା ଭିକ୍ଟୋରିଆ ମେମୋରିଆଲ ଦେଖିଲି । ତାହା ସେହି ଢଙ୍ଗରେ ତିଆରି ହେଲେ ମଧ ତାଜମହଲର ପାସଙ୍ଗରେ ପଡ଼ିବାର ନୁହେଁ ।

୧୯୪୨ ଆନ୍ଦୋଳନବେଳେ ରେଭେନ୍‌ସା କଲେଜ ଅଫିସ ପୋଡ଼ି ପରେ ପ୍ରୋସେସନ ଉପରେ ଲାଠି ଚାର୍ଜ ଚାଲିଲା । ଆଇ.ଏସ୍.ସି. ଦ୍ୱିତୀୟ ବର୍ଷ ପ୍ରାରମ୍ଭରୁ ପୋଲିସ ସଙ୍ଗେ ଲୁଚକାଳି ଖେଳ ଯୋଗୁଁ ଓଡ଼ିଶାର ବହୁ ବନ ଜଙ୍ଗଲ ସୁଦୂର ଗ୍ରାମ ଓ ବଙ୍ଗଳାର କେତେକ ସ୍ଥାନ ବୁଲାହେଲା ।

ଆଇ.ଏସ୍.ସିର ଦ୍ୱିତୀୟ ବର୍ଷଟି କଲିକତା ବଙ୍ଗବାସୀ କଲେଜରେ ପଢ଼ିସାରି ୧୯୪୫ରେ କଟକ ମେଡ଼ିକାଲ କଲେଜରେ ନାମ ଲେଖାଇଲି । ସେ ପାଞ୍ଚ ବର୍ଷର ପଢ଼ା ଭିତରେ ଟ୍ରେନିଂ ପାଇଁ କଲିକତା ନିକଟରେ ସିଙ୍କୁର, ରାଞ୍ଚିର କାଂକେ ପାଗଲା ହସପିଟାଲ, ଇଟକିର ଯକ୍ଷ୍ମା ନିବାସ, ନାମ-କୁମର ଟୀକା ତିଆରି କାରଖାନା ପ୍ରଭୃତି ଦେଖିବାକୁ ପଡ଼ିଥିଲା । ତା' ଛଡ଼ା ଛୁଟିମାନଙ୍କରେ ବନ୍ଧୁମାନଙ୍କ ସଙ୍ଗେ ନୟାଗଡ଼ ଦଶପଲ୍ଲା ପ୍ରଭୃତିର ଜଙ୍ଗଲରେ ଶୀକାରୀଙ୍କ ସଙ୍ଗେ ବୁଲି ରାତିରେ ଜୀବଜନ୍ତୁ ପଛରେ ଗୋଡ଼ାଇବାର ସାହସିକ ଅନୁଭୂତି ମିଳିଥିଲା ।

କଟକ ମେଡ଼ିକାଲ କଲେଜରୁ ଏମ.ବି.ବି.ଏସ୍. ପାଶ କରି ସ୍ନାତକୋତ୍ତର ଶିକ୍ଷା ପାଇଁ ୧୯୫୧-୫୨ରେ ପାଣିଜାହାଜରେ ମୋତେ ଆମେରିକା ଯିବାକୁ ପଡ଼ିଥିଲା । ଯିବାଆସିବା ବାଟରେ ମଧ ବହୁ ଦେଶ ଦେଖିବାର ସୁଯୋଗ ମିଳିଥିଲା ।

ଆମେରିକା ବସ୍ତୁବାଦ ପଛରେ ଧାଇଁ ବହୁତଳ ପ୍ରାସାଦ ଓ ପ୍ରାଚୁର୍ଯ୍ୟ ଭିତରେ ରହି ଆଧ୍ୟାତ୍ମିକତା ଠାରୁ ଦୂରେଇ ଯାଇଛି । ସମ୍ଭୋଗ ହିଁ ସେଠାର ଆଦର୍ଶରେ ପରିଣତ ହୋଇଛି । ଇଂଲଣ୍ଡ ଏବେବି ତା'ର ସାମ୍ରାଜ୍ୟବାଦର କ୍ଷମତାକୁ ଝୁରୁଛି । ତା'ର

ରକ୍ଷଣଶୀଳ ନୀତିକୁ ଜାବୁଡ଼ି ଧରି ତା'ର କୋଠାବାଡ଼ିର ବାହାର ପଟକୁ ନ ଧଉଲାଇ ପ୍ରାଚୀନ ରୂପଦେଇ ଚାଲିଛି ।

ୟୁରୋପର କଣ୍ଡ ଦେଶରେ ଥିବା ହଲାଣ୍ଡ ରାଜ୍ୟଟିକୁ ଯେପରିକି ବନ୍ଧ ବାଡ଼ ଦେଇ ସମୁଦ୍ର ଭିତରୁ ବାହାର କରାଯାଇଛି । ପ୍ରତ୍ୟେକ ସହରର ରାସ୍ତା କଡେକଡେ ଶହ ଶହ କେନାଲ ରହିଛନ୍ତି । ଖରାଦିନେ ବିଲମାନଙ୍କରେ ସୁନ୍ଦର ସୁନ୍ଦର ଫୁଲ ଚାଷ କରାଯାଇ ସେଠାର ବନ୍ଦରମାନଙ୍କର ଜାହାଜମାନଙ୍କୁ ଯୋଗାଇ ଦିଆଯାଇ ପୃଥିବୀର ବହୁ ସ୍ଥାନକୁ ରପ୍ତାନୀ କରାଯାଏ ।

ବେଲଜିଅମ, ପର୍ତ୍ତୁଗାଲ, ସ୍ପେନ, ଫ୍ରାନସ, ଇଟାଲୀ ପ୍ରଭୃତିର ଉପକୂଳର ବନ୍ଦରମାନଙ୍କରେ ଆଧୁନିକ ଓ ପୁରାତନ ସଂସ୍କୃତିର ସମନ୍ୱୟ ସୁସ୍ପଷ୍ଟ । ଆଫ୍ରିକାର ମରୋକୋ, ଆଲଜିରିଅର୍ସ, କାଇରୋ ବନ୍ଦର ପ୍ରଭୃତିରେ ପଶ୍ଚିମ ସଭ୍ୟତା ଓ ଆରବୀୟ ସଭ୍ୟତାର ମିଶ୍ରଣ ଘଟିଛି । ଜିନିଷ ବିକ୍ରୀରେ ମୂଲଚାଲ ଓ ଠକେଇ ସେହି ସ୍ଥାନମାନଙ୍କରୁ ଆରମ୍ଭ ହୋଇଛି ।

ସୁଏଜ କେନାଲରେ ଆସିଲା ବେଳକୁ ଆରବ ମରୁଭୂମିର ମାଉଣ୍ଟ ସିନାଇ ଦେଖି ସେଥିରେ ଖୋଦିତ ହୋଇଥିବା ଈଶ୍ୱରଙ୍କ ମୋଯେଶ-ଆଦେଶରୁ ୟୁହିଦି; ଖ୍ରୀଷ୍ଟିଆନ ଓ ମୁସଲମାନ ଧର୍ମ ଉତ୍ପନ୍ନ ହୋଇଥିବା ମୋର ମନେପଡ଼ିଲା । ଧର୍ମ ଓ ଭଗବାନଙ୍କ ନାମ ଜନ୍ମ ନେଇଥାଏ ହିମାବୃତ ପର୍ବତ ଶିଖରରୁ କିମ୍ବା ନିକାଞ୍ଚନ ମରୁ ବକ୍ଷରୁ କିନ୍ତୁ ଧର୍ମମାନଙ୍କର କୋଳାହଳ ଓ କନ୍ଦଳ ଶୁଭେ ଜନାକୀର୍ଣ୍ଣ ଧର୍ମମନ୍ଦିର ବା ପୀଠ ମାନଙ୍କରୁ ।

ଆରବର ମରୁ ଅଞ୍ଚଳର ବାରବୁଲା ବେଦଉଇନ୍ ଜାତି ଏବେ ତେଲ ସଂପଦ ଯୋଗୁ ଅତି ଧନଶାଳୀ । ଏଡ଼େନ ବନ୍ଦରର ତେଲ ସରବରାହ ସଂସ୍ଥାରୁ ମୁଁ ତା'ର ଆଭାସ ପାଇଥିଲି ।

ଆମେରିକାରୁ ଫେରି ୧୯୫୫ରେ କଟକ ମେଡ଼ିକାଲ କଲେଜରେ ଯୋଗ ଦେବା ପରେ ୧୯୫୮ରେ ମୁଁ ଛାତ୍ରମାନଙ୍କୁ ସାଙ୍ଗରେ ନେଇ ଭାରତର କେତେକ ଦର୍ଶନୀୟ ସ୍ଥାନ ପରିଦର୍ଶନରେ ଯାଇଥିଲି । ହାଇଦ୍ରାବାଦର ଅତି ମୂଲ୍ୟବାନ 'ସାଲାଜାର' ମ୍ୟୁଜିଅମରେ ବହୁ ଦେଶୀ ବିଦେଶୀ ମୂଲ୍ୟବାନ ପଦାର୍ଥ ସଜଡ଼ା ହୋଇ ରହିଥିଲା । ସେଠାରୁ ଯାଇ ଗୋଲକୁଣ୍ଡା ଦୁର୍ଗ ଓ ସାଗରମାନ ଦେଖିଲୁ । ପୁନା, ବମ୍ବେ ପ୍ରଭୃତି ବୁଲି ଫେରିବା ବାଟରେ ଅଜନ୍ତା ଏଲୋରା ପର୍ବତ ଗାତ୍ରରେ ଅଙ୍କିତ ବୌଦ୍ଧଜାତକ ଚିତ୍ର ସବୁ ଅନେକ ସ୍ଥାନରେ ଜୀବନ୍ତ ଦିଶୁଥିଲା ।

ଆଉ ଥରେ ୧୯୬୬ରେ ଛାତ୍ରମାନଙ୍କୁ ସଙ୍ଗରେ ନେଇ କାଶ୍ମୀର ଭ୍ରମଣରେ ଯାଇଥିଲି । କାଶ୍ମୀର ଉପତ୍ୟକାର ବୃକ୍ଷ, ପୁଷ୍ପ ଓ ଫଳ ସଙ୍ଗକୁ ବିଲର ନାଲି କେଶର

ଚାଷ ବଡ଼ ମନୋମୁଗ୍ଧକର ଥିଲା । ପଡ଼ିଆମାନଙ୍କରେ ଚରୁଥିବା ଲୋମଶ ମେଷମାନଙ୍କ ଲୋମରେ ଗାଲିଚା ଓ ସାଲ ପ୍ରଭୃତିର ଶିଳ୍ପ ଓ କାଠର ତିଆରି ଆସବାବପତ୍ରର ଶିଳ୍ପ ସେଠାରେ ପ୍ରାଧାନ୍ୟ ଲାଭ କରିଥିଲା । ଶ୍ରୀନଗର ନିକଟରେ ବିଛେଇ ହୋଇ ପଡ଼ିଥିବା ମୋଗଲ ସମ୍ଭୋଗ ସଂସ୍କୃତିର ନମୁନା ଡାଲ୍ ଲେକର ନୌଚାଳନା, ସାଲିମାର ଗାର୍ଡନର ପୁଷ୍ପ ସମ୍ଭାର ପର୍ଯ୍ୟଟକମାନଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ନୌକା ଘରର ଆତିଥ୍ୟ ଓ ଲୋକଙ୍କ ବ୍ୟବହାର ପରିଦର୍ଶକମାନଙ୍କୁ ଆକୃଷ୍ଟ କରୁଥିଲା । ବ୍ୟବସାୟ ଦୃଷ୍ଟିରୁ ସେ ଲୋକେ ପର୍ଯ୍ୟଟକମାନଙ୍କୁ ଅତି ଆଦର ଦେଖାଉଥିଲେ ମଧ ସେଥିରେ ବିଶେଷ ଆନ୍ତରିକତା ନଥିଲା ।

ସେ ସ୍ଥାନକୁ ଘେରି ରହିଥିଲା ହିମାଳୟର ବହୁ ହିମାବୃତ ଶୃଙ୍ଗ । ସେପ୍ଟେମ୍ବର ମାସରେ ମଧ ହିମ ପ୍ରବାହକୁ ରୋକିବା ପାଇଁ ଲୋକେ କମ୍ବଳ ଘୋଡ଼ିହୋଇ ପେଟରେ ନିଆଁ ଉମ୍ଭେଇ ବା କଂଗ୍ରୀଟିଏ ଲାକି ବୁଲୁଥିଲେ । ସେହି କଂଗ୍ରୀର ଚାପ ଯୋଗୁଁ ସେଠାରେ ପେଟ ଉପରେ କଂଗ୍ରୀ କ୍ୟାନସର ଦେଖାଯାଉଥିଲା । ତାହା ମୁଁ ଛାତ୍ରମାନଙ୍କୁ ଦେଖାଇଥିଲି । ପାନ ଖାଇବାରୁ ପାଟିରେ କ୍ୟାନସର, ସିଗାରେଟ ଧୂଆଁ ଯୋଗୁଁ ଫୁସ୍‌ଫୁସ୍ କ୍ୟାନସର ଓ ତେଲେଙ୍ଗାମାନେ ଫିକାର ଜଳନ୍ତା ପଟକୁ ପାଟିରେ ପୂରାଇ ଧୂଆଁ ଖାଇବା ଦ୍ୱାରା କଣ୍ଠରେ ଚୁଣ୍ଡା କ୍ୟାନସର ପରି ତାହା ଏକ ଅଭ୍ୟାସକୃତ କ୍ୟାନସର ବୋଲି ତା'ର ଦୃଷ୍ଟାନ୍ତ ଦେଇଥିଲି ।

ମୁଁ ବ୍ରହ୍ମପୁର ମେଡ଼ିକାଲ କଲେଜର ପ୍ରଫେସର ଥିବାବେଳେ ମୋ ଗାଡ଼ିରେ ଯାଇ ଛୁଟି ସମୟରେ କେରାଣ୍ଡିମାଳ ପର୍ବତ ନିକଟରେ ମହୁରୀଗଡ଼, ଚନ୍ଦ୍ରଗିରି, ଭଞ୍ଜନଗର, କଳିଙ୍ଗା ଘାଟ, ଜି.ଉଦୟଗିରି ପ୍ରଭୃତି ସ୍ଥାନରେ ପ୍ରାକୃତିକ ସୌନ୍ଦର୍ଯ୍ୟ ବୁଗୁଡ଼ା ନିକଟରେ କଳା ହରିଣ ଦଳ, ବୁଦ୍ଧଖୋଲର ଭାସ୍କର୍ଯ୍ୟ ପ୍ରଭୃତି ଦେଖି ଉତ୍‌ଫୁଲ୍ଲ ହୋଇଥିଲି ।

ଥରେ ଆହୁରି ଦକ୍ଷିଣକୁ ନିଜ ଗାଡ଼ିରେ ଯାଇ ଚିକାକୋଲମ ଠାରେ ବଡ଼ ସାଲୁର ଘାଟିଟି ଚଢ଼ି ଶୃଙ୍ଗି ଡାକବଙ୍ଗଳାରେ ବ୍ୟାଘ୍ର ଗହଳ ଭିତରେ ରାତି କଟାଇଥିଲୁ । ସେଠାରୁ ସୁନାବେଡ଼ା ମିଗ୍ କାରଖାନା, କୋରାପୁଟ, ଜୟପୁର, ବିଜୟନଗର, ସାମାଚଳ ଦେଇ ଭାଇଜାଗରେ ପହଞ୍ଚିଥିଲୁ । ଇଞ୍ଜିନିୟର ସାର୍ ବିଶ୍ୱେଶ୍ୱରାଆ ଗୋଟିଏ ପୁରୁଣା ଜାହାଜ ସମୁଦ୍ର କୂଳଠାରୁ ଟିକିଏ ଦୂରରେ ବୁଡ଼ାଇ ଦେଇ ସେ ବନ୍ଦରଟି ନିର୍ମାଣ କରାଇଥିଲେ । ସେ ବନ୍ଦରରେ ଜାହାଜ ତିଆରି ହେଉଥିବା ଦେଖିଲୁ ।

ମେଡ଼ିକାଲ କଲେଜର ଜଣେ ବରିଷ୍ଠ ଅଧ୍ୟାପକ ଭାବରେ ଭାରତର ବହୁ ମେଡ଼ିକାଲ କଲେଜର ଏମ.ବି.ବି.ଏସ୍ ଓ ଏମ.ଡ଼ିର ପରୀକ୍ଷକ ହେବାକୁ ପଡ଼ିଥିଲା । ପଶ୍ଚିମରେ

ଇନ୍ଦୋର, ଜବଲପୁର ଠାରୁ ପୂର୍ବରେ ଆସାମର ଡିବ୍ରୁଗଡ଼, ଦକ୍ଷିଣରେ ଭାଇଜାଗ, ଗୁଣ୍ଟୁର, କାକିନଡ଼ା ଓ ଉତ୍ତରରେ ପାଟନାର ଦୁଇଟି ମେଡ଼ିକାଲ କଲେଜ ମୁଜାଫରପୁର, ଦରଭଙ୍ଗା, ଗୟା, ଭାଗଲପୁର, ରାଞ୍ଚି, ଧାନବାଦ ଓ ଟାଟା ନଗର ପ୍ରଭୃତିକୁ ବର୍ଷ ବର୍ଷ ଧରି ପରୀକ୍ଷକ ହୋଇ ଯାଇଥିଲି । ସେ ସବୁ ସ୍ଥାନମାନଙ୍କ ନିକଟରେ ଥିବା ଦର୍ଶନୀୟ ସ୍ଥାନ ଦେଖିବାର ସୁଯୋଗ ପାଇଥିଲି । ଜବଲପୁର ନିକଟରେ ବିଭିନ୍ନ ରଙ୍ଗର ମାର୍ବଲ ପର୍ବତ କ୍ରୋଡ଼ରେ ଅଙ୍କାବଙ୍କା ରାସ୍ତାରେ ବୋହି ଯାଉଥିବା ନର୍ମଦା ନଦୀ ଭିତରେ ନୌକାରେ ବୁଲିବାର ଅଭିଜ୍ଞତା ଓ ଭାରତର ସବୁ ନଦୀଠାରୁ ଚଉଡ଼ା ବ୍ରହ୍ମପୁତ୍ର ନଦୀ, ସଦା ଜଳଭରା ଗଙ୍ଗାନଦୀ ପ୍ରଭୃତିର ଦୃଶ୍ୟ ଉପଭୋଗ କମ ସୌଭାଗ୍ୟର କଥା ନୁହେଁ ।

ପାଟନାରୁ ଜଣେ ପ୍ରଫେସର ବନ୍ଧୁଙ୍କ ପୁତ୍ରର ବିଭାଘରରେ ବରଯାତ୍ରୀ ହୋଇ କାଠମାଣ୍ଡୁ ଯିବା ପାଇଁ ଗଙ୍ଗାନଦୀ ଷ୍ଟିମରରେ ପାର ହୋଇ ଛୋଟ ଗଜ ରେଳଗାଡ଼ିରେ ରକ୍ସୋଲ ପର୍ଯ୍ୟନ୍ତ ଯାଇ ଭାରତର ସୀମା ପାର ହେବାପରେ ବୀରଗଞ୍ଜଠାରୁ ବସରେ ହିମାଳୟ ଚଢ଼ି ନେପାଳର କାଠମାଣ୍ଡୁରେ ପହଞ୍ଚିଥିଲୁ । ସେଠାର ନିର୍ମଳ ରାସ୍ତାର ଦୁଇକଡ଼ରେ ନାନା ରଙ୍ଗର ପୁଷ୍ପଭରା ବୃକ୍ଷ ଦେଖି ଆତ୍ମହରା ହୋଇଯାଇଥିଲୁ । ସେଠାର ଗୋମତୀ ନଦୀ କୂଳର ପଶୁପତିନାଥ ମନ୍ଦିର ଓ ଅନ୍ୟସ୍ଥାନରେ ଅନନ୍ତ ଶୟନ ମୂର୍ତ୍ତୀ, ବୌଦ୍ଧ ସ୍ତୂପ ଦର୍ଶନ ଅତି ପବିତ୍ର ଥିଲା ।

ବୈଜ୍ଞାନିକ ଭାବରେ ନିଜ ବିଜ୍ଞାନ ବିଦ୍ୟାର ସମ୍ମିଳନୀମାନଙ୍କରେ ଯୋଗ ଦେବା ପାଇଁ ଭାରତର ବିଭିନ୍ନ ସ୍ଥାନକୁ ଯିବାକୁ ପଡୁଥିଲା । ସେହି ଅବସରରେ ସେମାନଙ୍କ ନିକଟରେ ଥିବା ଦର୍ଶନୀୟ ସ୍ଥାନ ସବୁ ବୁଲି ଦେଖିବାର ସୁଯୋଗ ମିଳୁଥିଲା ।

ବାଙ୍ଗାଲୋର କନଫରେନ୍‌ସ ବେଳେ ମହୀଶୁର ନିକଟ କାବେରୀ ନଦୀ କୂଳରେ ନିର୍ମିତ ବିଶ୍ୱବିଖ୍ୟାତ ବୃନ୍ଦାବନ ଗାର୍ଡ଼େନର ପୁଷ୍ପୋଦ୍ୟାନ ଜଳ ଫୁଆରା ଓ ଆଲୋକ ସଜ୍ଜା ଅତି ଆମୋଦକର ଥିଲା । ବମ୍ବେ କନଫରେନସ ବେଳେ ଗୋଆ ଦର୍ଶନର ସୁଯୋଗ ମିଳିଥିଲା । ସେଠାର ପ୍ରଶସ୍ତ ସମୁଦ୍ର କୂଳମାନ, ଦୁଇଟି ସମୁଦ୍ରକୁ ସଂଯୋଗ କରୁଥିବା ବ୍ରିଜ ନିକଟର ପାହାଡ଼ ଉପରେ ଗୋଆର ପ୍ରେମିକ ଓ ପର୍ତ୍ତୁଗାଲର ପ୍ରେମିକା ଡନ-ପାଓ୍ୟାଲାଙ୍କ ଆତ୍ମହତ୍ୟାର ସ୍ମାରକ ରୂପେ ସେମାନଙ୍କ ମୂର୍ତ୍ତୀ, ସେଠାର କାରୁକାର୍ଯ୍ୟ ପୂର୍ଣ୍ଣ ଗୀର୍ଜାଘର ସବୁ ବୁଲି ଦେଖିଥିଲୁ ।

ଏହିପରି ରାଜ୍ୟ ଭ୍ରମଣ ସଙ୍ଗେ ସଙ୍ଗେ ହିନ୍ଦୁ ପରମ୍ପରାଗତ ସସ୍ତ୍ରୀକ ତୀର୍ଥ ଦର୍ଶନର ସୁଯୋଗ ନେବାକୁ ପଡୁଥିଲା । ହରଦ୍ୱାର, ଋଷିକେଶ, କାଶୀଧାମ ପ୍ରଭୃତି ଉତ୍ତରାଞ୍ଚଳ ତୀର୍ଥମାନଙ୍କ ସହିତ ଦାକ୍ଷିଣାତ୍ୟର ମଦୁରାଇ, କନ୍ୟାକୁମାରୀ, ରାମେଶ୍ୱର ଧାମ ଓ

ମାନ୍ଦ୍ରାଜ ପ୍ରଭୃତିର ବହୁ ତୀର୍ଥ ପର୍ଯ୍ୟଟନ କରିଥିଲୁ । ଦକ୍ଷିଣର କାଞ୍ଚିପୁର ନିକଟରେ ପକ୍ଷୀତୀର୍ଥର ଧଳା ଧଳା ପକ୍ଷୀ ଦୁଇଟିକୁ ଦେଖିବା ପାଇଁ ପାହାଡ଼ର ବହୁ ପାହାଚ ଚଢ଼ି ପର୍ବତ ଉପରକୁ ଯାଇ ସେମାନଙ୍କୁ ନ ଦେଖି ନିରାଶରେ ଫେରିବା ବେଳକୁ ସେ ପକ୍ଷୀ ଦୁଇଟି କେଉଁଠୁ ଉଡ଼ିଆସି ଆମ ବସ୍ ନିକଟ ପାହାଡ଼ ଉପରେ ବସି ଆମକୁ ଦେଖା ଦେଇଥିଲେ । ସମୁଦ୍ର ଭିତରେ, ଲୀନ ହେବାକୁ ବସିଥିବା ମହାବଳୀ ପୁରମ ମନ୍ଦିରର କାରୁକାର୍ଯ୍ୟ ଅତି ଉତ୍କୃଷ୍ଟ ଥିଲା ।

ପଶ୍ଚିମରେ ରାଜସ୍ଥାନର ସୁରମ୍ୟ ରାଜପ୍ରାସାଦ, ପିଙ୍କ୍‌ସିଟି, ଚିତୋରଗଡ଼ ଦର୍ଶନ ସହିତ ନାଥ ଦ୍ୱାର, ବିରଳା ମନ୍ଦିର ସବୁ ଦେଖିଥିଲୁ । ଗୁଜୁରାଟର ଦ୍ୱାରକା ଧାମ, ଭେଟ ଦ୍ୱାରକା, ମହାତ୍ମା ଗାନ୍ଧିଙ୍କ ଜନ୍ମପୀଠ, କୀର୍ତ୍ତିମନ୍ଦିର, ସୋମନାଥ ମନ୍ଦିର, ସାବରମତି ଆଶ୍ରମ ପରିକ୍ରମା କରିଥିଲୁ ।

ତା'ଛଡ଼ା ପୂର୍ବ ପୁରୁଷଙ୍କ ପିଣ୍ଡଦାନ ପାଇଁ ସସ୍ତ୍ରୀକ ଗମନ କରି ଶ୍ରଦ୍ଧାପୂତ ଭାବରେ ଫଲଗୁନଦୀ କୂଳରେ, ପ୍ରେତ ଗୟାରେ, ବୌଦ୍ଧ ଗୟାରେ ଓ ଅନ୍ୟ ବହୁସ୍ଥାନରେ ପିଣ୍ଡଦାନ କରି ମନରେ ପରମ ତୃପ୍ତି ଲାଭ କରିଥିଲୁ । ସେତେବେଳେ ରାଜଗିରି ଓ ନାଳନ୍ଦା ପ୍ରଭୃତି ବୌଦ୍ଧ କୀର୍ତ୍ତି ମଧ ଦେଖିଥିଲୁ ।

**ଦୂରରାଜ୍ୟ ଭ୍ରମଣ :**

ଆମ ସଂସ୍କୃତି ଅନୁସାରେ ପରିଣତ ବୟସରେ ବାନପ୍ରସ୍ଥ ନେଇ ଲୋକେ ଚାରିଧାମର ଦେବ ଦର୍ଶନ ଯଥା-ଜଗନ୍ନାଥ ଧାମ, ବଦ୍ରିକା ଧାମ (ବିଶ୍ୱନାଥ ଧାମ), ଦ୍ୱାରକା ଧାମ ଓ ରାମେଶ୍ୱର ଧାମ ଦର୍ଶନ କଲେ ପୂଣ୍ୟ ପ୍ରାପ୍ତି ଯୋଗୁଁ ସ୍ୱର୍ଗାରୋହଣ କରନ୍ତି । ସେହି ବିଶ୍ୱାସ ଦ୍ୱାରା ଭାରତର ଚାରିକୋଣର ସଂସ୍କୃତିର ଆଦାନପ୍ରଦାନ ଦ୍ୱାରା, ହଜାର ହଜାର ବର୍ଷ ଧରି ନାନା ବାଧାବିଘ୍ନ ସତ୍ତ୍ୱେ ହିନ୍ଦୁ ଧର୍ମ ତିଷ୍ଠି ରହିପାରିଛି ।

କାର୍ଯ୍ୟରୁ ଅବ୍ୟାହତି ନେବା ପରେ ଭ୍ରମଣର ସୁବିଧା ସୁଯୋଗ କମି ଯିବାରେ ମଧ ମୋର ଦେଶ ବିଦେଶ ଭ୍ରମଣ ନିଶା କମିଲା ନାହିଁ ।

**ଆମେରିକା ଭ୍ରମଣ :**

ପ୍ରାୟ ଚାଳିଶ ବର୍ଷ ତଳେ ପାଠ ପଢ଼ିବାକୁ ମୁଁ ଆମେରିକା ଯାଇଥିଲି । ସେତେବେଳର ଆମେରିକା ଓ ଏବର ଆମେରିକା ଭିତରେ ବହୁ ପ୍ରଭେଦ ଦେଖାଯାଇଥିବା ଶୁଣି, ସେ ଭୂଖଣ୍ଡକୁ ଭଲ ଭାବରେ ଦେଖିବା ପାଇଁ ୧୯୯୧ରେ ଯାତ୍ରା କରି କାନାଡ଼ାର ନାଏଗ୍ରା ଜଳପ୍ରପାତ ନିକଟ ବର୍ଲିଙ୍ଗଟନ ସହରରେ ସସ୍ତ୍ରୀକ ପହଞ୍ଚିଥିଲି ।

୧୯୫୨ ପ୍ରାରମ୍ଭରେ ଯୁକ୍ତରାଷ୍ଟ୍ର ଆମେରିକାକୁ ଯିବା ସମୟରେ ସେ ଭୂଖଣ୍ଡରେ ଥିବା ଭାରତୀୟଙ୍କ ସଂଖ୍ୟା ଆଙ୍ଗୁଠିରେ ଗଣି ହୋଇଯାଉଥିଲା । ବର୍ତ୍ତମାନ ଭାରତୀୟ ସଂଖ୍ୟା ବହୁ ଅଧିକ ହେବା ସଙ୍ଗେ ସଙ୍ଗେ ଓଡ଼ିଆମାନଙ୍କ ସଂଖ୍ୟା ମଧ ବଢ଼ିଯାଇଛି । ବର୍ତ୍ତମାନ ମୋ ବଡ଼ଝିଅ, ଭାଣେଜୀ ଓ ଭଉଣୀମାନଙ୍କ ନାତି ଓ ନାତୁଣୀ ପ୍ରଭୃତି ମୋର ବହୁ ସମ୍ପର୍କୀୟ ସେଠାରେ ଘରଦ୍ୱାର କରି ସେଠାର ନାଗରିକ ହୋଇ ରହିଲେଣି ।

ମୁଁ କାନାଡ଼ାର ବର୍ଲିଙ୍ଗଟନରେ ମୋର ଝିଅ ସୁମିତ୍ରା, ଜୋଇଁ ହର ପାଢ଼ି, ନାତି ପୀନାକ ଓ ନାତୁଣୀ ଶୋଭିତାଙ୍କ ନିକଟରେ ରହିବା ପରେ ସେମାନଙ୍କ ସଙ୍ଗେ ଛୁଟି ସମୟରେ ସେମାନଙ୍କ ଗାଡ଼ିରେ ବୁଲିବାର ସୁବିଧା ପାଇଥିଲି । କାନାଡ଼ାର ଉତ୍ତରାଞ୍ଚଳ ସଡ଼ବରୀ ଓ ନର୍ଥବେଠାରୁ ଟୋରେଣ୍ଟ, ଅଟାଓ୍ୟା, ମନଟ୍ରିଲ, କିଉବେକ୍ ଠାରୁ ଆରମ୍ଭ କରି ଆମେରିକା ଯୁକ୍ତରାଷ୍ଟ୍ରର ଦକ୍ଷିଣ ବିନ୍ଦୁର ଫ୍ଲରିଡ଼ା ପର୍ଯ୍ୟନ୍ତ ଓ ପଶ୍ଚିମର ସେଣ୍ଟଲୁଇସ୍‌ଠାରୁ ପୂର୍ବର ନିଉୟର୍କ ଓ୍ୟାଶିଂଟନ ପର୍ଯ୍ୟନ୍ତ ବହୁସ୍ଥାନ ଦେଖି ଦେଖି ଉଣିଶ ହଜାର କିଲୋମିଟର ସେହି ୪ ମାସ ଭିତରେ ବୁଲି ପାରିଥିଲି ।

ଯୁକ୍ତରାଷ୍ଟ୍ରର ଦକ୍ଷିଣ ରାଜ୍ୟମାନଙ୍କରେ ଆଗେ, ଗୋରା ଓ ନିଗ୍ରୋ ଦ୍ୱେଷଭାବ ଅତି ଉତ୍କଟ ଥିଲା । ବସ୍‌ରେ, ଟ୍ରେନରେ, ହସପିଟାଲରେ, ସବୁଠାରେ ସେ ଦୁଇ ଜାତି ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ରହିଥିଲା । ଗୋରାଙ୍କ ପାଇଁ ନିର୍ଦ୍ଦିଷ୍ଟ ପାଣିକଳରୁ କଳା ଲୋକ ପାଣି ପିଇବା ବାରଣ ଥିଲା । ସେମାନେ ସମସ୍ତେ ଖ୍ରୀଷ୍ଟଧର୍ମାବଲମ୍ବୀ ହେଲେ ମଧ ସେମାନଙ୍କ ପାଇଁ ଭିନ୍ନ ଭିନ୍ନ ଗୀର୍ଜା ସବୁ ରହିଥିଲା ।

ଏବେ ସେ ସବୁ ପୁରା ଉଠିଗଲାଣି । ନିଗ୍ରୋଙ୍କ ସଙ୍ଗେ ମିଶିଲେ ଆଉ ଲିଞ୍ଚ୍ ବା ପ୍ରାଣହାନୀର ଭୟ ନାହିଁ । ସେବେ ଆମପରି ବ୍ରାଉନ ଚମଡ଼ା ଥିବା ଲୋକଙ୍କୁ କଳା ବୋଲି ଧରା ନ ଯିବାରୁ ଆମେ ଗୋରାଙ୍କ ସଙ୍ଗେ ସୁବିଧାରେ ମିଳାମିଶା କରି ପାରୁଥିଲୁ ।

ବର୍ତ୍ତମାନ ସେ ଭୂଖଣ୍ଡରେ ଏସିଆ ଉଦ୍ଭବ ଲୋକଙ୍କ ସଂଖ୍ୟା ବହୁତ ବଢ଼ିଗଲାଣି । ଭିନ୍ନ ଭିନ୍ନ ଦେଶର ଲୋକଙ୍କ ଭିତରେ ସଂଗଠନ ଯୋଗୁଁ ଏଥେନିକ ଜାତିର ପ୍ରଶ୍ନ ଉଠିଲାଣି । ମୁଁ ମୋର ସେହି ଭ୍ରମଣର ଅଭିଜ୍ଞତା ଲେଖିଥିବା ପାଣ୍ଡୁଲିପିଟି ଏବେ ବି ଅପ୍ରକାଶିତ ରହିଛି ।

**ମରିସସ୍ ପରିଭ୍ରମଣ :**

ସେହି ଭ୍ରମଣର ତିନିବର୍ଷ ପରେ ୧୯୯୪ରେ ମୋତେ ପୃଥିବୀର ଦକ୍ଷିଣ ଗୋଲାର୍ଦ୍ଧରେ ଥିବା କ୍ଷୁଦ୍ର ମରିସସ୍ ଦେଶଟି ଦେଖିବାର ସୁଯୋଗ ମିଳିଲା । ଆମେ ଆମ ଖରାଦିନ

ଅଗଷ୍ଟରେ ସେଠାକୁ ଗଲାବେଳକୁ ତାଙ୍କର ଶୀତ ଦିନ ଆସିଯାଉଥିଲା । କିନ୍ତୁ ସମୁଦ୍ରର ହାଓ୍ୱା ଯୋଗୁ ସେଠାରେ ଶୀତ ବା ଗ୍ରୀଷ୍ମ ଅନୁଭୂତ ହେଉନଥିବାରୁ ତାହା ଚୀରବସନ୍ତର ଦେଶ ଭାବରେ ଖ୍ୟାତ । ସେ ରାଜ୍ୟଟି ଭାରତୀୟ ସଂସ୍କୃତିରେ ଉଦ୍‌ବୁଦ୍ଧ ଏକ ସମୃଦ୍ଧ ଗଣତାନ୍ତ୍ରିକ ଦେଶ । ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ମୁଁ ଲେଖିଥିବା ''ଚୀର ବସନ୍ତର ଦେଶ ମରିସସ୍'' ପାଠକ ମହଲରେ ଆଦୃତ ହୋଇଛି ।

୧୯୯୫ରେ ସୁଦୂର ପ୍ରାଚ୍ୟ ରାଜ୍ୟଭ୍ରମଣଃ ପାଇଁ ପୁଣି ମୋ ମନ ବଳିଲା । ଭୁବନେଶ୍ୱରସ୍ଥିତ ପର୍ଯ୍ୟଟନ ସଂସ୍ଥା ସୀତା ଟ୍ରାଭଲସକୁ ପଚାରିବାରେ ସେମାନେ କହିଲେ ''ଆମର ଏବର୍ଷର ପର୍ଯ୍ୟଟକ ଦଳ ଅତି ଶୀଘ୍ର ସେ ସ୍ଥାନକୁ ଯିବା ପାଇଁ ସମସ୍ତ ବନ୍ଦୋବସ୍ତ ହୋଇସାରିଲାଣି । ସେ ଦଳରେ ଅନ୍ତର୍ଭୁକ୍ତ ହେବାକୁ ଆଉ ବେଳ ନାହିଁ ।''

ପରଦିନ ସେହି ସଂସ୍ଥାର ମ୍ୟାନେଜର ମୋ କଟକ ଘରକୁ ଆସି କହିଲେ ''ଶେଷ ମୁହୂର୍ତ୍ତରେ ଦୁଇଜଣ ଯାତ୍ରୀ ଯିବାକୁ ମନା କରି ଦେବାରୁ ସେ ଦଳରେ ଦୁଇଟି ସ୍ଥାନ ଖାଲି ପଡ଼ିଛି, ଆପଣ ରାଜିହେଲେ ମୁଁ ଏହିଠାରୁ ଫୋନ କରି କଲିକତା ଅଫିସକୁ ଜଣାଇଦେବି ।'' ମୋ ପାଟିରୁ ହଁ ବାହାରିବା ସଙ୍ଗେ ସଙ୍ଗେ ସେ ଗୋଟିଏ ପାଖ ଏସ.ଟି.ଡ଼ି ବୁଥ ନିକଟକୁ ଯାଇ ଫୋନ କରି ଆସି ଯାତ୍ରା ହିସାବର ବିଲଟି ମୋତେ ଧରାଇ ଦେଲେ । ସେଥିରେ ଲେଖାଥିବା ଲକ୍ଷାଧିକ ଟଙ୍କା ଦେଖି ମୋ ଆଖି ଖୋସି ହୋଇଗଲା, କିନ୍ତୁ ନାହିଁ କରିବାର ଉପାୟ ନ ଥିଲା । ମୁଁ କିଛି ଟଙ୍କା ଆଗତୁରା ଦେଇ ଯିବା ବେଳକୁ ଆଉ ଟଙ୍କା ଦେବାର ପ୍ରତିଶ୍ରୁତି ଦେଲି । ମୁଁ ପୂର୍ବ ପ୍ରାଚ୍ୟର ଗୋଟିଏ ସ୍ଥାନ ଦେଖିବି ବୋଲି ଆଗରୁ ଠିକ୍ କରିଥିଲି । କିନ୍ତୁ ଗୋଟିଏ ଦେଶ ସ୍ଥାନରେ ମ୍ୟାନେଜର ଗହଣରେ ଯାଇ ତିନୋଟି ଦେଶ ଦେଖି, ଫାଇଭ୍-ଷ୍ଟାର ପର୍ଯ୍ୟଟନ ହୋଟେଲମାନଙ୍କରେ ରହି ବିମାନ, ଜାହାଜ ଓ ଶୀତତାପ ନିୟନ୍ତ୍ରିତ ବସରେ ଗାଇଡ଼ ସହିତ ବୁଲିବା ପାଇଁ ସେ ଅର୍ଥ ପ୍ରକୃତରେ ବେଶୀ ନ ଥିଲା ।

କଲିକତାର ବିମାନ ଘାଟିରୁ ଆମେ ୧୭ ଜଣ ଯାତ୍ରୀ ସୀତା ଟ୍ରାଭଲସ୍‌ର ଜଣେ ମ୍ୟାନେଜରଙ୍କ ସହିତ ସିଂଘାପୁର ବିମାନ ବନ୍ଦର ଦେଇ ଥାଇଲାଣ୍ଡର ବ୍ୟାଙ୍ଗକକ୍ ବିମାନ ବନ୍ଦରରେ ଅବତରଣ କଲୁ । ସେଠାର ଜଣେ ମହିଳା ଗାଇଡ଼ ଆମମାନଙ୍କୁ ସେଠାରୁ ୧୫୦ ମାଇଲ ଦୂର ପଟେୟା ସହରକୁ ଘେନିଗଲେ । ସେଠାରେ ଦୁଇଦିନ ରହି ନୌକାବିହାର, କୋରାଲ ଆଇଲାଣ୍ଡ ଭ୍ରମଣ, ଅରକିଡ ଫୁଲର ବଗିଚା ପ୍ରଭୃତି ଦେଖି ବ୍ୟାଙ୍ଗକକ୍ ଫେରିଲୁ ।

ବ୍ୟାଙ୍ଗକକ୍‌ର ଦେଢ଼ଟନ ଓଜନର ସୁନାର ବୁଦ୍ଧ, ୧୨୦ ଫୁଟର ଶାୟିତ ବୁଦ୍ଧମୂର୍ତ୍ତୀ ଏବଂ ସେଠାର ଏକ ଗ୍ରାମୀୟ ଥିଏଟରରେ ଆମ ଯାତ୍ରାର ରାଜା ରାଣୀ ପୋଷାକ,

ପାଇକ ଖେଳ ପ୍ରଭୃତି ଦେଖି ସେ ଦେଶର ଆମ ପୁରୁଣା ସଂସ୍କୃତି ସହିତ ନିବିଡ଼ ସମ୍ପର୍କ ଥିବାର ଜଣାପଡୁଥିଲା ।

ସେଠାରୁ ସିଂଘାପୁର ବିମାନ ବନ୍ଦର ଦେଇ ହଂକଂ ଯାତ୍ରା କଲୁ । ହଂକଂର ସମୁଦ୍ର ତଟ ରାସ୍ତାରେ ଯାତାୟତ କରି ଓସେନ ପାର୍କ ପ୍ରଭୃତିରେ ପୋଷା ଡ଼ଲଫିନ୍ ମାଛମାନଙ୍କର ନାନା ପ୍ରକାର ଖେଳ ଦେଖିଲୁ । ହଂକଂ ଠାରୁ ପାଣି ଜାହାଜରେ ମାକାଉ ନାମକ ପର୍ତ୍ତୁଗୀଜ ଅଧିକୃତ ଏକ ଦ୍ୱୀପକୁ ଗଲୁ । ସେଠାରେ ଚୀନ ସୀମାରେ ଚୀନା ଗେଟ୍ ଆରପଟେ ଚୀନା ଭୂଖଣ୍ଡ ଦେଖା ଯାଉଥିଲା । ହଂକଂ ଓ ମାକୁଆ ଦୁଇଟିଯାକ ଅତି ଧନଶାଳୀ ଦେଶ, ନିକଟ ଭବିଷ୍ୟତରେ ଲିଜ ସରିଯାଉଥିବାରୁ କମ୍ୟୁନିଷ୍ଟ ଚୀନ ରାଜ୍ୟ ସଙ୍ଗେ ମିଶିବାର ଥିବାରୁ ସେଠାରେ ଏକ ପ୍ରକାର ଆତଙ୍କ ସୃଷ୍ଟି ହୋଇଥିଲା । ମାକାଉ ଦ୍ୱୀପରେ ବୌଦ୍ଧ ମନ୍ଦିରରେ ମଙ୍ଗଳକାମୀ ହସକୁରାବୁଦ୍ଧ ମୂର୍ତ୍ତୀ ଓ ମନ୍ଦିର ଭିତରେ ଶୁଦ୍ଧିକ୍ରିୟା ପାଇଁ ପୂଜା ପ୍ରଭୃତି ଦେଖି ସେଠାର ଗୀର୍ଜା, ହିନ୍ଦୁ ମନ୍ଦିର, କାସୀନୋ ବା ଜୁଆଖେଳ ପ୍ରାସାଦ ପ୍ରଭୃତି ନାନା ଦର୍ଶନୀୟ ସ୍ଥାନ ମଧ ବୁଲି ଦେଖିଲୁ ।

ହଂକଂରୁ ସିଂଘାପୁର ଫେରିଲୁ । ତାହା ଗୋଟିଏ ଅତି ପରିଷ୍କାର ପରିଚ୍ଛନ୍ନ ସହର । ସେଠାରେ ସର୍ବସାଧାରଣ ସ୍ଥାନ ଏପରିକି ବସ୍‌ରେ ସିଗାରେଟ୍‌ଟିଏ ଖାଇଲେ ପାଞ୍ଚଶହ ଡଲାର ଜୋରିମାନା ଦେବାକୁ ପଡ଼େ । ସେଠାରେ ବହୁ ଦର୍ଶନୀୟ ସ୍ଥାନ ରହିଛି । ବିଶେଷରେ ସମୁଦ୍ର ଭିତରକୁ କାଚ ସୁଡ଼ଙ୍ଗରେ ଯାଇ ଜଳଚର ମାନଙ୍କୁ ଦେଖି ଆନନ୍ଦ ଉପଭୋଗ କରିବା କୌତୁହଳପୂର୍ଣ୍ଣ ଥିଲା ।

ସିଂଘାପୁର ବନ୍ଦରର ଜଳଭାଗ ଉପରେ ଇଲେକଟ୍ରିକ୍ ଡ଼ିବା ଗାଡ଼ିରେ ଆକାଶ ପଥରେ ଯାତ୍ରା କିମ୍ୱା ଅନ୍ୟ ପର୍ବତକୁ ଯିବା ଓ ସେଠାରେ ମହମ ମିଉଜିଅମରେ ଜାପାନ ସୈନ୍ୟଙ୍କ ଆତ୍ମ ସମର୍ପଣର ମହମ ମୂର୍ତ୍ତୀ ମାନଙ୍କର ଭୂମିକା ଚିତ୍ତାକର୍ଷକ ଥିଲା । ସିଂଘାପୁରର ଏକ ସ୍ଥାନରେ ବିରାଟ ପାର୍କ ଭିତରେ ପାଣି ଫୁଆର ମାନଙ୍କର ରଙ୍ଗୀନ ନାଚ ଓ ସଙ୍ଗୀତ ବଡ଼ ଆମୋଦକର ହୋଇଥିଲା ।

ସେହି ତିନୋଟି ସ୍ଥାନର ଆକର୍ଷଣୀୟ ପର୍ଯ୍ୟଟନ ଅଭିଜ୍ଞତାର ପାଣ୍ଡୁଲିପିଟି ଅପ୍ରକାଶିତ ରହିଛି । ୧୯୯୬ ଅଗଷ୍ଟରେ ଭାରତର ସ୍ୱାଧୀନତା ପ୍ରାପ୍ତିର ପଚାଶବର୍ଷ ପୂର୍ତ୍ତି ଉତ୍ସବ ବର୍ଷବ୍ୟାପୀ ପାଳିତ ହେବା ଠିକ୍ ହେଲା । ସ୍ୱାଧୀନତା ସଂଗ୍ରାମୀ ଓ ସହୀଦ୍ ପୀଠ ସବୁ ଖୋଜା ପଡ଼ିଲେ ।

**ଆଣ୍ଡାମାନ ଭ୍ରମଣ :**

ଆଣ୍ଡାମାନ ବା କଳାପାଣିର ସେଲୁଲାର ଜେଲ୍‌କୁ ଇଂରେଜମାନେ ଭାରତର ସ୍ୱାଧୀନତାକାମୀ ବୀରମାନଙ୍କୁ ପଠାଇ ସେଠାରେ ନର୍କ ଯନ୍ତ୍ରଣା ଦେଉଥିଲେ । ବହୁ

ଦେଶଭକ୍ତ ବୀର ସେଠାରେ ସହୀଦ ହୋଇଥିବାରୁ ସ୍ୱାଧୀନତା ପରେ ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳ ସେହି ଜେଲ୍‌କୁ ଏକ ସହୀଦ ସ୍ମୃତିପୀଠ ବା ଜାତୀୟ ପୀଠରେ ପରିଣତ କରିଛନ୍ତି ।

ମୁଁ ଭଲ ଭାବରେ ଜାଣିଥିବା ଦୁଇଜଣ ମହାନ୍ ଦେଶଭକ୍ତ ବୀର ସଭରକର ଓ ମୋ ପିଲାଦିନେ ଆମ ଘରେ ଆତ୍ମଗୋପନ କରି ରହିଥିବା କାଳିନ୍ଦୀ ବା କାଳିପଦ ଭଟ୍ଟାଚାର୍ଯ୍ୟ ସେହି କାରା ଯନ୍ତ୍ରଣା ଭୋଗ କରିଥିଲେ । ତେଣୁ ସେ ସ୍ଥାନ ଦେଖିବା ପାଇଁ ମୋର ଅନେକ କାଳରୁ ଇଚ୍ଛା ଥିଲା ।

ମୁଁ ୧୯୯୭ ନଭେମ୍ବରର ଆଦ୍ୟ ଭାଗରେ ସେ ସ୍ଥାନକୁ ଯାଇଥିଲି । ଆଣ୍ଡାମାନ ଏବେ ସ୍ୱାଧୀନ ଭାରତର ଏକ ସମୃଦ୍ଧିଶାଳୀ ରାଜ୍ୟରେ ବା ଅଂଶରେ ପରିଣତ ହୋଇଛି । ସେ ଦ୍ୱୀପମାନଙ୍କରେ ନେତାଜୀଙ୍କ ନାମକରଣ ସ୍ୱରାଜ ଓ ସହୀଦ ଦ୍ୱୀପ ଏବେ ସୁଦ୍ଧା ପ୍ରଚଳିତ ହୋଇ ନ ଥିଲେ ମଧ୍ୟ ସ୍ୱାଧୀନ ସରକାର ସେଲୁଲାର ଜେଲରେ ଏକ ମିଉଜିଅମ ପ୍ରତିଷ୍ଠା କରିଛନ୍ତି ଓ ଶବ୍ଦ-ଆଲୋକ ସାହାଯ୍ୟରେ ଇଂରେଜଙ୍କ ଅତ୍ୟାଚାରର ଘଟଣାବଳୀ ଦର୍ଶକମାନଙ୍କ ସାମନାରେ ଉପସ୍ଥାପିତ କରୁଛନ୍ତି ।

ପୂର୍ବ ଅବହେଳିତ ଆଣ୍ଡାମାନ ଆଉ ପୂର୍ବର ଅତ୍ୟାଚାରର ପୀଠ ହୋଇନାହିଁ । ସେଠାରେ ମଧ୍ୟ ଚୋରୀ ଡକାୟତି ଗୁଣ୍ଡାମି ପ୍ରଭୃତି ଦେଖାଯାଉ ନାହିଁ । ମୋର ସେ ଯାତ୍ରା ସମ୍ବନ୍ଧରେ ମୁଁ ପତ୍ରପତ୍ରିକାରେ ପ୍ରକାଶ କରାଇଛି ଓ ପାଣ୍ଡୁଲିପିଟିଏ ମଧ୍ୟ ପ୍ରସ୍ତୁତ କରି ରଖିଛି ।

ନିଜେ ଖାଇବା ଅପେକ୍ଷା ସଙ୍ଗରେ ଅନ୍ୟମାନଙ୍କୁ ଖୁଆଇବାରେ ବେଶୀ ଆନନ୍ଦ ମିଳେ । ଆଗେ ପରିବ୍ରାଜକମାନେ ଦେଶ ବିଦେଶ ଭ୍ରମଣରେ ଯାଇ ବିଭିନ୍ନ ସ୍ଥାନର ପ୍ରାକୃତିକ ବିଭବ ଓ ଜନଜୀବନ ସମ୍ବନ୍ଧରେ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରୁଥିଲେ ।

ସେମାନେ ନିଜ ସ୍ଥାନକୁ ଫେରିଆସି, ଜିଜ୍ଞାସୁ ଉତ୍ତରପିଢ଼ିଙ୍କ ସମ୍ମୁଖରେ ସେମାନଙ୍କ ଅଭିଜ୍ଞତା ବର୍ଣ୍ଣନା କରି ତାଙ୍କ କଷ୍ଟଲବ୍ଧ ଜ୍ଞାନକୁ ଅକାତରରେ ବିତରଣ କରୁଥିଲେ । ସେହି ବିବରଣୀରୁ ଅନେକ ଜ୍ଞାତବ୍ୟ ବିଷୟ ଓ ଐତିହାସିକ ତଥ୍ୟ ମଧ୍ୟ ଲିପିବଦ୍ଧ ହୋଇ ରହୁଥିଲା ।

ତେଣୁ ଭ୍ରମଣର ସୁଯୋଗ ପାଉଥିବା ଲୋକ ତା'ର ଅଭିଜ୍ଞତା ଦେଶବାସୀଙ୍କ ସମ୍ମୁଖରେ ଥୋଇବା ପାଇଁ ଚେଷ୍ଟା କରିବା ଉଚିତ ବୋଲି ମୋର ଧାରଣା ।

**ଇଉରୋପ ଭ୍ରମଣ :**

ଭ୍ରମଣ ପିପାସା ବଡ଼ ପ୍ରବଳ । ୧୯୯୯ ମେ ୧୯ ତାରିଖରେଆଠଟି ଇଉରୋପୀୟ ରାଜ୍ୟ ଭ୍ରମଣ କରି ଯିବାର ସୁଯୋଗ ପାଇ ପ୍ରଲୋଭନ ଏଡ଼ାଇ ପାରିଲିନାହିଁ ।

'ସୀତା ଟ୍ରାଭଲସ୍' ଭ୍ରମଣ ଦଳରେ ମୁଁ ମୋ ସହଧର୍ମିଣୀ ବାସନ୍ତି ଦେବୀ, ମୋର କବୟତ୍ରୀ ଭଗ୍ନୀ ରମାଦେବୀଙ୍କ ସହିତ ଯୋଗ ଦେଇ ଦିଲ୍ଲି ବିମାନ ବନ୍ଦରରୁ ଅଷ୍ଟ୍ରିଆ ରାଜଧାନୀ ଭିଏନା ଯାତ୍ରା କଲୁ । ଭିଏନାରୁ ଫ୍ରାନ୍ସ ଯାତ୍ରା କରି ସେଠାରେ ଏକ ପଞ୍ଚତାରକା ହୋଟେଲରେ ଅବସ୍ଥାନ କଲୁ । ଫ୍ରାନ୍ସରେ ସେଠାରେ ବସ ଯୋଗେ ବୁଲି ପ୍ୟାରିସ ନଗରୀର ପ୍ରଖ୍ୟାତ ଏଫେଲ ଟାଉଆର ଦର୍ଶନ ସହିତ ନୌକାରେ ନଦୀ ଭ୍ରମଣ ପ୍ରଭୃତିର ଆନନ୍ଦ ଉପଭୋଗ କଲୁ ।

**ଇଟାଲି :** ଫ୍ରାନ୍ସରୁ ବିମାନ ଯୋଗେ ଇଟାଲିର ରୋମରେ ପହଞ୍ଚିଲୁ । ସେଠାରେ ଏକ ବଡ଼ ହୋଟେଲରେ ରହିବା ସଙ୍ଗେ ସଙ୍ଗେ ଅନ୍ୟ ସ୍ଥାନ ଓ ଅନ୍ୟ ଦେଶ ଭ୍ରମଣ ପାଇଁ ଆମକୁ ଏକ ବଡ଼ ବସ ଡ୍ରାଇଭର ସହିତ ଯୋଗାଇ ଦିଆଗଲା । ଆମର ରୋମରେ ତିନି ଦିନ ରହଣୀ ଭିତରେ, ପୁରାତନ ରୋମର କୀର୍ତ୍ତିସ୍ତମ୍ଭ ସହିତ ପୋପଙ୍କ ରାଜ୍ୟ ଭାଟିକାନ ସିଟି, ଫ୍ଲରେନ୍ସ ନଗରୀର ପୃଥିବୀର ସପ୍ତ ଆଶ୍ଚର୍ଯ୍ୟରେ ଗଣାଯାଉଥିବା 'ଲିନିଙ୍ଗ ଟାଉଆର ଅଫ ପିଶା', ଭେନିସ ନଗରୀର ବିରାଟ ଚର୍ଚ୍ଚର ଦୃଶ୍ୟ ଓ ନଦୀର ଗଣ୍ଡୋଲି ଡଙ୍ଗାରେ ଯାତ୍ରା ଉପଭୋଗ କଲୁ ।

**ଭୂସ୍ୱର୍ଗ ସୁଇଜରଲାଣ୍ଡ:** ସେହି ବସ ଯୋଗେ ସୁଇଜରଲାଣ୍ଡ ଯାତ୍ରା କଲୁ । ସେଠାରେ ବରଫ ତରଳି ସ୍ୱଚ୍ଛ ଜଳରେ ପୂର୍ଣ୍ଣ ହ୍ରଦ ମାନଙ୍କରେ ନାନା ରଙ୍ଗର ପକ୍ଷୀ ସନ୍ତରଣର ଦୃଶ୍ୟ ଦେଖି ଚିଲିକା ହ୍ରଦ ମନେ ପଡ଼ିଲା । ସେ ରାଜ୍ୟ ଫଳ ପୁଷ୍ପରେ ଭରା । ରାସ୍ତାଘାଟରେ ବିରାଟ ବିରାଟ ରଙ୍ଗୀନ ଗୋଲାପ ଉଦ୍ୟାନ । ସେଠାରେ ଗୋଟିଏ ସୁରମ୍ୟ ହୋଟେଲରେ ତିନି ଦିନ ଅବସ୍ଥାନ ଭିତରେ ପୃଥିବୀର ଛାତ କୁହାଯାଉଥିବା ଉଚ୍ଚତମ ଅଞ୍ଚଳକୁ ଝୁଲା ଇଲେକଟ୍ରିକ୍ ଗାଡ଼ିରେ ଯାଇ ସେଠାର ହିମ ସୌନ୍ଦର୍ଯ୍ୟ ଉପଭୋଗ କଲୁ । ସେଠାରେ ନାନାସ୍ଥାନ ଦେଖିସାରି ଜର୍ମାନ ଅଭିମୁଖେ ଯାତ୍ରା କଲୁ । ସେଠାର ଘନ ଜଙ୍ଗଲ ବ୍ଲାକ୍ ଫରେଷ୍ଟ ଦେଇ ରାଇନ ନଦୀର ଜଳ ପ୍ରପାତ ଓ ରାଇନ କୂଳର ପର୍ଯ୍ୟଟନ କେନ୍ଦ୍ର ସବୁ ଦେଖିବା ପରେ ସୌନ୍ଦର୍ଯ୍ୟମୟୀ କେନାଲ ପରିବେଷ୍ଟିତ ହଲାଣ୍ଡ ଦେଶରେ ପ୍ରବେଶ କଲୁ । ସେଠାରେ ଗୋଟିଏ ଗୋଟିଏ ସହରରେ ପ୍ରାୟ ୭୦୦, ୮୦୦ କେନାଲ ରହିଛି । କେନାଲକୁ ଲୋକେ ରାଜରାସ୍ତା ରୂପେ ବ୍ୟବହାର କରନ୍ତି । ସେଠାରେ ବହୁ ବାୟୁ କଳ ମଧ୍ୟ ରହିଛି । ଦେଶଟି ସମୁଦ୍ର ଠାରୁ ନିଚ ଥିବାରୁ ଯନ୍ତ୍ର ଦ୍ୱାରା ଜଳ ନିଷ୍କାସନ କରାଯାଏ । ଏଠାରେ ବଡ଼ ବଡ଼ ହୀରା କାରଖାନା ରହିଛି ଓ ସମସ୍ତ ରାଜ୍ୟର ସମ୍ପଦକୁ ଏକାବେଳକେ ଦେଖିବା ପାଇଁ ଗୋଟିଏ ''ମିନି ହଲାଣ୍ଡ'' ମିଉଜିଅମ ନିର୍ମାଣ କରାଯାଇଛି । ସେ ମିଉଜିଅମରେ ହଲାଣ୍ଡର ସମସ୍ତ ଐତିହ୍ୟ ରହିଥିବା ସଙ୍ଗେ ପର୍ବତ ଗାତ୍ରରେ ବାଲିରେ ଗଢ଼ା ମିଉଜିଅମଟିଏ ମଧ୍ୟ ରହିଛି ।

ବେଲଜିଅମ : ହଲାଣ୍ଡରୁ ବେଲଜିଅମ ଆସି ଆମ ବସଟିକୁ ବିଦାୟ ଦେଇ ବିଲାତ ଯିବା ପାଇଁ ରେଳ ଷ୍ଟେସନରେ ପହଁଞ୍ଚିଲୁ । ସେଠାରୁ ଟ୍ରେନ୍‌ରେ ଇଙ୍ଗଲିସ ଚାନେଲ ବା ସମୁଦ୍ର ତଳେ ଥିବା ସୁଡ଼ଙ୍ଗ ଦେଇ ଆମେ ବିଲାତରେ ପହଞ୍ଚିଲୁ ।

ଲଣ୍ଡନରେ ଗୋଟିଏ ଦିନ ରହି ମହମ ମିଉଜିଅମରେ ଥିବା ଜୀବନ୍ତ ଦିଶୁଥିବା ବହୁ ମନୀଷୀ ଓ ଘଟଣା ମାନଙ୍କର ମୂର୍ତ୍ତି ଦେଖିବାକୁ ପାଇଲୁ । ଲଣ୍ଡନର ବଂକିହାମ ପାଲେସ ଓ ବିଖ୍ୟାତ ନଦୀପୋଲ ପ୍ରଭୃତି ଦେଖି ସାରି ବିମାନ ବନ୍ଦରକୁ ଆସିଲୁ । ସେଠାରୁ ବିମାନ ଯୋଗେ ଦିଲ୍ଲୀ ଆସି ଆମ ଯାତ୍ରା ଶେଷ କଲୁ ।

ବର୍ତ୍ତମାନର କମ୍ପ୍ୟୁଟର ଯୁଗରେ ବୁଲି ଆସି ନିଜର ଅନୁଭୂତି ଲେଖକ ଆଗରେ ବଖାଣିବାର ଆଉ ବେଶୀ ପ୍ରୟୋଜନ ନାହିଁ । ଘରେ ବସି ଦୂରଦର୍ଶନରେ ବିଭିନ୍ନ ଦେଶର ପ୍ରାକୃତିକ ଦୃଶ୍ୟ ଓ ଚାଲିଚଳଣ ପ୍ରଭୃତି ନିଜ ଆଖିରେ ଦେଖି ହେଉଛି । ତଥାପି ବାଡ଼ି ବାଇଗଣ ଓ ପୋଥି ବାଇଗଣରେ ପ୍ରଭେଦ ରହିଛି ।



# ବିକ୍ରମ ଦାସଙ୍କ ରଚନାବଳୀ

| | କ୍ରମିକ ନଂ | ନାମ | ପ୍ରକାଶକ | ପ୍ରକାଶ ସମୟ |
|---|---|---|---|---|
| ଗଳ୍ପ ସଂକଳନ | (୧) | ସାତ ତିରିକି ସତର | ଦାସବ୍ରଦର୍ସ, ବ୍ରହ୍ମପୁର | ୧୯୭୬ |
| | (୨) | ଅଖଇରିଆ କଥା | ସାଥୀ ପ୍ରକାଶନୀ, କଟକ | ୧୯୮୧ |
| ଉପନ୍ୟାସ | (୧) | ମଣିମା ଡିହ | ଗ୍ରନ୍ଥମନ୍ଦିର, କଟକ | ୧୯୮୧ |
| | (୨) | ଅଚିହ୍ନା ଇତିହାସ | ” | ୧୯୮୬ |
| | (୩) | ବୁଢ଼ ଖୋଇର ମାୟା | ନିଉ ଷ୍ଟୁଡେଣ୍ଟ ଷ୍ଟୋର, କଟକ | ୧୯୮୫ |
| | (୪) | ନିର୍ବାସିତ ଗଜପତି | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୮ |
| | (୫) | ଭଲେ ବିରାକୋଳୀ | ” | ୧୯୮୬ |
| | (୬) | ତିନି ପିଢ଼ିର ହୋଟେଲ | ” | ୧୯୯୨ |
| | (୭) | ସ୍ୱପ୍ନର ପାଞ୍ଚାଳୀ | ପ୍ରେଣ୍ଡର୍ସ ପବ୍ଲିଶର୍ସ, କଟକ | ୧୯୯୧ |
| | (୮) | ଅଜଣା ଗୁମ୍ଫା | ସାଥୀ ପ୍ରକାଶନୀ | ୧୯୯୦ |
| | (୯) | ମୁଁ ଦଶରଥ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୪ |
| | (୧୦) | ମୁଁ ବ୍ୟାସଦେବ | ” | ୧୯୯୯ |
| ରମ୍ୟରଚନା | (୧) | ଆମ ପାତାଳ ପୁରୀ (ଐତିହାସିକ) | ” | ୧୯୮୪ |
| | (୨) | ଆମ ଗଜପତି ଆମ ଗାଁ | ଗ୍ରନ୍ଥପ୍ରକାଶନୀ, କଟକ | ୧୯୯୩ |
| | (୩) | ଅସୁର ରାମାୟଣ (ପୌରାଣିକ) | ଖଣ୍ଡକ୍ଷୀରୋଦ ମିଶ୍ର, ବାଙ୍କାବଜାର କଟକ | ୧୯୮୫ |
| ଭ୍ରମଣ କାହାଣୀ | (୧) | ସେପଟ ଦୁନିଆ | ନାଳନ୍ଦା, କଟକ | ୧୯୮୧ |
| | (୨) | ଚିର ବସନ୍ତର ଦେଶ ମରିସସ | କଟକ ପବ୍ଲିସିଂ ହାଉସ | ୧୯୯୫ |
| ଜୀବନ କାହାଣୀ | (୧) | ମୋ ନନାଙ୍କ ଦେଶ | ଓଡ଼ିଶା ବୁକ୍ ଷ୍ଟୋର | ୧୯୮୩ |
| | (୨) | ଚିତ୍ରେ ମହାମନୀଷୀ ନୀଳକଣ୍ଠ | ନୀଳକଣ୍ଠ ଶତବାର୍ଷିକ ପ୍ରକାଶନ | ୧୯୮୫ |
| | (୩) | ବିଚାରପତି ଚଉଲା | ଗୋପବନ୍ଧୁ ସାହିତ୍ୟ ମନ୍ଦିର ‘ସମାଜ’ | ୧୯୮୫ |
| | (୪) | ଆଦିଜ୍ୟୋତି ହରିହର | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୨ |

| | | | | |
|---|---|---|---|---|
| | (୫) | ସଂଗ୍ରାମୀ ଗୁରୁ | " | ୧୯୮୮ |
| | (୬) | ସରଳାଦେବୀ | ସାରସ୍ୱତ ଭଣ୍ଡାର | ୧୯୯୨ |
| | (୭) | ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ | ନୀଳକଣ୍ଠ ସ୍ମୃତି ସମିତି ଭୁବନେଶ୍ୱର | ୧୯୯୩ |
| | (୮) | ଓଡ଼ିଆ ବଜାରର ଅଗ୍ନିଶିଖା ସୁଭାଷ | ଖଣ୍ଡ ଖୀରୋଦ ମିଶ୍ର ବାଙ୍କୀବଜାର | ଜନ୍ମଶତ ବାର୍ଷିକୀ |
| କବିତା | (୧) | ଚଉରା | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୯୫ |
| English | (1) | Domain of Lord Jagannath | B.R.P.C. Delhi | 1998 |

ଶିଶୁ ଓ ପୌଢ଼ ସାହିତ୍ୟ

| | | | |
|---|---|---|---|
| (୧) | ରସଗୋଲା ବାହାଘର | ଓଡ଼ିଶା ବୁକ୍ ଷ୍ଟୋର | ୧୯୮୧ |
| (୨) | ଟିଣିଟିଣିଆ ଭୂତ | " | ୧୯୮୨ |
| (୩) | ପିଲାଙ୍କ ସ୍ୱାସ୍ଥ୍ୟ ରୀତି | ବିଦ୍ୟାପୁରୀ, କଟକ | ୧୯୮୯ |
| (୪) | ସେ ଯୁଗ ଓ ଏ ଯୁଗ | " | ୧୯୮୭ |
| (୫) | ରୋଗରୁ କ୍ଷୟ ଓ ବୃଦ୍ଧି | " | ୧୯୮୭ |
| (୬) | ଅଦ୍ଭୁତ କୋଠା (ଆମ ନିଜଘର) | ଜେବୁବାବୁ, କଟକ | ୧୯୮୯ |
| (୭) | ପୋଥିବାଇଗଣ | ତ୍ରିମୂର୍ତ୍ତି ପ୍ରକାଶିନୀ | ୧୯୮୭ |
| (୮) | ମନରାଜା (ଆମ ମନ ରାଜା) | ଜେବୁବାବୁ କଟକ | ୧୯୮୭ |
| (୯) | ପାଣିର ସଂସାର | ବାଣୀରୂପା, କଟକ | ୧୯୮୮ |
| (୧୦) | ଅନ୍ଧାର କଣା | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୮ |
| (୧୧) | ଗୋଳମାଳିଆ ପେଟ | " | ୧୯୮୮ |
| (୧୨) | ଆମରି ଶିଶୁ | " | ୧୯୮୮ |
| (୧୩) | ଶରୀର ବିଜ୍ଞାନ | ମନୋରମା ପବ୍ଲିକେସନ, କଟକ | ୧୯୯୩ |
| (୧୪) | ମଗଜ ବଳରେ ମଣିଷ ରଜା | ଚିନ୍ମୟ ପ୍ରକାଶନୀ | ୧୯୮୯ |
| (୧୫) | ଆମ ପିଇବା ପାଣି | ସାରସ୍ୱତ ଭଣ୍ଡାର | ୧୯୯୨ |
| (୧୬) | ରୋଗରୁ ରକ୍ଷା କରିବାର ଶକ୍ତି | " | ୧୯୯୨ |
| (୧୭) | ଦେଖି ଚିହ୍ନି ବାଟଚାଲ | ଓଡ଼ିଶା ବୁକ୍ ଷ୍ଟୋର | ୧୯୯୨ |

| | | | |
|---|---|---|---|
| ଯନ୍ତ୍ରସ୍ଥ ପୁସ୍ତକ | (୧) | ସତ୍ୟବାଦୀର ଗୁରୁକୁଳ | ସାହିତ୍ୟ ଏକାଡେମୀ ପ୍ରକାଶିତ |
| | (୨) | କାଳପୁରୁଷର କଳିଙ୍ଗ ଲିପି | କୋଣାର୍କ ପବ୍ଲିକେସନ |

(୩) ଲହୁ ଓ ଲୁହର କାଶ୍ମୀର — ଓଡ଼ିଶା ବୁକ୍ ଷ୍ଟୋର

(୪) ଏବର ଆମେରିକା — କଟକ ଷ୍ଟୁଡେଣ୍ଟ ଷ୍ଟୋର

(୫) ଗଛରୁ ମଞ୍ଜି କି ମଞ୍ଜିରୁ ଗଛ — ,,

## ବିଭିନ୍ନ ପତ୍ରିକାରେ ପ୍ରକାଶିତ କେତେକ ପ୍ରବନ୍ଧ ଓ ଗଳ୍ପ

ଐତିହାସିକ
(୧) ଇତିହାସ — ନବଜୀବନ-କଟକ ଏପ୍ରିଲ-୧୯୭୪
(୨) ଆତ୍ମ ପ୍ରତ୍ୟୟ — ସହକାର-ଜାନୁୟାରୀ ଓ ଫେବୃୟାରୀ ୧୯୯୪
(୩) ସଂଗ୍ରାମୀ ଇରା — ପଲ୍ଲବ-କଲିକତା

ପୌରାଣିକ
(୧) ମନ୍ଥରାର ପ୍ରତିହିଂସା
(୨) ଜରତାର ପ୍ରଜ୍ଞା
(୩) ଯକ୍ଷାଣୀ ତାଡକା — ସହକାର
(୪) ଅଭିଶପ୍ତା ସୀତା

ମନସ୍ତାତ୍ତ୍ୱିକ
(୧) ବତିଘର — ସହକାର — ରଜସଂକ୍ରାନ୍ତି — ୧୯୮୪
(୨) ମମତାର ମୃଗତୃଷ୍ଣା — ,, — ମକର — ୧୯୯୨
(୩) ଲୁହ — ,, — ପୂଜା — ୧୯୯୨
(୪) ସାହାଜାହାନ — ସହକାର — ମକର — ୧୯୯୩
(୫) ବଡଦାଣ୍ଡ — ବଡଦାଣ୍ଡ ସ୍ମରଣିକା, ପୁରୀ — ୧୯୮୮

ବ୍ୟଙ୍ଗ ରଚନା
(୧) ଯମ ଯନ୍ତ୍ରଣା — ସୌରଭ — ୧୯୯୦
(୨) ମରାଳର ମୃତ୍ୟୁ — ସତ୍ୟବାଦୀ ସମାଜ — ୧୯୯୩
(୩) ଗଣେଶଙ୍କ ମୂଷାଚୋରୀ — ସୌରଭ — ୧୯୯୩
(୪) ମହାଦେବଙ୍କ ଷଣ୍ଢ — ସୌରଭ — ୧୯୯୩
(୫) ଜନ୍ମତିଥି — ଶର୍ମିଷ୍ଠା, କଟକ

ସାମାଜିକ
(୧) ବଂଶ ଦୋଷ-ସହକାର-ଜୁନ-୮୮
(୨) ଗୋଲକ ଧନ୍ଦା-ସହକାର ଏପ୍ରିଲ-୮୯
(୩) ଦୂତ-ସହକାର-ମକର-୯୦
(୪) କାଳହାଣ୍ଡି-ସହକାର-ମକର-୯୧
(୫) ଖାଲି ଭୁଲ-ସହକାର-ଜୁଲାଇ-୯୧
(୬) ମାଙ୍କଡ ଚିଭ ୧-ନବଲିପି
(୭) ମାଙ୍କଡ ଚିଭ ୨-ନବଲିପି
(୮) ଫଟୋ-ସୌରଭ



## ସ୍ୱାଧୀନତା ପରବର୍ତ୍ତୀ

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଡକ୍ଟର ବିକ୍ରମ ଦାସ ହେଉଛନ୍ତି ଅନ୍ୟତମ ସଫଳ ସ୍ରଷ୍ଟା - ଗଳ୍ପ, ଉପନ୍ୟାସ, ରମ୍ୟରଚନା, ଭ୍ରମଣ କାହାଣୀ, ଜୀବନୀ, କବିତା, ଶିଶୁ ଓ ବିଜ୍ଞାନ ସାହିତ୍ୟ ଇତ୍ୟାଦି ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ତାଙ୍କର ସାରସ୍ୱତ ସାଧନା ପରିଣତ ବୟସରେ ସୁଦ୍ଧା ଅବ୍ୟାହତ ରଖିପାରିଛନ୍ତି । ଜଗନ୍ନାଥଙ୍କର ମୈତ୍ରୀଧର୍ମର ପୃଷ୍ଠଭୂମିରେ ଇଂରାଜୀରେ 'ଡୋମେନ ଅଫ ଲର୍ଡ଼ ଜଗନ୍ନାଥ' ନାମକ ତାଙ୍କର ଏକ ଐତିହାସିକ ଅନୁଧାନ ପୁସ୍ତକ ପ୍ରଚୁର ପାଠକୀୟ ଆଦୃତି ଲାଭ କରିଛି ।

ବିକ୍ରମବାବୁ ପେସାରେ ଜଣେ ସୁନାମଧନ୍ୟ ଚିକିତ୍ସକ ଏବଂ ପାଥୋଲଜି (ନିଦାନ)ବିଦ୍ୟାର ବିଶେଷଜ୍ଞ । ସେ ଏସ୍.ସି.ବି. (ତତ୍କାଳୀନ ଓଡ଼ିଶା ମେଡ଼ିକାଲ, ବର୍ତ୍ତମାନର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ) କଲେଜରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଯୁକ୍ତରାଷ୍ଟ୍ର ଆମେରିକାରୁ ପାଥୋଲଜି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ଲାଭ କରିବାପରେ ଦେଶକୁ ଫେରି ଆସିଥିଲେ ।

ପ୍ରଫେସର ଦାସ ୧୯୨୧ ଫେବୃୟାରୀ ମାସ ସରସ୍ୱତୀ ପୂଜାଦିନ ଜନ୍ମଗ୍ରହଣ କରିଥିଲେ । ମହାମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କର ସେ କନିଷ୍ଠ ପୁତ୍ର । ସାକ୍ଷୀଗୋପାଳ ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ରପୁର ଶାସନ ଗ୍ରାମରେ ତାଙ୍କର ବାଲ୍ୟଜୀବନ ଅତିବାହିତ ହୋଇଛି । ସେତେବେଳେ ସାରା ଦେଶରେ ଅସହଯୋଗ ଆନ୍ଦୋଳନର ଅସ୍ଥିରତା । ସେହି କାରଣରୁ ନୀଳକଣ୍ଠ ନିଜ ସନ୍ତାନମାନଙ୍କ ପ୍ରତି ଧ୍ୟାନ ଦେଇପାରୁ ନଥିଲେ । ପୁନଶ୍ଚ କେନ୍ଦ୍ର ବିଧାନସଭାର ନିର୍ବାଚିତ ସଦସ୍ୟ ଏବଂ ସ୍ୱରାଜ୍ୟଦଳର ସକ୍ରିୟ ସମ୍ପାଦକ (ସଭାପତି - ମୋତିଲାଲ ନେହେରୁ) ଭାବରେ ତାଙ୍କୁ ବହୁ ସମୟ କାରାଗାରରେ ଓ ଓଡ଼ିଶା ବାହାରେ ରହିବାକୁ ପଡୁଥାଏ ।

ଏହି ବାତାବରଣରେ ବିକ୍ରମ ବାବୁ ଗ୍ରାମରେ ପ୍ରାଥମିକ ଶିକ୍ଷା ଓ ନୂତନ ସତ୍ୟବାଦୀ ବନବିଦ୍ୟାଳୟରେ ମାଇନର ସ୍କୁଲ ଶିକ୍ଷା ଶେଷ କରି କଟକ ରେଭେନ୍ସା କଲେଜିଏଟ ସ୍କୁଲରେ ନାମ ଲେଖାଇଥିଲେ । ହାଇସ୍କୁଲ ଛାତ୍ରଥିବା ବେଳେ ଉଗ୍ରବାଦୀ ଛାତ୍ରନେତା ଭାବରେ ସେ କାରାଦଣ୍ଡ ଭୋଗ କରିଥିଲେ । ରେଭେନ୍ସା କଲେଜରେ ବିଜ୍ଞାନର ଛାତ୍ର ଥିବା ବେଳେ ୧୯୪୨ 'ଭାରତଛାଡ଼' ଆନ୍ଦୋଳନ ସମୟରେ ସରକାର ସୁଭାଷ ବୋଷଙ୍କ ନିଷିଦ୍ଧ ଫରୱାର୍ଡ଼ ବ୍ଲକର ଜଣେ ଉଗ୍ରବାଦୀ ସଦସ୍ୟ ଥିବାରୁ ଦୁଇବର୍ଷ ସେ ଆତ୍ମଗୋପନ କରିଥିଲେ । ଏହିପରି ନାନା ଘାତ ପ୍ରତିଘାତ ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ ବିକ୍ରମବାବୁଙ୍କ ଛାତ୍ରଜୀବନ ଗତି କରିଛି ।

ପିତାଙ୍କର ପ୍ରଭାବ ଓ ପାରିବାରିକ ସଂସ୍କାରରେ ସେ ଓଡ଼ିଆ ସଂସ୍କୃତି ଏବଂ ସାମାଜିକତାର ଆକର୍ଷଣରୁ ମୁକ୍ତ ରହିପାରି ନଥିଲେ । ସେ ନବଭାରତ ପ୍ରେସ୍‌ର ସାହିତ୍ୟ ଚର୍ଚ୍ଚା ସହିତ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ସରକାରୀ ଅଧ୍ୟାପକ ହେବାପରେ ସେହି ଅନୁଷ୍ଠାନକୁ ଜୀବିତ ରଖିବାପାଇଁ ପିତାଙ୍କ ପରାମର୍ଶରେ ତାଙ୍କର ତିରୋଧାନ ପୂର୍ବରୁ ନବଭାରତ ପ୍ରେସ୍ ଓ ଅନୁଷ୍ଠାନକୁ ସେ ଗୋପବନ୍ଧୁଙ୍କ ଲୋକସେବକ ମଣ୍ଡଳକୁ ଦାନ କରିଥିଲେ ।

ବିକ୍ରମବାବୁ ଅବସର ନେବାପରେ ପୁଣି ସକ୍ରିୟ ଭାବରେ ସାହିତ୍ୟ-ସାଧନାରେ ନିଜକୁ ନିୟୋଜିତ କରିଛନ୍ତି । ନିଜର ଗ୍ରାମ ସହିତ ସୁସମ୍ପର୍କ ରଖିବା ସଙ୍ଗେ ସଙ୍ଗେ ସେ ଶୃଙ୍ଖଳିତ ନୀତିନିଷ୍ଠ ଜୀବନ ଯାପନ କରୁଛନ୍ତି । ପରମ୍ପରାର ନବୀକରଣରେ ଆଧୁନିକତାରେ ସେ ଦୃଢ଼ବିଶ୍ୱାସୀ । ଏବେ ମଧ୍ୟ ଆଠ ଦଶକରୁ ଊର୍ଦ୍ଧ୍ୱ ଏହି ବର୍ଷୀୟାନ୍ ସାହିତ୍ୟ ସାଧକଙ୍କର ଲେଖନୀ ଗତିଶୀଳ । ବିକ୍ରମବାବୁଙ୍କର ସହଧର୍ମିଣୀ ଶ୍ରୀମତୀ ବାସନ୍ତୀ ଦେବୀ ଜଣେ ସାହିତ୍ୟପ୍ରେମୀ ଏବଂ ସ୍ୱାମୀଙ୍କ ସାହିତ୍ୟ ସାଧନାରେ ଯଥାର୍ଥ ପ୍ରେରଣାଦାତ୍ରୀ ।